

ଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ - ଜନ୍ମ ଖ୍ରୀ.୧୯୦୧ ଶ୍ରାବଣ ଶୁକ୍ଳପ୍ରତିପଦ । ଅଳ୍ପ ବୟସରୁ ସାହିତ୍ୟ ସାଧନା ଆରମ୍ଭ-ଦିନଲିପି, କବିତା, ଗଳ୍ପ, ଉପନ୍ୟାସ, ନାଟକ ଓ ପ୍ରବନ୍ଧ । ପ୍ରଥମ ସମ୍ପାଦିତ ପତ୍ରିକା ପ୍ରକାଶନ 'ଛାତ୍ର ଦର୍ପଣ' (୧୯୧୯)। ପ୍ରଥମ ପ୍ରକାଶିତ ଗ୍ରନ୍ଥ- 'ଭକ୍ତକବି ମଧୁସୂଦନ' (୧୯୨୮)। ସମବାୟ ପତ୍ରିକା 'କଲ୍ୟାଣୀ'ର ସମ୍ପାଦନା- ଉକ୍ତ ବିଭାଗରେ କାମ କରୁଥିବା ସମୟରେ 'ସବୁଜ ସାହିତ୍ୟ' ସମିତି ସଙ୍ଗଠନ (୧୯୩୦)। ମିଳିତ ପ୍ରକାଶନ 'ସବୁଜ କବିତା'। 'ବାସନ୍ତୀ' ଉପନ୍ୟାସର ଉତ୍କଳ ସାହିତ୍ୟ ପତ୍ରିକାରେ ଧାରାବାହିକ ପ୍ରକାଶନ ଓ ପୁସ୍ତକ ଆକାରରେ ମୁଦ୍ରଣ। 'ମାଟିର ମଣିଷ' (୧୯୩୧)। 'ମୁକ୍ତାଗଡ଼ର କ୍ଷୁଧା' ଓ 'ଅମର ଚିତା' (୧୯୩୨)। 'ଦ୍ୱାଦଶୀ' କ୍ଷୁଦ୍ର ଗଳ୍ପ ସଂକଳନ। ମୟୂରଭଞ୍ଜ ରାଜ୍ୟ ସରକାର ପ୍ରକାଶିତ 'ଭଞ୍ଜ ପ୍ରଦୀପ' ଓ 'ମୟୂରଭଞ୍ଜ କ୍ରନିକ୍ଲ' (ଇଂରାଜୀ) ସମ୍ପାଦନା। ସାମ୍ବାଦିକ ପ୍ରତିନିଧି 'ଷ୍ଟେଟ୍ସମ୍ୟାନ' ଓ ଏସୋସିଏଟେଡ ପ୍ରେସ- ବାରିପଦାରେ ସାହିତ୍ୟ ସମାଜ ସଙ୍ଗଠନ- 'ପ୍ରିୟଦର୍ଶୀ' ନାଟକ ପ୍ରକାଶନ (୧୯୩୩-୩୮)। 'ମନେ ନାହିଁ', 'ଲୁହାଟିଏ ଲୋଡ଼ା' 'କ୍ଷଣିକ ସତ୍ୟ' ଓ 'ମହାଦୀପ' କବିତା ସଂକଳନ।

# ଅଙ୍ଗେ ଯାହା ନିଭାଇଛି


କାଳିନ୍ଦୀ ଚରଣ ପାଣିଗ୍ରାହୀ



ପ୍ରକାଶକ



ଫ୍ରେଣ୍ଡସ୍ ପବ୍ଲିଶର୍ସ

# ଅଙ୍ଗେ ଯାହା ନିଭାଇଛି

ମୁଖ୍ୟ ଉପଦେଷ୍ଟା :

ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର

ପ୍ରକାଶକ :
ଶ୍ରୀ ନୃସିଂହ ପ୍ରସାଦ ମିଶ୍ର
କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୭୫୩୦୦୨

ଦ୍ୱିତୀୟ ସଂସ୍କରଣ : ୨୦୦୬

ମୁଦ୍ରଣ : ମୀନାକ୍ଷୀ ଡି.ଟି.ପି. ଏବଂ ସଙ୍ଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ : ବନ୍ଧାଇ ଟ. ୨୦୦-୦୦ ମାତ୍ର
ସାଦା: ଟ. ୧୮୦-୦୦ ମାତ୍ର

## ANGE JAHA NIVAICHHI

Kalindi Charan Panigrahi

Publisher:
Sri N. P. Misra
Cuttack Students' Store
Balubazar, Cuttack - 753002

Principal Adviser:
Sri R. P. Misra

Second Edition : 2006

Printers:
Minakshi D.T.P. & Sangeeta Printers, Cuttack

Price: Deluxe Rs.200-00 only
Popular: Rs.180.00 only

# ପଦେ କଥା

ପଦ୍ମଭୂଷଣ କାଳିନ୍ଦୀଚରଣ ପାଣିଗ୍ରାହୀ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ଯଶସ୍ୱୀ ହୋଇଛନ୍ତି । ସେ ଥିଲେ ସବୁଜ ଯୁଗର କର୍ଣ୍ଣଧାର । ଏକ ନିର୍ଦ୍ଦିଷ୍ଟ ଆଦର୍ଶକୁ ଭିତ୍ତିକରି ତାଙ୍କ ସାରସ୍ୱତ ସମ୍ଭାର ନୂତନ ରୂପ ଲାଭ କରିଛି । କାଳିନ୍ଦୀ ଚରଣ ଉପନ୍ୟାସ ରଚନା କରି ଯେପରି ଖ୍ୟାତି ଅର୍ଜନ କରିଛନ୍ତି, ଗଳ୍ପ, ଆଲୋଚନା, ନାଟକ ଲେଖି ମଧ୍ୟ ସେହିପରି ପାଠକୀୟ ସ୍ୱୀକୃତି ଲାଭ କରିଛନ୍ତି । ସାମ୍ପ୍ରତିକ କାଳରେ ଓଡ଼ିଆ ସାହିତ୍ୟରେ ଆତ୍ମ-ଜୀବନୀ ପୁସ୍ତକର ଗୁରୁତ୍ୱ ବେଶ୍ ଉପଲବ୍ଧ । ଦିଗ୍‌ଦ୍ରଷ୍ଟା କାଳିନ୍ଦୀଚରଣ ସେଥିପାଇଁ ରଚନା କରିଯାଇଛନ୍ତି ତାଙ୍କ ଜୀବନର ଅମୂଲ୍ୟ ସ୍ମୃତିର ସୁନ୍ଦର ସଂକଳନ ''ଅଙ୍ଗେ ଯାହା ନିଭାଇଛି'' । କାଳିନ୍ଦୀଚରଣଙ୍କ ଜୀବନର ଅନେକ ଅକୁହା କଥା – ଯାହା ସେ ନିଜେ ଅଙ୍ଗେ ନିଭାଇଛନ୍ତି – ଏହି ଗ୍ରନ୍ଥରେ ପ୍ରକାଶ ପାଇଛି ତାଙ୍କ ନିଜର ଅନ୍ତରଙ୍ଗ ଭାବ-ଭାଷା-ଶୈଳୀରେ ।

ଓଡ଼ିଆ ସାହିତ୍ୟର ଏହି ଅନନ୍ୟ ଗ୍ରନ୍ଥକୁ ଆମେ ୧୯୭୩ ମସିହାରେ ପ୍ରଥମେ ପ୍ରକାଶ କରି ଗୌରାବାନ୍ୱିତ । ପୁସ୍ତକଟି ପାଠକମାନଙ୍କ ଦ୍ୱାରା ବିଶେଷ ଆଦୃତ ହୋଇଥିଲା । ସୁଖର କଥା, କାଳିନ୍ଦୀଚରଣଙ୍କ ଦେହାନ୍ତ ପରେ ତାଙ୍କ ଜନ୍ମ-ଶତବାର୍ଷିକୀ ସମଗ୍ର ରାଜ୍ୟରେ ବିଭିନ୍ନ ଅନୁଷ୍ଠାନ ଏବଂ କେନ୍ଦ୍ର ସାହିତ୍ୟ ଏକାଡେମୀ ଓ ଉତ୍କଳ ସାହିତ୍ୟ ସମାଜ ମହାସମାରୋହରେ ପାଳନ କରିଛି ।

ସାହିତ୍ୟ-ସାଧକ କାଳିନ୍ଦୀଚରଣ ଯଥାର୍ଥରେ କାଳଜୟୀ ସ୍ରଷ୍ଟା । ତାଙ୍କ ସୃଷ୍ଟିର ପ୍ରଭାବ ଓଡ଼ିଆ ସାହିତ୍ୟରେ ଅମ୍ଳାନ ହୋଇ ରହିଛି । କିନ୍ତୁ ଏବେ ସାଧାରଣରେ ଏଇ ଅମୂଲ୍ୟ ଆତ୍ମଜୀବନୀ ଉପଲବ୍ଧ ହେଉ ନାହିଁ । ବହୁ ଶ୍ରଦ୍ଧାଳୁ ପାଠକ, ଗବେଷକ, ଅଧ୍ୟାପକ ଓ ସାହିତ୍ୟ-ସାଧକ ଏହି ଗ୍ରନ୍ଥର ପୁନଃମୁଦ୍ରଣ ପାଇଁ ବାରମ୍ବାର କହିଛନ୍ତି । ଏବେ ଏହି ଶ୍ରଦ୍ଧାଳୁମାନଙ୍କ ଆବଶ୍ୟକତାକୁ ଦୃଷ୍ଟିରେ ରଖି ଆମେ ''ଅଙ୍ଗେ ଯାହା ନିଭାଇଛି'' ଗ୍ରନ୍ଥ ନୂତନ ପରିପାଟୀରେ ପ୍ରକାଶ କରିଛୁ ।

ଆମର ଆଶା, ପୂର୍ବ ପରି ଏହି ଗ୍ରନ୍ଥଟି ପାଠକମାନଙ୍କ ଦ୍ୱାରା ବିଶେଷ ଆଦୃତ ହେବ ।

ପ୍ରକାଶକ

# ସୂଚୀ

| ବିଷୟ | ପୃଷ୍ଠା |
|---|---|
| ନିତି ନୂଆ ମଣିଷ | ୧୭୮ |
| ଲଣ୍ଠାତାରା | ୧୮୧ |
| ଅକ୍ଷର ସ୍ୱାକ୍ଷର | ୧୮୪ |
| ଅଣବଦ ଘରୁ ଣବଦ | ୧୮୮ |
| ଯଥା ଅର୍ଥରେ ବି ଅନର୍ଥ | ୧୯୨ |
| ଆଶ୍ରମ ବିଶ୍ରାମ | ୧୯୫ |
| କୁହୁ କୁହୁ କୁହୁ | ୧୯୯ |
| ନିର୍ମଳ-ବନ୍ଧୁତା | ୨୦୩ |
| ଲାଜ ରାଖୋ ଗିରିଧାରି ! | ୨୦୬ |
| ଅୟମାରମ୍ଭ | ୨୦୯ |
| ଯଥା ରାବଣସ୍ୟ ମନ୍ଦୋଦରୀ | ୨୧୬ |
| ଜଗବନ୍ଧୁ ଓ ଗୋପବନ୍ଧୁ | ୨୨୧ |
| ଅଚାନକ ଜଣେ ବାଲ୍ୟବନ୍ଧୁ | ୨୨୪ |
| ବର୍ଷକ ଭିତରେ ସ୍ୱରାଜ୍ୟ | ୨୨୯ |
| ବଡ଼ ଦେଉଳ, ବଡ଼ଦାଣ୍ଡ, ମହାସାଗର କୂଳେ ମହାମାନବ | ୨୩୪ |
| କଟକ ନଗର ଧବଳ ଟଗର | ୨୩୯ |
| ଲେଖି ଆରମ୍ଭିଲା ବସି ବିନୟ ପତର | ୨୪୩ |
| ରେଭେନ୍‌ସା କଲେଜ | ୨୪୭ |
| ରାଧାନାଥ, ମଧୁସୂଦନ ଓ ବିଶ୍ୱନାଥ | ୨୪୯ |
| ସବୁ ସବୁଜ | ୨୫୨ |
| ଅର୍ଥ ମନର୍ଥମ୍ ଭାବୟ ନିତ୍ୟମ୍ | ୨୫୬ |
| ସବୁଜ ବନ୍ଧୁଙ୍କ ପତ୍ର ବିନିମୟ | ୨୫୮ |
| ପ୍ରତ୍ୟେକ ଦାୟୀ ସବୁରି ପାଇଁ ସମସ୍ତେ ଦାୟୀ ପ୍ରତ୍ୟେକ ପାଇଁ | ୨୬୬ |
| ସହଯୋଗ ସହ ଅସହଯୋଗ | ୨୬୯ |
| କଟକ ସମବାୟ ଶିକ୍ଷାକେନ୍ଦ୍ର | ୨୭୪ |
| ମାଟିର ପିତୁଳା ଗଢ଼ି ରଖିଦେଲି | ୨୭୫ |
| ଯେଉଁ ଡାଳେ ବସେଁ ସେ ଡାଳ ଭାଙ୍ଗେ | ୨୮୧ |
| ଇଚ୍ଛାପୁର ନିଖିଳ-ଉତ୍କଳ-କବି ସମ୍ମିଳନୀ ୧୯୩୨ | ୨୮୬ |
| ପାସୋରି ଦେଲିରେ ଶିମୁଳିପାଳ | ୨୮୯ |
| ନବଯୁଗ ସାହିତ୍ୟ ସଂସଦ-୧୯୩୫ | ୨୯୪ |
| 'ଆଧୁନିକ' ପ୍ରଥମ ବର୍ଷ | ୨୯୭ |

# ମୋର କୈଫିୟତ୍

ବନ୍ଧୁମାନଙ୍କ ଇଚ୍ଛା, ମୁଁ ନିଜ କାହାଣୀ ଲେଖେଁ । ମୋର ବି ଏମିତି ଇଚ୍ଛା ଯେ କେତେ ଥର ହୋଇନି, ତା'ନୁହେଁ । ତା'ର ଅର୍ଥ— ବନ୍ଧୁମାନଙ୍କ ପରି ନିଜ କଥା ନିଜେ ଜାଣିବାକୁ, ବୁଝି ବିଚାରି ମନେପକାଇବାକୁ, ନିଜକୁ ନିଜେ ଆବିଷ୍କାର କରିବାକୁ, ମୋର ମଧ୍ୟ କୌତୂହଳ ଅଛି । ଆଗ୍ରହ ନ ଥିଲେ ନ ଥାଇପାରେ ଅବା !

ଚିତ୍ରଶିଳ୍ପୀ ଓ ମୂର୍ତ୍ତିଶିଳ୍ପୀ ନିଜ ପ୍ରତିକୃତି ଗଢ଼ନ୍ତି । ସେଭଳି ଉତ୍କୃଷ୍ଟ ଶିଳ୍ପରେ ନିଜେ ନିଜକୁ ଦେଖିବାର ଏକ ଭାବମୟ ପ୍ରକାଶ ଫୁଟିଉଠେ । ତୂଳୀ ନିହଣର ବିନ୍ୟାସରେ ଗୋଟିଏ ଦାଗ ବା ସଙ୍କେତରେ ବହୁତ କଥା କୁହାଯାଇପାରେ । ବାହାର ରୂପକୁ ଭେଦକରି ଭିତର ରୂପ ଦେଖାଇବା ହିଁ ଶିଳ୍ପୀର କଳା-କୌଶଳ । ସାହିତ୍ୟ-ଶିଳ୍ପୀ ନିଜେ ନିଜକୁ ଜାଣିବାପାଇଁ ଲେଖନୀମୁନରେ ଆପଣା ରୂପ ଆଙ୍କିବନେ । ମୁଁ ଆପେ ଆପଣାକୁ କେତେ ଦୂର ଜାଣେ, କେତେଦୂର ବୁଝେଁ, ତା' ବୋଧହୁଏ ସବୁଠି ବେଶି ଦୁରୂହ । ଅନ୍ୟର ଜୀବନୀ ଲେଖିବାଠାରୁ ତ ନିଶ୍ଚୟ ବେଶି ।

ଏମିତି କେତୋଟି କାରଣରୁ ଆଜିଯାକେ ଏ କାମରୁ ପଛେଇ ଯାଇଥିଲି । ଅସଲ କାରଣ-ହେଲା, ଅନ୍ୟ କଥାଭଳି ନିଜ  କଥା ନିଜେ ଲେଖିବା ସହଜ ନୁହେଁ । ନିଜ କଥା ବୋଇଲେ ତ ଭଲମନ୍ଦ ସବୁ ଅଛି । ଅନ୍ୟର ଗୋଇ ଖୋଳିବା କି ଭଲ ଗୁଣ ଗାଇବାରେ ବାହାଦୁରି ଜଣା ପଡ଼େ । ପାଣ୍ଡିତ୍ୟ ପରଖ ହୁଏ ପରକୁ ଉପଦେଶ ଦେବାରେ । ଘରକୁ ସେମିତି ବୁଦ୍ଧି ଦିଶିଲେ ସିନା !

ଆଉ ଗୋଟିଏ କାରଣ ହେଲା—କେତେ ବର୍ଷ ବୟସରେ ଆତ୍ମଜୀବନୀ ଲେଖାଯାଏ, ତାହାର କିଛି ସୀମା ଧାର୍ଯ୍ୟ ନାହିଁ; ଓଳିଆରୁ ପଡ଼ି ଗଜା ହେଲାଭଳି କେହି କେହି ଲେଖକ, ଶାସକ ବା ରାଜନୀତିଜ୍ଞ ଆତ୍ମଜୀବନୀ ଲେଖିବା ଯୋଗ୍ୟତା ଅଳ୍ପ ବୟସରୁ ଅର୍ଜନ କରନ୍ତି; କିନ୍ତୁ ତାଙ୍କ ଭିତରେ ଆତ୍ମଜୀବନୀ ଲେଖିବା ଉଦ୍ୟମ କ୍ୱଚିତ୍ ଦେଖାଯାଏ । ଆଉ କିଏ କଳିଷଠା ଷାଠିଏ ପାର ହେଲେ ବି ତାଙ୍କର ନାବାଳକ ଦୋଷ କଟିପାରେନି—ବେଶି ସଂଖ୍ୟାରେ ବୋଧହୁଏ କବି ଲେଖକମାନଙ୍କର । ଯେହେତୁ ଶିଶୁମନର ସହଜ ସରଳତା ହେଲା ପରା ତାଙ୍କର ବିଶେଷତ୍ୱ !

ବୟସଟା ପୁଣି ଏତେ ଜଲ୍‌ଦି ଲଗାମଛଡ଼ା ହୋଇ ଦୌଡ଼େ ଯେ, ସ୍କୁଲକଲେଜରେ ନାଁ ଲେଖାଠାରୁ ଆରମ୍ଭ କରି ଝିଅଙ୍କ ବାହାଘର ଯାକେ ବାପ, ମା' ଯେମିତି ସାବଧାନ ହୁଅନ୍ତି, ପିତୃଭକ୍ତ ସନ୍ତାନଗଣ ମଧ୍ୟ ଚାକିରିରେ ବୟସ କମାଇ ଲେଖିବାକୁ କଚେରିରେ ଏଫିଡେଭିଟ୍ ପର୍ଯ୍ୟନ୍ତ ଯାଇଥାନ୍ତି । ସାଧାରଣତଃ ଆତ୍ମଜୀବନୀ ଯେ ଲେଖନ୍ତି, ସେ ଯେ ଅନ୍ତତଃ ପ୍ରୌଢ଼ତ୍ୱ

ପାର ହୋଇ ବୃଦ୍ଧତ୍ୱ ଆଡ଼କୁ ଆଗେଇଲେଣି କିମ୍ବା ଖୋଦ୍ ବୃଦ୍ଧତ୍ୱରେ ପହଞ୍ଚିଲେଣି ଓ ତାଙ୍କର ଅବସର ନେବା ସମୟ ଆଗିଗଲାଣି, ଏଭଳି ଧାରଣା ପାଠକର ଆସିବ ସ୍ୱାଭାବିକ । ତାରୁଣ୍ୟର ଉପାସକ କେଉଁ ଲେଖକ ନିଜେ ନିଜକୁ ଏମିତି ସାର୍ଟିଫିକେଟ ଦେବାକୁ ଛାତି ଦମ୍ଭକରି ବାହାରିବ ?

ଆଉ ଗୋଟିଏ ପ୍ରତିବନ୍ଧକ — ଆମ ହିତୋପଦେଶର ବାଣୀ—''ଆୟୁର୍ବିତ୍ତଂ ଗୃହଛିଦ୍ରଂ ମନ୍ତ୍ରମୈଥୁନମେବ ଚ'' —ତା'ପର ପଦଟା ହଠାତ୍ ପଡ଼ୁନି । ଶେଷ ପଦକ ହେଲା, — ''ନବ ଗୋପ୍ୟାନି ଯତ୍ନତଃ'' । ପ୍ରଥମ ଧାଡ଼ିରେ ଯେଉଁ ପାଞ୍ଚଟି କଥାକୁ ଯତ୍ନସହକାରେ ଗୋପନ ରଖିବାକୁ ଉପଦେଶ ଦିଆଯାଇଛି, ପ୍ରକୃତ ଆତ୍ମଜୀବନୀ ଲେଖିବସିଲେ ତାହା କ'ଣ ସମ୍ଭବ ? ତେବେ ଆତ୍ମଜୀବନୀରେ ପ୍ରକାଶ କରିବାକୁ ହେବ କ'ଣ ? ବୟସକୁ ବା ଜନ୍ମ ତାରିଖକୁ ସୁଦ୍ଧା ଯଦି ଗୋପନ କରାଯାଏ, ତା'ହେଲେ ସରକାରୀ ଚାକିରି ପାଇଁ ଦରଖାସ୍ତ ନ କରି ଆତ୍ମଜୀବନୀ ଲେଖିବାକୁ ଯିବ କିଏ କାହିଁକି ? ତା'ପରେ ବିତ୍ତ ବିଷୟ ପ୍ରକାଶ କଲେ ଅବଶ୍ୟ ଆୟକର ଅଫିସର ନୋଟିସ୍ ଭୟ ମଧ ଅଛି । ଅନ୍ୟ ବିଷୟଗୁଡ଼ିକର ବ୍ୟାଖ୍ୟା ଏଠାରେ ଅତିରଞ୍ଜନ ମାତ୍ର ।

ପୁଣି ଜନ୍ମରୁ ବଞ୍ଚିଥିବା ପର୍ଯ୍ୟନ୍ତ ସବୁ କଥା ଠିକେ ଠିକେ ମନେ ପଡ଼ିବା କାଠିକର ପାଠ । ପୁଣି ଆଗକଥା ପଛକୁ ଓ ଅବିକଳ ତା'ର ଓଲଟା ଅବସ୍ଥାଟି ଘଟିବା ବିପଦ ମଧ ପଦେ ପଦେ । ସେଥି ସଙ୍ଗେ ନିଜ କଥା ବୋଲି ଅତିରଞ୍ଜନ ଦୋଷଟାକୁ ମଧ ସବୁବେଳେ କଲମ ଅଗରେ ରଖିବାକୁ ପଡ଼ିବ ।

ଅନ୍ୟ କାରଣ ହେଲା, ଲେଖକ ଓ ପାଠକ ଭିତରେ ସମ୍ପର୍କ । ଆଜିଯାକେ ଗଦ୍ୟ ପଦ୍ୟ ରଚନା ଭିତରେ ଯେତିକି ସମ୍ପର୍କ ରହିଥିଲା ବା ଯେତେ ଫାଙ୍କତାଳ ପଡ଼ିଥିଲା, ସେ ଖାଲି ପରୋକ୍ଷରେ—ପାଠକ ସଙ୍ଗେ ଲୁଚୁକାଳି ଖେଳିଲା ଭଳି—ଟିକିଏ ଅଧେ ଠାରିଦେବା କି ଛୁଇଁଦେଲାପରି ।

ଏ କିନ୍ତୁ ଏକାବେଳେ ମୁହାଁମୁହିଁ । ପାଠକମାନଙ୍କ ବିଚାର-ଦରବାରର ଖୋଦ କାଠଗଡ଼ା ଭିତରେ ! ଯାହା କହିବି ସତ କହିବି । ହଲପ୍ ପ୍ରମାଣେ କିଛି ଲୁଚାଇବି ନାହିଁ । ଆତ୍ମ-ଜୀବନୀ କି ଜୀବନୀ ଲେଖିବା ସାହିତ୍ୟର ଗୋଟାଏ ଅବଶ୍ୟ ହାଲ ଫେସନ । ଅତୀତରେ ଏ ଧାରାର ପ୍ରଚଳନ ବିରଳ । କାରଣ ହୁଏତ ଜଣେ ଲେଖକର ଜୀବନ କଳ୍ପନାବହୁଳ ସିନା, ଘଟଣାବହୁଳ ତ ନୁହେଁ । ତେଣୁ ସାମାନ୍ୟକୁ ଅସାମାନ୍ୟ କରିବା ଯେମିତି ଲେଖକର ଧର୍ମ ।

ପୁଣି ସତ ହେଉ କି ମିଛ ହେଉ, ଆତ୍ମ-ଜୀବନୀ ବୋଇଲେ ଆରମ୍ଭରୁ ଶେଷଯାକେ ଖାଲି ମୁଁ, ମୋର, ମତେ । ବହୁ ଘଟଣା ଓ ବହୁ ଚରିତ୍ର ସୃଷ୍ଟି ଭିତରେ ଗଳ୍ପ, କବିତା ବା ନାଟକ ଭିତରେ କେଉଁ ଲେଖକର ଲେଖା ଅବା ମୁଁ-ମୋର-ମତେରୁ ବିମୁକ୍ତ କି ? ସେଇଥିଲାଗି ତା'ର ଆତ୍ମଜୀବନୀ ଅନାବଶ୍ୟକ ମନେହୁଏ । 'ମୁଁ'ର ଅନ୍ୟ ନାମ ଅହଂକାର । ଅହଂକାରୀ ଦେଖାଏ ନିଜ ବଡ଼ିମା, ଆପଣା ପ୍ରୌଢ଼ି, ନିଜ ବିଜ୍ଞାପନ । ନିଜ ବଡ଼ିମା ବଖାଣିବା ଅବଶ୍ୟ ମଣିଷର ଗୋଟାଏ ସହଜ ଦୋଷ ବା ଗୁଣ । ନିଜ ବିଜ୍ଞାପନ ଦେବାକୁ ତ ତା'ର

ଜନ୍ମ ! କଥକ ମାତ୍ରେ, ଲେଖକ ମାତ୍ରେ ଆଉ କ'ଣ କହନ୍ତି ବା ଲେଖନ୍ତି କି ? ତାଙ୍କ ନିଜ ପାଇଁ ସତ ଫଳେଇ ସେ କହିଥାନ୍ତି । ଶୁଣିବା ଲୋକ ପାଖରେ ତାହା ମିଛ ହୋଇପାରେ । ସାଧାରଣ କଥାବାର୍ତ୍ତାରେ ସେଥିପାଇଁ କହିବା ଲୋକ ମୁହଁରୁ ପରା ଶୁଣାଯାଏ, 'ମତେ ସତ, ତୁମକୁ ମିଛ ।'

ନିଜ ଜୀବନକାହାଣୀ ଲେଖିବାକୁ ଏତିକି ମାତ୍ର ସମର୍ଥନ ମୋତେ ମିଳୁଛି—ନିଜର ଦୋଷଗୁଣ, ସତ ମିଛ ନିଜେ ପରଖି ଜାଣିବାପାଇଁ ଏହା ଗୋଟିଏ ବାଟ ହୋଇପାରେ । ନଇଲେ ପୃଥିବୀରେ ତ କୋଟି କୋଟି ମଣିଷ । ଓଡ଼ିଶାରେ ବି ହାରାହାରି ଦୁଇ କୋଟି । ତାଙ୍କ ଭିତରୁ କେତୋଟି ଆତ୍ମଜୀବନୀ ଅଛି କି ଆମ ସାହିତ୍ୟରେ ? ସେଗୁଡ଼ିକୁ ତ ଆଙ୍ଗୁଠି ଅଗରେ ଗଣିହେବ । ସବୁଠାରୁ ଅଲେଖା ରହିଯାଏ ବେଶି ଲୋକଙ୍କର ଜୀବନୀ । ଅବଶ୍ୟ ତାଙ୍କ ଜୀବନର ଅସଂଖ୍ୟ ଅନୁଭୂତି, ଅଭିଜ୍ଞତା ପୁଣି ଅପର୍ଯ୍ୟାପ୍ତ ଘଟଣା-ପ୍ରବାହ ହୁଏ କଳା ସାହିତ୍ୟର ଉପଜୀବ୍ୟ ।

ଆତ୍ମ-ଜୀବନୀ ଲେଖିବାର ଆଉ ଗୋଟିଏ ସମର୍ଥନ ମଧ୍ୟ ଅଛି । ଆମର ଏଇ ପୃଥିବୀ ଉପରେ କେତେ ମଣିଷ ଆଉ କେତେ ଜୀବଜନ୍ତୁ ନିତି ଜନ୍ମନ୍ତି, ପୁଣି ମରନ୍ତି । ପ୍ରତ୍ୟେକର ରୂପ ଆଉ ଚେହେରା ଅନ୍ୟଠାରୁ ପୁଣି ଅଲଗା । ଚାଲିଚଳନ ମନୋବୃତ୍ତି ବି ସେମିତି । ଏଇ ଚେହେରା ରୂପ ଚାଲିଚଳନ ବିଚାରରୁ ବାପାମାଆଙ୍କ ଠାରୁ ପୁଅଝିଅଙ୍କ ଚେହେରାରେ ଟିକିଏ ସାମଞ୍ଜସ୍ୟ ଥିଲେ ବି ଫରକ ଅଛି ସେମିତି । ଭାଇଭଉଣୀଙ୍କ ଢଙ୍ଗରଙ୍ଗରେ ବି ସେମିତି ଫରକ ବାରି ହୋଇପଡ଼େ, ଜଣକଠାରୁ ଆଉ ଜଣକର ।

ପୁରୁଣା ଲୋକେ ସେ ଫରକ ବା ସମାନତାକୁ ସହଜରେ ଠଉରେଇ ପାରନ୍ତି । ଆତ୍ମଜୀବନୀ ଲେଖିବାଟା ମଧ୍ୟ ସେହି ବିଚାରରୁ ଗୋଟାଏ ବଡ଼ ପରୀକ୍ଷା । ପୃଥିବୀଯାକର ସବୁ ମଣିଷ ଭିତରେ, ତାହାର କାମଦାମ ବିଚାର ବିବେଚନା ଭିତରେ, ଆହାର, ନିଦ୍ରା, ଭୟ, ମୈଥୁନ ଭିତରେ ଅପର ଜୀବଜନ୍ତୁଙ୍କଠାରୁ କି କି ଫରକ ରହିଛି, ଆତ୍ମ-ଜୀବନୀ ଲେଖି ବସିଲେ ସେଇ ଫରକର ସମ୍ମୁଖୀନ ହେବାକୁ ପଡ଼େ ଅତି ନିର୍ଦ୍ଦୟ ରୂପରେ ।

ସମ୍ମୁଖୀନ ହେବାକୁ ପଡ଼େ, ମୂର୍ଖ-ପଣ୍ଡିତ, ମାଲିକ-ମୂଲିଆ, ଶାସକ-ଶାସିତ, ଧନୀ-ନିର୍ଦ୍ଧନ, ପଶୁପକ୍ଷୀ, କୀଟପତଙ୍ଗ, ଜଳଚର, ସ୍ଥଳଚର ଓ ଆକାଶଗାମୀ ମଣିଷ ତଥା ଅନ୍ୟାନ୍ୟ ଜୀବଜନ୍ତୁ ସହିତ ରୋକଠୋକ୍ ମୁକାବିଲା କରିବାପାଇଁ । ଏମାନଙ୍କ ସାଥିରେ ଆପଣାର ରୀତିନୀତି, ଆଚାର ବିଚାର ଓଜନ କରିବା ପାଇଁ ଆତ୍ମ-ଜୀବନୀ ଲେଖିବାଟା ଏକ ଉପାୟ ।

ଅତି ବିଚିତ୍ର, ଅତି ଅଦ୍ଭୁତ ମୁହୁର୍ମୁହୁଃ ବିବର୍ତ୍ତମାନ ଏଇ ସୃଷ୍ଟିରେ ମଣିଷ, ପଶୁପକ୍ଷୀ, କୀଟପତଙ୍ଗ ଭିତରେ ଆହାର, ନିଦ୍ରା, ଭୟ, ମୈଥୁନ ବା ଜାଗରଣରେ ଯେମିତି ସମାନତା, ସେମିତି ରୂପଗୁଣ ବିଚାରରୁ ପ୍ରତ୍ୟେକଠାରୁ ଅନ୍ୟର ପାର୍ଥକ୍ୟ । ମୋର ଏହି ଆତ୍ମଜୀବନୀ ସେହି ସାମ୍ୟ ଓ ବ୍ୟତିକ୍ରମରେ କିଞ୍ଚିତ୍ ମାତ୍ର ଅଧ୍ୟୟନ ହୋଇପାରିଲେ ସାର୍ଥକ ହେବ ବୋଲି ମୁଁ ବିଚାର କରେଁ ।

ଜନ୍ମ-ବଧି ଖାଲି ତ ବାପାମାଆ ଭାଉ ଭଉଣୀ, ବନ୍ଧୁ କୁଟୁମ୍ବଙ୍କ ମେଳରେ ମୁଁ ବଢ଼ି ଆସିନି, ହେତୁ ହେବା କାଳୁଁ କେତେ ଯେ ପିମ୍ପୁଡ଼ି ଜଦାଙ୍କ କାମୁଡ଼ା କେତେ ଯେ ବିରାଡ଼ି କୁକୁରଙ୍କ ରାମ୍ପୁଡ଼ା ମୁଁ ସହିନି, କେତେ ଯେ ବଣି ଝିଣ୍ଟିକା, ବିଛା, ବେଙ୍ଗ, ସାପ, ଶୁଆସାରୀ, ଛେଳି ବାଛୁରୀ ମୋର ସାଙ୍ଗସାଥୀ ହୋଇ ମୋ ଜୀବନକୁ ଗଢ଼ି ନାହାନ୍ତି—କେତେ ଘୋଡ଼ା ହାତୀ, ବାଘ ସିଂହ, ଗାଡ଼ି ମଟର, ଉଠାଣିଗଡ଼ାଣି—ଧୂଳିମାଟି, ପାଣିପବନ, କାଦୁଅପଙ୍କ, ବଣପାହାଡ଼, ଆଲୁଅଅନ୍ଧାର, ସୂର୍ଯ୍ୟଚନ୍ଦ୍ର, ତାରାଆକାଶ । ଯେତେ ବଖାଣିଲେ ସେ କାହାଣୀ କ'ଣ ସରିବ, କି କେବେ ସରିଚି ଭଲା !

ହାଣ୍ଡିକ ଭାତରୁ ଗୋଟିଏ ଚିପିଲା ପରି ଲିଖିତ ଜୀବନୀ ବା ଆତ୍ମ-ଜୀବନୀରୁ ଅଲେଖା ଜୀବନୀଗୁଡ଼ିକର ବି କେତେ କଥା ଜାଣିହୁଏ । ଲେଖା-ଅଲେଖା ସବୁ ଜୀବନୀର ଆରମ୍ଭଟା ପ୍ରାୟ ସମାନ । ପୁଣି ହୁଏତ ଶେଷଟା ।

ଆରମ୍ଭରୁ ସବୁ ଘର ସବୁ ଦେଶ କଅଁଳା ପିଲାଙ୍କ କୁଆଁ କୁଆଁ, ହସକାନ୍ଦ, କି ହାତଗୋଡ଼ ଛାଟିବାରେ କିଛି ଫରକ ନାହିଁ । ଦିନକୁ ଦିନ ସେହି ପିଲାର ରୂପରଙ୍ଗ ବଦଳିଯାଏ । ଗୋଟିକଠାରୁ ଅନ୍ୟଟିକୁ ବାରିହୁଏ । ଆମ ସମାଜରେ ଏକୋଇଶିଆ, ଗଣାପୋଛା, ନାଁ ଦିଆ ପରି ଅନ୍ୟ ସମାଜରେ ବି ତାକୁ ଗୋଟିଏ ନୂଆ ମଣିଷ ହିସାବରେ ଚିହ୍ନଟ କରିବାକୁ ପ୍ରଥା ଅଛି ।

ତହୁଁ ସେ ମା' ବାପ, ପରିବାରଙ୍କ ମୁହଁରୁ ଶିଖେ ଗୋଟିଏ ଭାଷା । ତେବେ ବି ପୃଥିବୀର ସବୁ ପିଲାଙ୍କର ପେଟେଇବା, ଗୁରୁଣ୍ଡିବା, ଠିଆ ଚାଲି ଦୌଡ଼ ପ୍ରାୟ ସମାନ । ବଡ଼ ହେଲେ ବି ଖିଆପିଆ, ଶୁଆ ଉଠା, ହସ-କାନ୍ଦ, ନାଚ-ଗୀତ ସବୁ ଦେଶ ମଣିଷଙ୍କ ଭିତରେ ରହିଛି । ସ୍ତ୍ରୀ ପୁରୁଷ ପରିବାର, ବାହାପୁନିଅ, ତୀର୍ଥ ବ୍ରତ କେଉଁଠି ନ ଥାଇ ତ ନାହିଁ ।

ଦେଶକେ ଫାଁକ୍ ରହିଲା ଭଳି ଭାଷା, ପୋଷାକ, ରୀତିନୀତି, ଧର୍ମ ସମ୍ପ୍ରଦାୟର ଫରକ ତାକୁ ଗୋଷ୍ଠୀ ବା ଦଳ ଭିତରେ ଚିହ୍ନାଇଦିଏ । ଆହୁରି ବି ଚିହ୍ନାଇଦିଏ ଭଲ-ମନ୍ଦ, ଦୁଷ୍ଟ ଶିଷ୍ଟ, ସାଧୁ-ଲମ୍ପଟ, ଭଦ୍ର-ଚୋର, ପାଠୁଆ-ମୂର୍ଖ, ଧନୀ-ନିର୍ଦ୍ଧନ, ଶାସକ-ଶାସିତ, ଶୋଷକ-ଶୋଷିତ, ମାଲିକ-ମୂଲିଆ ଭେଦ ବିଚାର ।

ଶ୍ରେଣୀବିଭାଗର ଏହା ଅଳ୍ପ କେତୋଟି ନମୁନା ମାତ୍ର । ଏଥିରେ ଅଛି ମଣିଷର ଗୁଣ ଦୁର୍ଗୁଣ ପୁଣି ଅବସ୍ଥାଭେଦର ସୂଚନା । ଜନ୍ମରୁ ସବୁ ପିଲାଙ୍କ ପ୍ରକୃତି ସମାନ ଥାଇପାରେ, ଅବସ୍ଥାଭେଦରେ ଗୁଣ ଦୁର୍ଗୁଣ ଜଣାପଡ଼େ । ଭଲମନ୍ଦ ବା ଦୁଷ୍ଟ-ଶିଷ୍ଟ ଭାବରେ ସେ ପରିଚିତ ହୁଏ । ପାରିବାରିକ ଓ ସାମାଜିକ ବେଷ୍ଟନୀର ପ୍ରଭାବଦ୍ୱାରା ଗଢ଼ିଉଠେ ତା'ର ଚରିତ୍ର । ସେଥିଲାଗି ତା'ର ନିଜ କୃତିତ୍ୱ ଖୁବ୍ ବେଶି ଥାଇ ନ ପାରେ ।

କୌଣସି ଚରିତ୍ରକୁ ଖାଲି ଭଲ ବା ଖାଲି ମନ୍ଦ କହିବା ମଧ୍ୟ ଠିକ୍ ନୁହେଁ । ଗୋଟିଏ ଗୋଟିଏ ଚରିତ୍ରରେ ସବୁ ଗୁଣ ଓ ଦୁର୍ଗୁଣଗୁଡ଼ିକ ଅଳ୍ପ ବହୁତ ରହିଥାଏ । ଯେତେବେଳେ ଯେଉଁ ଗୁଣ ବା ଦୁର୍ଗୁଣଟା ସେହିପରି ଅବସ୍ଥାର ପ୍ରଭାବରେ ଅଧିକ ହୋଇପଡ଼େ, ସେତେବେଳେ ତଦନୁରୂପ ବିଶେଷଣଦ୍ୱାରା ସେ ଚରିତ୍ରଟି ଚିହ୍ନିତ ହୁଏ ।

ବ୍ୟତିକ୍ରମର ଅଭାବ ମଧ୍ୟ ନାହିଁ । ପ୍ରତିକୂଳ ଅବସ୍ଥା ଭିତରେ ସୁଦ୍ଧା ଅନେକ ସତ୍ ଚରିତ୍ର ଜନ୍ମଲାଭ କରେ । ପୁଣି ଅନୁକୂଳ ବାତାବରଣ ଭିତରେ ବି ଅସତ୍ ଚରିତ୍ରର ଢେର ଉଦାହରଣ ଅଛି । ଆତ୍ମଜୀବନୀ ଲେଖିବାକୁ ଗଲାବେଳେ ନିଜ ଜୀବନରେ ଏଇସବୁ ଗୁଣଦୁର୍ଗୁଣ ବିଚାର ଆସି ପଡ଼ନ୍ତେ । ସେଥିମଧ୍ୟରୁ କେଉଁଟି ପ୍ରକାଶ୍ୟ ବା ପ୍ରକାଶ୍ୟ ନୁହେଁ, ତାହା ମଧ୍ୟ ଭାବିବା କଥା ।

ଖାଲି ଭଲ ଦିଗଟାକୁ ପ୍ରକାଶ କଲେ ତ ପକ୍ଷପାତ ଦୋଷ । ଆଉ ଯଦି ମନ୍ଦ ଦିଗଟି ପ୍ରକାଶ କରାଯାଏ ? ସତ୍ୟକୁ ଗୋପନ ରଖିବା ମଧ୍ୟ ମିଥ୍ୟାଚାର ସଙ୍ଗେ ସମାନ ନୁହେଁ କି ? ବରଂ ତାହା ଅଧିକ ଦୋଷାବହ । କାରଣ ଲୁଚାଇ ରଖିବାଟା ଯେ ଆହୁରି ଅଧିକା ଦୋହରା ଅପରାଧ ! ଅଧା ଲୁଚାଇ 'ନରେ ବା ଗୁଞ୍ଜରେ ବା' କହିଲେ ବି ନରକ-ଦର୍ଶନ ଯୋଗ ।

ତଥାପି—

ଅପ୍ରିୟ ସତ୍ୟ ବୋଲି କଥାଟିଏ ଅଛି । ଯେଉଁ ସତ୍ୟ କହିଲେ ପରିବାର, ସମାଜ ବା ରାଷ୍ଟ୍ରର ଅପ୍ରିୟ ହେବାକୁ ପଡ଼ିବ, ତାହା ବର୍ଜୟେତ୍ । ସତ୍ୟଟା ସେଠାରେ ନ୍ୟାୟଠାରୁ ଦୋସରା । ଯେଉଁ ସତ୍ୟପ୍ରକାଶ ପରିବାର, ସମାଜ ବା ରାଷ୍ଟ୍ରର ବିରୋଧୀ, ତାହା ପ୍ରକୃତରେ ଅନ୍ୟାୟ । ଅଶ୍ଳୀଳ, ଅସାମାଜିକ ବା ରାଷ୍ଟ୍ରବିରୋଧୀ ଲେଖା ମଧ୍ୟ ସେଇ ବିଚାରରୁ ଦଣ୍ଡନୀୟ । ପାଠକଗୋଷ୍ଠୀରେ ବି ତାହାର ସମାଦର ଲାଭର ସମ୍ଭାବନା ଅତି କମ୍ । ତାହାହେଲେ ସେହିଭଳି ଉଲଗ୍ନ ସତ୍ୟ ପ୍ରକାଶ କରି ଲାଭ କ'ଣ ? ଅଶ୍ଳୀଳ ଓ ରାଷ୍ଟ୍ରବିରୋଧୀ ସାହିତ୍ୟର ପରିଣାମ କେବଳ ନିନ୍ଦନୀୟ ଓ ବାଜେୟାପ୍ତ ହେବା । ଲେଖକ ସିନା ପାଠକପାଇଁ ଲେଖେ; ବାଜେୟାପ୍ତ ହେବାକୁ କି ନିନ୍ଦା ଶୁଣିବାକୁ ତ କଦାପି ନୁହେଁ ।

ଆତ୍ମ-ଜୀବନୀ-ଲେଖକର ଆହୁରି ଏକ ବିପଦ ହେଲା, ସେ ଯେତେ ସବିନୟ ନିବେଦନ କରୁ ପଛେ ସେ ବିନୟର ଅସଲ ମର୍ମ କେବଳ ତେତିକି ଆତ୍ମପ୍ରଶସ୍ତି । ସେଥିରୁ ଅବଶ୍ୟ ଆତ୍ମପ୍ରସାଦ ମିଳେ, ସାହସ ଆସେ, ଆଉ ମଧ୍ୟ ଆତ୍ମ-ପ୍ରଶସ୍ତିର ଅର୍ଥ ହେଲା, ଅବଶ୍ୟମ୍ଭାବୀ ପତନ । ମୋର ଏଇ ପତନପାଇଁ ମୁଁ ଓ ମୋର ବନ୍ଧୁମାନେ ଦାୟୀ । ଏଥିରୁ ଉଦ୍ଧାରପାଇଁ ମଧ୍ୟ ଆମେ ଉଭୟ ଦାୟୀ ।

ସତ୍ୟାସତ୍ୟ ନ୍ୟାୟ ଅନ୍ୟାୟର ଯେତେ ରକମ ବିରୁଦ୍ଧ ବିଚାର ଅଛି, ତା' ଭିତରେ ଏଇ ଆତ୍ମ-ପ୍ରସାଦ ହିଁ ଲେଖକକୁ ଲେଖାଏ । ଗଲା କଥାଗୁଡ଼ିକୁ ମନ-ଗହନରୁ ଓଟାରି ଆଣିବାରେ ମଧ୍ୟ ଏକ ପ୍ରକାର ତୃପ୍ତି ଅଛି, ଆନନ୍ଦ ଅଛି—ଅଖଣ୍ଡ ଅବିନଶ୍ୱର ଆନନ୍ଦ । ସେ ଆନନ୍ଦ ଭିତରେ ଥାଏ ଗଭୀରତମ ବ୍ୟଥା ଆଉ ଦରଦ । "ଗୋଡ଼ ଖସି ପାଦ, ହେବାରୁ ଦରଦ ଯିବାର ଉପାୟ କହରେ ସଙ୍ଗାତ—ଗଲାଣି ତ ଗଲା କଥା !" ଏ ଦରଦ ଭିତରେ ପୁଣି କେତେ ମାଧୁର୍ଯ୍ୟ ! ସେ ବ୍ୟଥା ବଳି ପଡ଼ିଲେ ଖାଲି ପ୍ରିୟ ପାଠକ ଆଗେ ଗୁପତରେ କହିବାକୁ ହୁଏ – ଯେଉଁ ବ୍ୟଥା ଆଉ ଦରଦ ନ ଥିଲେ ଆନନ୍ଦ ହୁଏ ଅସଂପୂର୍ଣ୍ଣ, ଅର୍ଥହୀନ । ଦୁଃଖ ସୁଖ ଦୁଇଟିକୁ ଘେନି ସବୁରି ଉପରେ ତାହା ଜାଜ୍ୱଲ୍ୟମାନ ସୂର୍ଯ୍ୟ । ସୂର୍ଯ୍ୟ ସହିତ ଛାୟାପରି ଆନନ୍ଦ ସଙ୍ଗେ ସୁଖ-ଦୁଃଖର ସମ୍ପର୍କ ଜଡ଼ିତ । ଦୁଃଖ ସୁଖର ନିବିଡ଼ତମ ଅନୁଭୂତି ହିଁ ଆନନ୍ଦ ଉପତ୍ତିର ମୂହାଣ ! ସୁଖଦୁଃଖର ଅନୁଭୂତି ଅଛି, ଆନନ୍ଦ କେବଳ ଉପଲବ୍ଧିର ବସ୍ତୁ । ସେଇ ଆନନ୍ଦର

ଉପଲବ୍‌ଧିପାଇଁ ସାନବଡ଼ ସୁଖଦୁଃଖର ବିଲୁପ୍ତ ଘଟଣାଗୁଡ଼ିକୁ ଭାଷାରେ ଗୁନ୍ଥି ଆତ୍ମଜୀବନୀ ଲେଖିବାରେ ମଧ୍ୟ କିଛି ଯାଥାର୍ଥ୍ୟ ଥାଇପାରେ ।

ଅତୀତର ବିଷୟ, ବିଗତର ବିବରଣ ବଖାଣେ ଆତ୍ମଜୀବନୀ; ଅଥଚ ଅତୀତର ବହୁ ଘଟଣା କଳ୍ପନାରେ ପରିଣତ ହୋଇପଡ଼େ । ବିସ୍ମୃତିର ପର୍ଦ୍ଦା ଉହାଡ଼ରେ ଲୁଚିଯାଏ ମଧ୍ୟ ଅନେକ । ପ୍ରତି ପ୍ରଭାତ ଜୀବନ-ଗ୍ରନ୍ଥର ନୂଆ ନୂଆ ପୃଷ୍ଠା ଓଲଟାଏ, ଉଦ୍‌ଘାଟନ କରେ ନବୀନ ଆଲୋକର ଦ୍ୱାର, ପୁଣି ଶୁଣାଏ ନୂତନ ବାଣୀ । ସେ ପୃଷ୍ଠାକୁ ପଢ଼ିବାପାଇଁ ଯେ ଆଖି ଫିଟାନ୍ତି, ସେ ବାଣୀ ଶୁଣିବାକୁ କାନ ଡେରନ୍ତି, ତାଙ୍କରି କେବଳ ଜନ୍ମେ ଆଲୋକ ସନ୍ଧାନର ଯୋଗ୍ୟତା ।

କେତେ କର୍ମ-ଯୋଜନା, କେତେ ସଂକଳ୍ପ, କେତେ ଆଶା-ନିରାଶାର କାହାଣୀରେ ପରିପୂର୍ଣ୍ଣ ସେଇ ଜୀବନ-ଗ୍ରନ୍ଥର ପ୍ରତି ପୃଷ୍ଠା ! ଆକାଶ ଧରଣୀର କେତେ ରୂପ ରଙ୍ଗ ରସରେ ତାହା ସଚିତ୍ର ବିଚିତ୍ର ! ପୁଣି ତାହାର ଅଭିନବ ବାଣୀରେ ଜୀବନ-ମରଣର କେତେ ନବ ନବ ଛନ୍ଦ, କେତେ ଅହେତୁକ ତଥ୍ୟର ଆବିଷ୍କୃତି ! କେତେ ସରଳ କୁଟିଳ ହେତୁ; ଆଉ ଅପୂର୍ବ ପୁଲକ ସ୍ପନ୍ଦନ ! ସେଇ ଆଲୋକ ଭିତରେ ପୁଣି କେତେ ତରଳ ଚଞ୍ଚଳ ଛାୟା, କେତେ ନିବିଡ଼ ଗଭୀର ଅନ୍ଧକାର, ହସ କାନ୍ଦ, ମିଳନ, ବିଚ୍ଛେଦ ! କେତେ ହିଂସାଦ୍ୱେଷ, ପ୍ରେମ-ପ୍ରଣୟର ଜୁଆର-ଭଟ୍ଟା ! କେତେ ଜୟ ପରାଜୟ, ସାର୍ଥକତା ଆଉ ବ୍ୟର୍ଥତା, କେତେ ଦୃଶ୍ୟ ଅଦୃଶ୍ୟ, ଶ୍ରୁତ ଅଶ୍ରୁତ କଳ୍ପନା ଜଳ୍ପନା, ବବାସ୍ତବ ଆସ୍ତବର ବିଚାର ! ସତ୍ୟାସତ୍ୟ ନ୍ୟାୟ ଅନ୍ୟାୟର କେତେ ଅଦ୍ଭୁତ ସିଦ୍ଧାନ୍ତ ! କେତେ ମର୍ମଭେଦୀ ଦୀର୍ଘଶ୍ୱାସ, ଗଗନଭେଦୀ ହାହାକାର, କେତେ ବାଙ୍‌ମୟ ବାଚାଳତା, କେତେ ନିଘୋଡ଼ ନୀରବତା, କେତେ ବିମୋହ, କେତେ ବିସ୍ମୟ ! ପୁଣି କେତେ... ! ପ୍ରତି ପ୍ରଭାତ ପ୍ରତି ମୁହୂର୍ତ୍ତର ପଦକ୍ଷେପରେ ଧ୍ୱନିତ, ନୀରବିତ ସେଇ ଜୀବନ-ଗ୍ରନ୍ଥର ପ୍ରତି ପୃଷ୍ଠା ।

ନୂଆ ପୁରୁଣା ଲିଖିତ ଭାଷାର ଗ୍ରନ୍ଥମାନଙ୍କରେ ଆତ୍ମଜୀବନୀ ଦେଖାଯାଏ । ସେଥିମଧ୍ୟରୁ ଅଧିକାଂଶ ବୋଧ ହୁଏ କବି ଲେଖକମାନଙ୍କର । ବାଣିଜ୍ୟ-ବ୍ୟବସାୟ, ଭ୍ରମଣ-ଆବିଷ୍କାର, ରାଜନୀତି, ସମରନୀତି, ରାଷ୍ଟ୍ର ବା ସମାଜର ନାନା କ୍ଷେତ୍ରରେ ଅନେକେ କାମ କରନ୍ତି । ତାଙ୍କ ଭିତରେ ବହୁ ବିଚିତ୍ର ଘଟଣାବହୁଳ ଜୀବନ ଅଛି; ମାତ୍ର ଲେଖିବାର ଅଭ୍ୟାସ ଅଭାବରୁ ତାଙ୍କ ଆତ୍ମଜୀବନୀ ଅଲେଖା ରହିଯାଏ; କିନ୍ତୁ ତାଙ୍କ କର୍ମ ଓ ଆଦର୍ଶ ପ୍ରେରଣା ଯୋଗାଏ ଜୀବନୀ-ଲେଖକମାନଙ୍କୁ । ସେମାନେ ନିଜେ ନିଜ ଜୀବନୀ ନ ଲେଖିଲେ ବି ଅନ୍ୟମାନଙ୍କ ଦ୍ୱାରା ଲେଖାନ୍ତି । ତା'ଫଳରେ ବାଲ୍ମୀକି ବ୍ୟାସଙ୍କଠାରୁ ବେଶି ପୂଜା ପା'ନ୍ତି—ରାମ ସୀତା ବା ରାଧା କୃଷ୍ଣ—ସେଇପରି ପୁଣି ବୁଦ୍ଧ ଯିଶୁ ବା ମହମ୍ମଦ ।

ସେମାନଙ୍କ ଭଳି କବି-ଲେଖକର ଜୀବନ ପ୍ରାୟ ଲୌକିକ ବା ଅଲୌକିକ ଘଟଣାରେ ପୂର୍ଣ୍ଣ ନୁହେଁ; ଅଥଚ କବି-ଲେଖକର ମାନସ ରାଜ୍ୟହିଁ ଅସଂଖ୍ୟ ଘଟଣାମୟ । ସେଇଠି ସବୁ ଦ୍ୱନ୍ଦ୍ୱ ଓ ସଂଘର୍ଷର ଅଭିଜ୍ଞତା; ତେଣୁ ତାଙ୍କ ଆତ୍ମ-ଜୀବନୀରେ ଘଟଣା ଅପେକ୍ଷା କଳ୍ପନାର

ବିଳାସ ଅଧିକ ହେବା ସ୍ୱାଭାବିକ । ସେଥିଲାଗି ଜର୍ମାନ କବି ଗେଟେ ସ୍ୱୀୟ ସୁବିଖ୍ୟାତ ଆତ୍ମ-ଜୀବନୀର ନାମକରଣ କରିଥିଲେ, ''କବିତା ଓ ସତ୍ୟ'' । ଲେଖକ ଜୀବନକୁ ଏପରି ଏକ ଅର୍ଥପୂର୍ଣ୍ଣ ସଂକ୍ଷିପ୍ତ ସୂତ୍ରରେ ନିବଦ୍ଧ କରିବାର ଅନ୍ୟ ଉଦାହରଣ ନାହିଁ ।

ଯଥାର୍ଥରେ ଆତ୍ମ-ଜୀବନୀ ଗୋଟିଏ କାବ୍ୟବିଶେଷ । ସେ କାବ୍ୟର ବିଶେଷତ୍ୱ—ତାହା ସତ୍ୟ ଘଟଣାସମନ୍ୱିତ । କବିତା ପୁଣି ଇତିହାସର ଏକ ଜୀବନ୍ତ ସାଲିସ୍ । କବିତାର କଳ୍ପନା-ବିଳାସ ସହିତ ଇତିହାସର ମିଳନ କ୍ଷେତ୍ର ସେପରି ଆଉ କାହିଁ ଦେଖାଯାଏ ନାହିଁ । ଇତିହାସ କହିଲେ ବି ଖାଲି ତ ସନ ତାରିଖର ଶୁଷ୍କ ଘଟଣାପୂର୍ଣ୍ଣ ବିବରଣୀ ନୁହେଁ ! ଲେଖକର କଳ୍ପନା-ଚାତୁର୍ଯ୍ୟମୟ ଜୀବନ ସଙ୍ଗେ ଐତିହାସିକ ସତ୍ୟାନୁସନ୍ଧିତ୍ସାର ଏକ ଦୈବାତ୍ ସମାବେଶ ଘଟେ ସେହି କ୍ଷେତ୍ରରେ ।

କବିତାରେ ଆତ୍ମ-ଜୀବନୀ ରଚନା ଉଦ୍ୟମ ଏ ଯୁଗର କବିମାନଙ୍କଠାରେ କ୍ୱଚିତ୍ ଦେଖାଯାଏ; ମାତ୍ର କବି-ଜୀବନକୁ ରସାଳତର କରିବାପାଇଁ ଏହା ଗୋଟିଏ ଉତ୍ତମ ଦିଗ । ଅବଶ୍ୟ କବିର ସାନବଡ଼ କବିତାଗୁଡ଼ିକ ଏକ ଛନ୍ଦୋମୟ ଜୀବନର ଅଙ୍ଗବିଶେଷ । ପରୋକ୍ଷରେ ତାହା କବିର ରସାନୁଭୂତି ଓ ଅଭିଜ୍ଞତାର ଲିପିକା ମାତ୍ର । ପୁଣି ଏକ ଅନ୍ତରୀଣ, ସ୍ୱେଚ୍ଛା-ବନ୍ଦୀ ବିପ୍ଳବୀ ସୈନିକର ଆତ୍ମିକ ସଂଘର୍ଷର ପରିଚୟ ମଧ୍ୟ । ଅତୀତରୁ ଆଜିପର୍ଯ୍ୟନ୍ତ ଏଇ ବନ୍ଦୀ-ଜୀବନର ମର୍ମନ୍ତୁଦ କାହାଣୀରେ ବିଶ୍ୱ ସାହିତ୍ୟ ରକ୍ତ-ରଞ୍ଜିତ ହୋଇଉଠିଚି ।

କବି ଶିଳ୍ପୀମାତ୍ରେ ନିଜ ଜୀବନରୁ ଯାହା ଲୋଡ଼େ, ତାହାର ସର୍ବୋପରି ହେଲା ଏକ ମୁକ୍ତ ଅବାଧ ନିର୍ଭୀକ ଆତ୍ମପ୍ରକାଶ । ସେ ପ୍ରକାଶ ଅସ୍ୱୀକାର କରେ ରାଷ୍ଟ୍ର ସମାଜର ନୀତି-ନିୟମ-ଜର୍ଜରିତ ନିଗଡ଼ ବନ୍ଧନକୁ, ସୂର୍ଯ୍ୟ ଯେପରି ଅନ୍ଧାରକୁ ଅସ୍ୱୀକାର କରେ ।

ଯେଉଁ ଦୁଇଟି ମହାକାବ୍ୟକୁ ମୂଳଦୁଆ କରି ଭାରତର ସାହିତ୍ୟ ସୌଧ-ସୃଷ୍ଟିରେ ଆଜି ସୁଦ୍ଧା ବିରାମ ନାହିଁ, ତାହାର ଉଭୟ କବି ନିଜ କୃତିରେ ହିଁ ଆତ୍ମଜୀବନୀର କିଞ୍ଚିତ୍ ସୂଚନା ଦେଇଛନ୍ତି । ତା'ରି ଭିତରେ କବିତା ଓ ସତ୍ୟର ଅପୂର୍ବ ସମାବେଶ ଦେଖାଯାଏ । ସେ ସତ୍ୟ ସମାଜ ରାଷ୍ଟ୍ରର କୌଣସି ବନ୍ଧନକୁ ଯେପରି ଭ୍ରୂକ୍ଷେପ କରି ନାହିଁ । ତାହା ଆଧୁନିକ ବିଚାରରେ ସୁଦ୍ଧା ବିସ୍ମୟକର । ତହିଁରେ ରାଷ୍ଟ୍ର ପୁଣି ସମାଜ ବିରୋଧୀ ଘଟଣାଗୁଡ଼ିକର ଯେଉଁ ସମର୍ଥନ ଅଛି, ସେ ଦୃଷ୍ଟିରୁ ନିନ୍ଦିତ ଓ ବାଜେୟାପ୍ତ ହେବା ଛଡ଼ା ତ ତାହାପ୍ରତି ଅନ୍ୟ ସୁବିଚାର ନାହିଁ !

ଜଣେ କବି (ଆଦିକବି) ନିଜ ଜୀବନର ପ୍ରାରମ୍ଭିକ ପରିଚୟ ଦେଲେ—ସେ ଥିଲେ ମଣିଷମାରୁ ଡକାଏତ ! ଆର ଜଣକ (କବୀଶ୍ୱର) ଅଜାତି ଜାରଜ—ନିଜ ପିତା ମୁନି ପରାଶରଙ୍କର ଅବିବାହିତା କୈବର୍ତ୍ତ କନ୍ୟା ମତ୍ସ୍ୟଗନ୍ଧା ସଙ୍ଗେ ଅବୈଧ ସଙ୍ଗମରୁ ତାଙ୍କର ଜନ୍ମ । ସେ ପୁଣି ନାମକରଣ ଦେଲେ ମହାପୁଣ୍ୟଭୂମି ଭାରତର । ଭାରତକୁ ଗଢ଼ିଲେ 'ମହାଭାରତ' କରି ।

ଯାହାଙ୍କ ନାମରେ ସେ ଭୂମି ନାମିତ ହେଲା, ସେ ମଧ୍ୟ ଥିଲେ ଅବୈଧ ଗାନ୍ଧର୍ବ ବିବାହର ସନ୍ତାନ । ପୁଣି ସେଇ ଭରତଙ୍କ ମା' ? ବିଶ୍ୱରୂପସୀ ବିଶ୍ୱ ସାହିତ୍ୟର ବନ୍ଦନୀୟା ଶକୁନ୍ତଳା ? ସ୍ୱର୍ବେଶ୍ୟା ମେନକା ସଙ୍ଗେ ବିଶ୍ୱାମିତ୍ରଙ୍କ ଅବୈଧ ସମ୍ପର୍କରୁ ଜନ୍ମ ତାଙ୍କର । ଜନ୍ମ ପରେ ତେଣୁ ପକ୍ଷୀମାନଙ୍କ ଜିମା ଅରଣ୍ୟ-ପଥପ୍ରାନ୍ତରେ ପରିତ୍ୟକ୍ତା ସେ ।

ଆମର ପବିତ୍ର ମହତ୍ ମନ୍ଦିରମୟ ଦେବଭୂମି କଳିଙ୍ଗ ? ପର ସ୍ତ୍ରୀ ଔରସରେ ସନ୍ତାନ-–ଦୀର୍ଘତମା ଋଷିଙ୍କ ସଙ୍ଗେ ବଳି ରାଜାଙ୍କ ରାଣୀ ସୁଦେଷ୍ଣାଙ୍କ ଗୋପନ ସହବାସର ଫଳ !

କହିବାକୁ ପଛେ ଜିଭ ନ ଲେଉଟୁ–ଆମେ ଭାରତବାସୀ, କଳିଙ୍ଗବାସୀ ସମସ୍ତେ ପଛେ ଜାରଜ ବୋଲାଉଁ–ଯେଉଁ କବିମାନେ ସତ୍ୟପ୍ରକାଶରେ ଅକୁଣ୍ଠିତ, ବିଶ୍ୱସାହିତ୍ୟରେ ଆଦର୍ଶ ତାଙ୍କର ଅତୁଳନୀୟ । ନିଃସଙ୍କୋଚରେ ସେମାନେ ନିଜ ନିଜ ଜୀବନୀର ସତ୍ୟ-ସ୍ୱରୂପ ଯେପରି ଦେଖାଇଛନ୍ତି, ଅତ୍ୟାଧୁନିକ ସାହିତ୍ୟରେ ବି ତାହା ବିରଳ । ଯେ ପର୍ଯ୍ୟନ୍ତ ବେଦ ବେଦାନ୍ତ ରାମାୟଣ ମହାଭାରତକୁ ଆମେ ନିଜର ବୋଲି ନଜିର୍ ବାଢୁଥିବୁଁ, ତା' ଭିତରୁ ସତ୍ୟ ସୃଷ୍ଟିର ଏଇ ନଜିର୍‌ଟି ଛାଡ଼ିଦେଲେ ପୃଥିବୀରେ ଆଉ ପାଦ ରଖିବାକୁ ବା ସ୍ଥାନ କାହିଁ ଆମର ? ସାଧାରଣ ବିଚାରରେ ଏଇ ଅସାମାଜିକ ବିଶୃଙ୍ଖଳ ଘଟଣାଗୁଡ଼ିକୁ ଅତିରିକ୍ତ ବୋଲି ବିଚାରିଲେ ମଧ୍ୟ ତାହା ଯେ ଆମ ସଂସ୍କୃତିର ମୂଳପିଣ୍ଡ ! ସତ୍ୟ ଯେ ସବୁ କାଳରେ ଅତିରିକ୍ତ, ଅସାଧାରଣ, ପୁଣି ଅବାନ୍ତର ବୋଧହୁଏ–ଅବ୍ୟକ୍ତିକ ଓ ଅସାମାଜିକ !

ପରସ୍ପର ବିରୋଧୀ କର୍ମ-ଧାରା ଓ ଭାବଧାରାର ସମଷ୍ଟିରୁ ପୁଣି ସଂଘର୍ଷରୁ ଅବଶ୍ୟ ମନୁଷ୍ୟ-ସଂସ୍କୃତି ଗଢ଼ା । ବିଶ୍ୱାସ ସଂଶୟର ଦ୍ୱନ୍ଦ୍ୱମୟ ପ୍ରକାଶ ତାହା, ପଜିଟିଭ ନେଗେଟିଭ୍ ଦୁଇଟି ତାରରୁ ବିଜୁଳି ଶକ୍ତି ଉପନ୍ନ ହେଲା ଭଳି । ତେଣୁ କୌଣସି ଆତ୍ମ-ଜୀବନୀ ଜଣେ କେହି ବ୍ୟକ୍ତିର କେବଳ ହୋଇ ନ ପାରେ–ପାରିପାର୍ଶ୍ୱିକ ବହୁ ବ୍ୟକ୍ତିଙ୍କ ଜୀବନର ତାହା ସମଷ୍ଟି ମାତ୍ର । ସାମାଜିକ ପ୍ରାଣୀ ମନୁଷ୍ୟକୁ ତା'ର ପ୍ରାକୃତିକ କିମ୍ବା କୃତ୍ରିମ ବେଷ୍ଟନୀ ଭିତରୁ ଅଲଗା କରି ହେବ ନାହିଁ । ସେ ବେଷ୍ଟନୀରେ ଖାଲି ଚିହ୍ନା ଅଚିହ୍ନା ମନୁଷ୍ୟ ତ ନ ଥାନ୍ତି–ପଶୁପକ୍ଷୀ, କୀଟପତଙ୍ଗ, ବୃକ୍ଷଲତା, ନଦୀଗିରି, ହ୍ରଦ ଅରଣ୍ୟ, ଆକାଶ, ଚନ୍ଦ୍ର-ସୂର୍ଯ୍ୟ-ତାରା, ଶୀତ ଗ୍ରୀଷ୍ମ ନାହିଁ କ'ଣ ତା' ଭିତରେ ?

ଆତ୍ମ-ଜୀବନୀକୁ ତେଣୁ ବାସ୍ତବ ଅବାସ୍ତବ ଘଟଣାସମ୍ବଳିତ ନାଟକ ଉପନ୍ୟାସ ସଙ୍ଗେ ମଧ୍ୟ ତୁଳନା କରାଯାଇଥାଏ ।

ନାଟକ-ଉପନ୍ୟାସର ପ୍ରଧାନ ନାୟକ ଗଢ଼ିଉଠେ ଏକାଧିକ ଚରିତ୍ର ପୁଣି ପରିସ୍ଥିତିକୁ ଘେନି । ପରିସ୍ଥିତିର ସବୁ ମୁହୁର୍ମୁହୁଃ ପରିବର୍ତ୍ତିତ ବୈଚିତ୍ର୍ୟ ଭିତରେ ପାରିପାର୍ଶ୍ୱିକ ଗୌଣ ଚରିତ୍ରଗୁଡ଼ିକ ବିକଶିତ ହୁଅନ୍ତି । ପୁଣି ସବୁରି ପ୍ରଭାବରେ ପ୍ରଧାନ ନାୟକ-ନାୟିକାଙ୍କର ଜୀବନ୍ୟାସ । ସବୁରି ଅଭିଜ୍ଞତାରୁ ଉପନ୍ନ ହୁଏ କେନ୍ଦ୍ର ଚରିତ୍ର । ଆଧୁନିକ ନାଟକ ଉପନ୍ୟାସରେ ଅବଶ୍ୟ ଏହି ନିୟମର ବ୍ୟତିକ୍ରମ ଲାଗି ଉଦ୍ୟମ ହୋଇଛି । ପ୍ରଧାନ ନାୟକ ବା କେନ୍ଦ୍ର ଚରିତ୍ରକୁ ସାଧାରଣ ଗତାନୁଗତିକ କରିବା ହେଲା, ଆଧୁନିକତାର ଗୋଟିଏ ଲକ୍ଷଣ । ମାତ୍ର ତାହା ଲେଖକମାନଙ୍କର ବିନୟ ପ୍ରକାଶ ବା ରାଜନୀତିଜ୍ଞମାନଙ୍କ ବକ୍ତୃତା ଭଳି ଗୋଟିଏ କଳା-କୌଶଳ ମଧ୍ୟ ହୋଇପାରେ । ଅସାଧାରଣର ସ୍ଥାନ ସାହିତ୍ୟରେ ସହଜ ସୁଲଭ । ଅସାଧାରଣପାଇଁ ବର୍ଣ୍ଣନା କଳ୍ପନାର ଅଭାବ ନାହିଁ । ସାଡ଼ମ୍ବର ଭାଷା, ଉପମା ଅଳଙ୍କାର ସବୁ ତାହାଲାଗି ସୁସଜ୍ଜିତ, ମାତ୍ର ସାଧାରଣ ପାଇଁ ନୀରସ ନିରାଭରଣ ଭାଷାକୁ ମନୋଜ୍ଞ କରିବା ସବୁଠାରୁ କଠିଣ ।

ନିଜ ଜୀବନ-କଥା ଲେଖିବାକୁ ଗଲାବେଳେ ଏହା ମୋର ବେଶି ମନେପଡ଼େ । ଏହା ହିଁ ମୋର ବଡ଼ ଭୟ ମଧ୍ୟ । ପ୍ରଧାନ ନାୟକ ନାୟିକାଙ୍କୁ ବାଦ୍‌ଦେଇ ସାହିତ୍ୟ ସୃଷ୍ଟିରେ ମୁଁ ଅନଗ୍ରସର—ପୁଣି ସାହିତ୍ୟ ସୃଷ୍ଟି ବୋଇଲେ ମଧ୍ୟ ଦାବି ମୋର ଯେ କେଡ଼େ ସାମାନ୍ୟ ! ଆତ୍ମଜୀବନୀ ରଚନାରେ ଆପଣାକୁ ଗୋଟିଏ ସାଧାରଣ ଚରିତ୍ର କରି ଦେଖାଇ ପାରିବାରେ ହିଁ ଖୁବ୍ ସାର୍ଥକତା ଅଛି । ତହିଁକି ମୋର ଯୋଗ୍ୟତା ବିଷୟରେ କିନ୍ତୁ ଘୋର ସନ୍ଦେହ । ପରାଜିତ ମନୋଭାବର ଏହା ଏକ ଲକ୍ଷଣ । ଏଇ ମନୋଭାବ ହିଁ ବାରମ୍ବାର ମୋତେ ଦଂଶନ କରୁଛି । ପୁଣି ସେ ଦଂଶନରେ ଛଟପଟ ହୋଇ ଆଜି ମୋର ଏଇ ଉଦ୍ୟମର ସୂତ୍ରପାତ ।

କାବ୍ୟ ନାଟକ ଉପନ୍ୟାସରେ ପ୍ରଧାନ ନାୟକ ନାୟିକା ଅବା ଚରିତ୍ରଚିତ୍ରଣକୁ ବାଦ ଦେବାଟା ଖାଲି ଅବଶ୍ୟ ଫାଁକି ଓ ବାହାଦୁର୍‌କି ପରି ମନେହୁଏ । ରାଜତନ୍ତ୍ର, ଗଣତନ୍ତ୍ର, ସମାଜବାଦ ବା କମ୍ୟୁନିଜିମ୍ କୌଣସି ପ୍ରକାର ରାଷ୍ଟ୍ରରୁ ତ ପ୍ରଧାନ ନାୟକ ବାଦ୍ ନୁହନ୍ତି । ଟିକିଏ ଯାହା ପ୍ରକାରଭେଦ ସିନା ! ସାଧାରଣକୁ ଅସାଧାରଣ, ଛୋଟକୁ ବଡ଼ କରିବା ପ୍ରୟାସ ଓ ପ୍ରଯତ୍ନ ତହିଁରେ ସୁସ୍ପଷ୍ଟ ।

ମୋ ଭଳି ଜଣେ ଲେଖକର ଆତ୍ମ-ଜୀବନୀର ପ୍ରକୃତ କିଛି ମୂଲ୍ୟ ଅଛି କି ନା, ଏ ପ୍ରଶ୍ନର ସମାଧାନ ଦୂରେ ଥାଉ, କୌଣସି ଉପାୟରେ ତହିଁରୁ ତ୍ରାହି ପାଇବା ହିଁ ଅସଲ ଚିନ୍ତା । ଆତ୍ମ-ମର୍ଯ୍ୟାଦା ଉପରେ ଆଞ୍ଚ ଆଣିଲା ଭଳି ଘଟଣାଗୁଡ଼ିକୁ ସଂକ୍ଷିପ୍ତ କରି ଆପଣାକୁ ମର୍ଯ୍ୟାଦାବନ୍ତ ଭାବରେ ଦେଖାଉଥିବା ଘଟଣାକୁ ପ୍ରକ୍ଷିପ୍ତ କରିବା ହିଁ ନିଜ କଥା ବଖାଣିବା ଲୋକର ଗୋଟିଏ ସାଧାରଣ ତ୍ରୁଟି ବା ଗୁଣ । ଏହା ଖାଲି ସାଧାରଣ ନୁହେଁ ତ ସ୍ୱାଭାବିକ ମଧ୍ୟ । ଓଡ଼ିଆରେ ପରା ପ୍ରବଚନ ଅଛି, "ଆରେ ସଖି, ଆପଣା ମହତ ଆପେ ରଖି ।"

ସ୍ୱୟଂ ଗୀତାରେ ମଧ୍ୟ—

ଉଦ୍ଧରେଦାତ୍ମନାଽତ୍ମାନଂ ନାତ୍ମାନମ୍ ଅବସାଦୟେତ୍ ।
ଆତ୍ମୈବ ହ୍ୟାତ୍ମନୋ ବନ୍ଧୁରାତ୍ମୈବ ରିପୁରାତ୍ମନଃ ॥

ଆତ୍ମଜୀବନୀ ଲେଖିବାପାଇଁ ଏହାଠୁଁ ବଳି ବଡ଼ ପରାମର୍ଶ ନାହିଁ । କେବଳ ଆତ୍ମାଦ୍ୱାରା ଆତ୍ମାକୁ ଉଦ୍ଧାର କର । କାରଣ ନିଜେ ହିଁ ନିଜକୁ ଉଦ୍ଧାର କରିପାର, ଆଉ କେହି ନୁହେଁ । ପୁଣି କଦାପି ନିଜକୁ ଅବସାଦଗ୍ରସ୍ତ କର ନାହିଁ, କୌଣସି କାରଣରୁ ଦୁଃଖ ଦିଅ ନାହିଁ । ନିଜେ ତୁମେ ନିଜର ବନ୍ଧୁ, ପୁଣି ନିଜେ ହିଁ ନିଜର ଶତ୍ରୁ । ଆଉ କେହି ତମର ବନ୍ଧୁ ଅଥବା ଶତ୍ରୁ ହୋଇ ନ ପାରେ । ବାହାରର ସେଭଳି ବନ୍ଧୁତା ବା ଶତ୍ରୁତାର ମୂଲ୍ୟ ଯେମିତି ସାମାନ୍ୟ, ତା'ର ସ୍ଥାୟିତ୍ୱ ମଧ୍ୟ ଅଳ୍ପ । ପୁଣି ପରମ ବନ୍ଧୁ ସୁଦ୍ଧା ପରକ୍ଷଣରେ ଶତ୍ରୁ ପାଲଟି ଯାଇପାରେ । ଆଉ ଠିକ୍ ତା'ର ଓଲଟା ମଧ୍ୟ । ତେଣୁ ସବୁ କ୍ଷେତ୍ରରେ ଆତ୍ମନିର୍ଭର ହେବା ହିଁ ନିରାପଦ । ତେବେ ସେ କ'ଣ ସହଜ ? ସହଜ ନୁହେଁ ବୋଲି ତ ଏହି ଉପଦେଶ !

କେତେ ଦେଶରେ ନୂଆ ନୂଆ ଆବିଷ୍କାର କରାଯାଇ ପୃଥିବୀ ସଭ୍ୟତା ଗଢ଼ିଉଠିଛି । ମେରୁ ଆବିଷ୍କାର, ଆମେରିକା ଆବିଷ୍କାର, ଗ୍ରହ ଉପଗ୍ରହ, ପୁଣି ଶିକ୍ଷା କୃଷି ଶିଳ୍ପ ଚିକିତ୍ସା ନାନା

କ୍ଷେତ୍ରରେ ବହୁ ବିଚିତ୍ର ଆବିଷ୍କରଣ ଫଳରେ ମନୁଷ୍ୟ ଆପଣା ସୁଖ ସମୃଦ୍ଧି ବଢ଼ାଇଛି । ମାତ୍ର ଭାରତବର୍ଷ କରିଛି ଆତ୍ମାର ଆବିଷ୍କାର—ଯେଉଁ ଆବିଷ୍କାର ବ୍ୟତିରେକେ ସବୁ ସୁଖସମୃଦ୍ଧି ସତ୍ତ୍ୱେ ଶାନ୍ତି ଓ ଆନନ୍ଦ ମିଳେ ନାହିଁ ।

ଆତ୍ମାର ସେହି ଆବିଷ୍କୃତି ଲାଗି ଭାରତର କୁଡ଼ କୁଡ଼ ପୁରାଣ, ଇତିହାସ, କାବ୍ୟ, ସାହିତ୍ୟ, ଦର୍ଶନ, ବିଜ୍ଞାନ ନିୟୋଜିତ । ଆତ୍ମଜୀବନୀ ରଚନା ତାହାରି ଗୋଟିଏ ଅଙ୍ଗ ବିଶେଷ । ମଣିଷର ଜନ୍ମ ହୁଏ କାହିଁକି, କାହିଁକି ସେ ବଞ୍ଚିରହେ, ପୁଣି କାହିଁକି ବା ତା'ର ମୃତ୍ୟୁ ? ସବୁ ଆବିଷ୍କାର ସତ୍ତ୍ୱେ ଏହି ଚିରନ୍ତନ ପ୍ରଶ୍ନର ତ ଉତ୍ତର ମିଳିଲା ନାହିଁ—ପ୍ରତି ମଣିଷର ଶରୀର ଗଠନ ଯେମିତିକି ଗୋଟିଏ ଦୀର୍ଘ ପ୍ରଶ୍ନବାଚକ ଚିହ୍ନ । ସେ ଚିହ୍ନର ଉପରିଭାଗଟି ମଣିଷର ମୁଣ୍ଡ, ମଝିଟି ଦେହ, ଆଉ ତଳେ ତା'ର ପାଦ । ଯୁଗେ ଯୁଗେ ସେଇ ପ୍ରଶ୍ନଟା । ସେ କରୁଛି, ତଥାପି ତାହା ଅନୁତ୍ତରିତ ।

ମୋ ଆଗରେ ଆତ୍ମ-ଜୀବନୀ ଗୋଟାଏ ବଡ଼ କୈଫିୟତ୍ ହୋଇ ଠିଆ ହୋଇଛି ସେହି ଦୃଷ୍ଟିରୁ ।

ପୃଥିବୀ-ଇତିହାସର ଏକ ଅଶ୍ରୁତପୂର୍ବ ଅଭୂତପୂର୍ବ ଅଚିନ୍ତନୀୟ ଘଟଣାପ୍ରବାହ ଭିତରେ ବଞ୍ଚିଲି ମୁଁ । ଦୁଇଟା ମହାସମର ସଙ୍ଗେ ବିଜ୍ଞାନର ଅସମ୍ଭବ ଅଗ୍ରଗତି, ଭାରତର ସ୍ୱାଧୀନତା ପୁଣି ଓଡ଼ିଶାର ସ୍ୱାତନ୍ତ୍ର୍ୟ । ସେଥିଲାଗି ଯେଉଁ ସାଧନା ଓ ଫାଁକି, ତ୍ୟାଗ ଓ ଭୋଗ, ସାହସ ଓ ଭୀରୁତା, ବୀରତ୍ୱ ଓ ଦୁର୍ବଳତା ପୁଣି ଆତ୍ମବଳି ବା ଲାଭକ୍ଷତି—କୌଣସି ତାଲିକାରେ ହୁଏତ ମୋ ନାମଟା ବିଶେଷ ଉଲ୍ଲେଖଯୋଗ୍ୟ ନୁହେଁ । ତେଣୁ ମାନସଲୋକରେ ବା ଚିନ୍ତା-କ୍ଷେତ୍ରରେ ଯଦି କିଛି 'ଏଡ୍‌ଭେଞ୍ଚର' ବା ଦୁଃସାହସ ଥାଏ, ସେତିକି ମୋର ସମ୍ବଳ । ତାକୁଇ କେବଳ ଭାଷା ଆଉ କଳ୍ପନାରେ ଗୁନ୍ଥି ସଜାଇ ଥୋଇବା ଛଡ଼ା ତ ଅନ୍ୟ ଉପାୟ ନାହିଁ ।

ଆଗରୁ କିନ୍ତୁ କହି ରଖୁଛି, ଯେତେ ବିନୟ ପ୍ରକାଶ କଲେ ବି ନିଜ ସଫେଇଟା ହେଲା ଆତ୍ମଜୀବନୀ । ନିଜକୁ ରକ୍ଷା କରିବାର କୈଫିୟତ୍— ଆତ୍ମାନମ୍ ସତତମ୍ ରକ୍ଷେତ୍ । ନିଜ ରକ୍ଷଣେ ଅସମ୍ଭବ, ସେ କାହୁଁ ପରକୁ ରଖିବ ? ପରକୁ ରଖିବା ପ୍ରଶ୍ନଟା ଆଗ ନୁହେଁ । ଆଗ ହେଲା ଆପଣାକୁ ରଖିବା, ଆପଣାକୁ ଉଦ୍ଧାର କରିବା ।

ସନ୍ତାନକୁ ପ୍ରଥମେ ମା ଧାରଣ କରନ୍ତି ନିଜ ଗର୍ଭରେ । ତା'ପରେ ଯେଉଁଦିନ ମାତୃଗର୍ଭରୁ ତା'ର ପତନ, ସେଦିନ ତାକୁ ଧାରଣ କରେ—ଧରଣୀ, ମାତ୍ର ଏହି 'ଧାରଣ'ର ଅର୍ଥ 'ଉଦ୍ଧାର' ନୁହେଁ । ପୃଥିବୀ ଉପରେ ତା'ର ଯେଉଁ ପତନ, ତହିଁରୁ ସେ ନିଜକୁ ନିଜେ ଉଦ୍ଧାର କରେ । ଲେଖକପକ୍ଷରେ ଆତ୍ମ-ଜୀବନୀ ଲେଖିବା ଏହି ଉଦ୍ଧାରର ଏକ ଉପାୟ ମାତ୍ର ।

ତାହା ଏକ ସ୍ୱୀକାରୋକ୍ତି, ମୃତ୍ୟୁ ଓଆରେଣ୍ଟ୍ ଉପରେ ଶେଷ ଦସ୍ତଖତ । ଆଜିପର୍ଯ୍ୟନ୍ତ ମୁଁ ଏଇ ଓଆରେଣ୍ଟ୍‌ରେ ସହି କରିବାକୁ ପଛେଇଥିଲି । ଏହାକୁ ଆଡ଼େଇ ଚାଲିଥିଲି; ମାତ୍ର ଗୋଟିଏ ପଦାର୍ଥକୁ ଆଡ଼େଇ ଯିବା ସାଧ୍ୟ ନାହିଁ ।

ସେ ମୋର ଜନ୍ମ-ଜାତକ । ଦେଢ଼ଇଞ୍ଚ ଚଉଡ଼ା, ସାଢ଼େ ଆଠଇଞ୍ଚ ଲମ୍ବ ଖଣ୍ଡିଏ ତାଳପତ୍ର, ଲେଖନ ମୁନରେ ଖୋଳା ହୋଇଛି ସାନ ସାନ ସୁନ୍ଦର ଓଡ଼ିଆ ଅକ୍ଷର । ବୋଧ

ଅବୋଧ କେତେକ ଶବ୍ଦ ସହିତ ତହିଁରେ ଲେଖା ଅଛି– ''ବୀରଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ ବର୍ଗେଶ୍ୱର ବୀରାଧିବୀରବର ପ୍ରତାପ ଶ୍ରୀ ମୁକୁନ୍ଦଦେବ ନୃପ ଯୌବିଜେ ଶୁଭ ରାଜ୍ୟେଶମସ୍ତୁ ଚା ୨୪ଙ୍କ ସ୍ନ ୧୩୦୮ ସାଲେ ମିଥୁନ ଦି ୧୯ନ ଶ୍ରାବଣ କୃଷ୍ଣ ପ୍ରତୀପଦ ମଙ୍ଗଳବାର । ଏ ଦିନ ଦୀନାର୍ଦ୍ଧ ୧୬/୧୮କୁ ଦିନମାନ ଦ୩୨/୫୬ପ୍ଳା । ନିଶାର୍ଦ୍ଧ ଦ୧୩/୩୨କୁ ନିଶା ମାନବ ୨୭/୪ପ୍ଳା । ଅହୋରାତ୍ର ଦ୬୦ଣ୍ଡକୁ ଯେ ଦିନ ସୂର୍ଯ୍ୟୋଦୟାଦି ବେଳ ଭୋଗ ଯାଇଁ ରାତ୍ର ଦ୯/୫ ଲିପ୍ତା ଭିତରେ । କୁମ୍ଭଲଗ୍ନେ ଶନୌଙ୍କ କ୍ଷେତ୍ରେ । ରବଙ୍ଂ ହୋ ରାତ୍ରେ × × × ଏବଂ ଶଡ଼ବର୍ଗଶା ଧନେ । ଗଣେକ ଉକ୍ତି ପ୍ରମାଣେ ଶ୍ରୀ ନନ୍ଦନନ୍ଦନ ପଦାରବିନ୍ଦ ମକରନ୍ଦ ସାଦୁ କାଳ ଭୃଙ୍ଗ କରବେ ତସ୍ମିନ୍ ଲୋକିତବେ ମୟା । ଶ୍ରୀମନ୍ତ ଶ୍ରୀମାନବ ବୀପ୍ର ଶ୍ରୀ ବେଦ ମୃତୟ ଶ୍ରୀ ଶ୍ରୀ ମକଦମ ଶ୍ରୀ ଶପନେଶ୍ୱର ପାଣିଗ୍ରାହୀଙ୍କର ସପତ୍ନୀ ଉଦରେ ଦଶମ ଗର୍ଭ ୧୦କୁ ଶୁଭ କୁମାର ପୁତ୍ର ଜନ୍ମ । ତସ ରାଶି ପୂର୍ବାଷାଢ଼ ୨୦/୯ଧନୁ ରାଶିରେ ଯାତୌମାନୁଶ ଗଣ ଗଣ୍ଡ ରିଷ୍ଟ ନାସ୍ତି । ପିତୃ ମାତୃଙ୍କ ଅବୀରୋଧ । ଜାତକ ନାମ ଭୋଳାନାଥ । ଧନେଶ୍ୱର, ଧର୍ମରାଜ । ଶ୍ରବା ନାମ ଜାଳନ୍ଧୀ ପରମାୟୁ ୧୦୮ ବର୍ଷ ।'' ଇତ୍ୟାଦି ।

ଏହି ଭାଷାର ଶୁଦ୍ଧିପତ୍ର ବା ସନ ତାରିଖର ଇଂରାଜୀ ରୂପାନ୍ତର ଖୁବ୍ ଲୋଡ଼ା ବୋଲି ମୁଁ ଭାବୁ ନାହିଁ । କେବଳ ଭାବୁଛି, ୧୦୮ ବର୍ଷ ଯଦି ପରମାୟୁ ହୁଏ, ମୋର ଆତ୍ମ-ଜୀବନୀଟି ଅପୂର୍ଣ୍ଣ ରହିଯିବ ସିନା ! ସେ ହିସାବରେ ତ ଏବେ ମଧ୍ୟ ମୋର ବାକି ଅଛି ବହୁ ଦୂର ! ସାନ୍ତ୍ୱନା ଏତିକି, ସବୁ ଜାତକରେ ବୋଧହୁଏ 'ଅଷ୍ଟୋତ୍ତର ଶତସମ୍ବତ୍ସର ଜୀବିକା' ଲେଖାଥାଏ ଖାଲି ଗୋଟିଏ ଆଶୀର୍ବାଦ ପରି; ଅଥଚ କେତେ ଜାତକ ଏହି ପରମାୟୁର ପ୍ରଥମ ଅଙ୍କରୁ ମଧ୍ୟ ପୋଛା ହୋଇଯାଏ । ଯଥାର୍ଥରେ ଏହା ମଣିଷର ସାଧାରଣ ଆୟୁ ନୁହେଁ, ପରମାୟୁ ।

ଜାତକ ଅନୁଯାୟୀ ଯେଉଁ 'ଗଣେକଙ୍କ ଉକ୍ତି ପ୍ରମାଣେ' ମୋର ଏହି ପରମାୟୁ ସଂଖ୍ୟା ଦ୍ୱାରା ଆତ୍ମସନ୍ତୋଷ ଆସିଥାଏ, ସେ ଗଣେକଙ୍କୁ ପରେ କେତେ ଥର ଦେଖିଛି ଓ ଚିହ୍ନିଚି ମୁଁ । ମୋ ପରି ଆଉ କେତେଜଣଙ୍କର ଜାତକ ସେ ତିଆରି କରିଛନ୍ତି । ମାତ୍ର ଆମ ଗାଁରେ ସବୁଠୁଁ ବେଶି ଲୋକଙ୍କର ଜାତକ ନାହିଁ; ତଥାପି ସେହି ଗଣକଙ୍କୁ ସମସ୍ତେ ଜାଣନ୍ତି ଶ୍ରୀନିବାସ ଅବଧାନ ବୋଲି ।

ଆମ ଗାଁରୁ ଅଳ୍ପ ଦୂରରେ ଘର ତାଙ୍କର ବାଲିପାଟଣା । ଗାଁକୁ ଗାଁ ଲାଗିଛି । ମୁଣ୍ଡ ଉପରେ ତାଳପତ୍ର ଛତା, ହାତରେ ଖଣ୍ଡେ ବାଉଁଶ ବାଡ଼ି, କାନ୍ଧରେ ଗାମୁଛା, କାଖରେ ତାଳପତ୍ର ପୋଥି ବିଡ଼ାଏ ଜାକି ଶ୍ରୀନିବାସ ଅବଧାନ ଦାଣ୍ଡ ମଝିରେ ଚାଲିଗଲା ବେଳେ ସ୍ତ୍ରୀ ପୁରୁଷ, ପିଲା ବୁଢ଼ା ସବୁରି ଆଖି ତାଙ୍କ ଉପରେ ପଡ଼େ । କଳା ଦେହରେ ଧୋବ ଫରଫର ପଇତା, ବେଶି ଡେଙ୍ଗା କି ଗେଡ଼ା ନୁହନ୍ତି, କୋଦା କି ପତଳା ନୁହନ୍ତି, ମୁହଁଯାକ ବସନ୍ତ ଚିହ୍ନ । ଗଳାଟି କୋକିଳ ପରି ମଧୁର ।

ଅକ୍ଷୀ ତୃତୀୟା ଦିନ ବିଲକୁ ଅଖିମୁଠି ବୁହା ବେଳେ ପୁଣି ବିଭା ବ୍ରତ ପୁଣ୍ୟ ପର୍ବ ଶୁଦ୍ଧଶ୍ରାଦ୍ଧରେ ତାଙ୍କ କଣ୍ଠର ମଙ୍ଗଳାଷ୍ଟକ ଶ୍ଳୋକ ଆଜି ବି କାନରେ ବାଜି ଯାଉଛି, ଶଙ୍ଖ ଶବ୍ଦ

ଭିତରେ—'ମଙ୍ଗଳମ୍ ଭଗବାନ୍, ବିଷ୍ଣୋ ମଙ୍ଗଳଂ ମଧୁସୂଦନମ୍ ।' ତା ଛଡ଼ା ଦୋଳପୂର୍ଣ୍ଣମୀ ଦିନ ଗାଁ ଦୋଳବେଦୀ ଉପରେ ପାଦଯୋଡ଼ି ଦିଅଁଙ୍କ ଆଗରେ ଠିଆହୋଇ ଚଷମାରେ ସୂତା ଗୁଡ଼ାଇ ନୂଆ ପାଞ୍ଜି ପଢ଼ିବା—ଯେ ରାଜା ଭୋଗ କଲେ—ବରଷ । ଜଦା ପାଞ୍ଚଭାଗ, ପିମ୍ପୁଡ଼ି ଦଶଭାଗ ଇତ୍ୟାଦି ।' ଦୋଳବେଦୀ ଉପରେ ବସିଥିବା ଶ୍ରୋତାମାନେ ସେ ବର୍ଷର ଫସଲ ପାଳକ ଆଉ ନିଜ ନିଜ ରାଶି-ନକ୍ଷତ୍ରରେ ଲାଭକ୍ଷତିର ହିସାବ ଶୁଣି ଟିପ୍‌ପଣୀ କରିବା—

ଆଜି ମଧ ଶ୍ରୀନିବାସଙ୍କ ପୁଅ ପୁତୁରା ଗାଁକୁ ଆସି ଘର ଘର ବୁଲି ଯାନ୍ତି, ତିଥି ବାର ନକ୍ଷତ୍ର କହି ଟାଙ୍କ ପଡ଼ି ଆଦାୟ କରନ୍ତି; କିନ୍ତୁ ଜ୍ୟୋତିଷ ହିସାବରେ ଶ୍ରୀନିବାସ ଯାହାକୁ ଯାହା କହନ୍ତି, କୁଆଡ଼େ ନ ହରିଶଙ୍କରୋ ବ୍ରହ୍ମା'— କେହି ବଦଳାଇ ପାରିବେ ନାହିଁ । ଜାତକ ସାଧିବାରେ ମଧ ସେ କୁଆଡ଼େ ଦୋରସ୍ତ । ପୂର୍ବଜନ୍ମ ବା ପରଜନ୍ମ କଥା ସେ କହନ୍ତି କି ନାହିଁ କେଜାଣି, ମୁଁ କିନ୍ତୁ ମୋର ଜାତକର ଜନ୍ମ ତାରିଖଟି ଛଡ଼ା ଆଉ କାହିଁରେ ଖୁବ୍ ଆଗ୍ରହୀ ହୋଇପାରି ନାହିଁ । ବରଂ ଆଗ୍ରହୀ ହୋଇଥିଲି ଯୋଡ଼ିଏ ବିଷୟରେ, ଯାହା ଜାତକରେ ନ ଥାଏ ।

ପୂର୍ବଜନ୍ମ ଆଉ ପରଜନ୍ମ କଥା । ଏ ଜନ୍ମ ଆଗରୁ ମୁଁ କ'ଣ ହୋଇ କେଉଁଠି ଥିଲି, ପୁଣି ପରଜନ୍ମରେ କ'ଣ ହେବି । ପୃଥିବୀ ଜନସଂଖ୍ୟାର ବେଶି ଭାଗ ଜନ୍ମାନ୍ତର ବାଦରେ ବିଶ୍ୱାସୀ ନୁହନ୍ତି, ମାତ୍ର ଆମ ଶାସ୍ତ୍ରପୁରାଣ ତା'ରି ଉପରେ ଜୋର ଦେଇଛି । ଶାସ୍ତ୍ର ପଢ଼ି ନ ଥିବା ଲୋକଙ୍କର ଅତୁଟ ବିଶ୍ୱାସ ମଧ ସେଥିରେ ଅଛି । ବୌଦ୍ଧଜାତକ ଗଳ୍ପ ପଢ଼ି ନ ଥିଲେ ବି ପିଲାଦିନୁ ମୋର କୌତୂହଳ କଳ୍ପନା ସେ ଦିଗରେ ଦୌଡ଼ିଯାଏ । ତା'ପରେ ଜାତକର ରାଶି ନକ୍ଷତ୍ର ଆଉ ଜନ୍ମାନ୍ତର ଉପରେ ମୁଁ ଯେ ବିଶ୍ୱାସ ଖାଲି କରି ନାହିଁ, ତା ନୁହେଁ, ଅବିଶ୍ୱାସ କରିଛି ପୂରାପୂରି । ବୟସ ବଢ଼ିବା ସଙ୍ଗେ ସଙ୍ଗେ, ପୁଣି ସେ ବିଷୟରେ ସଂଶୟ ଜନ୍ମିଛି, ବିଶ୍ୱାସ ହୋଇଛି; ପୁଣି ଅବିଶ୍ୱାସ ଓ ବିଶ୍ୱାସ ।

ବିଷ ଆଉ ଅମୃତ । ଗୋଟିକୁ ଚାଖିବାର ତ ସାହସ ନାହିଁ । ଆରଟି ପୁଣି କେଉଁଠି ମିଳେ ଅଜଣା । ଶୁଣାଯାଏ, ତାହାର ସ୍ଥାନ ସ୍ୱର୍ଗରେ । ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତିନି ପୁର । ଆମେ ରହୁ ମଝିଟିରେ । ବାକି ଗୋଟିଏ କାହିଁ ଉପରେ ତ ଶେଷଟି ସେମିତି କାହିଁ ତଳେ । ପୃଥିବୀରେ ତ ଅମୃତ ନାହିଁ । ସେଥିଲାଗି ତା'ର ନାମ ମର୍ତ୍ତ୍ୟ । ପିଲା ଦିନର ସେହି ତିନିପୁର କଳ୍ପନା ଆଜି ଅବଶ୍ୟ ବଦଳିଗଲାଣି । ସେଥିପାଇଁ ମୋର ଲଜ୍ଜା ନାହିଁ । କେଉଁ ଦେଶରେ କେଉଁ ଯୁଗରେ ଏମିତି କଳ୍ପନା ଜଳ୍ପନା, ବିଶ୍ୱାସ ଅବିଶ୍ୱାସ ନ ଥିଲା ଅବା ନାହିଁ କି ?

ମୋ ଜନ୍ମ ସମ୍ବନ୍ଧରେ ମଧ ସେମିତି ଗୋଟିଏ କାଳ୍ପନିକ କାହାଣୀ ମୁଁ ଶୁଣିଛି ପିଲାଦିନେ । ଭଉଣୀମାନେ କହନ୍ତି, ମୁଁ କୁଆଡ଼େ ଗୋଟାଏ ହାଣ୍ଡି ଭିତରେ ଭାସି ଯାଉଥିଲି ନଈ ମଝିରେ । ମୋର ପ୍ରକୃତ ଜନ୍ମଦାତ୍ରୀ ମାଆ କୁଆଡ଼େ ମୋତେ ଜନ୍ମ କରିସାରି ଏକ ହାଣ୍ଡିରେ ଭସାଇ ଦେଇଥିଲେ । ବୋଉ ମୋତେ ସେ ହାଣ୍ଡିରୁ ତୋଳିଆଣି ପାଳିଲେ । ପ୍ରକୃତରେ ସେ ମୋତେ ଜନ୍ମ କରି ନାହାନ୍ତି, ମୋର ସତ ବୋଉ ଆଉ ଜଣେ ! ବୋଉଙ୍କ ମୁହଁରୁ କିନ୍ତୁ କେବେ ଏପରି ଘଟଣାର ସମର୍ଥନ ଶୁଣିଲା ପରି ମନେ ପଡୁନି ।

ଗୋଟିଏ କଥା କିନ୍ତୁ ମନେ ପଡୁଛି ମୋ ଜନ୍ମ ବିଷୟରେ । ବୋଉ କହିଥିବା କଥା । ପୃଥିବୀ ଉପରେ ମୋର ପତନ ଘଟିବା ପୂର୍ବରୁ ଓ ଜାତକ ତିଆରି ଆଗରୁ ଜନନୀଙ୍କୁ ମୁଁ ଗର୍ଭ-କଷ୍ଟ ଦେଇଥିଲି ଏକୋଇଶ ଦିନ ! ମୋ ଆସିବା ପୂର୍ବରୁ ଯେଉଁ ନଅଜଣ, ପୁଣି ପରେ ଯେଉଁ ଜଣକ ଏକାଦଶ ଗର୍ଭରେ ଜନ୍ମିଥିଲେ; ତାଙ୍କ ଭିତରୁ କାହାରି ବିରୋଧରେ ଏଭଳି ଅପବାଦ ଶୁଣି ନାହିଁ ।

ଆରମ୍ଭରୁ ନିଜ ଜନନୀ ପ୍ରତି ଏହି ଇଚ୍ଛା ବା ଅନିଚ୍ଛାକୃତ ଅଜ୍ଞାତ ଅପରାଧ ଲାଗି କ୍ଷମା କେଉଁଠି ? ଘରେ ନ ପଶୁଣୁ ଚାଳ ବାଜିଲା ଭଳି ଏହା ଏକ ଦୁର୍ଘଟଣା ନୁହେଁ କି ? ଆଶ୍ଚର୍ଯ୍ୟ କଥା—ଜୀବନଟାଯାକ ସେମିତି ମୋର ବହୁ ଦୁର୍ଘଟଣା ଭିତରେ ହିଁ ବିତିଯାଇଛି, ଜନ୍ମଟା ମଧ ଯେମିତି 'ଅୟମାରମ୍ଭ ଶୁଭାୟ ଭବତୁ' ହୋଇପାରି ନାହିଁ ।



# ମୋତେ ସତ ତମକୁ ମିଛ

ଦିନ-ରାତି ଆଲୁଅ ଅନ୍ଧାର—ସମୟର ଆରମ୍ଭରୁ ଚାଲିଛି ଅବିକଳ ଗୋଟାଏ ମେସିନ୍ ଚକ ଭଳି । କେଉଁଠି ଧାପେ ହେଲେ ଓଲମ୍ ବିଲମ୍ ନାହିଁ । ଯୋଡ଼ିଙ୍କ ଭିତରେ ପୁଣି ଯେତିକି ବିୟୋଗ, ସେତିକି ଯୋଗ ।

ଆଲୁଅ ପଛରେ ଛାଇ ଲାଗିଲା ଭଳି ଅନ୍ଧାରରେ ହସେ ଫୁଲଝରି ! ପୁଣି ସେହି ଆଲୁଅର ଯେତେ ରଙ୍ଗ, ଆଉ ଅନ୍ଧାରର ଯେଉଁ ରୂପ ! ଫଗୁଆ ଶାଗୁଆ ସକାଳ, ଧୂସର ରୂଷର ସଞ୍ଜ— ତା'ପରେ କେତେ ତାରା ଖଦ୍ୟୋତର ଦୀପାବଳୀ, ସାନ ବଡ଼ ଜହ୍ନର ବଙ୍କା ଗୋଲ ଚିତା ତିଳକ !

ଘର ପଛପଟେ ସାନ ପୋଖରୀ । ପୋଖରୀହୁଡ଼ା ଉପରେ କଣ୍ଟା ବାଉଁଶର ଝାଡ଼ ଭିତରୁ କୁମ୍ଭାଟୁଆର ତୁହାକୁ ତୁହା ଡାକ, ପୁଣି ପହରିକିଆ ଚଢ଼େଇଙ୍କର ଝାଞ୍ଜ ମୃଦଙ୍ଗ ସଂକୀର୍ତ୍ତନ । ରାତି ଅଧସରିକି ଚୌକିଦାରର ପହରା— ହୁସିଆର ! ହୁସିଆର ! ତା' ପଛକୁ ବିଲୁଆ-ନନାର ହୁକେ ହୋ !

ପାହାନ୍ତାପହରୁ ଖଟୁଆ ଘର ଚୁଡ଼ାକୁଟା ଦୁମ୍ ଦୁମ୍ ସାଥିକୁ କୁକୁଡ଼ାର 'ଚକ୍ରଧର ରଖ' ! ଭୋର ହୋଇ ଫସର ଫାଟିଲେ ଦୁଆରେ ଦୁଆରେ କୁଆ କା—କା, କୋଇଲି ତରବରୀର 'ଉଠଲୋ, ଉଠଲୋ, ଉଠଲୋ ।''

ନିଦରୁ ଉଠାଇ ଦେବାକୁ ସେଇ ସ୍ୱର, ପୁଣି ଫଗୁଣ ଚୈତ୍ରରେ ଘଞ୍ଚ ଆମ୍ବଗଛ ଡାଳରୁ ବି ସେଇଆ । ନୂଆ ବୋହୂଙ୍କ ଚୁଁଭଳି ଭାରି ମିଠା, ପୁଣି ତାଙ୍କରି ଭଳି ଚେହେରାଟି ତା'ର କାହିଁ କେଉଁଠି ଛପି ରହିଯାଏ ।

ବୋହୂ ଭୁଆସୁଣୀଙ୍କର ଘରଲିପା, ବାସନମଜା ବାସି ପାଇଟି । ବୁଢ଼ୀ ଦରବୁଢ଼ୀଙ୍କ ଦାଣ୍ଡ ଖରକା । ହଳିଆର ହଳଯୋଚା । ଘଣ୍ଟା କଣ୍ଟା ଭଳି ସବୁ ଚାଲେ । ତେବେ ସେ କାମକୁ ତ ଘଣ୍ଟା-କଣ୍ଟା ଚଳାଏନି । ଘଣ୍ଟା-କଣ୍ଟାକୁ ଚଳାଏ ସେ—ଏତିକି ଯାହା ଫରକ ।

ସହର ବଜାରର ଘଣ୍ଟା ଠଣ ଠଣ, କଳକାରଖାନାର ସାଇରେନ୍ ବଦଳରେ ଆମ୍ବ ଅଶ୍ୱତ୍ଥର ଗହଳି ଫାଙ୍କରୁ ଆଲୁଅ ମାରେ ପିଚ୍‌କାରି । ସେହି ଆଲୁଅର ଚକା ଥାଳିଟା ଉପରକୁ ଉଠେ ଚାହୁଁ ଚାହୁଁ । ଆଉ ତେଣିକି ଚାହିଁ ହୁଏନି । ସେ ଏକାବେଳେ ମହାପ୍ରତାପାଦିତ୍ୟ ବୀରାଧିବୀରବର ନବକୋଟି ବ୍ରହ୍ମାଣ୍ଡେଶ୍ୱର ସାଜି ସଭା ଉପରେ ପ୍ରଚଣ୍ଡ ତେଜରେ ଉଭାହୁଏ ।

ଦାଣ୍ଡ ବାରି ପିଢ଼ା ପିଣ୍ଡା ଅଗଣାରେ ଜଳି ଉଠେ ସେଇ ଆଲୁଅ । ସେଇ ଆଲୁଅରେ ତେଣାପିଟି ଡୀଖ ନଡ଼ିଆଗଛର ବାହୁଙ୍ଗା ଉପରେ ଶଙ୍ଖଚିଲଟା ରହି ରହି ଚିତ୍କାର କରେ । ସକାଳୁ ଶଙ୍ଖଚିଲ ମୁହଁ ଚାହିଁଲେ ଶୁଭ ।

ରୋଜ ଏମିତି ନିଦ ଭାଙ୍ଗିଯାଏ ଗାଁଟିର । ଗୋଟାଏ କୋଥଳି ଭିତରୁ ସତେ ଅବା ଦର୍ପଣ ପାନିଆ ଚିତା ତିଳକ ଗୀତା ରୁଦ୍ରାକ୍ଷ ଅବା ବଟୁଆ ଭିତରୁ ପାନ ଗୁଆ ଗୁଣ୍ଡି ଚୂନଖାଇ ଭଳିକି ଭଳି ଚିଜମାନ ବାହାରି ଆସିଲା ପରି ପଶୁପକ୍ଷୀ, କୀଟପତଙ୍ଗ, ଗଛଲତା, ସ୍ତ୍ରୀ ପୁରୁଷ, ପିଲା ବୁଢ଼ା ଦିନବେଳେ ବାହାରି ଆସି ସଞ୍ଜ ହେଲେ ପଶିଯାନ୍ତି ତା'ରି ଭିତରେ । ସେ ଯେମିତି ଜଣେ ଭୂଜବିଦ୍ୟା କେଳାର ହଟଚମଟ । ଥଳିରୁ ତା'ର କାଉଁରୀ ହାଡ଼ 'ଅଦିଆ ଗୋପୀ ମିଶ୍ର' କଣ୍ଟା ସୂତା, ପାରା ତାସ ହରେକ ଜିନିଷ ବାହାରି ନାନା ଖେଳ କୌତୁକ ଦେଖାଇ ସେହି ଥଳିରେ ସବୁ ଲୁଚିଗଲା ପରି !

ସେହି ଥଳିରୁ ବାହାରି ଆସେ ଛ ଋତୁର ନୂଆ ନୂଆ ରୂପ, ରଙ୍ଗ, ଗୀତ । କାହିଁରେ ଆଖି ଝଲସି ଯାଏ ତ କାନରେ କୁହୁକ ଲାଗେ, ଆଉ କାହିଁରେ ଦୁଲୁକି ଉଠେ ଛାତି ।

ଏମିତି ଗୋଟାଏ ଘୋର ଦୁର୍ଦ୍ଦିନ ଶ୍ରାବଣ ରାତି । ଆକାଶର ବ୍ଲାକ୍‌ବୋର୍ଡ଼ରୁ ସବୁ ଅକ୍ଷର କିଏ ଗୋଟାଏ ଡଷ୍ଟର ଧରି ଯେମିତି ଅବା ଘଷି ଘଷି ଲିଭାଇ ଦେଇଛି । ପୁଣି ତା'ରି ଉପରେ ମଝିରେ ମଝିରେ ଟାଣି ଦେଉଛି ଗୋଟିଏ ଲେଖାଏଁ ଅଙ୍କାବଙ୍କା ଲମ୍ବ ଗାର । ଦଣ୍ଡକ ପାଇଁ ଆଲୁଅ ହୋଇଯାଏ ସେଇ ବ୍ଲାକ୍‌ବୋର୍ଡ଼ଟା । ତା'ପଛକୁ ଶୁଭେ ଛାତିଫଟା ଗର୍ଜନ ।

ଆଷାଢ଼ସ୍ୟ ପ୍ରଥମ ଦିବସେ' ନୁହେଁ, ଶ୍ରାବଣସ୍ୟ ପ୍ରଥମ ରାତ୍ରେ ଗୋଟିଏ ସାନ ଘରର ଚାଳ କାନ୍ଥକୁ ଭେଦକରି ଶୁଣାଗଲା ଆହୁରି ଏକ ଗର୍ଜନ—ନୂଆ ପୁଅର କୁଆଁ କୁଆଁ । ବର୍ଷ କେତୁଟାର ପିଲା ଭେଣ୍ଡା, ଅଧାବୁଢ଼ା ହେଇ ଏମିତି ଖାଲି ହାତଗୋଡ଼ ଛାଟି ପିଟି ସେ ଗର୍ଜନ ତର୍ଜନ କରିବ ବୋଲି । ଏକୋଇଶଟି ଦିନ ଗର୍ଭ ଯନ୍ତ୍ରଣା ଭୋଗି ଜନନୀ ତା'ଠାରୁ ଉଦ୍ଧାର ପାଇଲେ କି ସେ ପାଇଲା ଜନନୀ-ଗର୍ଭର ଅନ୍ଧାରରୁ ଆଲୁଅକୁ ଆସି, ତା' କିଏ କହିବ ?

ପ୍ରଥା ଅନୁଯାୟୀ ଶିଶୁଟିର ଏକୋଇଶିଆ ଗଣା-ପୋଛା କରାଯାଏ । ଧାରାବାହିକ ଭାବରେ ଏହି ଆତ୍ମଲିପି ପ୍ରଥମେ ୧୯୬୫ ଖ୍ରୀଷ୍ଟାବ୍ଦରେ କଲିକତାରୁ ଶ୍ରୀ କସ୍ତୁରି ଚରଣ ଦାସଙ୍କ ସମ୍ପାଦନାରେ ପ୍ରକାଶିତ 'କଳ୍ପନା' ପତ୍ରିକାରେ ଓ ପରେ କଟକରୁ ଶ୍ରୀ ରାମଚନ୍ଦ୍ର ମିଶ୍ରଙ୍କ ଦ୍ୱାରା

ସମ୍ପାଦିତ ଓ ପ୍ରକାଶିତ 'ଡଗର' ପତ୍ରିକାରେ ୧୯୬୮-୬୯ରେ ଧାରାବାହିକଭାବେ ସ୍ଥାନ ପାଏ । ପାଠକ କିମ୍ବା ଲେଖକ ଏ ପ୍ରଥାରେ ବିଶ୍ୱାସ କରନ୍ତୁ କି ନାହିଁ 'ଡଗର' ସମ୍ପାଦନା ମହଲରୁ ପୁଣି ପାଠକ ଓ ଜ୍ୟୋତିଷ-ମହଲରୁ ମଧ ବରାଦ ଆସିଲା, ଏଠାରେ ସେହି ନବଜାତ ଶିଶୁଟିର କୁଣ୍ଡଳୀ ରାଶିଚକ୍ର ଉଲ୍ଲେଖ କରିବାପାଇଁ । ସତ କହିଲେ— ମୁଁ ନିଜେ ଏଥିରୁ କିଛି ବୁଝେ ନି ଯଦିବା; ମୋ ଜୀବନର ଭଲ ମନ୍ଦ ବିଷୟ ଅନ୍ୟ ମୁଖରୁ ଶୁଣିବାକୁ ମୋର କୌତୂହଳ ରହିବା ସ୍ୱାଭାବିକ ।

ଜନ୍ମ ସ୍ନ୧୩୦୮ ସାଲ ମିଥୁନ ୧୯ ଦିନ ଶ୍ରାବଣ କୃଷ୍ଣ ପ୍ରତିପଦ ।

ରାତ୍ର ଦ୯ । ୫

ଶୁକ୍ର ମହାଦଶାରୁ ବାକିସ୍ମ ତ ମା ୯ । ୧୨''

୩
୧୫୮ । ୪୮
୧୦୪୪ । ୨୨
୯୫୯ । ୫୦
୧୬୫୫ । ୧
୨୨୮ । ୩୬
୧୬୪୯ । ୫୩
୧୯
ଦିନାହ
୧୬ । ୨୮

| | | |
|---|---|---|
| ୪ ୫ ର | ୩ | ୨ ଲ ୧ |
| ୬ ବୁଶୁ | ୨୦ / ୯ | ୧୨ |
| ୭ ୮ମ | ରା ୯ | ବୃଶ୍ନଚ୧୧ ୧୦ |

ର ୭
ର ୭
ସୋ ୨୦
ମ ୧୨
ବୁ ୭
ବୃ ୨୦
ଶୁ ୮
ଶ୍ନ ୨୦
ରା ୧୬
କେ ୨୩

ଜାତକକୁଣ୍ଡଳୀ ବା ଚକ୍ରଟା କୁଆଡ଼େ ସେଇ ଶିଶୁର ପରବର୍ତ୍ତୀ ଜୀବନର ଗତିକୁ ଅବିକଳ ଘଣ୍ଟା-କଣ୍ଟା ଭଳି ସବୁବେଳେ ଘୂରାଉଛି ! ତାହା ଯଦି ଠିକ୍ କିମ୍ବା ଭୁଲ ମଧ ହୋଇଥାଏ, ତଥାପି ଏଇ ଉଦ୍ଭାବନ କିଛି ତ କମ୍ ଆଶ୍ଚର୍ଯ୍ୟର କଥା ନୁହେଁ ! ଏଥିରୁ ପୁଣି ''ଜାତକ ସାଧିବା'' ବିଦ୍ୟା ଅଛି । ତଦ୍ୱାରା ଏହି ଚକ୍ର ସାହାଯ୍ୟରେ ମୋର ଜନ୍ମାବଧି ଯାହା ଯାହା ଦୈନନ୍ଦିନ ଘଟଣା ଘଟିଯାଉଛି, ପୁଣି ଭବିଷ୍ୟତରେ ଯାହା ବା ଯେଉଁ ଦିନ ଘଟିବ, ସବୁ କଥା କୁଆଡ଼େ ଜଣାପଡ଼େ ! ଏମିତି କି କଲିକତା ଫୁଟ୍‌ପାଥ ଉପରେ ବସିଥିବା ଚନ୍ଦନଚର୍ଚ୍ଚିତ ଚିତାତିଳକ-ଶୋଭିତ ଗଣକ ଓ ଦିଲ୍ଲୀ କନଟ୍ ପ୍ଲେସରେ ବୁଲୁଥିବା ଚିତାପଗଡ଼ି-ମାଳି ପିନ୍ଧା ଗୈରିକ-ବସନଧାରୀ ସନ୍ନ୍ୟାସୀମାନେ ସୁଦ୍ଧା ଖାଲି ମୁହଁକୁ ଓ ପାପୁଲିକୁ ଚାହିଁ ଓକିଲ ମହକିଲକୁ ଚାହିଁଲା ପରି ସବୁ ଗତ ଆଗତ କଥା ଅନର୍ଗଳ କହିଯାନ୍ତି । ସେଥିରୁ କେତେ ସତ, କେତେ ମିଛ; କିନ୍ତୁ ଯେଉଁ ବିଷୟରେ ଆମେ ନିଜେ ଅଜ୍ଞ, ତାକୁ ମିଛ ଓ ଠାସକମରା କଥା ବୋଲି କହିଦେବା ହିଁ ସହଜ ପରା !

ଏହି ରାଶିଚକ୍ରଟି ଯେତେ ଅବିଶ୍ୱାସ୍ୟ ବା ପରିହାସ୍ୟ ହେଉ ପଛେ, ପ୍ରାପ୍ତବୟସ୍କ ଅବସ୍ଥାରେ କନ୍ୟା-ନିର୍ବାଚନ, ତିଥିବାର ନକ୍ଷତ୍ର-ନିର୍ଦ୍ଧାରଣଦ୍ୱାରା ବ୍ରତ-ବିବାହ-କର୍ମରେ ସେହି ଶିଶୁର ପରବର୍ତ୍ତୀ ସଂସାର-ନିର୍ମାଣ କ୍ଷେତ୍ରରେ ଏହାର ତା'ର ମାତା ପିତାଙ୍କୁ ଓ ନିଜକୁ ମଧ ସେ ଯଥେଷ୍ଟ ସାହାଯ୍ୟ କରିଛି, ତାହା ସେ ଆଜି କଦାପି ଅସ୍ୱୀକାର କରିପାରିବ ନାହିଁ—ଠିକ୍ ଯେମିତି ସେ ଅସ୍ୱୀକାର କରିପାରିବ ନାହିଁ ନିଜକୁ ଓ ନିଜ ଜନ୍ମଦାତ୍ରୀଙ୍କୁ, ନିଜର ଅତୀତକୁ, ନିଜ ଶୈଶବ ଓ ଯୌବନକୁ । ପୁଣି ସେଇ ଶୈଶବର ପ୍ରଧାନ ରଙ୍ଗମଞ୍ଚ ଓ କ୍ରୀଡ଼ାମଞ୍ଚ ତା'ର ଜନ୍ମସ୍ଥାନ୍ ଗାଁଟିକୁ ।

ଛୋଟ ନୁହେଁ କି ବଡ଼ ନୁହେଁ—ଆଖପାଖ ଚାରିପାଞ୍ଚଟି ପଡ଼ାକୁ ମିଶାଇ ମଧଭଳି ଗାଆଁଟି । ଛତିଶପାଟକ ପ୍ରାୟ ସବୁ ଜାତିର ଲୋକଙ୍କ ବାସସ୍ଥାନ । ଲୋକସଂଖ୍ୟା ସମ୍ପର୍କରେ ସାନି ଜନଗଣନା ହିସାବ ଅବଶ୍ୟ ପାଖରେ ମୋର ନାହିଁ । ପଞ୍ଚାୟତ ନିର୍ବାଚନରେ ଠିଆ ହୋଇଥିଲେ ଗାଁଟାର ଅନ୍ତତଃ ସାବାଳକ ଭୋଟର ସଂଖ୍ୟା ଜାଣିଥାନ୍ତି । କିନ୍ତୁ ସେ ସୁଯୋଗ ମୋର ତ ଜୁଟିନି । ତେବେ ସବୁ ପଡ଼ାକୁ ମିଶାଇ ଦୁଇ ଶହ କି ଅଢ଼େଇ ଶହ ଘର । ଗଉଡ଼ ସାହି, ବଣିଆ ସାହି, ଭୋଇ ସାହି, ତେଲି ସାହି, ଗଡ଼ ସାହି, ସୋବନି, ସାତକାବାଦ, ଫକୀରପଡ଼ା, ସାହାଣି ସାହି ସମେତ ଗାଆଁଟିର ନାମ ମୌଜେ ବିଶ୍ୱନାଥପୁର, ପୋଷ୍ଟ ବାଲିପାଟଣା, ପ୍ରଗଣେ କୋଠଦେଶ, ଜିଲେ ପୁରୀ । ଆମ୍ବ, ନଡ଼ିଆ, ତାଳ, ପୁନାଗ, ବେତ, ବାଉଁଶ, ଗହଳି ଭିତରେ ଲୁଚି ଯାଇଥିବା ସେଇ ଗାଆଁର ପ୍ରାୟ ଦେଢ଼ଫୁଟ ଲମ୍ବ ଛ'ଇଞ୍ଚ ଚୌଡ଼ା ମାଟି ଚଟାଣ ହୁଏ ପିଲାଟିର ଜନ୍ମସ୍ଥାନ । ପରେ ତାକୁ ମିଶାଇ ଅନେକ ଅଞ୍ଚଳ ହୁଏ ଜନ୍ମଭୂମି ।

ସେଇ ଗାଆଁରେ ମଧ ତା'ର ମା ବାପାଙ୍କର ଜନ୍ମ ।

ପିତା ସ୍ୱପ୍ନେଶ୍ୱର, ମାତା ସରସ୍ୱତୀ । ପିତାମହଙ୍କ ନାମ ନରୋତ୍ତମ ଓ ଅଜା ମୃତ୍ୟୁଞ୍ଜୟ ଶତପଥୀ । ପିଲାଟିର ମାମୁଘର ନିଜ ଘରଠାରୁ ମାତ୍ର ପ୍ରାୟ ପାଞ୍ଚ ଶହ ହାତ ଦୂରରେ ।

ସାନବଡ଼ ପ୍ରତି ଗାଆଁ ଭଳି ବିଶ୍ୱନାଥପୁର ଗାଆଁଟିର ଗୋଟିଏ ଇତିହାସ ଅଛି । ଇତିହାସ ଅବା ନାହିଁ କେଉଁଠି ? ମାଟି ଉପରେ ତ ଜାଣି, ମାଟିତଳେ ବି ଯେଉଁଠି ରାମ୍ପୁଡ଼ିଲେ ସେଠାରେ ବାହାରିବ ଇତିହାସ । ଶୁଣାଯାଏ ଗାଆଁଟିର ନାଁ ଥିଲା ପ୍ରଥମ ବନ୍ଦୋବସ୍ତରେ ବିଷ୍ଣୁଦାସପୁର, ତା'ପରେ ସେ ଗ୍ରହଣ କଲା ଆଉ ଗୋଟିଏ ନାଁ—ବିଶ୍ୱନାଥପୁର । ସେ ଗାଆଁରେ ଯେଉଁମାନେ ଆଧିପତ୍ୟ ବିସ୍ତାର କରିଥିଲେ ତାଙ୍କର କୌଳିକ ପଦବୀ ଥିଲା 'ପାଣି', ପରେ ସେମାନେ ବୋଲାଇଲେ 'ପାଣିଗ୍ରାହୀ' । ଆଉ କୁଆଡ଼େ ଏସବୁ ନାମ ପରିବର୍ତ୍ତନ ପାଇଁ ଦାୟୀ ଥିଲେ ଲେଖକଙ୍କ ଜନକ—ଗାଁଟିର ସର୍ବପ୍ରଥମ ଇଂରାଜୀ ଶିକ୍ଷିତ ଓ ଆଇନ୍‌ଜୀବୀ ।

ବାପା ଥାନ୍ତି ପୁରୀରେ ମୁକ୍ତାର । ପ୍ରତି ଶନିବାର କଚେରି କାମ ସାରି ରାତି ଗାଡ଼ିରେ ବାହାରନ୍ତି ଗାଆଁକୁ । ସେଠାରୁ ରବିବାର ରାତିରେ ଫେରି ସୋମବାର ପୁଣି କଚେରିରେ ସେ ଯୋଗ ଦିଅନ୍ତି । ବିଶ୍ୱନାଥପୁରକୁ ବଳି ବିଶ୍ୱବ୍ରହ୍ମାଣ୍ଡରେ ଆଉ କୌଣସି ସ୍ଥାନ ଅଛି ବୋଲି

ବାପାଙ୍କର ବିଶ୍ୱାସ ନୁହେଁ । ବାରମ୍ବାର କହନ୍ତି, ଯେତେ ଯୁଆଡ଼େ ବୁଲି କାମକରି ଖାଅ, ବିଶ୍ୱନାଥପୁରକୁ ସବୁବେଳେ ଚାହିଁଥିବଟି ! ସେ ତମର ମାନ ଇଜ୍ଜତ୍‌ର ମୂଳ ପିଣ୍ଡ ।

ଷୋଳପଣି ମକଦମି ମାହାଲ ବିଶ୍ୱନାଥପୁର ଗାଆଁଟି ପ୍ରାୟ ପ୍ରତି ବର୍ଷ କଡ଼ାଏ ଦି'କଡ଼ାର କେହି ମକଦମା ଖଜଣା ନ ଦେବାରୁ ନିଲାମ ଉଠିବା ଭୟ ଥାଏ । ମାହାଲ ନିଲାମ ଯାଇ ପାଣିବଂଶ ମହତ ତଳେ ପଡ଼ିଯିବ, ଏହା ବାପାଙ୍କର ଅସହ୍ୟ । ବଡ଼ ବଡ଼ ଜମିଦାରମାନେ ସବୁବେଳେ ତକେଇଥାନ୍ତି, କେବେ ସେ ମାହାଲ ନିଲାମ ଉଠିଲେ, ନିଲାମ ଧରିବେ ବୋଲି । ଥରେ ଜଣେ ବଡ଼ ଜମିଦାର ପୁରୀ ମୁକ୍ତାରଖାନାକୁ ଆସି ବାପାଙ୍କ ସଙ୍ଗେ ତର୍କ କରି କହିଲେ-

''ଏଥର ବିଶ୍ୱନାଥପୁର ନିଶ୍ଚେ ନିଲାମ ଉଠିବ ।''

''ନିଲାମ ଉଠିଲେ ଆପଣଙ୍କର ଲାଭ ?'' ବାପା ପଚାରିଲେ ।

''ମୁଁ ନିଲାମ ଧରିବି, ମୁକ୍ତାର ବାବୁ !''

''କଦାପି ନୁହେଁ''—ବାପା ଦୃଢ଼ତାର ସହିତ କହିଲେ ।

''ବାଜି ମାରନ୍ତୁ—ଆଚ୍ଛା କହନ୍ତୁ, ମୁଁ ନିଲାମ ନେଲେ କ'ଣ ଆପଣ ଛାଡ଼ିଯିବେ ?''- ଜମିଦାର ନିଜେ ପାପୁଲି ଦେଖାଇଲେ ।

''ମୋର କିଛି ଛାଡ଼ିଯିବା ପ୍ରଶ୍ନ ଉଠୁନି ତ । ବିଶ୍ୱନାଥପୁର ମାହାଲ ଚାଲିଗଲେ ମୋର ଆଉ ଥିବ କ'ଣ ଯେ, ମୁଁ ଆପଣଙ୍କୁ ଛାଡ଼ିଯିବି ? କିନ୍ତୁ କେତେ ଟଙ୍କା ଆପଣଙ୍କର ଅଛି ଯେ, ମୋ ସଙ୍ଗେ ଆପଣ ବାଜି ମାରିବେ, ପୁଣି ବିଶ୍ୱନାଥପୁର ମାହାଲଟା ବି ନିଲାମରେ ଧରିବେ ?'' ବାପା ପଚାରିଲେ କୌତୁକ କଲାପରି ।

ମୁକ୍ତାରଖାନାର ସବୁ ମୁକ୍ତାର, ମୋହରିର, ମକ୍‌କେଲ ସାଗ୍ରହ କୌତୂହଳରେ ଜଣେ ବଡ଼ ଜମିଦାର ''ଚୌଧୁରୀ''ଙ୍କ ସଙ୍ଗେ ବାପାଙ୍କର ଏଇ ଯୁକ୍ତିତର୍କ ଶୁଣୁଥାନ୍ତି । ଚୌଧୁରୀ ମହାଶୟ ବାପାଙ୍କ ପ୍ରଶ୍ନରେ ଉତ୍ତ୍ୟକ୍ତ ହୋଇପଡ଼ି କହିଲେ, ''ବିଶ୍ୱନାଥପୁର ଷୋଳପଣି ମାହାଲରୁ ଆପଣଙ୍କର ତ ମୋଟେ ପଣେ କି ଦି'ପଣ ହକିୟତ୍ । ସେଥିରେ ଏତେ ଜିଗର କାହିଁକି ?''

ବାପାଙ୍କର ଗୋଟିଏ ବଡ଼ ଗୁଣ ଥିଲା ସେ କ୍ୱଚିତ୍ ରାଗିଯାଆନ୍ତି । ବରଂ ରାଗିବା ସ୍ଥଳରେ କୌତୁକ କରିବା ଥିଲା ତାଙ୍କର ବାହାଦୁରି । ସେ କହିଲେ, ''ଆପଣଙ୍କର ତ ସେଇ ପଣେ କି ଦି'ପଣ ନ ଥାଇ ସୁଦ୍ଧା ପୂରାପୂରି ଗୋଟିକଯାକ ମାହାଲ ନିଲାମ ଧରିବାକୁ ସାହସ ରହିଛି !''

''ସାହସ ଖାଲି ରହିଛି, ନା ବର୍ଷ ବର୍ଷ ଧରି, ମୁଁ ଏଥିପାଇଁ ତକେଇ ବସିଛି ! ଏଥର କିନ୍ତୁ ଜିଦି ମାରୁଛି, ମୋ ଭ୍ରୀକି ବିକ୍ରି କରିବି ପଛେ, ବିଶ୍ୱନାଥପୁର ନିଲାମ ଧରିବି—ନିଶ୍ଚେ, ନିଶ୍ଚେ, ନିଶ୍ଚେ ତିନି ବାର ସତ୍ୟ !'' ଚୌଧୁରୀ ବେଶ୍ ଉତ୍ତ୍ୟକ୍ତ ହୋଇ ପଡ଼ିଥାନ୍ତି ।

ଧୀର ଭାବରେ ବାପା ଜଣାଇଲେ, ''ଆଚ୍ଛା ଚୌଧୁରୀ ମହାଶୟ ! ଆପଣ କେତେ ବଡ଼ କଥାଟାଏ କହିଲେଣି । ତେବେ କ'ଣ କି—ଆପଣଙ୍କ ସ୍ତ୍ରୀଙ୍କୁ ଯେ ଖରିଦ କରିବେ, ବିଶ୍ୱନାଥପୁର ମାହାଲଟାକୁ ସେ ନିଲାମ ନ ଧରି ଆପଣ ଧରିବେ କିମିତି ?''

ହାସ୍ୟରୋଳରେ ସେ ଦିନ ମୁଖରିତ ହୋଇଥିଲା ପୁରୀର ମୁକ୍ତାରଖାନା ?

ବିଷ୍ଣୁଦାସପୁରକୁ 'ବିଶ୍ୱନାଥପୁର' ପୁଣି 'ପାଣିକୁ' 'ପାଣିଗ୍ରାହୀ' କରିବା ମୂଳରେ ଅସଲ ମତ୍‌ଲବ୍ ହେଲା, ଗାଆଁଟିକୁ ବ୍ରାହ୍ମଣ ଶାସନ ଓ ସେଠାରେ ରହୁଥିବା ବ୍ରାହ୍ମଣମାନଙ୍କୁ ଶାସନୀ ବ୍ରାହ୍ମଣ' ରୂପେ ପରିଚିତ କରାଇବ । ଯେହେତୁ ଅଢ଼େଇ ଶହ ତିନି ଶହ ବ୍ରାହ୍ମଣେତର ଜାତିଙ୍କ ଉପରେ ମାତ୍ର ପନ୍ଦର କି କୋଡ଼ିଏଟି ଘର ବ୍ରାହ୍ମଣ ଶାସନ କରନ୍ତି । ମକଦମି ମାହାଲ ବିଶ୍ୱନାଥପୁର ମୌଜାର ସେଇ ପନ୍ଦର କୋଡ଼ିଏଟି ଘର ହେଲେ ମକଦମ— ହର୍ତ୍ତା କର୍ତ୍ତା ବିଧାତା । ପୁରୀ ରାଜାମାନେ ଷୋହଳ ଶାସନ ବତ୍ରିଶ କରବାଡ଼ ବ୍ରାହ୍ମଣ ଗ୍ରାମ ବସାଇ ସେଠାରେ ତାଙ୍କ ହାତରେ ଯେମିତି ଗ୍ରାମ ଶାସନ କ୍ଷମତା ଦେଇଥିଲେ, ସେହି ଅନୁକ୍ରମରେ ହିଁ ଏସବୁ ଗାଆଁ ଗଢ଼ାହେଲା ବୋଲି ମଧ ମନେହୁଏ ।

ଓଡ଼ିଶାକୁ କେତେକ ବ୍ରାହ୍ମଣ ଲକ୍ଷ୍ନୌ ପରି ଉତ୍ତରାଞ୍ଚଳରୁ ଅଣାଯାଇ ଯଯାତିକେଶରୀଙ୍କ ନିର୍ଦ୍ଦେଶରେ ପରା ଯାଜପୁର ବୈତରଣୀ ନଦୀ କୂଳରେ ଯଜ୍ଞ କରନ୍ତି ! ସେମାନଙ୍କ ସମେତ କେତେକ ଯାଜ୍ଞିକ ବ୍ରାହ୍ମଣଙ୍କୁ ଆଣି ପୁରୀନିକଟବର୍ତ୍ତୀ ବ୍ରାହ୍ମଣ ଶାସନମାନ ଗଢ଼ାହୁଏ । କିନ୍ତୁ ବିଶ୍ୱନାଥପୁରକୁ ଯେଉଁମାନେ ଶାସନ କଲେ, ସେମାନଙ୍କୁ କୌଣସି ରାଜା ନିମନ୍ତ୍ରଣ କରି ଆଣିଥିବାର ଜଣାପଡ଼େ ନାହିଁ । ସେମାନେ ସ୍ୱୟଂ ଆସି ଯାଇଥିଲେ ।

ଶୁଣାଯାଏ, ଗଣି ପାଣି ଓ ଅନାମ ପାଣି ନାମରେ ଦୁଇଟି ଭାଇ ଥୋଡ଼ିବଳଦ ଉପରେ ଧାନବସ୍ତା ଲଦି ଏ ଅଞ୍ଚଳରେ ଆସି ବ୍ୟବସାୟ କରନ୍ତି । ତାଙ୍କର ଘର ଲକ୍ଷ୍ନୌ କିମ୍ବା ପାଟଳିପୁତ୍ର ନୁହେଁ, ଦୁହେଁଯାକ ସମ୍ବଲପୁରର ପୁତ୍ର । ସେତେବେଳେ ଅବଶ୍ୟ ସମ୍ବଲପୁର କୋଶଳ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା କି ନାହିଁ, ତାହାର ଗବେଷଣା ଐତିହାସିକ ପଣ୍ଡିତମାନଙ୍କର କାମ । ନିଜ କୁଟୁମ୍ବମାନଙ୍କ ମୁହଁରୁ ମୁଁ ଯେତିକି ଶୁଣିଛି, ସେତିକି ମାତ୍ର ଏଠାରେ ନିବେଦନ କରୁଛି ।

ଗଣି, ଅନାମ ଦୁଇ ଭାଇ ପ୍ରଥମେ ବିଶ୍ୱନାଥପୁରରୁ ତିନି ଚାରି ମାଇଲ୍ ପଶ୍ଚିମରେ ଭାର୍ଗବୀ କୂଳରେ ଝିଙ୍କିଟି ଗାଆଁକୁ ଆସନ୍ତି । ସେଠାରେ ତାଙ୍କ ବଂଶଧରମାନଙ୍କ ମଧ୍ୟରେ କେତେ ଘର କୁଟୁମ୍ବ ଏବେ ବି ଅଛନ୍ତି । ଆହୁରି ଘରେ ଦି'ଘର ବି ରହିଛନ୍ତି ବିଶ୍ୱନାଥପୁରକୁ ଲାଗି ସିଂଶୋଲ ଗାଆଁରେ । ଥୋଡ଼ିବଳଦର ନାକରେ ଦଉଡ଼ା ଫୋଡ଼ି ଓ ପିଠିରେ ତା'ର ବସ୍ତା ଲଦି ସେମାନେ ଯେମିତି କ୍ଷେତ୍ରରେ ଏ ଅଞ୍ଚଳର କେତେକ ଗାଁ ଦଖଲ କରିନେଲେ, ତାଙ୍କ ସୁଯୋଗ୍ୟ ବଂଶଧରମାନଙ୍କ ମଧ୍ୟରୁ ମଣିଷକୁ ମଧ କେହି କେହି ଠିକ୍ ଥୋଡ଼ିବଳଦ ଭଳି ବ୍ୟବହାର ନ କଲେ ସୁଦ୍ଧା ସେମିତି ଟିକିଏ ରକ୍ତଗତ ଅଭ୍ୟାସ ତାଙ୍କଠାରେ ରହିଯିବା ସ୍ୱାଭାବିକ । ତାଙ୍କରି ଅନ୍ୟତମ ବଂଶଧର ହେଲି ସ୍ୱୟଂ ମୁଁ— ସମ୍ବଲପୁର ଅର୍ଥାତ୍ ପୌରାଣିକ କୋଶଳ-ସଭ୍ୟତାର ଜଣେ କୁଶଳୀ କଳାକାର ହେବାକୁ ବ୍ୟର୍ଥପ୍ରୟାସୀ—ପୁଣି ଜଣେ କୌଶଳୀ ବଂଶଧର ହେବାକୁ

ମଧ—ଖାଲି ବଂଶଧର କାହିଁକି, ବିଷଧର ପରି ଫଣା ଟେକି, ଲହଲହ-ଜିହ୍ୱା ହୋଇ ତୁଚ୍ଛା ତଳୁଟାରେ ଅକାରଣ ଚୋଟମାରି ଓ ସମସ୍ତଙ୍କୁ ଭୀତ ତ୍ରସ୍ତ କରି ଆତ୍ମସନ୍ତୋଷ ପାଇବାକୁ ମୁଁ କମ୍ ଲୋଡ଼େଁ ନାହିଁ ତ !

''ବିଶ୍ୱନାଥପୁର ପାଣିବଂଶ'' ପଦବୀଟା ମକଦମି ଉଠି ସାରିଲା ପରେ ମଧ ଏକ ପ୍ରଚଣ୍ଡ ସମ୍ମାନ ଓ ଅହଂକାର ବିଷୟ ହୋଇ ରହିଛି । ପ୍ରଜା ପାଟକମାନଙ୍କଠାରୁ ଖଜଣା ଅସୁଲ ଓ ସେଥି ସହିତ ସାରୁ ବିଶାଏ, ନଡ଼ିଆ କଡ଼ାଏ, ଖଡ଼ାଗଛେ, ଜହ୍ନିଟାଏ, କାକୁଡ଼ି କଷିଟାଏ, ମାଛପୁଞ୍ଜାଏ କି କଦଳୀ ଫେଣାଏ ମୁନାଫା ଆଣିବାର ବାଟ ଅବଶ୍ୟ ଅନେକ ବନ୍ଦ ହୋଇଗଲାଣି । ତଥାପି ସେଇମାନେ ଆଜି ଗାଆଁରେ ବଡ଼ ଚାଷୀ, ବେଶି ପାଠୁଆ, ବେଶି ବୁଦ୍ଧିଆ, ମାମଲତକାର, ହାକିମ, ଓକିଲ, ଶିକ୍ଷକ, କିରାନି, ଲେଖକ, ପୋଲିସ, ମନ୍ତ୍ରୀ, ପାର୍ଲାମେଣ୍ଟ ସଦସ୍ୟ, ପଞ୍ଚାୟତ-ଚେୟାରମ୍ୟାନ । ପୁଣି ମକଦମିଟା ଉଠିଗଲା ତ ହେଲା କ'ଣ ? ମକଦମା ତ କିଛି ଉଠି ନାହିଁ ।

ସେଇମାନେ ଆଜି ପୁଣି ଅନ୍ୟ ରୂପରେ ଅନ୍ୟ ବେଶରେ ବିଶ୍ୱନାଥପୁର ଶାସନରୁ ବାହାରି ଦେଶ ଶାସନ କରୁଛନ୍ତି; ଅଥଚ ପଚାଶ ବର୍ଷ ତଳେ ବିଶ୍ୱନାଥପୁର ପ୍ରାଇମେରି ସ୍କୁଲଘରଟି ଯେଉଁ ଅବସ୍ଥାରେ ରହିଥିଲା, ତା'ଠାରୁ ଏବେ ବେଶି ଖରାପ ହୋଇଛି ସିନା, ଆଉ କିଛି ଉନ୍ନତି କରି ପାରି ନାହିଁ । ସେଇ ପନ୍ଦର କୋଡ଼ିଏଟି ଉଚ୍ଚ ଜାତିର ଲୋକଙ୍କ ଭିତରୁ କେତେକ ଆଗେ ଯେମିତି ମେଦିନୀପୁରରେ ଭିକ ମାଗି ଓ କଲିକତାରେ ରୋଷେଇ କରି ଚଳୁଥିଲେ, ବେଶି ଦୂର ନ ଗଲେ ମଧ କେହି କେହି ଆଜି କଟକ ଭୁବନେଶ୍ୱରରେ ସେହି କାମ କରି ଚଳୁଛନ୍ତି । ତଥାପି ଗାଆଁକୁ ଆସିଗଲେ ତାଙ୍କ ମର୍ଯ୍ୟାଦା ପ୍ରତିପରି ଊଣା ପଡୁ ନାହିଁ ତିଳେ ହେଲେ । ତାଙ୍କ ଭିତରୁ କେତେ ଘର ସହରରେ ଦୋଘରା କରି ରହିଲେ ମଧ ଗାଆଁର ମାୟା ପୂରାପୂରି ତୁଟାଇ ଦେଇ ପାରି ନାହାନ୍ତି । କାରଣ - ସେ ତ ଖାଲି ମାୟା ନୁହ, କାୟା ଧାରଣ ଲାଗି କିଛି ଉପାଦାନ ମଧ ଯୋଗାଇଥାଏ । ନିଜ ଭିତରେ ତାଙ୍କର ଥରକୁ ଥର ମାରପିଟ୍ ମାଲିମକଦ୍ଦମା ପ୍ରାୟ ଲାଗି ରହିଛି । ଶାସକକୁଳ ଏଇ ପନ୍ଦର କୋଡ଼ିଏଟି ଘର ଭିତରେ ପରସ୍ପର କଳିକଜିଆ ମାରପିଟ ଲାଗିଲେ ବାକି ଅଢ଼େଇ ଶହ କି ତିନି ଶହ ଘର ଲୋକଙ୍କର ପକ୍ଷ ସମର୍ଥନ ଦେଖାଦେଇଛି, ଦେଖାଦେଇଛି ଅସଭ୍ୟ କଳିତକରାଳ, ମାରପିଟ୍, ମାଲିମକଦ୍ଦମା, ଅସଂଖ୍ୟ ଅନ୍ୟାୟ; ଅନାଚାର, ଅତ୍ୟାଚାର, ବ୍ୟଭିଚାର । ଶେଷରେ ପୁଣି ସବୁ ମେଣ୍ଟାମେଣ୍ଟି ହୋଇ ଯଥା ପୂର୍ବଂ ତଥା ପରମ୍ ।

ବିଶ୍ୱନାଥପୁର ଶାସନର ଏହି ପୁରୁଷାନୁକ୍ରମେ ଅଧିଷ୍ଠିତ ଶାସକମାନଙ୍କ ବଂଶଲତା ଦେଶ-ମହାଦେଶଗୁଡ଼ିକର ଇତିହାସବର୍ଣ୍ଣିତ ଶାସକମାନଙ୍କ ବଂଶଲତାଠାରୁ କୌଣସି ଅଂଶରେ ଊଣା ବୋଲି ତ ମନେ ହୁଏ ନାହିଁ—ଯଦି ବା ଇତିହାସ ପଢ଼ିଲାବେଳେ ସନ ତାରିଖ ସହିତ ଏହି ବଂଶଲତାଟାହିଁ ମୋର ସବୁଠାରୁ ବେଶି ବିରକ୍ତିକର ବିଷୟ ଥିଲା । ତାହା ଧାର୍ମିକ ଲୋକେ ନାମାବଳୀ ଘୋଡ଼ାଇ ହେଲାଭଳି କୌତୂହଳ, କୌତୁକ ଓ କିପରି ଗୋଟାଏ ବିରକ୍ତିକର ବିତୃଷ୍ଣା

ଭାବ ମୋ ମନରେ ଜଣାଉଥିଲା । ଅଥଚ ମୁଁ ଯେ ଆପେ ଏମିତି ଗୋଟାଏ ବଂଶଲତାର ବିରାଟ ନାମାବଳୀ ଘୋଡ଼ାଇ ହୋଇ ବୁଲୁଛି, ତାହା ତ କାହାରି ଆଖି ଆଗରୁ ଲୁଚାଇବାର ଉପାୟ ନାହିଁ । ତେଣୁ ମୋର ପୂର୍ବପୁରୁଷଙ୍କ ନାମୋଦ୍ଧାର କରି ବଂଶଲତାର ଆଂଶିକ ଚିତ୍ରଟି ଏଠାରେ ଦେବାକୁ ପାଠକଙ୍କ ଅନୁମତି ପ୍ରାର୍ଥନୀୟ ।

## ବଂଶଲତା




ସମ୍ପୂର୍ଣ୍ଣ ବଂଶାବଳୀ ଦେବାକୁ ଏଠାରେ ସ୍ଥାନାଭାବ

ବିବରଣୀଟି ଯୋଗାଇଛନ୍ତି, କଳ୍ପତରୁଙ୍କ ପୁତ୍ର ଓ ମୋର ପିତୃବ୍ୟ ଧ ଗୋପୀନାଥ ପାଣିଗ୍ରାହୀ । ବଂଶଲତାଟିରେ ଅଧିକାଂଶ ବଧୂ ଓ କନ୍ୟାଙ୍କର ନାମୋଲ୍ଲେଖ ନାହିଁ । ଯେଉଁମାନେ ବଂଶବୃଦ୍ଧିରେ ପୁରୁଷମାନଙ୍କ ତୁଳନାରେ ଅବଶ୍ୟ କମ୍ ସାହାଯ୍ୟ କରି ନ ଥାନ୍ତି; ଅଥଚ ସବୁ କ୍ଷେତ୍ରରେ ଆପଣାକୁ ଲୋକଲୋଚନ ଅଗୋଚରରେ ପର୍ଦ୍ଦା ଉହାଡ଼ରେ ଢାଙ୍କି ରଖନ୍ତି । ଉଲ୍ଲିଖିତ ନାମାବଳୀରୁ ମଧ ଅଧିକାଂଶ ପୁରୁଷ ଆଜି ମୃତ୍ୟୁର ପର୍ଦ୍ଦା ଉହାଡ଼ରେ । ମାତ୍ର ଅତୀତରୁ ଆଜି ସୁଦ୍ଧା ପୁରୁଷ ପୁରୁଷ ଧରି ଏଇମାନେ ହେଲେ ଗାଆଁଟିର ରକ୍ଷକ ଓ ଭକ୍ଷକ, ଶାସକ ଓ ଶୋଷକ ବା ପାଳକ ଓ ଚାଳକ; ବାକି ଯାହାଙ୍କର ବଂଶଲତା ଅନାବଶ୍ୟକ, ସେଇମାନଙ୍କ ସଂଖ୍ୟା ହେଲା ଗାଁ ଭିତରେ ପଶୁପକ୍ଷୀ କୀଟପତଙ୍ଗ ସଂଖ୍ୟାଠାରୁ କମ୍ ସିନା, କିନ୍ତୁ ମଣିଷଙ୍କ ସଂଖ୍ୟା ତୁଳନାରେ ସେମାନେ ବହୁ ଗୁଣରେ ଅଧିକ; ଯଦିବା ମଣିଷ ମଧରେ ସେଇମାନେ ବିଶେଷ୍ୟ-ପଦବାଚ୍ୟ ନୁହନ୍ତି, ବିଶେଷଣ ମାତ୍ର; ଅର୍ଥାତ୍ ସେମାନେ ହେଲେ ରକ୍ଷକ, ଭକ୍ଷକ, ଶାସକ, ଶୋଷକ ଓ ପାଳକ, ଚାଳକମାନଙ୍କର ରକ୍ଷିତ, ଭକ୍ଷିତ, ଶାସିତ, ଶୋଷିତ, ଚାଳିତ ଓ ପାଳିତ । ଏଇ ବିଶେଷଣ ପଦଗୁଡ଼ିକ ସେମାନଙ୍କ ବିଶେଷ୍ୟପଦକୁ ସୁନ୍ଦର ଶୋଭନୀୟ ଗୌରବମୟ ମହନୀୟ କରିଥାନ୍ତି । ବିଶେଷ୍ୟ ପଦ ବ୍ୟତିରେକେ ତାଙ୍କର ସ୍ୱତନ୍ତ୍ର ସ୍ଥିତି କିମ୍ବା ସତ୍ତା ନାହିଁ । ପୁଣି ବିଶେଷ୍ୟ ପଦମାନଙ୍କର ଜନ୍ମାନ୍ତରବାଦରେ ପ୍ରଗାଢ଼ ବିଶ୍ୱାସ ଥିବା ହେତୁ ବୋଧହୁଏ ତାଙ୍କର

ପ୍ରତିପତ୍ତି ଏବେ ସୁଦ୍ଧା ଅକ୍ଷୁଣ୍ଣ ରହି ଆସିଛି—ଅର୍ଥାତ୍ ବିଶ୍ୱନାଥପୁରରେ ଜନ୍ମି ମୃତ୍ୟୁଲାଭ କଲେ ତାଙ୍କର ଆଦି ସ୍ଥାନ ସମ୍ବଲପୁରରେ କାହାରି ଆଉ ପୁନର୍ଜନ୍ମ ହେବନି, ହେବ କେବଳ ସେହି ବିଶ୍ୱନାଥପୁରରେ । କଟକ ଭୁବନେଶ୍ୱର ଆଦି ସବୁ ସହର ଓ ସବୁ ଗାଆଁରେ ସବୁ କାଳେ ବୋଧହୁଏ ବାହାର ଲୋକଙ୍କ ପ୍ରତିପତ୍ତି ବେଶି ।

ମୁଁ ହେଲି ସେହି ବଂଶ-ଲତାର ନରାଧିପମାନଙ୍କ ଭିତରୁ ଜଣେ ନରାଧମ, ଯେ କି ଗାଆଁ ଛାଡ଼ି ସହରବାସୀ ହେଲାଣି । ଯେ କି ଗାଆଁର ନରାଧିପମାନଙ୍କ କଳିତକରାଳରୁ ବାହାରି ସହର କଳିତକରାଳରେ ପଶି ଗଲାଣି; ତଥାପି ଗାଆଁର ଲୋଭ ଛାଡ଼ି ପାରିନି । ରକ୍ତଟା ଯେ କେବଳ ଲାଲ ରଙ୍ଗର ତରଳ ପଦାର୍ଥ ନ ହୋଇ କିମ୍ବା ପଶୁପକ୍ଷୀଙ୍କର ନ ହୋଇ ମନୁଷ୍ୟ ରକ୍ତ—ସେ ମଣିଷର ଚମତ୍କାର ରଙ୍ଗ ଯାହା କିଛି ହେଉ ପଛକେ— ଏହା ଛଡ଼ା ତା'ର ବିଶୁଦ୍ଧତା ବିଷୟରେ ଅନ୍ୟ ସାକ୍ଷପ୍ରମାଣ ଦେଇପାରନ୍ତି ଅବା ବ୍ଲଡ଼୍‌ବ୍ୟାଙ୍କର ବିଶେଷଜ୍ଞ ଡାକ୍ତର । ମାତ୍ର ଇତିହାସ ଆରମ୍ଭରୁ ମଣିଷ ଯେମିତି ଗୋଟାଏ ଭ୍ରାମ୍ୟମାଣ ଜୀବ ବୋଲି ଆମେ ପଢ଼ିଆସିଲୁଁ, ଏବେ ପୁଣି ଉଦ୍‌ବାସ୍ତୁଙ୍କ ଥଇଥାନ ବ୍ୟାପାରରେ ଦେଖିଆସିଲୁଁ, ତହିଁରୁ ଜାତି ଧର୍ମ ଭାଷା କିମ୍ବା ରକ୍ତର ବିଶୁଦ୍ଧତା ବିଷୟରେ ଗୋଟିଏ ମୋଟାମୋଟି ଧାରଣା ହେବା ଆମର ସ୍ୱାଭାବିକ । ସେହି ବିଚାରରୁ ପୃଥିବୀ ଗୋଟାକର ସବୁ ମଣିଷ ତ ସବୁ ଦେଶର ହିଁ ପୋଷ୍ୟପୁତ୍ର, ଯାହାକୁ ସେମାନେ ଜନ୍ମଭୂମି ବୋଲି ଗର୍ବ କରିଥାନ୍ତି; ଅଥଚ କୌଣସି ଭୂମି, କୌଣସି ଦେଶ କାହାରି ହେଲେ ମୌରସୀ ନୁହେଁ ତ ! ପୁଣି ଯେଉଁମାନେ ଆଦିବାସୀ ବୋଲି ପରିଚିତ, ଆଫ୍ରିକାଠାରୁ ଅଷ୍ଟ୍ରେଲିଆ ପର୍ଯ୍ୟନ୍ତ ପୃଥିବୀ ତମାମ ତାଙ୍କ ଭିତରେ ବି ଗତାଗତ କିଛି କମ୍ କି ?

ଅତଏବ ମୋର ପାଞ୍ଚପୁରୁଷ ଆଗରୁ ଯଦି ଥୋଡ଼ିବଳଦ ବେପାର କରିବାକୁ ସମ୍ବଲପୁରରୁ ଆସି ଶେଷରେ ସ୍ମାର୍ତ୍ତ, ଶ୍ରୋତ୍ରୀୟ କିମ୍ବା ଶାସନୀ ବ୍ରାହ୍ମଣରେ ଆମେ ପରିଚିତ ହୋଇଥାଉଁ— କିମ୍ବା ଆହୁରି ଦଶପୁରୁଷ ଆଗରୁ ଥୋକାଏ ନେଫା ଲାଦାଖ ଅଞ୍ଚଳରୁ କି ଆହୁରି କେତେ ପୁରୁଷ ଆଗରୁ ମଧ୍ୟ ସୁଦୂର ଏସିଆରୁ ଆସି ଶେଷରେ ସମ୍ବଲପୁର ବାଟେ ପୁରୀଜିଲ୍ଲା ବାଲିପାଟଣା ଥାନା ବିଶ୍ୱନାଥପୁରରେ ବସବାସ କରିଥାଉଁ—ସେଥିରେ ତ ଆଶ୍ଚର୍ଯ୍ୟ ହେବାର କିଛି ହିଁ ନାହିଁ !

ପ୍ରସଙ୍ଗକ୍ରମେ ମନେପଡ଼େ—ଥରେ ଗୋଟିଏ ଦେଶୀୟ ରାଜ୍ୟରେ ମୁଁ ରାଜ-ଅତିଥି ହୋଇଥାଏଁ । ରାଜଦର୍ଶନ ପୂର୍ବରୁ ଦର୍ଶନ ମିଳିଲା ଅତିଥିଭବନର ଖାନ୍‌ସମାଙ୍କ ସହିତ, ଚେହେରାଟି ଗୋଲଗାଲ, ସେଥିସହିତ ମୁଖମଣ୍ଡଳରେ ବିପୁଳ ବର୍ତ୍ତୁଳ ଦାଢ଼ି । ଦାଢ଼ି ଭିତରୁ ବାହାରି ଆସୁଥାଏ ରାଜକୀୟ ଅତିଥିପରାୟଣ ଭାଷା । ଅବିମିଶ୍ର ଖାଣ୍ଟି ଓଡ଼ିଆରେ ନିଜର ସେ ସବିନୟ ସଂକ୍ଷିପ୍ତ ପରିଚୟ ଦେଲେ ଯେ, ଖୋଦ୍ ସମ୍ରାଟ୍ ଔରଙ୍ଗଜେବ୍‌ଙ୍କର ଜଣେ ସହଜ ବଂଶଧର ! ଓଡ଼ିଶା ଗଡ଼ଜାତକୁ ତାଙ୍କର ପୂର୍ବପୁରୁଷ କି ଭାବରେ ଆସିଲେ, ତାହାର ସବିଶେଷ ବିବରଣ ମଧ୍ୟ ସେ ଅନର୍ଗଳ କହିଗଲେ ।

କେହି କେହି କହନ୍ତି, ଥୋଡ଼ିବଳଦ-ବ୍ୟବସାୟୀ ସମ୍ବଲପୁରୀ ଗଣିପାଣି ଓ ଅନାମ ପାଣି ଥିଲେ ଝାଡୁଆ ବ୍ରାହ୍ମଣ । ପ୍ରଚଳିତ ଝାଡୁଆ ଶବ୍ଦଟିର ବିଶୁଦ୍ଧ ରୂପ ହେଲା—ଆରଣ୍ୟକ ।

ଅର୍ଥାତ୍ ବୈଦିକ ଅଥବା ପ୍ରାଗ୍‌ବୈଦିକ ଯୁଗରେ ଯେଉଁ ଋଷିମାନେ ଅରଣ୍ୟରେ ଆଶ୍ରମ କରି ରହୁଥିଲେ ଓ ପରେ ସଂଗଠିତ ନଗରମାନଙ୍କୁ ନ ଆସି ନିଜ ରକ୍ତର ବିଶୁଦ୍ଧତା ରକ୍ଷା କରିଥିଲେ, ସେହିମାନଙ୍କ ବଂଶଧର । ସମ୍ବଲପୁରକୁ ଆଉ କେଉଁଠୁ ସେମାନେ ଆସିଥିଲେ, ତାହାର ଇତିହାସ ବି ଖୋଜିବାକୁ ପଡ଼ିବ । ମୋଟ ଉପରେ ସମସ୍ତେ ଅନ୍ୟ ସ୍ଥାନରୁ ଆସନ୍ତି ଏବଂ ପରେ ଏକ ଭୂମିଖଣ୍ଡକୁ ଜନ୍ମଭୂମି, ମାତୃଭୂମି, ସ୍ୱଦେଶ କିମ୍ବା ସ୍ୱାଧୀନତା କହି ଭାଗବଣ୍ଟାଆରା କରନ୍ତି, ଦେଶପ୍ରେମ କବିତା ବା ସଙ୍ଗୀତ ଲେଖନ୍ତି, ଜାତି ଓ ରକ୍ତର ବିଶୁଦ୍ଧତା ପ୍ରମାଣ ପାଇଁ ନିୟମ କଟକଣା କରନ୍ତି ।

ରକ୍ତର ଏଇ ତଥାକଥିତ ବିଶୁଦ୍ଧତା ରକ୍ଷା କରିବା ପାଇଁ ଲଣ୍ଡନର ରାଜା ଅଷ୍ଟମ ଏଡ୍‌ଓଆର୍ଡ଼ଙ୍କୁ ଗାଦିଚ୍ୟୁତ ହେବାକୁ ପଡ଼ିଥିଲା । ପୁଣି ଭାରତବର୍ଷର ମୁକ୍ତ ପ୍ରଜାଶାସନରେ ବି ଜାତିଆଣ ଶୁଦ୍ଧିପତ୍ରର ବିଚାର ଏ ପର୍ଯ୍ୟନ୍ତ ନିର୍ମୂଳ ହୋଇ ନାହିଁ । ଚାରିଟି ଜାତି ହେଲେ ବି ବ୍ରାହ୍ମଣ ଭିତରେ ଆରଣ୍ୟକ, ଶ୍ରୋତ୍ରୀୟ, ସ୍ମାର୍ତ୍ତ, ସାମନ୍ତ, ବୈଦିକ, ହଳୁଆ, ସାରୁଆ, ଦାନୁଆ, ପଣ୍ଡା, ମାସ୍ତାନ ପରି ସବୁ ଜାତିରେ ଶତ ଶତ ବିଭାଗ—ଶାଖା ପ୍ରଶାଖା ଗୋତ୍ର । ଏହି ଗୋତ୍ରମାନେ ହେଲେ ଜଣେ ଜଣେ ଋଷି—ଆତ୍ରେୟ, ଭରଦ୍ୱାଜ, ବତ୍ସସ, ହାରିତ, ବଶିଷ୍ଠ ଆଦି ପ୍ରତ୍ୟେକ ଋଷିଙ୍କର ଲକ୍ଷ ଲକ୍ଷ ବଂଶଧର । ରକ୍ତଶୁଦ୍ଧି ରକ୍ଷାଲାଗି ଏକଗୋତ୍ରରେ ବିବାହ ସମ୍ପର୍କ ସ୍ଥାପନ ନିଷିଦ୍ଧ !

ମୋର ପ୍ରପିତାମହ ଶ୍ରୀନିବାସଙ୍କ ପୂର୍ବେ ଯେଉଁ ବୃଦ୍ଧ ପ୍ରପିତାମହଙ୍କ ନାମାବଳୀ ଯାଇ ଛିଣ୍ଡିଛି ଭରଦ୍ୱାଜ ଋଷି ଆଶ୍ରମରେ, ସେହି ଭରଦ୍ୱାଜଙ୍କ ପିତା ପିତାମହାଦିଙ୍କର ଉତ୍ପତ୍ତି ସ୍ଥଳ ସ୍ୱୟଂ ବ୍ରହ୍ମାଙ୍କ ମୁଖ ।

ଚାରି ମୁଖରୁ ଚାରି ବେଦ । ଶ୍ରୀନିବାସ ଥିଲେ ଯଜୁର୍ବେଦୀ ଭରଦ୍ୱାଜ ଗୋତ୍ରୀ । ଭରଦ୍ୱାଜ ଋଷି ଧନୁର୍ବେଦର ଶିକ୍ଷକ । ତାଙ୍କ ପୁତ୍ର ଦ୍ରୋଣ ଓ ପାଞ୍ଚାଳ ରାଜକୁମାର ଦ୍ରୁପଦ—ବାଳକ ବୟସରେ ଦୁହେଁ ଭରଦ୍ୱାଜ ଆଶ୍ରମରେ ଅସ୍ତ୍ରବିଦ୍ୟା ଶିକ୍ଷା କରନ୍ତି । କଥାରେ ଅଛି, ଇଂଲଣ୍ଡର ଇଟନ୍ ଓ ହ୍ୟାରୋ ବିଦ୍ୟାଳୟ ଖେଳ ପଡ଼ିଆରେ ହିଁ ଓଆଟରଲୁ ଯୁଦ୍ଧ ହୋଇ ଥିଲା । ତା'ପରେ ଏଇଠୁ ବାହାରନ୍ତି ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ, ପୁଣି ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ନେହେରୁ ।

ଭରଦ୍ୱାଜ ଆଶ୍ରମର ଖେଳପଡ଼ିଆରେ ସେମିତି ହୋଇଥିଲା ମହାଭାରତ ଯୁଦ୍ଧ; ଦ୍ରୋଣ ଗୁରୁଙ୍କ ଶିକ୍ଷାର୍ଥୀମାନଙ୍କ ମଧ୍ୟରେ । ଭରଦ୍ୱାଜ-ଗୋତ୍ରୀ ଶ୍ରୀନିବାସ ନିଜେ ଧନୁର୍ବିଦ୍ୟା ଆୟତ୍ତ କରିଥିଲେ କି ନାହିଁ କିଏ ଜାଣେ, କିନ୍ତୁ ତାଙ୍କ ବଂଶଧରମାନେ ଧନୁରେ ବାଟୁଳି ଖଞ୍ଜି ରାମଭକ୍ତ ବାନର ସେନାକୁ ଆକ୍ରମଣ କରୁଥିଲେ । ରେରେକାର ଶବ୍ଦରେ ତାଙ୍କୁ ଘଉଡ଼ାଇ ଦେଉଥିଲେ । ମୁଁ ମଧ୍ୟ ଅତି ଅଳ୍ପ ବୟସରୁ ବାଟୁଳି ଓ ବାଟୁଳିଖଡ଼ା ପ୍ରତି ଆକୃଷ୍ଟ ହୋଇ ଏଇ ସୈନ୍ୟଛାଉଣିରେ ଯୋଗ ଦେଇଥିଲି । ଏଥିରେ ମୋର ଗୁରୁ ଥିଲେ ଭୋବନି ଭାଇନା, ବାପାଙ୍କ ଭଣଜା, ଘରେ ମୋର ମୁରବି ଓ ଶିକ୍ଷାଦୀକ୍ଷାର ଆଦିଗୁରୁ । ଛଣପଟ ଦଉଡ଼ି ବଳାଯାଇ ବାଉଁଶ ବତାରେ ବାଟୁଳିଖଡ଼ା କିମିତି ତିଆରି ହୁଏ, ପୁଣି ଚିକିଟା ମାଟିରେ ଗୁଳି କରାଯାଏ, ତାଙ୍କରିଠାରୁ ମୁଁ ଶିଖିଥିଲି ।

ବିଶ୍ୱନାଥପୁରରେ ଜମିଦାର ଥାନ୍ତି, ନିମାପଡ଼ା ରାଟ୍ ସିଂହ ବଂଶ । ତାଙ୍କରି ଅଧୀନରେ ବିଶ୍ୱନାଥପୁର ଗାଁ ମକଦମି ମାହାଲର ଖଜଣା ଅସୁଲ କରି ଜମିଦାର କଚେରିରେ ଦାଖଲ କରୁଥିଲେ ଶ୍ରୀନିବାସ । ଦିଅଁ ଦେଉଳ, ସେବା ପୂଜା, ଛତିଶପାଟକ ନିଯୋଗ ମୃତୟନ କରି ଓ ସବୁରି ପାଇଁ ଜମି ଜାଗିରି ଖଞ୍ଜି ସେ ଗାଁଟିକୁ ଭଲକରି ଗଢ଼ିଲେ । ଜମିଦାରି ଉପରେ ଜମିଦାରଙ୍କ କର୍ତ୍ତୃତ୍ୱ ଭଳି ଗାଆଁ ମକଦମାମାନଙ୍କର ପ୍ରଜା ପାଟକ ଉପରେ ସେହି ଅନୁପାତରେ ହାକିମ ଜାହିର ଥାଏ । ଗାଁ ଭିତରକୁ ଜମିଦାରଙ୍କ ପିଆଦା ଆସିଲେ କିମ୍ୱା ବାକି ଖଜଣା କ୍ରୋଖ ପରଓ୍ୱାନା ଧରି ଅଦାଲତ ପିଅନ ଆସିଲେ, ଚହଳ ପଡ଼ିଯାଏ । ପଡ଼ିଯାଏ କେତେ ତାଟି କବାଟ ।

କୋଠଦେଶ ଜମିଦାରି ମାହାଲଟି ଆଡ଼େ ଦୀର୍ଘେ ବତିଶ କୋଶ । ନିମାପଡ଼ା ଜମିଦାରି କଚେରି ଆଗରେ କେହି ହେଲେ ଜୋତା ମାଡ଼ି କି ଛତା ଟାଣି ଚାଲିଯିବାକୁ ମନା । ଅଜାଣତରେ କିଏ ସେମିତି ଅପରାଧ କଲେ ସଙ୍ଗେ ସଙ୍ଗେ ଦଣ୍ଡ ପ୍ରହାର ଜୋରିମାନା । କାରଣ ତାହା ଖୋଦ୍ ଜମିଦାରଙ୍କ ପ୍ରତି ଅପମାନ । ଛତା କିମ୍ୱା ଜୋତାରେ କେବଳ ତାଙ୍କରି ଅଧିକାର । କୋଠଦେଶ ପ୍ରଗଣାର ଏକାଙ୍ଗଚକ୍ରବର୍ତ୍ତୀ ରାଟ୍‌ସିଂ ।

ତାଙ୍କର ସବାରି ବିଜେ ହେଲେ ଗର୍ଭିଣୀ ଗାଈ ବାଟ ଛାଡ଼ି ଦେଉଥିଲା । ଗର୍ଭିଣୀ ଗାଈ ବୋଧହୁଏ ବଡ଼ ନିର୍ଭୀକା, ଗର୍ବିତା ଓ ମାରଣା ବୋଲି ଏହି ପ୍ରବଚନଟି ଅଛି । ରାଜଧାନୀ ନିମାପଡ଼ାଠାରୁ ପୁରୀ ଜଗନ୍ନାଥ ଦର୍ଶନକୁ ବାହାରିଲେ, ସେ ନିଜ ରାଜ୍ୟ ଛଡ଼ା ଆଉ କାହାରି ଜମିରେ ପାଦ ଦିଅନ୍ତି ନାହିଁ ।

ପ୍ରବାଦ ଅଛି, ପୁରୀ ପାଖ ବାଲିଘାଇରେ କୋଠଦେଶ ଜମିଦାରଙ୍କ ସବାରି ଦିନେ ଯାଇ ପହଞ୍ଚିଲା । ଘାଟପାରିଆ ଜମିଦାରି ବେଠି ଖଟେ । କିନ୍ତୁ ଆଉ ସମସ୍ତଙ୍କ ପାଖରୁ ନଈ ମାସୁଲ ଆଦାୟ କରେ । ଜମିଦାରଙ୍କ ଲୋକ ତାକୁ ପରିଚୟ ଦେଇ ପାରିକରିବାକୁ କହିବାରୁ ସେ ଗୋଟିଏ ପ୍ରଶ୍ନ କଲା—

"ବାର କଣା ତେର ଲୋ ।
ତେବେ ଜାଣିବି କୋଠଦେଶ ପୋ ।"

"ବାର କଣା" ଅର୍ଥାତ୍ ଟୁସିକଣା, ସରକଣା ଆଦି ବାରଟି ଗାଁ ପୁଣି ରଟିଲୋ, ପମ୍ପାଲୋ, ଅରିଲୋ ନାମରେ ତେରଟି ଗାଁ କୋଠଦେଶ ଭିତରେ ଅଛି । ଜମିଦାର ନିଜେ ସେଗୁଡ଼ିକୁ କହିଦେବାରୁ ନାଉରୀ ତାଙ୍କୁ ଚିହ୍ନି ପାରିଲା । ଭଲ ପ୍ରଶ୍ନ କରିଥିବାରୁ ତା'ମୁଣ୍ଡରେ ବନ୍ଧାହେଲା ଜମିଦାରଙ୍କ ପାଟଶାଢ଼ି ।

ଜମିଦାରି ଉପରୁ ରାଟ୍‌ସିଂଙ୍କ କର୍ତ୍ତୃତ୍ୱ ଚାଲିଗଲା ଅତି ସାମାନ୍ୟ କାରଣରୁ । ଥରେ ତାଙ୍କ ନଅର ଦେଖିବାକୁ ଯାଇଥାଉଁ ବନ୍ଧୁ କେତେଜଣ ଛାତ୍ରାବସ୍ଥାରେ । ନଅର ପାଚେରିର ବିରାଟ ଜାଉଁଳି ପିତଳ କବାଟ ସେତେବେଳକୁ ଥିଲା କି ନାହିଁ ମନେ ପଡୁନି । ସେ କବାଟ ଖୋଲାଗଲେ କି ବନ୍ଦ ହେଲେ କୁଆଡ଼େ ତା'ର ଶବ୍ଦ ଆଠ ଦଶ ମାଇଲ ଦୂରରେ କୋଣାର୍କ

ପର୍ଯ୍ୟନ୍ତ ଶୁଣା ଯାଉଥିଲା । ନଅର ଭିତର ଘର ସବୁ ଭାଙ୍ଗିରୁଜି ଯାଇଥାଏ । ଜମିଦାର ସାଁନ୍ତଙ୍କର ଜଣେ ବଂଶଧର କହିଲେ, ତାଙ୍କ ଜମିଦାରି ଚାଲିଯିବାର କାହାଣୀ—

ଦୁଇ ଭାଇଙ୍କ ଭିତରେ କଳିର ଆରମ୍ଭ ହୁଏ ପାରା ଘେନି । ଏ ଭାଇର ପାରା ଉଡ଼ିଯାଇ ସେ ଭାଇ ଚାଳରେ ବସିଲା । ସେ ଭାଇର ପିଲାଏ ପାରାକୁ ଧରନ୍ତି । ସେଇଠୁ ଲାଗେ ମକଦମା । କଟକର ବଲ୍ଲିଉଗଡ, ପୁରୀ ଏମାର ମଠ ମହନ୍ତ ପୁଣି ଭିଙ୍ଗରପୁର ଚୌଧୁରୀ ଯୋଗାନ୍ତି ମକଦମା ଖର୍ଚ୍ଚ କରଜସୂତ୍ରରେ । ପାରା ମକଦମାରେ ଡିଗ୍ରୀ କାହାର, ଡିସ୍‌ମିସ୍ କାହାର, ପାରା ଶେଷକୁ କେଉଁ ଆକାଶରେ ଉଡ଼ିଗଲା । ମହାଜନମାନେ ନାଲିସ କରନ୍ତି ତାଙ୍କ ଋଣ ଟଙ୍କା ପାଇଁ । ଲାଟ୍‌ଯାଏ ନିଲାମରେ ।

କ୍ରୋଖ ଆସେ । ଜମିଦାର ଶୁଣନ୍ତି, ତାଙ୍କ ଜମିଦାରି ଚାଲିଯାଉଛି ଅନ୍ୟ ହାତକୁ । ମୁହଁରେ ହସ ଫୁଟିଉଠେ । ବେପରୁଆ ହସ—ଜମିଦାରିଟା କ'ଣ ତମ୍ଭା, ପିତଳ, କଂସା, ଲୋଟା ହୋଇଛି କି ଆମ ହାତରୁ ଆଉ ଜଣେ ଘେନି ପଳେଇବ ! ଆମେ ଯେମିତି ଅଛୁଁ, ଆମ ଜମିଦାରି ବି ସେମିତି ରହିଥିବ । ପୁରୀ କଲେକ୍‌ଟରଙ୍କୁ ସେତେବେଳେ ଖାଲି ପଦୁଟିଏ କଥା କହି ଦେଇଥିଲେ, ଚାରିଅଣା ଜମିଦାରିରୁ କରଜ ଶୁଝଟ ହେଇ ବାକିତକର ମାଲିକ ହୋଇ ସେ ରହିଥାନ୍ତେ । ମାତ୍ର ତାହା ହେଲା ନାହିଁ । ଜମିଦାରି ଖଣ୍ଡିଆ ହେବନି, ଯେମିତି ଥିଲା ସେମିତି ରହିବ, ଆମେ ବି ଯେମିତି ଅଛୁଁ ସେମିତି ।

ସେଇ ଜମିଦାରଙ୍କ କଚେରିରେ ବିଶ୍ୱନାଥପୁର ମୌଜାର ସାଲିଆନା ଦାଖଲ କରୁଥାନ୍ତି ଶ୍ରୀନିବାସ । ବାପାଙ୍କ ଠାରୁ ଶୁଣିଛି, ଥରେ କୁଆଡ଼େ ଜିଲ୍ଲା କଲେକ୍ଟର ଆମ ଅଞ୍ଚଳକୁ ଗସ୍ତରେ ଆସିଥାନ୍ତି । ଗୋରା ସାହେବଙ୍କୁ ଦେଖିବାପାଇଁ ଗାଁଲୋକେ ଆସି ଜମା ହୋଇଗଲେ ।

ସାହେବ ହିନ୍ଦୀରେ ପଚାରିଲେ—"ଫସଲ କେମିତି ହେଇଛି ?" ଫସଲ ଭଲ ହୋଇ ନ ଥାଏ । ପ୍ରଜାମାନେ ବାକି ଖଜଣା ଦେଇପାରୁ ନ ଥାନ୍ତି । ସେଥିଲାଗି ଖଜଣା ରିହାତି ମିଳିବାକୁ ଶ୍ରୀନିବାସ କଲେକ୍ଟରଙ୍କୁ ଦରଖାସ୍ତ କରିଥାନ୍ତି; ମାତ୍ର ଖୋଦ୍ ସର୍‌ଜମିନ୍‌ରେ ଆସି କଲେକ୍ଟର ଦେଖନ୍ତି, ଚାରିଆଡ଼େ ପାଚିଲା ଧାନକେଣ୍ଡାରେ କିଆରି ସବୁ ହସୁଛି ।

ଦରଖାସ୍ତକାରୀକୁ ସାହେବ ତଲବ କଲେ । ଶ୍ରୀନିବାସ ଉପସ୍ଥିତ ଥାନ୍ତି । ଲୋକେ ତାଙ୍କୁ ଚିହ୍ନାଇ ଦେଲେ । ସାହେବ ତାଙ୍କୁ କଟମଟ କରି ଚାହିଁ ଧମକ ଦେଲେ—

ଝୁମ୍‌ଝୁଟା ଲେଖା—କେସା ଡାନ ହୁଆ ଡେଖୋ ।

ଶ୍ରୀନିବାସ ବୁଝାଇଦେଲେ, "ନାହିଁ ସାହେବ, ମୋଟେ ଚାରିଅଣାରେ ଫସଲ ହୋଇଛି ଏ ବର୍ଷ ।"

ସାହେବ କିନ୍ତୁ ବୁଝିବାକୁ ନାରାଜ । ଚିଲା ଚିଲା ଆଖିରେ ଶ୍ରୀନିବାସଙ୍କ ଆଡ଼କୁ ତରାଟି ଚାହିଁ କହିଲେ—

ଟୁମ୍ ଝୁଟା ବୋଲଟା । ବହୋଟ୍ ଟାନ୍ ହୁଆ ।

କାହାରି ଡରାଣରେ ଶ୍ରୀନିବାସ ଦବିଯିବା ପାତ୍ର ନୁହନ୍ତି, ଗୋରା ହାକିମ କି କଳା ହାକିମ ଯେ ହୁଅନ୍ତୁ ପଛେ । ସେ ଏକଜିଦ୍ ଧରି ବସିଲେ, ଯାହା ଦରଖାସ୍ତ କରିଛନ୍ତି, ସବୁ

ସତ—କିଛି ମିଛ ନୁହେଁ । ସାହେବର ମଧ ଏକା ଜିଗର । ଦାନ୍ତରେ ଚୁରୁଟ୍ କାମୁଡ଼ି ଧୂଆଁ ଛାଡ଼ି ପଚାରିଲେ—

''ବଟାଓ ହମ୍‌କୋ, କୈସା ଟୁମ୍ ସଚ୍ ହୈ ।''

ଆଉ କିଛି ଉପାୟ ନ ଦେଖି ସାହେବଙ୍କୁ ଟିକିଏ ଅପେକ୍ଷା କରିବାକୁ କହି ଶ୍ରୀନିବାସ ଗହୀର ମଝିରେ ପଶିଗଲେ । ଶହ ଶହ ଗାଆଁ ଲୋକ ଭୟ ବିସ୍ମୟରେ ଟାଟକା ହୋଇ ପଡ଼ିଥାନ୍ତି । ଏକା ତୁଠରେ ବାଘ ଛେଳିକୁ ପାଣି ପିଆଇବା ଇଂରାଜୀ ଅମଳ । ଶ୍ରୀନିବାସ ମିଛ ଦରଖାସ୍ତ କରିଥିବା ହେତୁ ତାଙ୍କ ହାତରେ ହୁଏତ ହାତକଡ଼ି ପଡ଼ିବ ଏକ୍ଷଣି ! ପାଖେ ପାଖେ ତ ପୁଲିସ୍ ଫୌଜ ଚାଲିଛନ୍ତି ।

ଦୂରରେ ଶ୍ରୀନିବାସଙ୍କୁ ଗହୀର ମଝିରେ କିଆରି କିଆରି ବୁଲୁଥିବା ଦେଖାଯାଉଥାଏ । ଦଶବାରଟା କିଆରିରୁ କେଣ୍ଡାଏ ଲେଖାଁ ଦଶବାର କେଣ୍ଡା ଧାନ ଉପୁ଼ଡ଼ି ଆଣି ସେ ପହଞ୍ଚିଲେ ସାହେବଙ୍କ ପାଖରେ । ତାଙ୍କୁ ସବୁ କଥା ବୁଝାଇଦେଇ କେଣ୍ଡାଗୁଡ଼ିକରୁ ଧାନତକ ହାତରେ ମକଚି ଅଲଗା କରି ଜମାକଲେ । ପୋଷରେ ରଖି ତାକୁ ଫୁଙ୍କି ଧାନରୁ ବାହାର କଲେ ଅଗାଡ଼ି । ତା'ପରେ ଧାନ ଓ ଅଗାଡ଼ି ଅଲଗା ରଖି ସାହେବଙ୍କ ଆଗରେ ପ୍ରମାଣ କରି ଦେଖାଇ ଦେଲେ ଯେ, ଅଗାଡ଼ି ବାହାରିଛି ବାରପଣ, ଧାନ ଚାରିପଣ ! ଖୁସ୍ ହୋଇ ସାହେବ ତାଙ୍କ ପିଠିରେ ହାତମାରି କହିଥିଲେ—

''ଟୁମ୍ କାଲାଚାଣ୍ଡ୍ ହୋ ।''

ପୁଣି ଏଇ ଘଟଣାଟିକୁ ସାହେବ କୁଆଡ଼େ ପୁରୀ-କଚେରି ମହାଫିସ୍‌ଖାନା ରେକର୍ଡ଼ରେ ଦରଜ କରିଥିଲେ । ପୁରୀ ଜିଲ୍ଲାସ୍କୁଲରେ ମୁଁ ପଢୁଥିବାବେଳେ କୁଆଡୁ ବିଡ଼ିରୁ ନିଆଁ ଲାଗି ରେକର୍ଡ଼ସବୁ ପୋଡ଼ି ଭସ୍ମସାତ୍ ହୋଇଗଲା ।

'କାଲା ଆଦ୍‌ମି' ବଦଳରେ ସାହେବଙ୍କ ମୁହଁରୁ 'କାଲାଚାନ୍ଦ' ଉପାଧି ପାଇଲେ ଶ୍ରୀନିବାସ; କିନ୍ତୁ ପରେ ବାକି ଖଜଣା ଅସୁଲ କରି ନ ପାରି ତାଙ୍କୁ କେତେକ ମାସ ସିଭିଲ୍ ଜେଲ୍ ଖଟିବାକୁ ପଡ଼ିଥିଲା । ଜେଲ୍ ଭିତରେ ଥାଇ ସେ ଅତିବଡ଼ୀ ଜଗନ୍ନାଥ ଦାସଙ୍କର ବାରଖଣ୍ଡି ଯାକ ଶ୍ରୀମଦ୍‌ଭାଗବତ ତାଳପତ୍ର-ଖେଦାରେ ନକଲ କରିଥିଲେ । ମାଛମଞ୍ଜିପରି ଗୋଲ ଗୋଲ ସୁନ୍ଦର ଅକ୍ଷରରେ ଲେଖା ସେହି ସବୁ ତାଳପତ୍ରପୋଥି ଆଜିପର୍ଯ୍ୟନ୍ତ ଆମ ଘରେ ଖଟୁଲିରେ ପୂଜା ପାଉଛନ୍ତି । କାରଣ ସେ ସବୁକୁ ପଢ଼ିବା ଲୋକ ଆଉ ଅଛ ଅଛନ୍ତି ।

ଗ୍ରାମରେ ଯେଉଁ ବାଲୁକେଶ୍ୱର ଦେଉଳ ସେ ତୋଳାଇଥିଲେ, ତାହା ମଧ ଏବେ ଅଛି । ପ୍ରତି ଅମାବାସ୍ୟା ରାତିରେ ଦେଉଳ ଉପରକୁ ମହାଦୀପ ଉଠିଲା ବେଳେ 'ଶ୍ରୀନିବାସ ପାଣି-କୁଳ ଉଜ୍ଜ୍ୱଳ ହେଉ' ବୋଲି ଡାକରା ହୁଏ ।

ଶ୍ରୀନିବାସ ଥିଲେ ଚାରି ଭାଇ । (ବଂଶଲତା ଦ୍ରଷ୍ଟବ୍ୟ) ବିଶ୍ୱନାଥପୁରରେ ତାଙ୍କର ସମୁଦାୟ ସମ୍ପତ୍ତି ସେ ଚାରିଭାଇଙ୍କ ଭିତରେ ସମାନ କରି ବାଣ୍ଟି ଦେଇଥିଲେ । ତାଙ୍କ ମୃତ୍ୟୁଶଯ୍ୟାରେ ଝିଅ ପୁଅମାନେ ବସି ଯେତେବେଳେ ପଚାରନ୍ତି; 'ବାପା ଆମପାଇଁ କ'ଣ ରଖିଚ ?' କ୍ଷୀଣ କଣ୍ଠରେ ସେ ଉତ୍ତର ଦେଇଥିଲେ, 'ତୁମ ପାଇଁ ଧର୍ମ ।' ଏଇ କଥାଟି ମୁଁ

'ମାଟିର ମଣିଷ' ଉପନ୍ୟାସର ପ୍ରଧାନ ବୁଢ଼ା ମୁହଁରେ କୁହାଇ ଦେଇଛି । ଏ କଥାର ଅନେକ ଉଦାହରଣ ଅଛି, ଆମ ପୋଥି ପୁରାଣରେ । ବୁଦ୍ଧିଲାଭ କରି ବୁଦ୍ଧଦେବ ଯେବେ ଦଶ ସହସ୍ର ଭିକ୍ଷୁକଙ୍କ ସହିତ ନିଜ ରାଜ୍ୟକୁ ଫେରନ୍ତି, ସେତେବେଳେ ତାଙ୍କ ପତ୍ନୀ ପିତାଙ୍କଠାରୁ ଉତ୍ତରାଧିକାର ମାଗିବାପାଇଁ ପୁଅକୁ ଶିଖାଇ ପଠାନ୍ତି । ବୁଦ୍ଧଦେବ ନିଜ ଗୈରିକ ଉତ୍ତରୀୟଖଣ୍ଡି ଉତ୍ତରାଧିକାରସୂତ୍ରେ ପୁଅକୁ ଦିଅନ୍ତି । ଏହାହିଁ ପୃଥିବୀରେ ସବୁ ଧର୍ମର ନୀତି ହୋଇ ରହିଛି ।

ନିଜକୁ ଉଚ୍ଚ ସ୍ତରର ବ୍ରାହ୍ମଣରୂପେ ପରିଚୟ ଦେବାପାଇଁ ଶ୍ରୀନିବାସ ତାଙ୍କ ଝିଅପୁଅମାନଙ୍କୁ ପୁରୀଜିଲ୍ଲା ରାହାଙ୍ଗ-ଶାସନମାନଙ୍କରେ ସାମନ୍ତ ବ୍ରାହ୍ମଣଘରେ ବିବାହ ଦେଇଥାନ୍ତି । ଆଜିକାଲି ଶିକ୍ଷିତ ରୋଜଗାରକ୍ଷମ ବରପାତ୍ରଙ୍କ ଦର ଯେମିତି ବେଶି, ସେତେବେଳେ ଉଚ୍ଚ ଜାତିର ଦର ଥିଲା ସେମିତି । ନିଜ ଜାତିର ଟେକ ରଖିବାକୁ ଲୋକେ ଗରିବ ହେବାକୁ ଡରୁ ନ ଥିଲେ, ତେଣୁ ସାମନ୍ତ ବ୍ରାହ୍ମଣମାନେ ଅଧିକାଂଶ ଥିଲେ ଗରିବ ।

ଧନୀ ଲୋକେ ତାଙ୍କ ସଙ୍ଗେ ବିବାହ ସମ୍ପର୍କ ରଖିବାକୁ ମଧ୍ୟ ବେଶି ଆଗ୍ରହୀ ହୋଇ ଅନେକ ସମ୍ପତ୍ତି ଦିଅନ୍ତି; ମାତ୍ର ସେ ଧନ ଅଳ୍ପ ଦିନରେ କୁଆଡ଼େ ଉଭେଇଯାଏ । ସେମାନେ ପୁଣି ଯେଉଁ ଗରିବକୁ ସେହି ଗରିବ ରହିଯା'ନ୍ତି । ଧନର ପ୍ରକୃତ ଯତ୍ନ ବୋଧହୁଏ ଖାଲି ଧନୀ ଲୋକଙ୍କୁ ହିଁ ଭଲରୂପେ ଜଣା । ସେତକ ଜାଣି ନ ଥିବାରୁ ଅନ୍ୟମାନେ ଦରିଦ୍ର । ସେଥିପାଇଁ ତେଲିଆ ମୁଣ୍ଡରେ ତେଲ କଥାଟା ଅଛି । ଧନ ବେଶି ଆସେ ଧନୀ ହାତକୁ । ନିର୍ଦ୍ଧନ ହାତକୁ ଆସିଲେ ଧନର ଅମର୍ଯ୍ୟାଦା ହୁଏ ।

ଅପାତ୍ରରେ ଦାନ ଦେଇ ଧନୀଲୋକେ ଭଲ ଜାତିରେ ଝିଅମାନଙ୍କୁ ବିବାହ କରାଉଥିଲେ । ଏମିତି ଜଣେ ଧନୀ ପିତା ଝିଅ ଘରକୁ ଯାଇ 'ଝିଅ କ'ଣ କରୁଛୁ' ବୋଲି ପଚାରନ୍ତେ ଉତ୍ତର ମିଳେ, 'ଜାତି ଚାଟୁଚି ।' ସେତେବେଳେ ଝିଅ ବେଲାଏ ପଖାଳତୋରାଣି ଘେନି ମାତ୍ର ଫଡ଼ାଏ ଆମ୍ବୁଲ ଚାଟି ଖାଉଥାଏ ।

ଧନୀଘରେ ବିବାହ କରି ଦରିଦ୍ର ହେଲେ ହେଁ ସେମାନଙ୍କର ଜାତ୍ୟଭିମାନ ଖୁବ୍ ଥାଏ । ଶ୍ରୀନିବାସଙ୍କ ମୃତ୍ୟୁ ପରେ ଶୁଦ୍ଧି କ୍ରିୟାରେ ଯୋଗ ଦେବାପାଇଁ କ୍ୱାଇଁ କୁଣିଆମାନେ ଆସିଥାନ୍ତି । ବ୍ରାହ୍ମଣଭୋଜିପାଇଁ ଗାଆଁ ଚାରିପଟୁ ଅନେକ ବ୍ରାହ୍ମଣ ମଧ୍ୟ ନିମନ୍ତ୍ରିତ ହୋଇଥାନ୍ତି । ସେତେବେଳେ କେହି ଧନୀ ଲୋକ ମରିଗଲେ ବ୍ରାହ୍ମଣଗୋଷ୍ଠୀ ସବୁଠାରୁ ବେଶି ଖୁସି ହୁଅନ୍ତି କାରଣ 'ବ୍ରାହ୍ମଣପଣ'କୁ ନିମନ୍ତ୍ରଣ । ଭୋଜନ ସାଙ୍ଗକୁ ଦକ୍ଷିଣା । ପୁଣି ଗୋଟିଏ ପାର୍ଶ୍ୱ ପତ୍ରରେ ଚୂଡ଼ା ଉଖୁଡ଼ା ଗହମକ୍ଷୀରୀ ଗୁଡ଼ ଦହି ସମେତ ଆହାର ଗାମୁଛାରେ ବନ୍ଧାହୋଇ ଘରକୁ ଆସେ । ଘରେ ରୋଷେଇ ଆଗରୁ ବନ୍ଦ ଥାଏ । 'ବ୍ରାହ୍ମଣପଣ'ରେ ଅନୁପସ୍ଥିତ ଥିବା କିମ୍ବା ଆଦୌ ଜନ୍ମି ନ ଥିବା ପୁଅ-ପୁତୁରାଙ୍କ ନାମ କହି ମଧ୍ୟ ତାଙ୍କ ପାଇଁ ବେଶି ଦକ୍ଷିଣା ମିଳେ ।

ଉଚ୍ଚ ସ୍ତରର ବ୍ରାହ୍ମଣମାନଙ୍କ ଶୁଦ୍ଧି କ୍ରିୟାରେ କିନ୍ତୁ ବ୍ରାହ୍ମଣପଣରେ ଦକ୍ଷିଣା ଦିଆ ହୁଏ ନାହିଁ । ଶ୍ରୀନିବାସଙ୍କ କୁଳ ସେ ସ୍ତରରେ ନ ଥିବାରୁ ତାଙ୍କ ବଂଶରେ ବ୍ରାହ୍ମଣଙ୍କୁ ଦକ୍ଷିଣା ଦେବା ପ୍ରଥାଟି ରହିଥାଏ । ରାହାଙ୍ଗବାଡ଼ର କୁଣ୍ଡିଆମାନେ ତାହା ଜାଣିପାରି ଅଡ଼ି ବସିଲେ ଯେ, ଦକ୍ଷିଣା ଦିଆଗଲେ ସେମାନେ ତାଙ୍କ ଘରେ ଆଉ ଜଳସ୍ପର୍ଶ କରିବେ ନାହିଁ । ତହୁଁ ତାଙ୍କର ସୁପୁତ୍ର ଓ ଲେଖକର ପିତାମହ ନରୋତ୍ତମ ଦକ୍ଷିଣା ନ ଦେବାକୁ ସ୍ୱୀକୃତ ହେଲେ ।

ନିମନ୍ତ୍ରିତ ବ୍ରାହ୍ମଣମାନଙ୍କ ଜିଦ୍‌ହେଲା—ଚିର କାଳ ସେମାନେ ଏଠାରୁ ଦକ୍ଷିଣା ପାଇ ଆସୁଛନ୍ତି । ଭୋଜନ ପରେ ଦକ୍ଷିଣା । ତା' ନ ହେଲେ ପ୍ରେତାତ୍ମାର ମୁକ୍ତି ନାହିଁ । ପ୍ରେତାତ୍ମାର ମୁକ୍ତି ନ ହେଲେ କେବଳ 'ତୃପ୍ୟନ୍ତେ ଭୋଜନେ ବିପ୍ରାଃ' ହୋଇ ନ ପାରେ ।

ଡଙ୍ଗା ଡଙ୍ଗା ହୋଇ ବସାଦହି, ମୁଣ୍ଡା ମୁଣ୍ଡା ଛେନା, ଘରଟାରେ ଘରେ ଚୂଡ଼ା, ହୁଡୁମ ଉଖୁଡ଼ା ଚୂଡ଼ାପୁଆ—ବ୍ରାହ୍ମଣ-ଭୋଜନସାମଗ୍ରୀ । ଶ୍ରୀନିବାସଙ୍କ ଜ୍ୟେଷ୍ଠପୁତ୍ର ନରୋତ୍ତମ, କନିଷ୍ଠ ନୀଳାଦ୍ରି ଓ ତାଙ୍କର କକେଇ ପୁଅ କଳ୍ପତରୁ, କୃପାସିନ୍ଧୁ ପ୍ରଭୃତି ମହା ଭାବନାରେ ପଡ଼ିଲେ ।

ବହୁତ ବିଚାର ପରେ 'ରକ୍ତ ହିଁ ପାଣିଠାରୁ ବହଳିଆ' ହେଲା । ଚିରଦିନପାଇଁ ବନ୍ଧୁସମ୍ପର୍କ ତ କାଟି ଦେଇ ହେବ ନାହିଁ । ଅତଏବ ଦକ୍ଷିଣାପ୍ରଥା ବନ୍ଦ କରାଯାଉ । ନିରାଶ ହୋଇ ଖାଲି ହାତରେ ଦକ୍ଷିଣା ନ ପାଇ ଶହ ଶହ ବ୍ରାହ୍ମଣ ଫେରିଗଲେ; କିନ୍ତୁ ସମସ୍ୱରରେ ଅଭିଶାପ ଦେଇଗଲେ—'ତୋର କୁଳ ବୁଡୁ' ! ବାଲୁକେଶ୍ୱର ଦେଉଳ-ଦଧିନଉତି ଉପରେ ମହାଦୀପ ଟେକା ହୋଇ 'କୁଳ ଉଜ୍ଜ୍ୱଳ ହେଉ' ସାଙ୍ଗକୁ 'କୁଳବୁଡୁ' କଥାଟିର ସଂଘର୍ଷ ଘଟିବା ଫଳରେ ନରୋତ୍ତମଙ୍କର ବହୁ ସନ୍ତାନ ନଷ୍ଟ ହେଲେ ।

ସବୁ ପୂଜା ହୋମ ଆରାଧନା ବ୍ୟର୍ଥ ହେଲା । ମୋର ଜେଜେମା'ଙ୍କ ଆଖିରୁ ଲୁହ ଶୁଖିଲା ନାହିଁ । କିଏ ମାସେ, କିଏ ଛ ମାସ, କିଏ ବର୍ଷେ ବା ଦି'ବର୍ଷ । ଜଣକ ପରେ ଜଣେ ଆସି ବିଦାୟ ନେଲେ । ଥରେ କୁଆଡ଼େ ଡାମରାକୁଆଟାଏ ଆସି ଆମ ଚାଳ ଉପରେ ବସିଲା । ଥଣ୍ଟରେ ତା'ର ଗୋଟିଏ କଅଁଳା ପିଲାର ଖଣ୍ଡେ ହାତ ! ଜେଜେମା ବେହୋସ ହୋଇପଡ଼ିଲେ, ଜେଜେବାପା ଦାଣ୍ଡପିଣ୍ଡାରୁ ଆଉ ତଳକୁ ଓହ୍ଲାଇଲେ ନାହିଁ ।

ପାଖରେ ଥାଏ ଗୋଟିଏ ନାସଘୋଟା ପଥର କୁଣ୍ଡୀ, ଆଉ ଖଣ୍ଡେ ନାରଙ୍ଗ ବାଡ଼ି । ଧୂଆଁପତ୍ର ଉଷୁମ ହୋଇ ଆସି କୁଣ୍ଡିରେ ପଡ଼େ । ସେଥିରେ କେତେ ଟୋପା ଖାଣ୍ଟି ସୋରିଷ ତେଲ ପରୀକ୍ଷ ହୋଇ ନାସ ଘୋଟାଯାଏ । ନରୋତ୍ତମ ସେଇଠି ବସି ସବୁତକ ନାସ ଶୁଙ୍ଘି ସାରି ତା'ପରେ ଗାଧୋଇଯା'ନ୍ତି । ଧୂଆଁପତ୍ରଟା ସେପର୍ଯ୍ୟନ୍ତ ତାହାର ନାମର ପୂର୍ଣ୍ଣ ସାର୍ଥକତା ଆମ ଗାଁ ବ୍ରାହ୍ମଣଙ୍କ ଭିତରେ ଦେଖାଇ ପାରି ନ ଥାଏ । କେବଳ ଚୂନପତ୍ର ଓ ନାସ ବ୍ୟତୀତ ତାହାର ଅନ୍ୟ ରୂପ ସବୁ ସେ ପର୍ଯ୍ୟନ୍ତ ଫୁଟି ନ ଥିଲା, ଯେମିତି ଫୁଟିଲା ଆମ ଅମଳକୁ ।

ବହୁତ ଦିଅଁ ଦେବତା ଓଷାବ୍ରତ ମାନସ ପରେ ଜେଜେମାଙ୍କ ଗର୍ଭରୁ ଜାତ ହେଲେ ଗୋଟିଏ କନ୍ୟା ଓ ତାଙ୍କ ପରେ ଏକ ପୁତ୍ର । କନିଷ୍ଠ ନୀଳାଦ୍ରିଙ୍କର ମଧ ଦୁଇଟି ପୁଅ ଥିଲେ, କିନ୍ତୁ ତାଙ୍କର କନ୍ୟା ବ୍ୟତୀତ ପୁତ୍ରକୁଳ ଲୁପ୍ତ ହୋଇଛି ।

ଆମେ ଯେଉଁ କୁଳଟି ବୁଡୁବୁଡୁ ଟିକିଏ ଭାସିଉଠିଲୁଁ, ସେ ଭାସିବା ଅର୍ଥ ଆମେ ଜାଣୁ; କିନ୍ତୁ ମୁଁ ଜାଣେ ନାହିଁ । ଏ ସବୁ କଦାପି ମୋର ଅଙ୍ଗେ-ନିଭା କଥା ନୁହ—ଶୁଣିବା କଥା, ଖାଲି ମୋର ଗୁରୁଜନଙ୍କ ମୁହଁରୁ ।

''ଯାହା ନ ଦେଖିବ ଦୁଇ ନୟନେ, ପରତେ ନ ଯିବ ଗୁରୁ ବଚନେ !'' ତଥାପି ଔରଙ୍ଗଜେବ୍ ପରା ନିଜ ଦାଢ଼ିକୁ ଦେଖି ସୁଦ୍ଧା ବିଶ୍ୱାସ କରୁ ନ ଥିଲେ ! ପୁଣି ବାପ ମା'ଙ୍କ କଥାକୁ ବିଶ୍ୱାସ ନ କଲେ, ଆପଣାର ଜନ୍ମ ପୁଣି ସ୍ଥିତିକୁ ମୁଁ ବିଶ୍ୱାସ କରିବି କାହିଁକି ?

ହଁ, କହିବି ପରା ମୋ ଜୀବନର ସବୁ ଦୁର୍ଘଟଣା ? ଅଥଚ ମୋର ବାପ, ବଡ଼ବାପ, ଗୋସେଇଁବାପାଙ୍କ ଅମଳରୁ ଯେମିତି ବୋଧହୁଏ ଖାଲି ଦୁର୍ଘଟଣାଗୁଡ଼ାଏ ଆମକୁ ଗୋଡ଼ାଇଛନ୍ତି, ଆଉ ତାଙ୍କ କବଳରୁ କଷ୍ଟେମଷ୍ଟେ ବର୍ତ୍ତିଯାଇ ଆମେ ସବୁ ଟିକିଏ ଏଠାରେ ଜାତହୋଇ ବଞ୍ଚି ରହିବାକୁ, ପୁଣି ଗୋଟାଏ କୁଳ ବୁଡ଼ି ଯାଉଥିବାବେଳେ ତାକୁ କିଛି ସମୟପାଇଁ ଧରି ରଖିବାକୁ ଯେ ଯାହା ପାରୁପର୍ଯ୍ୟନ୍ତ ଲାଗିପଡ଼ିଛୁଁ ।

ମୋର ଜନ୍ମ ହୋଇସାରି ହାତଗୋଡ଼ ଛାଟି ରଡ଼ି ଛାଡ଼ିବା, ପୁଣି ପେଟେଇବା ଅବସ୍ଥାରେ ମଧ ଆଉ ଗୋଟାଏ ଗୁରୁତର ଦୁର୍ଘଟଣା ଘଟିଗଲା, ତହିଁରୁ କେମିତି ଯେ ମୁଁ ରକ୍ଷା ପାଇଗଲି, ସେ କଥା ଆଜି ଏହି ସ୍ପେସ୍ ସ୍ପୁଟନିକ୍ ଯୁଗରେ ସୁଦ୍ଧା ଭାବି ବସିଲେ ମତେ ଆଶ୍ଚର୍ଯ୍ୟ ବୋଧ ହୋଇଥାଏ ।



# ମେଉଁ ମେଉଁ, ଦୁଧଭାତ କରି ଗୁଣ୍ଡାଏ ଦେଉ

ଶୈଶବର ଯେଉଁ ସବୁ ଦୁର୍ଘଟଣା ଅଙ୍ଗେ ନିଭାଇଛି, ତାହା ଭିତରୁ ଅଧିକାଂଶ ଅନୁଭୂତି ଆଜି ବିସ୍ମୃତିର ଅନ୍ଧକାର ଅତଳରେ । ନିଜ ଜନ୍ମବୃତ୍ତାନ୍ତ ଭଳି ଅନ୍ୟଠାରୁ ଶୁଣି ତାହା ବିଶ୍ୱାସ କରାଯାଏ । ସେଥି ମଧରୁ ଗୋଟିକର ଚିହ୍ନ ମୁଁ ଅନେକ ବର୍ଷ ପର୍ଯ୍ୟନ୍ତ ନିଜ ଅଙ୍ଗରେ ଧାରଣ କରିଥିଲି । ଆଜି ତାହା ନିଭିଗଲାଣି ।

ଚିହ୍ନଟା ଥିଲା ମୋର ଡାହାଣ ଆଖିତଳକୁ ଗାଲ ଉପରେ ଗୋଟାଏ ଈଷତ୍ ସରଳ ରେଖା ।

ସ୍କୁଲ କଲେଜରେ ଛାତ୍ର ଥିବାବେଳେ ସାଙ୍ଗମାନେ ମୋତେ କାରଣ ପଚାରନ୍ତି । ଯାହା ଶୁଣିଥିଲି, ସେତିକି କହି ପକାଏଁ ନିତାନ୍ତ ନିରୀହ ଆଉ ସରଳ ଭାଷାରେ । ତା'ପରେ ଅବାକ୍ ହୁଏଁ, ମୋ ଦୁଃଖରେ ବନ୍ଧୁମାନଙ୍କ ସହାନୁଭୂତି ବଦଳରେ ଥଟ୍ଟା ତାମ୍‌ସା କରିବା ଦେଖି ।

ଅଥଚ ସେଥିଲାଗି ମୁଁ କି ଆମ ଘରର ଆଉ କେହି ଦାୟୀ ନୋହୁଁ । ଦାୟୀ କେବଳ ଘରର ଏକ ମାର୍ଜାରଶିଶୁ । ତାହାର ମଧ ଦୋଷ ନାହିଁ । ମୁଁ ପେଟଉଥାଏଁ । ଉପର ଉଉଣୀ ଉଜ୍ଜ୍ୱଳ ନାନୀକୁ ମୋର ସାମୟିକ ଶରୀରରକ୍ଷୀ ରୂପେ ନିଯୁକ୍ତ କରି, ବୋଉ ଟିକିଏ ବାହାରକୁ ଗଲେ; ଅଳ୍ପ ସମୟ ପରେ ଚିତ୍କାର ଶୁଣି ଆସି ଦେଖନ୍ତି, ମୋର ମୁହଁଯାକ ରକ୍ତ । ଶରୀର-ରକ୍ଷୀର କୌଣସି ପତ୍ତା ନାହିଁ । ବିରାଡ଼ିଟି କିନ୍ତୁ କୁଆଡ଼େ ନ ଯାଇ ଅନୁଗତ ବନ୍ଧୁ ଭଳି, ଅଳ୍ପ ଦୂରରେ ଜିଭ ଚାଟି ମେଉଁ ମେଉଁ ହେଉଛି କିଛି ନ ଜାଣିଲା ପରି ।

ଘଟଣାର ଗୁରୁତ୍ୱ ଓ ସାମାନ୍ୟ ସ୍ନେହର ପରିଣତିରେ ଆଦୌ ବିଚଳିତ ନ ହୋଇ, ଠିକ୍‌ରୂପେ ନିଜ କାମ ତୁଲାଇଥିବାରୁ ଯେମିତି ଅବା ସେ ମାଗୁଛି, ‘‘ମେଉଁ ମେଉଁ, ଦୁଧଭାତ କରି ଗୁଣ୍ଡିଏ ଦେଉଁ !’’ ବୋଉ ଯିବାର ଦଣ୍ଡକ ପରେ ମୋର ଶରୀରରକ୍ଷୀ ଉଜ୍ଜ୍ୱଳ ନାନୀ ନିଜ ଦାୟିତ୍ୱ ପାସୋରି ଦେଇ ବାହାରିଯାଏ । ବିନା ନିଯୁକ୍ତିରେ ମାର୍ଜାରଟି ନିଜ ଉଦାରତାବଶରୁ ଆସି ତା’ର ସ୍ଥାନ ପୂରଣ କରେ । ସଙ୍ଗେ ସଙ୍ଗେ ଆମ ଦୁହିଁଙ୍କ ଭିତରେ ଦୋସ୍ତି ଓ କାନ୍ଧରେ ହାତ ପକାପକି ! ସେହି ଖେଳରେ ମାର୍ଜାର ବିଚାରାର ଅଜାଣରେ ଥାବା ଭିତରୁ କେତୁଟା ନଖ ବାହାରି ଆସି ମୋ ଗାଲରେ ଗେଲ କରିବାକୁ ଯାଇ ଏଇ ଅବସ୍ଥା । ସେ ମଧ କିଛି ବୁଝି ନ ପାରି ମେଉଁ ମେଉଁ ହେଉଛି । ବୁଝିଥିଲେ ଆଉ କିଏ ରହେ, ନା ସେ ହେଲେ ରହନ୍ତା !

ସେଇ ଖେଳର ଚିହ୍ନଟାକୁ ଅନେକ ବୟସ ପର୍ଯ୍ୟନ୍ତ ଗାଲରେ ଘେନିଥିଲି ଏକ ଲଞ୍ଜାତାରା ଭଳି । ଖେଳଟା ଆଉ ଟିକିଏ ପ୍ରଗାଢ଼ ହୋଇଥିଲେ ଡାହାଣ ଡୋଳାଟି ଉପାଡ଼ି ହୋଇ ଆସିଥାନ୍ତା । ଅଥଚ ସାଙ୍ଗସାଥୀ ସହାଧାୟୀ-ମହଲରୁ କାହିଁ ସେଥିପାଇଁ ଥରେ ହେଲେ ତ ‘ଆହା’ ପଦ ଶୁଣିବାକୁ ମିଳିଲା ନାହିଁ; ବରଂ ତାଙ୍କ କୌତୁକ ଉପହାସରେ ମୋର ଲଜ୍ଜା ଅପମାନ ହିଁ ସାର ହୋଇଛି । ସେତେବେଳେ ତାହା ବୁଝିବାକୁ ମୁଁ ଅବାକ୍ ହୁଏଁ ।

ଭାଗ୍ୟକୁ ଆଜି ସେ ଚିହ୍ନଟା ଲିଭିଗଲାଣି । ସ୍ତ୍ରୀ କନ୍ୟା ପୁତ୍ର ପୌତ୍ରଙ୍କ ଆଗରେ ଦେଖାଇବା ପାଇଁ ମୋ ଶୈଶବର ସ୍ନେହ ସାହସ ବୀରତ୍ୱର ଧୂମକେତୁ ଆଜି ଆଉ ନାହିଁ ।

ଲୁପ୍ତ ଅତୀତର ସେହି ମୋର ପ୍ରଥମ ସାଥୀ ଆଜି ବଞ୍ଚିଥିଲେ, ତାକୁ ପଚାରିବାକୁ ଇଚ୍ଛା ହୁଏ—ତୁ ମୋର ଚମ ଉପରେ ଯେଉଁ ଦାଗ କାଟିଦେଲୁ, ତାହା ବନ୍ଧୁତା କି ଶତ୍ରୁତାର ମୁଁ ଜାଣେ ନା; କିନ୍ତୁ ସେ ତାକୁ ଦେଖି ତା’ର ଇତିହାସ ଶୁଣିଲେ, ସେ ହସିଲେ । ତା’ପରେ ତୋଠାରୁ ବହୁତ ବେଶି ବୁଦ୍ଧିମାନ୍ ମୋରି ଶ୍ରେଣୀର କେତେ ଜୀବ ତ ସେଇ ଚମତଳେ ଛାତି ଭିତରେ କେତେ ଦାଗ କାଟିଦେଲେ, ଆଉ ତା’ର ପ୍ରତିଦାନ ଦେବାକୁ ମୁଁ ମଧ ଯେ କିଛି ଉଦ୍ୟମ କରି ନାହିଁ, ତାହା ବି ନୁହଁ । ସେ ସବୁ ମଧ ବନ୍ଧୁତା କି ଶତ୍ରୁତାର ଦାଗ, ବତାଇ ଦେଇପାରିବୁ କି ମତେ ? ଜୀବନ-ସ୍ମୃତିର ପ୍ରଥମ ପର୍ଯ୍ୟାୟରେ ମୋତେ ରକ୍ତାକ୍ତ କରିଥିବା ହେତୁ, ତୋ ଆଡ଼କୁ ଯେମିତି ଆଜି ସ୍ନେହ ମମତା ଝରିପଡ଼େ ସେମିତି ମୋର ସାଥୀ ସହଯାତ୍ରୀଙ୍କ ଆଘାତ ଅପମାନ ପାଇଁ ଝରିବନି କି ? ତୁ ଦେଇଥିବା ଦାଗକୁ ଦେଖି ଅନ୍ୟମାନେ ଯେପରି ଉପହାସ କରନ୍ତି, ସେମାନେ ଦେଇଥିବା ଦାଗପାଇଁ କୌତୂହଳ କୌତୁକ କରିବା ଲୋକ ଅଭାବ କି ? ପୁଣି ସେ ସବୁ ଦାଗପାଇଁ ପ୍ରକୃତରେ ମୁଁ ଦାୟୀ, କି ସେମାନେ ?

ଉତ୍ତର ଦେବାକୁ ହୁଏତ ସେହିଦିନ ପରି ଆଜି ସେ ମୋରି ପାଖରେ ବସି କିଛି ମୋର ନ ହେଲା ଭଳି ଲାଙ୍ଗୁଳ ହଲାନ୍ତା । ନିର୍ବୋଧ ଆଖିରେ ଚାହିଁ ପୁଣି ଦୁର୍ବୋଧ ଭାଷାରେ କହନ୍ତା—‘‘ମେଉଁ, ମେଉଁ, ଦୁଧଭାତ କରି ଗୁଣ୍ଡିଏ ଦେଉଁ ।’’ ସେତିକି ପାଇଲେ ସେ ସବୁ ଗୁପ୍ତକଥା ଫିଟାଇ କହିଦେବ !

ଆହୁରି ଯେବେ ତାକୁ ପଚାରନ୍ତି—ତୋତେ ଯେମିତି ନିରୁପାୟ ହୋଇ କ୍ଷମା ଦେଇଛି, ଅନ୍ୟମାନଙ୍କୁ ହୁଏତ ସେମିତି । କ୍ଷମାଟା ବୋଧହୁଏ ନିରୁପାୟ, ଆଉ ପ୍ରତିଶୋଧ ହେଲା ଉପାୟ, ନୁହେଁ କି ? ଏ ପ୍ରଶ୍ନର ଉତ୍ତରରେ ମଧ ସେଇ ତା’ର ବୋଧହୁଏ ଗୋଟିଏ ମାତ୍ର

ଜବାବ । ଫରକ ଭିତରେ ଏତିକି— କେତେବେଳେ ଦୁଧଭାତ, ଆଉ କେବେ ତାହା ମାଛଭାତ, ନଇଲେ ଡାଲି ଭାତ କି ରୁଟି ଭାତ ।

ସବୁ ରାମ୍ପୁଡ଼ା କାମୁଡ଼ା ମୂଳରେ ତର୍ଜନ ଗର୍ଜନ କାନ୍ଦବୋବାଳି ପଛରେ ଯେମିତି ଯା'ଛଡ଼ା ଦୁନିଆରେ ଆଉ କିଛି ଜବାବ ନାହିଁ ।

ମୁହଁରୁ ମୋର ବିରାଡ଼ି-ରାମ୍ପୁଡ଼ା ଦାଗ ଲିଭିଗଲା ପରି ମନ ଭିତରୁ କେତେ ଆଘାତର ଦାଗ ଲିଭିଗଲାଣି । ଆହୁରି କେତେ କଟାଦାଗ ଦେହରେ, ପୁଣି ମନରେ ହୁଏତ ରହିଛି । ଅଥଚ ଦରଜଟା ଆଉ ତା'ର ନାହିଁ । ସେମିତି ଆଉ ଗୋଟିଏ ଘଟଣା—

ବୟସ ବୋଧହୁଏ ଚାରି କି ପାଞ୍ଚ । ଗାଆଁରେ ଆମେ ଭାଇ ଭଉଣୀ ତିନି ଚାରି ଜଣ । ବାପା ଓ ବଡ଼ ଭାଇନା ଦିବ୍ୟସିଂହ ଥା'ନ୍ତି ପୁରୀରେ । ବାପାଙ୍କର ମୁକ୍ତାରି କାମ । ଭାଇନା ସେଠାରେ ପଢୁଥା'ନ୍ତି । ପ୍ରତି ଶନିବାର ଗାଆଁରୁ ଶଗଡ଼ ଯାଏ ଭୁବନେଶ୍ୱର ଷ୍ଟେସନକୁ । ବାପା ଆସି ପରଦିନ ଫେରିଯାନ୍ତି । ତାଙ୍କ ସ୍କୁଲ ଛୁଟି ହେଲେ ଭାଇନାଙ୍କ ଦେଖା ମିଳେ । ଆମ ଉପରେ ସେ ଖୁବ୍ ମୁରବିପଣ କରନ୍ତି । ସେତେବେଳେ ତାଙ୍କ ସ୍ୱଭାବ ଟିକିଏ କଡ଼ାପରି ମନେ ହୁଏ । ସବୁ ପିଲାଙ୍କର ତାଙ୍କୁ ଡର । ଖାଲି ତ ପିଲାଏ ନୁହନ୍ତି, ଗାଁ ଭିତରେ ସମସ୍ତଙ୍କର ତାଙ୍କ ପ୍ରତି ଯଥେଷ୍ଟ ସମ୍ଭ୍ରମ ଥାଏ । କୁଟୁମ୍ବରେ ବୟୋଜ୍ୟେଷ୍ଠ ଗୁରୁଜନମାନେ ସୁଦ୍ଧା ଦିବ୍ୟସିଂହଙ୍କୁ 'ସିଂହବାବୁ' ବୋଲି ଡାକନ୍ତି । କାରଣ ବୋଧହୁଏ ସେ ଏକମାତ୍ର ଇଂରାଜୀ ପଢୁଆ । ରୂପ ଭଳି ସ୍ୱଭାବ ଚରିତ୍ର ମଧ ସୁନ୍ଦର ।

ବାପା କେବେହେଲେ ତାଙ୍କୁ 'ତୁମେ' ଛଡ଼ା 'ତୁ' କହି ନାହାନ୍ତି । ଏପରିକି ଶେଷ ଆଡ଼କୁ ପିତାପୁତ୍ରଙ୍କ ମଧରେ ଖୁବ୍ ମନୋମାଳିନ୍ୟ ଘଟି କଥାବାର୍ତ୍ତା ପ୍ରାୟ ବନ୍ଦ ହୋଇ ଯାଇଥିଲେ ସୁଦ୍ଧା କେବଳ ଜ୍ୟେଷ୍ଠପୁତ୍ରଙ୍କ ପ୍ରତି ନୁହଁ, ଆମ ସମସ୍ତଙ୍କ ପ୍ରତି ବାପାଙ୍କର ପ୍ରଗାଢ଼ ସ୍ନେହ । ସ୍ନେହର ମାତ୍ରାଟା କିନ୍ତୁ ତାଙ୍କ ପ୍ରତି ଅଧିକ ବୋଲି ଜଣାପଡ଼ିଯାଏ । ପୁଣି ବଡ଼ ପୁଅଙ୍କ ପ୍ରତି ତାଙ୍କର ସ୍ନେହ ସଙ୍ଗେ ସମ୍ମାନ ମଧ ଥାଏ । ତହିଁରେ ଆମ ଭିତରୁ କେହି ଈର୍ଷାନ୍ୱିତ ହେବାର ଅବକାଶ ନ ଥାଏ । ସେ ଯେଣୁ ଆଗ, ସୁନାପାଗ ।

ଗାଁରେ ରହି ବୋଉ ଉପରେ ଆମର ସବୁ ଅଳିଝଳି । ଅନ୍ୟମାନଙ୍କ ତୁଳନାରେ ମୋର ବୋଧହୁଏ ଟିକିଏ ବେଶି । ତା'ର କାରଣ ଭାଇନାଙ୍କ ପରେ ତିନି ଝିଅ, ତାଙ୍କ ତଳେ ମୁଁ ହୋଇଥାଏଁ ସବା ସାନ ପୁଅ । ମୋ ପରେ 'ଭଗବତୀ' ଆସି ନ ଥାନ୍ତି । ପାଞ୍ଚଛଅ ବର୍ଷ ପର୍ଯ୍ୟନ୍ତ ବୋଉଙ୍କ କୋଳରେ ଦୁଗ୍ଧପୋଷ୍ୟ ହୋଇ ମୁଁ ବଢ଼ିଚି । ଦଣ୍ଡେ ହେଲେ କୁଆଡ଼େ ତାଙ୍କୁ ଛାଡ଼ିବାକୁ ମୁଁ ନାରାଜ ।

ଏକ ସ୍ଥାନରେ ତାଙ୍କୁ ବସି ରହିବାକୁ ଆଦେଶ କରି ମୁଁ ଖେଳିବାକୁ ଯାଏଁ । ଫେରିଆସି ସେଠାରେ ତାଙ୍କୁ ନ ଦେଖିଲେ ଚିତ୍କାର କରି ଘରଦ୍ୱାରା କମ୍ପାଏଁ । କେବଳ ଚିତ୍କାର ତ କରେଁନା, ଆଉ ଗୋଟାଏ ଉପାୟ ମୁଁ ଉଦ୍‌ଭାବନ କରିଥାଏଁ । ତାହା ବଡ଼ ବିଚିତ୍ର । ମୋ ଜିଦ୍‌ଟା ନ ରହିବା ପର୍ଯ୍ୟନ୍ତ ନିଜ ପେଟ ଓ ଛାତିକୁ ଦୁମ୍ ଦୁମ୍ କରି ବିଧା ମାରେଁ । ଆଜି ଷାଠିଏ ବର୍ଷରୁ ଅଧିକ କାଳ ପରେ ଡାକ୍ତର କହନ୍ତି ମୋର ପେଟରେ ପିତ୍ତକୋଷ (Gall

bladder) ଓ ଛାତି ଭିତରେ ହୃଦ୍‌ରୋଗ (Coronary Thrombosis) ଅଛି । ତେଣୁ ଆଜି ଆଉ ସେହି ଅଭ୍ୟାସର ପୁନରାବୃତ୍ତି କରିବାକୁ ଅନେକ କାରଣ ଉପୁଜୁଥିଲେ ମଧ୍ୟ ମନରେ ଅବା ଦେହରେ ସେମିତି ଦମ୍ଭ କି ସାହସ ନାହିଁ । ସେହି ଦମ୍ଭ ସାହସ ପିଲାଦିନୁଁ ମୋ ଭିତରେ ଜମାଇ ଦେବାପାଇଁ ବୋଉ ମତେ ଖୁବ୍ ଲଗାମଛଡ଼ା କରି ପକାଇଥାନ୍ତି । ବଡ଼ଭାଇ ପାଠପଢ଼ି ସାଧୁ ନିରୀହ ହୋଇ ପଡ଼ିଥିବା ହେତୁ ମୁଁ ଦୁଷ୍ଟ ହେବାକୁ ସେ ବରଂ ପ୍ରଶ୍ରୟ ଦେଉଥିଲେ । ପ୍ରଜା ପାଟକ, ମୂଲିଆ ଚାକରଙ୍କ ଉପରେ ହାକିମି ଜାହିର କରିବା ପାଇଁ ମୋତେ ସେ ଉତ୍ସାହିତ କରୁଥିଲେ । କାରଣ ଆମ ଘର ମୁରବିମାନେ ତ ରହିଲେ ବିଦେଶରେ, ଅର୍ଥାତ୍ ପୁରୀରେ । ଗାଆଁରେ ରହି ହାକିମି ନ କଲେ ଲୋକେ ଆମକୁ ମାନିବେ କାହିଁକି ?

ମନେ ଅଛି, ରୋଜ ସକାଳୁ ମୂଲିଆମାନଙ୍କୁ ଚିତ୍କାର କରି ଡାକିବା ପାଇଁ ବୋଉ ମତେ ଶିଖାଇ ଦିଅନ୍ତି । ବାରିଆଡ଼ ପୋଖରୀ ଆରପଟେ ବାଉରୀସାହି । ମୋ ଡାକରେ ତାଙ୍କ ଭିତରୁ କାହାର ନିଦ ଭାଙ୍ଗେ, ମୁଁ ଜାଣେ ନାହିଁ; କିନ୍ତୁ ଏତିକି ଜାଣେ ଯେ, ମୋ ଶିକ୍ଷାର ପ୍ରତିଫଳନ ଭସ୍ମାସୁର ବର ଭଳି ଅଧିକ ପଡ଼ିଛି ସ୍ୱୟଂ ମୋର ଶିକ୍ଷୟିତ୍ରୀ ଜନନୀଙ୍କ ଉପରେ । ଆଉ ଯେଉଁମାନଙ୍କଠାରେ ସେ ବରକୁ ପ୍ରୟୋଗ କରିବାକୁ ଯାଇଛି, ତାଙ୍କଠାରୁ ଅନେକ ସମୟରେ ପାଇଛି ପରିହାସ, ଉପହାସ, ଲଜ୍ଜା ।

ବାରିଆଡ଼େ କିଆ ବୁଜା ହୋଇଥାଏ । ବାଡ଼ ମଝିରେ ଗୋଦାକରି କିନ୍ତୁ ଲୋକେ ଯା ଆସ କରନ୍ତି । ମନା କଲେ ମାନୁଛି କିଏ ? ଲୋକଙ୍କର ଏପରି ଅନଧିକାର ଚର୍ଚ୍ଚାରେ ବୋଉ ଖୁବ୍ ବିରକ୍ତ ଥିବା ଜାଣିପାରି ସେ ଦାୟିତ୍ୱଟା ନିଜ ହାତକୁ ନେଲି । ଦିନେ ସନ୍ଧ୍ୟାରେ ଦେଖିଲି, କିଏ ଜଣେ ବାଡ଼ ଡେଇଁ ବାଡ଼ିପଟୁ ଦାଣ୍ଡଆଡ଼କୁ ଯାଉଛି ।

କ୍ରୋଧରେ ଗର୍ଜ୍ଜନ କଲି, ''କିଏ ସେ ?''

ଜବାବ ମିଳିଲା, ''ମଣିଷ !''

''ଆମ ବାଡ଼ିଟା କ'ଣ ବାଟ ?''

''ହଁ, ଏଇବାଟେ ତ ସବୁ ଦିନ ଯାଉଛୁଁ !''

ଆହୁରି ରାଗିଯାଇ ପାଟି କଲି, ''କିଏ ସେ ତୁମେ ?''

ଲୋକଟା ମୋ କଥାରେ ଦବି ଯା'ନ୍ତା କ'ଣ ଓଲଟି ସାହସ କରି ମତେ ପଚାରିଲା, ''ତୁମେ କିଏ ?''

ରାଗରେ ଅସ୍ଥିର ହୋଇପଡ଼ି ପୁଣି ଚିତ୍କାର କଲି, ''କ'ଣ ଚିହ୍ନିପାରୁନୁ କି ?''

ସେମିତି ବେଖାତିର୍ କରି ଏଥର ମଧ୍ୟ ସେ ଜବାବ ଦେଲା, ''ଖୁବ୍ ଚିହ୍ନିପାରୁଚି । ଯୋଡ଼ିଏ ଲେଖା ସାନ ସାନ ହାତ ଆଉ ଗୋଡ଼ । ତିନି ଚାଖଣ୍ଡର ମଣିଷଟିଏ !''

କ୍ରୋଧଜର୍ଜ୍ଜରିତ ହୋଇ ବୋଉ ଆଗରେ ନାଲିସ୍ କଲି; କିନ୍ତୁ ଆଶ୍ଚର୍ଯ୍ୟ ! ବୋଉ ମଧ୍ୟ ନ ରାଗି ଓଲଟି ହସି ପକେଇଲେ । ସାନ ବୋଲି ମତେ ତା'ହେଲେ ସମସ୍ତଙ୍କର ଏମିତି

ବେଖାତିର୍ ! ବଡ଼ କାହିଁକି ନ ହେଲି ବୋଲି ମନ ଭିତରେ ଭାରି ଅବସୋସ ଆସିଲା । ବଡ଼ ନ ହେବାଯାକେ କେହି ତେବେ ମାନିବେ ନାହିଁ । ସମସ୍ତଙ୍କୁ ବାଟ ଛାଡ଼ିଦେବାକୁ ହେବ ! ଯେ ଯାହା ଅନ୍ୟାୟ କରନ୍ତୁ ପଛେ ପାଟି ଫିଟାଇବାକୁ ହେବ ନାହିଁ । ସେଟା ଖାଲି ବଡ଼ ମଣିଷଙ୍କର ଏକଚାଟିଆ ? ବୟସଟାର ମୂଲ୍ୟ କ'ଣ ଏତେ ବେଶି ?

ସେଇଥିପାଇଁ କି କ'ଣ ବୟସରେ ବଡ଼ ହେଲା ପରେ ବି ମନରେ ସାନ ହୋଇ ରହିଗଲି । ମନର ଦୁର୍ବଳତା ହେତୁ ଠିକ୍ ଭୁଲ, ନ୍ୟାୟ ଅନ୍ୟାୟ ବିଚାରରେ ନିଜକୁ ପୁଣି ଅନ୍ୟମାନଙ୍କୁ ବାଟ ଛାଡ଼ିଦେଲି । ନିଜର ପୁଣି ଅନ୍ୟମାନଙ୍କ ଭୁଲ୍ କିମ୍ୱା ଅନ୍ୟାୟ ବିରୋଧରେ ଯେଉଁଠି ଯେତେ ପ୍ରତିବାଦ କରିଛି, ସେଇଠି ତାହା ଯେମିତି ଅଟକି ଯାଏ କଥାରେ କେବଳ, କାମରେ କିନ୍ତୁ ପ୍ରାୟ କିଛି ଫଳ ହୁଏ ନାହିଁ । ଆଉ ମଧ୍ୟ ପ୍ରାୟ ସବୁ କ୍ଷେତ୍ରରେ ଠିକ୍ କ'ଣ, ଭୁଲ୍‌ଟା କେଉଁଠି, ତାହା ମୋ ପକ୍ଷରେ ଦୁର୍ବୋଧ ହୋଇପଡ଼ିଲା । ଭୁଲଟା ଯେ ସବୁବେଳେ ଅନ୍ୟାୟ ନୁହେଁ, ନିଜେ ଭୁଲ୍ କରି ମଧ୍ୟ ମଣିଷ ଦେଶକାଳପାତ୍ର ବିଚାରରୁ ନ୍ୟାୟବନ୍ତ ବୋଲାଇ ପାରେ, ପୁଣି ଜଣକପାଇଁ ଠିକ୍ କରିବାକୁ ଯାଇ ଅନ୍ୟପ୍ରତି ଅନ୍ୟାୟ କରିପାରେ । ବଡ଼ ହେଲା ପରେ ଏମିତି କେତେ ଆପେକ୍ଷିକ ବିଚାର-ଦ୍ୱନ୍ଦ୍ୱ ମନରେ ମୋର ଆଲୋଡ଼ନ ସୃଷ୍ଟି କରେ । ସେଥିପାଇଁ ବୋଉ କି ଆଉ କାହାରି ବ୍ୟବହାରକୁ ମୁଁ ଦାୟୀ କରିପାରେ ନାହିଁ ।

ସେମାନେ ମଧ୍ୟ ତାଙ୍କ ପିଲାଦିନେ ବଡ଼ମାନଙ୍କଠାରୁ ସେମିତି ବ୍ୟବହାର ପାଇଥିବେ । ସେ ଦିନ ବୋଉ ସାଙ୍ଗରେ କିଛି ଯୁକ୍ତିତର୍କ କରି ନ ଥିଲି, ମାତ୍ର ବୋଉ ଉପରେ ମୋର ଆବ୍‌ଦାର ବଢ଼ିଲା ସିନା, କମିଲା ନାହିଁ । ବୋଉ ହେଲେ ବି, ନିଜେ ପସନ୍ଦ କରୁ ନ ଥିବା କଥାକୁ ମୁଁ ପ୍ରତିବାଦ କଲେ ହସି ଉଡ଼ାଇଦେବାର କାରଣ କ'ଣ ।

ଶ୍ରୀନିବାସଙ୍କ ସମେତ ଚାରିଭାଇଙ୍କ ଘର ଭିନେଭାନ୍ ହୋଇ ଆଠ ଦଶଘର ହୋଇପଡ଼ିଥାଏ । ଆଜି ବି ଆହୁରି ବେଶି ସଂଖ୍ୟାରେ ଘର ହେଲାଣି । ଗାଁ ମଝିରେ ସବୁ ଘର ଧାଡ଼ିମୂଳିଆ । ଆଜିଯାକେ କିନ୍ତୁ ନାମ ରହିଛି, ଚାରିଘରିଆ ସାହି । ବାରିପଟେ ସବୁ ଘରକୁ ଯା'ଆସ କରିବାପାଇଁ ବାଟ ଥାଏ । ଆମ୍ବ, ନଡ଼ିଆ, କଇଁଆ ଗଛର ଛାଇ । କଣ୍ଟାବଣ ବେତବୁଦାରେ ଖରାଦିନେ ପେନ୍ଥା ପେନ୍ଥା ବେତକୋଳି ପାଚେ । ଆଉ ପୁନାଗରେ ଫୁଲ ଫୁଟିଲେ ଘର ଘର ମହକିଉଠେ ।

ବାରିପଟେ ଢିଙ୍କିଶାଳ । ବଡ଼ ବଡ଼ ହାଣ୍ଡି ନଉତିରେ ଧାନ ଉଷୁଆଁ ହୋଇ ଢିଙ୍କିଶାଳରେ କୁଟା ହୁଏ । ବାରିପଟ ପୋଖରୀ ତୁଠରେ ଝିଅବୋହୂଙ୍କର ମେଣ୍ଟ ବସେ । ସେ ପାଖଟାରେ ପ୍ରାୟ ସେଇମାନଙ୍କର ଗତାଗତ । ପୁରୁଷ ଲୋକ କେବେ କେମିତି ଆସନ୍ତି । ଶାଗ ତିଅଣ ଦିଆନିଆ ହୁଏ । ଅବଶ୍ୟ ବୋହୂ ଭୁଆସୁଣୀମାନଙ୍କୁ ଯିବାପାଇଁ ମନା । ପିଲାମାନଙ୍କୁ ତ ସାତଖୁଣ ମାଫ୍ । ସେଇ ବାଡ଼ିବାଟରେ ବୋଉ ସାଥିରେ ମୁଁ ଯାଇଥାଏଁ ରାମଭାଇନାଙ୍କ ଘରକୁ ।

ଚାରିଘରିଆ ସାହିର ପୂର୍ବ ସୀମାରେ ଆମ ଘର । ପଶ୍ଚିମ ସୀମାରେ ତାଙ୍କ ଘର । ମଝିରେ ବାକି ଅନ୍ୟ ଭାଇମାନଙ୍କର; କିନ୍ତୁ The West is West, the East is East.

and the twin can never meet—ଇଂରେଜ କବି (Rudyard Kipling) କିପ୍‌ଲିଙ୍ଗଙ୍କର ଏଇ ସୁପରିଚିତ କଥାଟି ନିରବଚ୍ଛିନ୍ନ ଭ୍ରାତୃବିବାଦରେ ପ୍ରତିଫଳିତ ହୋଇଥିଲା । ପୂର୍ବ ପଶ୍ଚିମର ମିଳନ କେବେହେଲେ ସମ୍ଭବ ହେଲା ନାହିଁ । ଇଂରେଜ କବିଙ୍କର ସେ ଉକ୍ତିଟିକୁ ସାମ୍ରାଜ୍ୟବାଦୀ ଚିନ୍ତାଧାରାର ପ୍ରତୀକରୂପେ ସମାଲୋଚନା କରାଗଲେ ହେଁ ପୂର୍ବ ପଶ୍ଚିମର ସାମ୍ୟବାଦ ପୁଣି ଗଣତନ୍ତ୍ରରେ ସୁଦ୍ଧା ସେହି କଥା ପ୍ରୟୋଗ କରାଯାଇପାରୁଛି, ରୁଷ୍, ଚୀନ୍ ଓ କାଶ୍ମୀର ସମ୍ପର୍କରେ ଭାରତ ଇଂଲଣ୍ଡର ମତଭେଦ ଭିତରେ ।

ଆମଗାଁ ଭାଇଚାରା ଭିତରେ ବି ସେମିତି ଅପଡ଼ । ତେବେ ନାରୀମହଲରେ ତାହା ସେତେ ଉଗ୍ର ହୋଇପାରେ ନାହିଁ । ପୁରୁଷଙ୍କର ଯେତେ ମନାନ୍ତର ମତାନ୍ତର ଥିଲେ ହେଁ ସ୍ତ୍ରୀଲୋକମାନଙ୍କ ଦିଆନିଆ ଖିଆପିଆ ଚାଲେ ।

ରାମଭାଇନା ଲୋକନାଥ କକେଇଙ୍କ ବଡ଼ ପୁଅ । କକେଇ ଆମର ବିପକ୍ଷ । ତାଙ୍କ ନେତୃତ୍ୱରେ ଆମର ଗୋଟିଏ ବିରୋଧୀ ଦଳ ଗଢ଼ା ହୋଇଥାଏ । ବୋଉ ସାଙ୍ଗରେ ତାଙ୍କ ଘରକୁ ଯାଇଁ ଦେଖେଁ, ରାମଭାଇନା ଗୋଟିଏ କଟୁରି ଧରି ନଡ଼ିଆ ଛଡ଼ଉଛନ୍ତି । କଟୁରିଟାର ବେଣ୍ଟ ମଧ ଲୁହାରେ ତିଆରି । ଆମ ଗାଁ ଅନା କମାର ବଡ଼ିଆ କାରିଗର । ତା'ର ଲୁହାଶାଳ ମୁଁ ଦେଖିଛି । ଚମଡ଼ା-ଥଳିଭିତରୁ ପବନ ଯାଇ ଶାଳନିଆଁ ହୁତୁ ହୁତୁ ହୋଇ ଜଳିଉଠେ । ସେଥିରେ ସେ ଲଙ୍ଗଳଲୁହା, କୋଡ଼ି, କାଙ୍କ, କଟୁରି, ଗୁଆକାତି ତତାଇ ଗୋଟାଏ ବଡ଼ ହାତୁଡ଼ିରେ ପିଟି ତିଆରି କରେ । ସେତେବେଳେ ତା'ର ଗୋଲ ଗୋଲ ମସ୍ତ ବାହା ଦୁଇଟାକୁ ମୁଁ କାବାହୋଇ ଚାହିଁରହେ । ଗାଁ' ଦାଣ୍ଡରେ ସେ ଗଲାବେଳେ ତା'ର ମଜବୁତ୍ ଦେହଟାକୁ ଚାହିଁ ମନେ ମନେ ଖୁବ୍ ତାରିଫ୍ କରେଁ । ଅଥଚ ଗାଁ ମକଦ୍ଦମାମାନଙ୍କ ପାଖରେ ସେ ଯେମିତି କାକୁସ୍ଥ ହୋଇ ଠିଆ ହୁଏ, ତାହା ଦେଖି ମତେ ଆଶ୍ଚର୍ଯ୍ୟ ଲାଗେ । ଏତେ ବଡ଼ ଶକ୍ତିଶାଳୀ ଲୋକଟି ପାଖରେ, ଯେ କି ଲୁହା ପରି ଟାଣୁଆ ବସ୍ତୁକୁ ନିଜ ଇଚ୍ଛାନୁସାରେ ଲମ୍ୱାଚୌଡ଼ା ବଙ୍କା ସଳଖ କରିଦେଇପାରୁଛି, ଜଣେ ହେଲେ ମକଦ୍ଦମା ତ ଲାଭ ଦିଆଯାଇ ପାରିବ ନାହିଁ । ଅଥଚ ସେ ତାଙ୍କରି ଆଗରେ ଏତେ ନକସ୍ଥକ ହୋଇ ରହୁଛି କାହିଁକି ! ଏହାର କାରଣ ଖୋଜି ମୁଁ ପାଏ ନାହିଁ ସେତେବେଳେ । ପରେ ପାଏଁ ।

ସେଇ ଅନା କମାର ତିଆରି କଟୁରିଟାକୁ ରାମଭାଇନାଙ୍କ ହାତରେ ଦେଖି ମୋର ଲୋଭ ବଳିଲା । ଆଜିପର୍ଯ୍ୟନ୍ତ ସବୁ କଟୁରିରେ ତ କାଠବେଣ୍ଟ । କଟୁରି ସହିତ ବେଣ୍ଟ ମଧ ସେଇ ଲୁହାରେ ତିଆରି ହୋଇଥିବା ମୋ ଦେଖନ୍ତରେ ଏଇ ପ୍ରଥମ । ରାମଭାଇନା ବି ମୋର କୌତୂହଳରେ ଆହୁରି ଆଗ୍ରହୀ ହୋଇପଡ଼ିଲେ । କଟୁରିଟାର ଧାରରେ ନିଜଟିପ ପରଖ କରି କହିଲେ, ''ଖୁରପରି ଧାରଟା ହୋଇଛି । ଖୁରରେ ଯେମିତି ଦାସିଆ ଭଣ୍ଡାରି ଜାଗିର୍ ଜମି ପାଇ ମକଦ୍ଦମମାନଙ୍କ ତିନି ମାସର ମୋଟା ରୁଡ଼କୁ ଚାଛି ସଫା କରିପକାଏ, ନଡ଼ିଆକତାକୁ ଏ କଟୁରିଖଣ୍ଡକ ସେମିତି ବାଇ ।''

କହୁ କହୁ ସେ ଗୋଟାକ ପରେ ଆଉ ଗୋଟାଏ ନଡ଼ିଆ ଛଡ଼େଇ ଲାଗିଥାନ୍ତି । ବୋଧହୁଏ ମତେ ତାଙ୍କ କଟୁରି ଆଉ ତହିଁରେ ନଡ଼ିଆ ଛଡ଼େଇବାର ବାହାଦୁରିଟା ଦେଖାଇବା

ହେଲା ଅସଲ ଉଦ୍ଦେଶ୍ୟ । ନଡ଼ିଆ ଛଡ଼େଇ ସାରି ଯେତେବେଳେ ସେ ପଇଡ଼ ଛେଇ ବସିଲେ, ତାହା ତ ଆହୁରି ମଜା ! କଟୁରିର ଧାରଟା ବାଜି ପଇଡ଼ରୁ ଛେଲାଏ କତା ବାହାରିଆସେ । ସେଥିରେ ଭଲା କାହା ମନ ସମ୍ଭାଳି ହୁଏ !

ଇଚ୍ଛା କଲି, କଟୁରିଟାକୁ ଟିକିଏ ଘରକୁ ନେବାପାଇଁ । ହେଲେ ରାମଭାଇନା କ'ଣ ଆପଣା ଜିନିଷ ଛାଡ଼ିବା ପାତ୍ର ! କଟୁରିଟା ମୁହଁ ପାଖକୁ ଆଣି ଏଡ଼େ ଏଡ଼େ ଡୋଳା ବାହାର କରି ମୁରବିପଣିଆ ଦେଖାଇଲେ—''ପିଲାମାନେ କ'ଣ ଏମିତି ଦାଢୁଆ କଟୁରି ଧରନ୍ତି ? ଏଥିରେ ବିପଦ ଅଛି, ଜାଣୁ ?'' କହୁ କହୁ ଗୋଟାଏ ନଡ଼ିଆ ବାହୁଙ୍ଗା କି ଆମ୍ବତାଳ ଧରି ଏକା ଚୋଟରେ ତାକୁ ଦି'ଗଡ଼ କରି ପକାଇଲେ । ପିଲା ବୋଲି ମୁଁ ଏ ଅଭିନୟଦ୍ୱାରା ଡରିଯିବି କି କଟୁରି ପାଇଁ ଆଗ୍ରହ ମୋର ଦୁଇଗୁଣ ହେବ, ତାହା ସେ ବିଚାରି ପାରିଲେ ନାହିଁ । ଏକା ଜିଗର ଧଇଲି, ଟିକିଏ ସେ ଅଦ୍ଭୁତ ଅସ୍ତ୍ରଟାକୁ ସଙ୍ଗରେ ନେବାପାଇଁ । ସେ କିନ୍ତୁ ଛାଡ଼ିବାକୁ ଏକାବେଳେ ନାରାଜ ।

ଶେଷରେ ତାଙ୍କ ବୋଉ ଅର୍ଥାତ୍ ମୋ ଖୁଡ଼ୀ ସୁପାରିସ କଲେ, ଆଉ ମୋ ବୋଉ ମୁଖାମି ହେଲେ । ଘଣ୍ଟାକ ସକାଶେ କଟୁରିଟି ଦେବାକୁ ରାମଭାଇନା ରାଜି ହେଲେ । ଗାଁରେ ଘଣ୍ଟା ବା କାହାର ଅଛି ? ଖାଲି ତାଙ୍କ ନଡ଼ିଆଗଛ ଅଗରୁ ଖସି ସିଶୋଲ ବରଗଛ ସେ'ପଟେ ସୂର୍ଯ୍ୟ ଲୁଚିଗଲେ ଘଣ୍ଟାଏ ।

ନଡ଼ିଆ କଟୁରି ଧରି ହାଣ୍ଡିଶାଳ ଅଗଣାରେ ବସିପଡ଼ିଲି । ଦି'ଚାରିଫଡ଼ା କତା ଛଡ଼େଇଛି କି ନାହିଁ, ଏ କ'ଣ ! ବାଁ ହାତ ବିଶି ଆଙ୍ଗୁଠିଟା ଜଳି ଉଠିଲା କାହିଁକି ? ଏତେ ରକ୍ତ ବୋହିଲା କୁଆଡୁ ? ଏ ସବୁ ପ୍ରଶ୍ନର ଉତ୍ତର ଖୋଜୁଛି ମୁଁ । ହାଣ୍ଡିଶାଳ ଭିତରୁ ବାହାରି ଆସି ବୋଉ କାଖେଇ ପକେଇଲେ 'ମୋ ପୁଅ, ମୋ ପୁଅ' ବୋଲି ବିକଳ ହୋଇ । ଦାଣ୍ଡ-ଅଗଣାରୁ ବାପା ଦଉଡ଼ି ଆସିଲେ । ବୋଉଠାରୁ ଛଡ଼ାଇ ନେଇ ମୋତେ ଛାତିରେ ଧଇଲେ । ତା'ପରେ ବୋଉ ଉପରେ ବର୍ଷିଲା ତାଙ୍କର ଗାଳି । ତାଙ୍କ ଆଖିରେ ଆଉ କାହାର କିଛି ନୁହଁ, ବୋଉଙ୍କର ଖାଲି ସବୁ ଦୋଷ । ଅଥଚ ତାଙ୍କ ମନା ନ ମାନି ମୁଁ ଜିଗର କରି କଟୁରି ଆଣିଲି, ହାତ ହାଣିଲି, ଅନା କମାର କଟୁରି ତିଆରି କଲା । କାହାରି ଦୋଷ ନୁହେଁ, ଏକା ବୋଉଙ୍କର ! ପୃଥିବୀରେ ସମସ୍ତେ ସମସ୍ତଙ୍କୁ ଗାଳି ଦିଅନ୍ତୁ; କିନ୍ତୁ ମୋର ବୋଉଙ୍କୁ ନୁହେଁ ।

ଏଭଳି ଅନ୍ୟାୟ ଅତ୍ୟାଚାର ମୋ ପକ୍ଷରେ ଅସହ୍ୟ । ତେଣୁ ବାପାଙ୍କର ବୋଉ ଉପରେ ଗାଳି ବର୍ଷଣ ସାଙ୍ଗକୁ ତାଙ୍କ ଛାତିରେ ପଡ଼ି ପିଠି ଉପରେ ଚାଲିଥାଏ ମୋର ମୁଷ୍ଟି ବର୍ଷଣ—ଆଉ ଏକାଦିକ୍ରମେ ଗ୍ରାମ୍ୟ କୁଭାଷାରେ ବାପାଙ୍କୁ ଭର୍ତ୍ସନା ! ଜୀବନ-ବ୍ୟାପୀ ଅସଂଖ୍ୟ ଗ୍ଲାନି ଓ ଲଜ୍ଜା ଭିତରେ ଏ ଲଜ୍ଜାପାଇଁ ତ ଆଜି କୌଣସି ପ୍ରତିକାର ନାହିଁ ।

ବାପାଙ୍କୁ ସେ ଦିନ ଯେତେ ମାରିଥିଲି, ଆଉ କାହାକୁ ତ ସେତେ ମାରିନି ! ସେତେ କାହିଁକି, କାହାରିକି କେବେ-ଆଉ ମାରିଛି ବୋଲି ତ ମନେ ପଡୁନି, ଏକା ମୋର ବାପାଙ୍କ ଛଡ଼ା । ହୁଏତ ମୋର ଏମିତି ସାଧୁ ସ୍ୱଭାବ ପାଲଟି ଯିବାର ବହୁତ କାରଣ ଅଛି । ମାତ୍ର

ଦେଲେ ତ ମାଡ଼ ଖାଇବାପାଇଁ ମଧ ପ୍ରସ୍ତୁତ ହେବାକୁ ପଡ଼େ । ସେଭଳି ପ୍ରସ୍ତୁତିପାଇଁ ମୁଁ ଦେହ ଓ ମନରେ ହୁଏତ ଅସମର୍ଥ ଥିଲି । ଆଉ ବାପାଙ୍କୁ ମାରିବାରେ ତ ସେଭଳି ପ୍ରସ୍ତୁତି ଆଦୌ ଲୋଡ଼ା ନ ଥିଲା । ସେଥିଲାଗି ପୁଣି ଅନେକ ଆଗରୁ ମଧ ସଞ୍ଚିତ ରହିଥିଲା ମୋ ପାଇଁ ଅଯାଚିତ ଅସରନ୍ତି କ୍ଷମା— ଯାହା ପୃଥିବୀରେ ଅନ୍ୟତ୍ର ଅସମ୍ଭବ । ଆହୁରି ବୋଧହୁଏ କାହାରି ଉପରେ କୌଣସି କାରଣରୁ ରାଗ ହେଲେ କିମ୍ବା କାହାରିକି ହାତ ଉଞ୍ଚାଇ ମାରିବାକୁ ଗଲେ, ମୋର ଅବଚେତନ ମାନସରେ ଅତୀତ ଶୈଶବର ସେହି ଦୁର୍ଘଟଣାର ପ୍ରଭାବ ମୋତେ ଦୁର୍ବଳ କରିପକାଏ । ଯାହାଙ୍କୁ ମାରିବି ବୋଲି ଧମକାଏଁ, ସେ ଯେମିତି ବା ମୋରି ବାପାଙ୍କ ଭଳି ମତେ କୋଳରେ କାଖେଇ ସ୍ନେହ କରୁଛନ୍ତି !

ଦୁର୍ଘଟଣାଟିକି ବଖାଣିବାକୁ ଯାଇ ମୁଁ ଜଣେ ମହାପୁରୁଷ ହୋଇ ପଡ଼ିଚି ବୋଲି ସୂଚାଇ ଦେବା ଅବଶ୍ୟ ମୋର ମତ୍‌ଲବ୍ ନୁହେଁ । ଆଉ, ମହାପୁରୁଷର ଆଧୁନିକ ସଂଜ୍ଞା ତ ବହୁତ ବଦଳିଗଲାଣି । ଏହି ଦୁର୍ବଳତା ବରଂ ମନରେ ମୋର ଅନେକ ସମୟରେ ଅବସୋସ ଆଣିବାର କାରଣ ହୁଏ । ସବୁ କ୍ଷେତ୍ରରେ ମୋର ଅକ୍ଷମତା ଲାଗି ତାହାହିଁ ଯେମିତି ଭିତରେ ଭିତରେ ସାହାଯ୍ୟ କରେ । ମନେହୁଏ ଯେମିତି, ଏଇ ଦୁର୍ବଳତାଟା ମୋ ପେଟରେ ଗୋଳେଇ ଘାଣ୍ଟି ହେଉ ନ ଥିଲେ ପୁଣି ବାପା ବୋଉ ମୋତେ କାଖେଇ କୁଣ୍ଢେଇ ବୁଝାଇ ସୁଝାଇ ମୋଠାରୁ ଆହୁରି ବେଶି ବିକଳ ବ୍ୟସ୍ତ ନ ହୋଇ ଦମ୍ଭ ସାହସ ଦେଇଥିଲେ, ମୁଁ ତା'ପରେ ଖାଲି ଅନା କମାର ତିଆରି କଟୁରି କାହିଁକି, କାରଖାନାର କେତେ ବଡ଼ ବଡ଼ ଆଧୁନିକ ମାରଣାସ୍ତ୍ର ବ୍ୟବହାର କରି ନଡ଼ିଆ ବଦଳରେ ଅନେକ ମଣିଷ ମୁଣ୍ଡ ଛେଲି ପକାଇ ଆଜି ହୁଏତ ବୀର, ମହାବୀର କିମ୍ବା ପରମ ବୀରଚକ୍ର ପାଇଁ ଉସାହିତ ହୁଅନ୍ତି । ଅଥବା ସୁଦର୍ଶନ ଚକ୍ର ଆଢୁଆଳରେ ରହି ''ନୀଳଚକ୍ରେ ହୋ ଦେଖ ଉଡୁଚି ବାନା'' ବୋଲି ଡକାପାରି କୌଣସି ପ୍ରକାର ଅଭାବ ଅସୁବିଧା ଦୁଃଖ ବିପଦକୁ ପରବାୟ-ଲେଦୁ କରୁଥାନ୍ତି ।

ବୋଉ ବାପାଙ୍କ ଛଡ଼ା ମୋର ସେଦିନ ଦୁର୍ଘଟଣାରେ ସମ୍ପୃକ୍ତ ଥିବା ତୃତୀୟ ବ୍ୟକ୍ତି ବୋଧହୁଏ ଭାଇନା । ତାଙ୍କ ସ୍କୁଲ ଛୁଟି ଥାଏ କି କ'ଣ, ବାପାଙ୍କ ସାଙ୍ଗରେ ପୁରୀରୁ ଆସିଥାନ୍ତି । କଟା ଆଙ୍ଗୁଠିର ପ୍ରାଥମିକ ଚିକିସା ଭାଇନା କରିଥିଲେ ବୋଲି ଟିକିଏ ହେଜ ହେଉଛି । ତାଙ୍କ ଭିତରୁ ଜଣେ ହେଲେ କେହି ଆଜି ନାହାନ୍ତି, ବାଁ ହାତ ବିଷି ଆଙ୍ଗୁଠି ଅଗରେ ରହି ଯାଇଥିବା ଏହି କଟା ଓ ଫୁଲା ଦାଗର ସାକ୍ଷ୍ୟ ଦେବାପାଇଁ । ଅନା କମାର, ରାମଭାଇନା, ବୋଉ, ବାପା, ଭାଇନା କେହି ନାହାନ୍ତି । ଅଛି ଖାଲି ବାଁ' ହାତ ବିଷି ଆଙ୍ଗୁଠି ଅଗରେ ସେଇ କଟା ଦାଗ ଓ ଫୁଲା ନଖ !

ପେଟଉଥିବା ସମୟରେ ସେହି ବିରାଡ଼ିଟି ଯଦି ପୁଣି ଚତୁର୍ଥ ସାକ୍ଷୀ ରୂପେ ସେ ଦିନର ଘଟଣା ଦେଖିଥାନ୍ତା, ତେବେ ହୁଏତ କହନ୍ତା, ମେଉଁ, ମେଉଁ ଦୁଇ ଭାତ କରି ଗୁଣ୍ଡିଏ ଦେଉଁ— ସେ ଦିନ ମୁଁ ଗେଲ ଖେଳୁଁ ଖେଳୁଁ ଟିକିଏ ରାମ୍ପୁଡ଼ି ହେଇଗଲା ମୋ ଅଜାଣତରେ ବୋଲି ପରା କେତେ ଗାଳି ଘଉଡ଼ା କରୁଥିଲ ମୋତେ ? ଆଜି ହେଲା କ'ଣ ? 'ଆପଣା ହସ୍ତେ ଜିହ୍ୱା ଛେଦି, କେ ତା'ର ଅଛି ପ୍ରତିବାଦୀ ।''

ଇତିହାସ ପରା ନିଜର ପୁନରାବୃତ୍ତି କରେ ! ଅଥବା କାର୍ଲମାର୍କସଙ୍କ ଥିଓରି ଅନୁଯାୟୀ ଠିକ୍ ତ ପୁନରାବୃତ୍ତି କରେ ନାହିଁ, ସ୍ପାଇରାଲ୍ ସ୍ପ୍ରିଂ ଭଳି ବୃତ୍ତାକାରରେ ବୁଲି ବୁଲି ଉପରକୁ ଉଠେ । ସେହିପରି ପ୍ରାୟ ମୋରି ବୟସରେ 'କୁନୀ' (ମୋର ବଡ଼ ଝିଅ ନନ୍ଦିନୀ) ନିଜ ହାତଗୋଡ଼ ହାଣି ନ ଥିଲେ ବି ଗୋଟିଏ ସାନ ଶିଶିରେ ଅଧଶିଶିଏ ମେଥିଲେଟେଡ୍ ସ୍ପିରିଟ୍ ପିଇ ସାରି ନିଶ୍ଚିନ୍ତରେ ଖେଳୁଥିଲା, ଆଉ ସେଥିପାଇଁ ଆମକୁ ଡାକ୍ତର ଡାକିବାକୁ ପଡ଼ିଥିଲା । ତାକୁ ଜଗିଥିବା 'ବନା' ନାମଧେୟ ବାଳକଟି ତା'ରି ଆଦେଶ ଓ ଜିଗରକୁ ମାନି ସ୍ପିରିଟ୍ ଶିଶି କାନ୍ଥ ଆଲମାରିରୁ କାଢ଼ି ଦେଇଥିବାରୁ ସମସ୍ତଙ୍କ ଦ୍ୱାରା ଦୋଷୀ ସାବ୍ୟସ୍ତ ହୁଏ । କୁନୀ ମଧ୍ୟ ସଂଖ୍ୟାଗରିଷ୍ଠର ପକ୍ଷ ସମର୍ଥନ କରି ସବୁରି ସାଥିରେ ସ୍ୱର ମିଳାଇ ସ୍ଲୋଗାନ୍ ଝାଡ଼େ, ''ବନା ! ବନା ପରା ଅସଲ ମଣିଷମାରୁ !'' ସେଇ ବନା ଆଜି ଇହଜଗତରେ ନାହିଁ । ବନା ଥିଲା ମୋର ରକ୍ତ-ସମ୍ପର୍କ ଭାଇ । ସେଦିନ ଦୋଷୀ ସାବ୍ୟସ୍ତ ହୋଇ ସେ ନିରୁତ୍ତର ରହିଥିଲା । 'ମୌନଂ ସମ୍ମତି ଲକ୍ଷଣମ୍' ପ୍ରକାଶ କରିଥିଲା; ମାତ୍ର ସେଇ ଶଙ୍ଖୀ ବିରାଡ଼ିଟି ଥିଲେ ସବୁ ଦୋଷ ଗୁଣ ଠିକେ ଠିକେ କହି ଦେବାପାଇଁ ମାଗି ଥାଆନ୍ତା—ମେଉଁ ମେଉଁ ଦୁଧ ଭାତ କରି ଗୁଣ୍ଡିଏ ଦେଉଁ । ସେତକ ନ ମିଳିବା ପର୍ଯ୍ୟନ୍ତ ଠିକ୍ ଭୁଲ୍ କି ସତ ମିଛ ପ୍ରକାଶ କରିବା ପାଇଁ କେହି ଯେମିତି ନାରାଜ !

ଆଜି ଲାଗୁଛି, ମୋତେ ମିଶାଇ ଦୁନିଆସାରା ଯେମିତି ଆମେ ଦୁଧଭାତ କି ମାଛଭାତ ପାଇଁ ଖାଲି ମେଉଁ ମେଉଁ ରଡ଼ି ଛାଡ଼ୁଛୁ । ପୃଥିବୀ ଗୋଟାକର ଗୁପ୍ତ ଘରବଖୁରିଟିର ଚାବିକାଠି ଯେମିତି ଫିଟିଯାଏ ଦୁଧଭାତ ଗୁଣ୍ଡିଏ ଦେଇପାରିଲେ; ଉପନିଷଦର ସେଇ ଋଷି—ଯେ କି ସବୁବେଳେ ଘୋଷି ହେଉଥିଲେ, ଜଗତ୍ ମିଥ୍ୟା, ବ୍ରହ୍ମ ହିଁ ସତ୍ୟ—ତାଙ୍କୁ ଯେତେବେଳେ ଦିନାକେତେ ଜଗତରୁ ଉତ୍ପନ୍ନ କୌଣସି ଦ୍ରବ୍ୟ ଆହାର କରିବାକୁ ଦିଆ ନ ଯାଏ—ସେତେବେଳେ ତାଙ୍କ ମଗଜ କିମିତି ଠିକ୍ ଓଲଟା ଗତି ଧରିଲା—ଅର୍ଥାତ୍ ଜଗତ୍ ସତ୍ୟ, ବ୍ରହ୍ମ ମିଥ୍ୟା— ଯାବତ୍ ଜୀବେତ୍ ସୁଖଂ ଜୀବେତ୍, ଋଣଂ କୃତ୍ୱା ଘୃତଂ ପିବେତ୍ ।'

ପୁଣି ଋଣ କଲେ ବି ଘିଅ ପିଇବା ତେଣିକି ଥାଉ, ଶୁଙ୍ଘିବାକୁ ଟୋପାଏ ମିଳନ୍ତା ହେଲେ... !



# ଉଠ ନିଶି ପାହିଲା ଏଥର

ଜଣକ ଦୋଷପାଇଁ ଯେ ଆଉ ଜଣେ ଦାୟୀ ହୁଏ, ଦଣ୍ଡ ପାଏ, ଏ ସତ୍ୟଟା ଅତି ପିଲାଦିନୁଁ ମୋତେ ଶିଖିବାକୁ ହୋଇଛି । ଆହୁରି ଶିଖିବାକୁ ହୋଇଛି, ଦୋଷ ବୋଧହୁଏ କାହାରି ନୁହେଁ । ବିରାଡ଼ି-ରାମ୍ପୁଡ଼ା ପାଇଁ ମୋତେ ଜଗିଥିବା ସାନଭଉଣୀ, ତାକୁ ଜଗାଇ ଯାଇଥିବା ବୋଉ କିମ୍ବା ବୋଉଙ୍କର ବାହାରେ ପଡ଼ିଥିବା କାମ, କିଏ ଦୋଷୀ ? ଆଙ୍ଗୁଠି ହଣାପାଇଁ ରାମ ଭାଇନା, କି କଟୁରି ତିଆରି କରିଥିବା ଅନା କମାର, କି ତା'ର ବ୍ୟବସାୟ ବୃତ୍ତି ? ସ୍ପିରିଟ୍ ପିଆପାଇଁ ସେମିତି କ'ଣ 'ବନା' ? ଏଇ ପ୍ରଶ୍ନବାଚକ ଚିହ୍ନଠେଇଁ ସବୁ କଥା ଶେଷ କରିଦେଲେ ବି ଚଳନ୍ତା ପରା !

× × ×

ମୋ କଥାଟି ସରିଲା
ଫୁଲ ଗଛଟି ମରିଲା

ଫୁଲ ଗଛ କାହିଁକି ମଲୁ ? କାଳୀଗାଈ ମୋତେ ଖାଇଗଲା ! କାଳୀ ଗାଈ କାହିଁକି ଖାଇଲୁ ? ଗଉଡ଼ ମୋତେ ଜଗିଲା ନାହିଁ । ଗଉଡ଼ ଜଗେ ନାହିଁ ବଡ଼ବୋହୂ ଭାତ ନ ଦେବାରୁ । ବଡ଼ ବୋହୂ କାହିଁକି ଭାତ ଦେଲୁ ନାହିଁ ? ପୁଅ କାନ୍ଦିଲା । ପୁଅ କାହିଁକି କାନ୍ଦିଲୁ ? ମତେ ଭୂଇଁ ଜହ୍ଣା କାମୁଡ଼ିଲା ।

ଦୋଷ ଗଡ଼ି ଗଡ଼ି କେଉଁଠି ଯାଇ ପହଞ୍ଚେ, ପିଲାଦିନୁ ଶୁଣିଥିବା ସବୁ କଥା ଶେଷରେ ଏହି ଭଣିତାରୁ ଗୋଟାଏ ମୋଟାମୋଟି ଧାରଣା ମନ ଭିତରେ ମୋର ବସାବାନ୍ଧି ରହେ । ଅନେକ ପରେ ଜାଣିଲି, ମଣିଷର ଦୋଷାଦୋଷ ବିଚାର ବିଷୟରେ ଏହି ଲୋକଗାଥାଟି ଖାଲି ଆମ ଓଡ଼ିଶା କାହିଁକି, ଭାରତବର୍ଷର ସବୁ ଭାଷାରେ ଅଛି । ଟିକିଏ ଯାହା ଏପାଖ ସେପାଖ ହୋଇ ତାହା ପ୍ରଚଳିତ । ଖାଲି ସେତିକି ନୁହେଁ ତ ! ଇଂରାଜୀ ଓ ପୃଥିବୀର ଅନ୍ୟାନ୍ୟ ଭାଷା ଜାଣୁଥିବା ପିଲାମାନେ ବି ଏଇ ଛନ୍ଦ ପୁଣି ଭାଷା-ଅର୍ଥର କିଛି ରୂପାନ୍ତର ଶୁଣିଥାନ୍ତି । ଆଉ ବଡ଼ ହୋଇସାରି ବିଜ୍ଞ ବିଚାରକ, ଶାସକ ବା ବିବେଚକ ହେଲେ ଏହାକୁ ନିଶ୍ଚିନ୍ତରେ ପାସୋରି ପକାନ୍ତି । ଯେଉଁମାନେ ପାସୋରିପାରନ୍ତି ନାହିଁ; ସେମାନେ ବୋଧହୁଏ ବଡ଼ ହୋଇପାରନ୍ତି ନାହିଁ ! ଚିରକାଳ ରହିଯାନ୍ତି ବଳହୀନ ହୋଇ ! ଶିଶୁ ପରି ଖାଲି କାନ୍ଦନ୍ତି ମଧ । କାରଣ ସବୁ କଥାରେ ତାଙ୍କୁ ଭୂଇଁଜହ୍ଣା କାମୁଡ଼େ !

ଭୂଇଁ ଜହ୍ଣା କାହିଁକି କାମୁଡ଼ିଲୁ ?

ଭୂଇଁ ତଳେ ତଳେ ଥାଏ, କଅଁଳ ମାଉଁସ ଟିକିଏ ପାଇଲେ ଛୁଟ୍‌କିନା ଖାଏଁ ।

ଶେଷକୁ ଦୋଷ ଯାଇ ପହଞ୍ଚେ କଅଁଳ ମାଉଁସରେ, ଟାଣ ମାଉଁସକୁ ଭୂଇଁଜହ୍ଣା ନା ତା' ବାପା !

ବନା ଓରଫ୍ ବନମାଳୀ କିନ୍ତୁ ଏ ଦୁଇ ଶ୍ରେଣୀ ଭିତରୁ କୌଣସିଟିର ଅନ୍ତର୍ଭୁକ୍ତ ନୁହେଁ । ନିଜର ଭୁଲ୍ ଠିକ୍ ନିଜେ ବିଚାରି ବୁଝିବାକୁ ତା'ର ସାମର୍ଥ୍ୟ ନ ଥିବାରୁ ସେ କେବଳ ଭୁଲ୍ କରେ । ଆଉ ସମସ୍ତେ ଠିକ୍ କରନ୍ତି । ଖାଲି ଯେମିତି ଭୁଲରୁ ତା'ର ଜନ୍ମ । ସେଥିପାଇଁ ସେ, ତା'ର ବଡ଼ଭାଇ ବୃନ୍ଦାବନ, ବୋଉ, ବାପା, ପୁଣି ଘରବାଡ଼ି ସମସ୍ତ ଆଜି ଭୁଲ୍ ହୋଇଗଲାଣି—ଅନ୍ୟର ଘରବାଡ଼ିରେ ନିଜ ଘରବାଡ଼ି ମିଶିଯାଇ ।

ମୁଣ୍ଡଟି ନଡ଼ିଆ ପରି ଗୋଲ । ସେଥିରେ ତା'ର ନାକ, କାନ, ଆଖି, ଓଠ ଅଙ୍କାହୋଇ ବସନ୍ତପଞ୍ଚମୀ ଚିତ୍ର-ନଡ଼ିଆ ଭଳି ଦିଶେ । ଶୋଲ କୁଣ୍ଢେଇ ପରି ତା'ର ଲମ୍ବ ଲମ୍ବ ଗୋଡ଼ ହାତ ଚାରିଟା ଯେମିତି ଅଣଡଣିଆ ଦେହଟାର ଦି'ପଟେ ଖୋଷା ହୋଇଥାଏ । ସେଇ ଗୋଡ଼ରେ କିନ୍ତୁ ମେଦିନୀପୁର ଜିଲ୍ଲା କାନ୍ଥି ଇଲାକାରେ ଗାଁ ଗାଁ ବୁଲି ସେ ଭିକ ମାଗେ ।

ସେଇ ହାତରେ କେଉଁଠୁ ସ୍ପିରିଟ୍ ବୋତଲ, କେଉଁଠୁ କ'ଣ କାଢ଼ିଆଣେ ଆଉ ସେହି ମୁହଁରେ ହସେ ! ବନାର ବଡ଼ଭାଇ ପୁଣି ତା'ର ବୋଉଙ୍କର ବି ସେମିତି ଲମ୍ବା ହାତ ଗୋଡ଼, ସେମିତି ଢେଗା ଢେଗା ଆଖି । ସେଇ ଆଖିରେ ମୋ ଉପରେ ବୋଉ ତା'ର ଦୃଷ୍ଟି ପକେଇ କୁଆଡ଼େ ଦିନେ କହିଥିଲା, ''ସିଂହ-ବୋଉଙ୍କର ଏ ପୁଅଟି ଆମ ଗାଁଯାକରୁ ବାହାର ।'' ବୋଉଙ୍କୁ ଗାଁର ଭାଇଆଳୀ ସ୍ତ୍ରୀଲୋକମାନେ ବଡ଼ପୁଅ ଦିବ୍ୟସିଂହଙ୍କ ନାମ ଅନୁସାରେ 'ସିଂହବୋଉ' ବୋଲି ଡାକନ୍ତି—ବାପା ମଧ୍ୟ । ନିଜ ପିଲାଝିଲା ଛଡ଼ା ସ୍ତ୍ରୀ-ଲୋକଙ୍କର ଅନ୍ୟ ପରିଚୟ ନ ଥାଏ । ବନାବୋଉ ଖୁଡ଼ୀଙ୍କର ସେଇ ମନ୍ତବ୍ୟ ପରେ କୁଆଡ଼େ ମୋର ନାଥୁଲୁ ନୁଥୁଲୁ ଗୋଲଗାଲ ଚେହେରାଟା ଏକାବେଳେ ଶୁଖିଯାଇ କଳାକାଠ ପଡ଼ିଗଲା ।

ମୋ ପିଲାଦିନେ ବନାବୋଉ; ପୁଣି ମୋ ଝିଅର ପିଲାବେଳେ ସ୍ୱୟଂ ବନା ! କିଏ ଦୃଷ୍ଟି ପକାଇ ଆଉ କିଏ ସ୍ପିରିଟ୍ ପିଆଇ ଆମକୁ ଶୁଖାଇ ମାରିବାକୁ ଯେମିତି ତାଙ୍କର ମତ୍‌ଲବ ! ଗାଁ ଭିତରେ ଅଧିକାଂଶ ଲୋକଙ୍କ ପରି ଆଉ ତାଙ୍କରି ପରି, ବାକି ଆମ କେତେଜଣଙ୍କୁ ଧଡ଼ିଆ ସୁକୁଟା କରିବାକୁ ଯେମିତି ସେମାନେ ଲାଗିପଡ଼ିଛନ୍ତି । ଅଥଚ ଆମର ଦୋଷ କେଉଁଠି ? ଆମେ କେତୋଟି ମକଦ୍ଦମଘର ଟିକିଏ ଭଲ ଖାଇ ପିନ୍ଧି ଚଳିବାଟା କ'ଣ ଦୋଷ ? ତାଙ୍କୁ ସେମିତି ମକଦ୍ଦମ ହୋଇ ଚଳିବାକୁ କିଏ ମନା କଲା କି ? କଥାଟିଏ ମନେପଡ଼େ । ପ୍ରସିଦ୍ଧ ଇଂରାଜୀ ସାହିତ୍ୟିକ ଜି.କେ. ଚେଷ୍ଟରଟନ୍‌ଙ୍କ ଚେହେରା ଥିଲା ବେଶ୍ ପୃଥୁଳ ଓ ଗୋଲଗାଲ୍ । ଥରେ ସେ ବର୍ଣ୍ଣାଡ଼୍‌ଶ'ଙ୍କୁ ପରିହାସ କରି କହିଲେ, 'ବ୍ରିଟେନ୍‌କୁ କେହି ଆଗନ୍ତୁକ ଆସି ଆପଣଙ୍କୁ ଭେଟିଲେ, ତାଙ୍କର ଏ ଦେଶ ବିଷୟରେ ଗୋଟାଏ ଖରାପ ଧାରଣା ହେବ ଯେ, ବ୍ରିଟିଶ୍ ଜାତିଟା ହିଁ ଆପଣଙ୍କ ପରି ଜୀର୍ଣ୍ଣଶୀର୍ଣ୍ଣ ଦୁର୍ବଳ ।' ବର୍ଣ୍ଣାଡ଼୍‌ଶ' ସଙ୍ଗେ ସଙ୍ଗେ ଜବାବ ଦେଇଥିଲେ, 'ତାହା ପରେ ଉକ୍ତ ଆଗନ୍ତୁକ ଆପଣଙ୍କୁ ଭେଟିଲେ ବୁଝିପାରିବେ ଯେ, ଆପଣ ହିଁ ତାହାର କାରଣ !''

ଯେଉଁ କାରଣରୁ ହେଉ, ବନାଙ୍କ ପରିବାରଟିର ଯେମିତି ଖାଲି ଦୈର୍ଘ୍ୟ ଅଛି, ପ୍ରସ୍ଥ ନାହିଁ । ସୂର୍ଯ୍ୟ ଅସ୍ତ ଗଲାବେଳର ଲମ୍ବ ଲମ୍ବ ଛାଇ ପରି କାହିଁ ସେମାନେ ଉଭେଇ ଗଲେଣି । ବନାର ମାଉସୀ ମଧ୍ୟ ସେମିତି ଡେଙ୍ଗା ମଣିଷ ଥିଲେ ।

ମଝିରେ ମଝିରେ ଆମ ଗାଁକୁ ବନା-ମାଉସୀ ଆସନ୍ତି । ହାତରେ ଗୋଟିଏ ସାନ ତାଳପତ୍ର ଖେଦା । କି ପୁରୁଷ କି ସ୍ତ୍ରୀ ସବୁରି ସାଥିରେ ତାଙ୍କର ପରିଚୟ । ସବୁରି ସାଥିରେ ହାସ ପରିହାସ କରି କଥା କହନ୍ତି । ଖାଲି ତ କଥା କହନ୍ତିନି, ଗୀତ ବୋଲନ୍ତି ସେଇ ତାଳପତ୍ର ଖେଦାକୁ ଫିଟାଇ । କଳା ଧୂସୁରା ଦେହ ସାଙ୍ଗକୁ କୋକିଳ ପରି ତାଙ୍କ କଣ୍ଠସ୍ୱର ଏବେ ବି ସତେ ଅବା କାନମୂଳରେ ବାଜିଯାଏ ! ଘର ଘର ବୁଲି ବାରି ଅଗଣା ବା ଢିଙ୍କିଶାଳରେ ବୁଢ଼ୀ ଭୁଆସୁଣୀମାନେ ଯେମିତି ରୁଣ୍ଡ ହୋଇ ତାଙ୍କ ଗୀତ ଶୁଣନ୍ତି, ଦାଣ୍ଡରେ ଶୁଣନ୍ତି ସେମିତି ପୁରୁଷ ଲୋକେ ଏହି ବିଧବା ନିରାଭରଣା ନାରୀକଣ୍ଠରୁ ସ୍ୱ-ରଚିତ କବିତା । ମୋ ଜୀବନର ସର୍ବ ପ୍ରଥମ କବି-ପରିଚିତି ।

ପଦେ ହେଲେ ସେ କବିତାରୁ ମନେ ନାହିଁ, ଅଛି ଖାଲି ତା'ର ମୂର୍ଚ୍ଛନା । ତାହା ଆଗରୁ ଯେଉଁ କବିତା ମୁଁ ଶୁଣିଥିଲି, ପୁଣି ଏବେ ସୁଦ୍ଧା ଯାହା ପାସୋରି ଯାଇ ନାହିଁ, ସେ ହେଲା ନିଜ ବୋଉଙ୍କ ମୁହଁରୁ । ରାତି ଫସରଫାଟି ଆସୁଥାଏ । କୁଆ କୋଇଲି ନ ଡାକୁଣୁ ବୋଉଙ୍କ କୋଳରେ ଶୋଇ ଯେତେବେଳେ କାନରେ ବାଜିଉଠେ ତାଙ୍କରି ସ୍ୱର—

''ଉଠ ନିଶି ପାହିଲା ଏଥର ହେ ବଂଶୀଧର !''

ମନେହୁଏ ସେତେବେଳେ ପୃଥିବୀରେ ଗୋଟିଏ ମାତ୍ର ବଂଶୀଧ୍ୱନି, ଆଉ କିଛି ନାହିଁ । ପୁଣି ସଂସାରଟାକୁ ରାତି ପୁହାଇ ଉଠାଇ ଦେବା ହେଲା ରୋଜ ତା'ରି କାମ । ମୁଁ କିନ୍ତୁ ଉଠି ନ ପଡ଼ି ଆହୁରି ଆହୁରି ବୋଉ କୋଳରେ ଲାଗିଯାଏଁ, ପୁଣି ସେହି ବଂଶୀ ଶବଦ ଶୁଣିବା ପାଇଁ । ପୁଣି ଶୁଣେଁ—

ମନ୍ଦିରେ ରାବିଲେ କାକ, ଗଗନେ ରାବିଲେ ଶୁକ
କୁହୁ କୁହୁ କଲେ ପିକ,
କୁକ୍କୁଟ ଡାକିଲେ ପରଖର ହେ ବଂଶୀଧର !

ସବୁଠାରୁ ବେଶି ମଜା ଲାଗେ ଶୀତ-ସକାଳରେ ବୋଉଙ୍କ କଣ୍ଠରୁ ସେହି ଗୀତ ଶୁଣିବା ପାଇଁ । ପୃଥିବୀରେ ବୋଧେ ତା'ଠୁଁ ବଳି ସୁଖ ମୁଁ ଆଉ କିଛି ପାଇ ନି ଜୀବନଯାକ । ଅକ୍ଷର ପରିଚୟ ନ ହେଉଣୁ ଯେଉଁ ଗୀତ ଆଜିଯାକେ ମନ ଭିତରେ ଆଙ୍କି ହୋଇ ରହିଚି, ଆଉ ଆପେ ଆପେ ବାହାରି ଆସୁଚି । ଅଥଚ ଅକ୍ଷର ଚିହ୍ନିବା ପରଠାରୁ କେତେ ବହି, କେତେ ଗୀତ କବିତା ପଢ଼ିଲି । ତାକୁ ସବୁ ମନେ ପକାଇବା ତ ଏଡ଼େ ସହଜ ନୁହେଁ ! କେତେ ସ୍ୱର, କେତେ କଣ୍ଠ-ସଂଗୀତ ଭିତରେ ସେ ଯେମିତି ଆଜି ଛାଏଁ ଜିଇଁ ରହିଛି ସବୁ ବିସ୍ମୃତି ଉପରେ ବିଜୟର ନିଶାଣ ଟେକି—

''ଉଠ ରାମ ବନମାଳୀ
ଶ୍ରୀମୁଖ ଦେବି ପଖାଳି
ଝରୀରେ ରଖିଛି ବାସ ନୀର ହେ ବଂଶୀଧର
ଉଠ ନିଶି,
ଉଠ ନିଶି ପାହିଲା ଏଥର ହେ ବଂଶୀଧର !''

ବିରାମ ନାହିଁ ସେ ବଂଶୀର । ସବୁରି ମୁହଁରେ ସେ ବାଜିଉଠେ ସବୁ ସକାଳରେ । ବୋଉଙ୍କ କଣ୍ଠରୁ କେତେ ଅସରନ୍ତି ଛନ୍ଦ ଆଉ କେତେ ଗଳ୍ପ ଆକାରରେ ମୁଁ ଶୁଣିଛି ସେହି ବଂଶୀ-ସ୍ୱର ! ସେଇ ମୋର ପ୍ରଥମ କବିତା, ପ୍ରଥମ ଗଳ୍ପ, ପୁଣି ବୋଧହୁଏ ଶେଷ ! ''ଆସ ଗୋ ଆସ ଗୋ କଲରାଇ ଫୁଲ, ବେଦୀରେ ବର ତ ବୁଢ଼ା ହୋଇଲା, ବେଦୀତଳେ ପାଣି ଆଣ୍ଠୁଏ ହେଲା ।'' ''କି ପିଢ଼ା ପକେଇଛୁ ଚରା, ଏ ତ ନ ଦିଶଇ କାଠ ସଞ୍ଚାର ପରା'', 'ବାଛ୍ ଦଉଡ଼ି ପିଟ୍ ଠେଙ୍ଗା''—ଗପ ଶୁଣୁ ଶୁଣୁ ଆଖି ଜକେଇ ଆସେ, ହସି ହସି ପେଟ ଉଲୁସି ପଡ଼େ ।

ବେଙ୍ଗୁଲୀ କଥାରୁ ଆଗ ଆରମ୍ଭ ହୋଇ, ତା'ପରେ କେତେ ରଜାପୁଅ, ମନ୍ତ୍ରିପୁଅ, କଟୁଆଳପୁଅ, ସାଧବଝିଅ, ସାଧବପୁଅ ପକ୍ଷିରାଜ ଘୋଡ଼ାରେ ଚଢ଼ି ଯା-ଆସ କରନ୍ତି ନିତି ଆକାଶରେ । କେତେ ମନପବନ ଡଙ୍ଗା ସାତ ସମୁଦ୍ର ତେର ନଈ ପାର ହୋଇ ଭାସି ଭାସି ଚାଲେ । କେତେ ବାଘ ଛେଳି ବିଲୁଆ ନନା, କେତେ ''ଚେଁ କାନ୍ଦେ, ଭେଁ କାନ୍ଦେ, କାନ୍ଦଇ ନଡେଇ ପୁଷି'' ଗପର ମୂଷା, ବିରାଡ଼ି, କେତେ ଓଲେଇ ଗାଈ, ଗୋରୁ ମଇଁଷି, ମାଙ୍କଡ଼ରଜା ପୁଣି ଭୂତ-ପ୍ରେତ, ଡାହାଣୀ-ଚିରିଗୁଣୀ, ଅସୁର-ଅସୁରୁଣୀଙ୍କ ସଙ୍ଗେ ପରିଚିତ ହେବାପାଇଁ ଦିନ-ରାତି, ସଞ୍ଜ-ସକାଳ ଅନ୍ତେ ନାହିଁ । କେଉଁ ''ଅଗନା ଅଗନି ବନସ୍ତ ଭିତରେ'' କିଏ ପୁଣି କାହିଁ ହଜିଯାନ୍ତି । ଆହୁରି ସେଠୁଁ ବାହାରନ୍ତି ବି !

ସବୁ କଥା ସବୁ ଗୀତର ପରିସର ମାତ୍ର ପାଞ୍ଚଶହ ହାତ—ଆମ ଘର ଆଉ ମାମୁଘର ଭିତରେ ଯେତିକି ତଫାତ୍ । ଆମ ଘରକୁ ବୋଉ କହନ୍ତି, 'ମୋ ଘର', ମାମୁଘରକୁ 'ଆମ ଘର' । ମାମୁ ଡାକଟା ବୋଧହୁଏ ଅତି ନିକଟକୁ ବୁଝାଉଥିବାରୁ ଖୁବ୍ ଦୂର, ଖୁବ୍ ଭୟଙ୍କରକୁ ମଧ୍ୟ ଆପଣାର କରିବା ପାଇଁ 'ଜହ୍ନମାମୁ', 'ବାଘମାମୁ' କଥା ଅଛି । ଟୁଆଁ-ଟୁଇଁଙ୍କର 'କାଠ ହାଣୁ ଠୋ ଠା, ବାଘମାମୁ ତୁ ଅଳପେଇସି ଯା ।' ତା' ସାଙ୍ଗକୁ 'କଳସା ଚଉତିଶା', 'କେଶବକୋଇଲି' । କେବେ ବୋଉ ଆଉ କେବେ ବଡ଼ ମାଉସୀଙ୍କ ମୁହଁରୁ ମୁଗ୍ଧ ହୋଇ ଶୁଣେ । ସ୍ୱର ମାଧୁର୍ଯ୍ୟରେ ଦୁହିଁକି ଦୁହେଁ ସରିସା ।

ବଡ଼ ମାଉସୀ ଘର ପୁରୋହିତପୁର । ଆମ ଗାଁରୁ ବାଟ କୋଶେ । ମୋ ବୋଉ ପରି ସେ ବହି ଧରି ଗୀତ ବୋଲିପାରନ୍ତି ନାହିଁ ସିନା, ସବୁ ଗୀତ ତାଙ୍କର ମୁଖସ୍ଥ । ଗୋରା ତକତକ ଦେହ, ପାନ ଖାଇଲା ଭଳି ଓଠ ଯୋଡ଼ିକ ସବୁବେଳେ ଲାଲ । ଗୋବିନ୍ଦ ମଉସାଙ୍କ ଚେହେରା ମଧ୍ୟ ସେମିତି ତେଜୀୟାନ୍ । ବାପା କହନ୍ତି, ସେମାନେ ସାମନ୍ତ ବ୍ରାହ୍ମଣ ଥିବାରୁ ଏତେ ଉନ୍ନତ ତାଙ୍କର ବ୍ୟବହାର । ମୋର ପିଲାବୟସରେ ସୁଦ୍ଧା ବଡ଼ ମଉସାଙ୍କର ମୋ ପ୍ରତି ସ୍ନେହ ସମ୍ମାନର ହେତୁ ପଚାରିଲେ ବାପାଙ୍କଠାରୁ ଏହିପରି ଉତ୍ତର ପାଏ ।

ଚାରି ମାମୁ ତିନି ମାଉସୀ । ତାଙ୍କ ଭିତରୁ ଜଣେ ମାମୁ ଜଣେ ମାଉସୀ ମୋର ହେତୁ ହେବା ଆଗରୁ ବିଦାୟ ନେଇଥିଲେ ପୃଥିବୀରୁ । ବାକି ଯାହାଙ୍କ ପାଖରେ ବଢ଼ିଥିଲି, ସେମାନେ ସମସ୍ତେ ପ୍ରାୟ ସମାନ ଉଚ୍ଚ । ଦେଖିବାକୁ ଗେଡ଼ା ସିନା, ଆମ ପାଣିବଂଶଠାରୁ ଜାତିରେ ସେମାନେ ଉଚ୍ଚ ବ୍ରାହ୍ମଣ । ସ୍ୱଭାବ ମଧ୍ୟ ସେମିତି ଋଜୁ ଓ ନମ୍ର, ପାଣିବଂଶ ମକଦ୍ଦମମାନଙ୍କ

ପରି ବକ୍ର ନୁହେଁ ବା କଠୋର ନୁହେଁ । ସେଥିଲାଗି ତାଙ୍କ ଭିତରୁ କେହି ଜଣେ ଶକୁନି ମାମୁ କିମ୍ବା କଂସ ମାମୁ ହୋଇପାରି ନାହାନ୍ତି । ଅଜା ମୃତ୍ୟୁଞ୍ଜୟଙ୍କୁ ମୁଁ ଦେଖିବା ଆଗରୁ ମୃତ୍ୟୁ ତାଙ୍କୁ ଜୟକରି ସାରିଥିଲା । ତାଙ୍କ ସାନଭାଇ କୃତ୍ତିବାସଙ୍କୁ ଅନେକ ଥର ଦେଖିଥିଲେ ହେଁ, ସମ୍ପର୍କଟା ବୁଝିବାକୁ କିନ୍ତୁ ମୋର ବିଳମ୍ବ ହୋଇଥିଲା । କାରଣ ଅଜା-ନାତି ସମ୍ପର୍କରୁ ସେ ଅନେକ ଦୂରେଇ ଯାଇଥିଲେ । ସେଇ ସୁଦୀର୍ଘ କ୍ଷୀଣକାୟ ପୁରୁଷଙ୍କ ପଦତଳେ ଅନେକ ଥର ମୁଣ୍ଡ ଲଗାଇଛି; ଆଉ ସମସ୍ତଙ୍କୁ ନମସ୍କାର ଦୁଇ ହାତଯୋଡ଼ି । ସମସ୍ତେ ତାଙ୍କୁ ଡାକନ୍ତି 'ସ୍ୱାମୀ' । ଭୁବନେଶ୍ୱର ଦୋଳବେଦୀକୁ ଲାଗି ତାଙ୍କର ମଠ । ମଠ ଦୋତାଲା ଉପରେ ରହନ୍ତି ସେ । ଚନ୍ଦନ, ଜାଗର, ଅଶୋକାଷ୍ଟମୀ, ମକର ସଂକ୍ରାନ୍ତି ପ୍ରାୟ ସବୁ ଯାତ୍ରାକୁ ମାମୁ-ପୁଅଭାଇମାନଙ୍କ ସାଥିରେ ମୁଁ ଭୁବନେଶ୍ୱର ଯାଏଁ । ସମସ୍ତେ ରହୁଁ ମଠରେ । ସାନ ମାଉସୀଙ୍କ ଘର ବି ସେହି ଭୁବନେଶ୍ୱର । ସେଇ ଥିଲା ପିଲାଦିନର ବଡ଼ ସହର, ବଡ଼ ଆକର୍ଷଣ ।

ଏବର ରାଜଧାନୀ ଥିଲା ଚନ୍ଦକା ଜଙ୍ଗଲ, ବାଘ ହାତୀଙ୍କର ବିହାରସ୍ଥଳୀ । ରେଳ ଷ୍ଟେସନକୁ ଯିବା ବାଟ ରାତିରେ ଭୀତି ଉପୁଜାଏ ।

ଖରାଦିନେ ଚାରିଆଡ଼ ତାତିଗଲେ, ମଠର କୋଠା ଛାତ ଉପର ଜହ୍ନ ଆଲୁଅରେ ସୁଲୁସୁଲୁ ଶୀତଳ ବାଆ ବୋହିଯାଏ—ବିଶାଳ ବିନ୍ଦୁସାଗର ପୁଷ୍କରିଣୀର ଜଳ ଉପରେ ସୃଷ୍ଟି କରେ ଅହରହ ନୃତ୍ୟରତ କ୍ଷୁଦ୍ର କ୍ଷୁଦ୍ର ବିଚିମାଳା । କେତେ 'କୁଣ୍ଡ', 'ମଠ' ପ୍ରଶସ୍ତ ଦାଣ୍ଡ, ଅସଂଖ୍ୟ ଦେଉଳ, ସବୁରି ସାଥିରେ ପିଲାଦିନର ଘନିଷ୍ଠ ପରିଚୟ ।

ସ୍ୱାମୀ ନିଜେ ବେଶି କଥା କହନ୍ତି ନାହିଁ; ଯାହା ଅନ୍ୟମାନଙ୍କଠାରୁ ତାଙ୍କ କଥା ମୁଁ ଶୁଣେଁ—ସ୍ତ୍ରୀ ବିୟୋଗ ପରେ ନିଃସନ୍ତାନ କୃତ୍ତିବାସ ସଂସାରତ୍ୟାଗୀ ହେଲେ । ଭୁବନେଶ୍ୱର ଆସି ସେ କେଦାରଗୌରୀ ନିକଟ ଜଙ୍ଗଲରେ ତପସ୍ୟାରତ ହୁଅନ୍ତି, କୌଣସି ସନ୍ନ୍ୟାସୀଙ୍କର ଶିଷ୍ୟ ଭାବରେ । ତାଙ୍କ ପାଖରେ ସାପ ବାଘ ଏମିତି କେତେ ହିଂସ୍ରଜନ୍ତୁ ଯାଆସ କରନ୍ତି । ଭୋଗପାଇଁ ରଖାଯାଇଥିବା ଦୁଧକୁ ଗୋଟିଏ ନାଗସାପ ଆସି ପିଇଯାଏ । ପୁଣି କେବେ ତାଙ୍କ ଦେହରେ ଗୁଡ଼ାଇ ହୋଇ ମୁଣ୍ଡ ଉପରକୁ ଉଠେ । ଏଭଳି ବିଷୟ ଆଜି ଅବଶ୍ୟ କାହାଣୀର ପର୍ଯ୍ୟାୟଭୁକ୍ତ; କି ଓଡ଼ିଶା ରାଜଧାନୀ ନିର୍ମିତ ହୋଇ ସେଠାରେ ସରକାରୀ ଦପ୍ତର ଭଳି ଭୟ ଜାତ ହେବା ପର୍ଯ୍ୟନ୍ତ ଭୁବନେଶ୍ୱରରେ ବୋଧହୁଏ ଥିଲା ବାଘ ଭୟ, ପୁଣି ସାପଟା ତ ହେଲା ପୃଥିବୀପୃଷ୍ଠରେ ସାରା ଭାରତର ଏକ ବିଶିଷ୍ଟ ପରିଚୟ ! କେଦାରଗୌରୀର ସେବକଠାରୁ କୃତ୍ତିବାସଙ୍କ ତପଶ୍ଚର୍ଯ୍ୟାର ଏହି ବର୍ଣ୍ଣନା ଶୁଣି ମଠାଧୀଶ ତାଙ୍କୁ ଶିଷ୍ୟରୂପେ ଗ୍ରହଣ କଲେ ।

କଷାୟ-ବସ୍ତ୍ର-ପରିହିତ ମୁଣ୍ଡିତ ମସ୍ତକ ଦଣ୍ଡ-କମଣ୍ଡଳୁଧାରୀ କ୍ଷୀଣକାୟ ସ୍ୱାମୀଙ୍କର ଦେହର ରଙ୍ଗ ଥିଲା ମଧ ନାଗସାପ ପରି । ମୋର ସାଥି ସହଚର ମାମୁ ପୁଅ-ଭାଇମାନଙ୍କ ଚଗଲାମିରେ ଚିଡ଼ି ଉଠିଲାବେଳେ ତାଙ୍କ ପ୍ରକୃତି ମଧ ସେମିତି ଜଣାପଡ଼େ । ମୋ ପ୍ରତି କେବେହେଲେ ତାଙ୍କ ରୁକ୍ଷତା ମୁଁ ଦେଖି ନାହିଁ । ତଥାପି ଅନ୍ୟ ସମସ୍ତଙ୍କ ତୁଳନାରେ ତାଙ୍କ ପ୍ରତି ମୋର କିପରି ଏକ ଭୟ ଓ ସମ୍ଭ୍ରମ ଜନ୍ମି ଯାଇଥିଲା । ସେ ଯେ ଜଣେ ଅଦ୍ଭୁତକର୍ମା

ଅସାଧାରଣ ଅତି ମନୁଷ୍ୟ, ଏହି ଧାରଣା ହିଁ ମୋ ଭିତରେ ବଦ୍ଧମୂଳ ହୋଇପଡ଼ିଥାଏ ପିଲାଦିନୁ ।

ଉପର ମହଲା ଘରଟିରେ ସେ ଏକୁଟିଆ ରହନ୍ତି । ଯେତେବେଳେ ସେତେବେଳେ କେହି ତାଙ୍କ ପାଖକୁ ଯିବାପାଇଁ ମନା; ସବୁବେଳେ ସେ ଧ୍ୟାନମଗ୍ନ ରହି ଯୋଗାଭ୍ୟାସ କରନ୍ତି ବୋଲି ମୁଁ ଶୁଣେ । ଆହୁରି ଦେଖେଁ ଯେ, କାନ୍ଧରେ ତାଙ୍କର ପଇତା ନାହିଁ । ଶଙ୍କରପନ୍ଥୀମାନେ ଦୀକ୍ଷା ଗ୍ରହଣ ପରେ ତ ଉପବୀତ ମଧ୍ୟ ତ୍ୟାଗ କରନ୍ତି । କିନ୍ତୁ ନିଜେ ଏପରି ଆଦର୍ଶ ଦେଖାଇ ସୁଦ୍ଧା ଜାତିଭେଦ ସ୍ୱୀକାର କରନ୍ତି କି ନାହିଁ ? ତାଙ୍କ ସମ୍ପର୍କରେ କେତେ ଅଦ୍ଭୁତ କଳ୍ପନା ଓ କେତେ ପ୍ରଶ୍ନ ମୋ ମୁଣ୍ଡରେ ଖେଳିଯାଏ । ନିଜେ ତ ନିଜର-ନାମଧାମ ଆଦି କଳ୍ପିତ ପରିଚୟକୁ ଫିଙ୍ଗିଦେଇ ଗ୍ରହଣ କରନ୍ତି ସତ୍ୟକୁ—ସନ୍ନ୍ୟାସୀ ସତ୍‌ନ୍ୟାସ । ସେହିପରି ବୋଧହୁଏ ମୃତ୍ୟୁକୁ ସୁଦ୍ଧା ଅସ୍ୱୀକାର କରନ୍ତି ସେ ।

ମଠର ବାଡ଼ିପଟେ ସ୍ୱାମୀମାନଙ୍କର ସମାଧି ମନ୍ଦିରଗୁଡ଼ିକୁ ଦେଖି ସେ ବିଷୟରେ ମୁଁ ଉତ୍ସୁକ ହୁଏଁ । ତାଙ୍କ ଭିତରୁ ଯୋଗାସନରେ ବସିବା ଅବସ୍ଥାରେ ହିଁ ଦେହତ୍ୟାଗ କରନ୍ତି କେହି କେହି । ଅନ୍ୟମାନଙ୍କୁ ସେଇପରି ଆସନରେ ବସାଇ ସମାଧି ଦେବାର ବିଧି ଅଛି । ଦାହ କରାଯାଏ ନାହିଁ ! ମୋର ସାନ ଅଜା ସ୍ୱାମୀ କୃତ୍ତିବାସଙ୍କୁ ସମାଧି ଦେଲାବେଳେ ତାଙ୍କର ଶବ ଛାଏଁ ଯୋଗାସନରେ ବସିଯିବା ଘଟଣାକୁ ଦେଖିଥିବା ଲୋକଙ୍କଠାରୁ ଶୁଣିଛି ମଧ୍ୟ ସନ୍ଦେହ-ବିସ୍ମୟରେ ।

ଗୁଣ-କର୍ମ-ବିଭାଗଦ୍ୱାରା ଚତୁର୍ବର୍ଣ୍ଣ ସୃଷ୍ଟିର ଯେଉଁମାନେ ଉଦ୍‌ଗାତା, ସେମାନେ ସ୍ୱୟଂ ପଇତା ଛାଡ଼ିବେ, ତାଙ୍କ ଦେହର ଦାହ କ୍ରିୟା କରାନଯାଇ ଖ୍ରୀଷ୍ଟାନ ବା ମୁସଲମାନଙ୍କ ଭଳି କବର ଦିଆଯିବ, ଏସବୁର ତଥ୍ୟ ବୁଝିବାକୁ ମୁଁ ଅସମର୍ଥ ହୁଏଁ । ପୁଣି ତାଙ୍କ ବିଷୟରେ ଯେଉଁସବୁ ପ୍ରଥା ଅଛି, ତାହା ଶୁଣି ବିସ୍ମୟ ମୋର ଆହୁରି ବଢ଼ିଯାଏ । ତାଙ୍କ ପକ୍ଷରେ 'ମୃତ୍ୟୁ' ଶବ୍ଦଟା ପ୍ରୟୋଗ କରିବା ମଧ୍ୟ ଦୋଷାବହ । 'ଦେହ ତ୍ୟାଗ କଲେ' ବା 'ନାରାୟଣ ହେଲେ' ବୋଲି କହିବା ହିଁ ବିଧି । ଆତ୍ମା ଅବିନାଶୀ, ଆତ୍ମା ଓ ପରମାତ୍ମାର ମିଳନ ସଙ୍ଗେ ସଙ୍ଗେ ମୃତ୍ୟୁହୀନ ଅମୃତତ୍ତ୍ୱର ସୂଚନା ପରା ଏସବୁ ପ୍ରଥାରେ ରହିଯାଇଛି ! ସେହି କାରଣରୁ ତାଙ୍କର ପରଲୋକ ଯାତ୍ରାରେ କାହାରି ଶୋକ କରିବାକୁ ମଧ୍ୟ ନିଷେଧ ! ଅଦାହ୍ୟୋଽୟମ୍ ଅଶୋଚ୍ୟୋଽୟମ କଥାଗୁଡ଼ିକ ବୋଧହୁଏ ଏହି ଭାବରେ ପାଳନ କରାଯାଇଥାଏ । ଅନ୍ୟ ଧର୍ମରେ ବି ଅଛି, ଶୋକ କଲେ ମୃତ ବ୍ୟକ୍ତିର ଆତ୍ମା କଷ୍ଟଭୋଗ କରେ ।

ସମାଧି ମନ୍ଦିରଗୁଡ଼ିକ ଏବେ ସୁଦ୍ଧା ସେଇ ମଠବାଡ଼ିରେ ସଂଖ୍ୟା ବୃଦ୍ଧି ଘଟୁଛି । ମୋର ସାନ ଅଜା ସେହି ସାମୀଙ୍କ ପରେ ମୋର ବଡ଼ ମାମୁ ମଧ୍ୟ ଉତ୍ତରାଧିକାରୀସୂତ୍ରେ ସାମୀ ହୋଇଥିଲେ । ତା'ପରେ ମଠ ସହିତ ଆମର ସମ୍ପର୍କ ପୂରାପୂରି ବିଚ୍ଛିନ୍ନ ହୋଇଗଲା । ହେବା ମଧ୍ୟ ସମୀଚୀନ । ତଥାପି ମଠବାଡ଼ିର ଗହୀରା କୂଅପାଖରେ ବଡ଼ ବଡ଼ କନିଅର ଗଛର ପେନ୍ଥା ପେନ୍ଥା ନାଲିଫୁଲ ଗହଳିରେ ସମାଧିମନ୍ଦିରଗୁଡ଼ିକ ସେତେବେଳେ ମନ ଭିତରେ ମୋର ଯେଉଁ ନିବିଡ଼ ରହସ୍ୟର ତରଙ୍ଗ ରଚନା କରିଥିଲେ; ଆଜି ସୁଦ୍ଧା ସେ ରହସ୍ୟଜାଲକୁ କିଛି ଭେଦ କରିପାରିଛି ବୋଲି ତ ମନେ ହୁଏ ନାହିଁ ! ଆଉ ଗୋଟିଏ ରହସ୍ୟ ଭେଦ କରିପାରି ନାହିଁ ଯେ, ଏଇ ନିରାଡ଼ମ୍ବର ପ୍ରଥାର ଆଦର୍ଶକୁ ଟିକିଏ ଅନୁସରଣ କରି ଆମର ମୃତ୍ୟୁଶଯ୍ୟାର

ପାରିପାର୍ଶ୍ୱିକ କାନ୍ଦ ବୋବାଳି ଓ ଶୋକସଭାର ଅଭିନୟକୁ କିଞ୍ଚିତ୍ କମାଇ ଦେଲେ କ୍ଷତିଟା କ'ଣ ହୁଅନ୍ତା ? କାରଣ ଶୋକସଭାରେ ମୃତ ବ୍ୟକ୍ତିଙ୍କ ପ୍ରତି ଯେଉଁ ସମ୍ମାନ ପ୍ରଦର୍ଶିତ ହୁଏ, ତାହାକୁ ଅନେକ ସମୟରେ ଶୋଚନୀୟ କି ହାସ୍ୟାସ୍ପଦ—କିଛି ହେଲେ ତ କୁହାଯାଇପାରେ ନାହିଁ !

ମୃତ୍ୟୁଶଯ୍ୟାରେ ଏମିତି ଗୋଟିଏ ପ୍ରହସନ ଦେଖିଥିଲି ମୋର ଜଣେ ବଡ଼ବାପାଙ୍କ ପ୍ରୟାଣରେ । ବୁଢ଼ାମାନଙ୍କୁ ଚିଡ଼େଇବା ମଧ୍ୟ ପିଲାଙ୍କର ଗୋଟାଏ ଖେଳ । ସତେ କି ସେମାନେ ନିଜେ ଜମାରୁ ବୁଢ଼ା ହେବେନି ଦିନେ ହେଲେ ! ନିଜେ ବୁଢ଼ା ହୋଇ ମୋର ଆଜି ଚେତା ପଶୁଛି !— ଚିଡ଼ିଲେ ତାଙ୍କ ବଳିଷ୍ଠ ଦେହ ଉପରେ ଗୌରବର୍ଣ୍ଣ ଲାଲ ଟକ୍ ଟକ୍ ମୁହଁଟି ରାଗରେ ଆହୁରି ଲାଲ ହୋଇଯାଏ । ତାଙ୍କପାଇଁ ମୃତ୍ୟୁ-ଶଯ୍ୟା ଦାନର ବ୍ୟବସ୍ଥା ହୋଇଥିଲା । ଏହି ଦାନ ଅତ୍ୟନ୍ତ ବ୍ୟୟସାପେକ୍ଷ ଥିବାରୁ କେବଳ ଧନୀଲୋକଙ୍କ ପକ୍ଷରେ ଏହା ସମ୍ଭବପର ହୋଇଥାଏ । ସେହିପରି ବୃଷଭ-ଉତ୍ସର୍ଗରେ ମଧ୍ୟ; କିନ୍ତୁ ଯେଉଁ ବ୍ୟକ୍ତି ମୃତ୍ୟୁଶଯ୍ୟା ଦାନ ଗ୍ରହଣ କରନ୍ତି, ତାଙ୍କୁ ମୃତ ବ୍ୟକ୍ତିଙ୍କର ସମସ୍ତ ଅଭିନୟ କରିବାକୁ ହୁଏ । ତାଙ୍କ ପାଇଁ ନୂଆ ଖଟ, ଶେଯ, ତକିଆ, ଗଦି ଓ ବ୍ୟବହାର-ଉପଯୋଗୀ ସବୁ ଉପକରଣ ଯୋଗାଇବାକୁ ପଡ଼େ । ଛତା, ବାଡ଼ି, ଲୁଗାପଟା, ବାସନ, ପାନବଟା କୌଣସିଟି ଜିନିଷ ବାଦ୍ ଯାଏ ନାହିଁ । ଝିଅ, ଜ୍ୱାଇଁ, ପୁଅ, ବୋହୂ ଆଦି ଜ୍ଞାତିବର୍ଗ ଯେ ଯାହାର ଶକ୍ତି ଅନୁସାରେ ମଧ୍ୟ ଅର୍ଥଦାନ କରନ୍ତି । ତାଙ୍କୁ ସେହି ଖଟ ଉପରେ ଅବିକଳ ମୁର୍ଦ୍ଦାର ଭଳି ଦେହ-ମୁଣ୍ଡ ଲୁଗା ଘୋଡ଼େଇ ଶୋଇ ରହିବାକୁ ହୁଏ ଓ ଝିଅ, ବୋହୂମାନେ ମଧ୍ୟ ତାଙ୍କ ପାଦ ପାଖରେ ବସି ଅବିକଳ ମୁର୍ଦ୍ଦାର ପାଖରେ କାନ୍ଦିଲା ଭଳି ବାହୁନି କାନ୍ଦନ୍ତି ।

ଶେଷରେ ଆସନ୍ତି 'ମାଲଭାଇ'—ମୁର୍ଦ୍ଦାର କାନ୍ଧେଇଯିବା କୁଟୁମ୍ବମାନେ ଏହି ନାମରେ ପରିଚିତ । ଖଟସମେତ ଦାନଗ୍ରହୀତାଙ୍କୁ ସେମାନେ କାନ୍ଧରେ ଉଠାଇ 'ରାମନାମ ସତ୍ୟ ହେ' ଡାକି ଯାତ୍ରା କରନ୍ତି । ମଝିରେ ଯଦି କେତେବେଳେ ନିଜ ଅସାବଧାନତା ଯୋଗୁଁ ଦାନଗ୍ରହୀତା ହଲଚଲ ହୁଅନ୍ତି କିମ୍ବା ମୁହଁରୁ ଲୁଗା କାଢ଼ି ଚାହିଁଦିଅନ୍ତି, ତେବେ ମହାକୌତୁକରେ ତାଙ୍କୁ ବେଢ଼ି ରହିଥିବା ପିଲାମାନେ ତାଳି ମାରି, ପାଟି କରି ଉଠନ୍ତି—''ମୁହଁ କାଢ଼ିଲେ ! ମୁହଁ କାଢ଼ିଲେ !''

କୁଳ-ପୁରୋହିତଙ୍କ ଅପେକ୍ଷା ତାଙ୍କୁ ଅଳ୍ପ ପରିଶ୍ରମରେ ଅଧିକ ମିଳୁଥିବା ହେତୁ ସେ ମଧ୍ୟ କଡ଼ା ନଜର ରଖିଥାନ୍ତି । ଚମକି ଆସି ଧମକ ଦିଅନ୍ତି, ବୃଦ୍ଧାଙ୍ଗୁଷ୍ଠି ହଲାଇ, 'ତା'ହେଲେ ଦାନ ସାଙ୍ଗକୁ ଆଉ ଦକ୍ଷିଣା ଦିଆଯିବ ନାହିଁଟି ! ମୃତ୍ୟୁଶଯ୍ୟା ଦାନ ନେଇ ପୁଣି ମୁହଁ କାଢ଼ିଲ କାହିଁକି ?''

ଦକ୍ଷିଣା ପଇସା ବେଶ୍ ମିଳିଥାଏ । ଜ୍ଞାତିକୁଟୁମ୍ବ, ବନ୍ଧୁ-ବାନ୍ଧବ ସମସ୍ତେ ପ୍ରାୟ ତାଙ୍କ ଅନ୍ତିମ ଶ୍ରଦ୍ଧାର ସ୍ମାରକରୂପେ କିଛି କିଛି ଅର୍ଥଦାନ କରିଥାନ୍ତି । ଦାନୁଆ ବ୍ରାହ୍ମଣଙ୍କ ପକ୍ଷରେ ସେତକ ହରାଇବା କଦାପି ସମ୍ଭବ ନୁହେଁ । ଚକ୍ଷୁ ପଲକରେ ସେ ନିଜ ମୁହଁରେ ଲୁଗା ଘୋଡ଼ାଇ ପକାନ୍ତି ଆବାଳବୃଦ୍ଧ ସବୁରି ହାସ୍ୟ କୋଳାହଳ ଭିତରେ ! ଏହି ଶୋକସଭାର ପୁରୋଧା ଅର୍ଥାତ୍ କୁଳପୁରୋହିତ ମହାଶୟ କେବଳ ହାସ୍ୟ ଦମନ କରି ମୌଖିକ କ୍ରୋଧ ପ୍ରକାଶ କରୁଥାନ୍ତି । କାରଣ ତାଙ୍କରି ନିର୍ଦ୍ଦେଶରେ ହିଁ ଶୁଦ୍ଧିକ୍ରିୟାର ସମସ୍ତ ଆୟୋଜନ ପରିଚାଳିତ ।

ତା'ପରେ କ୍ଷୌର, ସ୍ନାନ ଓ ମୁଖାଗ୍ନି ପ୍ରଭୃତି କର୍ମର ଅଭିନୟ ମଧ୍ୟ ଗ୍ରାମ ସୀମାରେ ବା ଶ୍ମଶାନରେ କରି ତାଙ୍କୁ ରଖିଆସନ୍ତି । ଏହି ଦାନୁଆ ବ୍ରାହ୍ମଣମାନଙ୍କୁ ନମସ୍କାର କରିବା ମଧ୍ୟ ନିଷିଦ୍ଧ, ପ୍ରେତାତ୍ମା ବିଚାରରେ ।

ମାମୁଘରେ କାହାରି ପାଇଁ ମୃତ୍ୟୁଶଯ୍ୟା ଦାନ ଦେବାର ସୟଳ ନ ଥିଲା । ସେମାନେ କେବେହେଲେ ବୋଧହୁଏ ଧନୀ ନ ଥିଲେ । କେବଳ ତାଙ୍କ ବଂଶରୁ ଜଣେ ଭୁବନେଶ୍ୱର ମଠର ସ୍ୱାମୀ ହେବା ଫଳରେ ମଠ ଇଲାକା ବୁଝାଶୁଝା କରି ସେମାନଙ୍କ ଅବସ୍ଥା ଟିକିଏ ସ୍ୱଚ୍ଛଳ ହୋଇପାରିଥିଲା । ଚାରିଭାଇର ଘର । ଖୁବ୍ ଗହଳ ଚହଳ । ମାମୁମାନଙ୍କର ଶ୍ରଦ୍ଧା ସ୍ନେହ ସଙ୍ଗେ ମାଇମାନେ ତ ଭଣଜା ବୋଲି ମୋତେ ମାନ୍ୟ କରନ୍ତି ମଧ୍ୟ । ଆଈଙ୍କୁ ଦେଖିଛି, ଚମ ଧୂଡୁ ଧୂଡୁ ପାତଳ ଚେହେରା । ମାମୁ ପୁଅ ଭାଇମାନଙ୍କୁ ଆକଟ କରି ସେ ମୋ ଉଦାହରଣ ଦେଖାଇ କହନ୍ତି, 'ଦେଖିଲରେ, ଚାଟଘର ପୁଅ ଚାଟ । ଭାଟ ଘର ପୁଅ ଭାଟ । ତୁମେଗୁଡ଼ାକ ଖାଲି କୁଳାଙ୍ଗାର ବାଳୁଙ୍ଗା । ତାକୁ ଦେଖିବ, ସେ ଆମ ଗାଁ ଇସ୍କୁଲ ମାଷ୍ଟର ହେବ ।'

ଗାଁର ଉ:ପ୍ରା: ସ୍କୁଲ ମାଷ୍ଟର—ଉଃ ! କି କ୍ଷମତା, କି ପ୍ରତିପତ୍ତି !

ପୁରୁଣା ହାକିମ ଯାଇ ନୂଆ ହାକିମ କି ପୁରୁଣା ମନ୍ତ୍ରୀ ଯାଇ ନୂଆ ମନ୍ତ୍ରୀ ଆସିଲେ ଯେମିତି ଚହଳ ପଡ଼େ, ପୁରୁଣା ମାଷ୍ଟର ଯାଇ ନୂଆ ମାଷ୍ଟର ଆସିଲେ ପିଲାଙ୍କ ଭିତରେ ସେମିତି କେତେ ବିଚାର !

ଗାଁ ଇସ୍କୁଲର ମାଷ୍ଟର ହେବା ଯୋଗ୍ୟତା ମୋଠାରେ ଅଛି ଜାଣି ଭାରି ମୋତେ ଖୁସି ଲାଗେ । ବାପା ମୋତେ ସାଙ୍ଗରେ ନେଇ ସେଇ ସ୍କୁଲରେ ନାଁ ଲେଖାଇ ଆସନ୍ତି । ସାଥିରେ ନଡ଼ିଆ ଚାଉଳ ଆଦି ଗୁରୁଦକ୍ଷିଣା ନେଇଥାଏଁ କି ନୁହେଁ, ତାହା ସୁଦ୍ଧା ଏବେ ପାସୋର ଗଲାଣି । ମାଷ୍ଟ୍ରେ ଆଗ ଖଡ଼ିଧରି ମାଟିଚଟାଣ ଉପରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ନାମରେ ତିନିଗୋଟି ବଡ଼ ବଡ଼ 'ଠ' ଲେଖିଦେଲେ, ଆଉ ତା'ରି ଉପରେ ଖଡ଼ି ବୁଲାଇବାକୁ ମୋତେ କହିଲେ । ସେହି ଗାର ଉପରେ ମୋର ଗାର ନ ଚାଲିବାରୁ ନିଜେ ମୋ ହାତ ଧରି ବୁଲାଇଦେଲେ । ପୁଣି ପାଟିକରି ଘୋଷିବାକୁ କହିଲେ—'କହ—ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ।'

ସେତେବେଳେ ମୋ ହାତ ଉପରେ ତାଙ୍କ ଟାଣୁଆ ହାତଟା ଲାଗି ମାଟିରେ ଘୋରି ହୋଇ ଟିକିଏ କାଟିଥିଲା । ପୁଣି ତାଙ୍କ ପ୍ରତି ଆହୁରି ଭୟ ଓ ସମ୍ଭ୍ରମ ମଧ୍ୟ ବଢ଼ିଯାଇଥିଲା । ବୋଧହେଲା, ଯେମିତି ଏହି ତିନିଟି 'ଠ' ଲେଖିବା ଜୀବନରେ ମୋର କେବେହେଲେ ସମ୍ଭବ ହେବ ନାହିଁ । ପ୍ରାଥମିକ ଅକ୍ଷର ପରିଚୟର ଏଭଳି ଲିଖନପ୍ରଣାଳୀ ଭାରତର ଆଉ କେଉଁ ଅଞ୍ଚଳରେ ସେତେବେଳେ ପ୍ରଚଳିତ ଥିଲା କି ନାହିଁ ମୁଁ ଜାଣେ ନାହିଁ, ମାତ୍ର ଓଡ଼ିଶାରେ ତା'ର କିଛି ବୈଜ୍ଞାନିକ କାରଣ ଥିଲା ଭଳି ଅନୁମାନ କରାଯାଇପାରେ । କାରଣଟି ହେଲା, ଓଡ଼ିଆ ଅକ୍ଷର ଆକାରରେ ଗୋଲଥିବା ହେତୁ ତା'ର ଶିକ୍ଷାପାଇଁ ଏହାହିଁ ଉପଯୁକ୍ତ ପ୍ରାରମ୍ଭିକ ଅଭ୍ୟାସ । ପୁଣି ତ ପୃଥିବୀ, ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ର ସବୁ ଗୋଲ !



# ମକଦମର ମୂର୍ଖବାବୁ

ସ୍କୁଲରେ ନାମ ଲେଖାହେଲା, ବିଧି ଅନୁଯାୟୀ କାନଫୋଡ଼ା ପରେ । ଛେନାଗୁଡ଼ ଖାଇବାକୁ ଦେଇ ସେହି ଅବସରରେ ବାରିକ କାନ ଫୋଡ଼ିଦିଏ । ତା'ପରେ ପୁରୋହିତଙ୍କ 'ନମୋ ଗଣେଶ ବିଘ୍ନେଶ ଗିରିଜାନନ୍ଦନ ପ୍ରଭୁ, ମମ ବିଘ୍ନ ବିନାଶାୟ ଗଣାଧିପତୟେ ନମଃ' ମନ୍ତ୍ରପାଠ ସଙ୍ଗେ ୧୦୮ କଡ଼ା ଅଥବା ତା'ର ଅଧା କିମ୍ବା ଚଉଠା ଭାଗ ନଡ଼ିଆ ଭାଙ୍ଗିବାକୁ ହୁଏ । ନଡ଼ିଆତକ ଅବଶ୍ୟ ପୁରୋହିତଙ୍କ ପ୍ରାପ୍ୟ ।

ଚୂଡ଼ା-କର୍ମ ପରେ ବିଦ୍ୟାରମ୍ଭ ହେଲେ ମଧ ପାଠ ଯେ ମୋର କେତେ ବାଟ ଆଗେଇଲା, ତାହାର ହିସାବ ରଖିବାକୁ ଘରେ କେହି ସେମିତି ମୁରବି ନ ଥାନ୍ତି । ବାପା ଓ ଭାଇନା ତ ପୁରୀରେ । ଗାଁରେ ଖାଲି ବୋଉ, ମୁଁ, ଆଉ ମୋର ଉପର ତିନି ଭଉଣୀ । ସେ ସମସ୍ତଙ୍କ ଉପରେ ବରଂ ମୋର ଚାଲେ ମୁରବିପଣ । ପୁଅବୋଲି ସବୁ ବିଷୟରେ ମୋର ଅଧିକାର ବେଶି । ସବୁରି ଉପରେ ହୁକୁମ ଚଳାଇବାକୁ ମଧ ମୋତେ ସୁଯୋଗ ଦିଆଯାଇଥାଏ । ସବୁଠାରୁ ବେଶି ହାକିମି କରେଁ, ନିକଟତମ 'ଉଜିନାନୀ' ଉପରେ । ନାମ ପରି ତା'ର ରୂପ ମଧ ଥିଲା ଉଜ୍ଜ୍ୱଳ । ଭଉଣୀମାନଙ୍କ ଭିତରେ ସେ ଯେମିତି ସବା ସାନ, ସମସ୍ତଙ୍କ ଭିତରେ ମୁଁ ସେମିତି । ଦୁହିଁଙ୍କ ଭିତରେ ବାଦବୁଦିଆ ଲାଗିବାଟା ଥିଲା ସ୍ୱାଭାବିକ ।

ଉଜ୍ଜ୍ୱଳ ନାନୀର ରୂପଟା ଏତେ ଉଜ୍ଜ୍ୱଳ ଯେ ତା' ଦେହକୁ ଛୁଇଁଦେଲେ ଯେମିତି ରକ୍ତ ବାହାରି ପଡ଼ିବ । ଗୁଣଟି ମଧ ସେମିତି । ପଦେ କଥାରେ ତାକୁ କାଟେ । ଟିକିଏ ହାତ ବାଜିଗଲେ ସେ କମ୍ପିଉଠେ । ତା'ପରେ ବାହାରେ ତା'ର ତାଳୁଫଟା ଚିତ୍କାର—ମରିଗଲି ମରିଗଲି ! ସୁକୁମାରପଣରେ ବି ସରିଥାଏ ସେ । ଖାଇବସିଲାବେଳେ ପଦେ କିଛି ଅସନା କଥା କିଏ କହିଦେଲେ କି ସେ ନିଜେ ଦେଖି ପକାଇଲେ, ଭାତଥାଳି ଛାଡ଼ି ଉଠିଯିବ, ଅ ଅ ହୋଇ ବାନ୍ତି କରି ପକେଇବ । ପଦୁଟାଏ କୌତୁକ କଥାରେ ବି ସେମିତି ହସି ହସି ଗଡ଼ିଯିବ । ତେଣୁ ତାକୁ କନ୍ଦାଇବା, ହସାଇବା କିମ୍ବା ଖାଇବା ଥାଳିରୁ ଉଠାଇଦେବା ଥିଲା ମୋର ଗୋଟାଏ ସହଜ ବିଳାସ ।

ତା'ଉପର ନାନୀ ଦୁହିଁଙ୍କର ବିଭାଘର ସରିଥାଏ । ଶାଶୁଘରକୁ ସେମାନେ ଗଲାବେଳେ ମୁଁ କୁଣିଆ ହୋଇଯାଏଁ । ଆମ ଘରୁ ବାହାରି ସବାରି ଭିତରେ ବସିବା ଆଗରୁ ଯେମିତି ସେମାନେ ବାହୁନି କାନ୍ଦନ୍ତି, ପୁଣି ତାଙ୍କ ସାଙ୍ଗରେ ବୋଉଙ୍କ କାନ୍ଦଣା ଦେଖି ଶୁଣି ମୁଁ କୋହ ସମ୍ଭାଳିପାରେ ନାହିଁ; କିନ୍ତୁ ଭାଇନାଙ୍କୁ ଧରି ବାହୁନିବାକୁ ଆସିଲେ, କାହିଁକି କେଜାଣି ରାଗ ଆଉ ବିରକ୍ତିରେ ସେ ଗର୍ଜନ କରିଉଠନ୍ତି । ଏତେ କାନ୍ଦିବୋବେଇ କାହିଁକି ସେମାନେ ଯେ ଶାଶୁଘରକୁ ଯା'ନ୍ତି, ନ ଗଲେ କ'ଣ ବା କ୍ଷତି ହୁଅନ୍ତା, ତାହା ବୁଝିବା ମୋପକ୍ଷରେ କଷ୍ଟକର ହୁଏ; ତାଙ୍କ ନଣନ୍ଦ ଦିଅରମାନେ ମୋ ସାଥିରେ ଯେଉଁ ସବୁ ଥଟ୍ଟା ନକଲ କରନ୍ତି, ତାହା ବୁଝିବା ବି ଆହୁରି କଷ୍ଟକର ।

ଅନେକ ସମୟରେ ଇଚ୍ଛା ହୁଏ, ନାନୀ ଦୁହିଁଙ୍କୁ ଘରକୁ ଘେନିଆସିବା ପାଇଁ । ସେମାନେ ବି ତାଙ୍କ ଶାଶୁଘରେ ବେଶି ଦିନ ରହନ୍ତି ନାହିଁ । ମୋତେ ପଠାଇ ବୋଉ ତାଙ୍କୁ ଘେନି ଆସନ୍ତି । ଆମ ଘରେ ଅଧେ ଦିନ ରହିଲେ ତ ବାକି ଅଧକ ତାଙ୍କ ଶାଶୁଘରେ । ଆଣିବା ପାଇଁ ତାଙ୍କ ଶାଶୁଘରକୁ ଗଲେ ସେଠାରେ କେତେ ନୂଆ ଲୋକଙ୍କ ସାଥିରେ ଦେଖାହୁଏ । ପାଠ ବିଷୟ ବି ଆଲୋଚିତ ହୁଏ । କେହି କେହି ପଚାରନ୍ତି, 'ତିନିକାହାଣ ଦୁଇପଣ କେଉଁଠି ଅଛି, କହିଲ ?' ମୁଁ ପଚିଶିକ ପର୍ଯ୍ୟନ୍ତ ମୁଖସ୍ଥ କରିଥିଲେ ହେଁ ହଠାତ୍ ଏମିତି ପ୍ରଶ୍ନର ଉତ୍ତର ଦେଇପାରେଁ ନାହିଁ । ଲାଜରେ ମୋର ମୁହଁ ତଳକୁ ହୋଇଯାଏ । ଆଉ କିଏ କେତେ ଅଶ୍ଳୀଳ ଓ ଗ୍ରାମ୍ୟ ପରିହାସ ମଧ କରନ୍ତି । ସେଥିରେ ମୁଁ ଆହୁରି ଅପଦସ୍ଥ ହୁଏ ।

ବଡ଼ଭଉଣୀ ତୁଙ୍ଗେଇ ନାନୀର ଶଶୁରଘର ନିମାପଡ଼ା ନିକଟ ରଟିଲୋ ଗାଆଁରେ । ଆମ ଗାଁକୁ ବାର ଚୌଦ ମାଇଲ ବାଟ । ତା'ରି ପହିଲି ପାଳିକୁ ମଧ ମୁଁ ଯାଇଥାଏ କୁଣିଆ ହୋଇ । ନରଦା ଗାଁ ଟପିଯିବା ପରେ ବେଳ ବୁଡ଼ିଗଲା । ଚାହୁଁ ଚାହୁଁ ଘୋଟି ଆସିଲା ଅନ୍ଧାର । ମୁହଁକୁ ମୁହଁ ଦିଶିଲା ନାହିଁ । ସବାରି, ଶଗଡ଼, ଭାରୁଆ, ବୋଝିଆ, ଶଙ୍ଖୁଆ, ମହୁରିଆ ତକାହକା ହୋଇ ଚାଲିଥାନ୍ତି । ''ହୁଁ ଭାଇରେ, ହୁମୁରା ଭାଇରେ, ମଟାଳ ମାଟିରେ, ଡାହାଣ ଛାଡ଼ରେ, ବାଆଁକୁ ଧରରେ, ଉଠାଣି ବାଟରେ—'' ସବାରି ବେହେରା ଡାକ ଦୂର ବିଲ ପାଟ ତୋଟାବାଡ଼ କିଆଗୋହିରୀରେ ଉଠାଉଥାଏ ତୁମୁଳ ପ୍ରତିଧ୍ୱନି ।

ରଟିଲୋ ଗାଁ ଭିତରକୁ ଯିବାକୁ ହେଲେ ଏକ ଗଡ଼ଖାଇ ପରି ନାଳ ଭିତରେ ପଶି ପାରି ହେବାକୁ ପଡ଼େ । ତା' ଉପରେ ପଡ଼ିଥାଏ ଲମ୍ବ ହୋଇ ଗୋଟିଏ ନଡ଼ିଆ ଗଛର ଗଣ୍ଡି । ତାହାର ଉପରେ ବ୍ୟାଲାନ୍‌ସ ରଖି ଚାଲି ଚାଲି ଯିବାକୁ ହୁଏ । ସର୍କସରେ ଯେମିତି ତାର ଉପରେ ଝିଅମାନେ ଚାଲନ୍ତି ଛତା ଟାଣି । ଶଗଡ଼କୁ ବିଲ ବାଟରେ ବହୁତ ବୁଲାଣି ବୁଲି ଯିବାକୁ ହୁଏ କିମ୍ବା ଗାଁ ଭିତରକୁ ନ ଆସି ନାଳ ସେପାଖେ ଅଟକିଯିବାକୁ ପଡ଼େ ।

ଗାଁ ମୁଣ୍ଡରୁ ଶଙ୍ଖ ମହୁରି ବାଜିଉଠିଲା, ଆମର ଆଗମନୀ ଘୋଷଣା କରି । ଚେଇଁ ଉଠିଲା ନିଶୂନ ଗାଆଁଟି । ସବାରି, ଶଗଡ଼, ବୋଝିଆ, ଭାରୁଆଙ୍କ ଆସିବାରେ ଲାଗିଲା ଗହଳ ଚହଳ । ମୋତେ ଘର ଭିତରକୁ ନେଇଗଲେ । ଘର ଭିତରେ ବହୁତ ଝିଅପିଲା ରୁଣ୍ଡ ହୋଇଥାନ୍ତି । ପିଲା ଲୋକ । ରାତି ହେଲାଣି, ମୁଁ ଶୋଇବି । ମୋତେ ଶୋଇବାପାଇଁ ଝିଅମାନେ ଡାକି ଆସିଲେ । ଏକା ମୋର ନାନୀ ଛଡ଼ା ସବୁରି ମୁହଁ ତ ଅପରିଚିତ । ନାନୀ କିନ୍ତୁ ନୂଆ ବୋହୂ । ଘର କଣରେ ଦେହମୁଣ୍ଡ ଘୋଡ଼ି ହୋଇ ସେ ବସି ରହିଥାଏ ।

ମୋତେ କିଛି କଥା କହିବାକୁ ଝିଅଙ୍କ ମେଣ୍ଟରେ ତା'ର ସୁଯୋଗ କାହିଁ ? ଏଇ ଅପରିଚିତା ସ୍ତ୍ରୀଲୋକମାନଙ୍କୁ ଦେଖି ମୋତେ ଭାରି ଅଡୁଆ ଲାଗିଲାଣି । ତାଙ୍କର ସବୁ ଆଦର ଅଭ୍ୟର୍ଥନା ମୋ ଭିତରେ କ୍ରୋଧ ବିରକ୍ତି ସୃଷ୍ଟି କଲାଣି । ମୋ ବଡ଼ ନାନୀ ତ ଆମ ଘରେ ଥିଲାବେଳେ ବୋଉ ପଛକୁ ସବୁରି ଉପରେ ମୁରବି ହୋଇଥିଲା । ସମସ୍ତଙ୍କୁ ଆକଟ କରୁଥିଲା । ଏଠାକୁ ଆସି ସେ ଏମିତି ଲୋଚିକୋଚି ହୋଇ ବସି ରହିବ କାହିଁକି ? ଏମାନେ କିଏ ମୋ ଉପରେ ମୁରବିପଣିଆ କରିବାକୁ ! ରାଗ ଅଭିମାନରେ ମୁଁ କାହାରି ଡାକରାକୁ କାନ ଦେଲି ନାହିଁ ।

କିରେ ଆ, ସେ ଘରେ ଶୋଇବୁ । ମୁଁ କେତେ ଭଲ ଭଲ କଥା ଜାଣିଛି, କହିବି ତତେ—ଜଣେ ଝିଅ ମତେ ଆଦର କରି ଡାକିଲା ।

ନା, ମୁଁ ଯିବିନି—ଜବାବ ଦେଲି ତାଙ୍କୁ ।

ତେବେ ଆଉ କରିବୁ କ'ଣ ? ଆଉ ଜଣେ ପଚାରେ ।

ମୁଁ ଏଇଠି ରହିବି ।

ଶୋଇବୁନି ?

ଏଇ ଘରେ ଶୋଇବି ।

ସବୁଯାକ ଝିଅ ହୋହୋ ହସିଉଠନ୍ତି । ତାଙ୍କ ହସିବା କାରଣ ବୁଝି ନ ପାରି ରାଗ ଓ ଘୃଣାରେ ମୁଁ ଆହୁରି ବିଚଳିତ ହୋଇପଡ଼େଁ । ମତେ ତା'ହେଲେ ଏମାନେ ତୁଚ୍ଛ ତାଚ୍ଛଲ୍ୟ କରୁଛନ୍ତି ! ବଡ଼ ନାନୀର କିଛି ହେଲେ ସାମର୍ଥ୍ୟ ନାହିଁ, ସେ ଉଠିଆସି ମତେ ବୁଝାଇବ—ସବୁବେଳେ ଯେମିତି ଆମ ଘରେ ବୁଝାଇ ମତେ ଗେଲକରେ । ସେ ଏଠାରେ କିନ୍ତୁ ନିରୁପାୟ ନିଷ୍କଳ ହୋଇ ବସିଚି ସର୍ବାଙ୍ଗ ବସ୍ତ୍ରାବୃତ ହୋଇ ।

ଝିଅମାନଙ୍କ ହସରେ ମୁଁ ଭୋ ଭୋ କାନ୍ଦି ପକାଇଲି । ତା' ସଙ୍ଗେ ଚାଲିଲା ମୋର ସେହି ପିଲାଦିନର ଅଭ୍ୟାସ—ପେଟ ବାଡ଼ିଆ, ଛାତି ବାଡ଼ିଆ ଆପଣା ହାତ୍‌ରେ । ସେ ଅଭିନୟ ଦେଖି ଝିଅଙ୍କ ଭିତରେ ହାସ୍ୟରୋଳ ଆହୁରି ବଢ଼ିଲା ସିନା, କମିଲା ନାହିଁ । ନାନୀ ସୁଦ୍ଧା ମୋର ଉଠି ଆସି ମତେ ଆଉ କାଖେଇଲାନି କି ବୁଝେଇଲାନି ! ସେ ତେବେ କ'ଣ ଆଜିଠାରୁ ମୋର ଆଉ କେହି ନୁହେଁ ? ଏକା ଦିନକେ ପର ହୋଇଗଲା ? ମୋର ଭିଣୋଇ ଦୈତ୍ୟାରି ଆଚାର୍ଯ୍ୟ କିମ୍ବା ତାଙ୍କ ଖୁଡ଼ୁତାପୁଅ ସାନଭାଇ ଗୋବିନ୍ଦ ଆଚାର୍ଯ୍ୟ ବୋଧହୁଏ ଆସି ସେଠାରୁ ମତେ କାଖେଇ ଘେନି ଯାଇଥିଲେ ।

ମଝିଆଁ କମଳାନାନୀର ପହିଲିପାଳିକୁ ସେମିତି ଯାଇଥାଏଁ ତା' ଶଶୁରଘରକୁ ଲକ୍ଷ୍ମୀନାରାୟଣ ପୁର । ତା'ର ଶ୍ୱଶୁର କେଳେଇ ରଥେ ଆମ ଘରକୁ ଗୋଟାଏ ଧଳା ଘୋଡ଼ାରେ ଚଢ଼ି ଆସିବାର ମନେପଡ଼େ । ସେ ମଧ ଡୁଙ୍ଗେଇ ନାନୀ ଶ୍ୱଶୁର ଭଳି ତାଙ୍କ ଗାଆଁର ମୁଖିଆ ଧନୀ ଲୋକ ଥିଲେ । ତାଙ୍କ ଗାଆଁର ମଧୁପୁର ପଞ୍ଚଦୋଳ ମେଳନ ଯାତ୍ରାର ଆମ ଅଞ୍ଚଳରେ ଖୁବ୍ ନାଁ ଡାକ । ବାଣ, ବାଜା, ଚଇତିଘୋଡ଼ା ମେଢ଼ ଆଲୁଅରେ ଜମିଲାବେଳେ ସେ ମେଳନକୁ ମୁଁ ଦେଖିଚି ।

ମହୁଫେଣା ଭଳି କମଳାନାନୀର ଶଶୁରଘରେ ଅନେକ ଭାଇଙ୍କ ପରିବାର ରହିଥାନ୍ତି । ଘରେ ଝରକା ପ୍ରାୟ ନ ଥିବାରୁ ଦିନ ଦି'ପହରେ ସୁଦ୍ଧା ତା'ଭିତରକୁ ଆଲୁଅ ପଶିପାରେ ନାହିଁ । ତା'ର ଦେଢ଼ଶୁରଙ୍କ ନାମ ବନମାଳୀ । ସ୍ୱାମୀ ପ୍ରାଣକୃଷ୍ଣ ମତେ ଭାରି ଭଲପାନ୍ତି । ଦିଅରମାନଙ୍କ ନାମ ଗଦେଇ, ସଦେଇ ଓ ଲିଙ୍ଗରାଜ । ସବୁରି ଚେହେରା ଗୋରା ଓ ସୁନ୍ଦର । ସମସ୍ତେ ମତେ ଭଲପାନ୍ତି । ମଧୁପୁର ମେଳନ ଯାତକୁ ମୋତେ ଦେଖାଇନିଅନ୍ତି; କିନ୍ତୁ ନାନୀର ଜଣେ

ନଣନ୍ଦ କାହିଁକି କେଜାଣି ମତେ ଭାରି ଗାଳିଦିଏ । ସେ ଗାଳିର ଭାଷା ବୋଧହୁଏ ଜୀବନରେ ମୁଁ ଆଉ କେବେ କାହିଁ ଶୁଣି ନ ଥିବି । ତାକୁ କିଛି ଜବାବ ଦେଇ ନ ପାରି ମୁଁ କାନ୍ଦିପକାଏଁ । କମଳାନାନୀ ଘରକୁ ଯିବାପାଇଁ ମୁଁ ଆଦୌ ମଙ୍ଗେ ନାହିଁ । ସମସ୍ତେ ମତେ ବୁଝାନ୍ତି, ନାନୀର ନଣନ୍ଦ ମୋତେ ପରିହାସ କରିବା କଥା । ଯେହେତୁ ମୁଁ ତା'ର ଭାଇର ଶଳା ।

ତେବେ ପରିହାସଟା ସିନା ହସେଇବାକୁ କରାଯାଏ, କନ୍ଦେଇବାକୁ ତ କଦାପି ନୁହେଁ ! ମୋର କିନ୍ତୁ କାନ୍ଦିବାଟା ଯେ ଭୁଲ, ଆଉ ସେ ମୋତେ ଅକଥ୍ୟ ଭାଷାରେ ଗାଳି ଦେବାଟା ଯେ ଠିକ୍, ସବୁରି ଏମିତି ବୁଝାମଣା ଶୁଣି ମୁଁ ସେମାନଙ୍କ ସଙ୍ଗେ ଏକମତ ହୋଇପାରେଁ ନାହିଁ ।

ଭିଣୋଇ ପ୍ରାଣକୃଷ୍ଣ ମୋତେ ଆସି ବହୁତ ବୁଝାନ୍ତି । ପୁରୀରେ ରହି ସେ ଭାଇନାଙ୍କ ସଙ୍ଗେ ପଢୁଥିଲେ; କିନ୍ତୁ ଏନଟ୍ରାନ୍‌ସ ପର୍ଯ୍ୟନ୍ତ ନ ଯାଇ ଅଧାରୁ ପାଠ ଛାଡ଼ିଦେଲେ । ଘରେ ରହି ଜମିବାଡ଼ି ବୁଝନ୍ତି ।

ସ୍ୱଭାବ ବଡ଼ ମାର୍ଜିତ । ବାପା ଭାଇନା ତାଙ୍କୁ ବେଶି ଭଲପାନ୍ତି । କିନ୍ତୁ ସାନ ଭିଣୋଇ ହରିହର ରଥେ ଟିକିଏ ବଗୁଲିଆ ସ୍ୱଭାବର । ସତ୍ୟବାଦୀ ନିକଟ ଜୀପୁର ତାଙ୍କ ଘର । ସେ ମଧ୍ୟ ପୁରୀରେ ବାପାଙ୍କ ପାଖରେ ରହି ପାଠ ପଢୁଥିଲେ । ଥରେ କ'ଣ ତାଙ୍କୁ ପାଠ ନ ଆସିବାରୁ ଭାଇନା ତାଙ୍କ କାନ ମୋଡ଼ି ଦେଲେ ।

ସେତିକିରେ ତାଙ୍କ ପାଠ ଶେଷ ! ଅନେକ ଦିନ ପରେ ପ୍ରାୟ ବୁଢ଼ା ବୟସରେ ତାଙ୍କୁ ମୁଁ ଏମିତି ପାଠ ଛାଡ଼ି ଦେବାଟା ଠିକ୍ ହେଲାନି ବୋଲି କହିଥିଲି । ଉତ୍ତର ମିଳିଲା,—''ଶଳା ହୋଇ କାନ ମୋଡ଼ିଲେ କିଏ ଭଲା ପାଠ ପଢ଼େ, ନାଁ ମୁଁ ପଢ଼ନ୍ତି ?''

ତାଙ୍କ ବଡ଼ଝିଅ ମୋର ଭାଣିଜୀ ମାଳିଆର ବିଭାଘରକୁ ମୁଁ ଯାଇଥାଏଁ ବନ୍ଧୁଭାବରେ । ବଡ଼ଝିଅର ବେଶ୍ ଜାକଜମକରେ ବିଭାଘର ସେ କରୁଥାନ୍ତି । ଅନେକ ବାଜାବଜନ୍ତ୍ରୀ, ବରଯାତ୍ରୀ, ସଙ୍ଗୀତ ଆଖଡ଼ା । ସକାଳୁ ସନ୍ଧ୍ୟାଯାକେ ଘୋଟା ଚାଲିଥାଏ ପାଚକପାଣି । ଅମ୍ବାଳୁ, ପୁରକାକରା, ଲୁଣୀମହୁର, ଝଡ଼ାବେସରି, କ୍ଷୀରୀ, କାନିକା, ପାଣିକଖାରୁ ଶାକର ଆମ୍ବିଳ, ପୁଣି ବୋଇତିକଖାରୁ ମଧୁରୁଚିର ବାସ୍ନାରେ ଲାଳାୟିତ ସବୁରି ଜିହ୍ୱା ।

ବନ୍ଧୁ-ବାନ୍ଧବ ଭକ୍ଷଭୋଜୀ କୁଟୁମ୍ବସଂଖ୍ୟା କମ୍‌ସେ କମ୍ ଦୁଇଶହ ବ୍ରାହ୍ମଣଙ୍କର ପତ୍ରପାଣି ହୋଇ ଆହାର ସାମଗ୍ରୀ ପରଷା ହୋଇଗଲା । ତା' ପରେ କିଏ ଜଣେ ପଚାରି ବସିଲେ, ''କିହୋ, ବରଯାତ୍ରୀମାନେ କାହାନ୍ତି କି ?''

''ଏଁ ! ବରଯାତ୍ରୀ ଆସି ନାହାନ୍ତି ? ବରଯାତ୍ରୀ ନ ଆସିଲେ ସଭା ବସିବ କିମିତି ? କନ୍ୟାକର୍ତ୍ତା ଗଲେ କୁଆଡ଼େ ?''—ଆଉ ଜଣେ ସେଇ କଥା ଉପରେ ଜୋର ଦେଇ ପଚାରିଲେ ।

କନ୍ୟାକର୍ତ୍ତା ମୋର ଭିଣୋଇଁ ଶ୍ରୀହରିହର ରଥ ଟିକିଏ ବେଶି ପରିମାଣରେ ଦେଶୀଭାଙ୍ଗ ପିଇଦେଇ ଟୁଳୁଟୁଳୁ ହେଉଥିଲେ । ଏହି ସମ୍ବାଦରେ ହଠାତ୍ ବିଛା କାମୁଡ଼ିଲା ପରି ସେ ଚମକି ପଡ଼ିଲେ । ତା'ପରେ କରଯୋଡ଼ି ମହାଜନମାନଙ୍କୁ ଜଣାଇଲେ—

''ଆରେ, ସତେ ତ ! ଆପଣମାନେ ଆଜ୍ଞା ଟିକିଏ ଅପେକ୍ଷା କରନ୍ତୁ । ଦଣ୍ଡକ ଭିତରେ ସବୁ ବରଯାତ୍ରୀଙ୍କୁ ମୁଁ ଡାକି ଆଣୁଛି ।''

ଜଣେ ପୁରୁଖା ଲୋକ ଟିପ୍‌ପଣୀ କଲେ, ''ବରଯାତ୍ରୀ ନ ଆସିଲେ ତ ମୋଟ ଉପରେ ସଭା ହୋଇ ପାରିବନି । ସେମାନେ ଯଦି ଅଡ଼ି ବସିବେ, ତେବେ ତ ଆମ ସମସ୍ତଙ୍କୁ ନ ଖାଇ ଉଠିଯିବାକୁ ପଡ଼ିବ ଯେ !''

''ଆଜ୍ଞା, ମହାଜନମାନେ ! ଟିକିଏ ଖାଲି ହାତ ଟେକି ବସି ରହନ୍ତୁ । ଆଖି ପିଛୁଳାକେ ଚଳୁ ଲାଗିବା ଆଗରୁ ସମସ୍ତଙ୍କୁ ମୁଁ ଡାକି ଆଣୁଛି ।'' ହରି ରଥେ ପୁଣି ଥରେ ମିନତି କରି ସଙ୍ଗେ ସଙ୍ଗେ ବାହାରିଗଲେ ।

ସମସ୍ତେ ଅପେକ୍ଷା କରି ବସିଥାନ୍ତି । ବାକି ରହିଲା ଚଳୁ ଲାଗିବାକୁ ! ନିମିତ୍ୟର କର୍ତ୍ତା ଶ୍ରୀ ହରି ରଥେ ବରଯାତ୍ରୀମାନଙ୍କୁ ସଙ୍ଗରେ ଘେନି ବାହୁଡ଼ିଲେ ସିନା ଚଳୁ ଲାଗିବ !

ଅଧ ଘଣ୍ଟାଏ ବିତିଗଲାଣି; କିନ୍ତୁ ହରି ରଥେ କାହାନ୍ତି ? କାହାନ୍ତି ବରଯାତ୍ରୀମାନେ ? ବଗିଚା ଘରକୁ ଲୋକ ଦଉଡ଼ିଲେ । ବରଯାତ୍ରୀମାନେ କିଛି କ'ଣ ଅଡ଼ିବସିଲେ କି; କିନ୍ତୁ ସେମାନେ ଯାଇ ସେଠାରେ ପହଞ୍ଚି ଦେଖିଲା ବେଳକୁ ବରଯାତ୍ରୀଙ୍କ ଭିତରୁ ଜଣେ ପଖାଉଜ ଧରି ''ଧାତିରିକିଟି ଧାତିରିକିଟି ଧାଧା'' କହି ପିଟି ଲାଗିଛନ୍ତି । ଆଉ ହରି ରଥେ ମୁଣ୍ଡ ହଲାଇ ପୁଣି ଦୁଇ ହାତର ପାଞ୍ଚଆଙ୍ଗୁଠି ଗୋଟିକ ସାଥିରେ ଆଉ ଗୋଟିକୁ ଯୋଡ଼ି ତାଳ ଦେଇ ସଙ୍ଗୀତ ବୋଲୁଛନ୍ତି—ଆରେ କି ହେଲାରେ, କହିତ ନୁହଇ ଭାରତୀରେ !

କି ହେ ରଥେ ଆପଣ, ବାଃ ବାଃ ! ରଥେ ଆପଣେ ସଙ୍ଗୀତ ବନ୍ଦରଖି ଚାହାନ୍ତି ମନ୍ଦାର ଫୁଲିଆ ଭାଙ୍ଗୁଆ ଆଖିରେ ।

ପାଣ୍ଡୁ କିଓ ? ଆସ ଆସ, ନିଗୁଦି ଟିକିଏ ହେଉ । ଅସଲ ଦେଶୀ, ବୁଝିଲ ? ଖଣ୍ଡେ ସୁଦ୍ଧା କଲି ମିଶିନି ।

ନିଗୁଦି ଅର୍ଥାତ୍ ଚିକ୍‌କଣ ବଟା ଭାଙ୍ଗ ଖଣ୍ଡେ କଦଳୀପତ୍ରରେ ଥୁଆ ହୋଇଥାଏ । ନିଶା କମିଆସିଲେ ସେଥିରୁ ମେଞ୍ଚାଏ ନଇଲେ ଅଫିମ ଟେଳାଏ ପାଟିକି ପକେଇ ନିଶାକୁ ଜମେଇ ରଖିବାକୁ ହୁଏ ।

ପାଣ୍ଡୁ ମିଶ୍ରେ ବିରକ୍ତ ହୋଇ ପଡ଼ନ୍ତି—କି ହୋ ନିଗୁଦି କ'ଣ ? ତେଣେ ପରା ମହାଜନମାନେ ଠା-ପୀଢ଼ାରେ ଡକେଇ ବସିଛନ୍ତି । ଆପଣ କନ୍ୟାକର୍ତ୍ତା ହୋଇ ବରଯାତ୍ରୀଙ୍କୁ ଡାକି ଆସି—ବାଃ !

ରଥଙ୍କ ମୁହଁ କେସରା ପଡ଼ିଯାଏ, କହନ୍ତି—

ଆରେ ସତେତ ! ହେ ପାଣ୍ଡୁ ! ମୋର ଖିଆଲ ନ ଥିଲା । ବରଯାତ୍ରୀମାନଙ୍କ ଭିତରୁ ଜଣେ ବାହାରି ଜବାବ ଦିଅନ୍ତି—କାହିଁ, ରଥେ ତ ଆମକୁ ସେ କଥା କିଛି କହିଲେନି ! ତେଣୁ ଆସି ତ ଆମକୁ ଡାକି ବୈଠକୀ ଗାଉଣାରେ ବସିପଡ଼ି ନିଜେ ଆଗ ଗୋଟିଏ ଗୀତ ଆରମ୍ଭ କରିଦେଲେ ।

ସେଇ ହରି ରଥଙ୍କୁ ଲକ୍ଷ୍ୟକରି ମୋର କନିଷ୍ଠ ଭଗବତୀ ଉଜ୍ଜ୍ୱଳନାନୀଙ୍କୁ ଥରେ ଚିଠି ଲେଖିଥିଲେ—

''ଉଜ୍ଜ୍ୱଳନାନୀଙ୍କୁ ନମସ୍କାର । ଆମ୍ଭର ଏଠାରେ ସର୍ବେବ କୁଶଳ । ତୁମ୍ଭ କୁଶଳକୁ ଶ୍ରୀ ହରି ରଥେ ଅଛନ୍ତି ।'' ଆଜି ହସୁରୀ ଉଜ୍ଜ୍ୱଳନାନୀ, ହସୁରା ଭଗବତୀ ଓ ଭାଙ୍ଗୁଡ଼ି ହରି ରଥେ କେହି ନାହାନ୍ତି ।

ଉଜ୍ଜ୍ୱଳ ନାନୀର ବଡ଼ ନଣନ୍ଦ ମୋଠାରୁ ଦଶ ପନ୍ଦର ବର୍ଷ ବଡ଼ହୋଇ ଓ ଦୁଇ ତିନିଟି ସନ୍ତାନର ଜନନୀ ହୋଇ ସୁଦ୍ଧା ମୋ ସଙ୍ଗେ ପରିହାସରେ ନିଜର ବିବାହ ପ୍ରସ୍ତାବ କରନ୍ତି, ଆହୁରି ପ୍ରାୟ ହସକୌତୁକରେ ମାତିଥିବା ଆଠଦଶ ଜଣ ସ୍ତ୍ରୀଙ୍କ ମଝିରେ ବସି । ସେତେବେଳେ ନିଜକୁ ଯେପରି ନିଃସହାୟ ବୋଧ କରିଛି, ଜୀବନର ଆଉ କୌଣସି ଅବସ୍ଥାରେ ସେପରି ନୁହେଁ । ସେଭଳି ଅବସ୍ଥାର ସମ୍ମୁଖୀନ ହେବାପାଇଁ ଯାହାଙ୍କଠାରୁ ସାହସ ପାଉଥିଲି, ତାଙ୍କ ଭିତରେ ସବୁଠାରୁ ବଡ଼ ଥିଲେ ଭୋବନି ଭାଇନା—ବାପାଙ୍କର ନିଜ ଭଣଜା । ଗାଁରେ ରହି ଜମିବାଡ଼ି, ଖଞ୍ଜଣାପତ୍ର ଚାଷ ଲଗୁତି ହିସାବ ସେଇ ଏକା ବୁଝନ୍ତି । ତାଙ୍କରି ସାଥିରେ ବି ବନ୍ଧୁବାନ୍ଧବ ଘରକୁ ମୁଁ ଯା-ଆସ କରେଁ । ମୋ ନିଜ ଭାଇନାଙ୍କ ଠାରୁ ମଧ ସେ ବଡ଼ । ଏକା ବୋଉଙ୍କୁ ଛାଡ଼ି ଘରେ କି ବାହାରେ ଭୋବନିଭାଇନାଙ୍କ ଅପେକ୍ଷା ଆଉ କିଏ ମୋତେ ବେଶି ଭଲ ପାଏ ବୋଲି ତ ମୁଁ ଜାଣି ନାହିଁ । ପୁଣି କାହିଁକି ଏତେ ଯେ ଭଲପାନ୍ତି ସେ, ତାହାର କାରଣ ଖୋଜି ଖୋଜି ଆଜିଯାକେ ଏତିକି ମାତ୍ର ବୁଝିଛି ଯେ, ପ୍ରକୃତ ଭଲ ପାଇବାର କାରଣ କିଛି ହିଁ ନ ଥାଏ । କାରଣ ଥିଲେ, ତାକୁ ଭଲ ପାଇବା କୁହାଯିବ ନାହିଁ, ଆଉ ଯାହା କିଛି କୁହାଯାଉ ପଛେ ।

ନଡ଼ିଆପତ୍ରରେ ପେଁକାଳି ତିଆରି କରିବାଠାରୁ ଆରମ୍ଭ କରି ହାଟବାଟ, ବିଲବାଡ଼ି, ଚାଷୀମୂଲିଆ, ବନ୍ଧୁବାସ, ଗଛମାଛ, ପଡ଼ାକୁଟୁମ୍ବ, ଯାତ୍ରାମେଳନ ସବୁରି ସାଥିରେ ମୋତେ ପରିଚୟ କରାଇବା ଓ କେଉଁଠି କିପରି ବ୍ୟବହାର କରିବାକୁ ହୁଏ, ତାହା ମୋତେ ଶିଖାଇବାରେ ଭୋବନି ଭାଇନା ଥିଲେ ଦାୟୀ । ତା'ଛଡ଼ା ସେ ଯେମିତି ପୋଥି ପୁରାଣ ପଢ଼ନ୍ତି, ପୁଣି ଲେଖନ ତାଳପତ୍ର ଧରି ମୂଲିଆ ମୂଲ ହଳା ହିସାବ ସବୁ ଅବଲୀଳାକ୍ରମେ ଲେଖିଯାନ୍ତି, ତାହା ମୋ ମନରେ ବିସ୍ମୟ ସୃଷ୍ଟି କରେ ।

ମୋତେ ଇସ୍କୁଲ ପଠାଇ ମୋର ଲେଖାପଢ଼ା ଦେଖିବା ଦାୟିତ୍ୱ ମଧ ଥାଏ ତାଙ୍କରି ଉପରେ; କିନ୍ତୁ ସେହି ଦାୟିତ୍ୱଟି ତୁଲାଇବାକୁ ସେ କେତେଦୂର ସମର୍ଥ ହୋଇଥିଲେ କେଜାଣି ! ବାପା ଓ ଭାଇନା ଗାଁକୁ ଆସିଥାନ୍ତି । ମୋର ପଢ଼ାରେ ଅମନୋଯୋଗ ଓ ଦୁଷ୍ଟାମିରେ ଗଭୀର ଅଭିନିବେଶ ଭାଇନାଙ୍କ ଦୃଷ୍ଟିକୁ ଏଡ଼ିପାରେ ନାହିଁ ।

ଥରେ ଗ୍ରୀଷ୍ମଛୁଟିରେ ଭାଇନା ଆସିଥାନ୍ତି । ମୁଁ ଦୁଷ୍ଟାମି କରି ଏଣେତେଣେ ଦଉଡୁଥିବାରୁ ଖଟ ଖୁରାରେ ମୋତେ ସେ ବାନ୍ଧି ପକାଇଥିଲେ । ଦୈବାତ୍ ବାପା ଆସି ପହଞ୍ଚିଗଲେ ଓ ମୋର ଦୁର୍ଦ୍ଦଶା ଦେଖି ଭାଇନାଙ୍କୁ କୌତୁକ ଆକଟ କରି କହିଥିଲେ, ''ଏମିତି ତୁମେ କ'ଣ ନିଜ ଭାଇକୁ ଚଳାଇବ କି ?''

ସେହିଦିନୁଁ ଭାଇନା ମୋତେ ଆଉ ଦଣ୍ଡ ଦିଅନ୍ତି ନାହିଁ । ବାପା ମଧ ଭାଇନାଙ୍କ ପିତ୍ରାଜ୍ଞା ପାଳନ କଥା ଅନେକ ଥର କହି ପ୍ରଶଂସା କରନ୍ତି । ଅତଏବ ଲେଖାପଢ଼ା ବିଷୟରେ ମୁଁ ଆହୁରି ବେ-ପରୁଆ ହୋଇପଡ଼େଁ । ସମସ୍ତଙ୍କର ଏକପ୍ରକାର ଭାବନା ହୋଇପଡ଼ିଲା ଯେ, ମୋ ହାତରେ ଆଉ ସବୁ କାମ ହୋଇପାରେ, ଏକା ପାଠ ଛଡ଼ା ।

ଭାଇନା ସେଥିଲାଗି ବୋଉ ପୁଣି ବାପାଙ୍କୁ ମଧ ଦାୟୀ କରନ୍ତି । ଦିନେ ସନ୍ଧ୍ୟାରେ ବାପା, ବୋଉ, ଭାଇନା, ଭୋବନି ଭାଇନା ଓ ଭଉଣୀମାନେ ବସି ମୋରି ଦୁଷ୍ଟାମି କଥା ବିଚାର କରୁଥାନ୍ତି, ମୁଁ ଖେଳିସାରି ଆସି ପହଞ୍ଚିଗଲି । ଭୋବନି ଭାଇନା କହିଲେ, ତତେ ତ ଯେତେ ପଣିକିଆ ଶିଖାଇଲି, ସବୁ ପାସୋରି ପକାଇଲୁ । ପଢ଼ିବାକୁ କେତେବେଳେ ଟିକିଏ ହେଲେ ମନ କଲୁ ନାହିଁ କି ଘଡ଼ିଏ ବସିଲୁ ନାହିଁ । ତୋ ପାଇଁ ମାମୁ ମତେ ଗାଳି ଦେଉଛନ୍ତି । ପାଠ ପଢ଼ିଲେ ସିନା ଜଣେ 'ବାବୁ' ହୁଅନ୍ତୁ ।

ତାଙ୍କ ମାମୁ, ଅର୍ଥାତ୍ ମୋ ବାପା ସେଠାରେ ଗମ୍ଭୀର ହୋଇ ବସିଥାନ୍ତି । ଭାଇନା ରାଗରେ ପଚାରିଲେ, ତୁ ପାଠ ନ ପଢ଼ିଲେ ହେବୁ କ'ଣ ?

ସିଧାସଳଖ ତାଙ୍କୁ କିଛି କହିପାରେଁ ନାହିଁ । ଆଜି ବାପା ବୋଉ ସମସ୍ତେ ପାଖରେ ଥିବାରୁ ଭାଇନାଙ୍କଠାରୁ କାନମୋଡ଼ାରୁ ରକ୍ଷା ମିଳିବ ବୋଲି ନିର୍ଭୟରେ ଭାବିଚିନ୍ତି ଠିକଣା ଜବାବ ଦେଇଥିଲି—

''କାହିଁକି ? ମୁଁ ହେବି ଜଣେ ମୂର୍ଖବାବୁ !''

ବାପା ଓ ବୋଉଙ୍କ ସାଙ୍ଗରେ ସମସ୍ତେ ଠୋ ଠୋ ହୋଇ ହସି ଉଠିଲେ ।

ମୁଁ କିନ୍ତୁ ନିଜ ବିଷୟରେ ଠିକ୍ ଭବିଷ୍ୟତ ବାଣୀ ଦେଇଥିଲି ସେଦିନ । ସେ କଥାର ମର୍ମ ଆଜି ଅକ୍ଷରେ ଅକ୍ଷରେ ଅନୁଭବ କରି ମୋର ସେହି ଚପଳ ଶୈଶବର ବିଚାରକୁ ଯଥେଷ୍ଟ ତାରିଫ କରିଥାଏଁ ।



# ଆତ୍ମଲିପି କେବେ ସରେ ନାହିଁ

ପ୍ରତି ମୁହୂର୍ତ୍ତରେ ନିତି ନୂଆ ନୂଆ ଅସରନ୍ତି ଘଟଣାପ୍ରବାହ ଭିତରେ ଭାସିଚାଲେ ଏହି ଜୀବନ । ପ୍ରତି ମୁହୂର୍ତ୍ତର ସବୁ କଥା ଟିପି ରଖିଲେ ତ ନିଅଣ୍ଟ ଧରେ ଦୁନିଆଯାକର ସ୍ୟାହୀ କାଗଜ । ପୁଣି ଗଲା କଥାଗୁଡ଼ିକରୁ କେତୋଟି ଆଜି ବା ସ୍ମୃତିପଟରେ ଅଲିଭା ହୋଇ ରହିପାରେ ! ଆରମ୍ଭ ତା'ର କେଉଁଠି—କାହିଁ ପୁଣି ତା'ର ଶେଷ ? ମୂଳ କିଏ, ଅଗ କିଏ ? ଅକଳନ କାଳ-ବକ୍ଷରେ ଉର୍ଦ୍ଧ୍ୱମୂଳ ଅଧଃଶାଖ ହୋଇ ତାହା ଯେମିତି ଦ୍ରୁମାୟିତ, ଲତାୟିତ ପୁଣି ପୁଷ୍ପାୟିତ ! ତହିଁରୁ କେତୋଟି ଫୁଲ ବା ତୋଳିଆଣି ପାରି କି ଭାଷାରେ ମୁଁ ସଜାଇ ରଖିବି ? ନାଆଁ ବାଛି ଦେବି କେଉଁ ରଙ୍ଗ ଆଉ ରୂପର ? କେଉଁ ହସ କେଉଁ କାନ୍ଦର ? କେଉଁ ଭୟ ଅବା ବିସ୍ମୟର ?

ଆରମ୍ଭରୁ ପାଠକ, ଲେଖକ ଓ ସମ୍ପାଦକ ବନ୍ଧୁମାନଙ୍କର ଯେଉଁସବୁ ଶୁଭେଚ୍ଛା ଆଶୀର୍ବାଦ ଉତ୍ସାହ ଓ ସମାଲୋଚନା ମିଳିଛି, ତାହା ଆତ୍ମ-ଜୀବନୀ-ରଚୟିତା ପକ୍ଷରେ ଶ୍ରେଷ୍ଠ ପାଥେୟ । ସେଥିମଧ୍ୟରୁ କେତେକ ଲିଖିତ, ଆଉ କେତେକ ମୌଖିକ ଓ ବାକିଗୁଡ଼ିକ ନୀରବ ।

ସଭାମଞ୍ଚରେ, ରଙ୍ଗମଞ୍ଚରେ, ନୃତ୍ୟ-ମଞ୍ଚରେ ବା କ୍ରୀଡ଼ା ମଞ୍ଚରେ ଶ୍ରୋତା ବା ଦର୍ଶକମାନଙ୍କ କରତାଳି ପରି ବକ୍ତା, ଅଭିନେତା, ନର୍ତ୍ତକ, ନର୍ତ୍ତକୀ ବା କ୍ରୀଡ଼ା-ପ୍ରତିଯୋଗୀମାନଙ୍କୁ ତାହା ଉତ୍ସାହ ଯୋଗାଇଥାଏ । ପାଠକ ସମାଲୋଚକ ବା ଟୀକାକାରଙ୍କୁ ସେମିତି କୌଣସି ଲେଖାରୁ ଓ ଲେଖକଠାରୁ ବାଦ୍ ଦେଇ ହେବ ନାହିଁ ।

ବ୍ୟାକରଣରେ ପଢ଼ିଥିଲି, ବାକ୍ୟ କହିଲେ ବୁଝାଏ, ଯାହାର ଆରମ୍ଭରେ କର୍ତ୍ତା, ମଧ୍ୟରେ କର୍ମ ଓ ଶେଷରେ କ୍ରିୟାପଦ ଥାଏ ତାହା ପରେ କ୍ରିୟାର ପ୍ରକାର; ଯଥା—ସମାପିକା, ଅସମାପିକା, ସକର୍ମକ ଓ ଅକର୍ମକ; କିନ୍ତୁ କ୍ରିୟାର ଯେ ଗୋଟିଏ 'ପ୍ରତିକ୍ରିୟା' ଅଛି, ତାହା ଜାଣିଲି ବ୍ୟାକରଣ ନିୟମଗୁଡ଼ିକୁ ପାସୋରିଦେବା ପରଠାରୁ । ପୁଣି ଯେବେ ସେଗୁଡ଼ିକୁ ମନେ ପକାଇଲି, ଅର୍ଥାତ୍ 'ଅପାଠ୍ୟ'କୁ ଛାଡ଼ି କେବଳ 'ପାଠ୍ୟପୁସ୍ତକ ଲେଖିବାରେ ବନ୍ଦୀ' ହୋଇ, ❖ ସେତେବେଳକୁ ଦେଶର ସ୍ୱାଧୀନତା ଆସିଯାଇ ପ୍ରତିକ୍ରିୟାର ଧୂଆଁବାଣ ଦିଗ୍‌ବିଦିଗ ଘୋଟିଗଲାଣି । ସଙ୍ଗେ ସଙ୍ଗେ ପୁଣି ଭାରତବର୍ଷ ଏତେ ବେଶି ପ୍ରଗତିଶୀଳ ହୋଇ ପଡ଼ିଲାଣି ଯେ ତା' ଭିତରେ ରହିଥିବା ଲୋକେ ପ୍ରତ୍ୟେକ ଅନ୍ୟକୁ ପ୍ରତିକ୍ରିୟାଶୀଳ ବୋଲି ଚିହ୍ନଟ କରିସାରିଲେଣି !

---

❖ *ସ୍ୱର୍ଗତ ଶ୍ରଦ୍ଧେୟ କବି ଗୋଦାବରୀଶ ମହାପାତ୍ର ତାଙ୍କର ଗୋଟିଏ କବିତାରେ "ଆହେ କାଳିନ୍ଦୀ ହେଲ କି ବନ୍ଦୀ ପାଠ୍ୟପୁସ୍ତକ ରଚନାରେ" ବୋଲି ମୋ ପ୍ରତି ବ୍ୟଙ୍ଗୋକ୍ତି ପ୍ରକାଶ କରିଥିଲେ ।*

କି ରାଜନୀତି, କି ସାହିତ୍ୟ, କେଉଁଠ ଯେମିତି କାହାରି ଏ ଦୁଇଟାରୁ ଗୋଟାଏ ନ ହୋଇ ତ୍ରାହି ନାହିଁ । ତେଣୁ ମୋ ଭଳି ଲୋକକୁ ସୁଦ୍ଧା ପଛପଟୁ ପ୍ରଗତି ଓ ଆରପଟୁ ପ୍ରତିକ୍ରିୟାର ଠେଲା କେଞ୍ଚା ଖାଇ ନ ଯଯୌ-ନ-ତସ୍ଥୌ ଅବସ୍ଥାରେ ତ୍ରିଶଙ୍କୁ ପରି ଅଟକିଯିବାକୁ ପଡ଼ିଲା ଅନାସକ୍ତ ହୋଇ । ପାଠ୍ୟପୁସ୍ତକର ପ୍ରତି ରଚନା ଶେଷରେ ଖାଲି ସକର୍ମକ-ଅକର୍ମକ ଓ ସମାପିକା-ଅସମାପିକା କ୍ରିୟା ଉପରେ ହିଁ ଧ୍ୟାନ ଦେବାକୁ ହେଲା, ଯେ ପର୍ଯ୍ୟନ୍ତ ସେ ଧ୍ୟାନକୁ ଭଙ୍ଗ କରିବା ସକାଶେ ପାଠ୍ୟପୁସ୍ତକ ଜାତୀୟକରଣ ଦିଗରେ ଖୋଦ୍ ଓଡ଼ିଶା-ସରକାର ଆଗଭର ହୋଇପଡ଼ି ନ ଥିଲେ ।

ଟେକ୍ସ୍ଟ ବୁକ୍ କମିଟିର ସରକାରୀ ମୋହରଦିଆ ପାଠ୍ୟପୁସ୍ତକ ଭିତରେ ବେଶ୍ ନିଶ୍ଚିନ୍ତରେ ଉବୁଟୁବୁ ହେଉଥାଏଁ । ଧରାବନ୍ଧା ପାଠକ ବା ଗ୍ରାହକ ଓ ପ୍ରକାଶକମାନଙ୍କ ଉତ୍ସାହ ମଧ୍ୟ କେବଳ ମୌଖିକ ନୁହେଁ, ଆର୍ଥିକ । ଲେଖାର ଭଲମନ୍ଦ ବିଷୟରେ ପାଠକମାନଙ୍କର କିଛି କହିବାର ନାହିଁ । କାରଣ ତାଙ୍କୁ ଆଗ ପାଠକରୂପେ ଗଢ଼ିବା ହେଲା ପାଠ୍ୟପୁସ୍ତକ ଲେଖାର ମୂଳ ଲକ୍ଷ୍ୟ । ଅକ୍ଷର ଚିହ୍ନିସାରି ପାଠକ ହେବା ପରେ ସିନା ପାଠ୍ୟ ଉପରେ ବିଚାର ପ୍ରଶ୍ନ ଉଠିବ !

ରାଜା କେବେହେଲେ ଭୁଲ୍ କରିପାରନ୍ତି ନାହିଁ ବୋଲି ଇଂରାଜୀରେ ଗୋଟିଏ ପ୍ରବାଦ ଅଛି । ସେହି ରାଜା ବା ସରକାରୀ ବାହୁଛାୟା ତଳେ ପାଠ୍ୟପୁସ୍ତକ ଲେଖି ଓଡ଼ିଆ ପାଠକସଂଖ୍ୟା ବୃଦ୍ଧି କରିବାରେ ମୁଁ ବ୍ରତୀ ହୋଇଥିଲି । କାରଣ ପାଠ୍ୟପୁସ୍ତକର ପାଠକମାନେ ସେଥିରେ ବିବ୍ରତ ହୋଇ ଅନ୍ୟ ପୁସ୍ତକ ପଢ଼ିବାକୁ ଆଗ୍ରହୀ ହେବା ସ୍ୱାଭାବିକ । ପୁଣି ଗୋଟାଏ ସୁବିଧା ହେଉଛି ପାଠ୍ୟପୁସ୍ତକର ପାଠକ ସଂଖ୍ୟା ମଧ୍ୟ ସବୁଠାରୁ ବୋଧହୁଏ ବେଶି ଓ ଏକପ୍ରକାର ବାଧ୍ୟତାମୂଳକ । ଅତଏବ ନିନ୍ଦା-ପ୍ରଶଂସାର ଊର୍ଦ୍ଧ୍ୱରେ ରହି ଜୀବିକାର୍ଜ୍ଜନରେ ଏଇ ନିରାପଦ ପନ୍ଥାକୁ ବାଛିନେବାଟା ମତେ ମନ୍ଦ ଲାଗିଲା ନାହିଁ । ସେଥି ସହିତ ପାଠକ ସଂଖ୍ୟା ବଢ଼ାଇବା ଭଳି ଦେଶସେବା ପୁଣି ଓଡ଼ିଆ ସାହିତ୍ୟ ଓ ସାହିତ୍ୟିକମାନଙ୍କ ଉନ୍ନତିକଳ୍ପେ !

ନିନ୍ଦା ପ୍ରଶଂସାର ଊର୍ଦ୍ଧ୍ୱରେ ରହି ଯେ ମୁଁ ପାଠ୍ୟପୁସ୍ତକ ରଚନା କାର୍ଯ୍ୟରେ ଅବତୀର୍ଣ୍ଣ ହୋଇଥିଲି, ତାହା କଦାପି ଠିକ୍ ନୁହେଁ ! ବରଂ ସେହି କାରଣରୁ ମୋ ବିରୋଧରେ ଅଭିଯୋଗ ଓ ଅନୁଯୋଗର ମାତ୍ରା ଯେତେ ପରିମାଣରେ ପୁଞ୍ଜୀକୃତ ହୋଇ ଉଠିଥିଲା, ମହାନୁଭବ ଓଡ଼ିଶା ସରକାର ଯଦି ପାଠ୍ୟପୁସ୍ତକ ଜାତୀୟକରଣଦ୍ୱାରା ତହିଁରୁ ମୋତେ ଉଦ୍ଧାର କରି ନ ଥାନ୍ତେ, ତା'ହେଲେ ଶେଷକୁ ମୋର ଜାତି ଯାଇଥାନ୍ତା ସିନା, ପେଟ ତ ଯେମିତି ଅଛି ସେମିତି !

କ୍ରିୟାର ଗୋଟିଏ ପ୍ରତିକ୍ରିୟା ହେଲା ନିନ୍ଦା ଆଉ ପ୍ରଶଂସା—''ନିନ୍ଦନ୍ତୁ ନୀତିନିପୁଣା ଯଦି ବା ସ୍ତୁବନ୍ତୁ'' କହି ଆମେ ଯେତେ 'ମନବୋଧ ଚଉତିଶା' ରଚନା କରୁଁ ପଛେ, ସେ ଦୁଇଟିରୁ ନିସ୍ତାର ନାହିଁ କେବେହେଲେ; କିନ୍ତୁ ଦୁଇଟିରୁ ଯେଉଁ ଉପକାର ମିଳେ, ମୂଲ୍ୟ ତାହାର ଅସାମାନ୍ୟ । ପ୍ରଥମ ପରିଚ୍ଛେଦ 'ମୋର କୈଫିୟତ୍' କେତେକ ନବୀନ ଓ ପ୍ରବୀଣ ବନ୍ଧୁଙ୍କର ଦୃଷ୍ଟି ଆପର୍ଷଣ କରେ ସ୍କୁଲ କଲେଜ ଶିକ୍ଷାୟତନରେ, ପୁଣି ହାଓଡ଼ା ଷ୍ଟେସନ ପ୍ଲାଟ୍‌ଫର୍ମ ବହି ଦୋକାନରେ ମଧ୍ୟ । ତା'ଛଡ଼ା ସମ୍ପାଦକ ଓ ପ୍ରକାଶକମାନେ ତ ଅଛନ୍ତି !

ପ୍ରକୃତ ଆତ୍ମଜୀବନୀକୁ ନ ଆସି ମୁଁ ତୁଚ୍ଛା ଗୁଡ଼ିଏ ବାକ୍‌ଚାତୁରୀ ବାଲିଙ୍ଗି ବାହାର କରୁଚି ବୋଲି କେହି କେହି ମଧ ମୋତେ କୋବଲେଇଛନ୍ତି । ଆଉ କିଏ ତାଙ୍କ ନିଜ ଜୀବନର ପ୍ରତିଛାୟା କିଛି କିଛି ଏଥିରୁ ପାଇଥିବା ସୂଚାଇ ମଧ ଉସାହିତ କରିଛନ୍ତି ।

ଡକ୍ଟର କୁଞ୍ଜବିହାରୀ ଦାଶ ପ୍ରମୁଖ କବି ସାହିତ୍ୟିକମାନଙ୍କ ସଶ୍ରଦ୍ଧ ନିରପେକ୍ଷ ମତାମତ ଶୁଣି ଯେପରି ମୁଁ ଉପକୃତ, ନାଟ୍ୟକାର ଶ୍ରୀ ଗୋପାଳ ଛୋଟରାୟ ଓ ସୁପରିଚିତ ପ୍ରାବନ୍ଧିକ ତଥା ସାହିତ୍ୟ ସମାଲୋଚକ ଶ୍ରୀ ପଠାଣି ପଟ୍ଟନାୟକଙ୍କ ଉସାହ ଓ ପ୍ରଶଂସାରେ ସେହିପରି ଉଲ୍ଲସିତ । ଗୋପାଳବାବୁ 'ପାକ୍-ଭାରତ ଯୁଦ୍ଧ ବିରତି ଦିବସ'ରେ ଲେଖିଛନ୍ତି—

ଆଲାମଚାନ୍ଦବଜାର, କଟକ-୨
୨୨ । ୯ । ୬୫

''ଦଶହରା ସଂଖ୍ୟା 'କଳନା'ରୁ ପ୍ରଥମେ ମୋ ପୁଅ ଦେବଦାସର କବିତାଟି ପଢ଼ିଲା ପରେ ଆପଣଙ୍କ ଲେଖା 'ଅଙ୍ଗେ ଯାହା ନିଭାଇଛି' ପଢ଼ିଲି । ଆପଣଙ୍କର ପ୍ରାୟ ସମସ୍ତ ପ୍ରକାଶିତ ଲେଖା ମୁଁ ପଢ଼ିଚି । ଏ ଲେଖାଟି ପଢ଼ି ମୋର ମନେହେଲା, ଏହା ଆପଣଙ୍କର ସର୍ବଶ୍ରେଷ୍ଠ ରଚନା । ନିଜ କଥା ବୋଲି କ'ଣ ଏପରି ଉଚ୍ଚକୋଟୀର ବିଶ୍ଳେଷଣାତ୍ମକ ଲେଖା ଲେଖିଛନ୍ତି ??.... 'କଳନା'ରେ ତ ମାତ୍ର ଗୋଟିଏ ପରିଛେଦ ପ୍ରକାଶ ପାଇଚି; କିନ୍ତୁ ଲେଖା ଶେଷରେ 'କ୍ରମଶଃ' ନ ଥିବାରୁ ଦ୍ୱନ୍ଦ୍ୱରେ ପଡ଼ିଲି । ଯାହା ହେଉ, ଓଡ଼ିଆ ପାଠକମାନଙ୍କ ତରଫରୁ ମୋର ବିନୀତ ଅନୁରୋଧ, ଆପଣ ଲେଖାଟିକୁ ସମ୍ପୂର୍ଣ୍ଣ କରି ପ୍ରକାଶ କରାନ୍ତୁ । ମୋର ଦୃଢ଼ ଧାରଣା, ଏହା ଆମ ସାହିତ୍ୟର ଏକ ଅମୂଲ୍ୟ ସମ୍ପଦ ହୋଇ ରହିବ ।

ଲେଖାପାଇଁ ଅଭିନନ୍ଦନ ଜଣାଇ ଓ ଆପଣଙ୍କ ଦୀର୍ଘ ଜୀବନ କାମନା କରି ରହିଲି ।''

ଜଣେ ପାଠକକୁ ଗୋଟିଏ ଲେଖା ଭଲ ଲାଗିଲେ ଆଉ ଜଣକୁ ଯେ ମନ୍ଦ ଲାଗେ, ଗୋଟିଏପଟୁ ପ୍ରଶଂସା ଆସିଲେ ଆରପଟୁ ଯେ ନିନ୍ଦା, ଆପଣାର ଲେଖକ ଅଭିଜ୍ଞତାରୁ ଗୋପାଳବାବୁ ଏହି ବୈଚିତ୍ର୍ୟ ନିଶ୍ଚୟ ଭଲ କରି ବୁଝିଥିବେ । ତଥାପି ସ୍ୱଭାବସୁଲଭ ସ୍ନେହାତିଶଯ୍ୟର ବଦାନ୍ୟତା ଗୁଣରୁ ପୁଣି ଲେଖକସୁଲଭ ଭାବପ୍ରବଣତା ଯୋଗୁଁ ମୋତେ ଏମିତି ଉଲ୍ଲସିତ ଅଭିନନ୍ଦନ ଜଣାଇଛନ୍ତି । ଏହା ପ୍ରକାଶ କରିବାରେ ମୋର ମଧ ସେମିତି ଆତ୍ମପ୍ରସାଦ ନିହିତ ଅଛି । ତାଙ୍କଠାରୁ କି ଆଉ କାହାଠାରୁ ମୁଁ ଯଦି ଏହି ପରିମାଣ ନିନ୍ଦା ପାଇଥାନ୍ତି, ତା'ହେଲେ ତାଙ୍କରି ଭାଷାରେ 'ଆତ୍ମବିଶ୍ଳେଷଣ' ବଦଳରେ ହୁଏତ ଦୁଃଖ-କ୍ରୋଧଜନିତ ପ୍ରତିଶୋଧ ନେବାର ସହଜ ପ୍ରବୃତ୍ତି ମୋର ବେଶି ହୋଇପଡ଼ନ୍ତା !

ଆଗେ କବି ଲେଖକମାନେ ବୋଧହୁଏ ସେହି କଥାଟାକୁ ଏବଠାରୁ ବେଶି ବୁଝୁଥିଲେ—କି ଓଡ଼ିଆ, କି ସଂସ୍କୃତ, କି ଇଂରାଜୀ । ସେତେବେଳେ ସର୍ବସ୍ୱତ୍ୱ ସଂରକ୍ଷଣ ଆଇନ ଜାରି ନ ଥିଲା । ଜଣକ ଲେଖାକୁ ଆଉ ଜଣେ ନିଜର ବୋଲି ଦାବି କରିବାରେ ବାଧା ନ ଥିଲା । ତଥାପି ସାରଳା ଦାସ, ଉପେନ୍ଦ୍ର, କାଳିଦାସ, ସେକ୍‌ସପିଅର ଆଦି ଶତାବ୍ଦୀଗୁଡ଼ିକୁ ତ ଅବାଧରେ ଡେଇଁ ଚାଲିଛନ୍ତି !

ତାଙ୍କ ଭିତରେ ଆଉ ଗୋଟିଏ ଚତୁରତା ମଧ ଲକ୍ଷ୍ୟ କରାଯାଏ । ରଚନା ଶେଷରେ ସେମାନେ ନିଜ ନାମର ଭଣିତା ସିନା ରଖୁଥିଲେ, ଆରମ୍ଭରେ ତାହା ଖାଲି ଦେବଦେବୀଙ୍କ ଅନୁଗ୍ରହ ଅନୁକମ୍ପା କିମ୍ବା ପ୍ରସାଦ ବୋଲି ଜୋର ଦେଉଥିଲେ । ସେହି ଦେବଦେବୀମାନେ ତାଙ୍କ କଣ୍ଠରେ ବସି ପଦମାନ କହିଦିଅନ୍ତି । ତାକୁଇ ସେମାନେ ଟିପି ରଖନ୍ତି ମାତ୍ର । ସାରଳା ଦାସ ସେଥିଲାଗି ନିଜକୁ ସମ୍ପୂର୍ଣ୍ଣ ମୂର୍ଖ ବୋଲି ଘୋଷଣା କରିଗଲେ । ତୁଳସୀ ଦାସ, ଉପେନ୍ଦ୍ର ଭଞ୍ଜଙ୍କ ଆଗରେ ସ୍ୱୟଂ ଶ୍ରୀରାମ, ପୁଣି କାଳିଦାସଙ୍କ ସମକ୍ଷରେ ସାକ୍ଷାତ୍ ବାଗ୍‌ଦେବୀ ସରସ୍ୱତୀ ବିଜେ ହୋଇ—ଆହୁରି ପ୍ରଥମ ଇଂରେଜ କବି କେଡ୍‌ମନଙ୍କୁ ଆକାଶବାଣୀ ଶୁଣାଯାଇ... ମଣିଷ ଭିତରେ କି କଳ୍ପନା, କି ସୃଷ୍ଟି, କି ପ୍ରଳୟ !

କିଟ୍‌ସ, ଓଆଡସ୍‌ଓଆର୍ଥ, ଇଟ୍‌ସ, ରବୀନ୍ଦ୍ରନାଥଙ୍କ ପର୍ଯ୍ୟନ୍ତ ସ୍ପିରିଟ୍, ମ୍ୟାଜିକ୍, ରହସ୍ୟ, ଅଜ୍ଞେୟ ହେଲା କବି ଲେଖକର ଲେଖନୀମୂନର ମାଲିକ । ଆଉ କ'ଣ ବିଜ୍ଞାନଯୁଗର ଆତ୍ମପ୍ରତିଷ୍ଠା, ପୁରୁଷକାର ? କେଉଁ ଲେଖକ ନିଜ ଛାତିରେ ଆଜି ହାତ ଦେଇ କହିପାରିବେ, ଗୋଟିଏ ଲେଖାକୁ ତାଙ୍କ ପାଠକମାନେ ଭଲ କହିଲେ, ସେମିତି ଆଉ ଗୋଟିଏ ସେ ଲେଖି ପାରନ୍ତିନି କାହିଁକି ? ସେକ୍‌ସପିୟର ଆଉ ଖଣ୍ଡେ ହ୍ୟାମ୍‌ଲେଟ୍, କାଳିଦାସ ଆଉ ଖଣ୍ଡେ ଶକୁନ୍ତଳା, ଉପେନ୍ଦ୍ର ଭଞ୍ଜ ଆଉ ଖଣ୍ଡେ ଲାବଣ୍ୟବତୀ ଲେଖି ପାରିଲେନି ତ ? ଅଥଚ ସେମାନେ ଆହୁରି ଅନେକ ଲେଖିଛନ୍ତି, ନିଜ ଶ୍ରେଷ୍ଠ କୃତୀର ପ୍ରତିଦ୍ୱନ୍ଦ୍ୱିତା ପାଇଁ ଯେପରି । ଇସ୍, ଡିକିଶାଳରୁ ଢେଙ୍କାନାଳ !

ନିଜ କଥା ଲେଖିବାର ନିର୍ଲଜତା ବରଣ କରିବାକୁ ଗଲାବେଳେ ଗୋପାଳବାବୁଙ୍କଠାରୁ ଏହି ଦମ୍ଭ ଓ ସାହସ ପାଇ ମୁଁ ଆହୁରି ନିର୍ଲଜ୍ଜ ଉଲଗ୍ନ ହେବାକୁ ମଧ ବାହାରିଚି । ଆତ୍ମଜୀବନୀ-ଲେଖକର ସେ ପରା ଗୋଟାଏ ସ୍ୱାଭାବିକ ପାସ୍‌ପୋର୍ଟ ! ଯେଉଁଠି ଯାହା ଉଦାହରଣ ମନେପଡ଼ିବ ତାକୁ ଆଣି ଥୋଇଦେଲେ ଦୋଷ ନାହିଁ । ଆତ୍ମଜୀବନୀ ହେଲା, ଅହଂକାର, ଆତ୍ମବଡ଼ିମାର ଅବତାର କି ନା ! ତେଣୁ ଆଉ ଟିକିଏ ଆତ୍ମସନ୍ତୋଷ ଲାଗି ଅଧ୍ୟାପକ ଶ୍ରୀମାନ୍ ପଠାଣି ପଟ୍ଟନାୟକଙ୍କ ପତ୍ରରୁ ଉଦ୍ଧାର କରେଁ ।

ସିଦ୍ଧେଶ୍ୱର ସାହି, କଟକ-୧
୧।୧୦।୧୯୬୫

'' 'କଳନା' ପୂଜାସଂଖ୍ୟାରେ ଆପଣଙ୍କ ଆତ୍ମଚରିତ ପଢ଼ି ଏ ଚିଠି ଲେଖିବାପାଇଁ ଉତ୍ସାହିତ ହେଲି । ଆପଣ ଧାରାବାହିକ ଭାବରେ ଆପଣଙ୍କର ଜୀବନଚରିତ ପ୍ରକାଶ କରନ୍ତୁ । ଓଡ଼ିଶାର ଅସଂଖ୍ୟ ସାହିତ୍ୟପ୍ରେମୀ ଏହି ଲେଖାକୁ ସ୍ୱାଗତ କରିବେ । ଦୀର୍ଘ ଅର୍ଦ୍ଧ ଶତାବ୍ଦୀର ଓଡ଼ିଶାର ସାଂସ୍କୃତିକ ଜୀବନର ଏକ ପରିଚୟ ଏବଂ ତାହା ସହିତ ଭାରତୀୟ କ୍ଷେତ୍ରରେ ସାଂସ୍କୃତିକ ଆନ୍ଦୋଳନର ରୂପରେଖ ସମ୍ପର୍କରେ ଓଡ଼ିଆ ସାହିତ୍ୟର ପାଠକ ଏକ ମୂଲ୍ୟବାନ୍ ଇତିହାସ ପାଠ କରିବାକୁ ସୁଯୋଗ ପାଇବେ । ଏ ଲେଖା ଚାଲୁ ରଖିବେ ବୋଲି ଜଣେ ପାଠକଭାବରେ ଆପଣଙ୍କୁ ଆନ୍ତରିକ ଅନୁରୋଧ କରୁଛି ।''

ଶ୍ରୀ ପଟ୍ଟନାୟକ ତାଙ୍କର ସ୍ୱାଗତିକା ସହିତ ଏହି ସ୍ମରଣିକାର ସୂଚନା ଦେଇଛନ୍ତି ସ୍ୱୀୟ ଅଧ୍ୟାପକତ୍ୱ ଦୃଷ୍ଟିଭଙ୍ଗୀରୁ, ମାତ୍ର ପିଲାଦିନୁଁ ମୁଁ ଯେମିତି ଶିକ୍ଷକ ଅଧ୍ୟାପକମାନଙ୍କର ଅବାଧ ହୋଇ ଆସିଛି, ତାଙ୍କ ନିର୍ଦ୍ଦେଶ ମାନିବାକୁ କେତେ ପରିମାଣରେ ଯେ ସମର୍ଥ ହେବି, ଜାଣେ ନାହିଁ ।

ଆଉ ଖଣ୍ଡେ ଚିଠି ପାଇଛି । ତାହା ବେନାମୀ । କେବଳ ତାରିଖ ଅଛି, ୧୦।୧୨।୧୯୬୫; କିନ୍ତୁ ସ୍ଥାନର ଉଲ୍ଲେଖ ନାହିଁ । କଟକ ପୋଷ୍ଟ ଅଫିସର ମୋହର ହେଲା—୨୮।୧୨।୧୯୬୫ରେ । ସେ ଲେଖିଛନ୍ତି—

'କଳନା'ରେ ପ୍ରକାଶିତ ହେଉଥିବା 'ମୋତେ ସତ ତମକୁ ମିଛ' ପଢ଼ିସାରିବା ପରେ ଏ ଚିଠି ଲେଖୁଛି । ଜଣେ ସାହିତ୍ୟିକର ଜୀବନକାହାଣୀ ଯେତେବେଳେ ତା'ର ନିଜ ଲେଖନୀରୁ ଫୁଟି ଉଠେ, ସେତେବେଳେ ଜଣେ ବ୍ୟକ୍ତିର ଜୀବନ-କଥା ହିସାବରେ ମାମୁଲିଭାବରେ ଏହା ପ୍ରକାଶ ନ ପାଇ ମନ ଭିତରୁ, ସ୍ମୃତିର ଅଳିଆଗଦା ତଳୁ ଅନେକ ଅଙ୍ଗେ ନିଭାଇଥିବା ଆଳିମାଳିକା କଥା ସ୍ୱତଃସ୍ଫୂର୍ତ୍ତ ଭାବରେ ବହିର୍ଜଗତକୁ ଚାଲିଆସେ । ଜାତି, ସାହିତ୍ୟ, ସଂସ୍କୃତିର ପରିପ୍ରେକ୍ଷୀରେ ସେ ସବୁର ମୂଲ୍ୟ ଅକଳନ ।

''କେତେ ଜଣା ନ ଥିବା ଘଟଣା, କେତେ ଲେଖା ନ ହୋଇଥିବା ଲେଖା, କେତେ କୁହା ନ ହୋଇଥିବା କଥା—ଆଲୋକର ଦିଗନ୍ତ ଭିତରକୁ ଆସିଯାଏ । ଓଡ଼ିଶାର ବିଭିନ୍ନ କର୍ମକ୍ଷେତ୍ରରେ କୃତି ଅର୍ଜନ କରିଥିବା ସବୁ ପ୍ରତିଷ୍ଠିତ ବ୍ୟକ୍ତି ଯଦି ନିଜର 'ମତେ ସତ ତମକୁ ମିଛ' ଲେଖି ବସନ୍ତେ, ଓଡ଼ିଆ ସାହିତ୍ୟ ଓ ସଂସ୍କୃତିକ୍ଷେତ୍ରରେ କେତେ ତଥ୍ୟ, କେତେ ରହସ୍ୟ, କେତେ ସତ କଥା ଫୁଟିଉଠନ୍ତା, ତା'ର କଳନା ନାହିଁ ।

''ଫକୀରମୋହନ, ଗୋଦାବରୀଶ, ନୀଳକଣ୍ଠ, ମହତାବ୍, କାଳିବାବୁ କେତେ ଅଙ୍ଗେ ନିଭାଇଥିବା କଥା ନ ଲେଖିଛନ୍ତି । ତଥ୍ୟମୂଳକ ଓ ପ୍ରାମାଣିକ ଗ୍ରନ୍ଥ ହିସାବରେ ଓଡ଼ିଶାର ଇତିହାସ କ୍ଷେତ୍ରରେ ଏସବୁ ଗୋଟିଏ ଗୋଟିଏ ମାଇଲଖୁଣ୍ଟ । ଆପଣଙ୍କର ଉଲ୍ଲିଖିତ ଆତ୍ମ-କାହାଣୀ ଯେପରି ମଧୁରତର ଓ ଶୈଳୀରେ ଅଧିକ ଆକର୍ଷଣୀୟ ହୋଇ ଆମ ଆଗକୁ ଆସିବ—ଏହାହିଁ ଆଶା କରୁଛୁଁ ।

''ତେବେ ଗୋଟିଏ ଅନୁରୋଧ—ଅତୀତର ଅନେକ ଘଟଣା, ଅନେକ କଥା, ଅନେକ ପରିଚିତ ମୁହଁ, ଅନେକ ପରିଚିତ ଜାଗା ହୁଏ ତ ଭୁଲି ହୋଇଯିବଣି । ହୁଏତ ଅନେକ... ଆଜି ମନେ ନ ପଡ଼ିପାରେ, ଲେଖନୀରେ ନ ଫୁଟିପାରେ—ଯାହାକି ଚିର ଦିନ ପାଠକ ସମାଜର ଦୃଷ୍ଟିର ଅନ୍ତରାଳରେ ରହିଯିବ । 'ସ୍ୱପ୍ନପୁରୀ'ରେ ବହୁ ସ୍ୱପ୍ନର ଅବକାଶ ଥିଲେ ମଧ୍ୟ ଆମେ ତ ଆପଣଙ୍କଠାରୁ 'ସ୍ୱପ୍ନ' ଆଶା କରୁନୁଁ—ଆଶା କରୁଛୁଁ ଅଙ୍ଗେ ନିଭାଇଥିବା ଅଜସ୍ର କଥା । ତେଣୁ ଥରେ ଆପଣଙ୍କର ସେହି ପରିଚିତ ପ୍ରିୟ ଜନମମାଟି ବିଶ୍ୱନାଥପୁରରେ ପାଦ ପକାନ୍ତୁ ।

''ଦେଖନ୍ତୁ ସମୟର ଅବଲୀଳାକ୍ରମେ ଏ ଜାଗାଟିର କ'ଣ ନ ହୋଇଯାଇଛି । ତିନୋଟି ଯୋଜନା ପରେ ଏ ଅଞ୍ଚଳର ରୂପ କି କଦର୍ଯ୍ୟ ଭାବେ ବଦଳିଯାଇଛି । ଏ ଅଞ୍ଚଳର

ବଳିଷ୍ଠ ରାଜନୀତିକ ନେତୃତ୍ୱ ନାହିଁ, କେତେକ ନ୍ୟସ୍ତସ୍ୱାର୍ଥ ଟାଉଟରଙ୍କର ଛକାପଞ୍ଝା ଖେଳ ଭିତରେ ଆଜିର ଏ ଯୋଜନା ଓ ପ୍ରଗତିଯୁଗରେ ଏ ଅଞ୍ଚଳ କେତେ ପଛେଇ ଯାଉଛି ।

ନୂଆ କିଛି ତ ଆସି ପାରି ନାହିଁ... ପୁରୁଣା ସଂସ୍କୃତି ବି ଉଜୁଡ଼ି ଯାଉଛି । ଉପଯୁକ୍ତ ନେତୃତ୍ୱ ଓ ଆନ୍ତରିକ ଉଦ୍ୟମ ଥିଲେ ହୁଏତ ରାଜଧାନୀ ଭୁବନେଶ୍ୱରର ନିକଟବର୍ତ୍ତୀ ଏ ଅଞ୍ଚଳରେ ଅନ୍ତତଃ ଗୋଟିଏ ଭଲ ରାସ୍ତା, ଗୋଟିଏ କଲେଜ, ଗୋଟିଏ ଉନ୍ନତ ଧରଣର ଡାକ୍ତରଖାନା ହୋଇପାରିଥାଆନ୍ତା; କିନ୍ତୁ ହୋଇପାରିନି ଏ ସବୁ ।

'ବାଲିପାଟଣା ବ୍ଲକ୍‌ର ଅଜସ୍ର ଅପବ୍ୟୟ ସତ୍ତ୍ୱେ ପ୍ରଗତିର କାଉଁରୀକାଠି ଆମ ଏ ଅଞ୍ଚଳକୁ ଛୁଇଁଯାଇପାରିଲା ନାହିଁ । ଆସନ୍ତୁ ଦେଖନ୍ତୁ, ଆମକୁ ଚିହ୍ନନ୍ତୁ—ଆମର ଚିନ୍ତାଧାରାସହ ପରିଚିତ ହୁଅନ୍ତୁ । ସେଇ ବାଳକାଟି, ପୁରଣ, ନରଦା, ଅଠାନ୍ତର, ବନମାଳୀପୁର ଆଜି କେଉଁ ଅବସ୍ଥାରେ ?

''କି ଥିଲା ଏ ରାଜ୍ୟ, କି ହୋଇଛି ଆଜ' ଠିକ୍ ବୁଝି ପାରିବେ, ଦେଖି ପାରିବେ । ଲେଖକ ହିସାବରେ ଏ ଅଞ୍ଚଳକୁ ଆପଣ ନେତୃତ୍ୱ ଦିଅନ୍ତୁ, (ରାଜନୀତିକ ନେତୃତ୍ୱ ତ ପାଇ ପାରିନୁ, ଅନ୍ତତଃ Intellectual ନେତୃତ୍ୱ ତ ପାଇ ପାରିବୁଁ) । ଆପଣଙ୍କ ଲେଖନୀରେ ଏ ଅଞ୍ଚଳର ସବୁ ସତ କଥା ଫୁଟି ଉଠି ଓଡ଼ିଶାବାସୀଙ୍କ ଦୃଷ୍ଟି ଆକର୍ଷଣ କରୁ । ଅବହେଳା ଅପେକ୍ଷାରେ ଏ ଅଞ୍ଚଳ କ'ଣ ନ ହୋଇଯାଇଛି ସତେ ! କୁଶଭଦ୍ରା ଓ ପ୍ରାଚୀର ତରଙ୍ଗରେ ଆଜି ଉଲ୍ଲାସ ନାହିଁ । ବିଶ୍ୱନାଥପୁରର ବଡ଼ ଗହୀରର ଧାନଜମି ଉପରେ ଶିରି ଶିରି କାଲୁଆ ପବନ ପରଶ ନାହିଁ, ଅଛି କେବଳ କେତୋଟି ଲୁଚି ଯାଉଥିବା ଘଟଣା ଓ ସ୍ମୃତିର ଅବଶିଷ୍ଟାଂଶ ।

''ଘର ଛାଡ଼ି ବାହାରେ, ଜନମ-ମାଟି ଛାଡ଼ି ବିଦେଶରେ ରହିଲେ ପଛେ ରହନ୍ତୁ, ଜନମ-ମାଟିର କଥା ଯେତେବେଳେ ଲେଖୁଛନ୍ତି, ମନ ଭିତରୁ ନ ଲେଖି ଆଖି ଆଗରୁ ଲେଖନ୍ତୁ ଆଜିର କଥା । ଅତୀତର କଥା ତ ମନ ଭିତରୁ ହିଁ ଆସିବ । ତେବେ ଆଖି ଆଗରେ ଅନେକ ଭୁଲି ଯାଉଥିବା ଘଟଣା ହୁଏତ ଉଜ୍ଜୀବିତ ହୋଇପାରେ । ଏଇ ଅଞ୍ଚଳର ମାଟିର ମଣିଷକୁ ଥରେ ଦେଖିଯାଆନ୍ତୁ । ତେବେ ବୋଧହୁଏ ଆତ୍ମକାହାଣୀ ବିସ୍ତୃତ ଓ ବ୍ୟାପକ ହୋଇପାରିବ ।

'ସମ୍ମାନ ନେବେ' । ରହିଲି । ଇତି ।

ଆପଣଙ୍କର

ଜଣେ ଗାଁ ପାଖ ଲୋକ ।

ଏ ଚିଠିଖଣ୍ଡିକ ଲେଖକ ବା ଲେଖିକା ନିଜ ପରିଚୟ ନ ଦେଇ ମୋତେ ଯେମିତି ବିସ୍ମିତ କରିଛନ୍ତି, ସେଥିରୁ ତାଙ୍କର ରହସ୍ୟାବୃତ କବିସୁଲଭ ହୃଦୟର ମଧ ପରିଚୟ ସେମିତି ମିଳିଛି । କବି ଲେଖକଗଣ ନିଜ ନାଁ ବଦଳାଇ ଅନ୍ୟ ନାମ ନେଇ ଅଥବା ଖାଲି ଗୋଟିଏ 'ଶ୍ରୀ'ରେ ଆରମ୍ଭ ଓ ଶେଷକରି ଆତ୍ମଗୋପନ କରିବା ପ୍ରଥା ଏବେ ମଧ ସବୁ ଦେଶରେ ପ୍ରଚଳିତ । ରୁଷର 'ମାକ୍‌ସିମ୍ ଗର୍କି' ସେମିତି ଗୋଟିଏ ଛଦ୍ମ ନାମ । ଆଧୁନିକ ହିନ୍ଦୀ ସାହିତ୍ୟର କବି ଲେଖକଗଣ ମଧରୁ ସେହିପରି 'ନିରାଲା', 'ସୁମନ' 'ଅଜ୍ଞେୟ' 'ଦିନକର' ଆଦି ଅନେକେ·ନିଜର ସଂକ୍ଷିପ୍ତ ନାମକରଣ କରିଥାନ୍ତି ।

ଆମର ତ ସ୍ୱୟଂ ଆଦିକବି ସିଦ୍ଧେଶ୍ୱର ପରିଡ଼ାରୁ ସାରଳା ଦାସ ହେଲେ । ପୁଣି ଏହି ଦାସ ସଂଜ୍ଞାରେ କି ମୋହ ରହିଛି କେଜାଣି, ସାରଳାଙ୍କ ପରି ବଳରାମ ଦାସ, ଜଗନ୍ନାଥ, ବଳରାମ, ଅଚ୍ୟୁତ, ଅନନ୍ତ, ଯଶୋବନ୍ତ, ଦୀନକୃଷ୍ଣ, ଭକ୍ତଚରଣଙ୍କ ପର୍ଯ୍ୟନ୍ତ ଆସିବା ପରେ କିଛି ଫାଙ୍କ୍ ମଝିରେ ମଝିରେ ରହିଯାଇ ଶେଷକୁ ଗୋପବନ୍ଧୁ, ନୀଳକଣ୍ଠ ଯେମିତି ଅବା ତୁଳସୀ ଦାସ, କବୀର ଦାସ, ଚଣ୍ଡୀ ଦାସ, ସୁର ଦାସଙ୍କ ଧାଡ଼ିରେ ରହିଯାଇ ଭାରତୀୟ ସାହିତ୍ୟରେ ଏକ ଦାସବଂଶର ବିସ୍ତୃତି ଘଟାଇଛନ୍ତି । ମୋର 'ଗାନ୍ଧାରୀର ଆଶୀର୍ବାଦ'' କବିତାଟି ଯେଉଁ ପତ୍ରିକାରେ ପ୍ରଥମେ ପ୍ରକାଶିତ ହୁଏ, ତାହା ତଳେ ବି ଅତର୍କିତ ଭାବରେ ଗୋଟିଏ ଛଦ୍ମନାମ ରଖିଥିଲି, 'ବାବାଜୀ ଯମୁନା ଦାସ' । ଅବଶ୍ୟ ଯମୁନାର ପ୍ରତିଶବ୍ଦରୂପେ ମୋ ନାମକୁ ବୁଝାଉଥିବା ହେତୁ ଓ 'ଚରଣ' ଶବ୍ଦଟିରୁ ଦାସତ୍ୱର ସୂଚନା ମିଳୁଥିବାରୁ ଏଭଳି ଗୋଟିଏ ଛଦ୍ମନାମ ମୁଁ ବାଛି ନେଇଥିଲି । ଅଥଚ ଦୈବାତ୍ ତାହା ଏକ ପାରମ୍ପରିକ ପର୍ଯ୍ୟାୟ ଭିତରେ ପଡ଼ିଗଲା ! ମଝିରେ ମଝିରେ ଯେମିତି କେତେକ ଅଦ୍ଭୁତ ସାମଞ୍ଜସ୍ୟର ଆମେ ସମ୍ମୁଖୀନ ହେଉଁ । ବୋଧହୁଏ କବି ସାହିତ୍ୟିକମାନେ ବହୁତ ନାମ ଓ ବିଶେଷଣ ଘେନି କାରବାର କରୁଥିବାରୁ ନିଜ ନାମକୁ ସୁଦ୍ଧା ସଂକ୍ଷିପ୍ତ, ବିକ୍ଷିପ୍ତ କିମ୍ବା ଆବୃତ କରନ୍ତି । ସେମିତି ସନ୍ନ୍ୟାସୀମାନେ ମଧ ବିବେକାନନ୍ଦ, ବିଶୁଦ୍ଧାନନ୍ଦ, କେବଳାନନ୍ଦ, ବାୟାବାବା, ପାଗଳାବାବା ପ୍ରଭୃତି ନାମରେ ଅଭିହିତ ହେବା ସଚରାଚର ଦୃଷ୍ଟିଗୋଚର ହୋଇଥାଏ । ନାମଟା ଖାଲି ମିଥ୍ୟା ଓ କଳ୍ପିତ ବୋଲି କେହି କେହି କୌଣସି ନାମ ଗ୍ରହଣ ନ କରି ପରମହଂସ ବା ଅବଧୂତ ନାମରେ ନିଜ ପରିଚୟ ଦିଅନ୍ତି । ଆଉ କିଏ ପ୍ରତ୍ୟହ 'ବିଷ୍ଣୁ ସହସ୍ର ନାମ' ପାରାୟଣ କରି ସର୍ବାଙ୍ଗ ନାମାବଳୀ-ଚିତ୍ରିତ ଚାଦର ଘୋଡ଼ାଇ ହୁଅନ୍ତି । ନାଁଟାରେ ଯେମିତି କିଛି ମୂଲ୍ୟ ନାହିଁ, ଅଥଚ ସବୁ ଅଛି ! ଅନ୍ଧର ପଦ୍ମଲୋଚନ ନାମକରଣ ପରି ଏହା ନିରର୍ଥକ; କିନ୍ତୁ ଅର୍ଥପୂର୍ଣ୍ଣ । ସେକ୍ସପିୟରଙ୍କ ଭାଷାରେ, "What is there in a name ?" ଇତ୍ୟାଦି ପରି ।

ପତ୍ରପ୍ରେରକ ନିଜ ନାମ ପ୍ରକାଶ ନ କଲେ ମଧ କେତୋଟି କଥାର ଉତ୍‌ଥାପନ କରିଛନ୍ତି, ଯାହା ଏହି ଆତ୍ମଜୀବନୀ ରଚନାରେ କ୍ରମାନ୍ୱୟେ ଅବଶ୍ୟ ଉଲ୍ଲେଖ କରିବି । ତା' ଭିତରୁ ଗୋଟିଏ କଥା ହେଲା—ସ୍ୱପ୍ନପୁରୀର ସ୍ୱପ୍ନ । ଯେଉଁ ଘରଟିରେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସବୁ କ୍ଷଣରେ ସ୍ୱପ୍ନ ଭାଙ୍ଗିଯାଏ ! ସ୍ୱପ୍ନ ଭାଙ୍ଗିଯାଏ ଦିନରାତି ଚବିଶ ଘଣ୍ଟା ! ଆଉ ସେହି କାରଣରୁ ହିଁ ତା'ର ଏମିତି ନାମକରଣ । ଇତିହାସ ଯାହାର ଯେତିକି ବିଚିତ୍ର ସେତିକି ବିକଳାଙ୍ଗ । ସେହି ସ୍ୱପ୍ନପୁରୀର ସ୍ୱପ୍ନ ଯେ ପତ୍ରପ୍ରେରକ ବନ୍ଧୁଙ୍କ ବାସ୍ତବତାଠାରୁ ଆହୁରି କେତେ ନଗ୍ନ ଓ ମର୍ମନ୍ତୁଦ, ଟିକିଏ ଧୈର୍ଯ୍ୟ ଧରି ସେ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ଅନୁରୋଧ ।

ସ୍ୱପ୍ନପୁରୀରେ ଦାଣ୍ଡ ରାସ୍ତାରେ ମାଲଗୋଦାମ ଫେରନ୍ତି, ବୋଝେଇ ଶଗଡ଼ମାନଙ୍କର ଅହରହ ଧକଡ଼ ଚକଡ଼ ସାଙ୍ଗକୁ ବିରାଟ ଟ୍ରକଗୁଡ଼ିକର ଧୂମାୟିତ ଗର୍ଜନ; ମ୍ୟୁନିସିପାଲଟି ନାଳକଡ଼ରେ ରିକ୍‌ସା ବା ସାଇକେଲ ପତନ ଓ ଆରୋହୀମାନଙ୍କ କ୍ରନ୍ଦନକୁ ଛାଡ଼ି ଆଉ ଥରେ ନିଜ ଜନ୍ମସ୍ଥାନକୁ ଫେରି ପାସୋରି ଯାଇଥିବା ଅଜସ୍ର କଥା ମନେ ପକାଇବାକୁ ପାଠକବନ୍ଧୁ ମୋତେ ନିମନ୍ତ୍ରଣ କରିଛନ୍ତି, ମାତ୍ର ଥରେ କାହିଁକି ବହୁତ ଥର ତ ଯାଉଛି ! ତେବେ ଆଉ

ସେ ବଳଦବେକରେ ଘଣ୍ଟିବନ୍ଧା ବାଲିପାଟଣା-ଚମାର ହାତତିଆରି ତାଳପତ୍ର ଟାଟଗାଡ଼ିରେ ନୁହେଁ । ଦିନରାତି ଚାଲିଲାଣି ବନମାଳୀପୁର ପୁଣି ଭିଙ୍ଗାରପୁର ବସ୍ । କଚା ସଡ଼କ ପକା ହେଲାଣି । ଭାର୍ଗବୀ ଉପରେ ସେତୁ, ପୁଣି ବାଳକାଟି ମୁଣ୍ଡରେ କେନାଲ ।

ଚାରି ପାଞ୍ଚମାଇଲ ଭିତରେ ତିନି ଚାରିଟା ହାଇସ୍କୁଲ । ଧୋତି ଶାଢ଼ି ବଦଳରେ ପୁଅ, ଝିଅଙ୍କ ଦେହରେ ଜାମା, ପେଣ୍ଟ, ବ୍ଲାଉଜ, ସେମିଜ, ଆଉ କ'ଣ ଦୁଧ ଘିଅ ପନିପରିବା ? ଆମ ଗାଁ ମୁଣ୍ଡ ସଡ଼କ ଉପରୁ ତ ଭୁବନେଶ୍ୱର ରାଜଧାନୀର ନେଳି ଆଲୁଅ ଦିଶିଲାଣି । ବିଜୁଳି ତାରଖୁଣ୍ଟ ପୋତା ହେଲାଣି ଆମ ଦାଣ୍ଡଦୁଆରଯାକେ । ବାକି ଯାହା ହୋଇ ନ ପାରିଛି— ଗାଁର ସ୍କୁଲ ତୋଳା ହେଲାନି କି ଗାଁ ଦାଣ୍ଡ କାଦୁଅ ଅସନା ହେଲା, ସେଥିପାଇଁ ଆମେ ନିଜେ ଦାୟୀ ନା ଆଉ କିଏ ? ଗୋଡ଼ ବଢ଼େଇଲେ ତ ଭୁବନେଶ୍ୱର ରାଜଧାନୀ, ପୁଣି ହାତ ବଢ଼େଇଲେ ବାଲିପାଟଣା ବ୍ଲକ୍ ଅଫିସ୍ !

ଗାଁ'ରେ ତ ଆଜି ଆଉ ସା'ନ୍ତ ମକଦ୍ଦମ ଜଣେ କେହି ନାହାନ୍ତି, ସମସ୍ତେ ବାବୁ ! ଅଥଚ ସେ ଦିନ ବାବୁ ନ ଡାକି ମକଦ୍ଦମ ଡାକିଥିଲା ବୋଲି ବିଚାରା ଫକୀର ସାଥୁଆ କି ଆଉ କିଏ ଜଣେ ପିଲାବେଳର ଖେଳସାଥୀ ମାଡ଼ ଖାଇଥିଲା ଭଗୁଭାଇନାଙ୍କ ହାତରୁ । ମୁଁ ମଧ ଦାବି କରିଥିଲି ସ୍ୱୟଂ ଜଣେ- 'ମୂର୍ଖ ବାବୁ' ହେବି ବୋଲି ପରା !

ନାଁ ସାଙ୍ଗକୁ ଅଧିକା 'ବାବୁ' ପଦଟା ଗାଁ ଭିତରେ ବୋଧହୁଏ ପ୍ରଥମେ ପ୍ରବର୍ତ୍ତିଲା ଆମରି ଘରୁ । ଅନ୍ୟ କୁଟୁମ୍ୱମାନଙ୍କ ପରିଚୟ ମକଦ୍ଦମ ଥିବାସ୍ଥଳେ ବାପାଙ୍କୁ ଡାକନ୍ତି ମୁକ୍ତାରବାବୁ, ଭାଇନାଙ୍କୁ 'ସିଂହବାବୁ' । ଇଂରାଜୀ କିଛି ପଢ଼ିବା ଛଡ଼ା ବାବୁର ଆଉ ଗୋଟିଏ ସରୂପ ଥିଲା, ଲଣ୍ଡା ହୋଇ ଜାମା କୁର୍ତ୍ତା ପିନ୍ଧିବା ।

ଗାଁ ମକଦ୍ଦମମାନଙ୍କର ସେତେବେଳେ ସବୁରି ମୁଣ୍ଡରେ ବେକାଏ ଲେଖାଁ ଚୁଟି । ବଙ୍ଗ ଲଣ୍ଡା ହେବାଟାକୁ ମୁଖୁରୀ ବିଧର୍ମୀ ବୋଲି କେହି କେହି ଦୋଷ ଦେଉଥିଲେ । ସେଥିଲାଗି ବ୍ରତ କିମ୍ୱା ଶୁଦ୍ଧି କ୍ରିୟାରେ ମୁଣ୍ଡଯାକ ଖିଅର ହୋଇ ମରୁଭୂମିର ଓସିସ୍ ପରି ତାଳୁ ଉପରେ ଟିକିଏ ଚୈତନ ଚୁଳି ରଖାଯାଏ । ତା'ପରେ ସେ ଆହୁରି ବେଶି ବଢ଼ି ଉଠି ଗୋଟିଏ ଚିକ୍‌କଣ ଗଣ୍ଠି ଆକାରରେ ଶୋଭାପାଏ । ତା' ତଳକୁ ମକଦ୍ଦମମାନଙ୍କର କୋଟ୍ କମିଜ ।

ମୂଲିଆ ମଜୁରିଆ ବା ପ୍ରଜାପାଟକ ଉପରେ ରାଗିଯାଇ ବକିଲାବେଳେ ସମୁଦାୟ ଦେହ ଦୋହଲି ଯାଇ ମୁଣ୍ଡ ଏପରି ଘନ ଘନ ସଂଚାଳିତ ହୁଏ ଯେ, ତାହା ଫଳରେ ସେଇ ଗଣ୍ଠିଟି ଫିଟି ପଡ଼େ, ନଟରାଜଙ୍କ ପ୍ରଳୟ ନୃତ୍ୟ ସମୟରେ ଜଟାବନ୍ଧନ ପରି । ନନ୍ଦରାଜାଙ୍କ ସଭାରେ ଚାଣକ୍ୟ କିମ୍ୱା କୁରୁ ସଭାତଳେ ଦ୍ରୌପଦୀଙ୍କ ପରି ଶତ୍ରୁ ଉପରେ ପ୍ରତିଶୋଧ ନେବାଲାଗି ତାହାକୁ ଅବଶ୍ୟ ସେମାନେ ଫିଟାଇ ରଖନ୍ତି ନାହିଁ; ମାତ୍ର ଗାଳିଟା ଯେତେବେଳେ ମାଡ଼ରେ ପରିଣତ ହେବାକୁ ସେତେବେଳେ ମାଡ଼ ଖାଇବା ଲୋକମୁଣ୍ଡର ଚୁଟିକେରାକ ମାଡ଼ ମାରିବା ଲୋକକୁ ବେଶ୍ ସାହାଯ୍ୟ କରେ । ଆମେ କିନ୍ତୁ ବାବୁ ହେବୁଁ ବୋଲି ସେ ଚୁଟି ଆଉ ଓଡ଼ିଶାମୁଲକରେ ଏଣିକି ଦେଖିବାକୁ ପ୍ରାୟ ବିରଳ; ଅଥଚ ସେହି ଚୁଟିରେ ପାନିଆ ଝୋଷି ଶିଖମାନେ ଆଜି

ଭାରତବର୍ଷରେ ମହାବୀର ପୁଣି ପିଗ୍‌ଟେଲ ଝୁଲାଇ ଚୀନାମାନେ ପୃଥିବୀରେ ସୁଦ୍ଧା କାହାରିକି ମାନିବା ପାଇଁ ନାରାଜ !

ଖାଲି କ'ଣ ଆମରି ଗାଁ ଲୋକେ ? ଗାଁ ଭିତରକୁ ଯେ ଆସନ୍ତି, ସଂବୁରି ମୁଣ୍ଡରେ ତ ଚୁଟି । କାଚରା ଆସେ କାଚ ବିକି, ମୁଣ୍ଡରେ ଚୁଟି, କାନରେ ସୁନା ନୋଳି, ନାକତଳେ ନିଶ, ବାହାରେ ରୁପା ଅନନ୍ତ, ହାତରେ ଛେଚା ଖଡୁ । କାନ୍ଧରେ ଖଣ୍ଡେ ଚିକ୍‌କଣ ବାହୁଙ୍ଗୀ ଦି'ପଟେ ଝୁଲୁଥାଏ ଦୁଇଟି ଟୋକେଇ ଭର୍ତ୍ତି ନାନା ରଙ୍ଗର ଆଖି ଝଲସା କାଚର ବୋଝ । ପାଟରା ଆସେ ପିଠିରେ ଖଣ୍ଡେ ଦସିଆ କନାର ବୋକଚା ଗୁଡ଼ାଇ, ଅଳ୍ପ ଟିକିଏ ନଇଁ ନଇଁ । ଦସିଆ କାନିଟା ପିଠି ବୋକଚାରୁ ଆସି ଛାତିରେ ପଡ଼ିଥାଏ ଫାଶ, ହାତ ଯୋଡ଼ିକୁ ପୂରାପୂରି ମୁକ୍ତ କରି । ସେହି ହାତରେ ଲୁଗା ଫେରପାଖ ଖୋଷଣିତଳୁ ବାହାରି ଆସେ ରୁପାଭୁଣ୍ଡିଲଗା ବଟୁଆ । ତହିଁରୁ ଅବଲୀଳାକ୍ରମେ ଚୂନପତ୍ର ପାପୁଲିକୁ ଆସି ପାଟିରେ ପଡ଼େ ଓ କଣ୍ଠରୁ ଏକ ଛନ୍ଦାୟିତ ସ୍ୱର ନିର୍ଗତ ହୁଏ—ନବ, ମାଳି ପାଟଫୁଲି !

କାନ୍ଧରେ ସାନବଡ଼ ନୂତନ ପଞ୍ଜିକା, ନୃସିଂହ ପୁରାଣ, ହରିବଂଶ, ଶାଶୁବୋହୂ-କଳି, ଦିଅର-ଭାଉଜରହସ୍ୟ, କେମାଦେଈ-କାନ୍ଦ ବା ସଙ୍ଗୀତ ପାଚିଲାକଦଳୀ ଓ ଦେଉଳତୋଳା ବହିଗୁଡ଼ିକୁ ଦେଉଳ ପରି ଉଚ୍ଚ କରି ବହିବିକାଳି ''ଚାଟଶାଳୀ ପାଠ''ରୁ ବୋଲି ବୋଲିକା ଚାଲେ—

''କହନ୍ତି ମାଏ ଯେ ଶ୍ରୀକୃଷ୍ଣ ଆଗେ
କଥା ଶୁଣ ବାବୁ ଅତି ସରାଗେ ।
ଖେଳୁଆଡ଼ ବୁଦ୍ଧି ଛାଡ଼ରେ ବାବୁ
ଖଡ଼ି ଛୁଇଁଲେ ତୁ ବିଦ୍ୟା ପଢ଼ିବୁ ।
ଗୁରୁଙ୍କ ଆଗେ ଓଳଗିବୁ ଯାଇ
ଗୋବିନ୍ଦ ସୁମରି ଲେଖିବୁ ଭୂଇଁ ।''

ପୁଣି କେବେ ସେହି ସ୍ୱରଟି ସୁଦୀର୍ଘତର ହୋଇ ବାହାରେ—

''ଆରେ ବାବୁ ଶ୍ୟାମଘନ ତୁ ଗଲେ ମଧୁଭୁବନ
କାହା ମୁଖ ଅନାଇ ବଞ୍ଚିବି !'' ଇତ୍ୟାଦି ।

ଆମେ ସେତେବେଳେ ଯେମିତି 'ବାବୁ' ହେବାକୁ ବାହାରିଥିଲୁଁ, ଏ ସବୁ ପୁରୁଣା ଗୀତରେ ସେ ବାବୁ ଶବ୍ଦର ଅର୍ଥ ଅବଶ୍ୟ ଏକାବେଳେ ଫରକ । ତାହା ଖାଲି ବାତ୍ସଲ୍ୟ ରସରେ ସ୍ନେହବଶରୁ ପ୍ରୟୋଗ କରାଯାଉଥିଲା, ଆଜିକାଲି ପରି ସମ୍ଭ୍ରମ ଅଥବା ଭୟବଶରୁ ନୁହେଁ । ସେତେବେଳର ପୁଣି ଆଜିର ସେହିପରି ପ୍ରାୟ ସବୁ ବାବୁଙ୍କ ମୁଣ୍ଡରେ ମଧ ଚୁଟି ଥାଏ, ଠାକୁରଙ୍କ ପାଖେ ଆଗରୁ ମାନସିକ ହୋଇ ତାହା କଟା ନ ଯିବା ପର୍ଯ୍ୟନ୍ତ; ମାତ୍ର ବାବୁ କହିଲେ ଯଦି ସେତେବେଳେ କିମ୍ବା ଆଜି ମଧ ଖାଲି ସାନ ସାନ ପୁଅନାତିଙ୍କ ପ୍ରତି ସ୍ନେହ ସମ୍ବୋଧନକୁ ବୁଝାନ୍ତା, ତା'ହେଲେ ସମାଜରେ କେତେଜଣ ପ୍ରତିଷ୍ଠିତ ବ୍ୟକ୍ତି ତାହାକୁ ଆଗ୍ରହ ସହିତ ଗ୍ରହଣ କରନ୍ତେ, କେଜାଣି !

''ବାବୁ''ଙ୍କ ଉପରେ ''ସାହେବ'' ବୋଲି ମଧ୍ୟ ଆଉ ଏକ ଶ୍ରେଣୀର ସୃଷ୍ଟି ହୋଇଛି; ଦୁହିଁଙ୍କ ଭିତରେ ଏକ ମଧୁର ସାଲିସ ସ୍ଥାପନ କରିଛି ''ବାବୁ ସାହେବ'' ଶବ୍ଦଟି । ପତ୍ରପ୍ରେରକ ମହାଶୟ ବା ମହାଶୟା ନିଜ ନାମଧାମ ଗୋପନ ରଖିଥିବା ହେତୁ ତାଙ୍କୁ କେବଳ ଏଇ ଶେଷ ସମ୍ବୋଧନଟି କରିବା ଛଡ଼ା ମୁଁ ଅନ୍ୟ ଉପାୟ ଦେଖୁ ନାହିଁ ।

ତାଙ୍କୁ ଏତିକି ଜଣାଇ ଦେବାକୁ ମୁଁ ଚାହେଁ ଯେ, ଓଡ଼ିଶାରେ ଗାଁ ପରିମଳ ଧୋବାତୁଠରୁ ଜଣାପଡ଼ିଲା ଭଳି ସହର ପରିମଳ ରେଳଷ୍ଟେସନ ପାଖରୁ ! ଆପଣ ମୋତେ ସହର ଛାଡ଼ି ଗାଁକୁ ଯିବାପାଇଁ ଡାକୁଥିଲାବେଳେ ତରୁଣ ଗାଳ୍ପିକ ଓ ଔପନ୍ୟାସିକ ବନ୍ଧୁ ଶ୍ରୀମାନ୍ ବିଭୂତି ପଟ୍ଟନାୟକପ୍ରମୁଖ ଇଚ୍ଛା କରନ୍ତି, ପଲ୍ଲୀ ପରିବେଶ ଛାଡ଼ି ମୁଁ ଜଲ୍‌ଦି ମୋର ଆତ୍ମଜୀବନୀରେ ସାହିତ୍ୟ ପରିବେଶକୁ ବାହୁଡ଼ି ଆସେଁ । ତେଣୁ ମୁଁ ମୋର ହାତଗୋଡ଼ ଓ ମନର ଜୋର ଅନୁସାରେ  ଆପଣମାନଙ୍କର ସର୍ବେବ ନିର୍ଦ୍ଦେଶ ମାନିବାକୁ ପ୍ରସ୍ତୁତ । କାରଣ ଗାଁକୁ ଗଲେ ଗାଁ କଥା ବେଶି ମନେପଡ଼ିବା ଦୂରେ ଥାଉ, ଓଲଟି ବେଶି ପାସୋର ହୋଇ ଯାଇ ଖାଲି ସହରକଥା ମନେ ପଡୁଛି । ବରଂ ସପ୍ତପୁରୀରେ ରହି ଦାଣ୍ଡ ସେପାଖେ ପାଚିଲା ଧାନ କିଆରିକୁ ଲାଗି ଆହୁରି କେତେ ଦୃଶ୍ୟ ଦେଖି ଗାଁ କଥା ମନେ  ପଡୁଚି ଅଧିକରୁ ଅଧିକ !

ମନେପଡୁଚି ପାଚିଲା ଧାନକିଆରି ସାଥିରେ ମୋ ପିଲା ଦିନଟା କେମିତି ଛନ୍ଦା ହୋଇଯାଇଥିଲା । ଆଜିବି ସେ ଦୃଶ୍ୟ ଆଖି ଆଗରେ ପଡ଼ିଗଲେ ଦେହମନ ଉଲ୍ଲସିଉଠେ । ପାଚିଲା ଧାନକେଣ୍ଡାର ଓଜନରେ ଶୋଇପଡ଼ିଥିବା ଧାନଗଛସବୁ ଗାଆଁକୁ ଯିବା ବାଟରେ ଦୁଇକଡ଼ରେ ଯେମିତି ଓଳଗି ହୁଅନ୍ତି ମୋତେ ! ଆଉ ମୋର ପାଦ ଦି'ଟାକୁ କାକରଭିଜା ଧାନ କେଣ୍ଡାଗୁଡ଼ାକ ଯେମିତି ଜାବୁଡ଼ି ଧରି ରହସ୍ୟାବୃତ ପ୍ରିୟ ପତ୍ର ଲେଖକଙ୍କ ପରି ମୋତେ ମଧୁର ଭର୍ତ୍ସନା କରି କହନ୍ତି—''ଏତେ ଦିନକେ ହେ ମନେ ପଡ଼ିଲା କି ଆଜ ?''—କ'ଣ ବାଟବଣା ହୋଇ ଇଆଡ଼େ ଆଜି ଗଡ଼ିପଡ଼ିଲ ପରା ?

ମୁଁ ତାଙ୍କୁ ହସି ହସି ଜବାବ ଦିଏଁ—ନା' ନା' ମୁଁ ଯେବେ ଅନ୍ଧ ହୋଇଯାଏଁ, ତେବେ ସୁଦ୍ଧା ତ ଏ ବାଟରେ ବଣା ହେବିନି ! ଯଦିବା ବାଟବଣା ହେବାଟା ମୋର ସବୁ ଦିନର ଦୁର୍ଭାଗ୍ୟ କି ଆଉ  କିଛି !

ଏଥର ଠିକ୍ ଛାପାଖାନାକୁ ଯିବା ଆଗରୁ ସେମିତି ଆଉ ଖଣ୍ଡିଏ ସାନ ଚିଠି ପାଇଲି ରବୀନ୍ଦ୍ରନାଥଙ୍କ ଶାନ୍ତିନିକେତନ ବିଶ୍ୱଭାରତୀରୁ । ଚିଠିଖଣ୍ଡ ଲେଖିଛନ୍ତି ସ୍ନେହାସ୍ପଦ ଅଧ୍ୟାପକ ଡକ୍ଟର ନରେନ୍ଦ୍ରନାଥ ମିଶ୍ର ବଡ଼ଦିନର ଅଭିବାଦନ ଜଣାଇ ।

ଶାନ୍ତିନିକେତନ
୧୮ ରତନ ପଲ୍ଲୀ
ତା ୨୫।୧୨।୧୯୬୮

''ଆପଣଙ୍କ ଜୀବନ କଥା 'ଯାହା ଅଙ୍ଗେ ନିଭାଇଛି' ଓଡ଼ିଆ ଜୀବନର ଆଉ ଏକ ଅନ୍ତରଙ୍ଗ ଚିତ୍ର ଅଙ୍କନ କରୁଛି । ଏହା ଆସନ୍ତା ବର୍ଷରେ ପୂର୍ଣ୍ଣ ହେଉ, ଏହାର ସାହିତ୍ୟିକ

ସଫଳତା ଓଡ଼ିଆ ସର୍ଜନ ସାହିତ୍ୟକୁ ବିଶ୍ୱସାହିତ୍ୟ ଅଙ୍ଗନରେ ନୂତନ ଗୌରବ ଦାନ କରୁ, ଏହାହିଁ ମୋର ଆନ୍ତରିକ କାମନା ।''

ଖେଳପଡ଼ିଆରେ ଖେଳୁଆଡ଼ମାନଙ୍କୁ ଉତ୍ସାହବାଣୀ ଶୁଣାଇଲେ ସେମାନଙ୍କ ଗୋଡ଼ ଯେମିତି ତଳୁ ଚାଖଣ୍ଡେ ଉଠିଯାଇ ଦ୍ରୁତତର ହୋଇଥାଏ, ଜଣେ ବିଶିଷ୍ଟ ଲେଖନୀଠାରୁ ଉତ୍ସାହ ପାଇଲେ ଆଉ ଜଣେ ଲେଖକର ହାତ ମଧ୍ୟ ସେମିତି ସହଳ ଚାଲିବା ଆଶା କରାଯାଏ । ଏଣିକି ମୁଁ କିନ୍ତୁ ସହଳ ଚାଲିଲେ ଝୁଣ୍ଟି ପଡ଼ିବାର ଆଶଙ୍କା ହେଲାଣି ପରା ! ତେଣୁ ନରେନ୍ଦ୍ରବାବୁ ଯେ ଆଶା କରୁଛନ୍ତି, ଏହା ଆସନ୍ତା ବର୍ଷରେ ପୂର୍ଣ୍ଣ ହେବ, ମୋହ ପକ୍ଷରେ ସେ ଆଶା ପୂରଣ କରିବା କେତେ ଦୂର ସମ୍ଭବପର, ତାହା ଆଉ କାହାରିକି ଜଣା ଥିଲେ ଥାଇପାରେ, ମୋତେ କିନ୍ତୁ ଜଣା ନାହିଁ ।

ଯେହେତୁ ଏହା ଯେ ନରେନ୍ଦ୍ରବାବୁଙ୍କ ଭାଷାରେ ହିଁ ମୋର 'ଜୀବନକଥା '! 'ଜୀବନ'ଟା ରହିଥିବାଯାକେ ପୁଣି ମୁଁ କଥା କହୁଥିବା ପର୍ଯ୍ୟନ୍ତ ଏହା ସରିବ କିମିତି ? ମାତ୍ର ବର୍ଷକ ଭିତରେ ଜୀବନଟାକୁ ମୋର ମାରିଦେବାକୁ ଓ କଥାଯାକ ମୋର ସାରିଦେବାକୁ ମୋର ପ୍ରିୟ ପତ୍ରପ୍ରେରକ କିମ୍ବା ମୁଁ କଦାପି ରାଜି ହେବୁଁ କି ?

ପ୍ରସଙ୍ଗକ୍ରମେ ଗୋଟିଏ ଘଟଣା ମନେପଡ଼ିଲା । ଘଟଣାଟି ଏବର । ସାହିତ୍ୟ ଏକାଡେମୀ କାର୍ଯ୍ୟକାରୀ କମିଟି ବୈଠକ ଦିଲ୍ଲୀର 'ବୈଦେଶିକ ମନ୍ତ୍ରଣାଳୟ କମିଟି' ଗୃହରେ ବସିଥାଏ । ସଭାପତି ପଣ୍ଡିତ ଜବାହରଲାଲ ନେହରୁ, ଉପସଭାପତି ଡକ୍ଟର ରାଧାକୃଷ୍ଣନ୍‌ଙ୍କ ସମେତ ଭାରତୀୟ ସଂବିଧାନସମ୍ମତ ପ୍ରତି ଭାଷାର ପ୍ରତିନିଧିମାନେ ଉପସ୍ଥିତ ଥାନ୍ତି । ବିଚାର୍ଯ୍ୟ ବିଷୟ ଥାଏ, ସେ ବର୍ଷର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଁ ବିଭିନ୍ନ ଭାଷାର ଶ୍ରେଷ୍ଠ ପୁସ୍ତକ ସମ୍ପର୍କରେ ସିଦ୍ଧାନ୍ତ ଗ୍ରହଣ । ସମ୍ବିଧାନ-ସମ୍ମତ ବିଭିନ୍ନ ଭାଷାର କେତେକ ପୁସ୍ତକକୁ ପୁରସ୍କାର ଦେବା ନ ଦେବା ସ୍ଥିର କରାଯାଉଥାଏ । ଓଡ଼ିଆ ପାଇଁ ମୁଁ ସୁପାରିସ କରିଥାଏଁ ସ୍ୱର୍ଗତ ଗୋଦାବରୀଶ ମିଶ୍ରଙ୍କ 'ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ'' ବହିଖଣ୍ଡକୁ । ଅଥଚ ବହିଟିର ଏକ ପ୍ରଧାନ ତ୍ରୁଟି, ଏହା ସମ୍ପୂର୍ଣ୍ଣ ନୁହେଁ । କେବଳ ପ୍ରଥମ ଭାଗର ଅଂଶିକମାତ୍ର ପ୍ରକାଶିତ ହୋଇଥାଏ । ବାକି ଅଂଶର ପୁଣି ଅପ୍ରକାଶିତ ଦ୍ୱିତୀୟ ଭାଗର ମଧ୍ୟ ବିଷୟସୂଚୀ ମାତ୍ର ପୁସ୍ତକଟିରେ ସ୍ଥାନ ପାଇଥାଏ । ସେ ତ୍ରୁଟି ଦର୍ଶାଇ ପୂର୍ବରୁ ବିଚାରକମାନେ ବହିଟିକୁ ନାକଚ କରି ଦେଇଥାନ୍ତି ।

ଶେଷ ବିଚାର ବୈଠକରେ ସେଦିନ ମୋତେ ପଚରାଯାଇଥିଲା—ବହିଟିରେ କେତେକ ଗୁରୁତର ତ୍ରୁଟି ରହିଯାଇଛି । ଆପଣଙ୍କ ମତ କ'ଣ ?

ଉତ୍ତର ଦେଇଥିଲି, ଆଗରୁ ତ ଏ ବହିକୁ ସୁପାରିସ କରିଥିଲି, ଏବେ ମଧ୍ୟ କରୁଛି । କୌଣସି ବହିକୁ ସାହିତ୍ୟ ଏକାଡେମୀ ପୁରସ୍କାର ଦେବା ନ ଦେବା ବିଚାର କଲାବେଳେ ବହିର ଲେଖକଙ୍କ ସ୍ଥାନ ଓ ଅନ୍ୟାନ୍ୟ ଲେଖାରେ କୃତିତ୍ୱ କଥା ମଧ୍ୟ ବିଚାରକୁ ନେବା ଉଚିତ ବୋଲି ମୋର ମତ ।

ତା'ପରେ ପ୍ରଶ୍ନ ହେଲା—ଏ ବହିଟି ଯେ ଅସମ୍ପୂର୍ଣ୍ଣ । ତାହାଛଡ଼ା ଦ୍ୱିତୀୟ ଭାଗ ମଧ୍ୟ ଅପ୍ରକାଶିତ ।

ଏଥି ପୂର୍ବରୁ ଅନ୍ୟ କେତେକ ବହି ଏହିପରି କାରଣରୁ ଅନୁପଯୁକ୍ତ ହୋଇ ସାରିଥାଏ । ସଭ୍ୟମାନଙ୍କ ମତ ଯେ ଏହା ମଧ୍ୟ ସମଦଶାପନ୍ନ ହେବା ଉଚିତ । ଏକାଡେମୀ ସେକ୍ରେଟାରୀ କଲମ ଧରି ବାହାରିଥାନ୍ତି ସେଇ ନିଷ୍ପତ୍ତି ଲିପିବଦ୍ଧ କରିବାପାଇଁ ।

ତାହା ଲକ୍ଷ୍ୟ କରି ମୁଁ ଠିଆ ହୋଇ ପଡ଼ି କହିଲି—ଶେଷରେ ମୋତେ ପଦେ କଥା କହିବାକୁ ଅନୁମତି ମିଳୁ ।

ସେକ୍ରେଟାରୀ ସମେତ ଗୋଲ ଟେବୁଲକୁ ଘେରି ବସିଥିବା ସଭ୍ୟମାନେ ବିସ୍ମୟରେ ମୋତେ ଚାହିଁଲେ ।

ନମ୍ରତାର ସହିତ ଜଣାଇଲି, ଏ ବହିଟିର ବିଶେଷତ୍ୱ ହେଲା ଯେ, ଏହା ଏକ ଆତ୍ମଜୀବନୀ । ଲେଖକ ତା'ର ଇହଲୋକରେ ଆଜି ନାହାନ୍ତି । ଲେଖକ ବଞ୍ଚିଥିବା ପର୍ଯ୍ୟନ୍ତ କୌଣସି ଆତ୍ମଜୀବନୀ କେବେହେଲେ ସମ୍ପୂଣ ହୋଇପାରେ କି ?

ଶୀତତାପ-ନିୟନ୍ତ୍ରିତ କମିଟି ଗୃହଟି ଉଚ୍ଛ୍ୱସିତ ହାସ୍ୟରୋଳରେ ମୁଖରିତ ହୋଇଉଠିଲା । ସଭାପତି ନେହରୁ ଓ ତାଙ୍କ ବାଁପାଖେ ବସିଥିବା ଡକ୍ଟର ରାଧାକୃଷ୍ଣନ୍‌ଙ୍କ ମୁହଁକୁ ଚାହିଁଲି । ସେମାନେ ଆଉ କୌଣସି ବୈଠକରେ ଏ ଗୃହରେ ଏମିତି ହସିବାର ଦେଖି ନ ଥିଲି ।

ଡକ୍ଟର ରାଧାକୃଷ୍ଣନ୍ ହସି ହସି କହୁଥାନ୍ତି, 'ଯଥାର୍ଥ କଥା । ଏହା ତ ଅନ୍ୟ କାହାରି ଜୀବନୀ ନୁହେଁ, ଖୋଦ୍ ଆତ୍ମଜୀବନୀ । ଲେଖକ ବଞ୍ଚି ଥାଉଁ ଥାଉଁ ତାଙ୍କ ଆତ୍ମଜୀବନୀ ସେ ସମ୍ପୂର୍ଣ୍ଣ କରିପାରିବା ତ ଏକାବେଳେ ଅସମ୍ଭବ !'

ସ୍ୱାଧୀନତାର ପୂର୍ବବର୍ତ୍ତୀ କାଳରେ ଆତ୍ମଜୀବନୀ ରଚୟିତା ସ୍ୱୟଂ ଜବାହରଲାଲଙ୍କ ମୁହଁରେ ସେ ଦିନର ଲାଲଗୋଲାପି ହସ ଆଜିପର୍ଯ୍ୟନ୍ତ ମନରୁ ମୋର ଲିଭି ନାହିଁ । ଆଉ ସେହି ହସଭିତରେ ମୋ କାମଟି ହାସଲ ମଧ୍ୟ ହୋଇଯାଇଥିଲା । ଗାନ୍ଧୀ-ନେହରୁ ସୁଦ୍ଧା ଯେଉଁ ଆତ୍ମଜୀବନୀ ଲେଖି ଶେଷ କରିପାରିଲେ ନାହିଁ, ସେ ଦୃଷ୍ଟିରୁ ଅନ୍ୟେ ପରେ କା-କଥା !

ଶେଷରେ ପୁଣି ମୋର ଏଇ ଆତ୍ମଜୀବନୀ ପୁସ୍ତକ ଆକାରରେ ମୁଦ୍ରଣାଳୟରେ ପ୍ରବେଶ କରିବା ପରେ ଆଉ ଖଣ୍ଡିଏ ଚିଠି ପାଇଲି ଶ୍ରଦ୍ଧେୟ ଲେଖକ ସମ୍ବଲପୁରର ଶ୍ରୀଯୁକ୍ତ ଶ୍ରଦ୍ଧାକର ସୁପକାର, ପାର୍ଲାମେଣ୍ଟ ସଦସ୍ୟଙ୍କଠାରୁ । ତାହା ପ୍ରକାଶ ନ କଲେ ତାଙ୍କ ପାଖରେ ଅପରାଧୀ ହୋଇପଡ଼ିବି ।

''ଆପଣଙ୍କ ଆତ୍ମଜୀବନୀ ଏବେ 'ଡଗର'ରେ ପ୍ରକାଶ ପାଉଥିବା ଖୁବ୍ ଆନନ୍ଦର କଥା । ଏହା ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବ ବୋଲି ଆଶା କରେଁ । ପୂର୍ବରୁ ଯେତେ ଆତ୍ମଜୀବନୀ ପ୍ରକାଶ ପାଇଛି, ସେଥିରେ ରାଜନୀତି ବା ଶିକ୍ଷା ଜଡ଼ିତ ଅଛି । ଏକ ବିଶୁଦ୍ଧ

ସାହିତ୍ୟିକ ଆତ୍ମଜୀବନୀ ରୂପେ ଆପଣଙ୍କର ଆତ୍ମଜୀବନୀ ନିଶ୍ଚୟ ଓଡ଼ିଆ ସାହିତ୍ୟର ମୁକୁର ହେବ ବୋଲି ଆଶା କରେ । ଇତି ।

ବିନୀତ

ଶ୍ରଦ୍ଧାକର ସୂପକାର

ଏହି ପତ୍ରଖଣ୍ଡି ତା ୨୨।୧୦।୧୯୬୯ରିଖର । ଶ୍ରୀଯୁକ୍ତ ସୂପକାରଙ୍କ ''ଓଡ଼ିଆ ସାହିତ୍ୟର ମୁକୁର'' ମନ୍ତବ୍ୟଟିରୁ ୫୦ ବର୍ଷ ତଳର କଥାଟିଏ ମନେପଡ଼େ । ପୁରୀଜିଲ୍ଲା ସ୍କୁଲରେ ପଢୁଥିବାବେଳେ ବନ୍ଧୁମାନଙ୍କ ସହିତ ପତ୍ରିକାଟିଏ ପ୍ରକାଶ କରେ । ପତ୍ରିକାଟିର ନାମ ଦେଇଥାଉଁ 'ଛାତ୍ରଦର୍ପଣ' । ସେତେବେଳେ ସ୍ୱର୍ଗତ ବ୍ରଜସୁନ୍ଦର ଦାସ ଓ ବିଶ୍ୱନାଥ କରଙ୍କଦ୍ୱାରା ସମ୍ପାଦିତ ଯଥାକ୍ରମେ 'ମୁକୁର' ଓ 'ଉତ୍କଳ ସାହିତ୍ୟ' ମାସିକ ପତ୍ରିକା ଦୁଇଟି କଟକରୁ ପ୍ରକାଶ ପାଉଥାଏ । 'ମୁକୁର'କୁ ମୁଁ ବହୁ ସାଧନା କରି ପୌରାଣିକ 'ପ୍ରହ୍ଲାଦ' ଗଳ୍ପଟିର ଅବଲମ୍ବନରେ ଏକ କବିତା ପଠାଇ ତାହା ଫେରସ୍ତ ପାଇଥାଏଁ । ସେଥିସହିତ ପାଇଥାଏଁ ମାନନୀୟ ସମ୍ପାଦକଙ୍କଠାରୁ ଖଣ୍ଡିଏ ସାନ୍ତ୍ୱନା ଓ ଉତ୍ସାହସୂଚକ ପ୍ରବୋଧ-ବାର୍ତ୍ତା ।

ଏବେ 'ଛାତ୍ରଦର୍ପଣ'ର ସ୍ୱୟଂ ସମ୍ପାଦକ ହୋଇ ଅର୍ଥାତ୍ ତାହାର ମଲାଟ ଉପରେ ସମ୍ପାଦକ ଭାବରେ ମୋର ନାମ ଛାପା ହେବାଦ୍ୱାରା ମନ ଭିତରେ ଆସିଯାଇଥାଏ ଖୁବ୍ ଗୋଟାଏ ଦମ୍ଭ । ନିଜ ନାଆଁଟାକୁ ଛାପା ଅକ୍ଷରରେ ଦେଖି କାହା ମନ ଭଲା ଉଲ୍ଲସି ନ ଉଠେ ! ପୁଣି 'ମୁକୁର' ସାଙ୍ଗକୁ 'ଛାତ୍ରଦର୍ପଣ' ! ପତ୍ରିକା ଦୁଇଟିର ନାମ ମଧ୍ୟରେ ଦୈବାତ୍ ଏଇ ସାମଞ୍ଜସ୍ୟଟା ମନରେ ମୋର ଆଣିଦେଇଥାଏ ଗୋଟାଏ ଅବଚେତନ ଆତ୍ମତୃପ୍ତି ।

ଉତ୍କଳ ଗୌରବ ମଧୁସୂଦନ ସେତିକିବେଳେ ପୁରୀକୁ ଆସିଥାନ୍ତି । ପୁରୀ ଆସିଲେ ସେ ରହନ୍ତି ନିଜ ଘର 'ଶୈଳନିବାସ'ରେ । ଘରଟି ପୁରୀଜିଲ୍ଲା ସ୍କୁଲର (ବର୍ତ୍ତମାନ କଲେଜ) ନିକଟରେ । 'ଛାତ୍ରଦର୍ପଣ' ଖଣ୍ଡିଏ ଧରି ବନ୍ଧୁମାନଙ୍କ ସଙ୍ଗେ ବାହାରିଲି ମଧୁସୂଦନଙ୍କୁ ଭେଟିବାପାଇଁ । ମଧୁବାବୁ କ୍ଷୌର ହେଉଥାନ୍ତି ।

ନିଃସଙ୍କୋଚରେ ଆମେ ଯାଇ ଠିଆ ହେଲୁଁ ଝରକା ପାଖରେ । ନିତ୍ୟ କର୍ମ କରୁଥିବା ବେଳେ କେହି ଭଦ୍ରଲୋକଙ୍କ ପାଖରେ ଆଗରୁ ଖବର ନ ଦେଇ ପହଞ୍ଚିଯିବାଟା ଯେ ଭଦ୍ରତା ନୁହେଁ, ସେ ବିଚାର ଆମର ନ ଥାଏ ।

ମଧୁସୂଦନ ପଚାରିଲେ, ''କିଏ ତୁମ୍ଭେମାନେ ?''

''ଆମେ ଏଇ ପୁରୀ ଜିଲ୍ଲା ସ୍କୁଲର ଛାତ୍ର ।''

''ଆଚ୍ଛା, ମୋତେ ମାଫ୍‌କର ବାବୁମାନେ, ସେ ପାଖ ବୈଠକଖାନାରେ ଟିକିଏ ବସ କି, ମୁଁ ଆସୁଛି ।''

ଏଭଳି ଭାଷା ଓ ଭଦ୍ରତା ସହିତ ଆମେ ସେତେବେଳେ ଅଭ୍ୟସ୍ତ ନ ଥିଲୁଁ । ସେଥିପାଇଁ ଆଜି ବି ସେଇ ଭାଷା ମୋର ମନେ ରହିଯାଇଛି । ଆମେ ଯେ ସାଧାରଣ ପ୍ରଥା ଅନୁସାରେ

ଆଗରୁ ତାଙ୍କୁ ଖବର ନ ଦେଇ ସିଧା ତାଙ୍କ କ୍ଷୌର କକ୍ଷ ସାମନାରେ ଠିଆହେଲୁଁ ଓ ସେଥିଲାଗି ବରଂ ସେ ଆମକୁ ମାଫ୍ କରିବା କଥା, ତାକୁ ହିଁ ଓଲଟାଇ ଦେଇ ଆମକୁ ସେ ଗୋଟିଏ ଶିକ୍ଷା ଦେଲେ ବୋଲି ଆଜି ସରିକି ଘଟଣାଟିର ପଚାଶ ବର୍ଷ ପରେ ମୁଁ ବୁଝିଲି ।

ଅଳ୍ପ ସମୟ ପରେ ମଧୁବାବୁ ଆସି ଆମ ସାମନାରେ ବସିଲେ । ''କୁଆଡ଼େ ସବୁ ଆସିଗଲ ?'' ଅଳ୍ପ ହସି ହସି ସେ ପଚାରନ୍ତି ।

ତାଙ୍କ ସାଙ୍ଗରେ ବା କି କଥା କହିବୁଁ ଆମେ ! 'ଛାତ୍ର-ଦର୍ପଣ'ରୁ ଗୋଟିଏ ତାଙ୍କ ହାତକୁ ବଢ଼ାଇଦେଇ କହିଲି, ''ଏହି ପତ୍ରିକାଟି ଆମେ ପ୍ରକାଶ କରିଛୁଁ ?''

ପତ୍ରିକାଟିକି ସେ ଏପାଖ ସେପାଖ ଓଲଟାଇଲେ । ତାଙ୍କ ପାଖରେ ଉପସ୍ଥିତ ଆମେ ଚାରି ପାଞ୍ଚଜଣଙ୍କୁ ଗୋଟିଏ ସାଧାରଣ ସଭା ସ୍ଥାନରେ ଭାଷଣ ଦେଇ କହିଲେ, ''ତୁମେ ଏଇ ପତ୍ରିକାଟିର ଭଲ ନାଁଟିଏ ଦେଇଛ—'ଛାତ୍ରଦର୍ପଣ'—ବେଶ୍ ବେଶ୍; କିନ୍ତୁ ଗୋଟିଏ କଥା ଜାଣକି—ଭାରତବର୍ଷକୁ ଯେତେବେଳେ ଦର୍ପଣ ଆସି ନ ଥିଲା, ସେତେବେଳେ ଏ ଦେଶର କି ସ୍ତ୍ରୀ କି ପୁରୁଷ ପ୍ରତ୍ୟେକ ଲୋକ ବିଚାରୁଥିଲା, ସେଇ କେବଳ ଆଉ ସମସ୍ତଙ୍କଠାରୁ ବେଶି ସୁନ୍ଦର । ତା' ନିଜ ମୁହଁ ଭଳି ସୁନ୍ଦର ମୁହଁ ଆଉ କାହାରି ନୁହଁ । ତା'ପରେ ଯେବେ ଦର୍ପଣ ଆସିଗଲା, ସେତେବେଳେ ସମସ୍ତେ ଯେଝା ମୁହଁ ଦର୍ପଣ ଭିତରେ ଦେଖିପାରିଲେ । ସେଥିସଙ୍ଗେ ଅନ୍ୟ ମୁହଁକୁ ଚାହିଁ ବୁଝିପାରିଲେ । ତୁମେ ସବୁ ସେମିତି ଏଇ 'ଛାତ୍ରଦର୍ପଣ' ପତ୍ରିକାଟିକି ବାହାର କରି, ଏଥିରେ ନିଜ ନିଜର ଲେଖା ପ୍ରକାଶ କରି ଦେଖିପାରୁଛ ତ ତୁମ ଲେଖାଠାରୁ ଆଉ କାହା ଲେଖା ବେଶି ସୁନ୍ଦର କି ଅସୁନ୍ଦର ?''

ଏଭଳି ପ୍ରଶ୍ନର ଉତ୍ତର ଦେବାକୁ ଆମକୁ କିଛି ବୁଦ୍ଧିବାଟ ଦିଶିଲାନି । ପୁଣି ''ଛାତ୍ରଦର୍ପଣ'' ନାଆଁଟି ଭିତରେ ଏତେ ଅର୍ଥ ରହିଛି ବୋଲି ବି ଆମର ତ ଆଦୌ ଖିଆଲ ନ ଥିଲା ।

ଏବେ ସେଇ ଦର୍ପଣ ଭିତରେ ଆପଣା ମୁହଁକୁ ଯେତେ ଚାହିଁଲେ ବି ନିଜକୁ ନିଜେ ଚିହ୍ନିବା ହେଲାଣି ତ କାଠିକର ପାଠ ! କେଉଁକାଳେ ଏଇ ଚିହ୍ନିବାଟା ମୋର ଯେ ଶେଷ ହେବ ? ଶେଷ ହେବ ଏଇ ଆତ୍ମଲିପି !



# ଖେଳାଉଡ଼ ବୁଦ୍ଧି ଛାଡ଼ରେ ବାବୁ

''ଆରେ, କୁଆଡ଼େ ଗଲା କି କାଳିନ୍ଦୀ ?'' ଖାଇ ବସିଲା ବେଳେ ବାପା ପଚାରନ୍ତି, ଖୁବ୍ ଯେମିତି ବ୍ୟସ୍ତ ହୋଇପଡ଼ି ।

''ଯିବ କୁଆଡ଼େ ମ ! ଏଇଠି ପରା ଖେଳୁଥିଲା ।'' ହାଣ୍ଡିଶାଳ ଭିତରୁ ଜବାବ ଦିଅନ୍ତି ବୋଉ ।

ବାପା ପୁଣି ଆଶ୍ଚର୍ଯ୍ୟ ହେଲାଭଳି କହନ୍ତି—

''ହଁ ଖେଳୁଥିଲା ତ, ଖେଳୁ ଖେଳୁ କୁଆଡ଼େ ପଳେଇଲା କେଜାଣି । ତାକୁ ତ ପାରିହେବନି ଆଉ ।''

ହାଣ୍ଡିଶାଳ ଅଧାକାନ୍ଥି ସେ ପାଖରେ ବୋଉଙ୍କ ସାନ ରୂପଟି ଲୁଚି ଯାଇଥାଏ । ଖାଲି ଯାହା ତାଙ୍କ କଥା ଶୁଣାଯାଉଥାଏ, ''ନାହିଁ, ଭାରି ଚଗଲା ହେଲାଣି ସେ । ଏଣିକି ତାକୁ ତ ଇସ୍କୁଲକୁ ନ ତଡ଼ିଲେ ନ ହୁଏ । ତମେ ତ ତାକୁ ସବୁବେଳେ ଗେହ୍ଲା କରି ଏମିତି ମୁହଁବଢ଼ିଆ କରି ପକେଇଲ । ସେ କ'ଣ ଆଉ କାହାରିକି ମାନୁଛି ?''

''ପୁଅ କ'ଣ ମାମୁଘରକୁ ଗଲା ଭାରି କି ?'' ପୁଣି ପଚାରନ୍ତି ବାପା ।

ହାଣ୍ଡିଶାଳ ମଝିରେ ଅଧାକାନ୍ଥି । ଦୁଆର ମୁହଁପଟେ ଖାଇ ବସିବା ଖଲୁରୀ ଘର । ମଝି ଅଧାକାନ୍ଥି ଆରପାଖେ ଚୁଲୀ, ତେଙ୍ଗେଡ଼ା, ହାଣ୍ଡି, ତେଲୁଣି, କଡ଼େଇ ଆଦି ରୋଷେଇ ସରଞ୍ଜାମ । ତା'ରି ଭିତରେ ବୋଉ । ରୋଜ ଗାଧୋଇ ସାରି ହାଣ୍ଡିଶାଳ ଲିପିପୋଛି ଚୁଲୀ ତେଙ୍ଗେଡ଼ାରେ ମୁରୁଜ ଦେଇ ଭାତ ତିଅଣ ରାନ୍ଧିବା ହେଲା ତାଙ୍କର ନିତ୍ୟକର୍ମ । ପାଖ ଖାଇବା ଘରେ ବସି ଖିଆପିଆ କରିବା ହେଲା ଆମ କାମ । ସେଇ ଘରେ ବାପା ଖାଇବସି ମୋ କଥା ପଚାରୁଥାନ୍ତି, ଅଧାକାନ୍ଥି ଆରପଟୁ ବୋଉଙ୍କ ଉତ୍ତର ଆସୁଥାଏ । ଘରକୁ ନୂଆବୋହୂମାନେ ଆସିଲେ ଏହି ଅଧାକାନ୍ଥିଟି ଏକ ଅପୂର୍ବ ରହସ୍ୟ ରଚନା କରେ ଠିକ୍ ଗୋଟିଏ ପର୍ଦ୍ଦାଭଳି ।

ଓଢ଼ଣାତଳେ ମୁହଁ ଲୁଚାଇ ବୋହୂ ଭୁଆସୁଣୀଙ୍କ ଚୁଁମରା, ଦିଅର ନଣନ୍ଦେଇଙ୍କ ସାଥିରେ ଥଟ୍ଟା ପରିହାସ, ହଳଦୀପାଣି, ଠା'ପୀଢ଼ା, ଚିତା ମୁରୁଜ !

ସମାନ୍ତରାଳ ହୋଇ ତିନି ଦାଣ୍ଡି ଚାଳଘର । ଦାଣ୍ଡ ଅଗଣାରେ ପୁରୁଷମାନଙ୍କର ବେଶି ଗତାଗତ । ମଝି ଅଗଣାରେ ଆଡ଼ି ବଖରାଟି ହାଣ୍ଡିଶାଳ । ତଳ ଅଗଣାରେ କାଠକୁଟା ଧାନଉଷୁଆଁ ଚୁଲୀ । ଶେଷରେ ବାରିପଟେ ଢିଙ୍କିଶାଳ, ଟିକିଏ ଦୂରରେ ଗାଧୁଆ ପୋଖରୀ । ଦାଣ୍ଡ ଅଗଣାକୁ ଲାଗି ପୂର୍ବ ଆଡ଼କୁ ଖଳାବାଡ଼ି, ଖଳାବାଡ଼ିକୁ ଲାଗିଛି ଗୋରୁ ଗୁହାଳ ।

ପୁଅ କୁଆଡ଼େ ଗଲା ବୋଲି ବୋଉଙ୍କ ମନରେ ଆତଙ୍କ ସୃଷ୍ଟି କରି ବାପା ଦିଅନ୍ତି ମାମୁଘର ଉଲୁଖା । ମାମୁ-ପୁଅ ଭାଇମାନେ ମଠରେ ଖାଇ ଖଟରେ ଶୋଇ ବିଗିଡ଼ି ଯାଇଛନ୍ତି,

ମୁଁ ମଧ୍ୟ ତାଙ୍କ ସାଙ୍ଗରେ ମିଶି ଚଗଲା ହେଉଛି । ଏଇ କଥା ଉପରେ ବୋଉ ବାପାଙ୍କ ଭିତରେ ଅନେକ ଯୁକ୍ତିତର୍କ ହୋଇ ରଗାରଗି ପର୍ଯ୍ୟନ୍ତ ଚାଲେ । ସ୍ୱଭାବତଃ ବୋଉଙ୍କ ସମର୍ଥନ ଯେତିକି ପରିମାଣରେ ମାମୁଘର ପ୍ରତି ଢଳୁଥାଏ, ବାପାଙ୍କ ପ୍ରତିବାଦ ସେତିକି ଉଗ୍ର ହୋଇଉଠେ । ମୋ ଅଜାଙ୍କ ସାନଭାଇ ସନ୍ନ୍ୟାସୀ ସ୍ୱାମୀ କୃତ୍ତିବାସ ଭୁବନେଶ୍ୱରରେ ମଠାଧୀଶ ହୋଇଥିବାରୁ, ସେଇ ମଠ ଉପରେ ହିଁ ମାମୁଘର ପରିବାର ପ୍ରାୟ ସମ୍ପୂର୍ଣ୍ଣ ନିର୍ଭର କରି ଚଳନ୍ତି । ନିଜ ଚାଷବାସ ଉପରେ ସେମାନଙ୍କର ପ୍ରାୟ ନଜର ନ ଥାଏ । ଚାଷଜମି ମଧ୍ୟ ଅତି କମ୍ ।

''ମୁଁ କ'ଣ ତାକୁ ମାମୁଘରକୁ ଯିବାକୁ କହିଦେଲି ?'' ଅଧାକାଟ୍ଟି ଆରପଟେ ଶାଗ ଖରଡୁ ଖରଡୁ ବୋଉ ବିରକ୍ତ ହୁଅନ୍ତି ।

''ଆଉ ତେବେ କହିଲା କିଏ ? କେଉଁ ଗେଲୀ ନାନୀ ଗାଧୋଇବାକୁ ଯାଇ ବାପଘରେ ଉଠେ ଭଲା ?'' ବାପା ହସନ୍ତି ।

ବୋଉ ଯେ ଟିକିଏ ଫୁରୁସତ୍ ପାଇଲେ ମାମୁଘରେ ଯାଇ ହାଜର, ସେଇ କଥାକୁ ମଝିରେ ମଝିରେ ଟିହାଇ ଦେବା ହେଲା ବାପାଙ୍କର କାମ, ପୁଣି ସେଇ କଥାରେ ଚିଡ଼ିବା ମଧ୍ୟ ବୋଉଙ୍କର ହେଲା ଏକ ପ୍ରକାର ସାଧାରଣ ଅଭ୍ୟାସ ।

କରଚୁଲୀରେ ଶାଗ ଖରଡ଼ା ଧରି ଅଧାକାଟ୍ଟି ସେପଟୁ ବୋଉ ଆସି ଦେଖନ୍ତି, କାଳିନ୍ଦୀ ଝୁଲୁଚି ବାପାଙ୍କ ପିଠି ଉପରେ ଲାଉ ହୋଇ, ଦି'ହାତକୁ ତାଙ୍କ ଗଳାରେ ଛନ୍ଦି ! ଯେଉଁ ପୃଷ୍ଠ ଦେଶରେ ସେ ବହୁ ନିର୍ମମ ମୁଷ୍ଟ୍ୟାଘାତ କରିଥିଲା, ରାମଭାଇନାଙ୍କ କଟୁରିରେ ନିଜ ଆଙ୍ଗୁଠି ହାଣିବା ଦିନ ।

''ହଇରେ ! ତୁ ଏଇଠି ଅଛୁ ପାଟିତୁଣ୍ଡ ନ କରି ? ଆଉ ହବନି, ହବନି, ଏଡ଼ିକି ଚଗଲା ତୁ ହେଲୁରେ !''

କୌତୁକ ଆକଟ କରନ୍ତି ବୋଉ ।

''କାହିଁ, କିଏ କେଉଁଠି ଅଛି ମ, ମୁଁ ଜାଣିନି ତ !''

ବାପା ମଧ୍ୟ ଯୋଗ ଦିଅନ୍ତି କିଛି ନ ଜାଣିଲା ପରି ।

କାଳିନ୍ଦୀ ତହୁଁ ବାପାଙ୍କ ବେକସନ୍ଧାରେ ନିଜ ମୁହଁଟି ଗଳାଇ ତାଙ୍କ ମୁହଁକୁ ଚାହେଁ, ନିଜ ସ୍ଥିତିକୁ ପୂରାପୂରି ପ୍ରତିଷ୍ଠିତ କରିବାପାଇଁ ବାପାଙ୍କୁ ସୁଦ୍ଧା ସେ ଠକି ଦେଇପାରିଛି ! କମ୍ ବାହାଦୁରୀ !

''ଆରେ ସତେ ତ ! ଏଇଠି ଅଛି ପୁଅ, ମୁଁ ଖୋଜି ଲାଗିଛି, କୁଆଡ଼େ ଗଲା ବୋଲି ।'' ବାପା କହନ୍ତି ଆହୁରି ଆଶ୍ଚର୍ଯ୍ୟ ହେଲା ଭଳି । ତା'ପରେ ପୁଅ ଯେ ତାଙ୍କର ଜଗତଯାକ କେତେଆଡ଼ ବୁଲି ଆସିଲାଣି, ସେଥିଲାଗି ଅନୁମତି ଦେବାକୁ କି ଆକଟ କରିବାକୁ ବାପା ଆଉ ନାହାନ୍ତି । ପୁଅ ଭାବୁଛି, ସେ କୁଆଡ଼େ ନ ଯାଇ ବାପାଙ୍କ ପିଠି ଉପରେ ଲାଉ ହୋଇଛି ପରା ଆଜିପର୍ଯ୍ୟନ୍ତ !

ସେତେବେଳେ କିନ୍ତୁ ଗର୍ବରେ ପୁଅର ଛାତି କୁଣ୍ଢେମୋଟ ହୋଇଯାଏ । ବାପାଙ୍କଠାରୁ ସେ ଯେ ବେଶି ବୁଦ୍ଧିମାନ୍, ଏଥିରେ ତା'ର ଆଉ ସନ୍ଦେହ ରହେ ନାହିଁ । ଖାଇସାରି ବାପା ଖରାବେଳେ ଟିକିଏ ବିଶ୍ରାମ ନିଅନ୍ତି ମଝି ସାହାଲା ଆଟୁଘରେ । ପୁଅକୁ ଜବତ୍ କରି ପାଖରେ ଶୁଆଇ ରଖନ୍ତି—"ନା, ଖରାରେ ତୁ କୁଆଡ଼େ ଯିବୁନି । ଥିର୍ ହୋଇ ଶୋଇପଡ଼ ।"

ଦି'ପହରଟା ଯେ ସବୁଠୁ ବେଶି ଖେଳିବା ବେଳ ! ସେତେବେଳେ ପୁଣି ଶୋଇବ କିଏ ? ବାରିତଳ ଚକାମ୍ବ ଗଛରେ ଡାଳମାଙ୍କୁଡ଼ି ଝୁଲିବା; ଷୋଳଗୁଣ୍ଠ ନଡ଼ିଆ ବାଡ଼ିରେ ଢେଲା ମାରି ନଡ଼ିଆ ପାରିବା କଣ୍ଟଗର ଉପର କିଆବାଡ଼ରେ ନିଆଁ ଲଗାଇବା, ପୁଣି ପାଣପଣ୍ଡା ବେତ ବଣରୁ ବେତକୋଳି ତୋଳିବା—କେତେ ଖେଳ ନାଚିଯାଏ ଆଖି ଆଗରେ । ସେଥିରେ ପୁଅ ଆଖିକି ନିଦ ଆସିବ କେମିତି ଭଲା ! ବାପାଙ୍କ ବୋଲ ମାନି ଆଖି ମୁଦିବାକୁ ଯେତେ ଚେଷ୍ଟା କଲେ ବି ଆପେ ଆପେ ଆଖିପତା ମେଲା ହୋଇଯାଏ ।

ଖେଳ-ସାଥୀମାନେ ଜଣ ଜଣକା ଆସି ଦୁଆର କବାଟ ପାଖରେ ମୁହଁ ଦେଖାନ୍ତି ଆସ୍ତେ ଆସ୍ତେ । ମାମୁପୁଅ ଭାଇ ଶିରୁ ଭାଇନା, ଶିନୁ ଭାଇନା, ବନୁ ଭାଇନା ପୁଣି ଦଦେଇ ପୁଅ ମାଗୁ ଭାଇନା । ମାମୁପୁଅ ଭାଇମାନେ ତାଙ୍କ ପିଉସାଙ୍କୁ ଡରନ୍ତି, ତାଙ୍କ ଆଗେ ବେଶି ପାଖକୁ ଆସନ୍ତିନି—ଭାଇ ମାଗୁ ଅର୍ଥାତ୍ ମାଗୁଣିଆ ଟିକିଏ ବୋକା ଢଙ୍ଗର । ସେ ଆସି ସିଧାସଳଖ କବାଟ ପାଖରେ ଠିଆ ହେଲା । ମୁହଁରେ ଖଣ୍ଡେ ଚାଦର ପକାଇ ବାପା ବିଶ୍ରାମ କରୁଥାନ୍ତି । ମାଗୁଭାଇନା ମୋ ସାଥିରେ କ'ଣ ଟିକିଏ ଠରାଠରି ହେବାରୁ ତାହା ଜାଣିପାରି ସେ ମୁହଁରୁ ଚାଦର କାଢ଼ି ଧମକ ଦେଲେ—

"କିରେ ମାଗୁ ? ଖରାବେଳଟାରେ ଆସିଚୁ କାହିଁକି ? ଯା ଶୋଇବୁ ଯା ।" ତା'ପରେ ମତେ ମଧ କୋବଲାନ୍ତି "ତୁ ଶୋଇପଡ଼ ।" ଛଦ୍ମ ସମର୍ଥନ ଜଣାଇ ମୁଁ ମଧ ମାଗୁ ଭାଇନାକୁ ଖେଳିବା ପାଇଁ ମନା କରିଦେଇ ଆପେ ଶୋଇବାର ଛଳନା କରେଁ ।

ବାପାଙ୍କ ଧମକରେ କାଳେ ଖସି ପଳାଇବ ସେ ! ତେଣୁ ବରାବର ତାକୁ ମୁଁ ଆଖି ମିଟିକା ମାରୁଥାଏଁ । ବାପା ପୁଣି ତାଙ୍କ ମୁହଁରେ ଚାଦର ଘୋଡ଼ାଇ ଶୁଅନ୍ତି । ଧମକ ପାଇ ମାଗୁଣିଆ ଟିକିଏ ଆଡ଼େଇ ଯାଇ ପୁଣି ଆସି ଦୁଆରମୁହଁରେ ହାଜର !

ହଁ ପରା ! ବାପା ଏଥର ଶୋଇଗଲେଣି, ଘୁଙ୍ଗୁଡ଼ି ମାରିଲା ପରି ତ ଜଣାପଡ଼େ । ଧୀରେ ଧୀରେ ମୁହଁ ଟେକି ମାଗୁଣିଆକୁ ମୁଁ ଠାର ଭାଷାରେ କହେଁ, "ଗୁଣିଆମା ଛରେମି !" ଅର୍ଥାତ୍ ମାଗୁଣିଆ, ମୁଁ ମିଛରେ ଶୋଇଥିଲି ।

ମୁହଁରୁ ଚାଦର କାଢ଼ି ବାପା ଠୋ ଠୋ ହସିଉଠିଲେ । କିଛି ସମୟପାଇଁ ଖେଳିବାକୁ ମଧ ଅନୁମତି ମିଳିଗଲା ମୋର ଏଇ ଚତୁରତାର ପୁରସ୍କାର ସ୍ୱରୂପ; କିନ୍ତୁ ବଡ଼ ହୋଇ ସାରି ବାପାଙ୍କ ମୁହଁରୁ [illegible]ଙ୍କ ଆଗରେ ଏଇ ଘଟଣାର ପୁନରାବୃତ୍ତି ଶୁଣି କେତେ ଥର ମୁହଁ ମୋର ରଙ୍ଗା ପଡ଼ିଯାଇଛି ।

ଖେଳର କ'ଣ ସୀମା ଅଛି ? ବାପାଙ୍କ ଅନୁମତି ପାଇ ଘରୁ ପାଦ କାଢ଼ିବା ମାତ୍ରେ ଦାଣ୍ଡଦୁଆରେ ଭିକାରୁଣୀ କେଲୁଣୀ ଗୀତ ଶୁଣାଯାଏ—"ରାମବୋଉ ଶାମବୋଉ ଲୋ,

ହରିବୋଉ ପରି ବୋଉ ଲୋ, ନିଧିଆ ବୋଉ ବୁଦ୍ଧିଆ ବୋଉ ଲୋ, ମଣିବୋଉ ରାଣୀ ବୋଉ ଲୋ, ଦିଅ ଲୋ !''

ଦାଣ୍ଡଦୁଆରେ ଟକେଇ କରି ରହିଥାନ୍ତି, ଆଉ ସବୁ ଖେଳସାଥି । କାଠଘର ବାଡ଼ିରେ ବହୁତ ଆମ୍ବ । ଚଇତି-ପବନରେ ଗୋଟି ଗୋଟି 'ଗଛପାଚିଲା' ଆମ୍ବ ଝଡ଼େ । ତେବେ ଖୁବ୍ ସାବଧାନରେ ଆମ୍ବ ଗୋଟାଇବାକୁ ହେବ । କାଠଘର ଖୁଡ଼ୀ କେଉଁଠି ଜଗିଥିବ, ଗାଳି ଦେବଟି ! ଖରବଦାର ! ଗଛକୁ କେହି ଟେକା ମାରିବନି । ତଥାପି ଶିନୁ ଭାଇନା, ଶିରୁ ଭାଇନା କ'ଣ କାହାରି କଥା ଶୁଣିବେ !

''କିଏ ଟେକା ମାରୁଛି ରେ ! ଗଛଜଳା...ଅଳପେଇଷ...''

କିଳିକାଳିଆ ହୋଇ କିଏ ଯେ କୁଆଡ଼େ ପଳାଉଁ ! ଦଣ୍ଡକ ପରେ ସମସ୍ତେ ଯାଇଁ ଏକାଠି ହେଉଁ ବଣାହୁଡ଼ା ପାଖରେ । ତାହାର ତୁରନ୍ତ ସଙ୍କେତ ମିଳେ ଯେତେବେଳେ କିଆବୁଡ଼ା ବେତବୁଦାରୁ କୁଣ୍ଡଳାକାର ଧୂଆଁ ପଛକୁ ନାଲି ଜିଭ ବାହାର କରି ନିଆଁ ଜଳିଉଠେ ଚଡ଼ଚଡ଼ ଶବ୍ଦରେ ! ଉଦୁଉଦିଆ ଦି'ପହର ଖରାରେ ଚାରିଆଡ଼ ବିଲ ପାଟ ମଝିରେ ସେ ଦୃଶ୍ୟ ଦେଖି ନାଚିଉଠନ୍ତି ପିଲାଯାକ । ଗାଁ'ମୁଣ୍ଡ ସଡ଼କ ଉପରୁ କିନ୍ତୁ କାହାର କର୍କଶ ପାଟି ଶୁଣାଯାଏ—''ହଇରେ, ଏ କ'ଣ ହେଉଛି !'' ସେଠାରୁ ପୁଣି ଦେ ଦଉଡ଼ କକେଇ ଘର ବାଡ଼ି ଗଡ଼ିଆକୁ !

ଗଡ଼ିଆଟା ଖୁବ୍ ଗହୀର । ଖରାଦିନେ ପାଣି ଶୁଖି ନେଳି ପଡ଼ିଯାଇଥିଲେ ବି ପୁରୁଷକରୁ କମ୍ ନୁହେଁ । ପୋଖରୀ ବନ୍ଧର ବୁଢ଼ା ନଡ଼ିଆ ଗଛଟା ଉପୁଡ଼ିଯାଇ ଲମ୍ବହୋଇ ଶୋଇ ପଡ଼ିଥାଏ ଗଡ଼ିଆ ମଝି ପାଣି ଉପରେ । ପଥର ପାହାଚରେ ଓହ୍ଲାଇ ପଡ଼ି ତା'ପରେ ପାଣିରେ ପହଁରି ପହଁରି ପିଲାଯାକ ସେଇ ନଡ଼ିଆ ଗଛ ଉପରେ ଯାଇ ଘୋଡ଼ା ଚଢୁଛନ୍ତି, ପୁଣି ତା' ଉପରୁ ବାଦୁଡ଼ିପରି ଓହଳି ପାଣିରେ ପଡୁଛନ୍ତି, ବନ୍ଧ ଭାଙ୍ଗୁଛନ୍ତି । ଛୋଟ ଗଡ଼ିଆଟିର ପାଣି ମୁହାଙ୍କ ତାଙ୍କ ଉତ୍ପାତରେ ଗୋଟାଏ ଲୋଭନୀୟ ଛଳ ଛଳ ଶବ୍ଦ ସୃଷ୍ଟି କରୁଥାଏ ଲହଡ଼ି ଉଠାଇ । କେମିତି ମଜା ! ମୁଁ କିନ୍ତୁ ପହଁରା ଶିଖି ନ ଥିବାରୁ ନିରାଶ ମୁହଁରେ ଠିଆହୋଇ ଚାହିଁଥାଏ ଗଡ଼ିଆ-ପାହାଚ ଉପରେ । ଜଣ ଜଣ କରି ସାଙ୍ଗପିଲାଏ ପାଣି ଉପରେ ମୁହଁମାଡ଼ି ହାତଗୋଡ଼ ପାଣିରେ ଛାଟି ପହଁରି ଯାଉଛନ୍ତି । ମୁହିଁ ଏକା କାତର ହୋଇ ଚାହିଁଛି ନିରୁପାୟ ଦୃଷ୍ଟିରେ ।

ଶିରୁଭାଇନା କହିଲେ ସାହସ ଦେଇ, ''ଦେଖ୍, ମୁଁ କେମିତି ପହଁରୁଛି । ଖୁବ୍ ସହଜ । ଏମିତି ପାଣି ଉପରେ ମୁହଁ ମାଡ଼ି ଶୋଇ ପଡ଼ିବୁ । ତା'ପରେ ଚଢ଼େଇ ଉଡ଼ିଲା ପରି ହାତଯୋଡ଼ିକ ଗୋଡ଼ଯୋଡ଼ିକ ପାଣିରେ ଛାଟିବୁ, ବୁଝିଲୁ ?'' ସେ ନିଜେ କରି ମୋତେ ଦେଖାଇ ଦିଅନ୍ତି । ପରିଷ୍କାର ପ୍ରାକ୍ଟିକାଲ ଟ୍ରେନିଂ !

''ନାହିଁ, ନାହିଁ, ପାଣି ଉପରେ ମୁହଁ ମାଡ଼ି ପଡ଼ିଲାକ୍ଷଣି ତ ମୁଁ ବୁଡ଼ିଯାଉଛି । ପୁଣି କିମିତି ନିଶ୍ୱାସ ବି ରୁନ୍ଧି ହୋଇଆସୁଛି ।'' ସତରେ ମୋତେ ଡର ମାଡ଼େ ଖୁବ୍ ବେଶି ।

ଶିରୁଭାଇନା ହସନ୍ତି, ତାଚ୍ଛଲ୍ୟ ହସ—''ଆରେ ନାହିଁରେ ବୋକା, କିଛି ହବନି । ଖାଲି ଆହୁଲା ମାରିଲା ପରି ହାତଗୋଡ଼ ଛାଟିବୁ, ଏମିତି ।''

ପୁଣି ମତେ ସେ ବଢ଼ାଇ ଦିଅନ୍ତି । ପୋଖରୀକୂଳରେ ଅଣ୍ଟାକ ପାଣିରେ ଆଗ ପହଁରା ଶିଖିଲି । ହେଲେ ବେଶି ପାଣିକି ଯିବାକୁ ଛାତି ଥରୁଥାଏ । ଶିରୁଭାଇନା ଚାରି ପାଞ୍ଚଥର ମୋତେ ପହଁରା ଶିଖାଇଦେଲେ । ନିଜେ ଚାରି ପାଞ୍ଚଥର ଗଡ଼ିଆଟାର ଏମୁଣ୍ଡରୁ ସେ ମୁଣ୍ଡଯାକେ ମୋ ଆଗରେ ପହଁରିଗଲେ । ଚିତି ପହଁରା, ଠିଆ ପହଁରା, ପୁଣି ପାଣି-କୁଆ ପରି ବୁଡ଼ା ପହଁରା, ଦଣ୍ଡ ବୈଠକ, ବାଗୁଡ଼ି, ମାଲକୁସ୍ତି ସବୁଥିରେ ଶିରୁଭାଇନା ଓସ୍ତାଦ୍ । ମୁଁ କୁଆଡ଼େ ତାଙ୍କୁ ପାରିବି ! କହିଲି, ନାହିଁ ମୁଁ ଏହି କୂଳରେ ପହଁରୁଛି ।''

ପୋଖରୀ ଉପରେ ପଡ଼ିଥିବା ନଡ଼ିଆଗଛଟା ଉପରୁ ପିଲାଯାକ ତାଳି ମାରି ପାଟି କଲେ, ''ଆରେ ଏଇଟା କୂଳବୁଡ଼ାଟାରେ, କୂଳବୁଡ଼ାଟାରେ !'' ଅର୍ଥାତ୍ ମୁଁ ପୋଖରୀକୂଳରେ ବୁଡୁଚି, ଭିତରକୁ ଯାଇପାରୁନି ।

ଶିରୁଭାଇନା ପୁଣି ସାହସ ଦେଇ ଡାକ ଛାଡ଼ିଲେ, ''କିଛି ପରବାୟ ନାହିଁ, ଚାଲିଆ ଏଥର କୂଳରେ ଯେମିତି ପହଁରୁଛୁ, ଠିକ୍ ସେମିତି ! କିଛି ହବନି ! କିଛି ହବନି !''

ପଛରୁ ଅନ୍ୟମାନଙ୍କ ଲଜ୍ଜା ଅପମାନ ଓ ଆଗରେ ଶିରୁଭାଇନାଙ୍କର ସାହସ ପାଇ ଡେଇଁ ପଡ଼ିଲି ପାଣି ଭିତରକୁ । ଦି' ଚାରି ହାତ ପହଁରିଛି କି ନାହିଁ, ହାତ କି ଗୋଡ଼ କାହିଁକି କେଜାଣି ଚଳିଲାନି ! ପାଣି ଭିତରଟା ଖାଲି ଲାଲ ଦିଶୁଛି । ପିଲାଙ୍କ ପାଟି ଯେମିତି ଦୂରରୁ ଦୂରକୁ ଶୁଣା ଯାଉଥାଏ । ମୁହଁ ଟେକିବାର ଉପାୟ ନାହିଁ । ନିଃଶ୍ୱାସ ରୁନ୍ଧି ହୋଇ ଆସିଲାଣି । କେତେ ତୋକ ପାଣି ପେଟ ଭିତରକୁ ଗଲାଣି ଜାଣେନି । ନା, ଆଉ ନୁହେ, ଏଥର ସବୁ ଶେଷ ।

କିନ୍ତୁ ଏ କ'ଣ ? କିଏ ଯେମିତି ମୋ ଗୋଡ଼ ଯୋଡ଼ାକୁ ଧରି ଟାଣୁଛି । ଆଉ ମୁଣ୍ଡଟା ମୋର ତଳକୁ ନ ଯାଇ ଉଠୁଛି ଉପରକୁ ! ପୁଣି ମୁଁ ଏବେ ଭଲକରି ଛାଡ଼ିପାରୁଚି ନିଃଶ୍ୱାସ, ଦେଖିପାରୁଚି ଖରା ଆଲୁଅ ! ମୁହଁରେ ମୋର ଫୁଟି ଉଠିଚି ହସ । ଜଣକ ଉପରେ କନ୍ଧୁଅ ହୋଇ ମୁଁ ପୋଖରୀକୂଳ ଆଡ଼କୁ ଚାଲିଛି । ସେ ଜଣକ ଆଉ କେହି ନୁହନ୍ତି, ମୋର ମାମୁ ପୁଅ ଭାଇ ଶିରୁଭାଇନା—ଶ୍ରୀକର ଶତ୍‌ପଥୀ ।

ଶିରୁଭାଇନା ନ ଥିଲେ ସେ ଦିନ ମୋର ନିଶ୍ଚୟ ସଲିଳ-ସମାଧି ହୋଇ ପୃଥିବୀ ଉପରୁ ସବୁ ସରା ନିଭି ଯାଇଥାନ୍ତା । ସେଇ ସମାଧିରୁ ମୋତେ ଉଦ୍ଧାର କରି ସେ ଠିକ୍ କଲେ, କି ଭୁଲ୍ କଲେ, ଆଜି ଅବଶ୍ୟ କହିପାରିବିନି । ପୁଣି ସେଥିଲାଗି ତାଙ୍କ ପାଖେ ମୁଁ ଋଣୀ କି ନୁହେଁ, ଆଉ ସେ ଋଣର କିଛି ସୁଧମୂଳ ଅଛି କି ନାହିଁ, ଅଥବା ତାହା ପରିଶୋଧ କରାଯାଇପାରେ କି ନାହିଁ, ଏ ସବୁ ବିଚାର ବାଢ଼ିବାପାଇଁ ଶିରୁଭାଇନା ମୋ ପାଖରେ ନାହାନ୍ତି—ପୃଥିବୀର ଆଉ କାହାରି ପାଖେ ବି ସେ ନାହାନ୍ତି । ତେବେ ଆଉ ସବୁ ଦୁର୍ଘଟଣା ପରି ଏଇ ଚରମ ଦୁର୍ଘଟଣାରୁ ମଧ ସେ ଥରକ ମୁଁ ଉତୁରିଗଲି ଦୈବାତ୍ ! ଏହି କୃତଘ୍ନ ସୀକାରୋକ୍ତି ଲାଗି ସର୍ଗରେ ଥାଇ ମୋତେ ଶିରୁଭାଇନା ନିଶ୍ଚୟ କ୍ଷମା କରିବେ ବୋଲି ମୋର ବିଶ୍ୱାସ । କାରଣ ତାଙ୍କ ପାଇଁ ତ ଜୀବନରେ ମୁଁ କିଛି ହେଲେ କରିପାରିନି !!!

ଦୁର୍ଘଟଣାକୁ ପୂରାପୂରି ଗୋପନ ରଖିବାପାଇଁ ସବୁ ପିଲାଙ୍କ ଭିତରେ ମସୁଧା ହେଲା । ମସୁଧାଟାକୁ ସମସ୍ତେ ମାନିଲେ କି ନାହିଁ ଆଜି ମନେ ପକାଇବା ଅସମ୍ଭବ, ମାତ୍ର ଏଇ

ଅନିଚ୍ଛାକୃତ ଆତ୍ମହତ୍ୟା ଉଦ୍ୟମ ଲାଗି ମୁଁ କଦାପି ପୂରାପୂରି ଅପରାଧୀ ନୁହେଁ କିମ୍ବା ଆଉ କିଏ ନୁହନ୍ତି ବୋଲି ମନେହୁଏ । କାରଣ ଏହାକୁ ଆଦୌ କୌଣସି ଦୁର୍ଘଟଣା ବୋଲି ନ ବିଚାରି ପୂର୍ବପରି ଜଳକ୍ରୀଡ଼ାରେ କିଛି ହେଲେ ବ୍ୟାଘାତ ଘଟେ ନାହିଁ, ଯେପର୍ଯ୍ୟନ୍ତ ପୋଖରୀ ସେ ମୁଣ୍ଡ ବେତବୁଦା ପାଖରେ ଏକ ଅକସ୍ମାତ୍ ନିର୍ଘାତ ପତନ ଶବ୍ଦ ଶୁଣା ନ ଯାଏ ଏବଂ ଏକାଦିକ୍ରମେ ପୁଣି ସେଇ ସୁପରିଚିତ ଚିତ୍କାର—''ହଇ ରେ, ଏ କ'ଣ ହେଉଛି ! ହଉ ଚାଲ, ଆଜି ଦେଖି ଦେଉଛି ତୁମକୁ ।''

ମାଷ୍ଟ୍ରେ ! ଇସ୍କୁଲ ମାଷ୍ଟ୍ରେ !!

ବରାବର ସେ ଗୋଡ଼େ ଗୋଡ଼େ ଜଗିଛନ୍ତି ! କିଆବାଡ଼ରେ ନିଆଁ ଲଗାଇଲାବେଳେ, ଘରେ ବାହାରେ ଇସ୍କୁଲରେ, କେଉଁଠି ସେ ନାହାନ୍ତି ! ସକାଳୁ ଇସ୍କୁଲ ଯିବାପାଇଁ ତାଙ୍କ ଡାକରା । ଘରେ ଠିକ୍ ବେଳରେ ପିଲା ଖାଇଲା କି ନାହିଁ ସେ କଥା ବି ପଚରା । ମଝିରେ ମଝିରେ ଏମିତି କେତେ କଥାରେ ବାପ ମା' ଅଭିଭାବକ ଓ ମାଷ୍ଟରଙ୍କ ଭିତରେ ମଧ କେତେ ବିଚାର-ଝଗଡ଼ା ! ଆଉ ତା'ର ଫଳସ୍ୱରୂପ ପୋଖରୀ-ବନ୍ଧ ବେତବୁଦାମୂଳେ ମାଷ୍ଟରଙ୍କ ନିର୍ଘାତ କଚଡ଼ା ।

ତାହାର ଅସଲ କାରଣ ହେଲା, ସେଠାକୁ ସେ ଆସିବେ ବୋଲି ଆଗରୁ କେବଳ ଜାଣି ପାରିଥିଲେ ଭବିଷ୍ୟଦ୍ରଷ୍ଟା ଶିରୁଭାଇନା । ଜାଣିପାରି ବେତନଟୀରେ ଫାଶ ପକାଇ ରଖିଥିଲେ ଶିକ୍ଷକଙ୍କୁ ଶିକ୍ଷା ଦେବାପାଇଁ । ଶିକ୍ଷକ ପୁଣି ଆମରି ଗାଁର ଅଲା ଭାଇନା—ମୋର ଲଗ୍ନିକ ଭିଣୋଇ ଶ୍ରୀ ଅଲେଖଚନ୍ଦ୍ର ଶତ୍‌ପଥୀ । ଗୋଲଗୋଲ ଦେହଟି, ସାବନା ରଙ୍ଗ । ରସକଲ୍ଲୋଳ, ବିଦଗ୍ଧ ଚିନ୍ତାମଣି, ପ୍ରେମ ସୁଧାନିଧି, ଲାବଣ୍ୟବତୀରୁ ଅନେକ ଛାନ୍ଦ ତାଙ୍କର ମୁଖସ୍ଥ । ସେମିତି କେଉଁ ପିଲା କୁଆଡ଼େ ଗଲା, ତାହା ମଧ ତାଙ୍କୁ ଆଗରୁ ଜଣା ।

ଖାଲି ତ ଇସ୍କୁଲ ନୁହେଁ, ଘରେ ଘରେ ପଶି ଅମାନିଆ ପିଲାଙ୍କୁ ଶାସନ, ମା' କାନିରୁ ଝିଙ୍କିଆଣି ନିସ୍ତୁକ ପ୍ରହାର—ଆଉ ସେଥିଲାଗି କେତେ ପ୍ରତିବାଦ, ଅଭିଯୋଗ । ଦେଶ-ବିଦେଶରେ ଆଜି ଛାତ୍ର ଆନ୍ଦୋଳନ ବା ଛାତ୍ର ବିକ୍ଷୋଭ କଥା ପଢ଼ିଲେ, ପୁଣି ସେଥିଲାଗି କିଏ ଦାୟୀ ବୋଲି ପ୍ରଶ୍ନ ଉଠିଲେ, ସେତେବେଳେ ଜଣେ ଶିକ୍ଷକ ତାଙ୍କର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଦେବାର ଗୋଟିଏ ଅତୀତ ବିଚାର ମନକୁ ଆସେ । ଉକ୍ତ ଶିକ୍ଷକ ଥରେ ଗୋପନରେ ରହି ଦୁଇଟି ପିଲାଙ୍କର ଏହିଭଳି କଥୋପକଥନ ଶୁଣନ୍ତି—

ଜଣେ ପିଲା କଠିନ ବେତ୍ରାଘାତ ଖାଇସାରି ଏକାନ୍ତରେ ତା'ର ବନ୍ଧୁକୁ ଡାକି କହୁଛି, ''କ'ଣ କରିବା ? ଇସ୍କୁଲ ଘରେ ନିଆଁ ଲଗାଇ ଦେବା କି ?''

ଦ୍ୱିତୀୟ ଛାତ୍ର ତା'ର ଯୁକ୍ତିକୁ ଖଣ୍ଡନ କରି କହେ, ''ଧେତ୍ ବୋକା, ଇସ୍କୁଲ ଘରେ ନିଆଁ ଲଗାଇଦେଲେ ହେବ କ'ଣ ? ପୁଣି ଇସ୍କୁଲ ଘର ତୋଳା ହେବନି କି ? ଆଉ ତୋଳା ହେବାଯାକେ ତୁମ ଦାଣ୍ଡଘରେ କି ଆମ ଦାଣ୍ଡଘରେ ସ୍କୁଲ କ'ଣ ବସି ପାରିବନି ?''

''ତେବେ କ'ଣ ଗାଁଯାକ ସବୁରି ଘରେ ନିଆଁ ଲଗେଇ ଦେବା ?''

''ପୁଣି ସେମିତି ସବୁରି ଘର ନୂଆ ହୋଇ ତୋଳା ହେବନି !''

''ତା'ହେଲେ ମାଷ୍ଟର ମରିଯାନ୍ତେ କି—''

ଦ୍ୱିତୀୟ ଛାତ୍ରଟି ଏଥର ଟିକିଏ ଚିନ୍ତାକରି କହିଲା, ''ଆରେ, ମାଷ୍ଟର ମରିଗଲେ ହବ କ'ଣ ମ ! ପୁଣି ତ ନୂଆ ମାଷ୍ଟର ଆସିବେ । ତେବେ ଗୋଟିଏ ମାତ୍ର ଉପାୟ ଅଛି—''

''କ'ଣ ଉପାୟ କହିଲୁ ?'' ହତାଶ ବନ୍ଧୁଟି ଉତ୍ସାହିତ ହୋଇ ପଚାରିଲା—

ଆଉ ଟିକିଏ ସ୍ୱର ନୁଆଁଇ ଦେଇ ଓ ଡୋଳା ଯୋଡ଼ିକୁ ଚାରିପଟେ ବୁଲାଇ ଆଣି ପିଲାଟି ଅତି ବିଶ୍ୱାସରେ ଜଣାଇଲା—

''ଉପାୟ କ'ଣ ଜାଣୁ ? କାହାରି ଆଗରେ କହିବୁନି ତ ?''

''ନା, କେଭେଁ ନୁହେଁ ।'' ବନ୍ଧୁଟି ତାକୁ ନିର୍ଭର ଜବାବ ଦିଏ ନିଜ ଆଖି ଛୁଇଁ ଓ ରାଣ ପକେଇ ।

''ତେବେ ଶୁଣ୍—ବାପା ମରିଯାନ୍ତେ କି !''

''ଏଁ, କ'ଣ କହିଲୁ ?'' ଆର ପିଲାଟି ଚମକିପଡ଼ିଲା ।

''ହଁ ରେ, ବାପା ମରିଗଲେ ଆଉ ଜଣେ ବାପା ଆସିବେ ନା ମତେ କି ତତେ ଇସ୍କୁଲକୁ ଆଉ ପଠାଇବେ !''

ବାପା କିନ୍ତୁ ମରନ୍ତି ନାହିଁ କି ମାଷ୍ଟରଙ୍କର ବଦଳି ହୁଏନି । ଶିରୁଭାଇନାଙ୍କ ପିଠିରେ ହାତ ମାରି ପିଲାଏ ଖୁସି ହୁଅନ୍ତି ।

''ସାବାସ୍ ଭାଇ, କେମିତି ଭଲା ଜାଣିଥିଲୁ ମାଷ୍ଟ୍ରେ ଏଇ ବେତ ବୁଦା ପାଖକୁ ଆସିବେ ବୋଲି ?''

ଶିରୁଭାଇନାଙ୍କୁ ଜବାବ ଦେବାକୁ ପଡ଼େ ନାହିଁ । ଆଉ ଜଣେ ପିଲା ଉପରେ ପଡ଼ି କହେ, ''ଆରେ ସେ ଜାଣିବନି ତ ଆଉ କିଏ ? ଉଡ଼ିଗଲା ଚଢ଼େଇର ପର ଗଣିଦେବଟି ସେ । ଠିକ୍ ହୋଇଛି, ଆଚ୍ଛା ହେଇଛି ।''

ତୃତୀୟ ବନ୍ଧୁ ବାହାରିପଡ଼ି ଯୋଗ ଦିଅନ୍ତି, ''ଯେମିତି ଦିଅଁକୁ ସେମିତି ପୂଜା, ବାଲିଗରଡ଼ାକୁ ଚାଉଳଭଜା । ଶିରୁଭାଇନାଙ୍କ ହାଣ୍ଡିଶାଳ ଘରେ ପଶି—ସବୁ ପିଲା ମାଇପେ ହାହା କରୁଛନ୍ତି—ସେଦିନ କେମିତି ମାଷ୍ଟ୍ରେ ତା' ଉପରେ ନିସ୍ତୁକ ବିଧାମାଡ଼ କୁଟି ପକେଇଲେ ଶୁଣି ନାହୁଁ ? ସାଇପଡ଼ିଶା ତିନିଘର ପରା ଦୁଲୁକି ଉଠିଲା ।''

ଆଉ ଜଣେ କହେ, ''ଆରେ ହଁ, ଉଧାର ସେରକ ତ ପାଞ୍ଚପା, ଯିବ କୁଆଡ଼େ ? ଶିରୁଭାଇନା ବେତନଟୀରେ ଫାଶ ପକେଇଥିଲେ ବୋଲି ମାଷ୍ଟ୍ରେ ସିନା ସେଇ ଗଁଡ଼ିଆ ବନ୍ଧ ଉପରେ ପଡ଼ି ଅଟକିଗଲେ । ନଇଲେ ତ ବନ୍ଧତଳକୁ ଗଡ଼ିଗଡ଼ିକା ପୋଖରୀ ଭିତରେ ପଡ଼ି ଉବୁଟୁବୁ ହେଉଥାନ୍ତେ ।''

ହସି ଉଠନ୍ତି ସବୁ ପିଲାଯାକ ।

ସତ କହିଲେ, ଏମିତି କିଛି କାମ ନାହିଁ ଜଗତରେ, ଯାହା କି ଶିରୁଭାଇନାଙ୍କର ଅସାଧ ବୋଲି ବୋଧହୁଏ, ଖାଲି ପାଠକୁ ଛାଡ଼ି । ଗଛଚଢ଼ା, ମାଛଧରା, ମହୁମରା, ବାଣ ଲଗେଇବା ସବୁ କାମକୁ ସେ ଧୁରନ୍ଧର । ବନ୍ଧ ଭାଙ୍ଗିବା, ବାଗୁଡ଼ି, ମାଲକୁସ୍ତି, ନାଗାଭିଡ଼ା ତ ଛାଡ଼ । ଖଞ୍ଜଣି ଭଜନରେ ବି କିଛି କମ୍ ନୁହନ୍ତି ସେ । ପୁଣି ଯେଉଁ ଭୁଜବିଦ୍ୟା କେଳା ଗାଁ ଭିତରେ ଡିବି ଡିବି ଡମ୍ବରୁ ବଜାଇ ମୁଣି ଭିତରୁ କାଉଁରି ହାଡ଼, ଅଦ୍ୟା-ଗୋପୀ-ମିଶ୍ର, ବାଉଁଶନଳା ପୁଣି କେତେ କ'ଣ ହଟଚମଟ ବିଦ୍ୟା ଦେଖାଇ ସମସ୍ତଙ୍କୁ ବୋକା ବନେଇଦିଏ, ଶିରୁଭାଇନା ଥରଟାଏ ଖାଲି ଚାହିଁଦେଲେ ନିଜେ ସେ ସବୁ କରିପାରନ୍ତି ।

ସେଥର କିନ୍ତୁ ମାଛମରାରେ ପଡ଼ିଥାଏ ମୋର ପାଳି । ଭୋଦୁଅ ମାସ ଖରାରେ ଆମ ବାଡ଼ି ଗଡ଼ିଆର ଭରା ପାଣି ଢକ ଢକ ଦିଶୁଚି । ସେ ବର୍ଷ ବହୁତ ମାଛ । ଆମେ ଦଶବାର ଜଣ ଗଡ଼ିଆବନ୍ଧରେ ବସି ବନଶୀ ପକାଇ ମାଛ ଧରୁଛୁଁ । ମୋର ପିଉସୀପୁଅ ଭୋବନିଭାଇନା ବୋଧହୁଏ ଗୋଟାଏ ଭଲ ବନଶୀକଣ୍ଡା ମୋ ପାଇଁ ବାଛି କିଣି ଦେଇଥାନ୍ତି । ସେ ଦିନ କି ଯୋଗ କେଜାଣି, ପ୍ରତି ଚାରି ପାଞ୍ଚ ମିନିଟ୍‌ରେ ମୋ ବନଶୀରେ ଗୋଟାକୁ ଗୋଟା ସାନବଡ଼ ମାଛ ଉପରେ ଆସି ପଡୁଥାନ୍ତି । ଅଥଚ ଆଉ ସମସ୍ତେ ବସିଥାନ୍ତି ମୁହଁ ଶୁଖାଇ । ସବୁ ଥର ମୋ ବିଜୟରେ ଉଲ୍ଲସିତ ଶିରୁଭାଇନାଙ୍କ ଉତ୍ସାହ ବାଣୀ ଶୁଣାଯାଏ—''ସାବାସ୍ ! ସାବାସ୍ ! ପୁଣି ଚାଲୁ ଥୋପଗୁନ୍ଥା ।''

କେତେଜଣ ସାନ ପିଲା ଆସି ଆମ ପାଖରେ ମାଛଧରା ଦେଖୁଥାନ୍ତି । ଅଳ୍ପ ଦୂରରେ ଢିଙ୍କିଶାଳ । ଶରଧୀ ମା' ଓ ଆଉ ଦି'ଜଣ ସ୍ତ୍ରୀଲୋକ ଧାନକୁଟାରେ ବ୍ୟସ୍ତ । ବୋଉ ମଧ ସେଇଠ ଲଗିଥାନ୍ତି । ଶରଧୀ ମା'ର ସାନଝିଅ ପାସୋରୀଟା ଆସି ପିଲାଙ୍କ ମେଣ୍ଟରେ ଠିଆ ହୋଇ ମାଛଧରା ଦେଖୁଥାଏ ।

ବିଜୟ ଉଲ୍ଲାସରେ ସେତେବେଳକୁ ମୋର ବନଶୀଖଡ଼ାଟା ସପାତ୍ ସପାତ୍ ଶବ୍ଦକରି ପାଣି ଭିତରୁ ମାଛ ଟାଣି ଲାଗିଛି । ଆଉ ସୂତାଟା ଘୂରି ଯାଉଛି ମୋର ଚାରିପଟେ । ପିଲାଗୁଡ଼ାଙ୍କୁ ସାବଧାନ କରି ମୁଁ ଡାକି ଦେଉଥାଏଁ, ଆଡ଼େଇ ଯିବାକୁ—ଦେଖ ପିଲାଏ, ସମସ୍ତେ ଦୂରକୁ ଆଡ଼େଇ ଯାଅ । ଏ ବନଶୀକଣ୍ଡା ଭାରି ମୁନିଆଟି ! ଦେଖୁଛ ତ—ଯେଉଁ ମାଛ ଛୁଉଁଛି, ସାଥି ସାଥି ତୋଟିରେ ତା'ର ଲାଖିଯାଉଛି କିମିତି !'' ସେମାନେ ବି ମୋର ଡାକରେ ଦୂରେଇ ଯାଉଥାନ୍ତି ।

ପିଲାଙ୍କ ଭିତରେ ସବୁଠାରୁ ବୋକୀ ସେଇ ପାସୋରୀଟା । ଯେତେ ରାଗିମାଗି ତା' ଉପରେ ପ୍ରାଚିତୁଣ୍ଡ କଲେ ବି ସେ ଓଲଟି ମୋ ଆଡ଼କୁ କେତେବେଳେ ଲାଗି ଆସିଛି, ମୁଁ ଜାଣିନି । ବନଶୀକଣ୍ଡାକୁ ଏଥର ଯେଉଁ ମାଛଟା ଧରିଛି, ସେ ନିଶ୍ଚୟ ଭାରି ଛେଉକା । ପାଣି ଉପରେ ଭାସୁଥିବା ଧଳା କାଠିଖଣ୍ଡି କେତେ ରୂପରେ ନାଚି ଉଠୁଚି । କେତେବେଳେ ପିଲାଙ୍କ ପାପୁଲି ଉପରେ ବଡ଼ମାନେ ଆଙ୍ଗୁଠି ମାରି ''ଚୁଉକୁ ମୂଷି'' କଲାଭଳି, ଅବା ବୁଢ଼ା ନଡ଼ିଆଗଛ ଚେର ଉପରେ ବସି କଣରା ଏଣ୍ଡୁଅ ମୁଣ୍ଡ ଟୁଙ୍ଗାରିଲା ଭଳି—ପୁଣି କେତେବେଳେ କାଠିଖଣ୍ଡିକୁ

ବୁଡ଼ାଇ ନେଇ ବନଶୀକଣ୍ଟାକୁ ଗିଳିଲା ଭଳି ଛଳନା କରୁଚି; ଅଥଚ ପର ମୁହୂର୍ତ୍ତରେ ଛାଡ଼ିଦେବାରୁ କାଠିଖଣ୍ଡିକ ଭାସିଉଠୁଚି; ସବୁ ଥର ତାକୁ ଝିଙ୍କିବାକୁ ମୁଁ ଚେଷ୍ଟାକରି ବିଫଳ ହେଲିଣି ।

ଭୋଦୁଆ ମାସର ଧଳା ବଉଦ ମଝିରେ ମଝିରେ ଟିକିଏ ଛାଇ ପକାଇ ପୁଣି ଭାସି ଯାଉଛି । ଟାଇଁ ଟାଇଁଆ ଖରା । ଗଡ଼ିଆର ନିର୍ମଳ ପାଣିରେ ନୀଳ ଆକାଶ ନିଜର ମୁହଁ ଦେଖୁଛି; ପାଣି ଭିତରେ ବନଶୀର ଧଳା କାଠିଖଣ୍ଡ ଦୂରକୁ ଦୂରକୁ ପଶିଯାଉଛି । ସେଥି ସଙ୍ଗେ ବନଶୀ-ସୂତାଟା ଟାଣି ହୋଇଯାଇ ବନଶୀଖଡ଼ାଟା ଧନୁ ପରି ବଙ୍କା ହୋଇଗଲାଣି । ଏଇଥର ନିଷ୍ଠେ ସେଇ ମାଛଟାର ଚତୁରତା ଆସି ପଦାରେ ପଡ଼ିଯିବ । ପାଗ ଭିଡ଼ା ହେବ ମାଛ-ଶିକାରୀ ମୁଣ୍ଡରେ !

ଦେହର ସବୁତକ ଜୋର୍ ଖଟାଇ ବନଶୀ-ସୂତାକୁ ଝାଙ୍କି ଆଣିଲି; କିନ୍ତୁ ଏ କ'ଣ ! ପୋଖରୀ ଭିତରୁ ବନଶୀକଣ୍ଟାରେ ମାଛ ଲାଗିବା ବଦଳରେ ପୋଖରୀ ଉପରେ ଆସି ଲାଗିଲା ଠିକ୍ ପାସୋରୀ ଗଳାରେ ! ସେଥି ସଙ୍ଗେ ତା'ର ଛାତିଫଟା ଚିତ୍କାର—''ବୋଉଲୋ ମରିଗଲି !''

ପାସୋରୀ ଉପରେ ରାଗିଯାଇ ମୁଁ ବ୍ୟସ୍ତ ବିବ୍ରତ । ମୋର ପ୍ରତିଦ୍ୱନ୍ଦ୍ୱୀ ମତ୍ସ୍ୟଶିକାରୀମାନେ ଯେ ଯାହା ବନଶୀଖଡ଼ା ଛାଡ଼ି ଆସି ତାଟକା ହୋଇ ପଡ଼ିଲେଣି; କିନ୍ତୁ ସେ ପର୍ଯ୍ୟନ୍ତ ମୁଁ ମୋର ବନଶୀଖଡ଼ାଟା ଛାଡ଼ିନାହିଁ । ଛାଡ଼ିଦେଲେ ପାସୋରୀ ବିଚାରୀର ଦଶା କ'ଣ ହୁଅନ୍ତା !

ସେ ''ବୋଉଲୋ ମରିଗଲି'' ଡକା ପକେଇ ଆଗେ ଆଗେ ଚାଲିଛି ବନଶୀକଣ୍ଟା ଲଗାଇ ଗଳାରେ । ସୂତା ସହିତ ବନଶୀଖଡ଼ା ଧରି ମୁଁ ତା'ରି ପଛେ ପଛେ ! ଢିଙ୍କିଶାଳ ପାଖେ ପହଞ୍ଚିଲା କ୍ଷଣି ପାସୋରୀ ବୋଉ ''ମୋ ଝୁଅ ମୋ ଝୁଅଲୋ'' ବାହୁନା ପକେଇ ତଳେ ଆସି ଲୋଟିପଡ଼ିଲା ।

ଶିରୁଭାଇନା ଭଳି ଚାଲାଖ ପିଲା ସୁଦ୍ଧା ବନଶୀକଣ୍ଟାକୁ ପାସୋରୀ ଗଳାରୁ କାଢ଼ିବାକୁ ଅସମର୍ଥ ହେଲେ । କଣ୍ଟା ପାଖରୁ ପାଖରୁ ରକ୍ତଧାର ବୋହିପଡୁଥାଏ ପାସୋରୀର ଗୋରା ତକତକ ଚମ ଉପରେ । ଯେ ଯାଇ କଣ୍ଟା କାଢ଼ିବାକୁ ବାହାରିଲେ, କଣ୍ଟା ସହିତ ପୂଳାଏ ମାଉଁସ ଉଠି ଆସିବାକୁ ଉପକ୍ରମ ହେଉଛି ଓ ତା'ସାଥିରେ ପାସୋରୀର ବିକଳ ଚିତ୍କାର !

କ'ଣ ହେଲା କ'ଣ ହେଲା ବୋଲି ଗାଁଟାର ଏମୁଣ୍ଡ ସେମୁଣ୍ଡଯାକେ ହୁରିପଡ଼ିଗଲା । ସବୁଠାରୁ ବିଚକ୍ଷଣ ସୁନାରୁପା କାରିଗର ବାଞ୍ଛା ବଣିଆ । ବାହା ପୁଆଣିରେ ଗହଣା ଗଢ଼େଇବାକୁ ତା' ଦୁଆରେ ଦିନରାତି ଭାରି ଭିଡ଼ । ତା'ଛଡ଼ା ଦାନ୍ତମୂଳ ଦରଜ ହେଲେ ଦାନ୍ତମାଢ଼ିରେ ଗରମ ସେକ ଦେବାଠାରୁ ଆରମ୍ଭ କରି ଘାଆ ବଥ ଫୋଡ଼ିବା ପର୍ଯ୍ୟନ୍ତ ଅସ୍ତ୍ର ଚିକିତ୍ସାରେ ସେ ନିପୁଣ । ପୁଣି ତୋଟିରେ କାହାରି ମାଛକଣ୍ଟା ଲାଗିଲେ କି କାନ ଭିତରେ ବିଛା ପଶିଲେ, ତାକୁ ଚିମୁଟା ଧରି ବିନା ଯନ୍ତ୍ରଣାରେ ସେ କାଢ଼ି ଆଣିପାରେ ।

ଖବର ଗଲା, ତା'ପାଖକୁ । ବାଉଁଶକଣି ପରି ପାତଳା ଚେହେରା । ଚାଲିଲା ବେଳେ ଗୋଡ଼ ଆଙ୍ଗୁଠି ତା'ର ଟୁକ୍‌ଟୁକ୍ ଫୁଟେ । ଅନ୍ଧାର ରାତିରେ ଦାଣ୍ଡ ମଝିରେ ଚେହେରାଟି ତା'ର ନ ଦେଖି ସୁଦ୍ଧା ଲୋକେ ତାକୁ ଆଙ୍ଗୁଠି ଫୁଟାରୁ ଚିହ୍ନି ପାରନ୍ତି । ବାଈଆ ବଣିଆ ନିଶ୍ଚୟ ବନଶୀକଣ୍ଟା କାଢ଼ିଦେବ ବୋଲି ସବୁରି ଦୃଢ଼ ବିଶ୍ୱାସ, ମାତ୍ର ସେ ଆସି ଯେତେ ଚେଷ୍ଟା କଲା, କାହିଁରେ କିଛି ହେଲାନି । ମା'ଝିଅଙ୍କ କାନ୍ଦବୋବାଳି ମଧ୍ୟ ଆହୁରି ବେଶି ବେଶି ଶୁଣାଗଲା । କିଏ ସବୁ କୁହାକୁହି ହେଲେ, ପାସୋରୀ ଆଉ ବଞ୍ଚିବନି । ଏକାବେଳେ ତୋଟି ଭିତରେ କଣ୍ଟା ଲାଖିଛି, ବାହାରିଲେ କ'ଣ ପ୍ରାଣ ଆଉ ତା'ର ରହିବ !

ମନର ଅବସ୍ଥା ମୋର ସେତେବେଳେ କିପରି ଥିଲା, ତାହା ଲେଖିବା ତ ଦୂରେ ଥାଉ, କହିବା ମଧ୍ୟ କଦାପି ସମ୍ଭବପର ନୁହେଁ । ବନଶୀଖଡ଼ା ଛାଡ଼ିଦେଇ ଚୋର ପରି ମୁଁ ସେଠାରୁ ଖସି ଆସି ଦାଣ୍ଡଅଗଣା ଚାଳିତଳେ ଆଖି ବୁଜି ପଡ଼ିଥାଏଁ । ଆଉ ଯେମିତି ମତେ ଶୁଭୁଥାଏ, ଛାତିଟା କେମିତି ମୋର ଦୁଲ୍ ଦୁଲ୍ ହୋଇ ଢିଙ୍କିପରି ପଡୁଚି ! ଗାଁରୁ କେତେ ଲୋକ ସେହି ବାଟେ ବାଡ଼ିପଟକୁ ଯା'ଆସ କରୁଥାନ୍ତି । କଣ୍ଟା କେମିତି ତୋଟିରୁ ତା'ର ବାହାରିବ, ସେଇ ଆଲୋଚନା ସବୁରି ମୁହଁରୁ ଶୁଣିବାକୁ ମୁଁ କାନେଇ ଥାଏଁ । ସବୁରି କଥାରେ ଆତଙ୍କ— ପାସୋରୀ ଆଉ ବଞ୍ଚିବନି ! କାହିଁକି ଏମିତି ହେଲା, କାହିଁକି !

ତାଙ୍କ ଭିତରେ ଶୁଣାଗଲା, ଏକ ପରିଚିତ ଗଳା, ତାହା ମାଷ୍ଟରଙ୍କର ! 'କ'ଣ ହୋଇଛି ଦେଖି' ବୋଲି କହି ବାଡ଼ି ଅଗଣାକୁ ସେ ପଶିଗଲେ । କିଛି ସମୟ ପରେ ଗାଆଁର କେତେ ଜଣ ପୁରୁଖା ଲୋକଙ୍କ ସାଥିରେ ସେଠାରୁ ଲେଉଟିଆସି ହସି ହସି କହିଲେ—

''ଏତିକି ବୁଦ୍ଧି କାହାରିକୁ ତୁମକୁ ପଇଟିଲା ନାହିଁ ! ଦେଖିଲ ତ ? ବନଶୀକଣ୍ଟାକୁ ପଛକୁ ଓଟାରିଲେ ସେ ଭଲା ଶିରା ମାଉଁସ ଦୁହିଁ ନ ଆଣି ଖାଲି ବାହାରି ଆସିପାରେ ? ତାକୁ ଆଗକୁ ଠେଲିବାର ସିନା କଥା । ଦେଖିଲ ତ, କେଡ଼େ ସହଜରେ ବାହାରି ଆସିଲା ?''

ବୁଲି କକେଇ ସେଦିନ ଗୋଟାଏ ବିରାଟ ବନଶୀଖଡ଼ା ଧରି ମୋ ସାଙ୍ଗରେ ମାଛ ମାରୁଥିଲେ; କିନ୍ତୁ କିଛି ନ ପାଇ ସେ ହତାଶ ହୋଇ ପଡ଼ିଥିଲେ ମୋ ଭଳି ପିଲାଟା ପାଖରେ ହାରିଯାଇ । ଶେଷରେ ପରିହାସର ଗୋଟାଏ ଆଳ ତାଙ୍କୁ ମିଳିଗଲା । କହିଲେ ''ଯା' ହେଉ, ପାଣି ଭିତରୁ ମାଛ ନ ଧଇଲେ ହେଲା କ'ଣ । ବନ୍ଧ ଉପରୁ ତ ଗୋଟାଏ ବଡ଼ ମାଛ ଧରାପଡ଼ିଲା ।''

ସମସ୍ତେ ହସିଉଠନ୍ତି ।

ଆଉ କିଏ ଜଣେ କହିଲେ, ''ଏଇଠି ଦେଖୁନ, ମାଛଶିକାରୀ ନିଶ୍ଚିନ୍ତରେ ଶୋଇପଡ଼ିଛନ୍ତି କିମିତି !''

''ପିଲାଲୋକ, ଛାନିଆ ହୋଇପଡ଼ିଥିବ କି ନା । ସେ କ'ଣ ଜାଣିକରି ଏହା କରିଛି ।'' ମାଷ୍ଟରଙ୍କ ସର ! ମୁଁ ଚେଇଁ ଶୋଇବା ଅବସ୍ଥାରେ ତାହା ବାରିପାରିଲି । ସେ ପୁଣି ଏଡ଼େ ଭଲ ମଣିଷ, ମତେ ଏପରି ବିପଦ ଓ ମନସ୍ତାପରୁ ଉଦ୍ଧାର କରି ସୁଦ୍ଧା କ୍ଷମା

ଦେଇପାରିଛନ୍ତି ! ତାଙ୍କ କଡ଼ା ପ୍ରକୃତି ଓ ଛାତ୍ରମାନଙ୍କୁ କଥାକଥାକେ ପ୍ରହାର କରିବା ଅଭ୍ୟାସ ଲାଗି ମୋର ଯେଉଁ ବିଦ୍ୱେଷମୂଳକ ଧାରଣା ତାଙ୍କ ବିରୋଧରେ ଜନ୍ମିଥିଲା, ତାହା ଅକସ୍ମାତ୍ ଏଇ ଗୋଟିଏ ଘଟଣାରେ ହିଁ ଅପସାରିତ ହୋଇଗଲା । ପୁଣି ଶ୍ରଦ୍ଧା, ଭକ୍ତି ଓ ବିନୟରେ ପରିପୂର୍ଣ୍ଣ ହୃଦୟ ମୋର ତାଙ୍କ ଆଡ଼କୁ ଢଳିପଡ଼ିଲା । ସେଇ କଠୋର କର୍କଶ ହୃଦୟ ପୁଣି କେଡ଼େ ଭଲ, କେଡ଼େ ପରୋପକାରୀ ! ଜୀବନଯାକ ଏମିତି ମୋର କେତେ ଯେ ବିଚାରଭ୍ରମ ଘଟିଛି !!

ଅନେକଦିନ ପର୍ଯ୍ୟନ୍ତ କିନ୍ତୁ ପାସୋରୀର ତୋଟି ଘାଆଟା ଶୁଖିଲା ନାହିଁ । ପୁଣି ସେଇଟା ଶୁଖିଗଲା ପରେ ମଧ ଚିହ୍ନଟା ତା'ର ରହିଯାଇଥାଏ । ଆଉ ସେ ଫୁଲଦାଗ ହୋଇ ତୋରାଣି ପିଇଲାବେଳେ ସେଇବାଟେ କେତେ ଟୋପା ତୋରାଣି ମଧ ଥପ ଥପ ହୋଇ ବହିଆସେ । ମନହୁଏ ମୋର ଆପଣା ତୋଟିକୁ କଣା କରି ଫୁଟାଇ ଦିଅନ୍ତି କି !

ପାସୋରୀର ପରିଚ୍ଛେଦଟି କିନ୍ତୁ ଜୀବନରେ ଏତିକିରେ ସରିଗଲା ନାହିଁ । କେଉଁ ଦିନ ସେ ବିଭା ହୋଇଗଲା, ବୋଉ ତା'ର ସଂସାରରୁ ବିଦାୟ ନେଲା, ପୁଣି ଆମ ଦାଣ୍ଡ ଦୁଆରେ ଥିବା ଚାଳିଖଣ୍ଡି ତାଙ୍କର ମାଟିରେ ମିଶି ଶାଗପଟାଳିରେ ପରିଣତ ହେଲା ଗାଁ ଛାଡ଼ି ଦୂରରେ ରହି ତାହା ମୁଁ ଲକ୍ଷ୍ୟ କରିନି । ଦିନେ କିନ୍ତୁ ଅତି ଅପ୍ରତ୍ୟାଶିତ ଭାବରେ ମୋର ଭେଟ ହୋଇଯାଏ ପାସୋରୀ ସାଥିରେ ।

କର୍ମକ୍ଷେତ୍ରରୁ ମୁଁ ସସ୍ତ୍ରୀକ ଫେରୁଥାଏଁ ଗ୍ରାମ ଅଭିମୁଖରେ । ବାଟରେ ଲିଙ୍ଗିପୁର ନଈକୂଳ ଆମ୍ବତୋଟାରେ କିଛି ସମୟ ଶଗଡ଼ରୁ ଓହ୍ଲାଇ ବିଶ୍ରାମ କଲୁଁ । ନଈବନ୍ଧରେ କେତେ ଜଣ ପିଲା ଗାଈ ଚରାଉଥା'ନ୍ତି । ପଚାରିଲି, ''କିରେ ପିଲେ, ଗାଁ ତମର ଏଠାରୁ କେତେ ବାଟ ?'' ସେଠାରେ ଟିକିଏ ସମୟ କଟାଇବାକୁ ଖାଲି ଏଇ ପ୍ରଶ୍ନ ।

ଗୋଟିଏ ପିଲା ଅଣ୍ଟିରେ ମୁଢ଼ି ଭର୍ତ୍ତି କରି ମୁଠାକୁ ମୁଠା ନେଇ ପାଟିରେ ପକାଉଥାଏ । ମୁଢ଼ି ଚୋବାଉ ଚୋବାଉ ସେ କହିଲା, ''ହେଇଟି ପରା, ଏଇ ବନ୍ଧ ଉପରକୁ ଦିଶୁଚି ଆମ ଗାଁ । ତମ ଗାଁ କୁଆଡ଼େ କି ?''

''ଆମ ଗାଁ ବିଶିନାଥପୁର ।'' ଆମ ଗାଁର ବିଶୁଦ୍ଧ ଗ୍ରାମ୍ୟ ଉଚ୍ଚାରଣ କରି ପିଲାଟିକୁ ଜଣାଇଦେଲି ।

ଆଶ୍ଚର୍ଯ୍ୟ ହୋଇ ଦେଖିଲି, ସେ ବଡ଼ ବଡ଼ ଡୋଳା ବାହାର କରି କହୁଚି—''ବିଶିନାଥପୁର ?''

''ହଁ,କାହିଁକି ? କ'ଣ ହେଲା କି ?'' ପଚାରିଲି ତାକୁ !

ପିଲାଟି ଖୁସି ହୋଇ ଜଣାଇ ଦେଲା, ''ବିଶିନାଥପୁର ପରା ମୋର ମାମୁ ଘର ଗାଁ ।''

''ତୁ ଯାଇଛୁ ବିଶିନାଥପୁର ?''

''ହଁ, ମୋ ବୋଉ ନାଁ ପରା ପାସୋରୀ । ତୁମେ ତାକୁ ଚିହ୍ନ ?''

''ଖୁବ୍ ଚିହ୍ନେ । ତୋ ବୋଉକୁ ଡାକି ଆଣିପାରିବୁ ?''

''ହଁ, ହେଇଟି ବନ୍ଧ ଉପରେ ପରା ଆମ ଘର ଦିଶୁଛି । ଟିକିଏ ରହ,ବୋଉକୁ ମୁଁ ଡାକି ଆଣୁଛି ।''

ଗାଣ ଢଗା ପାଞ୍ଚଣ ଖଣ୍ଡି ବୁଲାଇ ସତ କୁସତ ପିଲାଟି ବନ୍ଧେ ବନ୍ଧେ ଦୌଡ଼ିଲା । ଖଣ୍ଡେ କୋତରା ଲୁଗାରେ ଦେହକୁ ଘୋଡ଼ାଇ ପାସୋରୀ ଆସି ଠିଆ ହେଲା ବନ୍ଧ ଉପରେ । ସେମିତି ବଡ଼ ବଡ଼ ଆଖି ଯୋଡ଼ାକ, ତା'ରି ବୋଉ ପରି ଲମ୍ବା ଲମ୍ବା ହାତଗୋଡ଼ ଓ ଚେହେରା । ମୁଣ୍ଡବାଳ ସେମିତି ଫୁର୍ ଫୁର୍ । ତେବେ ତା'ର ଗୋରା ଚମଟା ଏକାବେଳେ ତମ୍ବାଟିଆ ପଡ଼ିଯାଇଛି । ତା'ରି ଭିତରୁ ହାତର ନେଳି ଶିରାଗୁଡ଼ାକ ବି ବାରି ହୋଇ ପଡୁଥାଏ ।

ପାସୋରୀ ଆସି ସେଇ ବନ୍ଧ ଉପରେ ତା' ପୁଅ ପାଖରେ ସଙ୍କୋଚରେ ଠିଆହେଲା । ତଳକୁ ଓହ୍ଲାଇଲା ନାହିଁ ।

ହସି ହସି କହିଲି, ''ପାସୋରୀ, ଆଜି ତ ମୁଁ ବନଶୀ ପକାଉନି ! ତୁ ଏତେ ଦୂରରେ ଠିଆ ହୋଇ ରହିଲୁ କାହିଁକି ?''

ଟିକିଏ ହେଲେ ସେ ହସିଲାନି କି ପାଟି ଖୋଲି ଫିଟାଇଲାନି । କିନ୍ତୁ ତା'ର ଢେଗା ଡୋଳା ଯୋଡ଼ାକରୁ ଗଙ୍ଗା-ଯମୁନା ଭଳି ଦୁଇ ଧାର ଲୁହ ଗଡ଼ିପଡ଼ିଲା—ଠିକ୍ ଯେମିତି ପଛପଟେ ତା'ର ବୋହି ଯାଉଥାଏ ବୈଶାଖର କୁଆଖାଇ ନଈଟି ଦୟା ଭାର୍ଗବୀର ଯୋଡ଼ିଏ ସୂକ୍ଷ୍ମ ଧାରରେ !

ପରେ ସେଇ ଘଟଣାର ପ୍ରଧାନ ସାକ୍ଷୀ ମୋର ଗୃହିଣୀ ମୋଠାରୁ ଅତୀତର ବନଶୀ ମାଛଧରା କାହାଣୀ ଶୁଣି ଟିକିଏ ତାଚ୍ଛଲ୍ୟ ସ୍ୱରରେ କହିଲେ, ''କେତେ ଲୋକଙ୍କ ସାଥିରେ ଯେ ତମର କେତେ ପ୍ରକାରର ଭାବଲାଭ !''

ମାତ୍ର ଦୁନିଆ ଭିତରେ ଯେତେ ଲୁହ ବା ଯେତେ ହସର ହେତୁ ମୁଁ ଆଜିଯାକେ ବୁଝିପାରିନି, ପାସୋରୀର ସେ ଦିନର ଲୁହଧାର ତା'ରି ଭିତରୁ ଗୋଟିଏ ।

ଆଜି ମୋର ମନେହୁଏ ସେ ଲୁହଧାର ଦୁର୍ବଳର ନୁହେଁ, ସବଳର । ତାହାହିଁ ସ୍ମୃତି ନାମ ଘେନି ଚିରନ୍ତନ । ଆଉ ପାସୋରୀର ଦାରିଦ୍ର୍ୟ ମଧ୍ୟ ସେହି ସ୍ମୃତି ଘେନି ଆଜି ବଳିଷ୍ଠ, ନିର୍ମଳ, ସୁନ୍ଦର, ମଧୁର ଓ ନିଷ୍ପାପ । ଅର୍ଦ୍ଧାଧିକ ଶତାବ୍ଦୀ ପୂର୍ବେ ଶୈଶବର ସେଇ ଅନାବିଳ ପରିଚୟ ଭିତରେ ରହି ସୁଦ୍ଧା ଅବସ୍ଥାର ଯେଉଁ ଅପ୍ରତିହତ ଦାରିଦ୍ର୍ୟ ମନର ବଳିଷ୍ଠତା ପୁଣି ଅନ୍ତରର ଐଶ୍ୱର୍ଯ୍ୟକୁ ଅକ୍ଷୁଣ୍ଣ ଓ ଭେଦଶୂନ୍ୟ କରି ରଖି ଆସିଛି । ସମୟର ସୁଦୀର୍ଘ ବ୍ୟବଚ୍ଛେଦକୁ ସ୍ୱୀକାର କରି ନାହିଁ ତିଳାଧାନ ମାତ୍ର !



# ପୁଅଟିଏ ! ପୁଅଟିଏ !

ବନଶୀ ପକାଇବାଟା ମୋର ଏକ ପ୍ରକାର ବିଳାସ ଓ ଅଭ୍ୟାସ ହୋଇ ପଡ଼ିଥାଏ । ମାଛ ଧରିବାର ଯେତେ ଉପାୟ ଅଛି, ବନଶୀ ହେଲା ସବୁଠାରୁ ସୋଜା । ପାଣି ଭିତରେ ଗୋଡ଼ ନ ଦେଇ ବି କେତେ ଗହୀରରୁ ଦେଖା ନ ଯାଉଥିବା ମାଛକୁ ଛାଣିଆଣି ହୁଏ । ପୁଣି ତାହା ବନଶୀକଣ୍ଟାର ଫାଶିରେ ଝୁଲି ଛଟପଟ ହେଉଥିଲା ବେଳେ ଦେଖିବାକୁ କି ମଜା ! କିଏ କେବେ ଏଇ ବିଚିତ୍ର ଯନ୍ତ୍ରର ଉଦ୍ଭାବନ କଲେ, ବିଶ୍ୱ ଇତିହାସରେ ତାଙ୍କ ନାମ ଲେଖା ନାହିଁ । ପ୍ରସ୍ତର ଯୁଗରେ ମଣିଷ ଯେବେ ପଥରରେ ଲଙ୍ଗଳ ଓ ହାତ ହତିଆର ବ୍ୟବହାର କରୁଥିଲା, ସେତେବେଳେ ସୁଦ୍ଧା ପଥର ତିଆରି ବନଶୀ ଥିଲା ବୋଲି ଅନେକ ପରେ ଜାଣିଲି ।

ଆହାର ଖୋଜିବାକୁ ମଣିଷ ଜଳ ସ୍ଥଳ ଆକାଶ କିଛି ହେଲେ ବାକି ରଖିନି । ପଶୁ ପକ୍ଷୀ ମାଛ ସବୁ ତ ତା'ର ଶିକାର ସାମଗ୍ରୀ । 'ସ୍ୱଚ୍ଛନ୍ଦ ବନଜାତେନ ଶାକେନାଃକିପି ପ୍ରପୂର୍ଯ୍ୟତେ' ବୋଲି ହିତୋପଦେଶରେ ଥିଲେ ବି କିଏ ଭଲା ଜଣା କି ଅଜଣାରେ ନିଜ ଦଗ୍‌ଧୋଦର ଲାଗି ପାତକ ନ କରି ରହିପାରେ ?

ଗଣେଶ କକେଇ ହରିଭକ୍ତିଆ । ଅଲେଖ-ଦୀକ୍ଷା ନେଇଥାନ୍ତି କୁମ୍ଭୀପଟୁଆ ବାବାଜିଙ୍କଠାରୁ । ସେମାନେ ଅଣ୍ଟାରେ ଗେରୁଆ କନା ବା ମୋଟା ଦଉଡ଼ି ଗୁଡ଼େଇ ବଡ଼ ବଡ଼ ତାଳପତ୍ର ପଙ୍ଖା କାନ୍ଧରେ ଥୋଇ ମଝିରେ ମଝିରେ ଆମ ଗାଁକୁ ଆସନ୍ତି । ଗଣେଶ କକେଇଙ୍କ ସଙ୍ଗେ ଆଉ କେତେ ଜଣ ତାଙ୍କ ପାଖରେ ଯାଇ ରୁଣ୍ଡ ହୁଅନ୍ତି ।

ବାବାଜିମାନେ ବାହାରିଯିବା ପରେ ଗଣେଶ କକେଇ ନିଜ ଝିଅ ଧନୀକୁ ଡାକିନେଇ ଦାଣ୍ଡପଟ ବଣିଆ-ଗଡ଼ିଆକୁ ମାଛ ଚିମୁଟିବା ପାଇଁ ଯାଆନ୍ତି । ଧନୀ ଜଗିବସେ ଗଡ଼ିଆ ବନ୍ଧ ଉପରେ । ବାପା ତା'ର ଗୋଟିକ ପରେ ଗୋଟିଏ ଲେଖାଁ କଉ, ଗଡ଼ିଶା, କେରାଣ୍ଡି, ପୋହଳା, ସାନ ମାଛ ଚିମୁଟି ଆଣି ବନ୍ଧ ଉପରକୁ ଫିଙ୍ଗିଦେଇ ଡାକନ୍ତି, "ଧନୀ ଲୋ ମାର୍ ।" ଭାବନ୍ତି ଏ କାର୍ଯ୍ୟରେ ଯେଉଁ ଜୀବହତ୍ୟା ଦୋଷ ହେଲା, ସେଥିପାଇଁ କାହାରି ଦାୟିତ୍ୱ ନାହିଁ ।

ସେ'ତ ନିଜେ ପାଣିରୁ ଛାଣି ଉପରକୁ ଫିଙ୍ଗିଦେଲେ ନ ମାରି । ଧନୀ ମଧ ପିଲାଲୋକ, ସେ ଅବା ଜାଣେ କ'ଣ । ପିଲାକୁ ତ ସାତଖୁଣି ମାଫ୍ । ମାର୍କଣ୍ଡେୟ ପୁରାଣରେ ପରା ଅଛି, ଯମପୁରୀରେ ଗୋଟିଏ ପିଲାକୁ ଶୂଳି ଖୁଣ୍ଟରେ ବସାଇ ଯମଦୂତମାନେ ଦଣ୍ଡ ଦେଉଥିଲେ ।

ମାର୍କଣ୍ଡେୟ ଋଷି ଯମପୁରୀ ଦେଖିବାକୁ ଯାଇ ପଚାରନ୍ତି, ସେ ପିଲାଟିର ଦୋଷ କ'ଣ । ଯମଦୂତ କହିଲେ, ସେ ପିଲା ଗୋଟିଏ ଝିଣ୍ଟିକାକୁ କଣ୍ଟାରେ ଫୋଡ଼ି ଖେଳୁଥିବା ହେତୁ ସେହିପରି ଦଣ୍ଡ ପାଉଛି । ଋଷି ବୁଝାଇଦେଲେ, ଏହା ଅନ୍ୟାୟ । କାରଣ ଜଗତରେ ସବୁ

ବିଷୟବସ୍ତୁର ବର୍ଣ୍ଣନା ଅଛି, କେବଳ ପିଲାଙ୍କ ଖେଳ ଯେ ଅବର୍ଣ୍ଣନୀୟ ! ବିଶ୍ୱଦ୍ରଷ୍ଟା ମାର୍କଣ୍ଡେୟଙ୍କ ଯୁକ୍ତି ଶୁଣି ଯମରାଜା ପିଲାଟିକୁ ଦଣ୍ଡରୁ ମୁକ୍ତି ଦେଇଥିଲେ ।

ଏଇ କାରଣରୁ ବୋଧହୁଏ ପୃଥିବୀର ଅନେକ ପ୍ରାପ୍ତବୟସ୍କ ଲୋକ ଖାଲି ତ ପିଲାଙ୍କୁ ଭଲପାଇଁ ତାଙ୍କ ସଙ୍ଗେ ମିଶନ୍ତି ନାହିଁ, ନିଜେ ପିଲା ହେବାକୁ ବି ଲୋଡ଼ନ୍ତି । ତା'ଫଳରେ ସେମାନେ ଭିଆଇଥିବା ବଡ଼ ବଡ଼ ଦୋଷ, ତ୍ରୁଟି, ପାପ, ଅପରାଧ ଯେମିତି ଅବା ଯମରାଜା କ୍ଷମା କରିବେ ! ଆଉ ମୋର ପିଲାଦିନ କଥା ବର୍ଣ୍ଣିବାରେ ଅବଚେତନ ମାନସରେ ସେଇ ଭାବ ଅବା ଲୁଚି ନ ଥିବ କାହିଁକି—ଯଦିବା ମୁଁ ବଡ଼ଲୋକ ଯାହାଙ୍କୁ କହନ୍ତି, ତାହା ନୁହେଁ ?

ଲୋକନାଥ ଜକେଇ କହନ୍ତି, ''କିନ୍ତୁ ନୃସିଂହପୁରାଣରେ ଅଛି, ମାଛ ମାରିବା ମହାପାପ । କିନ୍ତୁ ମାଛଠାରୁ ନିରୀହ ପ୍ରାଣୀ ସଂସାରରେ ଆଉ ନାହିଁ; କିନ୍ତୁ ଛେଳି, ମେଣ୍ଢା, ହରିଣ, ପଶୁଜନ୍ତୁମାନେ ବାଡ଼ିବଗିଚା ଜମି ଫସଲ ନଷ୍ଟ କରନ୍ତି । ଚଢ଼େଇମାନେ ବି ସେମିତି । ହେଲେ ମାଛ ତ କାହାରି କିଛି ଲୋକସାନ କରେ ନାହିଁ, କିନ୍ତୁ ଓଲଟି ତାହା ପାଣିରୁ ପୋକମାଛି ଖାଇ ତାକୁ ପରିଷ୍କାର ରଖେ । ସେଭଳି ଜୀବକୁ ହତ୍ୟା କଲେ କିନ୍ତୁ ତା'ଠାରୁ ବଡ଼ ପାପ ଆଉ କିଛି ନାହିଁ ।''

ବହୁତ 'କିନ୍ତୁ' ଲଗାଇ ସେ କଥା କହନ୍ତି ଓ କୌଣସି ଦିନ ମାଛ ତରକାରି ନ ହେଲେ ତାଙ୍କୁ ଭାତ ରୁଚେ ନାହିଁ । ବୋଧହୁଏ ଆପତ୍ତି ତାଙ୍କର ଖାଲି ମାଛ ମାରିବାରେ, ଖାଇବାରେ ନୁହେଁ । ମାତ୍ର ଦୀନବନ୍ଧୁ ସ୍ୱାଇଁ ମାରିବା ଓ ଖାଇବା ଦୁଇଟିଯାକ କ୍ରିୟାକୁ ପୂରା ସମର୍ଥନ ଜଣାଇ ଏକାବେଳେ ଜଗନ୍ନାଥ ଦାଶଙ୍କ ଶ୍ରୀମଦ୍‌ଭାଗବତରୁ ପଦ ଉଦ୍ଧାର କରି କହେ, ''ଆଜ୍ଞା—

'ଜୀବ ମାରିଣ ମାଂସ ଖାଇ
ସେ ଜୀବ ବୈକୁଣ୍ଠେ ବସଇ ।'

ଦୀନବନ୍ଧୁ କେବଳ ମାଛ ମାରିବାରେ ଓସ୍ତାଦ୍ ନୁହେଁ । ବେଶି ଓସ୍ତାଦ୍ ଛେଳି ମେଣ୍ଢା ମାରିବାରେ । ରଜ ଦଶହରାରେ ଗାଁ ଭିତରେ ଭୋଜିଭାତ ହେଲେ ଖାସି କାଟିବା ଦରକାର ପଡ଼େ । ସେ କାର୍ଯ୍ୟପାଇଁ ଦୀନବନ୍ଧୁ ହୁଏ ଅଗ୍ରଣୀ । କାଟିଦେଲେ ତ ରକ୍ତ ବାହାରିଯାଇ ମାଂସ ସୁଆଦ ହେବନି । ଦୀନବନ୍ଧୁକୁ ସେ କାଇଦାଟି ଭଲରୂପେ ଜଣା । ଛେଳିର ଜିଭ ତଳେ ସାହାଡ଼ାପତ୍ର ଗୁଞ୍ଜି ଏମିତି ଖଞ୍ଜରେ ସେ ତା'ର ବେକ ମୋଡ଼ିଦିଏ ଯେ, ସର ଶବ୍ଦ କିଛି ନାହିଁ । ପୁଣି ଏମିତି ଜୋର୍‌ରେ ତାକୁ ମାଡ଼ିବସେ ଯେ, ଗୋଡ଼ ଖାଲି ତା'ର ଅଳ୍ପ ଛଟପଟ ହେଉଥିବା ଦେଖାଯାଏ ।

ନୃଶଂସ ଦୀନବନ୍ଧୁର କାର୍ଯ୍ୟକୁ ନାପସନ୍ଦ କରନ୍ତି ସ୍କୁଲମାଷ୍ଟର ଅଲାଭାଇନା—''ଆରେ ମୂର୍ଖ ! ତୁ ଭାବିଛୁ, ଏମିତି ଜୀବ ମାରି ଆଉ ତା'ର ମାଂସ ଖାଇ ତୁ ବୈକୁଣ୍ଠରେ ବସିବୁ ପରା !'' ସମସ୍ତେ ହସି ପକାନ୍ତି । ଭାଗବତର ଠିକ୍ ଅର୍ଥ କିନ୍ତୁ ଦୀନବନ୍ଧୁ ବୁଝେ, ଯଦିବା ସେ ମାଷ୍ଟରଙ୍କ ପାଖେ କେଉଁ ଦିନ ବସି ଖଡ଼ି ଧରି ନାହିଁ । ସେ କର ଯୋଡ଼ି ଜଣାଏ ।

''ନାହିଁ ତ ଆଜ୍ଞା, ମୁଁ କ'ଣ ସେ କଥା କହିଲି ! ମୁଁ କହେଁ କ'ଣ କି ଯେଉଁ ଜୀବକୁ ମାରି ପୁଣି ତା'ର ମାଂସ ଖାଇ ମୁଁ ତାକୁ ବୈକୁଣ୍ଠରେ ବସାଇଦେଲି, ମୋ ମଲାପରେ କ'ଣ

ମତେ ଟିକିଏ ବୈକୁଣ୍ଠରେ ବସାଇବାକୁ ସେ ସୁପାରିସ କରିବନି ! ଅଲବତ୍ କରିବ । ନୁହେଁ କି ?

ରୋକ୍‌ଠୋକ୍ ମାମଲତ କଥା କହିବାରେ ଦୀନବନ୍ଧୁ ଖୁବ୍ ପାରଙ୍ଗମ । ବେହେରା ଆଣି ଜକେଇଙ୍କ ପାଖେ ଦାନ୍ତକାଠି ପାଣିଢାଳେ ଥୋଇଦେଇ ଯାଏ ।

''ଚୁପ୍ କର ଦୀନା । ତୁ ଯେ ଗୋଟାଏ କଂସେଇ, ସେ କଥା ଭଲା କିଏ ନ ଜାଣେ । ବ୍ରାହ୍ମଣପିଲା ହୋଇ ବନଶୀ ପକେଇ ମାଛ ମାରିବା କଥା ପଡ଼ିଛି, ତୁ ଯାଇ ଉଠିଲୁଣି ଛେଳି ମରାଠେଇଁ ।''ଲୋକନାଥ ଜକେଇ ତାଙ୍କ ବିଷିଆଙ୍ଗୁଠି ଦେଖାଇ ଦୀନାକୁ ତୁନି କରନ୍ତି, ଦୀନା ତାହାର ବାଉଁଶ ଠେଙ୍ଗାଟି ଗୋଡ଼ ପାଖକୁ ଗଡ଼ାଇ ଆଣି ବସି ରହେ ନିରବ ନିର୍ବିକାର ହୋଇ ।

''ଆଚ୍ଛା, କହିଲ ମାଷ୍ଟ୍ରେ, ତୁମେ ତ ଏତେ ଶାସ୍ତ୍ର ପୁରାଣ ପଢ଼ିଚ, ବନଶୀ ପକାଇବା କଥା ଭଲା କେଉଁ ଶାସ୍ତ୍ରରେ ଲେଖା ଅଛି ?'' ପଚାରନ୍ତି ଲୋକନାଥ ଜକେଇ । ବନଶୀଟା ଯେ ମଣିଷର ଆଦିମ ଆବିଷ୍କାର ପୁଣି ଆଧୁନିକ ଯୁଗରେ କଳବନଶୀ ଆଦି କେତେ ପ୍ରକାର ବୈଜ୍ଞାନିକ ଉନ୍ନତି ତା'ର ଘଟିଲାଣି ଏବଂ ଆଙ୍ଗ୍‌ଲିଂଟା ପୃଥିବୀର ସବୁ ଦେଶରେ ଏକ ପ୍ରଗତିଶୀଳ ବ୍ୟସନ, ତାହା ସେମାନେ ଜାଣି ନ ଥିଲେ ।

ପ୍ରାଚୀନ ଓଡ଼ିଆ କବିତାର ଅନେକ ଛାନ୍ଦ ସଙ୍ଗୀତ ମାଷ୍ଟରଙ୍କର ମୁଖସ୍ଥ । ସେ କହନ୍ତି, ''ନାହିଁ କାହିଁକି, ସବୁ ସାହିତ୍ୟର ମୂଳ କଥା ହେଲା ପ୍ରେମ ଆଉ ଶେଷ କଥା ହେଲା ତ ଭକ୍ତି । ଏ ଦୁଇଟିଯାକ କଥାରେ ତ ବନଶୀ ଉପମାଟା ଦିଆଯାଇଛି !''

''ସତେ ନା କ'ଣ ? ବୋଲଇଲ ଦେଖି ପଦୁଟିଏ ।'' ଜକେଇଙ୍କର ଆଗ୍ରହ ବଢ଼େ । ଦୀନବନ୍ଧୁ ତାଙ୍କୁ ସମର୍ଥନ କରି ଅବା ତାଳି ଦୁଇଟା ମାରିଦିଏ; କିନ୍ତୁ ସେ ତାଳିରେ ତା' ନାକ ପାଖରେ ଅକାରଣ ଗୀତ ଗାଇ ଉଡୁଥିବା ଗଣଗଣିଆ ମାଛିଟାକୁ ଭାରି ବିରକ୍ତ ହୋଇ ସେ ହତ୍ୟା କରେ । ବହୁ ଅକାରଣ କବିଙ୍କ ପରି ମାଛିଟା ଆପଣା ଗୀତ ଆପେ ଶୁଣି ଆଉ ଅଲକ୍ଷ୍ୟରେ ଅନ୍ୟର ବିରକ୍ତି ଜନ୍ମାଇ ଧୂଳିରେ ମିଶିଯାଏ ।

ଗଣଗଣିଆ ମାଛିଠାରୁ ଢେର ଖରାପ ଘାଗଡ଼ା ଗଳାରେ କିନ୍ତୁ ମାଷ୍ଟ୍ରେ ''ବିଦଗ୍ଧ ଚିନ୍ତାମଣି''ରୁ ଗୋଟିଏ ପଦ ସ୍ୱର ଲୟାଇ ବୋଲାନ୍ତି ।

''ନୁହଇ ବଡ଼ଶୀ, ବଳେ ମନ ମୀନ ନିଏ ଆକର୍ଷି''—ଲୀଳାମୟ ରାଧାକୃଷ୍ଣ ପ୍ରେମକୁ ଏଠାରେ ବଡ଼ଶୀ ସହିତ ପୁଣି ମନକୁ ମାଛ ସହିତ ତୁଳନା କରାଯାଇଛି ।'' ବ୍ୟାଖ୍ୟା କରି ଅର୍ଥ ବୁଝାଇ ଦିଅନ୍ତି ମାଷ୍ଟର ଆପଣେ ।

''ବାଃ; ଖାସା ପଦୁଟିଏ ତ ବୋଲିଲ । ଏମିତି ଗୀତ ସବୁ ଅଛି ନା ?''

ଉତ୍ସାହିତ ହୋଇ ମାଷ୍ଟ୍ରେ କହନ୍ତି, ''କ'ଣ ନାହିଁ ଆମ ପ୍ରାଚୀନ ସାହିତ୍ୟରେ, କହିଲ । ହେଲେ ଆଜିକାଲି ପାଠପଢୁଆ ଲୋକ ଏସବୁକୁ ସୁଖ ପାଉ ନାହାନ୍ତି ।''

''କାହିଁକି ?''

''କାହିଁକି ଆଉ କ'ଣ ମ ! ଯେ ପକ୍ଷୀ ଉଡ଼େ ଯେତେ ଦୂର—ସେ ଜାଣେ ତହିଁର ବିଚାର । ଅସଲ କଥା, ତା' ଭିତରକୁ ଗମିଲେ ସିନା ! ଆଜିକାଲି ତ କବିତା ଲେଖା ହେଉଛି—

ସଜନା ଗଛମୂଳେ କୁଡ଼େଇଲି ପାଉଁଶ
କାହିଁ ଗଲୁ ଲୋ ଝୁର୍‌ଝୁରୀ ମୁଣ୍ଡୀ ।

ଦୀନବନ୍ଧୁ ଏମିତି ମୁହଁ ମେଲାକରି ହସେ ଯେ, ଡାକ୍ତରଙ୍କୁ ସେତେବେଳେ ପରିଷ୍କାର ତା'ର ଘଣ୍ଟିକା ଦେଖି ପରୀକ୍ଷା କରିବାକୁ ବି ଖୁବ୍ ସହଜ ହୁଅନ୍ତା । କକେଇଙ୍କ ଦାନ୍ତମୂଳେ ଅର୍ଦ୍ଧଚର୍ବିତ ଦାନ୍ତକାଠି ଖଣ୍ଡ ସୁଦ୍ଧା ପଦାକୁ ଦେଖାଯାଏ ।

ଉତ୍ସାହିତ ମାଷ୍ଟ୍ରଙ୍କ ମୁହଁରୁ ପୁଣି କଥା ବାହାରେ—କଥା ନୁହେଁ ତ ଗୀତ—

କିଶୋରୀଙ୍କର ମନ 'ମୀନକୁ ଏ ବଚନ-
ମିଷ ବଡ଼ିଶ ଲାଠି ଛାଟିଲା ରେ ।'

ସାଧୁ କକେଇ, ବାଆ କକେଇ, ଶିନୁ ଭାଇନା, ସଦେଇ ବାରିକ ସଡ଼କ ଉପରୁ ଆସି ଦାଣ୍ଡରେ ଗଲାବେଳେ ପିଣ୍ଡା ଉପରକୁ ଉଠି ଆଲୋଚନାରେ ଯୋଗ ଦିଅନ୍ତି । ସାଧୁ କକେଇ ନିଜେ ଜଣେ ବିଖ୍ୟାତ ଗାୟକ । ଆମ ଗାଁକୁ ଲାଗି 'ଗାରଡ଼ି ପଞ୍ଚାଣ-ଗୋଟିପୁଅ' ସଙ୍ଗୀତ ଦଳରେ ସେ ବେହେଲା ବଜାଇଲାବେଳେ ତାଙ୍କ କଣ୍ଠ ଆଉ ବେହେଲା ସ୍ୱରର ଫରକ ବାରି ହୁଏ ନାହିଁ ।

''କହିଲ ଦେଖି ସାଧୁ, ଏ ପଦଟା କେଉଁଠୁ ଆସିଛି, କିଏ ସେ ତା'ର କବି ?'' ଦାନ୍ତ ଘଷିସାରି ଲୋକନାଥ କକେଇ ଦାନ୍ତକାଠିଟାକୁ ଦି'ଫାଳ କରି ଚିରିଦେଇ ପିଣ୍ଡାତଳକୁ କୁଳୁକୁଞ୍ଚା ପକାନ୍ତି । ଜିଭ ଛେଲିବା କାମଟା ବାକି ଥାଏ ।

ମୁରୁକି ହସି ସାଧୁ କକେଇ କହନ୍ତି, ''ଏ ପଦ ଆଉ ଆସିବ କେଉଁଠୁ ? ଏ ତ ଜଣେଇ ଜଣା—କବିସୂର୍ଯ୍ୟଙ୍କ ପଦ ପରା ! କବି ସିନା ନିଜ ନାଁରେ ଭଣିତା କରି ନାହାନ୍ତି, ହେଲେ ନିଜେ କ'ଣ ଲୁଚିପାରିବେ !''

''ନିଜ ନାଁରେ ଭଣିତା କରି ନାହାନ୍ତି, ଆଉ ତେବେ କାହା ନାଁରେ ମ ?

ଲୋକନାଥ କକେଇଙ୍କୁ ହରିବଂଶ, ନୃସିଂହପୁରାଣ, ରାମାୟଣ, ମହାଭାରତ ଛଡ଼ା ଆଉ କବିଙ୍କ ରଚନା ବିଷୟ ବେଶି ଜଣା ନାହିଁ । ତାଙ୍କ କୌତୂହଳ ନିବୃତ୍ତି ପାଇଁ ସାଧୁ କକେଇ ଗୀତର ଶେଷ ପଦଟିକୁ ପୂରଣ କରି ଘୋଷାଟିକୁ ମଧ ବୋଲି ଦିଅନ୍ତି—

କିଶୋରୀଙ୍କର ମନ                ମୀନକୁ ଏ ବଚନ
ମିଷ-ବଡ଼ିଶ ଲାଠି ଛାଟିଲାରେ ।
ଅଷ୍ଟ ଦୁର୍ଗ ଭୂପତି                ମିଳିନ୍ଦ ସେ ଦମ୍ପତି
ପଦାବ୍ଜ ମକରନ୍ଦ ଚାଟିଲାରେ—

ଚରଣାୟୁଧବୃନ୍ଦ ରଟିଲା ରେ
ଅରବିନ୍ଦ ହିଁ ବନ୍ଧୁ ଫୁଟିଲା ରେ
କର କରୁଣା ବୋଲି ଯେତେ ଚାଟୁ ରଚିଲି
ଗୁମାନ-ଗଣ୍ଠିଟି ନ ଫିଟିଲା ରେ ।''

ବାଆ୍ଠା କକେଇ ଗାମୁଛାଟାକୁ ଗୁଡ଼େଇ ଦି'ଗୋଡ଼କୁ ଛାକି ଏମିତି ଖଞ୍ଜାରେ ପିଠିପଟୁ ଆଣି ଫାଶଟାଏ ପକାଇଥାନ୍ତି ଯେ, ସତେ ଯେମିତି ସେ ନିଜକୁ ଗୋଟିଏ ଚୌକି ତିଆରି କରିଛନ୍ତି । ସେଇ ଫାଶଟାକୁ ଫିଟାଇ ଗାମୁଛାରେ ପିଠି ଝାଡ଼ିହୋଇ ବାଆ୍ଠା କକେଇ କହନ୍ତି, ''ପ୍ରକୃତରେ ସାଧୁଆ ନା କଣ୍ଠରେ ଗଛରୁ ପତର ଖସିପଡ଼ିବ । ଏଇ ଦେଖିଲ ପିଣ୍ଡାତଳେ ଗାଈ ବାଛୁରୀଗୁଡ଼ାକ ବନ୍ଧା ହୋଇ କାନ ଡେରିଛନ୍ତି କେମିତି !''

କୌଣସି ସଙ୍ଗୀତ ଆଖଡ଼ା ଦଳରେ ନ ଥିଲେ ବି ବୈଠକୀ ଗାଉଣାରେ ବାଆ୍ଠା କକେଇ ଜଣେ ଭଲ ଗାୟକ । ଦେଖିବାକୁ ଯେମିତି ଲମ୍ବା ଚୌଡ଼ାରେ ପସନ୍ଦିଆ, କଥାବାର୍ତ୍ତାରେ ସେମିତି ବଡ଼ପାଟିଆ । ବାଟୁଳିଖଡ଼ା ଧରି ନଡ଼ିଆବାଡ଼ିରେ ସେ ପଶିବା ମାତ୍ରେ ହନୁମାଙ୍କଡ଼ଗୁଡ଼ାକ ହୁଙ୍କାର ଛାଡ଼ି ଏ ଗଛରୁ ସେ ଗଛକୁ ଡେଇଁ ପଳାନ୍ତି । ଚୈତ୍ରପୂର୍ଣ୍ଣମୀ ମେଳନ ରାତିରେ ନାଗାଭିଡ଼ା ହୋଇ ତାଙ୍କ ପାହୁଲ ସାଥିକୁ ମୁହମୋଡ଼ା ପୁଣି ଆଖି ମୁରାଟ ଦେଖି ଡମାଭୋଇ ଭଳି ସାହସୀ ଲୋକ ବି ଚମକିପଡ଼େ । ବାଟୁଳିଖଡ଼ା, ବନଶୀଖଡ଼ା, ନାଗାଭିଡ଼ା, ଗୀତବୋଲା, ପଖାଉଜବଜା ସବୁଥିକି ସେ ପାରଙ୍ଗମ । ରାତି ଘଡ଼ିକ ସରିକି ବିଲରୁ ଲେଉଟି ଗାଁମୁଣ୍ଡ ବଣଗଡ଼ିଆ ତୁଠରେ ଗୋଡ଼ ଧୋଉ ଧୋଉ ଗଳାରୁ ତାଙ୍କର ବାହାରି ଆସେ—''ବିଉଳକୁ ଆଲିଙ୍ଗନ କରି ଜାହ୍ନବୀ ଶୋଭନ'' ଛାନ୍ଦଟି । ଆଉ ଗାଁ ଗୋଟାକ ସେ ସ୍ୱରରେ ଦୁଲୁକି ଉଠେ । ପ୍ରକାଣ୍ଡ ଗୋଡ଼ ଯୋଡ଼ାକ ଧୋଇସାରି ଗାମୁଛାରେ ପୋଛିହେଲା ବେଳେ ସତେ ସେ ସ୍ୱୟଂ—

ବଢ଼ାଇ ଦେଲେ ପୟର
ଭାବଗ୍ରାହୀ ରଘୁବୀର
ପୟରେ କ୍ଷାଳିତ କରି ବସନେ ପୋଛି !

ଖାଲି ତ ଗୀତ ବୋଲିଦେଇ ବାଆ୍ଠା କକେଇ ସନ୍ତୁଷ୍ଟ ରହନ୍ତି ନାହିଁ, ତା'ର ଅର୍ଥ ବୁଝିବାକୁ ବି ତାଙ୍କର ଚେଷ୍ଟା ଥାଏ ।

''ଆଚ୍ଛା ସାଧୁଆ ନା, ବଡ଼ଶୀ ହେଲା ତ ବନଶୀ, ମନ-ମୀନ କାହିଁକି କହିଛି ?'' ପଚାରନ୍ତି ସେ ।

ସାଧୁ କକେଇ ପରିହାସ କରି କହନ୍ତି, ''ତୁ ନିତି ରାତିରେ ଶୋଇଲା ବେଳେ ମନଟା ତୋର କେଉଁଠି ଥାଏ କହିଲୁ ? ମୀନ ଆଉ ବନଶୀରେ ନୁହେଁ କି ? ପାଣପଣ୍ଡା ଗଡ଼ିଆରେ ମାଛ କେମିତି ବଉଳୁଥିବେ ସେଇୟା କ'ଣ ତୁ ନିଦରେ ଦେଖୁନି କି ?''

ସମସ୍ତେ ହସିପକାନ୍ତି ।

ସଂଶୋଧନ କରନ୍ତି ମାଷ୍ଟ୍ରେ ବେଶ୍ ଗମ୍ଭୀର ହୋଇ, ''ଆହେ, ତା' ନୁହଁ । ଭଗବାନ୍‌ଙ୍କ ଆଦି-ଅବତାର ହେଲା ମୀନ ଅବତାର—

''ପ୍ରଳୟ ପୟୋଧିଜଳେ ଧୃତବାନସି ବେଦମ୍
ବିହିତ ବହିତ୍ର ଚରିତ୍ରମଖେଦମ୍
କେଶବଧୃତ ମୀନଶରୀର ଜୟ ଜଗଦୀଶ ହରେ ।''

ମୀନ ଅବତାର ହୋଇ ପ୍ରଳୟ ଭିତରୁ ସେ ବେଦକୁ ଉଦ୍ଧାର କରିଥିଲେ, ଅତଏବ ସେହି ପ୍ରଳୟ କାଳରୁ ବେଦ ସହିତ ଭଗବାନ୍‌ଙ୍କୁ ଉଦ୍ଧାର କରିବାପାଇଁ ବନଶୀ ପକାଇବା ଆରମ୍ଭ ହେଲା ।'' ସାଧୁ କକେଇଙ୍କ ବ୍ୟାଖ୍ୟାରେ ଚିଡ଼ିଉଠି ମାଷ୍ଟ୍ରେ ବାହାରି ଯାଆନ୍ତି ସ୍କୁଲକୁ । କାରଣ ସେ ମୋଟେ ପରିହାସ ବୁଝିପାରନ୍ତି ନାହିଁ ।

ସେତିକିବେଳେ ଶୁଣାଯାଏ ଏକାଦିକ୍ରମେ ''ଅଅ ଆଆ ଇଇ ଉଉ ଏଐ ଓଔ'' ଢଙ୍ଗରେ ଗୋଟାଏ ଗର୍ଜନ; କିନ୍ତୁ ତାହା ମାଷ୍ଟରଙ୍କ ଡରରେ ପିଲାଙ୍କ ବିଦ୍ୟାଭ୍ୟାସ ନୁହେଁ କି ଓଡ଼ିଆ ଛାନ୍ଦ ଅଥବା କୌଣସି ସଙ୍ଗୀତର ପ୍ରାରମ୍ଭିକ ଆଳାପ ନୁହେଁ—ଲୋକନାଥ କକେଇଙ୍କର ଦାନ୍ତ ଘଷିବା ପରେ ବାକି ପଡ଼ିଯାଇଥିବା ଜିଭ ଛେଲିବା ଶବ୍ଦ ।

ଆଜି ବୁଝୁଚି, ମୋର ବନଶୀ ପକାଇବା ଭିତରେ ପୁଣି ଏତେ ସାହିତ୍ୟ କବିତା ଲୁଚି ରହିଥିଲା । ଆଉ ହୁଏତ ସେହି କ୍ରୀଡ଼ା ଭିତରେ ହିଁ ଗଢ଼ା ହେଉଥିଲା ମୋର ଭବିଷ୍ୟର ସାହିତ୍ୟ ଛଦ୍ମରୂପ ଘେନି । ବନଶୀ ପକାରୁ ଆଉ ଗୋଟିଏ କଥା ଶିଖିଲି ଯେ, ଗୋଟିଏ ଜୀବକୁ ମାରିବା ପାଇଁ ତାକୁ ପ୍ରଲୋଭନ ଦେଖାଇବାକୁ ହୁଏ, ଆଉ ଗୋଟିକୁ ହତ୍ୟା କରି । ସେଥିଲାଗି କେଉଁଠି ବିରୁଡ଼ି ବସା, କିଆନାଡ଼ ଖୋଳି ଖୋଳି ବାହାର କରିବାକୁ ପଡ଼େ । ତା'ଛଡ଼ା ମାଛ ପୁଣି ମାଛ ଖାଇବାକୁ ବେଶି ଆଗ୍ରହୀ । ସେଥିପାଇଁ ''କେରାଣ୍ଡି ଗୁନ୍ଥିଲେ ଶେଉଳ ପଡ଼େ'' ବୋଲି କଥା ରହିଛି । କେଉଁ ଯୁଗରୁ ମଣିଷ ଏ ସବୁ ଆବିଷ୍କାର କଲାଣି । ମାଛ ସଙ୍ଗେ ତା'ର ଏତେ ଦୋସ୍ତି ଯେ, ମଣିଷକୁ ଠକିବା ପାଇଁ ଖୁବ୍ ଚାଲାକ ଚତୁର ମାଛର ବି ଅଭାବ ନାହିଁ ।

କେତେ ଥର ଉଦୁଉଦିଆ ମୁଣ୍ଡଫଟା ଖରାରେ ପୁଣି ଝୁପୁ ଝୁପୁ ଅବା ଅଜସ୍ର ବର୍ଷାରେ ଅସୀମ ଧୈର୍ଯ୍ୟ ଧରି ପୋଖରୀବନ୍ଧରେ ବସି ରହିବାକୁ ହୁଏ ବନଶୀଖଡ଼ା ଘେନି, ଆଉ ଗଭୀର ଏକାଗ୍ରତା ସହ ପାଣି ଉପରେ ଭାସୁଥିବା ଡେରଣ୍ଡା କାଠିକୁ ଚାହିଁ ଚାହିଁ । କାଠିଟା ଟିକିଏ ଦୋହଲିଗଲେ ସାଫଲ୍ୟ ଆଶାରେ ମନ ଖୁସି ହୋଇଉଠେ; ଅଥଚ ସୂତାକୁ ଝିଙ୍କିଆଣି ଦେଖିଲେ, ସେଥିରେ କିଛି ନାହିଁ ! କେବେ ଡେରଣ୍ଡା କାଠିଟା ନାଚିଉଠେ ତାଳ ପକାଇ, ପୁଣି ପାଣି ଉପରେ ଠିଆ ହୋଇଯାଏ ସଳଖ ହୋଇ । ଝିଙ୍କିବା ମାତ୍ରେ ଦେଖାଯାଏ କଣ୍ଟାରୁ ଆହାରତକ ଖତମ କରି ଶିକାର ଭାଗିସ୍ ! ପୁଣି କେବେ କାଠିଖଣ୍ଡି ଧୀରେ ନାଚି ନାଚି ବୁବ୍ କରି ପାଣି ଭିତରେ ବୁଡ଼ିଯାଏ । ଟାଣିଆଣିଲେ କଣ୍ଟାରେ ଝୁଲୁଚି ଗୋଟାଏ କୁଜିଗେଣ୍ଡା ! ପାଖରେ ବସି ବନଶୀ ପକାଉଥିବା ଦୂବ ଭାଇନା ପରିହାସ କରନ୍ତି—

''ସାତ ଚକଟା ପୋଲୁହ ଘଣ୍ଟା
ବିଭୂତି ଭୂଷଣ ଗାଳିସି କଟା
ଚିଲ ପ୍ରସାଦରୁ ସରଗ ଦେଖିଲି
ତୁ ପୁଣି ହଲାଉ ବନଶୀ କଣ୍ଟା !''

ପ୍ରଥମ ଉତ୍ପତ୍ତି ଅବସ୍ଥାରେ ମଣିଷ ଯେ ଏକପ୍ରକାର ମାଛ ଆକାର ଘେନି ଜଳମଗ୍ନ ପୃଥିବୀରେ ବିଚରଣ କରୁଥିଲା, ତା'ପରେ ମର୍କଟାଦି ରୂପ ଧାରଣ କଲା, ଏବେ ସୁଦ୍ଧା ସେ ମତ୍ସ୍ୟାଶୀ ରହିଥିବା ତା'ର ଗୋଟିଏ କାରଣ ହୋଇପାରେ । ଏବେ ସୁଦ୍ଧା ପର୍ବ ନିମିତ୍ତ, ଭୋଜି ଭାତରେ ମାଛ ନ ଲାଗିବାଟା ବଡ଼ ଅଭାବ ରୂପେ ଅନୁଭୂତ ହୁଏ ।

ବାପା ଭାଇନାଙ୍କ ଅମଳରୁ ମାଛ ହିଁ ଆମ ଘରର ଶ୍ରେଷ୍ଠ ବିଳାସ । ମୋର ବନଶୀ ପକାଇବାରେ ତାହା ଯଥେଷ୍ଟ ଉତ୍ସାହ ଯୋଗାଇଥାଏ; କିନ୍ତୁ ଗୋଟିଏ ଘଟଣାରେ ମୁଁ ସେ ଦିଗରେ ଏକାବେଳେ ନିରୁତ୍ସାହିତ ହୋଇପଡ଼ିଲି ।

ଭୋଦୁଅ କି ଅଶିଣ ମାସ । ବାପା, ଭାଇନା ଦୁହେଁ ଆସି ଥାଆନ୍ତି ଗାଁକୁ । ବନଶୀଖଡ଼ା ଧରି ମୁଁ ବାଡ଼ିଗଡ଼ିଆ ତୁଠରେ । ଓଉଗଛ ଛାଇରେ ଗଡ଼ିଆ ପାଣି କାଚପରି ନିର୍ମଳ । ନାଲି କଇଁ ବୁଦାଟିର ମୂଳଯାକେ ପାଣି ଭିତରେ ଦିଶୁଚି । ବନ୍ଧ ଚାରିପଟ ବୁଲି ଦେଖିଲି, ମାଛ କାହିଁ ଆଜି ଧରୁ ନାହାନ୍ତି ! ବାପା, ଭାଇନା ଖାଇବସିଲେ ତାଙ୍କ ପାଖରେ ଟଟକା ମାଛ ପହଞ୍ଚାଇ ପାରିଲେ କେଡ଼େ ଖୁସି ନ ହେବେ ସେ !

ତୁଠ ପାଖ ଓଉଗଛ ତଳକୁ ଆସିଲି । ଚମତ୍କାର ! କଇଁବୁଦା ମୂଳେ ଅସଂଖ୍ୟ ମାଛ ଜାଆଁଳ ! ପବନରେ ଟିକିଏ ଓଉଗଛଟା ଦୋହଲି ଗଲେ ତାଙ୍କ ଉପରେ ସୂର୍ଯ୍ୟକିରଣ ପଡୁଛି । ସେତେବେଳେ ସେମାନେ କେତେ ପ୍ରକାର ବନ୍ଧ ଭାଙ୍ଗି ଖେଳୁଛନ୍ତି, ଆଉ ଝଟକି ଉଠୁଛି ପିନ୍‌କଣ୍ଟା ପରି ତାଙ୍କର ଟିକି ଟିକି ଦେହଟି ମାନ ।

ତାଙ୍କରି ମଝିରେ ପଡ଼ିଲା ମୋର ବନଶୀକଣ୍ଟା । ଆଖି ପିଛୁଳାକେ କଇଁବୁଦା ମୂଳରୁ ଚିହିଁକି ଆସି କଣ୍ଟାଟିକୁ ଗିଳି ପକେଇଲା ଗୋଟାଏ ବଡ଼ ମାଛ । ତା' ସାଥିରେ ପାଣି ଭିତରକୁ ଡେରଣ୍ଡା କାଠିଟା ଟାଣିହୋଇ ଯିବାର ପରିଷ୍କାର ଦିଶୁଥାଏ ।

ଗୋଟିଏ ଝିଙ୍କାରେ ମାଛଟାକୁ ଉପରକୁ ଆଣିଲି । କଣ୍ଟାରେ ଝୁଲି ସେ ଛଟପଟ ହେଉଥାଏ, ଧନୁଷ୍ଟଙ୍କାର ରୋଗୀ ପରି । ଫୁଲି ଉଠିଲା ଛାତିଟା ମୋର ବିଜୟ-ଗର୍ବରେ । ବନଶୀଖଡ଼ା ସମେତ ମାଛଟାକୁ ସେଇ ଅବସ୍ଥାରେ ଝୁଲାଇ ଘର ଭିତରେ ପଶିଲି । କେଡ଼େ ଖୁସି ହେବେ ବାପା, ଭାଇନା ଟଟକା ମାଛଭଜା ଖାଇ !

ସତକୁ ସତ ଦୁହେଁଯାକ ଖାଇ ବସିଥିଲେ । ବନଶୀ-ସୂତାରେ ମାଛକୁ ଝୁଲାଇ ତାଙ୍କ ଆଗରେ ଠିଆହେଲି । ଛଟପଟ ହୋଇ ମାଛ ଟିକିଏ କୁଁ କୁଁ ଶବ୍ଦ କଲାପରି ଶୁଣାଯାଉଥାଏ । ଆଉ ମୋର ଆଖିରେ ଯେମିତି ପୂରି ଉଠୁଥାଏ ଆଖିଏ ହସ ଓ ବାହାଦୁରି !

''କିରେ ଏ କ'ଣ ?'' ଭାତ-ଥାଳିରୁ ମୁହଁ ଟେକି ବାପା, ଭାଇନା ଦୁହେଁ ମୋତେ ଚାହିଁଲେ ।

ଠିକେ ଠିକେ ବର୍ଣ୍ଣନା କଲି ମାଛଟାକୁ ମୋର ଧରିବା କୌଶଳ ।

ଭାତଥାଳିରୁ ହାତ ଟେକି ବାପା ଯେମିତି ମହା ଦୁଃଖ ଓ ବିସ୍ମୟରେ କହିଲେ, ''ଏଡ଼ିକି ଚଣ୍ଡାଳ ତୁ ! ମା' ତାର ଜାଆଁଳ ଖେଳାଉଥିଲା । ତାକୁଇ ଧରି ଆଣିଲୁ, ପିଲାଏ ତା'ର ବଞ୍ଚିବେ କେମିତି ! ତୁ ଏକାବେଳେ ଗୋଟାଏ ବାଳୁଙ୍ଗା ହୋଇଗଲୁ ।''

ମାଛ ତରକାରି ନ ହେଲେ ଯାହାଙ୍କର ଚଳେନି, ମାଛ ପିଲାଙ୍କ ପାଇଁ ତାଙ୍କର ଏପରି ଅନୁକମ୍ପା ବୁଝିବା ମୋ ପକ୍ଷରେ ସେ ଦିନ କଷ୍ଟକର ହୋଇଥିଲା । ବାପା କିନ୍ତୁ ଏତେ ବିରକ୍ତ ହୋଇ ପଡ଼ିଥିଲେ ଯେ, ଭାତ ଥାଳିରୁ ହାତ ଟେକି ସେ ବସିରହିଲେ । ଦୁର୍ଯୋଗକୁ ବନଶୀରେ ଝୁଲୁଥିବା ମାଛଟା ମଧ୍ୟ ଅତି ଆସ୍ତେ କୁଁ କୁଁ ଶବ୍ଦ କଲା ।

''ନା, ତୋ ଜାଳାରେ ଆଉ ଭାତ ନେଇ ହବନି ମୁହଁକୁ ।''

ବାପାଙ୍କ ଅବସ୍ଥା ଦେଖି ଭାଇନା ମଧ୍ୟ ମୋତେ ଆଖି ଦେଖାଇ କହିଲେ, ''ଚାହିଁଚୁ କ'ଣ କିରେ ବୋକା ! ଯା, ସେ ମାଛକୁ ଯେଉଁଠୁ ଧରିଥିଲୁ ସେଇଠି ଛାଡ଼ିଦେଇ ଆ ।''

ଭାଇନାଙ୍କ କଥା ନ ମାନିଲେ ତ ରକ୍ଷା ନାହିଁ ।

ମାଛଟାକୁ ତୁରନ୍ତ ବନଶୀକଣ୍ଟାରୁ ମୁକ୍ତି ଦେଲି । କାଚପରି ନିର୍ମଳ ପାଣିଭିତରେ ପଡ଼ି ସେ କେଡ଼େ ଛଟକରେ କୁଆଡ଼େ ଯାଇ ଲୁଚିଗଲା । ତାହା ଦେଖି ମନଟା ମୋର ଉଲୁସି ଉଠି ବାପାଙ୍କ ବିରକ୍ତି ଓ ଭାଇନାଙ୍କ ନାଲିଆଖି ଦଣ୍ଡକ ଭିତରେ ପାସୋର ହୋଇଗଲା ।

ଗଡ଼ିଆ କୂଳରୁ ଲେଉଟି ହାଣ୍ଡିଶାଳ ଭିତରୁ ବୋଉଙ୍କ ପାଟି ଶୁଣିପାରିଲି, ''ମାଛ ନ ହେଲେ ତ ଦିନେ ତୁମ ପାଟିକୁ ଗୁଣ୍ଡା ଯାଇ ନାହିଁ । ପୁଅ ମୋର କେତେ କଷ୍ଟ କରି ଏଡ଼େ ଖରାରେ ମାଛଟାଏ ଧରି ଆଣିଲା ଯେ ତାକୁ ତୁମେ ଗାଳିଦେଲ । କାହିଁକି, ସେ ତୁମପାଇଁ ଆଣିଥିଲା ନା ତା' ନିଜପାଇଁ ?''

''ସବୁ କଥାରେ ତାକୁ ଏମିତି ମୁହଁ ବଡ଼ିଆ କରିଦବାଟା ଭଲ ନୁହେଁ ବୋଉ !'' ଭାଇନା କହନ୍ତି ଭାତଥାଳି ପାଖରେ ବସି ।

''ମୁହଁ ବଡ଼ିଆ ନ କଲେ ଏ ଗାଁ'ରେ ଚଳିହବଟି ! ତମେ ତ ବାପ ପୁଅ ଦିହେଁ ଦୂରରେ ରହିଲ । ସେ ମୋର ନ ଥିଲେ କିଏ ଭଲା ଆମକୁ ମାନନ୍ତା !''

ବୋଉଙ୍କ କଥାରେ ବାପା ଭାଇନା ଦିହେଁ ହସନ୍ତି । ଭାଇନା କହନ୍ତି, ''ସେଥିପାଇଁ ତାକୁ ଦୁଷ୍ଟ ହେବାକୁ ଶିଖାଇବା ଦରକାର ପରା ?''

''ନିଶ୍ଚେ ଦରକାର, ଦୁଷ୍ଟ ନ ହେଲେ ଦୁଷ୍ଟ ଲୋକଙ୍କୁ ପାରିବ କିଏ ? ତୁ ପାଠ ପଢ଼ିଲୁ ବୋଲି ତ ତୋ ମୁହଁରୁ ଦିନେ 'ଶଳା' ବୋଲି ପଦେ ବାହାରିବ ନି । ଶଳା ନ କହିଲେ ଭଲା କିଏ କାହାକୁ ମାନିଲାଣି ନା କେଉଁ କାମଟା ହେଲାଣି !''

ଯାହା ଯେ କହନ୍ତୁ ପଛେ, ମୋର କଥାରେ କାମରେ ସବୁ ଦୁଷ୍ଟାମି ପାଇଁ ଉତ୍ସାହ ଦେବା ପୁଣି ସମର୍ଥନ କରିବା ଲୋକ ବୋଉ ଛଡ଼ା ଆଉ କେହି ନୁହେଁ ! ଯେତେ ଯୁଆଡ଼େ ଖେଳେଁ ବୁଲେଁ, ଘରକୁ ଫେରି ବୋଉଙ୍କୁ ନ ଦେଖିଲେ ସବୁ ଶୂନ୍ୟ । ସେତେବେଳେ ଆଉ କାହାରି ରକ୍ଷା ନାହିଁ ଘର ଭିତରେ କିମ୍ବା ବାହାରେ ।

ଉପର ଭଉଣୀ ଉଜ୍ଜ୍ୱଳନାନୀର ସବୁବେଳେ ମୋ ମାଡ଼କୁ ଭୟ । ତାକୁ ଖାଲି ତ ଛୁଇଁ ଦେଲେ ଛ'ଘା । ମଝିଆଣୀ ଓ ବଡ଼ ନାନୀର ଦଶା ମଧ୍ୟ କାହିଲ । ଦିନବେଳେ ମୋତେ

ଶୁଆଇ ବୋଉ ଗଡ଼ିଆତୁଠକୁ ଗଲେ ନିଦ ଭାଙ୍ଗିବା କ୍ଷଣି ଯେମିତି ଚିତ୍କାର କରେଁ, ରାତିରେ ମଧ ସେମିତି । ଏହିରୂପେ ସାତ ବର୍ଷ ପର୍ଯ୍ୟନ୍ତ ମାତୃ-ସ୍ତନ୍ୟପାୟୀ ହୋଇ ରହିଥିଲି ବୋଲି ଭଉଣୀମାନଙ୍କ ଉଲୁଖା ପରେ ଶୁଣିଲି ।

ଥରେ ରାତି ପାହାନ୍ତାରେ ନିଦ ଭାଙ୍ଗିଗଲା—ବୋଧହୁଏ ମୋର ସବୁଠାରୁ ବଡ଼ ସ୍ୱର୍ଗ ବୋଉ କୋଡ଼ରେ ଶୋଇ ନ ଥିବାରୁ । ଚିତ୍କାର କଲି, 'ବୋଉ ! ବୋଉ !' ବଡ଼ନାନୀ, ମଝିଆଣୀ ନାନୀ ଦୁହେଁ ଆସି କେତେ ବୁଝାଇଲେ । ଖାଲି ବୁଝାଇଲେ କ'ଣ ନିଦ ଆସେ କି ! ବାପା କି ଭାଇ ଭଉଣୀ, ସାଙ୍ଗସାଥି, ଖେଳ-କୌତୁକ, ଘର-ଦୁଆର ସବୁ ଛାଡ଼ିଦେଇ ପାରେଁ ସିନା, ବୋଉକୁ ତ ଦଣ୍ଡେ ହେଲେ ନୁହଁ ।

ମୋର କାନ୍ଦବୋବାଳି ଗର୍ଜନ ତର୍ଜନ ଭିତରେ ରାତିଟା ଫସର ଫାଟି ସକାଳ ହେଲା । ଅଗଣା ମଝିରେ ନିଃଶବ୍ଦରେ ଝରିପଡ଼ିଲା ଶହ ଶହ ଗଙ୍ଗଶିଉଳି ଫୁଲ । ମହକି ଉଠିଲା ଦୁଆର ଘର । 'ବୋଉ' 'ବୋଉ' ଡାକି ଉଠିଆସିଲି ଶେଯରୁ । ଦାଣ୍ଡପଟ ଦିଅଁଙ୍କ ଘରୁ ମଝିଆଣୀ ନାନୀ ଖୁସି ହୋଇ ଦୌଡ଼ି ଆସି ପାଟିକଲେ—''ପୁଅଟିଏ ! ପୁଅଟିଏ !''

ବଡ଼ନାନୀ ମତେ ସାଙ୍ଗରେ ନେଇ ଦିଅଁଙ୍କ ଘର ଦୁଆରମୁହଁ ଦେଖାଇ ଦେଲେ— ଏଡ଼େ ଟିକିଏ ପାତଳା, ଗଙ୍ଗଶିଉଳୀ ଡେମ୍ଫ ପରି ନାଲି ଟହ ଟହ କଅଁଳା ପିଲା ଗୋଡ଼ ହାତ ଛାଟି କୁଆଁ କୁହାଁ କାନ୍ଦୁଚି । ପାଖରେ ତା'ର ମୋ'ରି ବୋଉ ! ତା' କାନ୍ଦ ଶୁଣି ମୋର କାନ୍ଦ ବନ୍ଦ ହୋଇଗଲା । ସାତ ବର୍ଷ ବୟସରେ ବୁଝିପାରିଲି, ଏ ପିଲାଟା ବୋଉକୁ ମୋର ବନ୍ଦୀ କରି ନେଲା ଆଜିଠାରୁ । ପିଲାଟା କେଉଁଠି ଥିଲା, କେମିତି ଆସିଲା, କିଛିହେଲେ ମୁଁ ବୁଝିପାରୁ ନ ଥାଏଁ । ଆଜିଠାରୁ ସେ ମୋତେ ଯେ ବୋଉ କୋଳରୁ ଚିରଦିନପାଇଁ ବେଦଖଲ କଲା, ସେଥିଲାଗି ତା'ର ଦୁର୍ବଳ ରୂପକୁ ଚାହିଁ ହିଂସା ବଦଳରେ ଦୟା ଓ ବିସ୍ମୟ ଜାତ ହେଲା ।

ପୁରୀରୁ ବାପା ଆସିଲେ । ପିଲାଟିକୁ ଦେଖିସାରି କହିଲେ, ''ଭାଗବତ ଘରେ ତା'ର ଜନ୍ମ ହୋଇଛି, ନାଁ ତା'ର ଭାଗବତ ।'' ସମସ୍ତେ ତାକୁ ସେଇ ନାଁରେ ପୁଣି ଆମ ଘରେ ବଡ଼ମାନେ 'ଭାଗୁ' ବୋଲି ଡାକିଲେ । ମାତ୍ର କେତେକ ବର୍ଷ ପରେ ସ୍କୁଲ କଲେଜରେ, ଥାନା କଚେରିରେ, ଛାପାଖାନାରେ, ଜେଲଖାନାରେ ଓ ଶେଷକୁ ପୁଣି କଟକ ବଡ଼ଡାକ୍ତରଖାନାରେ ତା'ରି ନାମ ଲେଖାଗଲା, ''ଶ୍ରୀ ଭଗବତୀ ଚରଣ ପାଣିଗ୍ରାହୀ'' ।



# ''ଏ ଜଗତ ମୋର ଗାଁ
# ପୁଣି, ସବୁ ମଣିଷ ମୋ ବନ୍ଧୁ''

ବୋଉ-କୋଳକୁ ଆଉ ଜଣେ ଆସି ଦଖଲ କଲାରୁ ପଦାରେ ମୋର ଉତ୍ପାତର ମାତ୍ରା ବଢ଼ିଗଲା । ସେଥିସଙ୍ଗେ ଦୁର୍ଘଟଣା ସଂଖ୍ୟା ମଧ୍ୟ ।

ଦାଣ୍ଡ କଡ଼ରେ ଥୁଆ ହୋଇଥାଏ ଶଗଡ଼ । ସେଥିରେ ଚାଲେ ପିଲାଙ୍କ ଖେଳ । ବଳଦ ବଦଳରେ ଆମେ କେତେ ଜଣ ଟାଣୁଁ, ଆଉମାନେ ବସନ୍ତି । ପୁଣି ତା'ର ଅଦଳବଦଳ ଚାଲେ । ତା'ପରେ ଶଗଡ଼ଝୁରା ଉପରେ କେତେ ଜଣ ବସି ଅନ୍ୟମାନେ ଦଣ୍ଡାରେ ଓହଳି ଝୁରାଟାକୁ ଟେକନ୍ତି । ଏମିତି 'କୀଳୋତ୍ପାଟୀବ ବାନର କ୍ରୀଡ଼ା, ଭିତରେ ସମସ୍ତେ ମାତିଥିଲା ବେଳେ ଗାଦି-ଦୁଆରପଟୁ ହଠାତ୍ ଶୁଣାଯାଏ ଘଡ଼ଘଡ଼ି ପରି ଏକ ଭୟାନକ ଗର୍ଜନ ।

''ବଡଷଣ୍ଢ ! ବଡ଼ଷଣ୍ଢ'' କହି ପିଲାଯାକ କିଲିବିଲି ହୋଇ କିଏ ଯେ କୁଆଡ଼େ ପଳାନ୍ତି ! ପ୍ରକୃତରେ ବଡ଼ ଷଣ୍ଢ ଥିଲା ଗାଁ ଭିତରେ ଶ୍ରଦ୍ଧା, ଭକ୍ତି, ସମ୍ମାନ, ସମ୍ଭ୍ରମ, ଭୟ ଓ ଆତଙ୍କର ଏକ ସମ୍ପୂର୍ଣ୍ଣ ବିଗ୍ରହ । ବଡ଼ଷଣ୍ଢ ବୋଇଲେ ଯେ କୌଣସି ଥାନା କଚେରିର ବଡ଼ ମୁନ୍‌ସୀ, ବଡ଼ ହାକିମ, ବଡ଼ବାବୁ ପୁଣି ଗାଁ ଭିତରେ ଯେ କେହି ବଡ଼ ମକଦ୍ଦମଙ୍କଠାରୁ ସୁଦ୍ଧା ବେଶି ଖାତିର, ପ୍ରଚଣ୍ଡ ପ୍ରତାପ ତା'ର ।

ନାମ ଅନୁସାରେ ପ୍ରକାଣ୍ଡକାୟ । ପାଦ ପକାଇଲାବେଳେ ପୃଥିବୀ ଅବା ଆହୁରି ତଳକୁ ଦବିଯାଏ । ହେଣ୍ଟାଳ ଛାଡ଼ିଲେ ଗାଁ-ଦାଣ୍ଡଟା ଯେମିତି ଆପେ ଆପେ ପରିଷ୍କାର—ଆଡ଼େଇଯାନ୍ତି ପଶୁ, ମନୁଷ୍ୟ ସମସ୍ତେ । ସାମ୍ନାପଟେ ରାଜଦଣ୍ଡ ଭଳି ଠିଆ ଶିଙ୍ଗ । ତା'ପଛକୁ ଦେଉଳ ମୁକୁଶାଳି ଭଳି ଚୂଳ । ବିଶାଳ ଆଖି, ବିରାଟ ନାକ, ବିସ୍ତୃତ ଓଠ । ସେଇ ଶିଙ୍ଗ ବଳରେ ଭାରି ବୋଝେଇ ଶଗଡ଼ମାନ ବଳଦ ଓ ଶଗଡ଼ିଆ ସମେତ ଅବଲୀଳାକ୍ରମେ ଊର୍ଦ୍ଧ୍ୱଗାମୀ ହୋଇ ପରମୁହୂର୍ତ୍ତରେ ଭୂତଳରେ ଲୁଣ୍ଠିତ ହୁଅନ୍ତି । ଚିତାଏ ଉଚ୍ଚରେ ବଢ଼ି ଉଠିଥିବା ଧାନ କି ହରଡ଼ କିଆରି ଭିତରେ ବଡ଼ଷଣ୍ଢର ଚୂଳ ଦେଖାଗଲେ ସେ ଚାଷୀର କପାଳ ଫାଟିଲା ବୋଲ । ଜଗନ୍ନାଥଙ୍କ ପହଣ୍ଡି ବିଜେ ଭଙ୍ଗୀରେ ଚାଲିଲାବେଳେ ସେଇ ଚୂଳଟି ଆଗକୁ ପଛକୁ ଦୋହଲେ ।

ଗାଁ-ଲୋକେ କୁହାକୁହି ହୁଅନ୍ତି, ରୋଜ ରାତିରେ ବାଲୁକେଶ୍ୱର ମହାଦେବଙ୍କୁ ପିଠିରେ ବସାଇ ବଡ଼ଷଣ୍ଢ କେତେଆଡ଼ ବୁଲାଇଆଣେ । ତା'ପରେ ଗାଦି ଗୋସେଇଁଙ୍କ ପାଖରେ ନିଏ ବିଶ୍ରାମ । ବାପୁ କକେଇ କହନ୍ତି, ''ଖବରଦାର ପିଲାଏ, ଦିଅଁଙ୍କ ଷଣ୍ଢ ସେ । ଟେକା ପଥର ପକେଇବା କଥା ଛାଡ଼, ଖାଲି ଟିକିଏ ହାତ ଉଞ୍ଚେଇଲେ ସେ କ'ଣ କରିବ ଜାଣଚିକି ?''

''କ'ଣଟା କରିବ ମ ! ଆମେ ଦୌଡ଼ିଯାଇ ଘରେ ଲୁଚିଯିବୁନି !'' ଶିନୁଭାଇନା ତାଙ୍କୁ ଚେଢ଼ି ଦେଇ ଭଡ଼ଙ୍ଗ ଦେଖାନ୍ତି ।

''ବୁଝିଲୁରେ ଶିନୁ, ତୋର ସେ ସବୁ ପିଲାଳିଆ ଚଗଲାମି ବଡ଼ଷଣ୍ଢ ପାଖେ ଚଳିବନି । ଦେଖିଚୁ ତ, ବୁଲାନା' ଭଳି ପାଞ୍ଚହାତି ମର୍ଦ୍ଦ—ଖାଲି ଟିକିଏ ହିର୍ର୍ ବୋଲି କହିଦେଲାରୁ କି ଗୋଡ଼ିଆ ତାକୁ ନ ଗୋଡ଼େଇଲା, ଗହୀର ବିଲ-ଗୋଟାଯାକ ? ପୁଣି ସେଇ ରାଗରେ ତା'ର ଫଳନ୍ତି କୋଳଥ କିଆରିଟାକୁ ବି ଚାଟି-ଚୂଟି ଲାଣ୍ଡୁ କରିଦେଲା । ବୁଲାନା ବିଚାରା ତିନି ଦିନଯାକେ ଘରୁ ବାହାରି ନି ଟି !''

ବାପ୍ପୁ କକେଇଙ୍କ କଥାକୁ ସଦେଇ ବାରିକ ସମର୍ଥନ କରେ, ବଡ଼ଷଣ୍ଢ ନ ଥିଲେ ଏ ଗାଁ ଭଲା ଦଣ୍ଡେ ଚଳନ୍ତା କି ! ଖାଲି କ'ଣ ତା'ରି ସାଥିରେ ଲାଗିଲେ ସେ ରାଗିଯାଏ । ଗାଁ ଭିତରେ କିଏ ଦୁଷ୍ଟ, କିଏ ସନ୍ଥ କେଉଁ କଥା ତାକୁ ଭଲା ଜଣା ନାହିଁ ।

ଦୁଷ୍ଟ ନିବାରି ସନ୍ଥ ପାଳୁ
ତୁ ନାଥ ପରମ ଦୟାଳୁ ।

''କାହା ବିଲବାଡ଼ି କେଉଁଠି ସବୁରି ଜମି ସେ ଠଉରେଇ ରଖିଚି । ଦେଖିଲ ତ ଦୀନା, ଗୋବିନ୍ଦା ଦି'ଭାଇଙ୍କ ଭିତରେ ଯେଉଁ ଜମିଖଣ୍ଡକ ପାଇଁ ଏତେ ଟଣାଓଟରା ଲାଗିଲା, ସେହି ଶଙ୍ଖମୁହଁ ପାଚିଲା ଧାନ କିଆରିଟା ଆର ଦିନ ସକାଳୁ ଏକାବେଳେ ପଦା ।''

ବାପ୍ପୁ କକେଇ କହନ୍ତି, ''ଠିକ୍ କରିଛି । ଦୀନା, ଗୋବିନ୍ଦା ଦି'ଟା ଯେମିତି ମୂର୍ଖ, ସେ ଦିନ ମୁଣ୍ଡ ଫଟାଫଟି ହୋଇ ମରିଥାନ୍ତେ । ବଡ଼ଷଣ୍ଢ ଗାଦି ଦୁଆରେ ଶୋଇ ସବୁ କଥା ଏମିତି ବୁଝୁଥାଏ ବୋଲି କିଏ ଜାଣେ ! ସେଥର ପୁଣି ଦେଖିଲୁଟି ? ବୋଧଖଣ୍ଡି ଷଣ୍ଢଟାକୁ ଆମ ଅଟୁତା କିଆରିରୁ କିମିତି ଘଉଡ଼େଇଲା ? ବଡ଼ଷଣ୍ଢ ନ ଥିଲେ ଭଲା ଘାସ ପୁଳାଏ ଆମକୁ ମିଳନ୍ତା ?''

ସେଇ ବଡ଼ଷଣ୍ଢର ଆଗମନରେ ଆମ ଶକଟକ୍ରୀଡ଼ା ଭାଙ୍ଗିଯାଇ ଦାଣ୍ଡଟା ଶୂନ୍ୟ ହୋଇଗଲା; କିନ୍ତୁ ଏ କିଏ ? ଦାଣ୍ଡମଝିରେ ମୁହଁ ମାଡ଼ି ସାଷ୍ଟାଙ୍ଗ ପ୍ରଣିପାତ କଲାଭଳି ଶୋଇଛି ? ଆମେ ସବୁ ପିଣ୍ଡାରେ ଠିଆ ହୋଇ ତାଟକା ହୋଇ ଚାହିଁଥାଉଁ ।

''ଶୀରୁ ! ଶୀରୁ !'' ବିକଳ ହୋଇ ଡାକ ଛାଡ଼ିଲେ ତାଙ୍କ ବଡ଼ଭାଇ ବନମାଳୀ ।

ସେମିତି ପଡ଼ିରହି ଶୀରୁଭାଇନା କହିଲେ, ''କିଛି ପରବାୟ ନାହିଁ, କିଛି କରିବନି ସେ ମୋର ।''

କିଛି କରିବନି ! ବଡ଼ଷଣ୍ଢର ଗୋଟିଏ ଖୋଜ ତାଙ୍କ ପିଠି ଉପରେ ପଡ଼ିଲେ ଯେ ପେଟ ଭିତରୁ ଅନ୍ତବୁଜୁଳା ବାହାରି ଆସିବ !

କିନ୍ତୁ—କିନ୍ତୁ ଏ କ'ଣ ? ନିଶ୍ଚଳ ହୋଇ ପଡ଼ିଥିବା ଶୀରୁଭାଇନାଙ୍କୁ ଆଡ଼େଇଯାଇ ବଡ଼ଷଣ୍ଢ ଧୀରେ ଧୀରେ ଦାଣ୍ଡମଝିରେ ସବୁଦିନ ପରି ଚାଲିଗଲା । ଛାତି ଆମର ଦପ୍ ଦପ୍ ପଡୁଥାଏ, ଉଠୁଥାଏ ।

ସମସ୍ତେ ଆସି ଶୀରୁଭାଇନାଙ୍କୁ ସାବାସ୍ ସାବାସ୍ କହି ଘେରିଗଲୁ । ପୁଣି ଚାଲିଲା ଶଗଡ଼ ଖେଳ; ମାତ୍ର ସମସ୍ତେ ମିଳି ଶଗଡ଼ଟାକୁ ଟାଣି ନେଉଥିବାବେଳେ ମୁଁ ପଡ଼ିଗଲି ଚକତଳେ ।

ଚକଟା ଠିକ୍ ମୋର ଅଣ୍ଟା ଉପରେ ଚାଲିଯାଇ ଅଣ୍ଟାସୂତାଟା ଚିପି ହୋଇଗଲା । କିଛି ଦିନପାଇଁ ଚାଲିପାରିଲି ନାହିଁ । ଆହୁରି ବେଶି କଷ୍ଟ ହେଲା, ବୋଉଙ୍କ ବିକଳ ଦେଖି । ସେଥିସଙ୍ଗେ ଚାଲିଲା କେତେ କ'ଣ ମାଲିସ୍ ପୁଣି ଔଷଧଖିଆ । ଘିକୁଆଁରୀ, କୁକୁଡ଼ାଅଣ୍ଡା, ଘିଅ, ଗୋଲମରିଚ ।

କେତେ ଦିନଯାକେ ଦରଜଟା କମିଲା ନାହିଁ । ତେବେ ଯା'ହେଉ, ଚୈତ୍ର ପୂର୍ଣ୍ଣମୀକୁ ତାଙ୍ଗାହୋଇ ଉଠିଲି । ଚୈତ୍ର ପୂର୍ଣ୍ଣମୀ ଦିନ ଗାଁ ବଇଷମ ତୋଟାରେ ଦିଅଁଙ୍କ ମେଳନ । ବାଘୁ କକେଇ, ଶିନୁ ଭାଇନା, ବାଉ ଭାଇନା ନାଗାଭିଡ଼ା ହେବେ ବୋଲି ସାଜପୋଷାକ ଆଣିବାରେ ଲାଗିଥାନ୍ତି । ଆଉ କେଉଁ ଗାଁରୁ ଭଲ ଯାତ୍ରାଦଳ ଆଣିବାକୁ ବଇନା ଦିଆସରିଲାଣି ।

ଅଲେଖ କକେଇ ଭଲ ବାଣୁଆ । ତୋପ, ବମ୍ଭାଜି, ରସକଦମ୍ବ ଗଛ, ଫୁଲଚମ୍ପା, ହାବେଳି, ପାଣିକିମ୍ବିରିଆ ସବୁ ପ୍ରକାର ବାଣର ଭାଗମାପ ତାଙ୍କୁ ଜଣା । ନିଜ ଘରେ ତାଙ୍କର ପୋଥି ଅଛି । କଟକରୁ ଗନ୍ଧକ ହରିତାଳ ଗୁଖକିଣା ହୋଇ, ସଡ଼କ ଉପରୁ ଅରଖ ଗଛ ଅଣାଯାଇ ତାକୁ ପୋଡ଼ି ଅଙ୍ଗାର କରି ବାଣ ତିଆରି ହୁଏ । ଛଣି ଦଉଡ଼ିରେ ବାଣ ଭିଡ଼ା, କାଠ ହାତୁଡ଼ିରେ ବାଣ ବାଡ଼ିଆ ପୁଣି ତା' ସାଥିକି ଗୀତ । ଦିନରାତି ଖିଆପିଆ ଭୁଲି ସମସ୍ତେ ଲାଗିପଡ଼ନ୍ତି ଏଇସବୁ କାମରେ । ସେଥିପାଇଁ କିଏ ନିକମା ହେଲା ବୋଲି ମଜୁରି ଦାବି କରେ ନାହିଁ । ଏ ତ ହେଲା ଗାଁଯାକ ସବୁରି ସାଧାରଣ କାମ । ଚୈତ୍ର ପୂର୍ଣ୍ଣମୀ ଯାତ୍ରାକୁ ଗାଁ ଚାରିପଟୁ ବହୁତ ଦୋଳ ବହୁତ ଲୋକ ଆସି ରୁଣ୍ଡ ହୁଅନ୍ତି । ପଞ୍ଚୁଦୋଳ ପରେ ଏହା ଭାଗବତ ମେଳନ । ସବୁ ଦୋଳରେ ଭାଗବତ, ହରିବଂଶ, ମହାଭାରତ, ରାମାୟଣ, ଏମିତି କେତେ ପୋଥି ସଜା ହୋଇଥାଏ । ଝାଞ୍ଜ ମୃଦଙ୍ଗ ଘଣ୍ଟାମାଦଳ ବଜାଇ ଆମ ଚାରି ପାଖରୁ ଗୋଟିକ ପରେ ଆଉ ଗୋଟିକ ଦୋଳ ଗହୀର ବିଲକୁ ଚିତ୍ରିତ କରି ଚାଲିଥାଏ ।

ଶିଶୋଲ, ବୋଧଖଣ୍ଡି, ଫକୀରପଡ଼ା, ମମଦଲା, ଗାରଡ଼ିପଞ୍ଚାଶ, ତେଲିସାହି, କିଆଯୋଡ଼ି, ଅଞ୍ଜିରା, ବାରିଜଙ୍ଗ, ସରାଟ, ଚଣାହଟା—ଏମିତି କେତେ ଗାଁର ଦୋଳ ସବୁ ପୋଥିବୋଝେଇ କରି ଆମ ଗାଁର ବୈଷମ ତୋଟା ଆମ୍ବଗଛ ଛାଇରେ ଏକାଠି ହୁଅନ୍ତି । ପୋଥିଗୁଡ଼ିକ କେବଳ ପୂଜା ହୁଏ । ସେସବୁକୁ ଫିଟାଇ ଦେଖିବାର ବ୍ୟବସ୍ଥା ନାହିଁ, ଯେମିତି ବ୍ୟବସ୍ଥା ଅଛି ଆଧୁନିକ ପୁସ୍ତକ ପ୍ରଦର୍ଶନୀମାନଙ୍କରେ; କିନ୍ତୁ ସେସବୁ ପୁସ୍ତକ-ପ୍ରଦର୍ଶନୀ କେତୋଟି ସହର ବଜାର ଭିତରେ । ଏମିତି ଗାଁ-ଗାଁରେ ତାହା କେବେ ହେବ, ଜାଣିବା ତ ସହଜ ନୁହେଁ; ଭାଗବତ-ମେଳଣ ସେମିତି ଜଗନ୍ନାଥ ଦାଶଙ୍କ ଭାଗବତ ରଚନା ସମୟରୁ କିମ୍ବା ଆଉ କେଉଁକାଳୁ ଆରମ୍ଭ ହୋଇ ଆଜି ପର୍ଯ୍ୟନ୍ତ ଚାଲିଛି, ତାହା ଅନୁସନ୍ଧାନ ସାପେକ୍ଷ ।

ନାଚ ତାମ୍ସା ଛଡ଼ା ଚୈତ୍ର ପୂର୍ଣ୍ଣମୀକୁ ଆମେ ବି କିଛି ଆମୋଦ ପ୍ରମୋଦର ଯୋଗାଡ଼ କରିଥାଉଁ । ଶୀରୁ ଭାଇନା ଅବଶ୍ୟ ସେ ଦିଗରେ ଆମର ଅଗ୍ରଣୀ । ଯାହା ତାଙ୍କୁ କହିବ, ଯାହା ସେ ଅନ୍ୟଠାରୁ ଦେଖିବେ, ସଙ୍ଗେ ସଙ୍ଗେ ସେମିତି ନିଜେ କରିଦେବେ । ଡିଙ୍କିଶାଳ ପଛପଟେ ମୁଣ୍ଡରେ ଜରିଟୋପି ପିନ୍ଧି ସୁଆଙ୍ଗ-ନାଚ ଗୀତ ଯୋଗାଡ଼ରେ ଯେମିତି ସେ ଧୁରନ୍ଧର, ସେମିତି ସେ ଗୋଟିଏ ଲଟାରି ଖେଳ ବି ତିଆରି କରିଥାନ୍ତି । ଖଣ୍ଡେ ଗୋଲ ପଟାରେ ଛଅଟି

ଘର କଟାଯାଇ ଛଅ ପ୍ରକାର ରଙ୍ଗ ବୋଳା ହୋଇଥାଏ । ଯେଉଁ ଘରେ ଯେ ଯେତେ ପଇସା ଲଗାଇବେ, ଗୋଲ ପଟାଟି ଘୂରି ଘୂରି ଗୋଟିଏ ଘରେ ଅଟକିଲେ ତାଙ୍କୁ ଦି'ଗୁଣ ପଇସା ମିଳିବ । ଜଣକ ପଇସା ଏମିତି ଆଉ ଜଣକୁ ଦିଆଯାଇ ଶେଷରେ ଖେଳାଇବା ଲୋକକୁ ନିଶ୍ଚୟ କିଛି ଲାଭ ମିଳେ । କେବେହେଲେ ତା'ର ଲୋକସାନ୍ ନାହିଁ । ଏମିତି ଖେଳରେ ଆମର ଯାତ୍ରା-ଖର୍ଚ୍ଚଟା ଉପରୁ ଉଠିଯାଏ ।

ତା'ପରେ ପୁଣି ମ୍ୟାଜିକ୍ । ମ୍ୟାଜିକ୍ ବହି ଖଣ୍ଡେ ମଗାଇ ଶୀରୁ ଭାଇନାଙ୍କୁ ତାହା ପଢ଼ି ମୁଁ ଶୁଣାଇ ଦିଏ । ତା'ପରେ କାଚଗ୍ଲାସ କିଣା ହୋଇ ତା'ଭିତରେ ଖଣ୍ଡେ କଳାକନା ରଖି ଓ ସେଥିରେ ଖଣ୍ଡେ ସରୁସୂତା ବାନ୍ଧି କଳାସ୍ୟାହୀକୁ ଧଳା ପାଣି କରି ଦେଖାଇ ଦିଆଯାଏ । ରୁମାଲ କାନିରେ ମୁଦିଟିଏ ବାନ୍ଧି ଆଉ ଗୋଟିଏ ସେମିତି ମୁଦି ଖଣ୍ଡେ ସରୁବାଡ଼ିରେ ପୂରାଉଁ । ତାକୁ ମୁଠାଭିତରେ ଲୁଚାଇ ରୁମାଲ-କାନିକୁ ବାଡ଼ିରେ ଗୁଡ଼ାଇ ସେଇ ମୁଦିଟା ମନ୍ତ୍ରବଳରେ ବାଡ଼ିକୁ ଆସିବା ଦେଖି ଦର୍ଶକମାନେ ଚମକି ପଡ଼ନ୍ତି । ସେମିତି ପରମାନନ୍ଦ ପାଟିରୁ ଗୋଟିଏ ପରେ ଆଉ ଗୋଟିଏ ଲେଖାଁ ସାତଟି କୁକୁଡ଼ା-ଡିମ୍ବ ମୁଁ ବାହାର କରେଁ । ପୁଣି କେତେ ପ୍ରକାର ତାସ୍ ମ୍ୟାଜିକ୍ !

ମ୍ୟାଜିକ୍ ପେଡ଼ିଟା ସୂତା, ଫିତା, ତାସ୍, ଡିମ୍ବ, ମୁଦି, ରୁମାଲ, କାଠି, ନଳ, କାଉଁରିହାଡ଼ରେ ଭର୍ତ୍ତି ହୋଇଯାଏ । ଶୀରୁଭାଇନା ବଣା ହୁଡ଼ାରୁ ଖଣ୍ଡେ ସରୁ ହାଡ଼ ଗୋଟାଇ ଆଣନ୍ତି । କାଉଁରି-ହାଡ଼ ବା କୁମାରୀ ଝିଅର ହାଡ଼ ସେ । ହାଡ଼ଖଣ୍ଡକ ଦେଖିଲେ କି ଛୁଇଁଲେ ମୋ ମନରେ ଯାହା ଟିକିଏ ଭୟ ବା ବିକାର ଆସେ । ସେ ଦିନ କିନ୍ତୁ ମୁଁ ଜାଣି ନ ଥିଲି ଯେ ମ୍ୟାଜିକ୍ ଭିତରେ ହିଁ ଗୋଟାଏ ଛନ୍ଦ ଓ ରହସ୍ୟ ଅଛି; ଆଉ କବିତାର ଜନ୍ମ ଏଇ ମ୍ୟାଜିକ୍‌ରୁ ! ମନ୍ତ୍ର-ସ୍ତୋତ୍ରରୂପରେ ଏଇ ମ୍ୟାଜିକ୍ ଅଦୃଶ୍ୟକୁ ଦୃଶ୍ୟ କରେ, ଅବ୍ୟକ୍ତକୁ ବ୍ୟକ୍ତ କରେ, ଉଦ୍‌ଘାଟନ କରେ ଗୂଢ଼ ରହସ୍ୟ, ପୁଣି ମୃତକୁ ଅମୃତ କରେ , ଆଉ ମର୍ତ୍ତ୍ୟମଣ୍ଡଳରେ ରଚନା କରେ ସ୍ୱର୍ଗ ! ରବୀନ୍ଦ୍ରନାଥଙ୍କ 'ଗୀତାଞ୍ଜଳି'ର ମୁଖବନ୍ଧ-ଲେଖକ ଇଟ୍‌ସ (W.B. Yeats) ପ୍ରମୁଖ ତିନି ଜଣ ସର୍ବଶ୍ରେଷ୍ଠ କବି ମ୍ୟାଜିକ୍ ଶିକ୍ଷା କରିଥିଲେ । ତା'ର ଅବଶ୍ୟ ଅର୍ଥ ନୁହେଁ ଯେ, ମ୍ୟାଜିକ୍ ନ ଜାଣି କେହି କବି ହୋଇପାରନ୍ତିନି !

ଚୈତ୍ରପୂର୍ଣ୍ଣମୀ ମେଳନଯାତ୍ରା ସରିଯାଏ । ପିଲାଙ୍କ ଯାତ୍ରା ସରେ ନାହିଁ । ଯେଉଁସବୁ ବାଣଫୁଟକା ଫୁଟି ନ ଥାଏ, ତାକୁ ପୁଣି ଶୁଖାଇ ମରାମତ କରି ଫୁଟାଇବା ପାଳି ପଡ଼େ ପିଲାଙ୍କର । ଏହି କାମରେ ନେତୃତ୍ୱ ନେଇ ଥରେ ଆମ ଦାଣ୍ଡ ସାହାଲା ଚାଳଘରଟିକୁ ମୁଁ ଭସ୍ମସାତ୍ କରି ଦେବାକୁ ଯାଉଥିଲି; ଚାଳ ଉପରୁ ଧୂଆଁ ବାହାର ହେଉଥିବାର ଦେଖି ଭୋବନିଭାଇନା ଓ ଆଉ କେତେ ଜଣ ଉଠି ଚାଳଯାକ ଓଲାରି ପକାଇଲେ ।

ବାଣ-ନିଆଁରୁ ସିନା ଘରଟା ରକ୍ଷା ପାଇଗଲା, ମୋତେ ସେଥିରୁ ରକ୍ଷା ମିଳିଲା ନାହିଁ । ଆଉ ଥରେ ଫୁସ୍‌କି ଯାଇଥିବା ଫୋଟକା ଧରି ଆମେ ସବୁ ଫୁଟାଉଥାଉଁ । ମୋ ହାତରେ ଯେଉଁଟା ଥାଏ, ତା'ଭିତରେ ନିଆଁ ମୋଟେ ଧରିଲା ନାହିଁ । ଅନ୍ୟମାନଙ୍କ ପରି ମୁଁ ତାକୁ ଫୁଙ୍କିବାକୁ ଲାଗିଲି । ଆଉ ଜୋର୍‌ରେ—ଆଉ ଜୋର୍‌ରେ । ତା'ପରେ...

ହଠାତ୍ କଳିଭଠି ଯେମିତି ସେ ଫୁଟିଲା, ସେତେବେଳେ ମୋର ନାକ, ଆଖି, କାନସମେତ ମୁହଁ ଗୋଟାକ ଯେ କେଉଁଠି ଥିଲା, ବୁଝିପାରିଲି ନାହିଁ । ପରେ ବୁଝିପାରିଲି ଯେଉଁ ଦିନ ଆଖି ମେଲି ଚାହିଁଲି, ବୋଉ କୋଳରେ ମୁଁ ଶୋଇଛି ।

ରଜବେଳକୁ ସବୁ ଭଲ । ପୁଣି ସବୁ ପାସୋର ଯାଇଥାଏ । ଗାଁ ଭିତରେ ରଜମଉଜ ପରି ଆଉ ତ କିଛି ମଉଜ ନାହିଁ । କି ପୁରୁଷ କି ସ୍ତ୍ରୀ ସବୁରି ସବୁ କାମ ବନ୍ଦ । ବାଗୁଡ଼ି, ପଶା, ଆଠପଚିଶ, ତା'ସ, ବାଘଛେଳି ଘରେ ବାହାରେ ବାଜିଛି । କଟା ବଟା ଛାଡ଼ି ଆଗ ରାତିରୁ ବୋଉ ଚୁଲୀ ଉପରେ ପୋଡ଼ପିଠା ବସାଇ ଦେଇଥାନ୍ତି । ସକାଳୁ ଗାଧୁଆ ସାରି ପୋଡ଼ପିଠାଖିଆ, ବାଗୁଡ଼ି ଖେଳ, ରଜ ବୁଲା, ରଜ ଦୋଳି ।

ଦିନକ ଆଗରୁ ଝିଅମାନେ ଖଡୁ, ପାହୁଡ଼, ଚୁଡ଼ି, ବାଜୁ, ନୋଥବସଣୀ ତିନ୍ତୁଳି କି ଆମ୍ବୁଲ ପାଣିରେ ପକାଇ ମଙ୍କାମୁଠାରେ ମାଜିମୁଜି ଚିକ୍ ଚିକ୍ କରି ରଖିଥାନ୍ତି । ରଜ-ସକାଳୁ ଗାଧୋଇ-ପାଧୋଇ ସେସବୁ ପିନ୍ଧାଯାଏ । ତା' ସାଥିକୁ ରଙ୍ଗ ଢଙ୍ଗ ପେଡ଼ିଲୁଗା ।

ବିଲବାଡ଼ି ତୋଟା ବଗିଚା ଡେଇଁ ଯେଉଁପଟେ ସୂର୍ଯ୍ୟଦେବତା ନିତି ଯା'ନ୍ତି ମା' କୋଳକୁ, ଗାଁ-ମୁଣ୍ଡରୁ ସେଇପଟେ ଦିଶେ ଆକାଶତଳେ ପାଉଁଶିଆ ହୋଇ ଗୋଟାଏ ପାହାଡ଼ । ଆଉ ଯେଉଁପଟେ ସେ ନାଲି ଟହ ଟହ ହୋଇ ଆସ୍, ନଡ଼ିଆଗଛ ଉପରକୁ ଚଢ଼ନ୍ତି ସେପଟେ ଗୋଟାଏ ଭଙ୍ଗା ଦେଉଳ—ଧଉଳି ପାହାଡ଼ ଆଉ ବୁଦ୍ଧନାଥ ମନ୍ଦିର । ରଜ ତିନି ଦିନ ଏ ଦୁଇ ଜାଗାରେ ହୁଏ ଲୋକଗହଳି, ଭୋଗରାଗ ।

ଗାରଡ଼ିପଞ୍ଚାଶ ଗାଁର ବୁଦ୍ଧନାଥ ମନ୍ଦିରରେ ବୌଦ୍ଧଯୁଗର କିଛି ସ୍ମୃତି ଅଛି କି ନାହିଁ, ସେ ଦିନ ତାହା ଜାଣି ନ ଥିଲି । ଜାଣି ନ ଥିଲି ବୁଦ୍ଧଙ୍କ ସଙ୍ଗେ ଥାଳ ଘେନି ବୁଲୁଥିବା ନାଥମାନଙ୍କର କୌଣସି ଆନୁମାନିକ ସମ୍ପର୍କ; ପୁଣି ବୁଦ୍ଧଙ୍କ ପରେ ଶଙ୍କରାଚାର୍ଯ୍ୟ ଆସି ବୌଦ୍ଧ ମନ୍ଦିରରେ ଶିବଲିଙ୍ଗ ପ୍ରତିଷ୍ଠାର କିଛି ହେଲେ ତଥ୍ୟ ବିଚାର ।

ଧଉଳି ପାହାଡ଼ରେ ଅଶୋକ-ଶିଳାଲେଖ ସେମିତି ଥିଲା ସେତେବେଳେ ମୋର ଅଜଣା । ଧଉଳିର ଚୂଡ଼ା ଉପରେ ମଧ ଭଙ୍ଗା ଦେଉଳ । ତା'ଭିତରେ ଶିବଲିଙ୍ଗ । ସେଇଠୁ ଦିଶେ ଚିତ୍ରପଟ ପରି ଅତି ପାଖରେ ମନ୍ଦିରମୟ ଭୁବନେଶ୍ୱର । ପୁଣି ଖଣ୍ଡଗିରି ଉପରେ ଜୈନ ମନ୍ଦିର । ପୁରୀ ଦେଉଳ ବି ଦେଖାଯାଏ ବୋଲି କେହି କେହି କହନ୍ତି । ମୁଁ କେବେ ଦେଖିପାରି ନାହିଁ । ବିଚାରି ମଧ ପାରି ନାହିଁ । ଏଇ ଗୋଟିଏ ଅଞ୍ଚଳ ଭିତରେ ଶୈବ, ବୈଷ୍ଣବ, ଜୈନ, ବୌଦ୍ଧ ସବୁରି କିପରି ଏକତ୍ର ସମାବେଶ—ରାଜନୀତିର ସବୁ ମତବାଦ ବିଧାନସଭା ଅବା ପାର୍ଲାମେଣ୍ଟର ଚାରିକାନ୍ଥ ଭିତରେ ପ୍ରକାଶ ପାଇଲା ଭଳି ।

ମୋର ପ୍ରଥମ ପର୍ବତାରୋହଣ ଏହି ଧୌଳି । ଛୋଟ ହେଲେ ବି ଆମ ଅଞ୍ଚଳରେ ସବୁଠୁ ଉଚ୍ଚା ଆଉ ତା'ର ବିଶେଷତ୍ୱ, ଛୋଟା ଅନ୍ଧ ସମେତ ସମସ୍ତେ ଉଠିପାରନ୍ତି ସେ ଉଚ୍ଚତାକୁ । ସେଇ ସାନ ମୁଣ୍ଡିଆ ଉପରକୁ ପଡ଼ିଚି ସରୁ ସରୁ ଚଲାବାଟ । ବୁଢ଼ା, ପିଲା, ଝିଅ-ପୁଅ ରଙ୍ଗଢଙ୍ଗିଆ ଲୁଗା ପିନ୍ଧି ସାଧବବୋହୂ ପରି ସେଇ ବାଟରେ ଚଢ଼ି ତଳକୁ ଓହ୍ଲାନ୍ତି । ବାଟ-

କଡ଼ଯାକ ତିନିଖଣ୍ଡି ଢିମା ପଥର ଉପରେ ଆଉ ଖଣ୍ଡେ ପଥର ଥୁଆ ହୋଇଛି । ଧଉଳି ଉପରେ ଚଢ଼ିଲେ ଆରୋହୀମାନେ ଏମିତି ସାନ ସାନ ଦେଉଳ ତୋଳିବା ବିଧି ଅଛି ।

ବିଶ୍ୱନାଥ ମୁଣ୍ଡିଆ କି ଲଳିତଗିରି, ପୁଷ୍ପଗିରି ଆଉ କେଉଁସବୁ ପାହାଡ଼ରେ ଏମିତି ଦେଉଳ ତୋଳିବାଟା ଆରୋହୀମାନଙ୍କର ଧର୍ମକାର୍ଯ୍ୟରୂପେ ଗଣାହୁଏ । ଏହାର ହେତୁ ହେଲା ବୋଧହୁଏ ଓଡ଼ିଶା ବୋଇଲେ ବେଶି ବୁଝାଏ ଦେଉଳକୁ ଅର୍ଥାତ୍ ଧର୍ମକୁ; ଆଉ ଦେଉଳତୋଳା କାମରେ ଏବେ ସୁଦ୍ଧା ଭୋଟ୍ ଅଛି ସବୁରି !

ବଶିଷ୍ଠଙ୍କ ପରେ ରାମରାଜ୍ୟ, ଶ୍ରୀକୃଷ୍ଣଙ୍କ ପରେ ଅର୍ଜ୍ଜୁନ, ବୁଦ୍ଧଙ୍କ ପରେ ଅଶୋକ, ଗାନ୍ଧିଙ୍କ ପରେ ନେହେରୁ, ମାର୍କସ୍‌ଙ୍କ ପରେ ଲେନିନ୍—ଜଣେ ନୂତନ ତଥ୍ୟର ଉଦ୍‌ଗାତା, ଆଉ ଜଣକ ତା'ର କର୍ମକ୍ଷେତ୍ରରେ ପରୀକ୍ଷକ, ବ୍ୟାଖ୍ୟାକାର, ନିର୍ମାତା ।

ଧଉଳି ପାହାଡ଼ ତଳେ ହାତୀଗୁମ୍ଫା । ଦୁଇ ହଜାର ବର୍ଷରୁ ବେଶି ଅଶୋକ-ଅନୁଶାସନ । ତରବାରିର ଜୟ, ଜୟ ନୁହେଁ; ଧର୍ମର ଜୟ ହିଁ ଜୟ । ମନୁଷ୍ୟର ଧର୍ମ ମନୁଷ୍ୟତ୍ୱ—ସେ କେବଳ ଅହିଂସା । ଆଉ ହିଂସା ହେଲା ପଶୁତ୍ୱ—ପଶୁର ଧର୍ମ । ଅହିଂସା ପରମୋଧର୍ମ । ସଂସାରକୁ ଧାରଣ କରେ ଧର୍ମ—ଅହିଂସା; ଧ୍ୱଂସ କରେ ହିଂସା ।

ଧର୍ମକ୍ଷେତ୍ର କୁରୁକ୍ଷେତ୍ରରେ ସେଇ ଅହିଂସାର ବିଚାରଫଳରେ ବହୁ ରକ୍ତପାତ, ପୁଣି କଳିଙ୍ଗ ରଣ-ପ୍ରାଙ୍ଗଣରେ ବହୁ ରକ୍ତପାତ ପରେ, ସେଇ ଅହିଂସାର ବିଜୟ । ଏଇ ଧଉଳି ଖଣ୍ଡଗିରିର ଆଖପାଖରେ କେଉଁଠି ଲାଗିଲା କଳିଙ୍ଗ ସମର । ଟଳି ପଡ଼ିଲେ ଲକ୍ଷ ଲକ୍ଷ କଳିଙ୍ଗ-ସୈନ୍ୟ, ରକ୍ତରେ ତିନ୍ତାଇ ଦେଲେ ଏଇ ମାଟି । ସେଇକାଳୁ ଯେମିତି ଏ ମାଟିର ରଙ୍ଗ ଗେରୁଆ ହୋଇପଡ଼ିଛି ।

ଯୁଦ୍ଧ ହୋଇ ନ ଥିଲେ ମଧ ଆଜିଯାକେ କେହି ବଞ୍ଚି ନ ଥାନ୍ତେ; ବଞ୍ଚି ନ ଥାନ୍ତେ ଶୋକଶୂନ୍ୟ ଅଶୋକ; ଚଣ୍ଡାଶୋକ ହୁଅନ୍ତେ ନାହିଁ ଧର୍ମାଶୋକ । ଭାରତେଶ୍ୱର ହୁଅନ୍ତେ ନାହିଁ ଯୁଗ ଯୁଗ ଧରି ଅଧେ ପୃଥିବୀର ଅଧୀଶ୍ୱର । ଏଇ ପଥରରେ ଲେଖନ୍ତେ ନାହିଁ, ସବୁ ମଣିଷ ମୋ ପୁଅ—ସମସ୍ତେ ମୋରି ଅନ୍ଧ କୁନାଳ ! ମୋରି ଝିଅ ସମସ୍ତେ—ସଂଘମିତ୍ରା ! ସଂଘମ୍ ଶରଣମ୍ ଗଚ୍ଛାମି, ଧର୍ମ୍ମଂ ଶରଣଂ ଗଚ୍ଛାମି ।

ଏ କଥା ସିନା ଧର୍ମ ପ୍ରଚାରକର, କ୍ଷମତାସୀନ ଶାସକର ତ ନୁହେଁ । ଅଶୋକର ସେଇ ଚୀନ, ସେଇ ଭିଏତ୍‌ନାମ୍ ଆଜି ଚାଲିଛି ଅବା ପୃଥିବୀର ଆଉ ଏକ ରକ୍ତସ୍ନାନର ରଣାଙ୍ଗନ ହେବାକୁ ! ବୁଦ୍ଧ ଯେପରିକି ଆଜି ବୁଦ୍ଧିର ଶରଣ ଯୋଗାଇବାକୁ ଅକ୍ଷମ; ତଥାପି ଅଶୋକ ବିଜୟୀ ହୋଇ ରହିଲେ ଆଜି ସୁଦ୍ଧା—ତରବାରି ତ୍ୟାଗ କରି । ପାର୍ଥିବ ନିୟମର ବ୍ୟତିକ୍ରମ ! ଇତିହାସର ଆଶ୍ଚର୍ଯ୍ୟ !

ରଜଦିନ ଧଉଳି ଉପରେ ଚଢ଼ୁଁ । ଢିମା ପଥରରେ ଦେଉଳ ତୋଳୁଁ । ଏସବୁ କଥା ଜଣା ନଥାଏ ସେତେବେଳେ । ଲେଖା ହୋଇ ନଥାଏ—''ଧଉଳି ପାହାଡ଼ ! ଧଉଳି ପାହାଡ଼ !

କି କଥା କହିଲ ରାଜାଙ୍କ କାନେ !''

କବି ପଦ୍ମଚରଣ ! ତାଙ୍କ ଜନ୍ମସ୍ଥାନ ପାଞ୍ଚଗାଁ ଏଠାରୁ ବେଶି ବାଟ ନୁହେଁ । ଆମ ଗାଁକୁ ଧଉଳି ଯେମିତି ଦିଶେ ତାଙ୍କ ଗାଁକୁ ସେମିତି ଦିଶୁଥିବ । ହେଲେ ଆଉ କେଉଁ ଗାଁରୁ ଏମିତି ଧଉଳି କବିତା ବାହାରି ପାରି ନି ପରା !

ବହୁତ ଦୂରକୁ ଦିଶେ ଧଉଳି ଉପର ଭଙ୍ଗା ଦେଉଳ । ତଳେ ବୋହିଯାଏ କ୍ଷୀଣତୋୟା ଦୟା—ଅଶୋକ-ହୃଦୟର ଦୟା, ପ୍ରିୟଦର୍ଶୀର ପ୍ରାଣର କରୁଣା ।

ଏହି ଦୟା ନଦୀର ପୌରାଣିକ ନାମ ଥିଲା ପରା ଦଧିଭଦ୍ରା ! ତ୍ୟାଗବୀର ଦଧୀଚି ମହର୍ଷିଙ୍କ ଆଶ୍ରମ ଏହାରି କୂଳରେ ଥିବାର କିମ୍ବଦନ୍ତୀ । ଧଉଳିର ବିପରୀତ ଦିଗରେ ପୁଣି ଗଙ୍ଗରାଜାଙ୍କ ଚରମ କଳଙ୍କ—ନିନ୍ଦିତ ଘୃଣିତ କୌଶଲ୍ୟାଗାଙ୍ଗ ହ୍ରଦ ! ଯାହାର ସତ୍ୟ ମିଥ୍ୟା ଏବେ ଅପ୍ରମାଣିତ; ପୁଣି ଯେଉଁ କିମ୍ବଦନ୍ତୀକୁ 'ପାର୍ବତୀ' କାବ୍ୟର ବିଷୟବସ୍ତୁ କରି କବିବର ରାଧାନାଥ ବହୁ ତୀବ୍ର ସମାଲୋଚନାର ସମ୍ମୁଖୀନ ହୋଇଛନ୍ତି—ସତ୍ୟଂ ବୃୟାତ୍ ପ୍ରିୟ ବୃୟାତ୍ ମା ବୃୟାତ୍ ସତ୍ୟମ୍ ପ୍ରିୟମ୍ । ଅପ୍ରିୟ ସତ୍ୟ କହିଲେ ସବୁ ବିପଦ !

ଦୟା ଅବତାର	ବୁଦ୍ଧ ଦେବଙ୍କର
ବିଶ୍ୱବନ୍ଦ୍ୟ ବିଧିମାନ,
ଅକ୍ଷୟ ଅକ୍ଷରେ	ଯେଉଁ ଶୈଳଭାଲେ
ହେଉଅଛି ଦୀପ୍ୟମାନ ।

ଉତ୍କଳର ଅପରୂପ ସୌନ୍ଦର୍ଯ୍ୟ-କବି, ମାଧୁର୍ଯ୍ୟ-କବି ରାଧାନାଥ । ତାହାର କଦର୍ଯ୍ୟ କଳୁଷରେ ସେମିତି ସେ ବ୍ୟଥା ଓ ଘୃଣାରେ ଜର୍ଜରିତ । ଏଇ ଅତି ବାସ୍ତବ ଅତି ନିର୍ମମ ଦୃଷ୍ଟିର ମୂଲ୍ୟ ତାଙ୍କୁ ତ ଅଳ୍ପ ଦେବାକୁ ହୋଇ ନାହିଁ ସମାଲୋଚନାର ବିଷୋଦ୍‌ଗାରରେ ! କିନ୍ତୁ କବିତା କ'ଣ ସୁନ୍ଦର ପାଖରୁ ସତ୍ୟ ଓ ଶିବକୁ ଛାଡ଼ି ପାରେ କି ?

ପିଲାଦିନେ ରଜବୁଲି ଯିବାବେଳେ ଏସବୁ କଥା ତ ଜଣା ନଥାଏ । ଚାରିଆଡ଼େ 'ତମାଳ-ତାଳୀ-ବନରାଜିଲୀନା' ଭିତରେ ଧଉଳି ଥାଏ ଗୋଟିଏ ଏକୁଟିଆ ରହସ୍ୟମୟ ପର୍ବତ । ତାକୁ ଦେଖିଲେ ଯେମିତି, ତା' ଉପରେ ଚଢ଼ିଲେ ବି ସେମିତି ଛାତିଟା କାହିଁକି ଉଲୁସିଉଠେ ।

ଘରକୁ ଲେଉଟି ଦେଖେଁ, ବାପା ବସି ଗପ କରୁଛନ୍ତି । ପାଖରେ ତାଙ୍କର କେତେ ଜଣ ସାଙ୍ଗ-ସାଥି । ତାଙ୍କ ଭିତରୁ ମୁଁ ସଦେଇବାବୁଙ୍କୁ ଭଲକରି ଚିହ୍ନେ । ଗେଡ଼ା ଧେଡ଼ଙ୍ଗା ହୋଇ ମଣିଷଟିଏ । ବେକପାଖରୁ ଟିକିଏ ନଇଁ ପଡ଼ିଲାପରି । ଗୋଟିଏ ଆଖି ନଷ୍ଟ ହୋଇ ତୋଳାଟି ଧଳା ଦିଶୁଥାଏ । ଛାମୁ ଦାନ୍ତରୁ କେତୋଟି ଭାଙ୍ଗିଯାଇ ଗୋଟିଏ ଦାନ୍ତ ଓଠ ଉପରକୁ ବାହାରି ପଡ଼ିଥାଏ । ସଦେଇବାବୁଙ୍କ ଘର ଆମ ଗାଁଆରୁ ପାଞ୍ଚ ଛ'କୋଶ ଦୂର । ମୋର ବଡ଼ନାନୀଘର ଗାଁ ପାଖ—କୁମ୍ଭାରପଡ଼ା ।

ସଦେଇବାବୁଙ୍କୁ ଜ୍ୟୋତିଷ, ଆଗତଭବିଷ୍ୟ ବହୁତ କଥା ଜଣା । ମାଳିକା, ଅମରକୁମର, ଅଚ୍ୟୁତାନନ୍ଦଙ୍କ ଶୂନ୍ୟ-ସଂହିତା, ନନ୍ଦ ଦାସଙ୍କ ଅଣାକାର-ସଂହିତା—କେତେ ବହି କେତେ ବିଷୟର ଚର୍ଚ୍ଚା ହୁଏ । ଖଣ୍ଡଗିରି-ଗୁମ୍ଫାରୁ, ହିମାଳୟ-ପର୍ବତରୁ ଯୋଗୀଋଷିମାନେ କିମିତି ବାହାରିବେ । ଚଣ୍ଡୀ-ଚାମୁଣ୍ଡାମାନେ ଖଣ୍ଡାଖର୍ପର ଧରି ଗାଁ ଗାଁ ବୁଲିବେ, ଦୁଷ୍ଟଲୋକଙ୍କୁ ମାରି ତାଙ୍କ ରକ୍ତ ପିଇବେ । ଜାତିବର୍ଣ୍ଣ କିଛି ବିଚାର ରହିବ ନାହିଁ—

ସର୍ବେ ହୋଇବେ ଏକାକାର ।
ନଥିବ ବେଦର ବିଚାର ॥

''ପ୍ରଳୟ ! ପ୍ରଳୟ ! ବୁଝିଲେ ମୁକ୍ତାରବାବୁ ! ପ୍ରଳୟ ବେଳ ଆସିଗଲା ଏଣିକି ।'' ଏଡ଼େ ଧୀର ସହଜ ଓ ସାଦାସିଧାଭାବରେ ସଦେଇବାବୁ କଥାଗୁଡ଼ିକ କହନ୍ତି ଯେ, ମୋ ଭଳି ଚଞ୍ଚଳମତି ବାଳକ ସୁଦ୍ଧା ଖେଳ କଥା ଭୁଲି ଏଣିକି ତେଣିକି ଚାହେଁ, କେଉଁ ବାଟେ ପ୍ରଳୟ ଆସୁଛି !

''ଆଚ୍ଛା ସଂସାର ଭିତରେ ସତ ଅଛି କେଉଁଠି ଭଲା କହିଲ ?'' ହଠାତ୍ ଏକ ପ୍ରଶ୍ନ କରନ୍ତି ଆଉ ଜଣେ । ମୁହଁଯାକ ତାଙ୍କର ଘୋଡ଼େଇ ହୋଇ ପଡ଼ିଥାଏ ବହଳିଆ ଧଳା ଦାଢ଼ିରେ । ତା'ରି ଭିତରୁ ଦିଶୁଥାଏ ଖାଲି କୁଳୁ କୁଳୁ ଆଖି ଦିଓଟି ଆଉ ପାନଖିଆ ନାଲି ଓଠ । ପାନ ଚୋବେଇଲେ ସେଇ ଦାଢ଼ି ତାଳେ ତାଳେ ନାଚିଲା ପରି ଜଣାପଡ଼େ । ଟୁସିକଣା କି ଆଉ କେଉଁ ମଠର ବାବାଜି ସେ । ତାଙ୍କ ପ୍ରଶ୍ନରେ ସବୁରି ଆଖି ଓଟାରି ହୋଇଯାଏ ସେଇ ଦାଢ଼ି ଉପରକୁ ।

'ସତ ଆଉ ଅଛି କେଉଁଠି—ତରକି ଥିବୁ ତେଏରକୁ, ଚଉଦ ପନ୍ଦର କେହି ନ ରହିବେ ସତ ଉପୁଜିବ ସତରକୁ ।''ଏ କଥା କ'ଣ କେବେ ଅନ୍ୟଥା ହେବ ! ତୃତୀୟ ବ୍ୟକ୍ତି ସତ ସଳେଇ କହନ୍ତି ।

ଗଣନା କରିବାରେ ସଦେଇବାବୁ ଧୁରନ୍ଧର । ସେ କହନ୍ତି, ''ବୁଝିଚ ଆଗ, ଚଉଦ ପନ୍ଦର କ'ଣ, ପୁଣି ସତର କ'ଣ ? ଖାଲି କହିଦେଲେ କ'ଣ ହେବ କି ? ଏଇଠି ତ ରହିଛି ଗଣ୍ଠି । ଏ ଗଣ୍ଠିକୁ ଫିଟାଇବ କିଏ କହିଲ ?''

ଅନେକ ଯୁକ୍ତିତର୍କ ପରେ ଗଣ୍ଠି ଫିଟାଇ ଦିଅନ୍ତି ସ୍ୱୟଂ ସଦେଇବାବୁ । ''ସନ ୧୩୭୩ ହେଲା ଚଉଦ, ବୁଝିଲଟି ! ବୁଝିପାରୁନ ? ସେ ଚାରିଟା ଅଙ୍କକୁ ମିଶାଇ ଦେଲ ଦେଖି— ତିନି ଏକ ଚାରି ସାତ ଏଗାର, ଯୁକ୍ତ ତିନି ଚଉଦ—ବୁଝିଲ ତ ଏଥର ? ଏଡ଼େ ସହଳ କୁଆଡୁ ସଂହାରବେଳ ଆସିଯିବ ମ ! ସେମିତି ସନ ୧୩୭୪ ସାଲକୁ ମିଶାଇ ଦେଖ; ହେବ ପନ୍ଦର । କଳିଯୁଗ ଶେଷ ସେତିକିବେଳେ ।

ବାବାଜି କହନ୍ତି ହସି ହସି, ''ଅସଲ ସଂହାରବେଳ ତ ସେଇ—ତା'ର ତିନି ବର୍ଷ ପରେ ସନ ୧୩୭୬ ସାଲର ଅଙ୍କଗୁଡ଼ିକୁ ମିଶାଇଲେ ହେଲା ସତର—ସତ୍ୟଯୁଗ । ସେଇ ସଂହାରରେ ଗାଁ ଗାଁ ଖାଲି ହୋଇଯିବ । ଗାଁ-ଦାଣ୍ଡରେ ବୋହିବ ଲହୁ-ସୁଅ । ତା'ପରେ—

''ଝାଡ଼ ବାଡ଼ ଧରି ଯେ ଅବା ରହିବେ
ବିହନ ହୋଇବେ ସେଇ ।''

ତୃତୀୟ ବ୍ୟକ୍ତି ନିସ୍ପୃହ ହୋଇ ଟିପ୍ପଣୀ କରନ୍ତି, ''ଯେ ରହନ୍ତୁ, ଆମେ ତ ନ ଥିବା ।''

ପାନ ଚୋବାଇବା କ୍ରିୟା ଫଳରେ ବାବାଜିଙ୍କ ଦାଢ଼ି ଆହୁରି ସଂଚାଳିତ ହୁଏ । ''ଆମେ ନ ଥିଲେ ହେଲା କ'ଣ । ଯାହା ଘଟିବା କଥା, ସେ କ'ଣ ଆମ ତୁମକୁ ଅପେକ୍ଷା କରିଛି କି ? ମୁଁ କ'ଣ କହୁଥିଲି କି, ସତ୍ୟଯୁଗ ଯେତେବେଳେ ଆସୁଛି, ଆସୁ ପଛେ—ଏ କଳିଯୁଗରେ ବି ଯେତିକି ସତ ରହିଚି, ତାହା ସୁଦ୍ଧା ଟଳମଳ ହେଲାଣି ।''

ସମସ୍ତେ ଚାହାନ୍ତି ତାଙ୍କ ଆଡ଼କୁ । ମୁଁ କିନ୍ତୁ ଚାହିଁଥାଏଁ କାନ୍ଥରେ ଡେରା ହୋଇଥିବା ସଦେଇବାବୁଙ୍କ ଛୋଟ ମହଣଛତାଟିକୁ—ବାଉଁଶର ବେଣ୍ଟ ଖଣ୍ଡି । ଅଗଟି ତା'ର କି ସୁନ୍ଦର ବଙ୍କା । କିମିତି ତାହା ଏଡ଼େ ଯତ୍ନରେ ବଙ୍କା ହେଲା !

କହି ଚାଲିଥାନ୍ତି ବାବାଜି—''ଏଇ ଦେଖ, ସଂସାରରେ ସତ୍ୟ ଯଦି କିଏ ରଖିଥାଏ ତ ତାହା ସମୁଦ୍ର । ଆମର ଧନୁଆ କି କୁଶଭଦ୍ରାରେ ପାଣି ମୁନ୍ଦାଏ ଆସିଲେ ରାତିରେ ଚୁଲି ଜଳୁ ନି କି କାହାରି ଆଖିକୁ ନିଦ ଆସୁନି । କେଉଁଠି ବନ୍ଧ ଟିକିଏ ମେଲା ହୋଇଗଲେ ପ୍ରଳୟ; ମାତ୍ର କେତେ କୁଶଭଦ୍ରା, ଗଙ୍ଗା, ଯମୁନା, ଗୋଦାବରୀ ପାଣି ଯାଇ ଢଳା ନ ହେଉଛି ସମୁଦ୍ରରେ ! ଆଚ୍ଛା ଦିନେ ହେଲେ ତାହା ବଢ଼ିଲାଣି କି ଶୁଖିଲାଣି ଭଲା ? ସବୁବେଳେ ଯେମିତି କି ସେମିତି ! କେବେହେଲେ ସେ କୂଳ ଲଙ୍ଘିଲାଣି ନା ତା'ପାଇଁ ବନ୍ଧ ବାନ୍ଧିଲାଣି କିଏ କେଉଁଠି ? କିନ୍ତୁ ହେଲା କ'ଣ ସେ ଦିନ ରାତିରେ ? ନୋଳିଆ ସାହିଟା ଭାସୁଛି, ସିଂହଦୁଆରଯାକେ ଚିହିଁକି ଆସିଲା ଲହଡ଼ି ।''

କାନ୍ଥରୁ ଛତାଟିକୁ ଅକାରଣ ଉଠେଇ ସଦେଇବାବୁ କହନ୍ତି—''ଖାଲି ତ ସେତିକି ନୁହେଁ—

ବଡ଼ ଦେଉଳରୁ ନିଶ୍ଚେ ଖସିବ ପଥର ।
ବସିବ ଯେ ଗୃଧ୍ରପକ୍ଷୀ ଅରୁଣ ଖୁମ୍ବର ॥

''ବଡ଼ ଦେଉଳରୁ ତ ସେ ଦିନ ପଥର ଖସିଲା, ପୁଣି ତ ଶାଗୁଣା ମଧ୍ୟ ବସିଗଲା ଅରୁଣଖମ୍ବ ଉପରେ । କେଉଁ କଥାଟା ଆଉ ବାକି ରହିଲା କି ! ସବୁ ସୂଚକ ତ ମିଳିସାରିଲାଣି । ଆମେ ସିନା ନ ଥିବା, ଏହି ଟିକିବାବୁଟି ଆମର ସବୁ ଦେଖିବେ ଯେ !''

ମୋତେ ଉଦ୍ଦେଶ୍ୟ କରି ସଦେଇବାବୁ ଯାହା କହନ୍ତି, ପ୍ରକୃତରେ ତହିଁରୁ ମୁଁ ଖୁସି ହେବାର କିଛି ଉପାଦାନ ପାଏଁ ନାହିଁ । ବରଂ ତାଙ୍କ ଛତାଟିକି ଚାହିଁ ଭାରି ଖୁସି ଲାଗୁଥାଏ ମୋତେ । ସେ ପର୍ଯ୍ୟନ୍ତ ମୁଁ ତାଳପତ୍ରଛତା ସଙ୍ଗେ ବେଶି ପରିଚିତ । ସେ'ତ ସବୁବେଳେ ଖୋଲା । ଏ କିନ୍ତୁ ବନ୍ଦ ହୁଏ ପୁଣି ଖୋଲାଯାଏ ମଧ୍ୟ ।

ତାଙ୍କ ଭିତରେ ଆଉ କେତେ କଥା ଆଲୋଚନା ବି ହୁଏ । କେଉଁ ମାଳିକା କି ସଂହିତାରେ କୁଆଡ଼େ ଲେଖା ହୋଇଛି—ଅମୁକ ଜାଗାରେ ଅମୁକ ଘରେ କେଉଁ ସବୁ ମହାପୁରୁଷ ଜନ୍ମ ନେବେ । ମୁଁ କୁଆଡ଼େ ତାଙ୍କରି ଭିତରୁ ଜଣେ ! ବାପ୍‌ରେ—ସତେ ନା ? ମୁଁ ବି ଜଣେ ?

ସେ ସବୁ କଥା କିନ୍ତୁ ମୋର ଏ କାନରେ ପଶି ସେ କାନରେ ବାହାରି ଯାଏ । ଧ୍ୟାନ ରହିଥାଏ ଖାଲି ସେଇ ଛତାଟି ଉପରେ । ବାବାଜି ତାଙ୍କର ବିସ୍ମୟବାଚକ ଶୁଭ୍ର ଶ୍ମଶ୍ରୁକୁ ଟିକିଏ ସାଉଁଳି ଦିଅନ୍ତି ହାତମାରି । ତା'ରି ଭିତରୁ ଯେମିତି କି କଥା ବାହାରେ—ଏସବୁ ପରା ଠ ଅକ୍ଷର ପରି ଦିଶୁଚି ମୁକ୍ତାରବାବୁ । ଏଇ କୁଶଭଦ୍ରା କୂଳେ ତ 'ଶିଶୁ ମଠ' ଆଜିଯାକେ ରହିଛି । ବାଲିପାଟଣା 'ଶିଶୁମଠ' । ଶିଶୁ ଅନନ୍ତଙ୍କ ଜନ୍ମସ୍ଥାନ । ଅଚ୍ୟୁତ, ଅନନ୍ତ, ଯଶୋବନ୍ତ, ଜଗନ୍ନାଥ, ବଳରାମ—ପଞ୍ଚସଖାଙ୍କ ଭିତରୁ ଜଣେ ହେଲେ ଶିଶୁଅନନ୍ତ । ସେଇଠି ବାଲିପାଟଣା କୁଶଭଦ୍ରା ବନ୍ଧ ପାଖରେ ତ ଏଇ ବିଷ୍ଣୁଦାସପୁର । ଶ୍ରୀ ଅଚ୍ୟୁତି ଗୋସାଇଁଙ୍କ ଆଗତ ଭବିଷ୍ୟ ମାଳିକା ଦ୍ୱିତୀୟବାଣୀରେତ ସଫା ଲେଖା ରହିଛି—

''ବଢ଼ି ନ କହେ ଅଚ୍ୟୁତ,
ବାଲିପାଟଣା ପାଇବ ସଂକେତ,
ବନ୍ଧ ତଳୁ ଆଞ୍ଜା ହୋଇବ ତ ।''

''ଶୁଣିଲେ ଟି ? ଏ ପରା ଗୁରୁ-ବଚନ । କେବେହେଲେ କ'ଣ ଅନ୍ୟଥା ହେବ ?'' ତା'ପରେ କୌତୂହଳ ଓ ଗାମ୍ଭୀର୍ଯ୍ୟ ସହ ସବୁରି ଆଖି ଯେମିତି ମୋରି ଉପରେ ଆସି ପଡ଼େ ।

''ହଁ, ବାବାଜିଙ୍କ ମଠରେ ଯେଉଁ ଗୁପ୍ତ ମାଳିକା ଅଛି, ତା'ରି କଥା ସେ କହୁଛନ୍ତି ପରା !'' ଆଉ ଜଣଙ୍କଠାରୁ ସମର୍ଥନ ମିଳେ । ବାବାଜି ସଂଶୋଧନ କରି କହନ୍ତି, ''ଗୁପ୍ତ ମାଳିକା କାହିଁକି, ଏ ତ ପଞ୍ଚସଖା ଭିତରୁ ଆଉ ଜଣେ ସଖା—ସ୍ୱୟଂ ଅଚ୍ୟୁତାନନ୍ଦ ଦାସଙ୍କ ମାଳିକା ।''

ସଦେଇବାବୁ ଜାଣି ନ ଜାଣିଲା ପରି ପଚାରନ୍ତି, ''ଆଚ୍ଛା, ନାଁ'ଟି ତାଙ୍କର ଶିଶୁଅନନ୍ତ କାହିଁକି ?''

''ଶିଶୁଅନନ୍ତ ? ସେ ପରା ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣଙ୍କର ଶିଶୁ ଅବତାର—ବାତ୍ସଲ୍ୟ ରସଠାରୁ ମଧୁର ନିର୍ମଳ ନିଷ୍ପାପ ଆଉ କ'ଣ ଅଛି କି ?'' ବାବାଜି ଉତ୍ତର ଦିଅନ୍ତି, ''ଜଗନ୍ନାଥ ଦାସ ଶ୍ରୀମଦ୍ ଭାଗବତକୁ ଓଡ଼ିଆରେ ଲେଖିଲେ ପାରାୟଣ କଲେ ଶ୍ରୀମନ୍ଦିର-ବଟମୂଳେ ନାରୀମାନଙ୍କ ଗହଣରେ । ସେବକ-ବ୍ରାହ୍ମଣମାନେ ଆପତ୍ତି କଲେ ରାଜାଙ୍କ ଛାମୁରେ । ଅତିବଡ଼ୀ ଗୁରୁତର ଦୋଷରେ ସୁପର୍ଦ୍ଦ ହେଲେ । ଅପରାଧଟା ଲମ୍ପଟ ସ୍ୱଭାବ । ଉତ୍ତର କଲେ ଭାଗବତକାର—

କାହାର ସଙ୍ଗେ ସଙ୍ଗ ନୁହେଁ ।
ସମେ ବସଇଁ ସର୍ବ ଦେହେ ॥
ଆନନ୍ଦେ ଭ୍ରମଇଁ ସଂସାରେ ।
ସ୍ମରଣ ନ କରି କାହାରେ ॥
ଏଣୁ ଆକାଶ ଗୁରୁ ମୋର ।
ଏବେ ହୋ ଶୁଣ ନୃପବର ॥

ବ୍ରାହ୍ମଣ ସେବକମାନେ ଜିଗର କଲେ—ଏହା ଖାଲି ଛଳନା, ବାକ୍‌ଚାତୁରୀ । ପରୀକ୍ଷା ଦରକାର, ପ୍ରମାଣ ଲୋଡ଼ା । କି ପରୀକ୍ଷା ଦେବେ ଅବଧୂତ ଗୋସାଇଁ ? ନାରୀ ପୁରୁଷର ଫରକ ଯେ ତାଙ୍କୁ ଅଜଣା ! ଅନୁଭୂତିର ବାହାରେ ! ରାଜାଦେଶ ହେଲା, ଜଗନ୍ନାଥ ଦାଶ ଏକୁଟିଆ ଗୋଟିଏ ଘରେ ସାତ ଦିନ ବନ୍ଦୀ ରହିବେ । ସାତ ଦିନଯାକ ଯୋଗୀ ଜଗନ୍ନାଥ ରହିଲେ ନିର୍ଜନ, ନିରନ୍ନ, ନୀରବ ।

ସାତ ଦିନ ପରେ ବନ୍ଦିଶାଳାର ଦ୍ୱାର ଫିଟିଲା । ପାତ୍ର-ମନ୍ତ୍ରୀ, ବ୍ରାହ୍ମଣ-ସେବକ ଗହଣରେ ଅବାକ୍ ରାଜା ଦେଖନ୍ତି—ଦାଶଙ୍କର ନାରୀ ସରୂପ, ନୟନରେ କ୍ରୀଡ଼ା, ଅଧରରେ ମୃଦୁ ମନ୍ଦହାସ, ବକ୍ଷଦେଶ ସ୍ତନଭାରରେ ଆନତ ! ନିଜ ଆଖିକୁ ବିଶ୍ୱାସ କରି ପାରିଲେ ନାହିଁ ରାଜା-ମାୟା, ଇନ୍ଦ୍ରଜାଲ—ଯାଦୁ ! ସନ୍ନ୍ୟାସୀମାନେ ସେସବୁ ବିଦ୍ୟାରେ ପାରଙ୍ଗମ ।

ଖବର ବ୍ୟାପିଲା ଚାହୁଁ ଚାହୁଁ । ରୁଣ୍ଡ ହେଲେ ଆସି ଶତ ଶତ ଶ୍ରୀକ୍ଷେତ୍ରବାସୀ । ସବୁରି ମୁଖରେ ସଂଶୟ । ପୁଣି କ'ଣ ପରୀକ୍ଷା ? ସତୀ ସୀତାଙ୍କର ଅଗ୍ନିପରୀକ୍ଷା ତ ଏକା ଥରେ ଶେଷ ହୋଇ ନି । ସନ୍ଦେହୀ ମନ କ'ଣ ସହଜେ ବୁଝେ ? ନାରୀରୂପୀ ଅତିବଡ଼ୀଙ୍କ ଅଧରରୁ ସେ ହସ ନିଭିଲା ନାହିଁ, କରୁଣାର ହସ !

ଜନଗହଳି ଭିତରୁ ଅକସ୍ମାତ୍ ବାହାରି ଆସିଲେ ଜଣେ ଯୁବକ । ସୁଶାନ୍ତ ସୁନ୍ଦର ଅକଳୁଷ ବଦନ । ଦୁଇ ଆଖିରୁ ଅସରନ୍ତି ଅନର୍ଗଳ ଅଶ୍ରୁ । 'ମାଆ' 'ମାଆ' କ୍ରନ୍ଦନରାବରେ ଫାଟି ପଡ଼ିଲା ବଡ଼ଦାଣ୍ଡ । ଅଧୀର ଆବେଗରେ ଉଡ଼ିଲା ନୀଳଚକ୍ର ଉପରେ ଫର ଫର ହୋଇ ପତିତପାବନ ବାନା । ଅଟ୍ଟହାସରେ ଗର୍ଜନ କଲା ମହୋଦଧି । ସେଇ ଯୁବକଙ୍କୁ ତକ୍ଷଣେ କୋଳରେ ଟୋଳି ଧରି ଆଦର କଲେ ଅତିବଡ଼ୀ । ସ୍ତନଦେଶରୁ ଉଚ୍ଛୁଳି ଝରିଲା ଦୁଗ୍ଧଭାଣ୍ଡ । ସେ ସ୍ତନକୁ ପାନ କଲେ ପରମ ଆହ୍ଲାଦରେ ଯୁବକ । ଜନନୀ ଯଶୋଦା-କୋଳରେ ତୃପ୍ତ ଯେପରି ତୃଷିତ କହ୍ନାଇ । ସେଇ ଦିନୁଁ ହେଲେ ସେ ଶିଶୁଅନନ୍ତ ।''

''ଆଜିକାଲି ଲୋକେ ଏହା ଅସମ୍ଭବ ମଣିବେ'' ସଦେଇବାବୁ କହନ୍ତି, ''କିନ୍ତୁ ସେ ଦିନ ପରା 'ଦୀପିକା'ରେ ପଢ଼ିଲେ ମୁକ୍ତାରବାବୁ । ବୃନ୍ଦାବନର ସେଇ ଯେ ଗୋସାମୀ ଜଣକ—ନାଁଟି ତାଙ୍କର କ'ଣ ତ ! ଏମ୍.ଏ.ପାସ୍ କରି ଚିର ବ୍ରହ୍ମଚାରୀ । ବୃନ୍ଦାବନରେ ଗୋଟିଏ ଘରେ ଏକା ରହନ୍ତି । ନାମ ସଂକୀର୍ତ୍ତନ ଛଡ଼ା ଆଉ କିଛି ଜାଣନ୍ତି ନାହିଁ । ଏବେ ତାଙ୍କର ସର୍ବାଙ୍ଗରେ କୁଆଡ଼େ ନାରୀତ୍ୱର ଚିହ୍ନ ପ୍ରକଟିତ ।''

'ଉତ୍କଳଦୀପିକା' ଥାଏ ଓଡ଼ିଆ ସାପ୍ତାହିକ ଖବରକାଗଜ । ବାପା କହନ୍ତି, ''ଜଣେ କାହିଁକି, କେତେ ଜଣଙ୍କ କଥା ମୁଁ ଜାଣିଛି । ଆଦୌ ଏହା ତ ବିଚିତ୍ର ନୁହେଁ । ଗୋପୀଭାବ, ରାଧାଭାବ ଏ ସବୁ ହେଲା ବୈଷ୍ଣବ ଧର୍ମର ଅସଲ କଥା । ପୁଣି ସହଜ ପନ୍ଥା ।''

ବାପା କେବେହେଲେ ବୈଷ୍ଣବ କିମ୍ବା କୌଣସି ସମ୍ପ୍ରଦାୟର ସମର୍ଥକ ନ ଥିଲେ; କିନ୍ତୁ ଗୀତା ଭାଗବତ ଥିଲା ତାଙ୍କର ଶ୍ରେଷ୍ଠ ସାହିତ୍ୟ । କୌଣସି ମନ୍ଦିରକୁ ଯାଇ ପୂଜା ଦର୍ଶନ କରିବା ତାଙ୍କୁ ମୁଁ ଦେଖି ନାହିଁ । ଚିତା ଘେନିବା କିମ୍ବା ସନ୍ଧ୍ୟା କରିବା ଆଦି ଦୈନନ୍ଦିନ କ୍ରିୟାରୁ ବର୍ଗ

ବିରତ ଥିବାରୁ ସେ ସମାଲୋଚିତ ହୁଅନ୍ତି । ସେଥିପ୍ରତି ତାଙ୍କର ଭ୍ରୂକ୍ଷେପ ନ ଥାଏ । କେବଳ ଗାଧୋଇ ସାରି ନୀରବରେ ଗୋଟିଏ ଘଣ୍ଟା ଜପରେ ବସନ୍ତି ଓ ଗୀତା ପାଠ କରନ୍ତି । ଅନେକ ବର୍ଷ ପର୍ଯ୍ୟନ୍ତ ମୁଁ ମଧ୍ୟ ତାଙ୍କୁ ଅନୁସରଣ କରୁଥିଲି, କିନ୍ତୁ ଯେଉଁ ସମୟର କଥା ଲେଖୁଚି, ସେତେବେଳେ ମୋର ଏକମାତ୍ର 'ଗୀତା' ଥିଲା ଖେଳ କୌତୁକ ଚଗଲାମି ।

ମୋତେ ଟିକିଏ ବାଟକୁ ଆଣିବା ପାଇଁ ବାପା ମୋ ନାଁରେ 'ଉତ୍କଳ ଦୀପିକା' ମଗାଇ ଦେଇଥାନ୍ତି । ପ୍ରତି ହାଟପାଳିରେ ମୋ ନାଁ ଲେଖା ହୋଇ ଖଣ୍ଡେ ପତ୍ରିକା ଆସେ । ତାକୁ ଫିଟାଇ ସେଥିରୁ ମୁଁ ଖବର ପଢ଼ିବା ଅପେକ୍ଷା ବେଶି ପଢ଼େଁ ବିଜ୍ଞାପନଗୁଡ଼ିକୁ । ଗୋଟିଏ ଟଙ୍କାରେ ତାସ, ସପ୍ତସର, ଘଣ୍ଟା, କଲମ, ଜଳଛବି କେତେ କ'ଣ ଜିନିଷ; ମାତ୍ର ଟଙ୍କାଟିଏ ପାଇବି କେଉଁଠୁ ? ମନ ଖାଲି ଛଟପଟ ହୁଏ । ସଦେଇବାବୁଙ୍କ ଛତାକୁ ଚାହିଁ ସେମିତି ମନ ହେଲା ।

ଶେଷକୁ ଆଉ ସମ୍ଭାଳି ପାରିଲିନି । ଆସ୍ତେ ଆସ୍ତେ ଯାଇ ଛତାଟିକୁ ଧରିଲି । ପରୀକ୍ଷା କଲି କେମିତି ତାହା ଫିଟିଯାଏ । ସଦେଇବାବୁ ପଚାରନ୍ତି, ''କ'ଣ, ଫିଟାଇ ପାରୁନ କି ? ଏଇ ଦେଖ ।''

ଏହା କହି ସେ ଫିଟାଇଦେଲେ । ଭିତରେ ତା'ର ସରୁ ସରୁ ଲୁହା କାଠି ! ମୁଦିଲାବେଳକୁ କାଠିଗୁଡ଼ିକ ଜାକି ହୋଇଯାଏ ! କେଡ଼େ ମଜା !! ବାପାଙ୍କ ପାଖକୁ ଯାଇ ତୁନି ତୁନି କହିଲି ଛତାଟି ନେବାକୁ । ସଦେଇବାବୁ କିମିତି ଜାଣିପାରି ପଚାରିଲେ, ''କ'ଣ ଛତାଟିକି ରଖିବ ? ହଉ ତେବେ ନିଅ ।''

ବାପାଙ୍କୁ ଭାରି ଅଡୁଆ ଲାଗିଲା । କହିଲେ, ''ନା, ନା, ତୁମେ ଏତେ ବାଟ ଯିବ କିମିତି । ଏଥର ତା'ପାଇଁ ଖଣ୍ଡେ ଛତା କିଣି ଆଣିବି ପୁରୀରୁ ।''

ପୁରୀରୁ ! ବାପାଙ୍କର କ'ଣ ମନେ ରହିବ ! ମୁହଁଟା ମୋର ଶୁଖିଗଲା । ଏଡ଼େ ସୁନ୍ଦର ସାନ ଛତାଟିଏ । ଆଉ କ'ଣ କେଉଁଠି ମିଳିବ କି ! ମୋ ମନ କଥା ଜାଣିଲା ପରି ସଦେଇବାବୁ କହିଲେ, ''ନା, ନା, ମୋର କିଛି ଅସୁବିଧା ହେବନି । ଛତାଟି ତୁମେ ରଖ ।''

ବାପାଙ୍କ ସାଙ୍ଗମାନେ ସତେ କେଡ଼େ ଭଲ ମଣିଷ ! କାହିଁକି କେଜାଣି ଭାଇନା ସେମାନଙ୍କ ବିରୋଧରେ କେତେ କଥା କହନ୍ତି । ''ପ୍ରଳୟ ସଂହାର—ସେଗୁଡ଼ାକ ଖାଲି ଗୁଲିଖଟି ଗପ ।'' ବାପ ପୁଅଙ୍କ ଭିତରେ ବହୁତ ଯୁକ୍ତି ତର୍କ ହୁଏ ।

''ଗୁଲିଖଟି ଗପ ! ଏ ସବୁ କଥା ତ ପୋଥିରେ ଲେଖା ରହିଛି''—ଭାଇନାଙ୍କ କଡ଼ା କଥାରେ ବାପା ଟିକିଏ ବ୍ୟଥିତ ହେଲାପରି କହନ୍ତି ।

''ପୋଥିରେ ଯାହା ଲେଖାଅଛି, ସବୁ କ'ଣ ସତ । ତା' ଭିତରୁ ବହୁତ କଥା ଖାଲି ଚିଲମ ଜୋରରେ ଲେଖା ।'' ଭାଇନା ତର୍କ କରନ୍ତି ।

''ତେବେ ତୁମେ ଯେଉଁ ସବୁ ଇଂରାଜୀ ବହି ପଢୁଚ ? ସେଗୁଡ଼ାକୁ ସିନା ମଦ, ଅଫିମ, ପିକା, ସିଗ୍ରେଟ୍ ଲେଖଉଥିବ ? କି ପାଠ ସେଗୁଡ଼ା ? କେଉଁଠି ଆମ ପିଲାଏ ପଢୁଥିଲେ 'କମଳଲୋଚନ ଶ୍ରୀହରି, କରେଣ ଶଙ୍ଖଚକ୍ର ଧରି' ଏବେ ପଢୁଛନ୍ତି, 'The cock

has wings !' ଏଇ ତ ପାଠ, କୁକୁଡ଼ାର ଡେଣା ଗଣିବା ପାଠ !''ହସି ଉଠନ୍ତି ବାପା, ''କୁକୁଡ଼ା ନ ହେଲେ ତ ଇଂରାଜୀ ପାଠ ହେବନି !''

''ନାଇଁ ସେଗୁଡ଼ା କିଛି ପାଠ ନୁହେଁ, ପାଠ ହେଲା ଖାଲି କେଉଁଠୁ କେତେ ଡାକିଣୀ, ଚିରିଗୁଣୀ ବାହାରି ଚାରିଆଡ଼େ ଗାଁ ଗାଁ ବୁଲି ରକ୍ତ ପିଇବେ ଦୁଷ୍ଟ ଲୋକଙ୍କର । ଭକ୍ତମାନଙ୍କୁ ଭୈରବୀଚକ୍ର ରକ୍ଷା କରିବ । ପୁଣି 'ଖଣ୍ଡଗିରି ସିଦ୍ଧ ସ୍ଥାନରେ ଯେତେ ଅଛନ୍ତି ଋଷି । ସକଳେ ବାହାର ହୋଇବେ ପ୍ରଭୁ ନାମକୁ ଘୋଷି ।'—ଭାଇନା ମଧ ହସି ପକାଇ ଅଚ୍ୟୁତାନନ୍ଦ 'ମାଳିକା'ରୁ ଉଦ୍ଧାରକରି କହନ୍ତି ।

ମନୁସଂହିତାରୁ କେତେ କଥା ଉଦ୍ଧାର କରନ୍ତି ବାପା । ମନୁଷ୍ୟମାନଙ୍କ ପ୍ରଥମ ପ୍ରପିତାମହ ମନୁ । ସେ ଗୋଟିଏ ମାଛଠାରୁ ଶୁଣିଲେ ଯେ, ପ୍ରଳୟ ଆସୁଛି । ତହୁଁ ସେ ଗଢ଼ିଲେ ଗୋଟିଏ ନୌକା । ପ୍ରଳୟ ଶେଷରେ ଜନ୍ମହେଲା ଜଣେ ନାରୀ ।

''ସେମିତି ଗପ କେଉଁ ଦେଶରେ ନାହିଁକି ? ପୃଥିବୀର ସବୁରି ଧର୍ମ ଶାସ୍ତ୍ରରେ ଊଣା ଅଧିକେ ସେ କଥା ଅଛି । ହିବ୍ରୁମାନଙ୍କ କିମ୍ବଦନ୍ତୀରେ, ବେବିଲୋନରେ ଆଉ ଗ୍ରୀସ୍‌ର ଏପୋଲୋ ଡୋରେସ୍ ଯେଉଁ ଗପ ଲେଖିଛନ୍ତି, ସେଥିରେ ବି ଅଛି ମହା ପ୍ରଳୟର କାହାଣୀ— ପୁଣି ଖ୍ରୀଷ୍ଟିଆନ୍ ଓଲ୍ଡ୍ ଟେଷ୍ଟାମେଣ୍ଟରେ, ଚୀନ୍, ମିଶର—''

ଭାଇନାଙ୍କ କଥା ନ ସରୁଣୁ ବାପା କହନ୍ତି, ''ସେ ସବୁ ଆମରିଠାରୁ ଆମରି ଭାରତବର୍ଷରୁ ନିଆ ହୋଇଛି । ତାଙ୍କର ସଭ୍ୟତା ବୋଇଲେ ତ ମୋଟେ ଦି'ହଜାର ବର୍ଷ ପୂରିନି । ଯିଶୁଖ୍ରୀଷ୍ଟଙ୍କ ଆଗରୁ ସମସ୍ତେ ଥିଲେ ବିଧର୍ମୀ, ବର୍ବର, ଅସଭ୍ୟ । ଆମ ଦେଶର ଅନାର୍ଯ୍ୟମାନଙ୍କଠାରୁ ବି ଆହୁରି ବେଶି । ତାଙ୍କ ପୂର୍ବ ପୁରୁଷଙ୍କୁ ବି ସେଇମାନେ କହନ୍ତି ମୂର୍ଖ ବର୍ବର । ଆଉ ତାଙ୍କରି ସାହିତ୍ୟ ଇତିହାସ ପଢ଼ି ତମର ସବୁ ମୁଣ୍ଡଗୁଡ଼ିକ ବିକୃତ ହୋଇସାରିଲାଣି । ଆଜିକାଲି ଶିକ୍ଷାର ଏହି କୁଫଳ ।''

ଏସବୁ ଯୁକ୍ତିତର୍କ ଭିତରୁ କେତେ ମୋର ମନେ ଅଛି, ଆଉ କେତେ ମନଗଢ଼ା, ତାହା ଆପଣଙ୍କ ଅନୁମାନକୁ ଛାଡ଼ିଦେଲି । ଆପଣଙ୍କୁ ଆଜି ଯେମିତି ଏହା ସୁଖ ଲାଗୁ ନଥିବ, ମତେ କିନ୍ତୁ ସେମିତି ସୁଖ ଲାଗୁଥିଲା, ସେତେବେଳେ ଖାଲି ସେଇ ଛତାଖଣ୍ଡି ।

ଛତାଖଣ୍ଡିକୁ ଓଲଟ ପାଲଟ କରି, ଫିଟାଇ ବନ୍ଦ କରି ସେସବୁ ଯୁକ୍ତିତର୍କର ଜଙ୍ଗଲ ଭିତରୁ ପଦାକୁ ବାହାରି ଯାଇ ନିଃଶ୍ୱାସ ମାରିଲି । ସେଇ ଛତାଖଣ୍ଡି ଧରି ଭୋବନିଭାଇନାଙ୍କ ସାଙ୍ଗରେ ବିଲକୁ ଯାଏଁ । ଧାନବୁଣା, ବିଲ ବଛା, ଧାନ କଟା, ହଳାହିସାବ, ମୁଗଉପୁଡ଼ା ସବୁ କାମରେ ଥିଲା ସେ ମୋର ସଦାସହଚର । ତା' ଆଗରୁ ଯେଉଁ ଗରୁଆ ମୋଟା ବାଉଁଶ ବେଣ୍ଟର ତାଳପତ୍ର ଛତାରେ କୋଇଲିସୂତା ବାନ୍ଧି ଏକତାରା ବଜାଉଥିଲି, ତାକୁ ଆଉ ପଚାରିଲି ନାହିଁ ।

କନାଛତାରେ ଆଉ ଗୋଟିଏ ନାଁ ହେଲା ମହଣ ଛତା । କନାରେ ତା'ର ମହଣ ଦିଆ ହୋଇଥିବାରୁ ଏପରି ନାମକରଣ ହୋଇଥିବ ଅବା ! ସେଥିରେ ସିନା ସୂତା ବାନ୍ଧି ବାଜା ବଜାଇ ହୁଏ ନାହିଁ, ତେବେ ନେବା ଆଣିବାକୁ ଭାରି ସୁବିଧା । ଛତାଖଣ୍ଡିକୁ କାଖରେ ଜାକି ବାଡ଼ିଦୁଆରେ ପହଞ୍ଚି ଡାକ ଛାଡ଼େଁ—

''ସାଆନ୍ତାଣୀ, ଭାତ ଗଣ୍ଡାଏ ଦିଅ ।''

ଧଡ଼ପଡ଼ ହୋଇ ବୋଉ ଓ ନାନୀମାନେ ଆସି ଦେଖନ୍ତି, ମୁଁ ବାଡ଼ିଦୁଆରେ ଖଣ୍ଡେ କଦଳୀପତ୍ର ପକାଇ ବସିଛି ।

ବୋଉ ହସି ହସି ଡାକନ୍ତି, ''କି ରେ, ଘର ଭିତରକୁ ଆ । ଏଇଠି ଖାଇବୁ କାହିଁକି ?''

''ନା, ନା, ମୁଁ ପରା ବଇଷମ ବେହେରା । ବେହେରାମାନେ କ'ଣ ଘର ଭିତରେ ଖା'ନ୍ତି ? ମତେ ଏଇଠି ଦିଅ ।'' ମୁଁ ଏକା ଜିଗର କରେଁ । କମଳାନାନୀ ବିରକ୍ତ ହୋଇ କହେ, ''ହଉ ତା'ହେଲେ ଏଇଠି ଖା । ଆଉ ତୁ ଆମ ଘର ଭିତରକୁ ଆସିବୁନି ।''

ଭାତ ତରକାରି ଦିଆହୁଏ ସେଇଠି ବାରିପଟେ ଢିଙ୍କିଚାଳିଆରେ । ଖାଇସାରି ସଖୁଡ଼ି ଗୋଟାଇ ପତର ପକାଇ ପାଣି ପକାଇ ଜାଗାଟିକୁ ଲିପିଦିଏଁ ! ଛତାଟି ଧରି ପୁଣି ବାଡ଼ି ଗଡ଼ିଆ ବନ୍ଧ ଉପରକୁ ଯାଏଁ ବାଛୁରୀ ଚରାଇବାପାଇଁ । ବାଛୁରୀଟିଏ ପାଳିଥାଏଁ ମୁଁ ।

ଧଳା ବାଛୁରୀ । ଯେମିତି ଟାଣୁଆ ସେମିତି ତରକା । ଲାଞ୍ଜରେ ଗୋଛାଏ ଚଅଁର । ମତେ ସେ ଏମିତି ମାନେ ଯେ, ଗୋଟିଏ ଡାକରେ ପାଖକୁ ଚାଲିଆସେ । ଖରା ଟାଇଁ ଟାଇଁ ମାରୁଛି । ଗୋଟିଏ ହାତରେ ମୋର ବାଛୁରୀ ପଘା, ଆର ହାତରେ ଛତା ।

ଗୋଟାଏ ହାତକୁ ଟିକିଏ ଉଶ୍ୱାସ କରିବାକୁ ଇଚ୍ଛା ହେଲା । ବାଛୁରୀଟାର ଲାଙ୍ଗୁଳଅଗ ଚଅଁରରେ ଛତାର ବଙ୍କୁଲିବେଣ୍ଟକୁ ଭଲକରି ଗଣ୍ଠିପକାଇ ବାନ୍ଧିଲି । ଏଥର ତା'ହେଲେ ପଘାଟା ଛାଡ଼ିଦେଲେ ଗୋଟାଏ ହାତ ମୋର ମୁକ୍ତି ପାଇବ—ଅବିକଳ ଆଜି ଏ କଥା ମନେ ଅଛି ମୋର ।

ମାତ୍ର ଏ କ'ଣ ! ହାତରୁ ମୋର ପଘାଟା ଟିକିଏ ଖସିଚି କି ନାହିଁ ବାଛୁରୀର ପଛଗୋଡ଼ ଯୋଡ଼ିକ ମୋ ଉପରକୁ ଛିଟିକି ଆସିଲା, ଆଉ ମୋତେ ଝିଙ୍କାଟାଏ ଦେଇ ସେ ମାରିଲା ଗୋଟାଏ ଚିଲା ।

ହତାଶ ହୋଇ ତା'ପଛରେ ଦୌଡ଼ିଲି; କିନ୍ତୁ ଚାହୁଁ ଚାହୁଁ ସେ ଚାରି ଖେପାରେ ଗଡ଼ିଆ ବନ୍ଧଟାକୁ ପାର ହୋଇ ଗୋଟାଏ ବେତ ବୁଦା ଓ କିଆବାଡ଼କୁ ଡେଇଁ ଦଉଡ଼ିଛି । ଲାଙ୍ଗୁଡ଼ ଅଗରେ ଖୁବ୍ କସା ହୋଇ ବନ୍ଧାଯାଇଥିବା ମହଣ ଛତାଟି କେତେବେଳେ ଫିଟି ଯାଉଛି ତ ପୁଣି କେତେବେଳେ ବନ୍ଦ ! କି ଚମତ୍କାର ସେ ଦୃଶ୍ୟ ପୁଣି କେଡ଼େ ହତାଶାଜନକ !

ବାଛୁରୀ ତ ଗଲା, ଗଲା । ବଳେ କ'ଣ ଧରା ହୋଇ ଆସିବନିକି ! କିନ୍ତୁ ଛତାଟି ଆଉ ପାଇବି କାହୁଁ ! ମନ ଦୁଃଖରେ ପଛେ ପଛେ ତା'ର ଗୋଡ଼ାଇଲି, କିନ୍ତୁ ଦଣ୍ଡକରେ ସେ ଭୋଇସାହି ଭିତରେ ପଶି କାହିଁ ଅଦୃଶ୍ୟ ହୋଇଗଲାଣି !

ତଥାପି ଛତା ଲୋଭ ମୋର ଛାଡ଼ୁ ନ ଥାଏ । କେତେ କଷ୍ଟରେ ତାକୁ ପାଇଥିଲି ନିକି ସଦେଇବାବୁଙ୍କଠାରୁ ! କେତେ ଧର୍ମଶାସ୍ତ୍ର, ଦର୍ଶନ ଶାସ୍ତ୍ରଭିତରୁ, କେତେ ଅପ୍ରାକୃତ ପ୍ରେମ, କେତେ ଶ୍ରଦ୍ଧାଭକ୍ତି, ଜ୍ଞାନମିଶ୍ରା ଭକ୍ତି ଭିତରୁ । ଶେଷରେ ପୁଣି ତା'ର ଏଇ ଦଶା !

ଗୋଡ଼େଇଲି ବାଛୁରୀ ପଛେ ପଛେ । ଭୋଇସାହି ଭିତରେ ପଶି ତାଟକା ହୋଇଗଲି । ବାଛୁରୀଟାର ତ ଚିହ୍ନ ନାହିଁ, ତା' ବଦଳରେ କାହା ଘରେ କାନ୍ଦବୋବାଳି, ଆଉ କିଏ ବାଛୁରୀ ସମେତ ତା'ର ମୁନିବର ସପ୍ତପୁରୁଷ ଉଦ୍ଧାର କରୁଛି ଲାଗିପଡ଼ି । କାହାଘରେ ପିଲା ଖେଳୁଥିଲେ ତାଙ୍କ ଦେହରେ ବସିଛି ନାତ । ମେଲାରେ କାହା ଚୁଲିରେ ଭାତହାଣ୍ଡି ବସିଥିଲା, ହାଣ୍ଡି ଫାଟି ଅଗଣାଯାକ ବିଞ୍ଚିହୋଇ ପଡ଼ିଚି ଦହଦ୍ଦ ଭାତ । କାହାର ମେଣ୍ଢାପଲ ଯାଇ ବଣ ଭିତରେ, କାହାର ଗର୍ଭିଣୀ ଗାଈ ପଘା ଛିଣ୍ଡାଇ କୁଆଡ଼େ ପଳାଇଲାଣି । କୁକୁରଗୁଡ଼ାକ ଭୁକି ଭୁକି ଗୋଡ଼େଇଛନ୍ତି । କୁକୁଡ଼ା ମା' ତା ଛୁଆପଲ ସାଙ୍ଗେ କକ୍ କକ୍ ଡାକି ପଳେଇଛି ।

ଯା' ହେଲା ପଛେ ହେଲା । ଛତାଟି ମୋର କାହିଁ ? ପଚାରି ପଚାରି ମୁଁ ଭୋଇ ସାହିଯାକ ବୁଲୁଚି, ମାତ୍ର ମୋ କଥାକୁ କାନ ଦେଉଛି କିଏ ? ଶେଷରେ ଶୁଣିଲି ଅପର୍ତ୍ତି ଭୋଇ ପାଖରେ ଅଛି । ଅପର୍ତ୍ତି ବେଶ୍ ମୋଟା ମଜବୁତିଆ ଧୂସରା ମଣିଷ । ସେଥିପାଇଁ ତା' ମୁହଁର ଠାକୁରାଣୀ ଦାଗ ବେଶି ଦେଖାଯାଏ ନାହିଁ ।

ପଚାରିଲି ଯାଇ ତାକୁ । ଛତା ବିଷୟ କିଛି ନ କହି ସେ ଖାଲି ମତେ ଏଡ଼େ ଏଡ଼େ ଆଖି ଦେଖାଇ କଟମଟ କରି ଚାହିଁଲା ।

ତା'ପରେ ଧମ୍‌କ ଦେଲାପରି କହିଲା, ''କ'ଣ ହେଉଛି ଏ ସବୁ ?''

ଭାରି ଅପମାନ ହେଲା ମୋତେ । କାନ୍ଦି କାନ୍ଦି ଆସି ବୋଉଙ୍କ ପାଖରେ ଅଭିଯୋଗ କଲି । ଭାଇନା ଆସିଲେ ପୁରୀରୁ । ମୋତେ ଆଗ ଆକଟ କରି ପରେ ଡକରା ହେଲା ଅପର୍ତ୍ତି ଭୋଇକୁ । ସେ ଆସି ତା'ର ସଫେଇ ଦେଲା, ଦୋଷ ମାଗିଲା ।

ଆଗରୁ ଆଣି ସେ ଛତାଖଣ୍ଡି ଦେଇଯାଇଥାଏ ବୋଉଙ୍କ ଜିମା । ଛତାକୁ ଦେଖି ମନଟା ମୋର ବେଶି ଖରାପ ହୋଇପଡ଼ିଲା । ତା'ର ବେଣ୍ଟ କାଠି କନା କ'ଣ ଯେ କିମିତି ହୋଇପଡ଼ିଥାଏ, ଆଉ ତ ତାକୁ ମୋଟେ ଚିହ୍ନି ହେଲାନି ! ହାୟ ! ହାୟ ! କି ଦୁଃଖ କି ଦୁର୍ଯୋଗର ଦିନ ସେ !

ପରେ ପୁରୀ ଜିଲ୍ଲା ସ୍କୁଲର ଛାତ୍ର ଥିବାବେଳେ ଇଂରେଜ କବି ଉଇଲୟମ୍ କାଉପରଙ୍କ 'ଜନ୍ ଗିଲ୍‌ପିନ୍' କବିତାଟି ପଢ଼ି ବିଚାରିଲି, ତାହାକୁ ମୁଁ ବାଛୁରୀ ଲାଙ୍ଗୁଡ଼ରେ ଛତା ବାନ୍ଧି ପିଲାଦିନୁ ନିଜ ଅଙ୍ଗେ ନିଭାଇ ସାରିଛି ।

The dogs did bark
The children screamed
Up flew windows all.
And every soul cried out, well done !
As loud as he could baul

କୁକୁର ଭୁକିଲେ ପିଲାଏ ଛାଡ଼ିଲେ ରଡ଼ି
ସହସା ସବୁରି ଝରକା ଗଲା ଯେ ଫିଟି
ସାବାସ୍ ! ସାବାସ୍ ! କଲେ ଚିତ୍କାର ସବୁ
ଯେତେ ଜୋରେ ଯାହା ଚିତ୍କାର ପାରେ ବଢ଼ି ।



# ଅଲିଭା ଦାଗ

ମଝି ସାହାଲା ଆଟୁଘରର ମାଟି କାନ୍ଥରେ ଝୁଲୁଥାଏ ଛଅ ସାତଟା ବଡ଼ ବଡ଼ ଫଟୋ । ନାନା ରଙ୍ଗ ପୋଷାକରେ ଚିତ୍ରିତ କେତେ ସ୍ତ୍ରୀ, ପିଲା, ଯୁବକ, ବୁଢ଼ା । ସବୁରି ଚେହେରା ବେଶ୍ ସୁନ୍ଦର, ପୂରି କରି ଯେମିତି ଫାଟି ପଡୁଚି । ଗାଲଗୁଡ଼ିକରେ ଫୁଟିଛି ଗୋଲାପ ଫୁଲ । ଦେହରେ ନୀଳ ପୁଣି ସବୁଜ ଜରିପୋଷାକ ।

ପୁରୀ କି କଲିକତାରୁ ଭାଇନା ସେ ସବୁ ଚିତ୍ରପଟ ଆଣିଥାନ୍ତି । ପୁରୀରୁ ଏଣ୍ଟ୍ରାନ୍‌ସ ଓ କଟକରୁ ବି.ଏ. ପାସ୍ କରି ଭାଇନା ପଢୁଥାନ୍ତି କଲିକତାରେ । ମୋର ସହର ଦେଖା ଭିତରେ ଗାଁରୁ ଭୁବନେଶ୍ୱର ଯାଇ ଅଶୋକାଷ୍ଟମୀ ରଥ ଯାତ ବା ଜାଗର ଯାତ ଦେଖିବା, ନଇଲେ ଦି' ଚାରି ଦିନ ପାଇଁ ଯାଇ ବାପାଙ୍କ ପାଖରେ ରହିବା । ପୁରୀକୁ ଯାଇ ଜଗନ୍ନାଥ ଚିତ୍ର କିଣି ଆଣିଛି; କିନ୍ତୁ ଆମ ଆଟୁଘରେ ଝୁଲୁଥିବା ଏତେ ବଡ଼ ବଡ଼ ସୁନ୍ଦର ଛବି କେଉଁଠି ହେଲେ ତ ଦେଖି ନ ଥିଲି !

ଖାଲି ତ ସୁନ୍ଦର ନୁହନ୍ତି, ସତେ ଅବା ଅବିକଳ ଜିଅନ୍ତା ମଣିଷ ! କିନ୍ତୁ ବଡ଼ମାନଙ୍କ ମୁହଁରୁ ଶୁଣେ, ସେମାନେ ସମସ୍ତେ ମରିଯାଇଛନ୍ତି । ରୋଗରେ ପଡ଼ି ନୁହେଁ, ତାଙ୍କୁ ମାରିଦିଆଯାଇଛି; ଆଉ ମାରିଛନ୍ତି କେହି ଚୋର ଡକେଇତ ନୁହେଁ । ତାଙ୍କରି ଆପଣା ଦେଶର ଲୋକମାନେ ।

କାହିଁକି ମାରିଲେ ? କି ଦୋଷ କରିଥିଲେ ସେମାନେ ? ମଣିଷକୁ ମଣିଷ କାହିଁକି ମାରିପକାଏ ?

ଅନେକ ପ୍ରଶ୍ନ ମନ ଭିତରେ ଚେଇଁଉଠେ । ମନଟା ଭାରି ଗୋଳେଇଘାଣ୍ଟି ହୁଏ । ବାପା ଭାଇନାଙ୍କ କଥାବାର୍ତ୍ତା ଶୁଣେ । ଭଉଣୀମାନେ ସେ କଥାକୁ ପୁନରାବୃତ୍ତି କରନ୍ତି—

ଛବିରେ ଯେତେ ପୁଅଝିଅ, ସ୍ତ୍ରୀ ପୁରୁଷ ଅଛନ୍ତି, ସେମାନେ ସମସ୍ତେ ରୁଷ ଦେଶର ରାଜା ରାଣୀ, ଆଉ ତାଙ୍କ ପିଲାପିଲି ପୁଅଝିଅ— ରାଜବଂଶର ଲୋକ ! ସେ ଦେଶର ରାଜା କୁଆଡ଼େ ବଡ଼ ଅତ୍ୟାଚାରୀ । ପ୍ରଜାମାନଙ୍କୁ ସେ ଘୋଡ଼ା ଟାପୁରେ କୁଦେଇ, ଚାବୁକ ମାରି, ଘୋଡ଼ା ଗୋଡ଼ରେ ବାନ୍ଧି, ଘୋଷାରି ଘୋଷାରି ପୁଣି ବନ୍ଧୁକ ଗୁଳିରେ ମାରି ପକାନ୍ତି ।

ଶାଶୁ ପାଳି ଗଲେ, ବୋହୂ ପାଳି ଆସେ । ଶେଷରେ ପ୍ରଜାମାନେ ମେଳି ହୋଇ ରାଜାଙ୍କୁ ପୁଣି ରାଜବଂଶର ସମସ୍ତଙ୍କୁ ମାରି ନିପାତ କରିଦେଲେ । ଆଶ୍ଚର୍ଯ୍ୟ ହୋଇ ମୁଁ ଥରକୁ ଥର ସେଇ ଛବିଗୁଡ଼ିକୁ ଚାହେଁ । କି ସୁନ୍ଦର ରୂପ ସେଇ ରାଜାଙ୍କର ! ହସ ହସ ମୁହଁ, ନାଲି ଓଠ, କେଡ଼େ କଅଁଳ ଆଖି ! ମଣିଷମାରୁ ଚେହେରା ବୋଲି ତ ମୋତେ ସନ୍ଦେହ ହୁଏନି ' ପୁଣି ତାଙ୍କ ରାଣୀ—ଅପ୍‌ସରାମାନେ କ'ଣ ତାଙ୍କଠାରୁ ଆହୁରି ସୁନ୍ଦରୀ ?

ରାଣୀମାନେ ଆଉ ତାଙ୍କର ସାନ ବଡ଼ ପୁଅଝିଅମାନେ କିଏ କାହାଠାରୁ ବେଶି ସୁନ୍ଦର ବାରିହୁଏ ନି । କିଏ ବସିଛନ୍ତି, କିଏ ଠିଆ ହୋଇଛନ୍ତି ବାପ ମାଆଙ୍କୁ ଘେରି । ଏଇ ସବୁ ମା ପୁଅ ଝିଅ-ସେମାନେ କାହାର କି ଦୋଷ କରିଥିଲେ ? କେଉଁ ପ୍ରଜାଙ୍କୁ କଷ୍ଟ ଦେଇଥିଲେ, କାହାକୁ ମାରିଥିଲେ ସେମାନେ ? ସମସ୍ତଙ୍କୁ ନିର୍ମୂଳ କରିଦେବା କ'ଣ ପାପ ନୁହେଁ ? ମହା ପାପ ?

ପ୍ରଶ୍ନ ଉପରେ ପ୍ରଶ୍ନ ବାଣ କୁଢ଼େଇ ହୋଇପଡ଼େ ମୁଣ୍ଡ ଭିତରେ । ପ୍ରଜାମାନେ ଭାରି ଅନ୍ୟାୟୀ—ନିଶ୍ଚୟ, ନିଶ୍ଚୟ, ଭାରି ଦୁର୍ଦ୍ଦାନ୍ତ, ପାଜି, ବଦମାସ୍ !

ଆମରି ଗାଁ ପ୍ରଜାମାନେ କ'ଣ କମ୍ କି ! ମୂଲିଆ ମୂଲିଆଣୀଙ୍କ ପ୍ରକୃତି ତ ତହୁଁ ବଳି ! ଟିକିଏ ଆଖି ଆଡ଼େଇ ଦେଲେ ସେମାନେ ତ ସବୁ ବୋହି ଲୁଟ୍ କରିନେବେ । ଗାଁ ଭିତରେ ମୋର ଜଣେ ମାମ୍‌ଲତକାର କୁଟୁମ୍ବ କହନ୍ତି, ''ବୁଝିଲ ବାବୁ, ଆମ ଗାଁ ବିଶ୍ୱନାଥପୁର ନୁହେଁ, ବିଷମନାଥପୁର । ଏ ଗାଁରେ ଯାହାକୁ 'ଶଳା' ବୋଲି ନ ବକିବ, ଉଠୁଣୁ ବସୁଣୁ ଗାଲରେ କି ପିଠିରେ ତା'ର ଗୋଟିଏ ଅଧେ ନ ଥୋଇବ, ତା' ମୁହଁ ପରା ଏଡ଼େ !''

ତାଙ୍କ କହିବା ଅର୍ଥ ହେଲା, ଲୋକେ ଚାହାନ୍ତି ଯେ, ତାଙ୍କୁ ତୁମେ ମାରି ପିଟି ଜବତ୍ କର । ସେତକ କରି ନ ପାରିଲେ ତୁମେ ନିହାତି ଅକ୍ଷମ, ଅସମର୍ଥ ଓ ଅଯୋଗ୍ୟ ! ଯେ ତାହା କଲେ, ସେଇ ପ୍ରକୃତ ସମର୍ଥ । ସବୁ ଖାତିର ସମ୍ମାନ ତାଙ୍କରି କେବଳ ପ୍ରାପ୍ୟ । ବାକି ସବୁ ପାସଙ୍ଗରେ ପଡ଼ିବା ଯୋଗ୍ୟ ନୁହନ୍ତି । ଏଇ ଦର୍ଶନ ବଳରେ ସେ ନିଜେ ଜଣେ ବଡ଼ ଅତ୍ୟାଚାରୀ ଥିଲେ । ସେଥିପାଇଁ ଲୋକେ ତାଙ୍କୁ ମୁହଁ ଉପରେ ଯେମିତି ଖାତିର ଦେଖାନ୍ତି, ପଛରେ ସେମିତି ଗାଳି ଫଜିତ୍ କରନ୍ତି । ତେବେ ଗାଁ ଭିତରେ ଜଣେ ଅଧେ ମୁଖିଆ, ପୁଣି ଗୋଟାଏ ଦେଶର ରାଜା—କେତେ ବଡ଼ ଫରକ ତାଙ୍କ ଭିତରେ !

ରୁଷିଆ ଦେଶ କେଉଁଠି, ଆମ ଗାଁରୁ ସେ କେତେ ବାଟ, ସେ ସବୁ ବିଷୟରେ ମୋର କିଛି ଧାରଣା ନ ଥାଏ । ପରେ ଯେତେବେଳେ ବଡ଼ ବଡ଼ ପଣ୍ଡିତ, ଭାବୁକ ଲେଖକମାନେ ଏହି ହତ୍ୟାକୁ ସମର୍ଥନ କରୁଥିବା ଯୁକ୍ତି ସବୁ ପଢ଼ିଲି, ତା'ଭିତରୁ କେତେ କଥା ଭଲ ଲାଗିଲା, ଆଉ କେତେ ଲାଗିଲାନି । ତା'ର ବିରୁଦ୍ଧ ମତଗୁଡ଼ିକ ମଧ୍ୟ ପରଖିଲି । ମଣିଷ ସମାଜକୁ ସୁସ୍ଥ, ସୁନ୍ଦର, ସୁଖୀ କରିବାକୁ ହେଲେ ଧାନ ବିଲରୁ ଘାସ ବାଲୁଙ୍ଗା ଉପାଡ଼ି ନିର୍ମୂଳ କରିବା ଯେମିତି ଲୋଡ଼ା, ଏହା ସେମିତି ଗୋଟିଏ ଉପାୟ ମାତ୍ର । ତା'ଭିତରେ ଭାବପ୍ରବଣତାର ସ୍ଥାନ ନାହିଁ ।

ଘାସ ବାଲୁଙ୍ଗା ଉପାଡ଼ି ବିଲ ସଫା ନ ହେଲେ ଯେ ଧାନ କଦାପି ଉଧେଇ ପାରିବନି । ସେମିତି ମଣିଷ ସମାଜକୁ ନଷ୍ଟଭ୍ରଷ୍ଟ କରୁଥିବା ଶ୍ରେଣୀର ଲୋକଙ୍କୁ ନିପାତ ନ କଲେ କାହାରି ରକ୍ଷା ନାହିଁ । ଗୀତା, ବାଇବ୍‌ଲ, କୋରାନର ତ ସାର କଥା ଏହାହିଁ । ପୃଥିବୀର ସବୁ ଭାଷାରେହିଁ ଯେତେସଂଖ୍ୟକ କାବ୍ୟ, ନାଟକ, ଉପନ୍ୟାସ, ସାହିତ୍ୟ ଲେଖା ଯାଇଛି, ଧର୍ମ ନାମ ଘେନି ଯେତେ ସମ୍ପ୍ରଦାୟର ସୃଷ୍ଟି ହୋଇଛି; ଯେତେ ଦର୍ଶନ ବିଜ୍ଞାନ ମନୁଷ୍ୟର କୀର୍ତ୍ତିରାଜି ପ୍ରଚାର କରୁଛି—ସବୁଗୁଡ଼ିକର ମୌଳିକ ତାତ୍ପର୍ଯ୍ୟ ଏହାଠାରୁ ଆଉ ତ କିଛି ନୁହେଁ ! ଭାଗବତ ବାଣୀ ତ ରହିଛି— 'ଦୁଷ୍ଟ ନିବାରି ସନ୍ଥ ପାଳୁ, ତୁ ନାଥ ପରମ ଦୟାଳୁ ।'

ତଥାପି—ତଥାପି ମନ ତ କାହିଁକି ମାନିବାକୁ ନାରାଜ ହୁଏ । ଯେତେ ଯୁକ୍ତିସଂଗତ ହେଲେ ବି ଯେତେ ସୁବିଚାର ଓ ସଦୁଦ୍ଦେଶ୍ୟ ଥିଲେ ବି, ଯେତେ ନ୍ୟାୟ ବିଚାର କଲେ ମଧ ଜଣେ ଆଉ ଜଣକୁ ପ୍ରହାର କରିବା ଦେଖି ଆତ୍ମସନ୍ତୋଷ ପାଇବା କି ଖୁସି ହେବାର ଗୋଟିଏ ହେଲେ ଘଟଣା ପିଲା ଦିନୁଁ ବୁଢ଼ା ହେବା ଯାକେ ମନେ ପକାଇବା କଷ୍ଟକର । ପୁଲିସ୍ ହାତରେ ଚୋର ଉପରେ ପ୍ରହାର ହେବା ଦେଖିଛି, ନିଷ୍ଠୁର ପ୍ରହାର । ତଥାପି ତାହାକୁ ସମର୍ଥନ କରିବା ବାଟ ଖୋଜି ପାଇ ନାହିଁ ।

ଚୋର ଗୋଟିଏ ଅଦ୍ଭୁତ ପ୍ରାଣୀ ପରି ମତେ ବୋଧହୁଏ । କେତେ ଚୋରଙ୍କୁ ଧରା ପଡ଼ିଯିବା ଦେଖିଛି । କିଏ ଧାନ, ମୁଗ, ଆଉ କିଏ ନଡ଼ିଆ ଅବା ଆଉ କିଛି ଫଳ ଫୁଲୁରି ଚୋରି କରି ଧରା ହୋଇ ଆସନ୍ତି । ମଫସଲ ଗାଁରେ ଆଉ କାହା ଘରେ କି ବିଲବାରିରେ ଥାଏ କ'ଣ ଯେ ଚୋରି ଯିବ ? ଟଙ୍କା ପଇସାର ସଂଖ୍ୟା ତ ଏତେ ବେଶି ବଢ଼ି ନଥାଏ । ଅଥଚ ସେଇ ସାମାନ୍ୟ ଚୋରି ପାଇଁ କେତେ ଯେ ମାଡ଼ ଗାଳି ବିଧା ଗୋଇଠା ଚୋର ବିଚରାକୁ ଖାଇବାକୁ ପଡ଼େ !

ଯେ ଶୁଣିଲେ, ସେ ଆସି ଥୋଡ଼ା ଗାଳିଫଜିତ୍ ସଙ୍ଗେ ଚୋର ଉପରେ କିଛି ଉତ୍ତମ ମଧ୍ୟମ କରିଗଲେ । ହାତ ଗୋଡ଼ ବନ୍ଧା ହୋଇ ସେ ଖାଲି ଗୋଟାଏ ପଶୁ ଜନ୍ତୁ ଭଳି ଜଳ ଜଳ ଚାହିଁ ରହିଥାଏ । ଉହୁଁ ଚୁହୁଁ ପଦେ ହେଲେ କଥା ମୁହଁରୁ ତା'ର ବାହାରେ ନାହିଁ । ଗାଁ ଭିତରେ ସେମିତି କେତୁଟା ଦାଗୀ ଚୋର ରହିଥାନ୍ତି । ଚୋରି ଧରା ନ ପଡ଼ିଲେ ବି ସେଇମାନଙ୍କୁ ଆଗ ତଲବ ହୁଏ । ଚୌକିଦାର ଘର ଥାଏ ଆମରି ଗାଁଆରେ । ଚୋରମାନଙ୍କର ସେ ଯମ । ରାତି ଅଧରେ ତା'ର ''ହଇ ହଇ ହୁସିଆର'' ରଡ଼ିରେ କିଏ ଚମକି ନ ପଡ଼େ, କାହା ନିଦ ଭାଙ୍ଗି ନ ଯାଏ ! ପୁଣି କେତେ କୁହାକୁହି ହୁଅନ୍ତି—ଚୌକିଦାର ଯେଉଁ ଗର୍ଜନ କରେ, ସେ ଖାଲି ତା'ର ଛଳନା । ଚୋରଙ୍କ ସାଙ୍ଗେ ତା'ର ଭିତିରି ସନ୍ଧି । ତାକୁ ଏଣେ ସାବଧାନ କରି ଦେଇ, ତେଣେ ଚୋରି ମାଲରୁ ଗୋଟାଏ ଭାଗ କୁଆଡ଼େ ଚୌକିଦାରର ! ଏଣେ ମକଦ୍ଦମାମାନଙ୍କଠାରୁ କିଛି ପାଉଣା ମଧ ଧରାବନ୍ଧା । ନଡ଼ିଆ ପରା ହେଲେ, ଧାନ କଟା କି ମୁଗ ବିରି କୋଳଥ ଉପୁଡ଼ା ହେଲେ ତହିଁରୁ ଯେତେ କମ୍ ହେଲେ ବି ଗୋଟାଏ ପାଉଣା ତା'ର ଥାଏ ।

ଠିକ୍ ଚୋରି ନୁହେଁ । କିନ୍ତୁ ସେମିତି ଗୋଟାଏ ଘଟଣା ମନେ ପଡୁଚି । ଦିନେ ହଠାତ୍ ଦାଣ୍ଡ ମଝିରେ ଗୋଟାଏ ବଡ଼ ପାଟିତୁଣ୍ଡ ଶୁଣାଗଲା । ଦାଣ୍ଡ ଦୁଆରକୁ ଦଉଡ଼ି ଆସି ଦେଖେଁ, ଅଣ୍ଟାରେ ଖାଲି ଖଣ୍ଡେ ଲେଙ୍ଗୋଟି ଚିରାକନା ଗୁଡ଼େଇ ହୋଇ କେତେ ଜଣ ଲୋକ ଖତଗଦା ଉପରକୁ ବସିଛନ୍ତି । ଗାଁର ମକଦ୍ଦମ ମାମଲତକାରମାନେ ପିଣ୍ଡାରେ ବସି ମୁଣ୍ଡ ହଲାଇ ତର୍ଜନ ଗର୍ଜନ ଛାଡ଼ିଛନ୍ତି । ପିଲା ବୁଢ଼ା ଟୋକା ଟାକଳିଆମାନେ ରୁଣ୍ଡ ହୋଇଛନ୍ତି ଅନେକ ।

ଘଟଣା ହେଲା କ'ଣ କି—ବୁଲିକକେଇଙ୍କ କାଳି ଗାଈଟି ହଠାତ୍ ମରିଯାଇଥାଏ । କେହି କେହି ସନ୍ଦେହ କଲେ, ତାକୁ ଲମ୍ୱ ଜନ୍ତୁ, ଅର୍ଥାତ୍ ସାପ ଦଂଶିଛି । ବୁଲିକକେଇଙ୍କର କିନ୍ତୁ ପୂରା ବିଶ୍ୱାସ, କେହି ବିଷ ଦେଇ ମାରିଛି । ଆଉ କିଏ ବିଷ ଦିଅନ୍ତା, ଯେ ତା'ର ମାଉସ

ଖାଇଛନ୍ତି, ସେଇମାନଙ୍କ ଛଡ଼ା ? ସେଇ ଦୁଧିଆଳୀ ଗାଈଟିକୁ ଝୁରି ଦି'ଦିନ ହେଲା ବୁଲିକବେଇଙ୍କ ଘରେ ଚୂଲି ଜଳି ନାହିଁ । ଯେ ଶୁଣୁଚି ସେ ହାଇ ହାଉ କରି ଜିଭ କାମୁଡୁଚି ।

କାହିଁକି ନା, ବୁଲିକକେଇଙ୍କ କାଳିଗାଈକି ଚାଲିଗଲା ବାଟୋଇ ଦଣ୍ଡେ ଠିଆ ହୋଇ ନିର୍ଛେ ଚାହିଁବ । ଦେହରୁ ଯେମିତି ତା'ର ମାଛି ଖସି ପଡୁଛି—ଏମିତି ସେ ଚିକ୍‌କଣ କଳା । ବୁଲିକକେଇ ନିଜେ ତା'ପାଇଁ ଘାସ ଆଣି, ରୋଜ ତା' ଦେହକୁ ଘଷିମାଜି ଖୁବ୍ ହେପାଜତରେ ପାଳିଥିଲେ । ଗାଈଟି ମରିଯିବାରୁ ବୋଉ ତାଙ୍କର ଯେତେ ବାହୁନି କାନ୍ଦିଛନ୍ତି; ନିଜ ସ୍ୱାମୀ ମଲା ଦିନ ହୁଏତ ଏତେ କାନ୍ଦି ନ ଥିବେ ବୋଲି ଲୋକେ କୁହାକୁହି ହେଉଥାନ୍ତି । ମାତୃଭକ୍ତ ବୁଲିକକେଇ ସବୁ ଶୁଣି ତୁନି ରହିଥାନ୍ତି ।

ଦାଣ୍ଡ ପାରିଆ ଖତଗଦା କଡ଼ରେ ଯେଉଁ କେତେଜଣ ଫୁଙ୍ଗୁଳା ମଣିଷ ବସିଥାନ୍ତି, ସେମାନେ ଖାଲି ହାତ ଯୋଡ଼ି ନେଉରା ହେଉଥାନ୍ତି ଯେ ତାଙ୍କର କିଛି ଦୋଷ ନାହିଁ । ସବୁ ମଡ଼ା ଗୋରୁଙ୍କୁ କାଟି ସେମାନେ ଯେମିତି ଚମ ମାଉଁସ ନେଇ ଆହାର କରନ୍ତି, ତାଙ୍କ କାଳିଗାଈର ମୁର୍ଦାର ପ୍ରତି ମଧ ସମାନ ବ୍ୟବହାର କରିଛନ୍ତି । ତହିଁରୁ କିଛି ହେଲେ କମ୍ ନୁହଁ କି ବେଶି ନୁହଁ ।

ଖଣ୍ଡେ ଦୁଇହାତିଆ ଠେଙ୍ଗା ଧରି ବୁଲିକକେଇ ହଠାତ୍ ଚିହିଁକି ଉଠିଲେ । ତା'ପରେ ଦେଖାଗଲା ସେ ଅଧା ଲଙ୍ଗଳା ମଣିଷଗୁଡ଼ାକ ବେଙ୍ଗପରି ଫକ୍ ଫକ୍ ଡେଉଁଛନ୍ତି । ଆଉ ତାଙ୍କ ଗୋଡ଼ହାତ ପିଠି ବେକ ଚାରିଆଡ଼େ ବୁଲିକକେଇଙ୍କର ସେଇ ବାଡ଼ିଟା ବୁଲିଯାଇ ଠକ୍ ଠକ୍ ବାଜୁଛି ! ''ଓହୋ ମରିଗଲି ମରିଗଲି ସାଆନ୍ତେ !'' ଶବ୍ଦରେ ଫାଟିପଡୁଚି ଗାଁ ଦାଣ୍ଡଟା ।

ପୁରୁଖା ଲୋକ କେତେ ଜଣ ଡାକ ଛାଡ଼ିଥାନ୍ତି, ''ହାଁ, ହାଁ, ଆରେ ବୁଲା ! ସେତିକି ଥାଉ, ସେତିକି ଥାଉ ।'' ଆଉ କେତେ ଜଣ ଥଟ୍ଟାକରି କହୁଥାନ୍ତି, ''ଆରେ ଗାମୁଛା ପାଲଟିଚୁ ତ ? ନୂଆ ପଇତା ପିନ୍ଧି ତତେ ପଞ୍ଚଗବ୍ୟ ପିଇ ପ୍ରାୟଶ୍ଚିତ କରିବାକୁ ପଡ଼ିବ, ଜାଣୁତ ? ତାଙ୍କର କ'ଣ କ୍ଷତି ହୋଇଯିବ କି ? ତୋ ଗାଈ କଲିଜା ତରକେଇ ଖାଇଲେ ତ ତାଙ୍କର ଦେହ ଦରଜ ରହିବ ନାହିଁ ।''

''ଚୁପ୍ କର, ଚୁପ୍ କର'' ତୃତୀୟ ବ୍ୟକ୍ତି କୋବଲାନ୍ତି । ''ଯେଉଁ କଥା ତୁଣ୍ଡରେ ଧରିବାର ନୁହେଁ, ସେମିତି କଥା ପୁଣି ତୁ କହୁଚୁ ବ୍ରାହ୍ମଣ ହୋଇ ! ତାଙ୍କର କ'ଣ କ୍ଷତି ହେବ କି ? ବୁଲା ହାତରେ ମରିଗଲେ ତ ବ୍ରହ୍ମଲୋକ ପ୍ରାପ୍ତି ହେବ ତାଙ୍କର । ମ୍ଲେଚ୍ଛ ଜନ୍ମରୁ ଉଦ୍ଧାର ପାଇଯିବେ ସେମାନେ !''

ଜଣେ ହେଲେ ଗୋଖାଦକର ଅବଶ୍ୟ ସେମିତି ସୌଭାଗ୍ୟ ଯୁଟିଲା ନାହିଁ, ବ୍ରାହ୍ମଣ ହାତରେ ନିହତ ହୋଇ ସ୍ୱର୍ଗକୁ ଯିବାପାଇଁ । ଜଣେ ହେଲେ କେହି ସେମିତି ପୁଣ୍ୟ ଅର୍ଜନ କରି ନ ଥିଲେ, ପୂର୍ବଜନ୍ମ କି ଇହ ଜନ୍ମରେ । ଗୋଡ଼ହାତ ମୁଣ୍ଡପିଠି ଆଉଁସି ''ହୁ ହା ମା'ଲୋ ବାପଲୋ'' ''ମରିଗଲି ସା'ନ୍ତ'' ରଡ଼ି ଛାଡ଼ି ଛାଡ଼ି ସେମାନେ ପଳାଇଲେ ।

ଗାଁଆର ମଶାଣି ତରଫରେ ସେମାନେ ରହନ୍ତି ଗଛମୂଳେ । ତାଙ୍କର ବାସସ୍ଥାନକୁ କୁଡ଼ିଆ କହିଲେ ବି 'କୁଡ଼ିଆ' ଶବ୍ଦଟିର ଅବମାନନା କରାଯାଏ । 'ବସା' କହିଲେ ବି

ଚଢ଼େଇମାନେ ତା' ଠାରୁ ଭଲ ବସା ତିଆରି କରି ରହନ୍ତି । ହଳ ପାଳ ଚାଷକାମ କିଛି କରନ୍ତିନି ସେମାନେ । ବେତ ବାଉଁଶରେ ଟୋକେଇ ପାଛିଆ କୁଲା ବାଉଁଶିଆ ବୁଣିବା ତାଙ୍କର କାମ । ଶୁଭ ଅଶୁଭ କାର୍ଯ୍ୟରେ ଢୋଲ ମହୁରି, ଯୋଡ଼ିନାଗରା, ଅହିଅଡେଙ୍ଗୁରା ବଜାଇ ତାଳେ ତାଳେ ଅଙ୍ଗ ଭଙ୍ଗି କରି ନାଚିବାରେ ଦୋରସ୍ତ କଳାକାର ସେମାନେ ।

ଝଡ଼ି ବତାସ କି ବଢ଼ିପାଣି ଆସିଲେ ତାଙ୍କ ତାଟିପଲା ସମେତ କୁଆଡ଼େ ସେମାନେ ରହନ୍ତି, ତାହାର ଖବର କେହି ରଖେ ନାହିଁ । ପୁଣି ଯେବେ ଗାଁ ଭିତରେ ଟୋକେଇ ପାଛିଆ କି ଢୋଲ ମହୁରି ଲୋଡ଼ା ହୁଏ, କୁଆଡୁ ଆସି ଜୁଟିଯାନ୍ତି । ସେଥିଲାଗି ତାଙ୍କୁ ବେଶି ଖୋଜାଖୋଜି କରିବାକୁ ହୁଏନି । ଯୋଡ଼ି ନାଗରାରେ ଗାଁ ଦାଣ୍ଡ ଉଛୁଳି ପଡ଼େ । ମହୁରି ଭିତରେ ଓଡ଼ିଶୀ ଛାନ୍ଦ ସବୁ କାନଅତଡ଼ା ପକାଏ ।

ଶୀତ ବର୍ଷାରେ କୋଇଲି ଯେମିତି ଲୁଚିଯାଇ ବସନ୍ତ ଋତୁରେ ସ୍ୱର ବାହାରକରେ, ସେମାନଙ୍କ ଗତିବିଧି ମଧ ଅନ୍ଧ ବହୁତ ସେମିତି । ମକଦ୍ଦମମାନଙ୍କ ପଡ଼ିଆ ପନ୍ତରା ହିଡ଼ ଉପରେ ରହିଥିବାରୁ ବାହାପୁଆଣି, ଶୁଦ୍ଧଶ୍ରାଦ୍ଧରେ ସେମାନେ ତାଙ୍କ ଦୁଆରେ ବେଗାର ଖଟନ୍ତି । ତାଙ୍କରି ମଲା ଗୋରୁ ଚମଡ଼ାରେ ଢୋଲ ଚାଙ୍ଗୁ ମୃଦଙ୍ଗ, ପଖାଉଜ ଛପର କରନ୍ତି । ସେଇ ମଲା ଗୋରୁର ମାଂସ ଖାଇ ବଞ୍ଚନ୍ତି ମଧ ।

କାଳକ୍ରମେ ଚଳିଆସୁଥିବା ପ୍ରଥାର କାହିଁ ଯେମିତି ଟିକିଏ ହେଲେ ଏପାଖ ସେପାଖ ହୁଏ ନାହିଁ । ଏଇସବୁ ସରସାଧକ, ପ୍ରାରମ୍ଭିକ ତାଳ ଲୟରେ ନିରକ୍ଷର ପେସାଦାରମାନେ ବ୍ରାହ୍ମଣ ଶାସନରୁ ଯେତିକି ଅସ୍ପୃଶ୍ୟ ଉପେକ୍ଷିତ ହୋଇ ଦୂରରେ ରହନ୍ତି, ସେତିକି ତାଙ୍କର ଲୋଡ଼ା ହୋଇଥାଏ ମଧ । ମାତ୍ର ଲୋଡ଼ା ହେବାଟା ଯେମିତି ଅବା ବେଶି ବିଚାରଯୋଗ୍ୟ ନୁହେଁ । କାରଣ ତାଙ୍କରି ଭିତରେ ହିଁ ଗୋହତ୍ୟା ଚୋରି ଡକାୟତିର ପ୍ରାଦୁର୍ଭାବ ଅଧିକ ବୋଲି ତଥାକଥିତ ଉଚ୍ଚ ଜାତିମାନଙ୍କର ବିଶ୍ୱାସ । ସେମାନଙ୍କର ଧର୍ମକର୍ମ କିଛି ନାହିଁ, କିନ୍ତୁ କାହିଁକି ନାହିଁ ? କିଏ ସେଥିଲାଗି ଦାୟୀ ? ବୁଦ୍ଧି ବିଚାର ଚାଲିଚଳନରେ ସେମାନେ ଏତେ ପଛୁଆ ହୋଇ ରହିଗଲେ କିପରି ?

ସମାଜ ବିଜ୍ଞାନରେ ଏସବୁ ପ୍ରଶ୍ନର ଉତ୍ତର ଖୋଜାଯାଇଛି । ସମାଧାନର ବାଟ ମଧ ଠିକ୍ କରାହୋଇଛି । ସେତେବେଳେ କିନ୍ତୁ ମୋ ମୁଣ୍ଡରେ ସମାଜବିଜ୍ଞାନର ସ୍ଥାନ ନଥିଲା । ମନଗହନରେ ଏସବୁ ପ୍ରଶ୍ନ ଉଙ୍କି ମାରିଲେ ତାହାକୁ ଖାଲି ଅବସ୍ଥାପନ୍ନ ଉଚ୍ଚ ଜାତିମାନଙ୍କର ଅନ୍ୟାୟ, ଅବିଚାର ବୋଲି ଭାବୁ ନ ଥିଲି କହିଲେ ବି ଠିକ୍ ହେବ ନାହିଁ । ଭାବିବାର ଶକ୍ତି କିମ୍ବା ଅବସର ମୋର ନ ଥିଲା; କିନ୍ତୁ ସାମାଜିକ ଅସାମ୍ୟଗୁଡ଼ିକ ମୋ ମନରେ ପିଲାଦିନୁଁ ଗୋଟାଏ ଦାଗ କାଟି ଦେଉଥିଲା । ସେଥିଲାଗି ଆଜିସୁଦ୍ଧା ସେଗୁଡ଼ିକର ସ୍ମୃତି ଜାଗରୂକ ରହିଛି । ଏବେ କିନ୍ତୁ ସେସବୁ ଅସାମ୍ୟ ଏତେ ବେଶି ଦିହଘଷା ହେଲାଣି ଯେ ସାମ୍ୟବାଦ ଖାଲି ଲେଖା ଓ ବକ୍ତୃତା ଛଡ଼ା ଆଉ ଯେମିତି କେଉଁଠି ନାହିଁ !

ଆମରି ଛୋଟ ଗାଁଆଟିରେ ପ୍ରାୟ ସବୁ ପ୍ରଧାନ ଜାତିର ଲୋକଙ୍କ ବାସ । ପୁଣି ପ୍ରତି ଜାତିର କେତେକ ଉପଜାତି ମଧ । ଧନ କ୍ଷମତା ସଙ୍ଗେ ବିଦ୍ୟା, ବୁଦ୍ଧି, ଧମକଚମକ,

ଜୋର୍‌ଜୁଲୁମ ଠୁଳ ହୋଇଥାଏ କିନ୍ତୁ 'ପାଣିବଂଶ' ବ୍ରାହ୍ମଣଙ୍କ ହାତରେ । ସେମାନଙ୍କଠାରୁ ଜାତିରେ ଉତ୍କୃଷ୍ଟ ବ୍ରାହ୍ମଣମାନେ ଅପେକ୍ଷାକୃତ ଦରିଦ୍ର । ପୁରୋହିତ ହୋଇ ଜୀବିକାର୍ଜନ କରିବା ତାଙ୍କର ପେସା । ତାଙ୍କଠାରୁ ନିମ୍ନରେ ରହନ୍ତି ପୂଜକ ସେବକମାନେ । ଦିଅଁ ଦେଉଳପାଇଁ ଖଞ୍ଜା ହୋଇଥିବା ଜମିର ଉତ୍ପନ୍ନ ଶସ୍ୟ ଭୋଗ ପୂଜା କରି ସେମାନେ ଚଳନ୍ତି ।

କରଣ, ନାହାକ, ଖଣ୍ଡାୟତ, କୃଷକ, ବଣିଆ, ବଢ଼େଇ, କମାର, ତେଲୀ, ଗୋପାଳ, ରଜକ, ନାପିତ, ସବୁ ଜାତିର ଲୋକଙ୍କ ଉପରେ ପାଣିବଂଶ ବ୍ରାହ୍ମଣମାନଙ୍କର ପ୍ରଭାବ ପ୍ରତିପତ୍ତି ହିଁ ଅଧିକ । ପ୍ରଥମେ ଗ୍ରାମର ପ୍ରଧାନ ଭୂମ୍ୟଧିକାରୀ ହୋଇସାରି ସେମାନେ ତାଙ୍କ ଚାଷବାସ ଧର୍ମକର୍ମ ଦେଖିବାପାଇଁ ଅନ୍ୟ ଜାତିର ଲୋକଙ୍କୁ ନିଯୁକ୍ତ କରନ୍ତି । ଗୋଟିଏ ହାତରେ ତାଙ୍କର କ୍ଷମତାର ଦଣ୍ଡ, ଆର ହାତରେ ଅର୍ଥର ଶକ୍ତି, ଭୟ ଓ ପ୍ରଲୋଭନ—ଆଉ ମୁଖରେ ଧର୍ମଶାସ୍ତ୍ର ସଙ୍ଗେ ନ୍ୟାୟାନ୍ୟାୟର ଅହିଫେନ !

ସେଥିଲାଗି ଅବଶ୍ୟ ସେମାନେ କଦାପି ଦାୟୀ ନୁହନ୍ତି । ଦାୟୀ କେବଳ ଯୁଗ ଯୁଗ ଧରି ଗଢ଼ିଆସୁଥିବା ଗତାନୁଗତିକତା ଓ ସାମାଜିକ ପରମ୍ପରା । ସେଇ ଗତାନୁଗତିକ ସ୍ରୁଅର ମୋଡ଼ ଯେଉଁଠି ଭାଙ୍ଗିଯାଏ, ଆବହମାନ ପରମ୍ପରାର ସଂଶୋଧିତ ସଂସ୍କରଣ ପ୍ରକାଶ ପାଏ, ସେହିଠାରେ ହିଁ ଦେଖାଦିଏ ବିପ୍ଳବ—ତଳଉପର, ଉପରତଳ, ଓଲଟପାଲଟ ।

ଚରମ ଦାରିଦ୍ର୍ୟ ସତ୍ତ୍ୱେ ଭାରତରେ ତାହା ସମ୍ଭବପର ନ ହେବାର କେତେକ କାରଣ ଅଛି । ପ୍ରଧାନ କାରଣ ବୋଧହୁଏ—ଏ ଦେଶରେ ଧନୀ, ଦରିଦ୍ର, ମାଲିକ ମୂଲିଆଙ୍କ ଚାଲିଚଳନି, ଆହାର ପରିଚ୍ଛଦ ଭିତରେ ତଫାତ୍‌ଟା ସେମିତି ଖୁବ୍ ଚୌଡ଼ା ନୁହେଁ । ବିଲବଛା, ଧାନକଟା ପାଣିବୁହା, ହଳ, ମଇ ସବୁ କାମରେ ପ୍ରାୟ ଦେଖାଯାଏ ମାଲିକ ମୂଲିଆ ଏକ ସଙ୍ଗେ ଲାଗି ପଡ଼ିଛନ୍ତି । ବେଶି ଫରକ୍ ଦୁହିଁଙ୍କ ଭିତରେ ନଥିବା ହେତୁ ସ୍ପଷ୍ଟ ଭାବରେ ଦୁଇଟା ଶ୍ରେଣୀରେ ସେମାନେ ବୋଧହୁଏ ବିଭକ୍ତ ହୋଇପାରନ୍ତି ନାହିଁ । ସେଇ କାରଣରୁ ପରା ଏ ଦେଶରେ ଶ୍ରେଣୀସଂଘର୍ଷ ତୀବ୍ରତର ନୁହେଁ ।

ମୂଲିଆମାନଙ୍କ ଉପରେ ମାଲିକମାନଙ୍କର ଅତ୍ୟାଚାର ଅନ୍ୟାୟ ଦେଖି ମୁଁ ଜର୍ଜରିତ ହୋଇପଡ଼େଁ, ଅଥଚ ଆମେ ମଧ୍ୟ ସେଇ ମାଲିକଶ୍ରେଣୀର ଅନ୍ତର୍ଭୁକ୍ତ । ତାହାର କାରଣ ହୁଏ ତ ଏହା ମଧ୍ୟ ହୋଇପାରେ ଯେ ମୁଁ ଓ ଆମ ପରିବାର ଲୋକେ ଠିକ୍ ସେଇ ଅର୍ଥରେ ମାଲିକପଣିଆ ଜାହିର କରିବାକୁ ଅଯୋଗ୍ୟ ଅସମର୍ଥ ଓ ଅକ୍ଷମ । ପୁଣି ସେଇ ଅକ୍ଷମତା ଦୋଷରୁ ହିଁ ଅନ୍ୟ ଭାଇମାନଙ୍କ ସହିତ ଆମର ବିରୋଧ ଉପୁଜି ଥାଇପାରେ । ଆଉ ଗୋଟିଏ କାରଣ ହେଲା, ସେହିମାନେ ପ୍ରକୃତରେ ଆମ ଗାଁର ସ୍ଥାୟୀ ଅଧିବାସୀ । ଆମେ ରହୁ ଅଧିକାଂଶ ସମୟ ବାହାରେ ସହର ବଜାରରେ ।

ଗାଁଆର ଭାବଲାଭ ଦିଅଁ ଦେଉଳ, ପୁନିଅପରବ, ଧୋଇ ମରୁଡ଼ି ପୁଣି ଗାଁଲୋକଙ୍କର ସୁବିଧା ଅସୁବିଧା ସଙ୍ଗେ ସେଇମାନେ ଆମଠାରୁ ବେଶି ପାଖରେ ରହି ବେଶି ପରିଚିତ । ଗାଁଆର ଜମିବାଡ଼ି ପଡ଼ିଆ ପଞ୍ଚର ଗଛ ମାଛ, ପ୍ରତ୍ୟେକ ଘରର ଲୋକବାକ ଗୋରୁଗାଈ ଛେଳି ମେଣ୍ଢାଙ୍କ ସଂଖ୍ୟା ତାଙ୍କ ନଖ ଦର୍ପଣରେ । ତେଣୁ ତାଙ୍କ ଗ୍ରାମ ଶାସନ କାର୍ଯ୍ୟରେ ଆମେ ବାହାରୁ

ଆସି ହସ୍ତକ୍ଷେପ କରିବାଟା ଅନଧିକାର ଚର୍ଚ୍ଚାଭଳି ଅଲଗା ପଡ଼ିଯାଏ । ତାଙ୍କୁ ମଧ ସେସବୁ ସୁଖଲାଗିବ କିମିତି ?

ବାହାରେ ରହିଲେ ସୁଦ୍ଧା ଗାଁ ସମ୍ପର୍କ ଏକାବେଳେ ତୁଟାଇ ଦେବା ମଧ ଆମ ପକ୍ଷରେ ସମ୍ଭବପର ନୁହେଁ । ଗାଁଆରେ ଆମ ଜମିବାଡ଼ି ଘର ଯେଉଁମାନେ ରକ୍ଷଣାବେକ୍ଷଣ କରନ୍ତି, ତାଙ୍କ ପ୍ରତି ଆମର ବେଶି ସହାନୁଭୂତି ହେବା ତ ସ୍ୱାଭାବିକ । ପୁଣି ଗାଁଆର ଯେଉଁ ମକଦ୍ଦମମାନେ ଦରିଦ୍ର ଦୁର୍ବଳ, ସେମାନେ କେବେ ଆମ ପଟକୁ ତ ଆଉ କେବେ ଅନ୍ୟ ପଟକୁ ଆଉଜି ପଡ଼ନ୍ତି, ନିଜ ନିଜ ସୁବିଧା ସୁଯୋଗ ଦେଖି । ଏଇ ଭାବରେ ମାଲିକ ମୂଲିଆଙ୍କ ଭିତରେ ସଂଘର୍ଷ ଦଳାଦଳି ଜନ୍ମେ । ଆମ ଭଳି କେତେକ ଅନୁପସ୍ଥିତ ସହରିଆ ମାଲିକ ମଧ ମୂଲିଆଙ୍କ ଉପରେ ପ୍ରାୟ ପୂର୍ଣ୍ଣ ନିର୍ଭର କରୁଥିବା ହେତୁ ଗାଁ ମାଲିକଙ୍କ ପକ୍ଷ ସମର୍ଥନ କରିବା ସାଭାବିକ ।

କଳିକଜିଆ ଓ ମାଲି ମକଦମା ଲାଗେ । ମାଲିକମାନେ ସିଧାସଳଖ ପରସ୍ପରକୁ ଆକ୍ରମଣ ନକରି ଅପେକ୍ଷାକୃତ ଦରିଦ୍ର ଓ ମୂଲିଆ ଶ୍ରେଣୀର ଲୋକଙ୍କୁ ପକ୍ଷକରି ମିଛ ମକଦମାମାନ ଯୋଡ଼ନ୍ତି । ଅଦାଲତରେ ଜମିସଂକ୍ରାନ୍ତ ମକଦ୍ଦମା ଅପେକ୍ଷା ଫୌଜଦାରି କୋର୍ଟରେ ମକଦ୍ଦମାର ସଂଖ୍ୟା ବେଶି । ଦାନ୍ତଭଙ୍ଗା, ହିଡ଼ହଣା, ଗଛକଟା ଆଦି ମକଦ୍ଦମାରେ ଥାନା ପୋଲିସର ସରଜମିନ ଓ ଡାକ୍ତରମାଇନା ସାର୍ଟିଫିକେଟ୍ ପାଇଁ ଧାଁଦଉଡ଼ କରିବାକୁ ହୁଏ । ସେ ସମୟରେ ଗାଁଆଟା ବେଶ୍ ସରଗରମ ହୋଇଉଠେ ଗାଁ ଟାଉଟରଙ୍କ ମିଛ ମକଦମା ତଦ୍‌ବିରରେ ।

ବ୍ରାହ୍ମଣସାହି ବାରିପଟେ ଭୋଇସାହି । ବ୍ରାହ୍ମଣ ମାଲିକମାନଙ୍କ ଜମି ଉଠିଆ କରି ଧାନବୁଣାଠାରୁ ଧାନ ବେଙ୍ଗଳା ପର୍ଯ୍ୟନ୍ତ ସବୁ କାମ ଭୋଇ ଭୋଇଆଣୀମାନେ ହିଁ କରନ୍ତି । ସେଇମାନେ ହିଁ ସବୁ ଚୋରି କରି ନିଅନ୍ତି ବୋଲି ପୁଲିସ ହାତରେ ମାଡ଼ ଧମକ ଖାଆନ୍ତି । ମେଣ୍ଟ ବାନ୍ଧି କାମ ବନ୍ଦ କରନ୍ତି । ହାତକଡ଼ି ପଡ଼ି କଚେରିକୁ ଘୋଷରା ହୁଅନ୍ତି । ଜେଲ ଖଟି ଘରକୁ ଫେରନ୍ତି । ତା'ପରେ 'ଦାଗୀ' ହୋଇଥିବାରୁ ସବୁ ଚୋରି ଘଟଣାରେ ଅନ୍ୟମାନଙ୍କ ସଙ୍ଗେ ତାଙ୍କୁ ମଧ ଥାନାକୁ ତଲବ ହୁଏ । ଥାନା ବୋଇଲେ ଭୟ, ଅତ୍ୟାଚାର, କାୟିକ ଦୁର୍ବ୍ୟବହାର ଓ ବାଚନିକ ଭର୍ତ୍ସନାର ଚୂଡ଼ାନ୍ତ । ଗାଁ ମାମଲତକାର, ସାହୁକାର ବା ମକଦ୍ଦମମାନେ କଚେରି ଅଦାଲତ ଜଜ୍ ଓକିଲଙ୍କ ପ୍ରତିନିଧିତ୍ୱ କରନ୍ତି ଓ ସେଇମାନଙ୍କଠାରୁ ରିସ୍‌ପତ ଖାଇ ପୁଲିସ୍ ଜୁଲମ ଚାଲେ ତଳିଆ ଶ୍ରେଣୀଙ୍କ ଉପରେ ।

ପୋଲିସ ଦାରୋଗା କିମ୍ବା ସିପାହି ଆସିଲେ ଗାଁଆର ଅବସ୍ଥା ସେହିପରି ଅତି ବୀଭତ୍ସ ହୋଇପଡ଼େ । ଗାଁ ମାମଲତକାରମାନେ ଯାହାଙ୍କୁ ଜବତ କରିବାକୁ ଇଚ୍ଛା କରନ୍ତି, ସେଇସବୁ ଲୋକଙ୍କ ନାମ ଆଗରୁ ପୁଲିସ ଡାଏରିରେ ଉଲ୍ଲେଖ କରି ଆସିଥାନ୍ତି । ଦାରୋଗା ସିପାହିମାନେ ଗାଁକୁ ଆସି ସେଇମାନଙ୍କୁ ଆଗ ତଲବ କରି ଆଣନ୍ତି । ଦାଣ୍ଡ ମଝିରେ ତାଙ୍କୁ ଧାଡ଼ିମଳିଆ ଠିଆ କରାଯାଏ । ତା'ପରେ ଚାଲେ ଧମକ ଚମକ ବେତ ଚାବୁକ ହାତକଡ଼ି ଓ ଥାନା କଚେରିକୁ ଚାଲାଣ ।

ସେମାନଙ୍କ ଭିତରେ ଅନେକ ନିର୍ଦ୍ଦୋଷ ଲୋକ ଥିବାର ମୁଁ ଶୁଣେ । କିନ୍ତୁ ଦୋଷୀ ବା ନିର୍ଦ୍ଦୋଷ ଯାହା ହୁଅନ୍ତୁ ପଛେ ପୁଲିସର ଦୁର୍ବ୍ୟବହାର ଦେଖି ମୋର ବାଳକ ହୃଦୟ ବିଦ୍ରୋହ କରି ଉଠେ । ଲୋକଗୁଡ଼ାକ ଅତି ନିରୀହ ବୋଲି ସିନା ଏଭଳି ଅନ୍ୟାୟ ଅତ୍ୟାଚାର ସହିଯାନ୍ତି ! ଅଥଚ ପରୋକ୍ଷରେ ଆମେ ଯେ ଏହି ସବୁ ଅତ୍ୟାଚାରୀ ଶ୍ରେଣୀର ଅନ୍ତର୍ଭୁକ୍ତ, ସେ କଥା ମୁଁ କେବେ ବିଚାରି ପାରିନାହିଁ ।

ଆଟୁ ଘର କାନ୍ଥରେ ଟଙ୍ଗାଯାଇଥିବା ରୁଷ ରାଜବଂଶର ଛବିକୁ ଚାହିଁ ପୁଣି ପ୍ରଜାମାନଙ୍କ ଉପରେ ତାଙ୍କ ଅତ୍ୟାଚାର କାହାଣୀ ଶୁଣିବା ସଙ୍ଗେ ଏସବୁ ଚାକ୍ଷୁଷ ଘଟଣା ମୋର ମନ ଉହାଡ଼ରେ ଯେଉଁ ଦାଗ କାଟି ଦେଇଥିଲା; ସମୟର ଦୀର୍ଘ ବ୍ୟବଧାନ ପରେ ଆଜି ସୁଦ୍ଧା ତାହା ଲିଭି ନାହିଁ । ବରଂ ଆଜି ମଧ୍ୟ ସେହିଭଳି କେତେ ଘଟଣା ଆଖି ଆଗରେ ଘଟିଯାଇ ଅତୀତର ସେଇ ନ୍ୟାୟାନ୍ୟାୟ ଓ ସତ୍ୟାସତ୍ୟର ଗୋଲକଧନ୍ଦା ଭିତରେ ଅନ୍ତର୍ଦ୍ୱନ୍ଦ୍ୱ ଜାତ ହୋଇଥାଏ । ଯେଉଁ ପଟଭୂମିରେ ଏଭଳି ଚାଞ୍ଚଲ୍ୟକର ଜୈବିକ ଚିନ୍ତାଧାରାର ଉଦ୍ରେକ ହୁଏ, ତାହା କିନ୍ତୁ ସବୁ ଦିନ ସ୍ଥାଣୁ ଓ ଅପରିବର୍ତ୍ତନୀୟ ଯେମିତି ଅବା !



# ପ୍ରହାରେଣ ଧନଞ୍ଜୟ

ନିତ୍ୟ ନିସ୍ତରଙ୍ଗ ପରିବେଶରେ ନୂଆ ନୂଆ ତରଙ୍ଗ ସୃଷ୍ଟି । ଋତୁପର୍ଯ୍ୟାୟ ଭିତରେ ଗାଁଆଟିର ଆମୋଦ ଉତ୍ସବକୁ ଘେନି ବର୍ଷ ପରେ ବର୍ଷ ଗଡ଼ିଯାଏ । ବୈଶାଖ ମାସ ଅକ୍ଷୟ ତୃତୀୟାରେ ବିଲକୁ ଧାନ ଅନୁକୂଳ ହେବାଠାରୁ ଆରମ୍ଭ କରି ପୁଷ ମାଘରେ ଧାନ କଟା ପର୍ଯ୍ୟନ୍ତ; ତା'ପରେ ଦୋଳ ପର୍ବ ଚୈତ୍ର ପର୍ବ ପାର ହୋଇ ପୁଣି ଚନ୍ଦନ ଯାତ୍ରା ଆରମ୍ଭ ସଙ୍ଗେ ଧାନବୁଣା—ବେଶ୍ ଆନନ୍ଦରେ ସବୁ ଗଡ଼ିଚାଲେ । କିଛି ହେଲେ କେବେ ପୁରୁଣା କି ବିରକ୍ତିକର ବୋଲି ତ ମନେ ହୁଏନି !

ମନେ ହୁଏ ଯେମିତି ଗତାନୁଗତିକତାର ଭିତରେ ହିଁ ନୂତନତାର ସ୍ପର୍ଶ ଉପଭୋଗ୍ୟ । ସେଇ ରଜ, ବାଗୁଡ଼ି, କୁମାର ପୂର୍ଣ୍ଣିମା, ଜହ୍ନିଫୁଲ ଠୋ ଠା, ଆକାମାବେି, ମାଘ ସ୍ନାନ, ଦୋଳପୂର୍ଣ୍ଣିମା, ଫଗୁଖେଳ, ଚଇତି ଘୋଡ଼ା, ହସ କାନ୍ଦ; କଳିଗୋଳ, ଛୁଟିକିଆ, ମୁଟିକିଆ ବାହା ପୁନେଇଁ ଆଠ କାଳ ବାରମାସ ଲାଗି ରହି ଗାଁଟିକୁ ସବୁ ଦିନ ତାଜା ସରଗରମ କରି ରଖିଥାଏ । ଗୋଟିକ ପରେ ଆଉ ଗୋଟିଏ ଉତ୍ସବ ଘଣ୍ଟା କଣ୍ଟା ପରି ବୁଲି ଆସେ । ପ୍ରତି ଉତ୍ସବର ଆକାର ପ୍ରକାର ସତନ୍ତ । କାହିଁରେ ଖେଳ, କାହିଁରେ ନାଚଗୀତ; ଆଉ କାହିଁରେ ପିଠାପଣା !

ପ୍ରଚଣ୍ଡ ଖରା ଗ୍ରୀଷ୍ମ ପରେ ଆକାଶରେ ମେଘ ଘୋଡ଼ାଇ ଖରାକୁ ଆବୋରି ରଖେ । କେତେ ଅସରା ବର୍ଷା ହେଲା ପରେ ମାଟି ଓଦା ହୋଇ କଅଁଳ ରହେ । ରଜ ପର୍ବ ଆସେ ଲାଗ ଲାଗ ତିନି ଦିନ । ତିନି ଦିନ ଆଗରୁ ଘରେ ସବୁ କଟାବଟା କାମ ସରିଥାଏ । ଝିଅବୋହୂମାନଙ୍କ ଅଳଙ୍କାର ପାଣିରେ ବତୁରି ମଜ୍ଜା ହୋଇ ଚିକ୍ ଚିକ୍ ଦିଶେ । ପହିଲି ରଜ ସକାଳ ଭୋଜନ ପାଇଁ ରାତିରୁ ଚୁଲି ଉପରେ ପ୍ରକାଣ୍ଡ ପୋଡ଼ପିଠା ସିଝା ହୁଏ । କ୍ରିଷ୍ଟମାସ୍ କେକ୍ କିମ୍ବା ବିଲାତୀ ବିବାହ ଭୋଜିର କେକ୍ଠାରୁ ତାହା ଆକାର ଅବା ଓଜନରେ କମ୍ ହେବନି, ପ୍ରକାରରେ ଅବଶ୍ୟ ହୋଇପାରେ । ବିରି ଚାଉଳ ବଟାଯାଇ ତହିଁରେ ନଡ଼ିଆ ପାତି ଓ ଗୁଡ଼ ମିଶି ସିଝା ହୋଇଥାଏ । ବଡ଼ି ସକାଳୁ ଗାଧୋଇ ସାରିଲେ ପୋଡ଼ ପିଠା ବାଢ଼ି ଦିଅନ୍ତି ବୋଉ ।

ଦୋଳବେଦୀ ପାଖ ପଡ଼ିଆରେ ହୁଏ ବାଗୁଡ଼ି ଖେଳ । ଓସ୍ତଗଛ ମୂଳରେ ଦର୍ଶକମାନଙ୍କ ସ୍ଥାନ । ପ୍ରଜାପାଟକ ମକଦ୍ଦମ ପିଲା ବୁଢ଼ା ଆସି ରୁଣ୍ଡ ହୁଅନ୍ତି । ଦୌଡ଼ ପୁଣି ବଳ କଷାକଷି ପାଇଁ ବାଗୁଡ଼ି ଗୋଟିଏ ବଢ଼ିଆ ଖେଳ । ସେ ଖେଳରେ ଶକ୍ତିର ପ୍ରତିଯୋଗିତା ପ୍ରଦର୍ଶନ ପାଇଁ ଦ୍ରୁତ ଦୌଡ଼ିବା, ଜଣକୁ ଜଣେ ଅଟକାଇ ଧରି ରଖିବା, ପ୍ରତିପକ୍ଷ ଖେଳାଳୀର ଗୋଡ଼କୁ ଝିଙ୍କି ତାକୁ ତଳେ ନିର୍ଘାତ କଚାଡ଼ି ଦେବା ପୁଣି ପ୍ରତି ପକ୍ଷର ଆକ୍ରମଣରୁ ଖସି ଯିବାରେ ହସ୍ତପଦର କୌଶଳମାନ ଦେଖାଇ ବିଜୟର ବାହାଦୁରି ନେବାପାଇଁ ଅନେକ ସୁଯୋଗ ଅଛି ।

ତଳ ଅଗଣାରେ ନାନା ରଙ୍ଗର ଛିଟ ପାଟ ପେଡ଼ି ଲୁଗା ପିନ୍ଧି ତେଲ ହଳଦୀ ଲଗାଇ କେତେ ପିଲା, କେତେ ଝିଅ ଆସି ରୁଣ୍ଡ ହୁଅନ୍ତି ଦୂର ନିକଟ ସାଇପଡ଼ିଶା ଘରୁ । ଆହୁରି କେତେ ଝିଅ ପୁଅ ରଜ ବୁଲି ବାହାରନ୍ତି । କେହି କେହି ଗାଁ ପାଖ ବୁଦ୍ଧନାଥ ମନ୍ଦିରକୁ ଭୋଗ ଡାଲା ଧରି, ଆଉ କିଏ ପଶ୍ଚିମ ପଟେ ଦୂର ଆକାଶରେ ଗାଢ଼ ନୀଳ ରଙ୍ଗରେ ଅଙ୍କା ହୋଇ ଚିତ୍ର ପରି ଦିଶୁଥିବା ଧଉଳି ପାହାଡ଼କୁ ବାହାରନ୍ତି । ଗାଁ ଦାଣ୍ଡ ଓ ଗାଁ ମୁଣ୍ଡ କଚାସଡ଼କଟି ନେଳି ନାଲି ହଳଦିଆ ବାଇଗଣି ଆଦି ନାନା ରଙ୍ଗର ଶାଢ଼ିରେ ଚିତ୍ରିତ ହୋଇଉଠେ । ଘର ଭିତରଟା ଦଶ ପଚିଶ କଉଡ଼ି ଖେଳ କିମ୍ବା ବାଘବଜାରି ଖେଳର ରୁଦ୍ଧ ମଧୁର କଣ୍ଠଧ୍ୱନିରେ ମୁଖରିତ ହୋଇପଡ଼େ । ତା'ପରେ ବର ଓହଳରେ ଓ ଗଛଡାଳରେ ଦୋଳି ଖେଳ । କେଉଁ ସୁଖକୁ ବାହୁନି ବସିବା !

ସେଥର ରଜ ପର୍ବଟା କିନ୍ତୁ ବଡ଼ ଦୁର୍ଯୋଗରେ ଆସିଲା । ଦୋଳ ବେଦୀ ପାଖ ଅଶ୍ୱତ୍ଥ ଗଛ ମୂଳେ ଗାଁର ପ୍ରଜାପାଟକ ମକଦ୍ଦମମାନେ ରୁଣ୍ଡ ହୋଇଛନ୍ତି ସବୁ ରଜପର୍ବରେ ଯେମିତି ହୁଅନ୍ତି । ଦୁଇ ଦଳ ଭେଣ୍ଡା ଟୋକାଙ୍କ ଭିତରେ ଚାଲିଛି ବାଗୁଡ଼ି ଖେଳ । ଖେଳରେ ଆଉ ରଜା ପ୍ରଜାର ବା ଭେଦ କ'ଣ ? ସମସ୍ତେ ମିଳି ମହା ଉତ୍ସାହରେ ଖେଳୁଛନ୍ତି । ସବୁ ବର୍ଷ ଯେମିତି ହୋଇଥାଏ ।

ନରହରି ସେ ଦିନ ମୋର ଜଣେ କୁଟୁମ୍ବ ଭାଇଙ୍କ ପଛରେ ଗୋଡ଼ାଇ ହଠାତ୍ ପିଠିରେ ତାଙ୍କର ଗୋଟିଏ ବ୍ରହ୍ମ ଚାପୁଡ଼ା ମାରିଲା । ଚାପୁଡ଼ାଟା ଯେମିତି ଦର୍ଶକମାନଙ୍କୁ ଶୁଣାଗଲା, ମୋର କୁଟୁମ୍ବ ଭାଇ ମଧ ସେମିତି ନିଜ ହାତକୁ ପଛ ଆଡିକି ନେଇ ପିଠି ଆଉଁଶିବାକୁ ଚେଷ୍ଟା କଲେ ।

ମାଡ଼ଟା ନିଶ୍ଚୟ ଖୁବ୍ ଜୋର୍‌ରେ ବସିଛି । ଆମର ଜଣେ କକେଇ ହେଲେ ଗାଁଆର ପ୍ରଧାନ ମାମଲତକାର—ନେତା । ପୁଣି ଖେଳରେ ମାଡ଼ ଖାଇଥିବା ଭାଇନାଙ୍କର ମଧ୍ୟ ସେ ନିଜ କକେଇ ।

ସଙ୍ଗେ ସଙ୍ଗେ ସେ ନରହରିକୁ ଡାକିଲେ, ''ଆରେ ନରିଆ, ଆସିଲୁ ଏଣିକି ।'' ନରହରି ପ୍ରଜା ଶ୍ରେଣୀର ଲୋକ । କକେଇଙ୍କ ଦାଣ୍ଡ ଦୁଆରେ ତାଙ୍କ ଘର । ଗାଁର ସେମାନେ ଦେଉଳ କରଣ । ବ୍ରାହ୍ମଣସାହିରେ ରହିଥାନ୍ତି ଠିକ୍ କକେଇଙ୍କ ଘର ସାମ୍ନା ଦାଣ୍ଡ ଆରପଟେ ।

ନରହରି ଭୟ ଓ ସମ୍ଭ୍ରମରେ କକେଇଙ୍କ ପାଖକୁ ଚାଲି ଚାଲି ଆସିଲା । କାରଣ କକେଇ ଥିଲେ ଭୟର ଦୁର୍ଦ୍ଦାନ୍ତ ପ୍ରତିମୂର୍ତ୍ତି । ଦୀର୍ଘ ପ୍ରସ୍ଥରେ ଚେହେରାଟି ରାଜପୁତ୍ର ଭଳି । କଥା କହିବା ତୁଳନାରେ ସେ ହୁକୁମ କରନ୍ତି ବେଶି । ନରହରି ତାଙ୍କ ପାଖକୁ ଆସିବାକ୍ଷଣି କକେଇ କହିଲେ, ''କିରେ, ତୁ ମୋର ପୁତୁରା ପିଠିରେ ଏଡ଼େ ବଡ଼ ଚାପୁଡ଼ାଟାଏ ମାରିଦେଲୁ ?''କଥା ସଙ୍ଗେ ସଙ୍ଗେ ତାଙ୍କ ହାତ ମଧ୍ୟ ଆହୁରି ଜୋର୍ ଶବ୍ଦ କରି ନରହରି ଗାଲରେ ବସିଲା ।

ଚାହୁଁ ଚାହୁଁ ନରହରି ଗାଲରେ ତାଙ୍କର ପାଞ୍ଚଟାଯାକ ଆଙ୍ଗୁଠିର ଫଟୋ ଯେପରି ଫୁଟିଉଠିଲା । ଆଉ ଗାଲଟା ତା'ର ଲାଲ ପଡ଼ି ଫୁଲିଗଲା । ପୁଣି ଯେମିତି ଆପଣା ଅଜାଣତରେ ଆଖିରୁ ତା'ର ଥପ୍ ଥପ୍ ହୋଇ ଗୁଡ଼ାଏ ଲୁହ ବୋହିପଡ଼ିଲା । ଦୁଇ ହାତରେ ସେ ମୁହଁକୁ ଲୁଚାଇନେଲା । ବୋଧହୁଏ ତାକୁ ଲାଜ ମାଡ଼ିଥିବ, ଭେଣ୍ଡା ଟୋକାଟା ହୋଇ କାନ୍ଦୁଛି ବୋଲି ।

ଲୁହଟାର କାରଣ ତ ଖାଲି ଦୁଃଖକଷ୍ଟ ନୁହେଁ, ଲଜ୍ଜା ଅପମାନ ମଧ୍ୟ । ଯେଉଁମାନେ ଲଜ୍ଜା ଅପମାନର ପ୍ରତିଶୋଧ ନେଇପାରନ୍ତି ନି, ଦୁଃଖକଷ୍ଟର ପ୍ରତିକାରପାଇଁ ଆପଣାକୁ ଅକ୍ଷମ ଅସହାୟ ମନେ କରନ୍ତି, ସେଇମାନେ ବୋଧହୁଏ ବେଶି କାନ୍ଦନ୍ତି । ସେଥିଲାଗି ପିଲାଙ୍କ ଭିତରେ ଏଇ ପ୍ରକ୍ରିୟାଟା ବେଶି ଦେଖାଯାଇଥାଏ ।

ଖେଳପଡ଼ିଆରେ ଯେ ଉଗାରଗିର ପ୍ରଶ୍ନ ନାହିଁ, ଧନୀ ଗରିବର ଫରକ ନାହିଁ, କକେଇଙ୍କର ମାରିବାଟା ଯେ ସମ୍ପୂର୍ଣ୍ଣ ଅନ୍ୟାୟ ଓ ଅନଧିକାର, ତାଙ୍କ ଆଗରେ କେହି ଏ କଥା ପ୍ରକାଶ କରିବାକୁ ସାହସ କଲେ ନାହିଁ । କାରଣ ସେ ତ ଖାଲି ଦୈହିକ ଶକ୍ତିର ବଳୁଆ ନୁହନ୍ତି, ଧନରେ ପୁଣି ବୁଦ୍ଧି ଓ ସାହସରେ ମଧ୍ୟ ଗାଳି ଫଜିତ୍ କରିବାରେ ଯେମିତି ଧୁରନ୍ଧର, ସେମିତି ମାମଲାବାଜ୍ ଚତୁର । ଛୋଟ ଗାଁଆଟିରେ ଧମକ ଚମକ ଦେଇ ସମସ୍ତଙ୍କୁ ଡରେଇ ଥରେଇ ରଖିବାରେ, ପୁଣି ରାତି ଅଧରେ କାହାରି ଟଙ୍କା ଦରକାର ହେଲେ ତାକୁ କରଜ ଲଗେଇ ଦୁଇ ତିନି ଗୁଣ ଆଦାୟ କରିବାରେ ତାଙ୍କ ଭଳି ଦୟାଳୁ ଓ ହିସାବୀ ଲୋକ ଆଉ କେହି ନ ଥାନ୍ତି ।

ମାଡ଼ ଫୌଜଦାରି ଜୋର୍‌ଜବରଦସ୍ତି ସାଙ୍ଗକୁ ଗାଁ ଭିତରେ ମେଳା ମଉଛବ, ଯାତ୍ରାପର୍ବ, ଦିଅଁ ଦେଉଳ ସବୁ ସାଧାରଣ କାର୍ଯ୍ୟରେ ତାଙ୍କରି ନେତୃତ୍ୱ ସୀକାର କରିଥାନ୍ତି ପ୍ରାୟ ସମସ୍ତେ । ସାମାନ୍ୟ କାରଣରୁ ବେଇଜିତ୍ ହେବାର ଭୟ ଥିଲେ ସୁଦ୍ଧା ତାଙ୍କୁ ଖୁସି ରଖିବାକୁ,

ହସାଇବାକୁ ପୁଣି ତାଙ୍କ କଥାରେ ହସିବାକୁ ଓ ସେ ଯାହା କହିବେ, ତହିଁରେ ହୁ ମାରିବାକୁ ଗାଁ ଲୋକେ ଆସି ଜୁଟନ୍ତି ତାଙ୍କରି ପାଖରେ ।

ଯାତ୍ରା ପର୍ବରେ ବିରିଣା ଗାଁଆରୁ ପାଲାବାଲା, ଯାତ୍ରା ପଞ୍ଚାଙ୍କୁ ବହିନା ଦେଇ ତକରା ହୁଏ । ଯାତ୍ରା ସରିଗଲେ ପୂର୍ବ ଜବାବ ଅନୁଯାୟୀ ବାକି ଟଙ୍କା ଦେଲାବେଳକୁ ଜକେଇଙ୍କ ପାଖକୁ ସମସ୍ତେ ଯାଆନ୍ତି । ଆଗରୁ ସେମିତି ମଧ ସେ ନିର୍ଦ୍ଦେଶ ଦେଇଥାନ୍ତି ।

ତାଙ୍କରି ଆଗରେ ଜବାବ ଟଙ୍କାର ହିସାବ କରାଯାଏ । ତହୁଁ ସେ ଜୋର୍ ଗଳାରେ ଟିପ୍‌ପଣୀ କରନ୍ତି—ଆହେ ରଖ ସେସବୁ ହିସାବପତ୍ର । ସେସବୁ ହିସାବ ମୋର ଦରକାର ନାହିଁ । ସମସ୍ତେ ତ ତୁମ ଯାତ୍ରା ଦେଖି ମୁହଁ ମୋଡ଼ିଦେଲେ ।

ଯାତ୍ରା ପାଟିର ଓସ୍ତାଦ ନମ୍ର ସ୍ୱରରେ କହନ୍ତି, ନାହିଁ ଆଜ୍ଞା, ଯାତ୍ରା ପରେ ପାଆନ୍ତା ପହରେ ଦୁଆର ଦୁଆର ବୁଲି ଯେଉଁ ମାଗୁଣି କଲୁଁ, ସେଥିରେ ସମସ୍ତେ ଖୁସି ହୋଇ ଚାରଣା ଆଠଣା ଦେଇଛନ୍ତି ।

କ'ଣ ହେଲା ? ଯାତ୍ରା ପରେ ପୁଣି ମାଗୁଣି କରିଛଟି ? ତେବେ ତ ତୁମେ ତମ ପାଉଣାସବୁ ଉଠାଇନେଇ ସାରିଛ । ଆଉ କ'ଣ ? ତା'ଛଡ଼ା ବହିନା କ'ଣ ନେଇଛ ପରା ?—ଜକେଇ ପଚାରନ୍ତି ଗାଁ ଲୋକଙ୍କର ଉତ୍ସୁକ ଦୃଷ୍ଟି ଭିତରେ ।

ହଜୁର, ମୋଟେ ପାଞ୍ଚଟଙ୍କା ତିନିଅଣା—ହାତ ଯୋଡ଼ି ଯାତ୍ରା ପାର୍ଟିର ଓସ୍ତାଦ ଜଣାଏ ।

ଏତେ ଟଙ୍କା ନେଇଛଟି ? ଆଉ ତେବେ କ'ଣ ? କାଲି ରାତିଟା ଏଠାରେ ତ ଭୋଜନ ବ୍ୟବସ୍ଥା ହୋଇଥିଲା । କିଓ ସୁଦି, ଯାତ୍ରା ପାର୍ଟିଙ୍କ ପାଇଁ ଭଲ ରୋଷେଇବାସ କରିଥିଲ ଟି ?

ସୁଦି ଓରଫ ସୁଦର୍ଶନ ମକଦ୍ଦମ ପଦେ କଥା କହିଦେଲେ ସମସ୍ତେ ହସି ପକାନ୍ତି । ଏଥର କିନ୍ତୁ ଜକେଇଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ସେ ଅତି ଗମ୍ଭୀର ହୋଇ ପଡ଼ନ୍ତି—ହଁ ଜକେଇ, କାହିଁକି ସେହିମାନଙ୍କୁ ପଚାରୁ ନ ?

''ଧେତ୍, ତୁ ଗୋଟିଏ କମିତି ବେଅକଲୀ ଲୋକ କହିଲୁ ଭଲା ? ସେମାନେ ହେଲେ ଆମର କୁଣିଆ ପରା, ତାଙ୍କୁ ପଚାରିବି—କ'ଣ ଖାଇଲ ପିଇଲ ? ତୁ ପୁଣି 'ପାଣି ବଂଶ'ରେ ଜନ୍ମ ହୋଇ ଏତିକି ଅକଲ ତୋର ହେଲା ନାହିଁ ଆଜିଯାକେ ? କ'ଣ ସବୁ ଭଲ ତରକାରି ପତ୍ର ବରାଦ କରିଥିଲ ଟି ?

ସୁଦର୍ଶନ କପଟ ମୁହଁ ଶୁଖାଇ ସମ୍ଭ୍ରମ ଛଳନା କରି କହନ୍ତି—କାହିଁକି ଜକେଇ, ତା'ହେଲେ ନେତି ବୁଢ଼ୀକି ପଚାର, କାଲି ସନ୍ଧ୍ୟା ବେଳେ ତା' ଦୋକାନରୁ ଅଧସେରେ ପିତା ଶୁଖୁଆ ମୁଁ ନିଜେ ଯାଇ କିଣି ଆଣିଛି କି ନାହିଁ ।

ଏକାବେଳେ ନିର୍ମାୟା ପୁରୁଷ ହୋଇ ଜକେଇ ସବୁ କଥା ଧୀରସ୍ଥିର ଭାବରେ ଶୁଣନ୍ତି । ତା'ପରେ ପୁଣି ପଚାରନ୍ତି କିଛି ନ ଜାଣିଲା ପରି—ଆଉ ଶୋଇବା ପାଇଁ ବିଛଣାପତ୍ର ?

ଶୋଇବୁଁ ଆମେ ଆଉ କେତେବେଳେ ଆଜ୍ଞା ! ଗାଁରେ ଗୋଡ଼ ଦେଲା ବେଳୁଁ ସଜବାଜ ହେବାରେ ଲାଗିଲୁଁ । ହେଁସ ଖଣ୍ଡେ ବସିବାକୁ ଦେଇଥିଲେ ଯେ ଖାଲି ଛାରପୋକରେ ଭର୍ତ୍ତି— ଯାତ୍ରା ପାର୍ଟିର ଓସ୍ତାଦ କହନ୍ତି ।

ଧମକ ସ୍ୱରରେ କକେଇ ଆକଟ କରନ୍ତି—ହଇରେ ସୁଦର୍ଶନ ! ତୁ ଆମ ଗାଁଆର ଇଜ୍ଜତ ମହତ ତଳେ ପକେଇଲୁ ।

ନାହିଁ କକେଇ ! ଆଚ୍ଛା, କହିଲ ଦେଖି ଓସ୍ତାଦେ, ତମକୁ ଦି'ଖଣ୍ଡ ନଡ଼ିଆ ଚାଞ୍ଚ ଉଛବା ଆଣି ଦେଇଗଲା ନି ?

ହଁ ଆଜ୍ଞା, ମୁଁ ନିଜେ ଯାଇ ଦି'ଖଣ୍ଡ ତଟକା ବୁଣା ନଡ଼ିଆ ଚାଞ୍ଚ ଦେଇ ଆସିଛି । କିହୋ ଓସ୍ତାଦେ ? ଉଛବା ଦାନ୍ତ ନିକୁଟି ପଚାରେ ।

ସେଥିରୁ ଆମକୁ କ'ଣ ମିଳିବ । ନିଜ ଘର ଗାଁ ଛାଡ଼ି ଆସିଲେ ବିରିଣା ଗାଁରେ କ'ଣ ସବୁ ସୁବିଧା ମିଳେ କି ?

ଓସ୍ତାଦ ତା'ପରେ ସୁଦର୍ଶନଙ୍କ ପ୍ରତି ଥରେ ଦୃଷ୍ଟିପାତ କରି ଆଉଥରେ କକେଇଙ୍କୁ କହନ୍ତି, ହେଉ ଆଜ୍ଞା, ଯାହା ତ ହେବାର ହେଲାଣି, ଜବାବ ଟଙ୍କାଟା ମିଳିଯାଉ, ଆମେ ଭଲା ବିଦା ହୋଇଯାଉଁ, ଘରେ ତେଣେ କେତେ ପାଇଟି ।

କିଓ ସୁଦି, କ'ଣ ଜବାବ ହୋଇଥିଲା ? କିଛି ନ ଜାଣିଲା ଭଳି କକେଇ ପୁଣି ପଚାରନ୍ତି ।

ଜବାବ କଥା ଓସ୍ତାଦ ନିଜେ କହିବେନି । ତଳକୁ ମୁହଁ ପୋତି ଜବାବ ଦିଅନ୍ତି ସୁଦର୍ଶନ ।

ଆଜ୍ଞା, ଏ କଥା ଆଜି ଆପଣେ କହୁଛନ୍ତି । ରାଜକୁ ଚାଳିଶ ଟଙ୍କା ଜବାବ କଲେ । ପାଞ୍ଚ ଟଙ୍କା ବହିନା ଦେଲେ । ବାକି ଟଙ୍କା କେଇଟା ଦିଅନ୍ତୁ ଆଜ୍ଞା, ଆମର ବହୁତ ଧନ୍ଦା ପଡ଼ିଚି ପରା !—ଓସ୍ତାଦ ବିଚରା ବ୍ୟସ୍ତ ହୋଇପଡ଼େ ।

କକେଇ ଏଥର ନିରପେକ୍ଷ ବିଚାରକର ଅଭିନୟ କରି କହନ୍ତି, ଆଚ୍ଛା, ଚାଳିଶ ଟଙ୍କାରୁ ପାଞ୍ଚଟଙ୍କା ପାଇଲେ ବାକି ତମର ପଇଁତ୍ରିଶ ଟଙ୍କା, ନୁହେଁ ?

ହତାଶ ଓସ୍ତାଦ ପ୍ରାଣରେ ଟିକିଏ ଆଶାର ସଞ୍ଚାର ହୁଏ । ସେ ଅତି ଆଗ୍ରହରେ କହି ପକାନ୍ତି, ଆଜ୍ଞା ! ସେତିକି ଖାଲି ମିଳିଯାଉ, ଆଉ ପଛେ ବିଦାକି କିଛି ନ ହେଲା ନାହିଁ ।

ସୁଦର୍ଶନ ମକଦ୍ଦମ ଆଗରୁ ତାଲିମ୍ ହୋଇଥାନ୍ତି । ମୁହଁ ଶୁଖାଇ କହନ୍ତି, ବିଦାକି ତୁମେ ତ ଆଗରୁ ଆଦାୟ କରିସାରିଲଣି । ସେଇଟା ଆଜ୍ଞା ମାଗୁଣି ପରା, ବିଦାକି ହେବ ସେ କିମିତି କହିଲେ ? ଆପଣଙ୍କୁ କ'ଣ ଏ କଥା ଜଣାନାହିଁ ? ମାଗୁଣିଟା ପୁଣି ବିଦାକି ହବ କିମିତି ? ପିଲାଏ ଘର ଘର ବୁଲି ଗୀତ ଗାଇ ଦି'ଅଣା ଚାରଣା ମାଗିବା କଥା ସିନା ।

ମଝିରେ କକେଇ କାହିଁକି ପୁଣି ବେଶି ବିରକ୍ତ ହୋଇପଡ଼ନ୍ତି ସୁଦର୍ଶନଙ୍କ ଉପରେ— ତୁ ଏତେ ଯୁକ୍ତିତର୍କ କରୁଛୁ କ'ଣ ସୁଦି ! ଯାହା ଜବାବ କରିଛୁ, ସେତକ ଆଗ ଦେଇପକା ।

କାକୁସ୍ଥ ଓ ଆପ୍ୟାୟିତ ହୋଇ ଓସ୍ତାଦ କହନ୍ତି, ଆଜ୍ଞା ସେତିକି ତ ! ଆମେ ଆଉ କ'ଣ ବେଶି ଅଳି କରୁଛୁ କି !

ଆଚ୍ଛା, ସବୁ ତ ହେଲା, ଯାହା ଆମେ ଜବାବ୍ କରିନୁ ? କ୍ରମେ ସୁଦର୍ଶନଙ୍କ କଥା ଅବୋଧ ହୋଇପଡ଼େ ।

କକେଇଙ୍କ ଚକ୍ଷୁ ତାରକା ଉଜ୍ଜ୍ୱଳ ହୋଇ ଦିଶେ—କ'ଣ ଜବାବ କରିନ କି ?

ଏଇ ଧର ପାନଗୁଆ, ଝୋଟ, ନଡ଼ିଆତେଲ, ହାଣ୍ଡିକଳା—

ଏଗୁଡ଼ା ତୁ କ'ଣ ଗପିଯାଉଛୁ ସୁଦି ! କକେଇ ଖୁବ୍ ବିରକ୍ତ ଛଳନା କରନ୍ତି ।

ମୁଁ କ'ଣ ଏକା ଗପୁଛି । ଗାଁରେ ଆଉ କେହି କିଛି ଜାଣନ୍ତି ନି । କିରେ ସାଇଁ ! କହୁନୁ କାହିଁକି ମ, ମତେ ଏକା ବାଘମୁହଁକୁ ପେଲି ଦେଇ—ସୁଦର୍ଶନ ମକଦ୍ଦମ ଏକାବେଳେ ନିର୍ମାୟା ପୁରୁଷ ।

ବାଘ ବୋଇଲେ ସେଇ ଏକା କକେଇ । ବାଗୁଡ଼ି ଖେଳରେ ଯେ ନରହରିକୁ ବ୍ରହ୍ମଚାପୁଡ଼ା ମାରନ୍ତି ଆତ୍ମଅଭିମାନ ପ୍ରକାଶ କରି ତାଙ୍କ ନିଜ ପୁତୁରାପାଇଁ । ସାଇଁ ବି ତାଙ୍କର ପିଆଦା । ପ୍ରଜାପାଟକଠାରୁ ଖଜଣା ଅସୁଲ, ଧାନ ଦେଢ଼ି, ଖାତକଠାରୁ କରଜ ଟଙ୍କା ସୁଧ ମୁନଫା ଆଦାୟ କରିବା ଦାୟିତ୍ୱ ତା'ରି ଉପରେ । ମଇଁଷି ପଣ୍ଡା ପରି ମଜବୁତିଆ ଦେହ, ହାତରେ ଗୋଟାଏ ତେଲ ପାଲିସ୍ ମୋଟା ବାଉଁଶ ଠେଙ୍ଗା ।

ହାତଯୋଡ଼ି ସାଇଁ କହେ, ହଁ ହଜୁର, ଏଥିରେ କିଛି ଭୁଲ୍ ନାହିଁ ମୁଁ ନିଜେ ଯାଇ ସାହାଣୀ ଘରୁ ଝୋଟ ଆଣିଦେଇଛି । ତା'ର ଟଙ୍କା ଶୁଝଟ ପଡ଼ିନି । ଏବେ ବି ମତେ ପରା ଆସିଲା ବାଟରେ ମାଗୁଥିଲା । ସାହାଣୀ କିମିତି ରାଢ଼, ଜାଣିନ ?

କିରେ ଝୋଟ କ'ଣ ହେଉଥିଲା ଯାତ୍ରାରେ ? ବାଞ୍ଛାନିଧି କିଛି ନ ଜାଣିଲା ଭଳି ପୁଳାଏ ଗୁଣ୍ଡପତ୍ର ପାପୁଲିରେ ଦଳି ପଚାରନ୍ତି ।

ଓଃ ! ତୁ ଯେମିତି କିଛି ଜାଣିନୁ—ଏକାବେଳେ ନିର୍ମାୟା ପୁରୁଷ ! କିରେ ନାରଦଙ୍କ ଦାଢ଼ି ନିଶ ପାଚିଲା ବାଳ—ସୁଦର୍ଶନଙ୍କ ବଡ଼ଭାଇନା ଚକ୍ରଧର ଚଟ୍‌କରି ବୁଝାଇ କହନ୍ତି—ଯାତ୍ରାରେ କ'ଣ ଝୋଟ ଖର୍ଚ୍ଚ ଅଳପ କି ! ମାଇପି ସୁଆଙ୍ଗରେ ତ ସେଇ ଝୋଟରେ ହାଣ୍ଡିକଳା ପୁଣି ତେଲ ଟିକିଏ ବୋଳି ଦେଲେ ବେଣୀ ସୁନ୍ଦା—

ଆଉ ନଡ଼ିଆତେଲ ?

ଆଜ୍ଞା, ନଡ଼ିଆତେଲ ଯାହା ଦେଇଥିଲେ, ଖାଲି ତ କିରାସିନିମିଶା; ଏତେବେଳଯାଏ ପିଲାଙ୍କ ଦେହରୁ ଗନ୍ଧ ଛାଡ଼ିନି ।

ତା'ପାଇଁ ଆମେ କରିବୁଁ କ'ଣ କହିଲ ? ନରସିଂହା ମା' ବୁଢ଼ୀ ଦୋକାନରୁ ତ ଖାଣ୍ଟି ନଡ଼ିଆତେଲ ଆସିଲା । ସେଥିରେ କିରାସିନି ପୁଣି ମିଶାନ୍ତା କିଏ ? ନରସିଂହା ମାକୁ ତଲବ କର ତେବେ । କକେଇ ଆକଟ କରି କହନ୍ତି । ଧେତ୍, ଖାଲି ସେଇ ବଗୁଲିଆ କଥା—

ଆମକୁ ବିଦାକର ଆଜ୍ଞା, ମୋର ବିଲଅରାଏ ମୁଗ ଉପାଡ଼ିବାକୁ ଅଛି । ଆଜି ନଇଲେ ଗୋରୁ ଚରିଯିବେ ।

କିଓ ସୁଦି, ବିଦାକର ।

ହଁ, ସେମାନେ ବିଦା ହୋଇଯାନ୍ତୁ ।

ତା' ହେଲେ ବିଦାକି ?

ଆର ଥରକୁ ପାଇବେ ।

ଆର ଥର ?

ହଁ, ଏଇ ବର୍ଷ ରଜ କି ଗହ୍ମା, ନଇଲେ କୁଆଁରପୁନିଅଁ ।

ତା'ନହେଲେ ଆରବର୍ଷ ଦୋଳ କି ଦଶହରା !

ତେବେ ଏ ଟଙ୍କାଟା ଆମ ଦିଅଁଙ୍କ ଘର ବାକି ଖାତାରେ ଲେଖି ରଖ ।

ଆର ଥର ପାଇଁ ବହିନା କିଛି ହେବନି ତାଙ୍କୁ ?

ବହିନା ତ ଦିଆ ସରିଛି ।

କିହୋ ସେ ସିନା ଏ ବର୍ଷ ପାଇଁ । ଆସନ୍ତା ବର୍ଷ ପାଇଁ କିଛି ହେଲେ—

ନା, ନା, ଏଇ ବହିନା ପାଞ୍ଚଟଙ୍କା ତ ତାଙ୍କ ପାଖରେ ଆମର ବାକି ରହିଲା । ବାକି ଖାତାରେ ପୂରା ଚାଳିଶ ଟଙ୍କା ଲେଖାଯାଉ । ବିଚାରକଙ୍କୁ ଘେରି ବସିଥିବା ଜଣକ ପରେ ଆଉ ଜଣେ ଜୁରି ହୋଇ ମନ୍ତବ୍ୟ ପ୍ରକାଶ କରନ୍ତି ।

ଆଜ୍ଞା, ହଜୁର, ତା'ହେଲେ—ମୁହଁ ଶୁଖାଇ ଓସ୍ତାଦ ଆଉ କିଛି କହି ପାରନ୍ତି ନି ।

ହଁ ଓସ୍ତାଦେ, ତୁମ ଟଙ୍କା ପାଇଁ କିଛି ଭାବନା କରନି । ସେ ଟଙ୍କା ଜାଣ ତମରି ଘରେ ଥୁଆ ହୋଇଛି-ତମରି ବାକ୍‌ସ ଭିତରେ ।

ତା'ହେଲେ ଆଜ୍ଞା କିଛି ବାଟଖର୍ଚ୍ଚ ହୁକୁମ ହେଉ ।

କିଓ ବିଶ୍ୱନାଥ ! ବୁଢ଼ା ଗୁଡ଼ କ'ଣ ବଳି ପଡ଼ିଥିଲା ପରା ? ତା' ସାଙ୍ଗକୁ ଦି'କଡ଼ା ନଡ଼ିଆ ହେଲେ ଯାତ୍ରାବାଲାଙ୍କ ବାଟଖର୍ଚ୍ଚ—

କିଏ ଗାମୁଛା କାନିରେ, କିଏ କାଶି, ଆଉ କିଏ ନାକ ପୋଛି ଓ ପଛପଟକୁ ମୁହଁ ବୁଲାଇ ହସ ରୋକିବାକୁ ଚେଷ୍ଟା କରନ୍ତି ।

ସବୁ ଓଳିକିଟିଏ ପକାଇ ଓସ୍ତାଦ ନିରବରେ ବିଦା ହୋଇଯାନ୍ତି । ପଛରୁ ଧନିମଳିକ ଡାକ ଦିଏ—ଆର ସନକୁ ଯେମିତି ସହଳ ଦିନ ଥାଉଁ ଥାଉଁ ପହଞ୍ଚି ଯିବ । ବୁଝିଲ ତ । ଝୋଟ ପାଇଁ ଆମକୁ ଯେମିତି ଆଉ ରାତି ଅଧରେ ଧଦାଳି ହେବାକୁ ନପଡ଼େ ଟି !

ପ୍ରତିବର୍ଷ ଏମିତି ଉପାୟରେ ନୂଆ ନୂଆ ଯାତ୍ରାପାର୍ଟି ଗାଁକୁ ଆସନ୍ତି । ଯେ ଥରେ ଆସିଲେ ତାଙ୍କର ଆଉ ଦ୍ୱିତୀୟ ଥର ଆସିବା ଘଟେ ନାହିଁ । କାରଣ ଯେଉଁ ବାକି ଖାତାରେ

ତାଙ୍କ ପାଉଣା ଲେଖା ରହେ ବୋଲି କୁହାଯାଏ; ତାହାର ଦେଖାଦର୍ଶନ କେବେ ହେଲେ ମିଳିନାହିଁ । କ୍ରମେ ଆଖପାଖରେ ବିଶ୍ୱନାଥପୁର ଗ୍ରାମର ପ୍ରଚାର ଏପରି ବିସ୍ତୃତ ଆକାର ଧାରଣ କଲା ଯେ, କୌଣସି ଯାତ୍ରାଦଳ ଖାଲି କାହିଁକି, ସାଧାରଣ ଲୋକ ସୁଦ୍ଧା ସେ ଗାଁର ନାଁ ଶୁଣିଲେ ବେଖାତିର ବା ନିନ୍ଦା ଛଡ଼ା ଆଉ କିଛି କରୁ ନଥିଲେ । କାରଣ ଖାତିର ସମ୍ଭ୍ରମ ସମ୍ମାନ ବୋଧହୁଏ— ବେଶି ପରିମାଣରେ ଭୟ ବା ବିପଦର ଆଶଙ୍କାରୁ ଜନ୍ମିଥାଏ । ପୁଣି ସେମିତି ଭୟ ବିପଦ ଯେ ଜନ୍ମାଇ ପାରନ୍ତି, ସେହି କେବଳ ଅଭୟ ଦେଇ ଆପତ୍‌କାଳେ ସମୁତ୍‌ପନ୍ନେ ସହାୟ ହୋଇ ପାରନ୍ତି ।



# ଜୋର୍ ଯାହାର ମୁଲକ ତାହାର

ନାୟମାତ୍ମା ବଳହୀନେନ ଲଭ୍ୟମଃ—କିନ୍ତୁ ବିଶ୍ୱନାଥପୁର ଗାଁ ଲୋକେ ଯେଉଁ ବଳର ପରିଚୟ ଦେଉଥିଲେ, ତାହାଦ୍ୱାରା କେବଳ ଆତ୍ମା କାହିଁକି, ପରମାତ୍ମା ପ୍ରାପ୍ତିର ସମ୍ଭାବନା ଥାଏ ଅଧିକ । ସେଥିଲାଗି କେହି କେହି ସେ ଗାଁକୁ ବିଶ୍ୱନାଥପୁର ନୁହେଁ ଯେ 'ବିଷମନାଥପୁର' ବୋଲି କହିଥାନ୍ତି ।

ମାରଣ ତାରଣ ସ୍ତମ୍ଭନ ବଶୀକରଣ ସବୁ ବିଦ୍ୟାରେ ସେ ଗାଁଆର ଲୋକେ ଶିକ୍ଷିତ ଓ ଦୀକ୍ଷିତ । ସେଇସବୁ କ୍ରିୟାପ୍ରତିକ୍ରିୟା ଭିତରେ ହିଁ ମୋର ବାଲ୍ୟ ଜୀବନ ଗଢ଼ାହୁଏ । ନ୍ୟାୟାନ୍ୟାୟ ସତ୍ୟାସତ୍ୟର ବିଚାର ଓ ବିଶ୍ଳେଷଣପାଇଁ ମୋର ମନର ପ୍ରାରମ୍ଭିକ ପ୍ରସ୍ତୁତି ଆରମ୍ଭ ହୁଏ ସେଇଠାରୁ । ପାପପୁଣ୍ୟ ଧର୍ମ ଅଧର୍ମର ଗଡ୍ଡାଳିକା ନ୍ୟାୟ ମଧ୍ୟ ମୋ ଉପରେ ପ୍ରଭାବ ପକାଏ ! ଭୁଲ୍ ଠିକ୍‌ର ଫରକ୍ ବୁଝିବାକୁ ମୁଁ ଚେଷ୍ଟା କରେଁ ।

ଖେଳ ପଡ଼ିଆରେ ପିଲାଙ୍କ ଭିତରେ ଜଣେ କେବଳ ଦର୍ଶକ ହୋଇ ଆମର ସେଇ କକେଇଙ୍କ ହସ୍ତକ୍ଷେପ ମୋତେ ଅଯଥା ବୋଧହୁଏ । ଯେଉଁମାନେ ଖେଳୁଥିଲେ, ତାଙ୍କ ଭିତରେ ରଗାରଗି ଧରାଧରି ମରାମରି ହେବାଟା ତ ସ୍ୱାଭାବିକ; କିନ୍ତୁ ତୁମେ ବାହାରୁ ଜଣେ ଦର୍ଶକଭାବରେ ଆସି ଏପରି ଦୁର୍ବ୍ୟବହାର କରିବା ଯେ ଘୋର ଅନ୍ୟାୟ, ଏଥିରେ ମୋର ସନ୍ଦେହ ରହିଲା ନାହିଁ । ତାହାଛଡ଼ା କକେଇଙ୍କର ଗର୍ବ ଦମ୍ଭ ଅଭିମାନ ଅହଂକାର ଓ ହାମ୍‌ବଡ଼ା ଢଙ୍ଗଟାକୁ ନିନ୍ଦା ଓ ପ୍ରତିରୋଧ କରିବାକୁ ଯେତେବେଳେ ଅନ୍ୟମାନେ ଫୁସ୍‌ଫାସ୍ ହୁଅନ୍ତି, ସେତେବେଳେ ମୁଁ ସେମାନଙ୍କୁ ସମର୍ଥନ କଲି ।

ଭାଇନା ଆସିଥାନ୍ତି ନୂଆ ଓକିଲ ହୋଇ ପୁରୀକୁ । ଗାଁଆରେ ଗାଁଆର ଜଣେ ପଢୁଆ ଲୋକ ବାହାରି ପୁରୀରେ କଲେଣି ଓକିଲାତି । କମ୍‌କ୍ଷମତା ନୁହେଁ ତ ! କଳାକୁ ଧଳା କରି ପାରନ୍ତି ସେ ଓକିଲ । ସେଇ ଓକିଲ ବାରିଷ୍ଟରମାନେ ପୁଣି ଆଗୁଆ ହୋଇ ଭାରତବର୍ଷରେ

ଖୋଦ ଇଂରେଜ ସରକାର ସଙ୍ଗେ ଲଢ଼େଇ କଲେ । ଦେଶରେ ତ ସାଧୀନତା ଆଣିଲେ ସେଇମାନେ । ଭାଇନାଙ୍କ ପ୍ରତି ବାପାଙ୍କର ମଧ ଖାତିର କିଛି କମ୍ ନଥିଲା । ଭାଇନା ଓକିଲାତି କରିବେ ବୋଲି ବାପା ତାଙ୍କ ରାମଚଣ୍ଡୀ ସାହି ଭଡ଼ା ଘରଟିକି ଛାଡ଼ି ହେରାଗୋହିରି ସାହିରେ ଗୋଟିଏ ବଡ଼ ଘର ଭଡ଼ା ନେଇଥାନ୍ତି ।

ସେ ଥର ବାପା ଭାଇନା ରଇକୁ ଆସିଥାନ୍ତି କି କ'ଣ । ଖେଳପଡ଼ିଆରେ କକେଇଙ୍କର ଏଇ ଜବରଦସ୍ତି ଅତ୍ୟାଚାର କଥା ବାପା ଭାଇନା ଶୁଣିଲେ । କକେଇ ତ ଭାଇନାଙ୍କର ପିଲା ଦିନର ସାଙ୍ଗ । ଦୁହେଁ ପ୍ରାୟ ସମବୟସୀ । ଭାଇନା ତାଙ୍କଠାରୁ ଅଳ୍ପ କେତେ ମାସ ବଡ଼ ହେବେ ମାତ୍ର । ବୋଉଠାରୁ ଶୁଣିଛି, ଭାଇନାଙ୍କ ନାମ 'ଦିବ୍ୟସିଂହ' ଦେଇଥିଲେ ସେଇ କକେଇଙ୍କ ନିଜ ବଡ଼ଭାଇ । କେତେକ ମାସ ପରେ ନିଜର ଗୋଟିଏ ଭାଇ ଜନ୍ମିବାରୁ ସେ କୁଆଡ଼େ ଅନୁତାପ କରିଥିଲେ ଯେ 'ଦିବ୍ୟସିଂହ' ସୁନ୍ଦର ନାଁଟି ସେ ତାଙ୍କ ନିଜ ଭାଇପାଇଁ ବାଛିଥିଲେ; କିନ୍ତୁ କାଳେ ତାଙ୍କର ଭାଇ ନ ହୋଇ ଭଉଣୀ ହୋଇପାରେ, ଏହି ସନ୍ଦେହରେ ଆଗରୁ ଭଗାରି ଘର ପୁତୁରାପାଇଁ ସେଇ ନାଁଆଟି କହି ପକେଇଲେ ସିନା ! ଏଇ ନାଁ ଦିଆରେ ମଧ ଘର ଘର ଭିତରେ ପ୍ରତିଦ୍ୱନ୍ଦ୍ୱିତା ଲାଗିଯାଏ । ଆନନ୍ଦ ପାଣିଙ୍କ ବଡ଼ପୁଅ ନାଁ, ରାମଚନ୍ଦ୍ର ହେଲେ, ଲୋକନାଥ କକେଇ ନିଜ ବଡ଼ ପୁଅ ନାଁ 'ରାମ' ରଖନ୍ତି । ଲୋକନାଥଙ୍କ ମଝିଆଁ ପୁଅ ନାଁ ବାଉରିବନ୍ଧୁ ହେଲେ କୁଳମଣିଙ୍କ (ରାମ କକେଇଙ୍କ ଖୁଡୁତାପୁଅ ଭାଇ) ବଡ଼ପୁଅ ନାଁ ବାଉରିବନ୍ଧୁ । ଏମିତି ଝିଅ ପୁଅଙ୍କ ଭିତରେ ଆଉ କେତେ ବି ନାଁ ଲଢ଼େଇ ଚାଲେ ! ରାମ କକେଇଙ୍କ ଘର ଗାଁଆର ପୂର୍ବ ସୀମାରେ । ସେପଟେ ବେଶିସଂଖ୍ୟାରେ ଅନ୍ୟ ଜାତିର ଲୋକ ରହୁଥିବାରୁ ତାକୁ ହାଟସାହି କହନ୍ତି । ଗାଁଆର ପୂର୍ବ ସୀମାରେ ଗାଦି ଘର ବଣିଆସାହି ଓ ଦକ୍ଷିଣ-ପୂର୍ବ କୋଣରେ ଦକ୍ଷିଣେଶ୍ୱରୀ ଠାକୁରାଣୀଙ୍କ ପାଖକୁ ଯିବା ବାଟରେ ଗେଞ୍ଜସାହି । ଏହି 'ଗେଞ୍ଜସାହି' ନାମକରଣ ଲାଗି ଗାଁଆର ମୁଖିଆ ଲୋକଙ୍କ ବିରୋଧରେ ସେ ସାହିର ଯୁବକମାନଙ୍କର ଅଭିଯୋଗ । ଏହାଦ୍ୱାରା ସେମାନଙ୍କ ପ୍ରତି ଏକ ତାଚ୍ଛଲ୍ୟଭାବ ପ୍ରକାଶ ପାଉଥିବାରୁ ୧୯୬୭ ବନ୍ଦୋବସ୍ତ କାଗଜପତ୍ରରେ ସେହି ନାମ ବଦଳାଇବାର ଉଦ୍ୟମ ସେମାନେ କରୁଥିଲେ ।

ସେଦିନ ମୋ ଆଗରେ ସେଇ ସାହିର କେତେକ ଯୁବକ ଆସି କହିଲେ, ଇଲେକ୍ଟ୍ରିକ୍ ଖମ୍ବ ଆପଣଙ୍କ ଦାଣ୍ଡ ପର୍ଯ୍ୟନ୍ତ ଆସିଲା । ଆପଣମାନେ ମୁଖିଆ ହୋଇ ଥିବାରୁ ସବୁ ସୁବିଧା ପାଇବେ । ଆମ ସାହୀକୁ ଗେଞ୍ଜ ସାହି କହି ଅନ୍ଧାରରେ ପକାଇ ରଖିଥିବେ ?

ପିଲାଦିନୁଁ ତ ମୁଁ 'ଗେଞ୍ଜ ସାହି' ନାଁଟି ଶୁଣି ଆସୁଛି, ତାଙ୍କୁ ବୁଝାଇଦେଲି ।

କିନ୍ତୁ ଶୁଣି କରି କେବେ କିଛି ପ୍ରତିକାର କରିଛନ୍ତି କି ?

ହସି ଦେଇ ଯୁବକଙ୍କ ପିଠିରେ ହାତ ମାରି କହିଲି, ଭାବିଚିନ୍ତି ସବୁ କାମ ହୁଏ ନାହିଁ । ଏହି 'ଗେଞ୍ଜ ସାହୀ' ନାଁଆଟି କୁଆଡୁ କିପରି ଆସିଲା, କାହା ମୁହଁରୁ ଆଗ ବାହାରିଲା, ସେକଥା ଅନୁସନ୍ଧାନ କରି ଜାଣିବା ଆଜି ଏକ ପ୍ରକାର ଅସମ୍ଭବ । କିନ୍ତୁ କେହି ଯେ କୌଣସି ମତଲବ

ରଖି ଏଭଳି ନାମକରଣ କରିଥିଲେ, ସେଥିରେ ତ ଆଦୌ ବିଶ୍ୱାସ ହୁଏ ନାହିଁ । ଯେମିତି ବିଲବାଡ଼ି ହୁଡ଼ା ପୋଖରୀର ନାମକରଣ ହୋଇଥାଏ; ସେଗୁଡ଼ିକୁ ଚିହ୍ନଟ କରିବା ପାଇଁ— ଏହା ସେମିତି ଗୋଟିଏ ନାମ ଛଡ଼ା ଆଉ କିଛି ହୋଇ ନ ପାରେ । ଆଚ୍ଛା, କହିଲ ଦେଖି, ତମରି ସାହିର ଲୋକ ତ ପୁଣି ଏ ଗାଁଆରେ ସବୁଠାରୁ ବଡ଼ ମୁଖିଆ ମାମଲତ୍‌କାର ଥିଲେ ?

ତା' କିଏ ନାହିଁ କଲା କି ? ଆମରି ଜଣେ ଗୋସାଁପ ତ ପୁଣି ନିଜ ଜ୍ୱାଇଁଙ୍କ ଦୁର୍ବ୍ୟବହାରରେ ଉତ୍ୟକ୍ତ ହୋଇ ନଡ଼ିଆ ଗଛରେ ତାଙ୍କୁ ବାନ୍ଧି ବାଡ଼େଇ ଥିଲେ—ଆଉ ଜଣେ ଯୁବକ ଆଗେଇ ଆସି କହିଲେ, କିନ୍ତୁ ଆଜି ଯାକେ କ'ଣ ସେକାଳ ପଖାଳ ରହିଛି କି ?

ଏହି ପରା ଆମ ଗାଁ ପାଖେ ତାଙ୍କର ଏଡ଼େ ଖାନଦାନି ଘର । ଦଶହଳ ବଳଦର ଚାଷ । ହେଲେ କ'ଣ ହେବ । ଏମିତି ଅବୁଝାମଣା ଲୋକ ଯେ, ପୁଣି ଏଡ଼େ ଅଭିମାନୀ ଯେ ଘର ଭିତରେ ତିନି ତିନିଟା ଭଉଣୀଙ୍କୁ ଅବିହାଡ଼ୀ ରଖି ବୁଢ଼ୀ କଲେ ପଛେ ବିଭା ଦେଲେ ନାହିଁ । କାରଣ ହେଲା କ'ଣ ନା—ଆମେ କାହାରି 'ଶଳା' ହେବୁଁ ନାହିଁ । ଆମ ଗାଁଆରେ ବି ସେମିତି ଅହଂକାର, ନିଜେ ବଡ଼ ବୋଲାଇବା ପାଇଁ ଅନ୍ୟକୁ ଛୋଟ କରିବା ନୀତି ଚାଲିଛି ।

ଗାଁ ଦାଣ୍ଡରେ ବିଜୁଳି ଖୁଣ୍ଟ ପୋତାଯାଇ ଡାହାଣୀ ଚିରିଗୁଣୀ ପଳେଇଲେ । କିନ୍ତୁ ମଣିଷ ମନ ଭିତରେ ହିଂସା ଦ୍ୱେଷ ରୂପେ ଯେଉଁ ଭୂତପ୍ରେତ—ଡାହାଣୀ ଚିରିଗୁଣୀ ବସାବାନ୍ଧି ରହି ଆସିଛନ୍ତି, ସତେ କେବେ ସେମାନେ ବିଦାୟ ହୋଇଯାଇ ପାରିବେ ? ସେ ଦିନ ରଜ ପର୍ବରେ ଜଣେ ମକଦମ ନରହରିକୁ ଯେମିତି ଚାପୁଡ଼ା ମାରି ଗାଲ ଫୁଲାଇ ଦେଇଥିଲେ, ଆଜି ଗାଁଆର ଖେଳ ପଡ଼ିଆରେ କୌଣସି ଦର୍ଶକ ହୁଏତ ସେଭଳି ଦୁଃସାହସ କରିବେ ନାହିଁ । ଯଦିବା ସହର ବଜାରରେ ଖୁବ୍ ଆଧୁନିକ ଉନ୍ନତ ଶିକ୍ଷିତ ସମାଜର କ୍ରୀଡ଼ା ବ୍ୟାୟାମ କ୍ଷେତ୍ରରେ ମଧ ଏହାଠାରୁ ବଳି କଦର୍ଯ୍ୟ ବ୍ୟବହାର ତ ଏ ଯୁଗରେ ସୁଦ୍ଧା ଦେଖା ଦେଇଥାଏ !

ସେଇ କଜେଇ ଜଣକ ନରହରିକୁ ମାରିବା ସମୟରେ ଗାଁଆରେ ବୋଧହୁଏ ବାପା ଓ ଭାଇନା ଥାନ୍ତି । ଭାଇନା ନୂଆ ଓକିଲ, କଲିକତାରୁ ପାସ୍ କରି ପୁରୀରେ ଓକିଲାତି ଆରମ୍ଭ କରିଛନ୍ତି । ନରହରି ପକ୍ଷ ଲୋକ ଆସି ଭାଇନାଙ୍କୁ ମତାଇ ଦେଲେ । ନରହରି ଯାଇ ଥାନାରେ ଏତଲା ଦିଏ । ବାପା ଭାଇନା ସେଇ ରାତିରେ ବୋଧହୁଏ ପୁରୀ ବାହାରି ଯାନ୍ତି । କିନ୍ତୁ କେବଳ ନରହରି ମକଦମାରେ ସବୁ ଶେଷ ହେଲା ନାହିଁ । କାର୍ତ୍ତିକ ସାହୁ ନାମକ ଜଣେ ପ୍ରଜାକୁ ସେହି କଜେଇ ଶିଖାଇ ଥାନାରେ ଆଉ ଗୋଟାଏ ପୂରା ମିଛ ଏତଲା ଦିଆଇ ଦେଲେ ଯେ, ବାପାଙ୍କ ହୁକୁମରେ ମଧ କାର୍ତ୍ତିକ ସାହୁକୁ ମାଡ଼ ମରା ହୋଇଛି ! କାର୍ତ୍ତିକ ସାହୁ ଥାନାରେ ଏତଲା ଦେବାକୁ ବାହାରିବାରୁ ସେ ଘଟଣାକୁ ମିଛ ପ୍ରମାଣ କରିବାପାଇଁ ଆଗରୁ ନରହରିକୁ ଖେଳ ପଡ଼ିଆରେ ମାଡ଼ ହୋଇଥିବାର ଏକ ମିଥ୍ୟା ଏତଲା ଦିଆଯାଇଛି ମାତ୍ର !

ପୁଲିସ ଦୁଇଟି ଯାକ ମକଦ୍ଦମାକୁ ପୁରୀ ପଠାଇଦେଲେ । ସତଟା ମିଛ କି ମିଛଟା ସତ ହେବ, ସେ ବିଷୟରେ ବାପା ତାଙ୍କ ମୁକ୍ତାରି ବ୍ୟବସାୟରେ ଅନେକ ଅଭିଜ୍ଞତା ଅର୍ଜନ କରିସାରିଥିଲେ । ତେଣୁ ଏକ୍ଷଣି ଉକ୍ତ ବ୍ୟବସାୟ ଛାଡ଼ିସାରି ପୁଣି ମୁଦେଇ ମୁଦାଲା ଆସାମୀ

ହୋଇ କାଠଗଡ଼ା ଭିତରେ ଠିଆ ହେବାକୁ ସେ ରାଜି ହେଲେ ନାହିଁ । ଯୋଗୀକଜେଇଙ୍କ ବଡ଼ଭାଇ ଲୋକନାଥକଜେଇ ଓ ତାଙ୍କ ପକ୍ଷର ଅନ୍ୟମାନେ ଆମ ପୁରୀ ବସାକୁ ଆସି ଓ ନାନା ଯୁକ୍ତିତର୍କ ଆଲୋଚନା କରି ଦୁଇଟି ଯାକ ମକଦ୍ଦମାକୁ ଉଭୟ ପକ୍ଷ ରାଜିନାମାରେ କଚେରିରେ ଦରଖାସ୍ତ କରି ଉଠାଇ ଆଣିଥିଲେ ।

ସେହି ସମୟରୁ ଯେମିତି ଗାଁ ଭିତରେ ଦୁଇଟି ଦଳ ହୋଇ ମଝିରେ ମଝିରେ ମୁଣ୍ଡଫଟା, ଦାନ୍ତଭଙ୍ଗା, ଖୁଣି, ଚୋରି, ପୁଣି ଜମି ସଂକ୍ରାନ୍ତ ମକଦ୍ଦମାମାନ ଚାଲିଲା । ମଝିରେ ମଝିରେ ବାଲିପାଟଣା ଥାନା ପୁଲିସଙ୍କ ତଦନ୍ତ ଓ ଅଠାନ୍ତର । ଡାକ୍ତରଖାନାରୁ ଡାକ୍ତର ସାର୍ଟିଫିକେଟମାନ ଆଣି ପୁରୀ କଚେରିକୁ ଧାଁ ଧପଡ଼ ବେଶ୍ ଚାଲିଲା । ବାପାଙ୍କ ମୁକ୍ତାରି କିମ୍ୱା ଭାଇନାଙ୍କ ଓକିଲାତି ଯେ ଏଥିପାଇଁ କେବଳ ଦାୟୀ, ତାହା କଦାପି ନୁହେଁ । ଗାଁ ଭିତରେ ମକଦ୍ଦମମାନଙ୍କ ରାଜୁତି ଯେମିତି ଅବାଧରେ ଆଗରୁ ଚଳି ଆସୁଥିଲା, ତହିଁରେ ମଧ୍ୟ ଏହା ଏକ ବ୍ୟତିକ୍ରମ ଆଣିଲା । ଖଜଣା ନାଲିସ୍, କରଜ ଟଙ୍କା ନାଲିସ ଆଗରୁ ତ ବରାବର ଧାରାବାହିକ ଭାବରେ ଚାଲୁଥାଏ । ତା'ଛଡ଼ା ମକଦ୍ଦମଙ୍କ ଘରୋଇ ବିଚାର ଅଦାଲତରେ ଯେଉଁ ସବୁ ପିଆଦା ପାଉଣା ଓ ଜୋରିମାନା ଆଦାୟ ହୁଏ, ତାହାର ପରିମାଣ ଗ୍ରାମପଞ୍ଚାୟତ ଶାସନରେ ମଧ୍ୟ ଏବେ ଆହୁରି ବଢ଼ିଲା କି କମିଲା, ସେ ସବୁ ହିସାବ ଭିତରେ ପଶିବା କଷ୍ଟକର ।

ମୋଟାମୋଟି ମାମଲାବାଜ-ମକଦ୍ଦମମାନଙ୍କ ଆୟ ଓ ଅତ୍ୟାଚାର ବଢ଼ିଲା, ବରଂ କମିଲା ନାହିଁ । ତାହାର କାରଣ ଖୋଜି ସ୍ଥିର କରିବା କଷ୍ଟକର । କେଉଁ ବୁଦ୍ଧି, କେଉଁ ବିଚାର ବା କେଉଁ ବିଦ୍ୟା ବଳରେ ଯେ ଥୋକାଏ ଧନୀ ମାଲିକ ଓ ଅନ୍ୟମାନେ ଶ୍ରମିକ ମୂଲିଆ ହୋଇ ପୁରୁଷ ପୁରୁଷ ଧରି କାଳ କଟାନ୍ତି । କୋଡ଼ିଏ ବର୍ଷର ସାଧୀନତା ପରେ ମଧ୍ୟ ଯାହାର ପରିବର୍ତ୍ତନ ଏତେ ମନ୍ଥର ଓ ଏତେ ଶିଥିଳ ଯେ, ଆଜି ଦେଶୀୟ ରାଜତ୍ୱ ଲୋପ ପାଇଁ ଜମିଦାରି ଓ ମକଦ୍ଦମି ସ୍ୱତ୍ୱ ଉଠି ଯାଇଥିଲେ ବି ମନ ଭିତରେ ମଣିଷ ସେଇ ରାଜାପ୍ରଜା ଜମିଦାର ମକଦ୍ଦମ ଓ ରୟତର ଫରକଟାକୁ ପାସୋରି ଦେବାକୁ ନାରାଜ । ବହୁ ଶତାବ୍ଦୀର ସେଇ ଅଭ୍ୟାସଟା ନ ଛାଡ଼ିବା ପର୍ଯ୍ୟନ୍ତ ଭାରତର ରାଜନୀତି ଓ ଅର୍ଥନୀତିକୁ କେବଳ ଅନ୍ୟ ଦେଶର ଛାଞ୍ଚରେ ଓ ବିଦେଶୀ ସାହାଯ୍ୟରେ ତ କଦାପି ଉନ୍ନତ କରାଯାଇନପାରେ ।

'ଦିଲ୍ଲୀଶ୍ୱରୋ ବା ଜଗଦୀଶ୍ୱରୋବା' ବୋଲି ଭାରତବର୍ଷର ଯେଉଁ ପଣ୍ଡିତ ସର୍ବପ୍ରଥମେ ଉଚ୍ଚାରଣ କରନ୍ତି, ସେ ନିଶ୍ଚୟ ଏହି ଉପ-ମହାଦେଶଟିର ସୁଦୂର ଅତୀତ ଭବିଷ୍ୟତ ଓ ଉପସ୍ଥିତି ବର୍ତ୍ତମାନ କାଳରେ ବ୍ୟାକରଣ ସୂତ୍ର ଆୟତ୍ତ କରି ପୁଣି ଆୟୁର୍ବେଦ ଓ ଜ୍ୟୋତିଃଶାସ୍ତ୍ରରୁ ତାହାର ନାଡ଼ିନକ୍ଷତ୍ର ଆବିଷ୍କାର କରି ସାରିଥିଲେ । ଅର୍ଥାତ୍ ତାଙ୍କ ହିସାବ କିତାବରେ ସେ ବୁଝି ପାରିଥିଲେ ଯେ ଭାରତବର୍ଷର ଭଗବାନ୍ ହେଉଛନ୍ତି ତା'ର ଶାସକ । ମନ୍ତ୍ର ତାଙ୍କର ଅପରିମେୟ, କ୍ଷମତା ତାଙ୍କର ଅଖଣ୍ଡ । ତାଙ୍କ କାର୍ଯ୍ୟ ଓ ବିଧିବିଧାନକୁ ପ୍ରଶ୍ନ କରିବାକୁ ପ୍ରଶ୍ନ ନାହିଁ । ତାଙ୍କ ଭୁଲ ଭ୍ରାନ୍ତି ଯେଉଁ ପରିମାଣରେ ସୀକାର୍ଯ୍ୟ, ସେଇ ପରିମାଣରେ ଗ୍ରହଣୀୟ ।

କେଉଁ ସୁଦୂର ଅତୀତରେ ସେ ଦିଲ୍ଲୀ ସିଂହାସନରେ ରାଜମୁକୁଟ ରାଜଦଣ୍ଡ ଶୋଭିତ ହୋଇ ଶୋଭା ପାଉଥିଲେ । ଆଜି କିନ୍ତୁ ବିଂଶଶତକ ଅତିକ୍ରାନ୍ତ ହେବାକୁ ଗଲାବେଳେ ତାଙ୍କରି ସୁମହାନ ପ୍ରେତାତ୍ମାହିଁ ପ୍ରତ୍ୟେକ ଭାରତବାସୀ ପ୍ରାଣରେ ବିରାଜମାନ କରୁଛନ୍ତି । କେବଳ ଦିଲ୍ଲୀ, ଲକ୍ଷ୍ନୌ, ବମ୍ବେ, ଅହମ୍ମଦାବାଦ, କଲିକତା, ଗୌହାଟି, ଭୁବନେଶ୍ୱର ବା ମାନ୍ଦ୍ରାଜ, ହାଇଦ୍ରାବାଦ, ତ୍ରିବାନ୍ଦ୍ରମ ମହୀଶୂର, ଚଣ୍ଡୀଗଡ଼ ଆଦି ନୂଆ ପୁରୁଣା ରାଜଧାନୀମାନଙ୍କରେ ନୁହେଁ—ପ୍ରତି ଗାଁରେ ଘରେ ଘରେ ସେଇ ପ୍ରେତାତ୍ମା-ଗ୍ରାସରୁ ଦେଶକୁ ମୁକୁଳେଇବା ପାଇଁ ଗୁଣି-ଗାରଡ଼ିର ତ ଅଭାବ ନାହିଁ କି ଉପାୟ ଉଦ୍ଭାବନରେ ବିରାମ ନାହିଁ !

କଂଗ୍ରେସ ନେତୃତ୍ୱରେ ଦେଶକୁ ବିଦେଶୀ କବଳରୁ ମୁକ୍ତ କରାଗଲା । କଂଗ୍ରେସର ମିଶ୍ରିତ ରାଜନୀତିକ ଆଦର୍ଶ ଫଳରେ ପ୍ରତିଷ୍ଠିତ ହେଲା ଏକ ସମ୍ବିଧାନ ସମ୍ମତ ଗଣତନ୍ତ୍ର ଶାସନ । ସମ୍ପ୍ରଦାୟ ପନ୍ଥୀ ଜନସଂଘଠାରୁ ଆରମ୍ଭ କରି ବୈପ୍ଳବିକ ପନ୍ଥୀ କମ୍ୟୁନିଷ୍ଟ ପର୍ଯ୍ୟନ୍ତ ଏହି ଗଣତନ୍ତ୍ରରେ ସ୍ଥାନ ହାସଲ କଲେ । ଯେଉଁ ରାଜାମାନଙ୍କୁ ଅତ୍ୟାଚାରୀ ବୋଲି ଲୋକେ ବିଦାୟ ଦେଇଥିଲେ, ସେହିମାନଙ୍କ ପ୍ରତି ପୁଣି ତାଙ୍କର ସ୍ନେହ ସହାନୁଭୂତି ଢଳିଲା । ସେଇମାନଙ୍କୁ ପୁଣି ଭୋଟ ଦେଇ ଶାସନ ଗାଦିକୁ ତଥାକଥିତ ଅତ୍ୟାଚାରିତ ପ୍ରଜାକୁଳ ଡାକିଆଣି ବସାଇଲେ ।

ରାଜନୀତି ଯେ କଳା ସାହିତ୍ୟ ନୁହେଁ, ତହିଁରେ ଯେ ଭାବପ୍ରବଣତାର ସ୍ଥାନ ନାହିଁ, ମାତ୍ର ତାହା ଯେ ଗୋଟାଏ ଅତି ବାସ୍ତବ ବିଜ୍ଞାନ—ଏ କଥାଟି ଭାରତବର୍ଷରେ ଅନ୍ତତଃ ଅପ୍ରମାଣିତ ହୋଇଛି, ଆଉ କେଉଁ ଦେଶରେ ପଛେ ନ ହେଉ । ଭାରତ ମାଟିର ଖଣ୍ଡେ ଛୋଟିଆ ଟେଳା ହେଲା ଆମ ଗାଁ ମାଟି; ତେଣୁ ତାହା ସେହି ସାଧାରଣ ନିୟମରୁ ଆଦୌ ପଛରେ ପଡ଼ି ନାହିଁ ।

ଅତି ଅଳ୍ପ ବୟସରୁ ଏସବୁ ଘଟଣା ମୋ ମନକୁ ଆଲୋଡ଼ିତ କରିପକାଏ । ଅବଶ୍ୟ ଏହାର କୌଣସି ପ୍ରତିକାର ମୋରି ଦ୍ୱାରା କିପରି ହୋଇପାରିବ, ତାହା ବିଚାରି ମୁଁ ଥଳକୂଳ ପାଏନାହିଁ । ଓକିଲାତି ? ବଡ଼ ଚାକିରି ? କ'ଣ କଲେ ? ଆଉ ଯେବେ ଏ ସବୁ ଅନ୍ୟାୟ ବିରୋଧରେ ଖାଲି ଲେଖେଁ ? କୌଣସି ପ୍ରଶ୍ନର ଠିକଣା ଉତ୍ତର ପାଇବା ତ ମୋର ପକ୍ଷରେ ଏକ ପ୍ରକାର ଅସମ୍ଭବ ହୋଇଉଠେ ।



# ହିସାବ କିତାବ

ହସ-ଖୁସି ଖେଳ କୌତୁକ ଭିତରେ ପୁଣି ସବୁକଥା ପାସୋର ଯାଏ । ଆଜି ମଧ୍ୟ ହସଖୁସି ଖେଳ କୌତୁକର ରୂପରେଖ ପୂରାପୂରି ବଦଳି ଗଲେ ବି ଗଲା କାଲି କଥା ଆଜିକି ମନେ ରହୁନାହିଁ । ପିଲା ସମୟରୁ ଆଜି କେତେ ଅଜଣା କଥା ଜଣା ଗଲାଣି । କେତେ ସମସ୍ୟାର ସମାଧାନ ସହଜ ହୋଇପଡ଼ିଲାଣି । କେତେ ମିଛସତ ଓଲଟ ପାଲଟ ହେଲାଣି ।

ଶହେ ଦେଢ଼ଶହ ପରିବାରଙ୍କର ସେହି ସାନ ଗାଁଆଟିର ବହୁ ଦୁର୍ନାମ ସଙ୍ଗେ କିଛି କିଛି ସୁନାମ ମଧ୍ୟ ଯୋଡ଼ା ହେଲାଣି । ତଥାପି ଜଣକ ସ୍ୱାର୍ଥକୁ ଆଉ ଜଣେ ଆତ୍ମସାତ୍ କରିବା, ସାଧାରଣ ସମ୍ପତ୍ତିକୁ ନିଜର କରିନେବା କିମ୍ବା ଗାଁ ଭିତରେ ଦୋଫାଙ୍କ  ଅମେଳ ଭିଆଇବାର ଅଭ୍ୟାସ ଆଜି ସୁଦ୍ଧା ବନ୍ଦ୍ ହେଲା ନାହିଁ । ସେଥିସଙ୍ଗେ ବନ୍ଦ ହେଲା ନାହିଁ ଯାନିଯାତ, ଦିଅଁ ଦେଉଳ, ସନ୍ଧ୍ୟାବେଳେ ପୁରାଣ ପାଠ ଏକାଠି କେତେ ଜଣ ବସି ।

କେବଳ ଗୋଟିଏ କଥା ବନ୍ଦ୍ ହୋଇଛି କିମ୍ବା ଅନେକ ପରିମାଣରେ କମିଯାଇଛି— ତାହା ହେଲା ଅନ୍ୟକୁ କଦର୍ଯ୍ୟ କୁଭାଷାରେ କୁତ୍ସିତ ଗାଳି ଦେବା ଅଥବା ପ୍ରହାର କରିବା ଅତି ନିଷ୍ଠୁର ଭାବରେ । ପ୍ରଥମଟିର କାରଣ ହେଲା, ଶିକ୍ଷା ପ୍ରଭାବରୁ ମାର୍ଜିତ ଭାଷାରେ ପ୍ରତିପତ୍ତି, ଦ୍ୱିତୀୟଟିର କାରଣ ଅନଧିକାର ଚର୍ଚ୍ଚାକଲେ ପ୍ରତିପକ୍ଷଠାରୁ ସେଇ ଭଳି ବ୍ୟବହାରର ଆଶଙ୍କା ।

ସେ କାଳରେ କିନ୍ତୁ ଦୁର୍ବଳ ଉପରେ ସବଳର ଅତ୍ୟାଚାର ଥିଲା ଗୋଟାଏ ସାଧାରଣ ବିଷୟ । ତାହା ଖାଲି ଧନୀର ଦରିଦ୍ର ଉପରେ କିମ୍ବା ପଣ୍ଡିତର ମୂର୍ଖ ଉପରେ ଓ ସାହୁକାର ଜମିଦାରଙ୍କର ଖାତକ ପ୍ରଜା ଉପରେ, ମାଲିକର ମୂଲିଆ ଉପରେ ନିର୍ବିଚାର ଅତ୍ୟାଚାରରେ ଆବଦ୍ଧ ନଥିଲା । ଘରେ ଘରେ, ପରିବାର ଭିତରେ, ସ୍ୱାମୀର ସ୍ତ୍ରୀ ଉପରେ ପୁଣି ପିତାର ପୁତ୍ର ଉପରେ ଶାସନ ଅତ୍ୟାଚାର ରୂପେ ଦେଖା ଦେଉଥିଲା ।

ଭାଇ ଭାଇ ଭିତରେ ଭିନ୍ନ ହେଲାବେଳେ ମଧ୍ୟ ଯେଉଁ ତୁମୁଳ କାଣ୍ଡମାନ ଘଟିଯାଏ, ପୁଣି ପରସ୍ପର ପ୍ରତି ଯେଉଁ ଭାଷାର ସମ୍ବୋଧନ ଉଚ୍ଚାରିତ ହୁଏ ତାହା ଶୁଣିଲେ ନିଶ୍ଚିତ ଧାରଣା ଜନ୍ମେ ଯେ, ଦୁଇ ଭାଇଙ୍କର କଦାପି ଜଣେ ବାପ ଗୋଟିଏ ମାଆ ଓ ଏକା ଉଉଣୀ ହୋଇ ନ ଥିବେ । ମଝିରେ ମଝିରେ ସେ ସବୁ ପୈତୃକ ଅଭ୍ୟାସର ଲକ୍ଷଣମାନ ପ୍ରକାଶ ପାଉଥିଲେ ହେଁ ଆଜି ତାହା ଅନେକ ପରିମାଣରେ ଊଣା ପଡ଼ିଚି ବୋଲି ମୋର ଅନୁମାନ ।

ନିଜ ଘର ଭିତରେ ଓ ଗାଁ ଭିତରେ ମୂଲିଆ ଶ୍ରମିକ ଶ୍ରେଣୀର ପୁଣି ଧନୀ ଲୋକଙ୍କର ଦୁର୍ବଳ ନିର୍ଦ୍ଧନ ଲୋକଙ୍କ ପ୍ରତି ଦୁର୍ଭାଷା ଓ ଦୁର୍ବ୍ୟବହାର ଏକ ପ୍ରକାର ସାଧାରଣ ଚାଲିଚଳଣିରେ ପରିଣତ ହୋଇ ପଡ଼ିଥାଏ । କାହାକୁ ଅନ୍ୟାୟ ଆଦେଶ, କାହାକୁ ଧମକ ଚମକ, ଭୟ ପ୍ରଦର୍ଶନ, କାହାକୁ ଫାଁକି ଆଉ କାହାକୁ ପରିହାସ କରି ସେ ଗାଁଆର ଲୋକେ ଆପଣା ପ୍ରୌଢ଼ି

ଦେଖାଇବାକୁ ଆଗଭର । ପିଲାଏ ମଧ ବଡ଼ମାନଙ୍କଠାରୁ ସବୁ ପ୍ରକାର ବ୍ୟବହାର ଶିଖିଯିବା ଖୁବ୍ ସହଜ ।

ଅବସ୍ଥା ଶେଷକୁ ଏମିତି ଉପୁଜିଲା ଯେ, ବାହାର ଗାଁରୁ ଆମ ଦାଣ୍ଡରେ ଚାଲିଯିବାପାଇଁ ଲୋକମାନଙ୍କୁ ସାହସ ବାନ୍ଧିବାକୁ ପଡ଼ିଲା । ଆମ ଗାଁରୁ ଭୁବନେଶ୍ୱର ଯିବା ରାସ୍ତାରେ ତିନି ଚାରି ମାଇଲ ଦୂରରେ ପଡ଼େ ବିଖ୍ୟାତ ବାଳକାଟି ଗାଁଟି । ଗାଁମୁଣ୍ଡ ସଡ଼କ ଉପରେ ନିତି ଅନେକ ଲୋକ ଯା'ନ୍ତି ସେଠାକୁ । ଯେ ଯୁଆଡ଼େ ଯାନ୍ତି ତାଙ୍କ ଗନ୍ତବ୍ୟ ସ୍ଥାନ ପଚାରିବାଟା ଆମ ଗ୍ରାମବାସୀଙ୍କର ଏକ କୁଅଭ୍ୟାସ କିମ୍ବା ସୁ ଅଭ୍ୟାସ; କାରଣ ଅପରିଚିତ ପଥିକ ସହିତ ପରିଚିତ ହେବା ପୁଣି ଦୁଃଖ ସୁଖ ହେବାଟା ବଙ୍ଗ ସୌଜନ୍ୟ ପ୍ରଦର୍ଶନ ଓ ବନ୍ଧୁତା ପ୍ରତିଷ୍ଠାର ଲକ୍ଷଣ ବୋଲି କେହି କେହି ମନେକରନ୍ତି ।

ରୋଜ ସକାଳ ସନ୍ଧ୍ୟାରେ ଗାଁଆର ପିଲା ବୁଢ଼ା ଅନେକେ ଆସି ରୁଣ୍ଡ ହୁଅନ୍ତି ଏଇ ସଡ଼କ ଉପରେ । ଏଇଠୁ ପରିଷ୍କାର ଦେଖାଯାଏ ଗାଁ ଗହୀର ଧାନ କିଆରି । କେଉଁ କିଆରିରେ ଗୋରୁ ପଶିଲେ କି ଲୋକ ପଶିଲେ, ତାହା ମଧ ବାରିହୁଏ ଦୂରରୁ । ଏହି ସଡ଼କ ଯାଇଛି ପଶ୍ଚିମରେ ଶିଶୋଲ, ପୁରଣ, ବୁଢ଼ିପଡ଼ା ଓ ବାଳକାଟି ଗାଁ ଭିତରେ ଆଉ ପୂର୍ବପଟେ ଗାରଡ଼ି ପଞ୍ଚାନନ, ଅଠାନ୍ତର, ବନମାଳୀପୁର ଆଡ଼େ । ବନମାଳୀପୁର ଓ ବାଳକାଟି ଦୁଇଟା ବଡ଼ ବ୍ୟବସାୟ ପେଣ୍ଠ । ବୋଝେଇ ଶଗଡ଼ରେ ମାଲ ପତ୍ର ମଧ୍ୟ ଏହିବାଟେ ବୁହାଚାଲେ । ବନମାଳୀପୁର ଆଗକୁ କୁଶଭଦ୍ରା ପାରି ହୋଇ ପ୍ରାଚୀ ନଈ କୂଳରେ ମାଘ ଅମାବାସ୍ୟାରେ ତ୍ରିବେଣୀ ଯାତ୍ରା । ବାଳକାଟି ଆଗକୁ ଦୟା ଭାର୍ଗବୀର ଜନ୍ମସ୍ଥାନ ପାରିହୋଇ ଲିଙ୍ଗରାଜ ମନ୍ଦିର, ପୁଣି ଭୁବନେଶ୍ୱର ଆଠ ମାଇଲ ତଫାତ୍‌ରେ । ଗାଁଆର ଅଧିକାଂଶ ଲୋକଙ୍କ ପୃଥିବୀ ପ୍ରାୟ ଏଇ ଅକ୍ଷ ଭିତରେ ହିଁ ବୁଲୁଥାଏ ।

କାନ୍ଧରେ ସାନ ବୁଜୁଳାଟିଏ ବାନ୍ଧି କେଉଁ ବାଟୋଇ ଆସି ସଡ଼କ ପାଖ ଆମ୍ବଗଛ ମୂଳେ ହୁଏତ ଟିକିଏ ଦମ୍ଭ ନେଲେ । ରୁଣ୍ଡ ହୋଇଥିବା ଟୋକାଙ୍କ ଭିତରୁ ଜଣେ କିଏ ଗମ୍ଭୀର ହୋଇ ପଚାରି ବସିଲେ—''କୁଆଡ଼େ ଯାଉଛ କି ମାଲିକେ ।''

.କୌଣସି କାମରେ ଅନୁକୂଳ କଲାବେଳେ ଗନ୍ତବ୍ୟ ସ୍ଥାନର ନାମ ପଚାରିବାଟା ଠିକ୍ ନୁହେଁ । ସେଥିରେ ଟିକିଏ ବିରକ୍ତ ହୋଇ ପଥିକ ସଂକ୍ଷେପରେ ଉତ୍ତର ଦିଅନ୍ତି— ''ବାଳକାଟି'' ।

ଆଉ ଜଣେ ଯୁବକ ବାହାରି ପଡ଼ି ସାବଧାନ କରିଦିଅନ୍ତି—

''ଖବରଦାର ! ସବୁତକ କାଟିବ ନାହିଁ ଟି । କେରିଏ ଅଳ୍ପ କରି ଯେମିତି ହେଲେ ଛାଡ଼ିଯିବ ।''

ସମସ୍ତେ ହସି ଉଠନ୍ତି । ବାଟୋଇ ବିଚାରାର ମୁହଁ କେସରା ପଡ଼ିଯାଏ । ସେ ନୀରବରେ ଥରେ ସେମାନଙ୍କ ପ୍ରତି କଟମଟ ଚାହିଁ ତା'ପରେ ରାସ୍ତା ଧରନ୍ତି । ଦ୍ୱିତୀୟ ଥର ହୁଏତ ବାଳକାଟି ଗାଁଆର ନାମଟି ଉଚ୍ଚାରଣ କରିବାକୁ ସେ ସାବଧାନ ହୋଇ ପଡୁଥିବେ ।

ସାଧୁକଙ୍କେଇ ଆମ ଗାଁଆର ଜଣେ ପ୍ରଧାନ ସଙ୍ଗୀତଜ୍ଞ । ଗୋଟିପୁଅ ନାଚରେ ସେ ବେହେଲା ବାଦକ । କଣ୍ଠ-ସଙ୍ଗୀତରେ କୋକିଳ । ସେମିତି ପରିହାସପ୍ରିୟ ମଧ । ଶୀତ ସନ୍ଧ୍ୟାର ଅନ୍ଧାରରେ ସେ ଏକୁଟିଆ ଗାଁ ଦାଣ୍ଡରେ ଚାଲିଛନ୍ତି । ନିଜ ଦାଣ୍ଡ ପିଣ୍ଡାରେ ମୋର ବଡ଼ମାମୁ ବିଶ୍ୱନାଥ ''ତୁନି ହୋଇ ବସି ପଚାରିଲେ, କିଏ ଯିବାର ?''

''ମୁଁ ସାଧୁ'', ଉତ୍ତର ହେଲା ।

''ତେବେ କ'ଣ ଏ ଗାଁଆର ଆଉ ସବୁ ଶଳାଯାକ ଚୋର !''

ଟିପ୍‌ପଣୀ ଶୁଣି ସାଧୁ ନୀରବରେ ବାହାରି ଗଲେ । କଥାଟି କିନ୍ତୁ ପରେ ହୋଇପଡ଼ିଲା ପ୍ରଧାନ ହସର ସାମଗ୍ରୀ ।

ସୁନିଆଁ ପର୍ବରେ ଗାଁଆ ମକଦ୍ଦମମାନେ ଦୁର୍ଗାଠାକୁରାଣୀ ବେଢ଼ାରେ ସବୁ ବର୍ଷ ଭଳି ରୁଣ୍ଡ ହୋଇଛନ୍ତି । ପ୍ରଜାପାଟକ ଆଣି ଜମା କରୁଛନ୍ତି ସାଲତମାମୀ ଭେଟି । ଦୁର୍ଗାଠାକୁରାଣୀଙ୍କ ପିଣ୍ଡାରେ ଲେଖନ ତାଳପତ୍ର ଧରି ଦେଉଳ କରଣ ଲେଖିଚାଲିଛନ୍ତି ଭେଟି ତାଲିକା । କମାର ଦେଉଛି ଛୁରୀ କଟୁରି ଗୁଆକାତି ଲୁହାଖଡ଼ିକା; ବଢ଼େଇ ଆଣିଛି ହଳଦୀ-କାଠୁଆ, ମସଲାଦାନି; କୁମ୍ଭାର ରଖିଛି ହାଣ୍ଡି, ତେଲୁଣୀ,ଠେକି, ଘଡ଼ି ସରା ମାଠିଆ ଇତ୍ୟାଦି ଇତ୍ୟାଦି ।

ଦିଅଁଙ୍କ ଆଳତି ଘଣ୍ଟ ବଜାଇ ସାରି ସେବକ ଆଣି ସବୁ ମକଦ୍ଦମଙ୍କ ମୁହଁ ପାଖରେ ଆଳତି ଧୂଆଁ ସେବା କରାଇ ଦେଇଗଲେ । ତା'ପରେ ଆଣିଲେ ଫୁଲ ବେଲପତ୍ର ପାଦୁକ । ଶେଷରେ ଆସିଲା କୋରା, ଉଖୁଡ଼ା, କଦଳୀ ଭୋଗ । ଆଳତି ଧୂଆଁ ଓ ଫୁଲ, ବେଲପତ୍ର, ପାଦୁକା ପାଣି ସେବା କରିସାରି ଯେମିତି ଅବା ଏଇ ଭୋଗ ଆଶାରେ ଅପେକ୍ଷା କରି ରହିଥିଲେ ! ସୁଦର୍ଶନ ମକଦ୍ଦମ ସବୁରି ମନ ଜାଣିଲା ପରି ସବୁରି ଆଗକୁ ଯାଇ ସେ କହି ପକାଇଲେ, ବାଃ, ବାଃ, ଖାସାଜିନିଷ ! ଯାରି ନାଁ ଯେ ଭୋଗ !

ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ହସି ଉଠନ୍ତି ସମସ୍ତେ ।

ତା'ପରେ ଚାଲିଲା ମକଦ୍ଦମମାନଙ୍କ ଭିତରେ ପହଞ୍ଚିଥିବା ଭେଟି ସାମଗ୍ରୀର ବଣ୍ଟରା । 'ଭେଟି' ଓ 'ବେଠି' ଦୁଇଟି ଓଡ଼ିଆ ଶବ୍ଦ ଭିତରେ ଯେମିତି ଉଚ୍ଚାରଣଗତ ପୁଣି ଅକ୍ଷରଗତ ସାମାନ୍ୟ ଫରକ; ଅର୍ଥଗତ ଫରକ ପ୍ରାୟ ସେମିତି । 'ଭେଟି' ମୂଳରେ ସ୍ୱେଚ୍ଛାକୃତ ଅର୍ଥ ନିହିତ, ଆଉ 'ବେଠି' ମୂଳରେ ଜବରଦସ୍ତି, ଅଲବତ୍ । ମାତ୍ର ସେଇ ସ୍ୱେଚ୍ଛାକୃତ କଥାଟି ଜବର୍‌ଦସ୍ତିଠାରୁ କୌଣସି ଗୁଣରେ ଊଣା ନୁହେଁ ବୋଲି ପ୍ରମାଣମାନ ରହିଛି ।

ସୁନିଆଁ 'ଭେଟି' ନ ଦେଲେ ଜୋରିମାନା, ଗାଳି ଫଜିତ୍ ଓ ଶେଷରେ ପ୍ରହାର ପର୍ଯ୍ୟନ୍ତ ଚାଲେ । ରାଜା ଜମିଦାରଙ୍କ ଦୁଆରକୁ ଭାର ଭାର ଆଳୁ କଦଳୀ କୋରା ମିଠେଇରେ ଦାଣ୍ଡ ଚମକିଉଠେ । ମକଦ୍ଦମଙ୍କ ଧନ କ୍ଷମତା ଅନୁପାତରେ ଯାହା କିଛି ଆସେ, ଷୋଳପଣି ମାହାଲର ପଣ ଗଣ୍ଡା କଡ଼ାକ୍ରାନ୍ତି ହିସାବରେ ପ୍ରତି ମକଦ୍ଦମଙ୍କ ପାଇଁ ତାହା ବଣ୍ଟରା ହୁଏ । ଜଣେ ଜଣେ ମକଦ୍ଦମଙ୍କ କିସ୍‌ମତ୍ ହିସାବ କରି ତାଙ୍କର ଉଚିତ ଅଂଶ ତାଙ୍କୁ ଦେବାର ବିଧି ରହିଛି ।

କଡ଼ାକ୍ରାନ୍ତି ହିସାବ କଲାବେଳେ ଗୋଟାଏ ଲେଖାଁ ମାଟିହାଣ୍ଡି, ପଲମ କିମ୍ବା ଘଡ଼ି ସରାକୁ ଦୁଇ ତିନି ଖଣ୍ଡ କରି ଭାଙ୍ଗିବାକୁ ପଡ଼େ । ସେଇ ଖପରା ଖଣ୍ଡମାନ ଧରି ସେମାନେ ବେଶ୍ ଉତ୍‌ଫୁଲ୍ଲ ଅହଂକାରରେ ନିଜ ନିଜ ଘରକୁ ବାହୁଡ଼ନ୍ତି । କେଉଁ ପ୍ରଜା ହୁଏ ତ ତା'ର ସାଲତମାମୀ ବେଠି ଆଣି ପହଞ୍ଚି ନାହିଁ । ମକଦ୍ଦମଙ୍କ ହୁକୁମ ହୁଏ, ତାକୁ ତଲବ କରି ଧରି ଆଣିବାକୁ । ସେ ବିଚାରା ଆସି କାକୁସ୍ଥ ହୋଇ କରଯୋଡ଼ି ଜଣା କରେ ତା'ର ଅପରାଧ ମାର୍ଜନାପାଇଁ । ତହୁଁ ତା' ଉପରେ ବର୍ଷିତ ହୁଏ କଡ଼ାକ୍ରାନ୍ତିରୁ ଆରମ୍ଭ କରି ପଣିକିଆ ମକଦ୍ଦମଙ୍କ ସହିତ ରୁଣ୍ଡ ହୋଇଥିବା ପ୍ରଜାପାଟକମାନଙ୍କର ସୁଦ୍ଧା ଅକଥ୍ୟ ଗାଳି—

ବର୍ଷକ ଭିତରେ ଗୋଟାଏ ଦିନ ସୁନିଆ ପର୍ବ । ତୁ ଶୋଇଛୁ ଘର ଭିତରେ । ତୋର ପୁଣି ଏଡ଼େ ଦିମାକ୍ ।

ଶୋଇନି ହଜୁର, ମୋ ଗାଈଟା ପଘା ଛିଣ୍ଡାଇ ଅମୁକ ମକଦ୍ଦମଙ୍କ ଧାନକିଆରିରେ ପଶିଥିଲା । ତା'ରି ପଛରେ ଗୋଡ଼ାଉଁ ଗୋଡ଼ାଉଁ—

ଅମୁକ ମକଦ୍ଦମ ତାଙ୍କ ଅଂଶରେ ସୁନିଆ ଭେଟିରୁ ପଡ଼ିଥିବା ଖଣ୍ଡେ ଭଙ୍ଗା ସରା ହାତରେ ଧରି ମହା ରାଗରେ ଚିହିଁକି ଆସନ୍ତି—

ଏଁ— ! କ'ଣ କହିଲୁ ?—ମୋ କିଆରିରେ— !

ଆରେ ବାବୁ ! ଆରେ ଟିକିଏ ସତାର କର ଭଲା ।

ମାରଣା ଷଣ୍ଢ ଭଳି ସେଇ ମକଦ୍ଦମ ନାକ ଫୁଲାଇ ସଁ ସଁ ନିଃଶ୍ୱାସ ମାରି ଟିକିଏ ସ୍ଥିର ହୁଅନ୍ତି । ତା'ପରେ ମୁଖିଆ ମକଦ୍ଦମଙ୍କର ହୁକୁମ ହୁଏ—

ବୁଝିଲୁ ହାଡ଼ିଆ, ତୁ ଆଜି ସୁନିଆଁ ଭେଟି ଦାଖଲ କରିନୁ । ତତେ ଜୋରିମାନା ଦେବାକୁ ପଡ଼ିବ ।

ମୋ କିଆରିରେ ସେ ଗାଈ ପୂରେଇଛି । ଖିତିପୂରଣ ଦାଖଲ କରୁ, ଶହେ ଟଙ୍କାରୁ ଟିପେ ଛାଡ଼ିବି ନି, କହି ଦଉଚି, ହଁ !—ଗର୍ଜି ଉଠନ୍ତି ସେଇ ମକଦ୍ଦମ ।

ଆରେ ବାବୁ ! ଆରେ ଟିକିଏ ଥୟ ଧ' ଭଲା !

"ଥୟ ଧରିବି କକେଇ । ମୋ ଧାନ କିଆରି ସେ ଉଜାଡ଼ି ଦେଲାଣି, ଏ ବର୍ଷ ମୋର ନୂଆଖିଆ ବନ୍ଦ । ତାକୁ ପୁଣି ମୁଁ ଛାଡ଼ି ଦେବି ? ଶହେ ଟଙ୍କାରୁ ଏକ ଛଦାମ ଊଣା ହେବନି । ଆଗରୁ ସେ କଥା କହି ଦଉଚି, ହଁ ! ତା'ଉପରେ ତମେ ଯେତେ ଜୋରିମାନା ଆଦାୟ କରୁଛ କର ।" ସ୍ୱର ତାଙ୍କର ପଞ୍ଚମକୁ ଉଠିଯାଏ ।

କି ହୋ ଚକ୍ରଧର ! କେତେ ଜୋରିମାନା କହୁ ନ । ତୁନି ହୋଇ ବସିଚ କାହିଁକି ସମସ୍ତେ ।

ପିଲା ବୁଢ଼ା ସବୁ ମକଦ୍ଦମଙ୍କ ଭିତରେ ଟିକିଏ ଚାଞ୍ଚଲ୍ୟ ଖେଳିଯାଏ । ଚିମୁଟା ଚିମୁଟି ଆଖି ମିଟିକା ଚପାହସ ଭିତରେ ଚକ୍ରଧର ଆରମ୍ଭ କରନ୍ତି—

ସେ ତ ତା'ର କ୍ଷତି ପୂରଣ ବାବଦ୍ ଶହେ ଟଙ୍କା ଦାବି କଲାଣି; ଆମେ ଆଉ କେତେ ଟଙ୍କା ଜରିମାନା କରିବା । ପଚାଶଟା ଟଙ୍କା ଦେଉ । ଗରିବ ଲୋକ, କ'ଣ ସେ ଦେଇ ପାରିବ ।

ହାଡ଼ିଆ ତା'ର ଦେହ ଗୋଟାକର ଶିରାପ୍ରଶିରା ହାଡ଼ମାଳ ଲୁଚାଇ ତା'ଉପରେ ପିନ୍ଧିଥାଏ ଗୋଟାଏ ଶୁଖିଲା ଧୂସୁରା ଚମ । କାଖରେ ଖଣ୍ଡେ ସରୁ ପାଞ୍ଚଣ ଜାକି ଠିଆ ହୋଇଥାଏ ହାତ ଯୋଡ଼ି ଜଳ ଜଳ ଚାହିଁ ।

ତା'ହେଲେ ବିଲଉଜୁଡ଼ା କ୍ଷତିପୂରଣ ଶହେ, ଆମ ଜୋରିମାନା ପଚାଶ, ଏମିତି ହେଲା ଗାଏମୋଟ ଦେଢ଼ ଶହ ଟଙ୍କା । ବୁଝିଲୁ ହାଡ଼ିଆ ?

ନାହିଁ ଆଜ୍ଞା ! ହାଡ଼ିଆ ଜବାବ ଦିଏ ।

ଦେଢଶ କେତେ, ହାଡ଼ିଆ କ'ଣ ବୁଝିପାରିବ—ଚକ୍ରଧର ବୁଝାଇ ଦିଅନ୍ତି—ବୁଝିଲୁ ହାଡ଼ିଆ, ଶହକ ହେଲା ପାଞ୍ଚ କୋଡ଼ି, ବାକି ପଚାଶ ହେଲା ଅଢ଼େଇ କୋଡ଼ି; ଏମିତି ଗାଏମୋଟ ସାତ କୋଡ଼ି ଅଧେ ।

ଏଁ ! ସାତ କୋଡ଼ି ।

ହାଡ଼ିଆର ଦୁଇଟା ଯାକ ହାତ ତା'ର ମୁଣ୍ଡ ଉପରକୁ ଉଠିଯାଏ । ଯେମିତି କିଏ ସାତ କୋଡ଼ି ନଡ଼ିଆ ବୋଝ ତା'ମୁଣ୍ଡ ଉପରେ ହଠାତ୍ ଆଣି ଲଦି ଦେଲା କି ସେଇ ବୋଝଟାକୁ ଟେକି ଧରିବାକୁ ସେ ଅବା ହାତ ଉଠାଇଛି ଉପରକୁ ! ତା' ପରେ ସେ ବସି ପଡ଼ି କହେ—

ହଜୁର ମରିଯିବି । ମୋର ଗୋରୁ ଗାଈ ଘରଡିହ ବିକିଲେ ଭଲା ସାତ କୋଡ଼ି ମୋତେ କିଏ ଦିଅନ୍ତା !

ଆରେ ହଁ, ଦେବେନି କାହିଁକି । ଆମରି ଗାଁଆରେ କଣ ଦେବାବାଲା ନାହାନ୍ତି ନା ଦେଉ ନାହାନ୍ତି । ତୁ ତା' ହେଲେ କେତେ ଦେଇ ପାରିବୁ, କହ ?

ନାହିଁ, ହଜୁର ! ମୁଁ ଆଉ ଦେଇ ପାରିବି କ'ଣ ! କଥା ବାହାରେନି ହାଡ଼ିଆ ମୁହଁରୁ ଥଙ୍ଗେଇ ଥଙ୍ଗେଇ ।

କିଛି ଦବୁନି ? ଆଉ କ'ଣ ଖାଲି ମୁହଁ ଦେଖାଇବାକୁ ଆସିଚୁ ? ତୋ ମୁହଁ ଆମେ ଦେଖିନୁ ?

କିବେ ତୋ ସୁନିଆ ଭେଟି ଆଣ୍ 'ଶ' 'ଶ' ପରେ ଅନ୍ୟ ଅକ୍ଷରଟା ଉଚ୍ଚାରିବା ତାଙ୍କର ଲୋଡ଼ା ହୁଏନି । ତହୁଁ ଆଉ ଜଣେ ମକଦ୍ଦମ ଗର୍ଜି ଉଠନ୍ତି—

ସେମିତି କ'ଣ ହଉଚୁବେ । ଥୋ ମୋର କ୍ଷତି ପୂରଣ ମଧୁସୂଦନଙ୍କ ଦାଉ ଏଥର ବାହାରେ ସେଇ ମକଦ୍ଦମଙ୍କ ମୁହଁରୁ ।

ଆଚ୍ଛା ଆଚ୍ଛା ! ତୋ ବିଲ ଭଲା ତୁ ଦେଖିଚୁ ? ଆଜି ଖାଲି ହାଡ଼ିଆଠାରୁ ଶୁଣି କ୍ଷତିପୂରଣ ଦାବି କରୁଚୁ ନା କ'ଣ ?

ତହୁଁ ସେ ମକଦ୍ଦମଙ୍କ ଆଖି ଲାଲ ଧରି ଆସେ ।

ତମେ କିଏସ୍ ମତେ କହିବାକୁ ! ତାଙ୍କର ମକଦ୍ଦମିର ପରିମାଣ କଡ଼ାକ୍ରାନ୍ତି ଭିତରେ ରହିଥିଲେ ମଧ୍ୟ ମକଦ୍ଦମର ଅଭିମାନ ଢେର୍ ବେଶି ।

ହାଡ଼ିଆ ତା'ପରେ ଦୁର୍ଗାଙ୍କ ବେଢ଼ାରେ ରୁଣ୍ଡ ହୋଇଥିବା ଶହ ଶହ ଲୋକଙ୍କ ସାମ୍ନାରେ ହାତଯୋଡ଼ି ମୁହଁମାଡ଼ି ଶୋଇପଡ଼େ—ହଜୁର ମୋର ବାପ ମା—ମତେ ରକ୍ଷାକର, ନଇଲେ ମରିଗଲି ।

ଯାବେ ଶ'—ମରିଗଲି, ରକ୍ଷାକର—ଏତେବେଳକୁ ଛଟା ଗାଳୁଛି । ଜଣେ ମକଦ୍ଦମ ଟିପ୍ପଣୀ କରନ୍ତି ।

ଦବୁନି କ'ଣ, ତୋ ଘରେ କ'ଣ କିଛି ନାହିଁ । ଖାଲି ତ ଗାଈ ତିନିଟା ବିକିଦେଲେ ଶହେଟଙ୍କା ।

ହାଡ଼ିଆ ସେମିତି ତଳେ ମୁହଁମାଡ଼ି ପଡ଼ି କହେ, ହଜୁର ତା' ହେଲେ ମୋ ପିଲା ବାଳକ... !

ଆବେ ରଖ୍ ତୋ ପିଲାବାଳକ । ତୋ ପିଲାବାଳକ ମଲେ କେତେ ଥେଲେ କେତେ, ଆଣ୍ ଆଗ ମୋର କ୍ଷତିପୂରଣ ଥୋ, ଚିହ୍ନିଚୁଟି ମତେ, ମୁଁ କିଏ ? ମକଦ୍ଦମଙ୍କ ସେଇ ପାଟି ଗାଁ କମ୍ପାଇ ଦିଏ ।

ଗୋଟିଏ ଘଣ୍ଟା ହାଡ଼ିଆ ସେମିତି ମୁହଁମାଡ଼ି ପଡ଼ିରହେ । ଜରିମାନା ପରିମାଣ ପାଞ୍ଚ ପଚିଶ ହୋଇ ଦେଢ଼ଶହରୁ ଶହେ ଟଙ୍କାକୁ, ଶହେରୁ ପଚାଶ, ପଚାଶରୁ ପଚିଶ ଓ ପଚିଶରୁ ପାଞ୍ଚଟଙ୍କାକୁ କମିଆସେ । ତଥାପି ହାଡ଼ିଆ ମାଟିକାମୁଡ଼ି ପଡ଼ିରହେ ।

କ'ଣ ପାଞ୍ଚଟଙ୍କା ବି ଦବୁନି ?

ହଜୁର ମରିଯିବି । ମୋର ପାଞ୍ଚଟା ପିଲାବାଳକ । ଭୁଜା ମୁଠାଏ ବି ପାଉନାହାନ୍ତି ।

ବଡ଼ ମକଦ୍ଦମଙ୍କ ହୃଦୟରେ ଦୟା ବସେ, ଛଞ୍ଚାଣ ଆସି ପାରା ପାଖରେ ବସିଲା ଭଳି । ଜରିମାନାର ପରିମାଣ ଆହୁରି କମିବାକୁ ଆରମ୍ଭ କରେ । ପାଞ୍ଚ ଟଙ୍କାରେ ଥକା ମାରିଥାଏ, ଏବେ ଖସିଆସି ପହୁଞ୍ଚେ ପାଞ୍ଚ ସିଉକାରେ । ଶେଷକୁ ପାଞ୍ଚଅଣା । ନାହିଁ ନାହିଁ ଅଣାଏ !! ତେବେ ବୁଢ଼ା ହାଡ଼ିଆ ତଳୁ ମୁଣ୍ଡ ଉଠାଏ ନି । କ'ଣ ହେଲା ! ଅଣାଏ ବି ତୁ ଦେବୁ ନି ! ତେବେ କ'ଣ ତୁ ଗାଁଯାକ ସବୁ ମକଦ୍ଦମଙ୍କୁ ଅପମାନ କରିବାକୁ ଆସିଚୁ ?

ହଜୁର ମୁଁ କି ଛାର, ହଜୁରଙ୍କ ହାତରେ ମଶାଟାଏ ପରି—ମୁଁ ପୁଣି ଅପମାନ ଦେବାକୁ ମୁଣ୍ଡ ? ହଜୁର ଏଡ଼େ କଥା କହୁଛନ୍ତି—ସେମିତି ମୁହଁ ତଳେମାଡ଼ି ହାଡ଼ିଆ ନିଁଉନ ହୋଇ ଜଣାଏ ।

ଆଉ ତେବେ କ'ଣ ଦବୁ କହ—ମହା ବିରକ୍ତ ହୋଇ ବଡ଼ ମକଦ୍ଦମ ପଚାରନ୍ତି ।

ହଜୁର ! ମୁଁ ଅଣାଏ ଦେବି କୁଆଡୁ ? ମୁଁ କିଏ ଅଣାଏ କିଏ—ଦେଇପାରିବି ନି ଆଜ୍ଞା, ଏଇ ଏତିକି ପଇସା ! ଅଣ୍ଟାରୁ ଚାରିଟା ତମ୍ବା ପଇସା କାଢ଼ି ହାଡ଼ିଆ ନେଇ ଥରି ଥରି ସା'ନ୍ତଙ୍କ ପାଖରେ ଥୋଇଦିଏ । ତା'ପରେ ହାତ ଯୋଡ଼ି ସେ ବସି ରହେ । ଦେହଯାକ ତା'ର ଧୂଳିଲାଗି ବିଭୂତିବୋଳା ବାବାଜିଙ୍କ ଭଳି ।

ହଉ ଯା, ସେଇ ଚାରିପଇସା ପଛେ ହେଲା । ଅଣାଏ ତତେ ଛାଡ଼ ଦିଆଗଲା— ଚକ୍ରଧର ମକଦମଙ୍କ ଚକ୍ର ଚକ୍ର ଟିପ୍‌ପଣୀ !

ପ୍ରଜାପାଟକ କିଏ ନଡ଼ିଆ କଡ଼ାଏ, କିଏ ଉଖୁଡ଼ା ମୁଠାଏ ଧରି ଘରକୁ ବାହୁଡ଼ନ୍ତି । ମକଦମମାନେ ହାଣ୍ଡିସରା କଟୁରି ଗୁଆକାତି ଅବା ନୂଆ ଲେଖନୀ ଧରି ହାଡ଼ିଆର ଢୋରିମାନ। ଗପକରି ଯେଝା ଘରକୁ ହସି ହସି ଫେରନ୍ତି । ସେହିମାନଙ୍କ ହାସ୍ୟ ପରିହାସ ରାଗରୋଷ ଭିତରେ ବାଲ୍ୟ ଜୀବନ ମୋର ବଢ଼ିଉଠେ । ସେହିମାନଙ୍କ ଗାଳି ଫଜତିର ଭାଷା ମଧ ମୋ ମୁଖରେ ମଧେ ମଧେ ସ୍ଥାନ ପାଏ, ଆଜି ଯେଉଁ ଭାଷାର ଉଚ୍ଚାରଣ ମୋ ପକ୍ଷରେ ଅସମ୍ଭବ । ପୁଣି ସେଇ ବେଷ୍ଟନୀ ଭିତରେ ହିଁ ଆରମ୍ଭ ହୁଏ ମୋର ସର୍ବ ପ୍ରଥମ ଅକ୍ଷର ଶିକ୍ଷା, ଭାଷା ଶିକ୍ଷା, ସେଇ ଦୁର୍ଗାଠାକୁରାଣୀଙ୍କ ବେଢ଼ା ଭିତରେ ଥିବା ଇସ୍କୁଲ ଘରଟିରେ ।



# ବ୍ରହ୍ମା ବିଷ୍ଣୁ ମହେଶ୍ୱର

ବାପାଙ୍କ ଅମଳରେ ଯେଉଁ ମାଟି ବଂଶ ଅବଧାନଙ୍କଠାରୁ ପ୍ରାଥମିକ ଶିକ୍ଷା ପାଇବା ବ୍ୟବସ୍ଥା ଥିଲା, ଆମବେଳକୁ ତାହା ବଦଳି ଗଲାଣି । ତାଳପତ୍ର ଖେଦା ସ୍ଥାନରେ ଛାପା ବହି ଚଳିଲାଣି । ଲେଖନ ବଦଳରେ ପରକଲମ ଓ ସ୍ୟାହି । ଦାଣ୍ଡପିଣ୍ଡାରେ ବସୁଥିବା ଚାହାଳି ଯାଇ ଦୁର୍ଗାଙ୍କ ବେଢ଼ାରେ ଖଣ୍ଡେ ଚାଳଘରେ ଇସ୍କୁଲ ନାମଟା ଘେନି ବସୁଥାଏ ।

ଛାଇ ଛାଇଆ ମନେପଡ଼େ, ସେଇ ଇସ୍କୁଲକୁ ଦିନେ ବାପାଙ୍କ ସଙ୍ଗେ ଯାଇଥିଲି । ଶିକ୍ଷକ ମୁଣ୍ଡାଏ ଧଳାଖଡ଼ି ମୋ ହାତରେ ଦେଇ ତଳେ ତିନିଟା ବଡ଼ ବଡ଼ 'ଠ' ଅକ୍ଷର ଲେଖିଦେଲେ । ତା'ପରେ ମୋର ହାତ ଉପରେ ନିଜର ଟାଣୁଆ ହାତଟା ରଖି କହିଲେ, ''ଘୋଷ୍ ଏଥର ମୋ ସାଥିରେ—ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ।''

ଯନ୍ତ୍ରଚାଳିତ ପରି ସେହି ତିନିଟି ଶବ୍ଦ ମୁଁ ଘୋଷିବାକୁ ଲାଗିଲି । 'ଠ' ଗୁଡ଼ାକ ଠିକ୍ ଗୋଲ ଥିଲେ ସୁଦ୍ଧା ମୋ ହାତଟା ସେଇ ଗାର ଉପରେ ନ ଚାଲି ବଙ୍କା ଡଙ୍କା ହୋଇ ପଡୁଥାଏ । ସେତେବେଳେ ମାଷ୍ଟ୍ରଙ୍କ ଟାଣୁଆ ହାତଟା ମୋ ହାତ ଉପରେ । ଆଙ୍ଗୁଠିଗୁଡ଼ାକ ମାଟିରେ ଘଷି ହୋଇ ଭାରି କାଟୁଥାଏ । ଇଚ୍ଛା ହେଉଥାଏ ଉଠି ପଳାଇବାକୁ । ସେତେବେଳକୁ ବାପା ମତେ

ଛାଡ଼ି ଦେଇ ଇସ୍କୁଲରୁ ବାହାରି ଗଲେଣି । ଆଙ୍ଗୁଠିଗୁଡ଼ାକ ଛିଡ଼ିଯାଇ ସତେ ଅବା ରକ୍ତ ବାହାରିବ କି !

ସାଙ୍ଗ ପିଲାମାନେ କିଏ ପାଟି କରି କିଏ ତୁନି ହୋଇ ପଢ଼ାରେ ମନ ଦେଇଥାନ୍ତି । ଆଉ କିଏ କୁତୂହଳୀ ହୋଇ ମୋର ବ୍ରହ୍ମା ବିଷ୍ଣୁ ମହେଶ୍ୱରଙ୍କ ଆଡ଼କୁ ଟିକିଏ ଚୋରା ଚାହାଣି ଡାଳି ମାଷ୍ଟରଙ୍କ ଭୟରେ ସଶବ୍ଦରେ ନିଜ ପାଠ ମୁଖସ୍ଥ କରିବାରେ ବ୍ୟସ୍ତ । ମନଟା ମୋର ଛଟପଟ ହେଉଥାଏ ଆଜି ଏହି ନୂଆ ବନ୍ଧନରୁ ଟିକିଏ ମୁକ୍ତି ପାଇବା ପାଇଁ ।

ଆଜି ମଧ ଷାଠିଏ ବର୍ଷରୁ ଊର୍ଦ୍ଧ୍ୱ କାଳପରେ ସେଇ ଅନୁଭୂତିକୁ ଫାଉଣ୍ଟେନ୍‌ପେନ୍ ଧରି ଲେଖିଲା ବେଳେ ମୋର ହାତ ଉପରେ ପ୍ରଥମ ଅକ୍ଷର-ଶିକ୍ଷକଙ୍କର ସେଇ କର୍କଶ ପାପୁଲିଟା ଯେମିତି ନିର୍ମମଭାବରେ ଶିକ୍ଷାଇ ଲାଗିଛି, ରୂପହୀନ ନିରାକାର ତିନିଟା ଶୂନ୍ୟ—ବ୍ରହ୍ମା, ବିଷ୍ଣୁ, ମହେଶ୍ୱର !

ଆଜି ମଧ କଲମ ଛାଡ଼ି ଘର ଛାଡ଼ି ପାଠଶାଠ ଛାଡ଼ି କୁଆଡ଼େ କେଜାଣି ପଳାଇଯିବାକୁ ମନ ମୋର ବ୍ୟାକୁଳ । ଅଥଚ ସେଇ ଅଦୃଶ୍ୟ ଓଜନଦାର କର୍କଶ ପାପୁଲିଟାହିଁ ହାତଟାକୁ ମୋର ଘୋଷାରି ନେଇ ପୁଣି ଯେମିତି ଘୋଷାଉଛି—ବ୍ରହ୍ମା, ବିଷ୍ଣୁ, ମହେଶ୍ୱର—ସୃଷ୍ଟି, ସ୍ଥିତି, ପ୍ରଳୟ—ସବୁ ଖାଲି ଗୋଟିଏ ଶୂନ୍—ସବୁ ପାଠ ସବୁ ଶାସ୍ତ୍ର, ସବୁ ଭାଷା, ସବୁ ଭାଷ୍ୟ, ସବୁ ଜ୍ଞାନ, ସବୁ ବିଜ୍ଞାନ !

ଆଜି ମଧ ଏତେ ଜଞ୍ଜାଳ ଯୋଡ଼ିସାରି—ପୁଅ ଝିଅ ନାତି ନାତୁଣୀ ଘର ଦ୍ୱାର ଟଙ୍କା ପଇସାର ଜମାଖର୍ଚ୍ଚ କରିସାରି—ଖୋସାମତ, ତୋଷାମୋଦ, ପ୍ରଭୁତ୍ୱ, ଦାସତ୍ୱ, ସାହସ, ଭୟ, କାପୁରୁଷତା, ବୀରତ୍ୱ, ଦାକ୍ଷିଣ୍ୟ, କାର୍ପଣ୍ୟ, ଦୟା, କ୍ରୋଧ ବା ପ୍ରେମ ଓ ଘୃଣାର ବହୁ ଅଭିନୟ ନିଜେ କରି କିମ୍ବା ଅନ୍ୟଠାରୁ ଦେଖିସାରି ସୁଦ୍ଧା ସେଇ ମୋର ପ୍ରଥମ ଶିକ୍ଷକ ହାତଟାକୁ ଯେମିତି ଆଜି ବି ମୋର ଘୋଷାରି ନିଅନ୍ତି—ଆଉ ଥରେ ସେଇ ତିନିଟା ଶୂନ୍ୟ ଶିଖାଇବାକୁ, ଯହିଁରୁ ଉତ୍ପତ୍ତି ସୃଷ୍ଟି ସ୍ଥିତି ପ୍ରଳୟର । ଓଡ଼ିଆ ଅକ୍ଷରର ଗୋଲାକୃତି ଯୋଗୁଁ ଏହି 'ଠ'ରୁ ହିଁ ବିଦ୍ୟା ଶିକ୍ଷାର ଆରମ୍ଭ କି କ'ଣ, ତାହା ଲିପିବିଦ୍ ବିଶେଷଜ୍ଞମାନଙ୍କ ବିଚାରବିଷୟ । ମୋତେ କିନ୍ତୁ କିଛି ଦିନ ପାଇଁ ଏହାକୁ ଅଭ୍ୟାସ କରିବାକୁ ପଡ଼ିଥିଲା । ତା'ପରେ 'ଅ' 'ଆ' 'କ' 'ଖ' ଇତ୍ୟାଦି । ଅନେକ ବର୍ଷପରେ ସେଇ ଚିତ୍ର ମନେ ପକାଇ ପିଲାଙ୍କ ପାଇଁ ଲେଖିଥିଲି ''ଗ୍ରାମଚାଟଶାଳୀ'' କବିତା ।

### ଗ୍ରାମ-ଚଟଶାଳୀ

ମନେ ଅଛି ମୋର ଗ୍ରାମ-ଚଟଶାଳୀ
ଚିହ୍ନିଥିଲି ଯହିଁ ଅକ୍ଷର ଆଗେ,
ସରୁ ଦାଣ୍ଡ କଡ଼େ ଚାଳ ଘର ଖଣ୍ଡି
ଯାଇଥିଲି ଦିନେ ବାପାଙ୍କ ସାଙ୍ଗେ ।
ଡାକି ନେଇ ପାଖେ ବସାଇଲେ ଗୁରୁ
ପଚାରିଲେ ନାମ ଆଦର କରି,

ତିନିଗୋଟି ଶୂନ୍ୟ ଲେଖିଦେଲେ ତଳେ
ଖଡ଼ିମୁଣ୍ଡା ଏକ ହାତରେ ଧରି ।
ତାହାରି ଉପରେ ବୁଲାଇଲି ଖଡ଼ି
'ଅ' 'ଆ' 'କ' 'ଖ' ଶିଖିଲି ପାଠ,
ଭଲ ଗୁଣ ଲାଗି ପାଇଲି ପ୍ରଶଂସା
ମନ୍ଦପାଇଁ କେତେ ଖାଇଲି ଛାଟ ।
ପଢ଼ିଲି ସାହିତ୍ୟ, ଅଙ୍କ, ଇତିହାସ,
ଭୂଗୋଳ, ବିଜ୍ଞାନଲାଗେ ନୂତନ,
ଜାଣିବାକୁ ବେଶି ଜାଗିଲା ଉତ୍ସାହ
ଶିଖିବାକୁ ବେଶି ବଳିଲା ମନ ।
ପଢ଼ିବାକୁ ଯେତେ ପାଉଥିଲି ସୁଖ
ପରୀକ୍ଷା ଲାଗିଲା ସେତିକି ମନ୍ଦ,
ସବୁଠାରୁ ବେଶି ସୁଖ ଲାଗିଥିଲା
ସେ-ଦିନର ସାଥି ଖେଳ ଆନନ୍ଦ ।
ସୁଖ ଲାଗିଥିଲା ବସନ୍ତ ପଞ୍ଚମୀ
ହରିତାଳିକାର ପୂଜା ଉତ୍ସବ,
ଗ୍ରାମ-ଚାଟଶାଳୀ ଗୁରୁ ସହପାଠୀ
ଥିଲେ ସେ ମୋହର ବଡ଼ ବିଭବ ।
ଗ୍ରୀଷ୍ମ ଖରାରେ ବୁଡ଼ିଥିଲି କେତେ
'ପଧାନ, ପୋଖରୀ' ଭିତରେ ଯାଇ
କେତେ କାହିଁ ବୁଲି ତୋଟା ବଗିଚାରେ
ଜାମୁ, ରକୋଳି ଆସିଛି ଖାଇ ।
ଶୀତ ସକାଳରେ ଚାହାଳି ଦୁଆରେ
ଖରାତଳେ ବସି କଷିଛି ଅଙ୍କ,
ବର୍ଷା ସଞ୍ଜରେ ଫେରିଛି ଘରକୁ
ଗାଆଁ ଦାଣ୍ଡେ ମାଡ଼ି କାଦୁଅ ପଙ୍କ ।
ଗୁରୁ ସହପାଠୀ କେ ଗଲେଣି କାହିଁ
ଗୋଟି ଗୋଟି ତାହା ପଡୁଛି ମନେ;
ହସିଥିଲି କେଉଁ ବିଲ ପାହାଡ଼ରେ
କାନ୍ଦିଥିଲି ଆମ୍ବ ପୁଲାଙ୍ଗ ବନେ ।
ମନ୍ଦିର ସମାନ ଗ୍ରାମ-ଚାଟଶାଳୀ
ସବୁ ସ୍ମୃତି ପରେ ଟେକିଛି ମଥା,
ଶିଖିଥିଲି ଯହିଁ ପ୍ରଥମ ଅକ୍ଷର
ପଢ଼ିଥିଲି ଯହିଁ ପ୍ରଥମ କଥା !

ଶିକ୍ଷକ ଥାନ୍ତି ଆମରି ଗ୍ରାମର ଅଲାଭାଇନା ଓରଫ ଅଲେଖଚନ୍ଦ୍ର ଶତପଥୀ । ସେଇ ମୋର ନିକଟସମ୍ପର୍କୀୟ ଭିଣୋଇ ! ପଢ଼ାଇବାରେ ଯେମିତି ଧୁରନ୍ଧର, ଦୁଷ୍ଟ ପିଲାଙ୍କୁ ଶାସନ କରିବାରେ ବି ସେମିତି ଦୁର୍ଦ୍ଦାନ୍ତ । ମୋର କକେଇ ଦାଶରଥିଙ୍କର ସେ ବଡ଼ଜ୍ୱାଇଁ । ତେଣୁ କି କ'ଣ, ମୋ ପ୍ରତି ତାଙ୍କର ଟିକିଏ ମୁଲାହିଜା ଥାଏ । ମୋର ମଧ ତାଙ୍କ ପ୍ରତି ସମ୍ଭ୍ରମ ଥାଏ ସେମିତି । ପାସୋରୀ ବେକରେ ବନଶୀକଣ୍ଟା ଲଗାଇ ସେ ଦିନ ମୁଁ ଅନିଚ୍ଛାକୃତ ଯେଉଁ ନରହତ୍ୟା ଅପରାଧ କରିବାକୁ ଯାଉଥିଲି, ସେଥିରୁ ମୋତେ ସେ ଉଦ୍ଧାରକରି ସୁଦ୍ଧା କୌଣସି ଦଣ୍ଡ ଦେଇ ନଥିଲେ । ଆକଟ କରି କହି ନ ଥିଲେ ପଦେ ହେଲେ ! ସେଇ ଘଟଣାରୁ ହିଁ ମୋ ପ୍ରତି ତାଙ୍କର ଟିକିଏ ପକ୍ଷପାତିତା ମୁଁ ଅନୁଭବ କରିଥିଲି । ତାଙ୍କ ଭଳି ନିଷ୍ଠୁର ନିର୍ମମ ଶିକ୍ଷକ ଯେ ଏତେ ଦୂର ସହନଶୀଳ ଓ କ୍ଷମାଶୀଳ ହୋଇ ପାରନ୍ତି, ତାହାର କାରଣ ମୁଁ ବୁଝିବାକୁ ସେତେବେଳେ ଅକ୍ଷମ ଥାଏଁ ।

ଅନ୍ୟ ଛାତ୍ରମାନଙ୍କ ଉପରେ ତାଙ୍କର ନିର୍ମମ ବ୍ୟବହାର ଦ୍ୱାରା ବିରିମାଡ଼ ଦେଖି କୋଳଥ ଚେପା ହେଲାଭଳି ମଧ ମୁଁ ଶଙ୍କିଯାଇଥାଏଁ । ତାଙ୍କ ଅସମ୍ଭବ କ୍ରୋଧ ପଛରେ ଆଉ ଗୋଟିଏ କାରଣ ଥିଲା ବୋଲି ମନେହୁଏ । ତାହା ତାଙ୍କର ଦୈହିକ ଓ ମାନସିକ ବ୍ୟାଧି । ଦେଖିବାକୁ ସୁନ୍ଦର ହୃଷ୍ଟପୁଷ୍ଟ ହେଲେହେଁ ଏଇ ବ୍ୟାଧି ଯୋଗୁଁ ସେ ଅତ୍ୟନ୍ତ କ୍ଷଣକ୍ରୋଧୀ ଥିଲେ । କୌଣସି ପ୍ରକାର ପରିହାସ ସହ୍ୟ କରିବା ତାଙ୍କ ପକ୍ଷରେ ଏକ ପ୍ରକାର ଅସମ୍ଭବ ଥିଲା । ତାଙ୍କ ଘର ସାମ୍ନାରେ ଅଲେଖକକେଇଙ୍କ ଘର । ଦୁହେଁ ପ୍ରାୟ ସମବୟସୀ ଓ ଦୁହିଙ୍କ ନାମ ଅଲେଖ ।

ବୀରକକେଇ ତାଙ୍କ ସମ୍ପର୍କରେ ଶ୍ୱଶୁର; କିନ୍ତୁ ବଡ଼ ପରିହାସ ପ୍ରିୟ । ଅଲେଖକକେଇ ବୀରକକେଇ ବୀରକକେଇଙ୍କୁ ପଚାରନ୍ତି, କି ହୋ ବୀରଭାଇନା, ତୁମେ ଅଲେଖମାଷ୍ଟରଙ୍କର କ'ଣ ହୁଅ ?

କାହିଁକି, ତୁମେ କ'ଣ ଜାଣନି ଯେ ପଚାରୁଛ—ମୁଁ ପରା ତାଙ୍କ ଶ୍ୱଶୁର ।

ଆଚ୍ଛା, ସେ ତମର କ'ଣ ହୁଅନ୍ତି ?

ଗମ୍ଭୀର ହୋଇ ବୀରକକେଇ କହନ୍ତି, ସେ ତ ମୋର ଶଳା ! ଆଉ ଗୋଟିଏ ଦିଗରୁ ମଧ ସେ ସମ୍ପର୍କଟା ଭୁଲ୍ ନୁହେଁ ।

ଅଲେଖମାଷ୍ଟର ରାଗରେ ଗର୍ଜିଉଠି ଆପଣାର ଦୁଇ ଗାଲରେ ଦୁଇଟି ସଶବ୍ଦ ଚପେଟାଘାତ କରି ସେଠାରୁ ତତ୍‌କ୍ଷଣାତ୍ ଅନ୍ତର୍ହିତ ହୋଇ ଯା'ନ୍ତି । ତାଙ୍କ ପଛରେ ଉଠେ ଅନ୍ୟମାନଙ୍କର ହାସ୍ୟରୋଳ ।

ମଝିରେ ମଝିରେ ତାଙ୍କର ମସ୍ତିଷ୍କବିକୃତି ଘଟେ । ମାରଧର ଭଙ୍ଗାରୁଜା କରିବାକୁ ତାଙ୍କୁ ଘର ଭିତରେ ବନ୍ଦକରି ରଖିଦିଅନ୍ତି । ତାହାରି ଭିତରୁ ତାଙ୍କ ଚିତ୍କାର ଓ ଗାଳିଗୁଲଜ ଶୁଣା ଯାଉଥାଏ । ସ୍କୁଲ ପିଲାଙ୍କୁ ସେ କେତେ ଦିନ ମଧ ପୂର୍ଣ୍ଣ ସାଧୀନତା ମିଳିଯାଏ । କିଛି ଦିନ ପରେ ସେ ଭଲ ହୋଇସାରି ସ୍କୁଲକୁ ଆସିଲେ ପୂର୍ବ ପରି ପିଲାମାନଙ୍କ ଭିତରେ ଶୃଙ୍ଖଳା ଫେରି ଆସେ ।

ଆଉ ଥରକ ଘଟଣା । ଖଣ୍ଡଗିରିକୁ ଜଣେ ସାଧୁ ଆସିଥାନ୍ତି । ତାଙ୍କ ପାଖକୁ ଗଲେ ଅନେକ ଦୁଃସାଧ ବେମାରି ଭଲ ହୋଇଯାଏ ବୋଲି ଚାରିଆଡ଼େ ଲୋକ କୁହାକୁହି ହେଲେ । ଅଲେଖଭାଇନା ମଧ ନିଜ ଚିକିତ୍ସା ପାଇଁ ସେଠାକୁ ଯାଇଥାନ୍ତି । ଫେରିଆସି ସାଧୁବାବାଙ୍କ ମହିମା ସେ ଗାଁ ଭିତରେ କହୁଥାନ୍ତି । ଅନେକ ରୋଗୀ କିପରି ଭଲ ହେଉଛନ୍ତି, ସାଧୁବାବା କିପରି ଜଣେ ମହାନ୍ ବ୍ୟକ୍ତି ।

ଅଲେଖକକେଇ ପଚାରିଲେ, କ'ଣ ତାଙ୍କୁ ଦେବାକୁ ପଡ଼େ ?

କିଛି ନାହିଁ, ଖାଲି ପୂଜାପାଇଁ କଡ଼ାଏ ନଡ଼ିଆ, ଗୋଟିଏ ଗୁଆ, ଭୋଗେଇଏ ଖଇକୋରା ଆଉ ଚାରିଟି ପଇସା—ଉତ୍ତର ଆସେ ମାଷ୍ଟରଙ୍କ ମୁହଁରୁ ।

ତା'ପରେ ? ଏ ସବୁ ସରଞ୍ଜାମ ଦେଇସାରି ତୁମେ କ'ଣ କଲ ?

ସମସ୍ତେ ଯାହା କରନ୍ତି ସେୟା କଲି । ସାଧୁବାବାଙ୍କ ହୁକୁମ ହେଉଛି, ପଛକୁ ନ ଚାହିଁ ଏକ ମୁହାଁ ଘରକୁ ଫେରିଯିବ ।

ତା' ହେଲେ ତୁମେ ଅସଲ କଥାଟା ବୁଝିପାରିଲ ନି—ଅଲେଖକକେଇ ପୁଣି କୌତୁକ କରନ୍ତି,—ଅସଲ କଥାଟା କ'ଣ କି, ତୁମେ ଏକମୁହାଁ କିଛି ବାଟ ଆସି ଯେବେ ପଛକୁ ଲେଉଟି ଚାହିଁଥାନ୍ତ, ତା'ହେଲେ ଦେଖିଥାନ୍ତ, ବାବାଜି ପଇସା ଚାରୋଟି ଅଣ୍ଟାରେ ଖୋଷି ନଡ଼ିଆକଡ଼ିକ ଭାଙ୍ଗି କୋରା ଉଖୁଡ଼ା ସଙ୍ଗେ ଜଳଖିଆ କରୁଛନ୍ତି । ତା'ପରେ ଗୁଆଟିକି କାଟି ପାନଭାଙ୍ଗି ବସିଛନ୍ତି ।

ଏଁ ? କ'ଣ କହିଲ ?—ଉତ୍ତରକୁ ଅପେକ୍ଷା ନ ରଖି ଅଲେଖ ମାଷ୍ଟର ସେଠାରୁ ବାହାରି ଯାନ୍ତି । ସ୍କୁଲ ପିଲାଙ୍କ ଉପରେ ସେଇ ରାଗଟା ଅଳ୍ପ ବେଶି ଶୁଝା ହୋଇଯାଏ ।

ଥରେ ସେ ଚୌକିରେ ବସି ପାଠ ପଢ଼ାଉଥାନ୍ତି, ହଠାତ୍ ଚୌକିରୁ କାହିଁକି ଉଠି ଆସିଲେ । ତା'ପରେ ସେ ଭୀଷଣ ଗର୍ଜନ କରି ଉଠିଲେ; ପୁଣି ମୁହଁ ତାଙ୍କର ଏପରି ଭୟଙ୍କର ଭାବରେ ବିକଟ ବିକୃତ ଦେଖାଗଲା ଯେ, ସବୁ ପିଲା ସ୍କୁଲ ଘର ଛାଡ଼ି ବାହାରକୁ ପଳାଇ ଆସିଲେ ଚିତ୍କାର କରି ।

ପିଲାଙ୍କ ପାଟିରେ ବାହାରୁ ଲୋକମାନେ ଦୌଡ଼ି ଆସି ଦେଖନ୍ତି, ମାଷ୍ଟର ମହାଶୟ ତଳେ ପଡ଼ି ଛାଟିପିଟି ହେଉଛନ୍ତି । ତାଙ୍କୁ ଛିଞ୍ଚା ବିଞ୍ଚା କରି କେତେବେଳକୁ ଚେତା ଆସିଲା, ତାହା ମୋର ମନେ ନାହିଁ; କିନ୍ତୁ ପରିଷାର ମନେ ଅଛି, ଅନେକ ମାସ କି ବର୍ଷ ପର୍ଯ୍ୟନ୍ତ ପ୍ରତି ରାତିରେ ମୁଁ ତାଙ୍କର ସେଇ ଭୟଙ୍କର ବିକଟ ବିକୃତ ମୁହଁକୁ ସ୍ୱପ୍ନରେ ଦେଖେଁ । ଆଉ ସେ ମତେ ଯେମିତି ସେଇ ମୁହଁରେ ଭକ୍ଷଣ କରିବାକୁ ଆସୁଛନ୍ତି ! ସଙ୍ଗେ ସଙ୍ଗେ ନିଦଟା ମୋର ଭାଙ୍ଗିଯାଏ ।

ବୋଉ କି ଆଉ କାହାକୁ କିଛି ମୁଁ କହି ପାରେଁ ନାହିଁ । କାରଣ ମୁଁ ଜାଣେ, ଏହା ସ୍ୱପ୍ନ । ଆଉ କା' ଆଗେ କହିଲେ ସମସ୍ତେ ହସିବେ ସିନା କେହି ତ କିଛି କରିପାରିବେ ନାହିଁ; ଅଥଚ ପ୍ରତିଦିନ ଶୋଇବାକୁ ଯିବା ଆଗରୁ ସେଇ ସ୍ୱପ୍ନ କଥା ପୁଣି ମନେ ପଡ଼ି ଛାତିଟା ମୋର

ଥରିଉଠେ । ଅବସ୍ଥା ଶେଷକୁ ଏତେ ବାଟ ଗଲା ଯେ ଶୋଇବାକୁ ସୁଦ୍ଧା ମୋତେ ଡର ମାଡ଼ିଲା । ଶୋଇବା ମାତ୍ର ସେ ମୁହଁଟା ଯେମିତି ବିକଟ ଦାନ୍ତକାଢ଼ି ମାଡ଼ି ଆସୁଚି ମୋରି ଆଡ଼କୁ !

ତାଙ୍କ ପରେ ଆସିଲେ, ଲୋକନାଥ ମାଷ୍ଟର । ଘର ତାଙ୍କର ପୁରୀ ପାଖ ନରସିଂହପୁର । ଆମରି ଦାଣ୍ଡ ଦୁଆର ଆଗ ଶ୍ରୀମତୀ ଗୁଡ଼ିଆଣୀ ଘରୁ ଗୋଟିଏ ବଖରାରେ ସେ ରହୁଥାନ୍ତି । ସାବନ ଅର୍ଥାତ୍ ଈଷତ୍ କଳା ରଙ୍ଗର ଦେହ ଉପରେ ତାଙ୍କ ଧୋବ ପଗଡ଼ି ଜକ ଜକ ଦିଶେ । ଯେମିତି କୁହାକିଆ, ସେମିତି ଛାତ୍ରଙ୍କ ଉପରେ ସାକ୍ଷାତ୍ ଯମ ।

ସବୁବେଳେ ସେ ବେତ୍ରହସ୍ତ । କାରଣ ଅକାରଣରେ ତାହା କେତେଟା ପିଲାଙ୍କର ହାତ ଗୋଡ଼ ମୁଣ୍ଡ ପିଠି ସବୁଆଡ଼େ ବୁଲି ଆସେ । ସେଥି ସଙ୍ଗେ ଚିତ୍କାର ଉଠେ—'ମାଷ୍ଟ୍ରେ ମରିଗଲି ! ମରିଗଲି !' ନୋଳା ଫାଟି ସେଇ ବେତ ମୋଟାରେ ଦେହ ତାଙ୍କର ଫୁଲିଯାଏ । ସେଥିପାଇଁ ମାଷ୍ଟରଙ୍କୁ ପ୍ରତିକାର ମଧ ଜଣା ଥିଲା । ସ୍କୁଲଘର ପଛପଟେ ବଡ଼ ବଡ଼ ସବୁଜ ପତ୍ର ମେଲି ବଣସାରୁ ଗଛ ଉଠିଥାଏ । ସାରୁପତ୍ରରେ କାକର ଜମି ଢଳ ଢଳ ହେଉଥାଏ । ସେଇ କାକର କିୟା ସାରୁ ପତ୍ରରେ ପାଣି ଅଣାଇ ଆଘାତ ସ୍ଥାନରେ ମାଲିସ୍ କରାଯାଏ । କେତେ ଜଣ ଅତି ଡରକୁଳା ପିଲା ଥାନ୍ତି । ମାଷ୍ଟ୍ରେ ତାଙ୍କୁ ଖାଲି ପାଖକୁ ଡାକିଲେ ସେମାନେ ଠିଆହେବାକ୍ଷଣି ଡରରେ ତାଙ୍କର ଲୁଗା ଓଦା ହୋଇଯାଏ । ଲକ୍ଷଣ ଥିଲା ତାଙ୍କରି ଭିତରୁ ଜଣେ । ଅଗତ୍ୟା ତାକୁ ସ୍କୁଲ ଛାଡ଼ି ଲୁଗାଧୋଇ ଆସିବାକୁ ଅନୁମତି ମିଳେ । ସ୍କୁଲ ଛୁଟି ପରେ ଲକ୍ଷ୍ମଣ ହୁଏ ପିଲାଙ୍କ ହାସ ପରିହାସର ଗୋଟିଏ ଜୀବନ୍ତ ଉଦାହରଣ ।

ବେତ୍ରାଘାତରୁ ରକ୍ଷା ପାଇବାକୁ ମୁଁ ଅବଶ୍ୟ ଆଗରୁ ଖୁବ୍ ସାବଧାନ ଥାଏଁ । ପାଠରେ କିଛି ଖିଲାପ କଲେ ସିନା ବେତ ବସିବ ! ମାତ୍ର ବେତଟା ତା'ର ଅଧିକାର ବଜାୟ ରଖିବାକୁ ପାଠ ଅପାଠ କିଛି ହେଲେ ମାନେ ନାହିଁ । ଦଣ୍ଡ ଦେବାକୁ ଯେମିତି ତା'ର ଜନ୍ମ । ସେତକ ନ କଲେ ସେ ଅକାମି ଅପାରଗ । ଦୁନିଆରେ ଯେ ତା'ର ସ୍ଥାନ ନାହିଁ !

ମୋ ଦେହରେ ଦିନେ ବେତ ବସିଲା । ହାତ କି ପିଠି ଚାଉଁକିନା ଜଳି ଉଠିଲା । ଥପ ଥପ ହୋଇ ଆଖିରୁ ପାଣି ଗଡ଼ିପଡ଼ିଲା । ଭୋବନି ଭାଇନାଙ୍କୁ କହିଲି । ଘଟଣାକୁ ସେ ଆଦୌ ଗୁରୁତର ବୋଲି ବିଚାରିଲେ ନି । ବୋଉ ମଧ ଶୁଣି ନ ଶୁଣିଲା ପରି ରହିଲେ । ବାପାଙ୍କ ପାଖକୁ ପୁରୀକୁ ପୋଷ୍ଟକାର୍ଡ଼ ପଠାଇଲି । ସେ ସଙ୍ଗେ ସଙ୍ଗେ ମାଷ୍ଟରଙ୍କ ପାଖକୁ ଲେଖିଲେ । ମାଷ୍ଟ୍ରେ ମୋତେ ଡାକି ବୁଝାଇ ଦେଲେ ସ୍ନେହରେ ମୋର ପିଠି ଆଉଁଶି । ସେଥିରେ କିନ୍ତୁ ମୋ ମନଟା ବୁଝିଲା ନି ।



# ଶୂନ୍‌ଗାଡ଼ି ସ୍ୱପ୍ନ

ସଡ଼କ ଉପର ଜାଗା-ଘରେ ସ୍କୁଲ ହେଉଥାଏ, ଗାଁ-ଭିତର ସ୍କୁଲ ଘରଟି ଭାଙ୍ଗିଯିବାରୁ । ଜାଗା-ଘରଟିକୁ ଗାଁ-ମକଦ୍ଦମମାନେ ଭେଦା ଚାନ୍ଦା କରି ତୋଳାଇଥାନ୍ତି, ନିଜ କାନ୍ଧରେ କାଠ ବାଉଁଶ ବୋହି ମହା ଉତ୍ସାହରେ । ପ୍ରତି ସଂକ୍ରାନ୍ତି ରାତିରେ ଜାଗା-ଘରେ ଭୋଜି ହୁଏ— ଚୂଡ଼ାଘଷା, ଗହମକ୍ଷୀରୀ, କଦଳୀଚକଟା ଓ ଭାଙ୍ଗ-ପାଚକ—ପ୍ରତି ସଂକ୍ରାନ୍ତି ଜଣଜଣକର ପାଳି । ଘରକେ ଜଣେ ଲେଖାଁ ଯିବାର ନିୟମ ।

ସେ ଥର ପଡ଼ିଥାଏ ଆମ ଘର ପାଳି । ଭାଇନା ଗାଁଆକୁ ଆସିଥାନ୍ତି ମୁଁ ଯାଇଥାଏଁ ଜାଗା ଘରକୁ । ଘର ପିଛା ଜଣକ ଛଡ଼ା ବେଶି ଲୋକ ରହିବା ତ ନିୟମ ନୁହେଁ । ରାତି ହୋଇ ଯିବାରୁ ଭାଇନା ମୋ ସାଙ୍ଗରେ ଜଣକୁ ଲଣ୍ଠନ ଦେଇ ଘରକୁ ପଠାଇ ଦେଲେ । ସେତେବେଳକୁ ନରସିଂହଭାଇନା ଭାଙ୍ଗପିଇ ବାଉଳି ଚାଉଳି ହେଉଥାନ୍ତି । ଭାଙ୍ଗ ନିଶା ଛଡ଼ାଇବାକୁ ତାଙ୍କୁ ହେଙ୍ଗୁ ସୁଙ୍ଘାଇବା ବ୍ୟବସ୍ଥା ଚାଲିଥାଏ । ପରେ ମଧ ତାଙ୍କୁ ଗାଁ ଭିତରେ ଗୋଟାଏ କୌତୁକିଆ ଉପାଧି ମିଳିଲା—ହେଙ୍ଗୁ ସୁଙ୍ଘା ନରସିଙ୍ଘା । ମଣିଷ ଆପଣା କୃତିତ୍ୱ-ନିଶାରେ ମସ୍‌ଗୁଲ ହେଲା ବେଳେ, ମୁଣ୍ଡରୁ ତା'ର ସେଇ ନିଶା ଛଡ଼ାଇବା ପାଇଁ ଏମିତି ହେଙ୍ଗୁ ସୁଙ୍ଘା ଭଳି 'ଉପାଧିମାନ' ଆବିଷ୍କୃତ ହୋଇ ନାହିଁ ତ ? ସେଥିରେ କିନ୍ତୁ ଉପାଧିନିଶା ଛାଡ଼େ ନା ବଢ଼େ !

ଘରକୁ ଲେଉଟି ମୁଁ ବୋଉଙ୍କ ଆଗରେ ସବୁ ଘଟଣା ବଖାଣି ବସେଁ । ଜାଗାଘରୁ ଯେ ଖୁବ୍ ମନ ଦୁଃଖରେ ଫେରିଥିଲି, ତାହା ବୋଧେ କଦାପି ନୁହଁ । ବୋଉ କିନ୍ତୁ କଥାଟାକୁ ମୋଟ କରି ମାଜି ବାପାଙ୍କ ଆଗରେ କହିଲେ । ବାପା ଗାଁରେ ସମସ୍ତଙ୍କୁ ଆକଟ କରି ଭାଇନାଙ୍କୁ କୋବଲେଇଲେ । ତା'ପରେ ସଂକ୍ରାନ୍ତି ବୈଠକ ବନ୍ଦ ହୋଇଯାଇଥିଲା; କିନ୍ତୁ ସେଇ ଜାଗାରେ ସ୍କୁଲ ଚାଲିଥାଏ ନିୟମିତ ।

ସ୍କୁଲ ସାମନା କଚା ସଡ଼କରେ ବାଲକାଟି ବନମାଳୀପୁର ଆଡ଼କୁ କେତେ ମଣିଷ, ତାଟିଶଗଡ଼ ଓ ବୋଝେଇ ଶଗଡ଼ ଯା'ଆସ କରନ୍ତି ପୁରୀ କଟକ, କଲିକତାଯାତ୍ରୀ । ଧ୍ରୁବମାଳୀ, କାଶୀ ବାରିକ ପୁଣି ଆଉରି ସେମିତି କେତେଜଣ ସକାଳୁ ବାହାରିଲେ କଅଁଳ ଗାଧୁଆ ବେଳକୁ କଟକ, ପୁଣି ଗାଧୁଆ ବେଳକୁ ପୁରୁଷୋତ୍ତମରେ (ପୁରୀ) ଯାଇ ହାଜର । ସେଇଠୁ କାମ ସାରି ରାତିକି ଘର ଲେଉଟାଣି । ଆଜି ସେଇ କଚା ସଡ଼କ ପକା ହେଲାଣି, ଦିନ ରାତି ମଟର, ବସ୍, ଟ୍ରକ । ବଳଦଗାଡ଼ିର ସଂଖ୍ୟା ମଧ କମି ଆସିଲାଣି ।

ବର୍ଷାଦିନେ ବିଶ୍ୱନାଥପୁର ସଡ଼କ ଫୁଟି ଶଗଡ଼ଟା କାଦୁଅରେ ଗଡ଼ିପଡ଼ିଲେ ତାକୁ ଉଠାଇବା ପାଇଁ ଦିନ-ରାତି ବିତିଯାଏ । କେତେ ବଳଦଙ୍କ ଉପରେ ଶଗଡ଼ିଆ ତା'ର ନାନା ସମ୍ପର୍କ ସ୍ଥାପନ କରି ଗାଳିଫଜିତ୍ କୁଡ଼ାଇ ନ ପକାଏ ! କେତେ ପାଞ୍ଚଣ ବାଡ଼ି ବଳଦପିଠିରେ

ଭାଙ୍ଗି ଚୂର୍‌ମାର୍ ହୋଇ ନଯାଏ ! ଶୀତ ଖରାରେ ସୁଦୂର ବିଲ-ହିଡ଼ସମେତ ସେଇ ସଡ଼କଟା କେତେ ରଙ୍ଗର ଶାଢ଼ିରେ ପୁଣି ରଞ୍ଜିତ ନ ହୁଏ ! କେତେ ପିଲା ବୁଢ଼ା ଯୁବକମାନଙ୍କ ପାଦକୁ ଧୂଳି ଧୂସରିତ ନ କରେ ! ତ୍ରିବେଣୀ, ଜାଗର, କୋଣାର୍କ, ଅଶୋକାଷ୍ଟମୀ, ଧବଳେଶ୍ୱର ଯାତ୍ରା ପୁଣି ରଜ ପର୍ବ—ପେଡ଼ି, ଲୁଗା, ପାଟ, ମଠା ସବୁ ବାହାରିବାର ଉତ୍ସବ ଦିନଗୁଡ଼ିକ । ସଡ଼କ ଆର ପାଖ 'ବଣା' ଗଡ଼ିଆରେ ଗୋରୁ ଗାଈ ଓ ମଣିଷଙ୍କର ସ୍ନାନ ଶୌଚ, କାର୍ତ୍ତିକ ପୂର୍ଣ୍ଣିମାରେ କଦଳୀ ଡଙ୍ଗା ଭସାଣ, ମାଘ ମାସ ଶୀତ ପାହାନ୍ତାରେ ମାଘ-ସ୍ନାନ, ବର୍ଷା ଦିନେ ଇସ୍କୁଲ ପିଣ୍ଡାରୁ ବାରିଜଙ୍ଗ ସେପଟ ଦୂର ଗାଆଁ ତଳେ ଧନୁଆ ନଈର ଫୁଲିଉଠୁଥିବା ଧଳା ପାଣି ସୁଅର ଦୃଶ୍ୟ ନିବିଡ଼ ସବୁଜିମା ଭିତରେ !

ଶୃଖିଲା ପାଚିଲା ଦିନରେ ସେଇ ସଡ଼କ ଉପରେ ପୁଣି ଆଉ ଗୋଟିଏ ଅତି ବିଚିତ୍ର ଅତି ଅଦ୍ଭୁତ ବସ୍ତୁର ସାକ୍ଷାତ୍ ମିଳେ, ଯାହାକୁ ଚାହିଁ ଦେହଯାକ ମୋର ଉଲୁସି ଉଠେ, ଆଖିପତା ପଡ଼େ ନାହିଁ—ଆଗପଛ ହୋଇ ଯୋଡ଼ିଏ ସାନ ସାନ ଚକ । ତା'ଭିତରେ ଛତାକାଠି ପରି ସରୁ ସରୁ ଲୁହା କାଠି, ଉପରେ ଜଣେ ମଣିଷ ବସି ଖାଲି ଗୋଡ଼ ଯୋଡ଼ିକୁ ହଲାଇବ—ଅଥଚ କେଡ଼େ ବେଗରେ ସେ ନ ଚାଲେ ! ସତେ ଅବା ଉଡ଼ି ଉଡ଼ିକା ଧାଇଁଛି !

ସେଥିପାଇଁ ନାଁଆଟି ତା'ର ଶୂନ୍‌ଗାଡ଼ି । କେଡ଼େ ମଜା ଶୂନ୍‌ଗାଡ଼ି ଚଲାଇବାକୁ ! ଢିଙ୍କି ଉପରେ ଏ ଗୋଡ଼ ସେ ଗୋଡ଼ ବଦଳାଇ ଧାନ କୁଟିଲା ଭଳି ଖାଲି ଗୋଡ଼ ଯୋଡ଼ିକୁ ଟିକିଏ ତଳ ଉପର କଲାକ୍ଷଣି କେଡ଼େ ଜୋର୍‌ରେ ଚକ ଯୋଡ଼ିକ ସର୍ ସର୍ ହୋଇ ଗଡ଼ି ନ ଯାଏ ! ସେଥିପାଇଁ ଗାଁ ଭିତରୁ ଇସ୍କୁଲ ଘରଟା ଭାଙ୍ଗିଯାଇ ସଡ଼କ ଉପର 'ଜାଗା'ଘରେ ତାହା ବସିବାରୁ ପିଲାଙ୍କ ମନ ଭାରି ଖୁସି । ଗାଁ ଦାଣ୍ଡ ଚାରିପଟ ଗଛଗହଳ ଘର ବାଡ଼ବେଢ଼ ଥିବାରୁ ଖାଲି ସବୁବେଳେ କିମିତି ଅନ୍ଧାରିଆ ଲାଗେ । ଏଠି ଚାରିଆଡ଼ ଏକାବେଳେ ଖୋଲା । ସାମ୍ନା ପଟେ ଧାନକିଆରି, ପାଟଗହୀର, ସାତକାବାଦ, ବାରିଜଙ୍ଗ ପର୍ଯ୍ୟନ୍ତ ଦେଖାଯାଏ ।

ମଝିରେ ଗୋଟାଏ ବଡ଼ ଛତା ମେଲା ହେଲାଭଳି ଦିଶେ ଡେଲି ଚୌକା ଗାଁ ବରଗଛ । ଆଜିଯାକେ ସେ ବରଗଛଟା ସତେ ସେମିତି ଛିଡ଼ା ହୋଇଛି ଏକାଟିଆ—ଚାରିପଟେ ଧାନବିଲ ପୁଣି ଅନେକ ଦୂରେ ଗଛ ଗହଳିରେ ଘୋଡ଼ି ହୋଇ ପଡ଼ିଥିବା ଗାଁଗୁଡ଼ିକର କୁହେଳି ସୃଷ୍ଟିକରି !

ସେଇ ବରଗଛ ଛାଇତଳେ କେତେଥର ମୁଁ ଯାଇଛି ପୁରୋହିତପୁର ମାଉସୀ ଘରକୁ । ତା' ଡାହିରୁ ଓହଳଗୁଡ଼ା ତଳକୁ ଲମ୍ବିଆସି ମାଟିରେ ପୋତିହୋଇ ପଡ଼ିଛି ଚାରିଆଡ଼ । ଭାରି ଆଚମ୍ବିତ କଥା ତ ! ଗଛଗୁଡ଼ା ତଳୁ ଉଠେ ଉପରକୁ—ଏ ଠିକ୍ ତା'ର ଓଲଟା—ସତେ ଅବା ଗଛଟା ବୁଢ଼ା ହୋଇ ଯିବାରୁ ତା'ରି ପିଲାମାନେ ଆସି ଏବେ ଟେକି ଧରିଛନ୍ତି ତାକୁ ! ଫମ୍ପା ପୋପରା ହୋଇପଡ଼ିଲେ ବି ମୋଟା ପ୍ରକାଣ୍ଡ ଡାହି ଘେନି ପୁଣି ଓହଳ ସବୁ ଉପରେ ସେ ଉଭା ହୋଇଛି ଆଗ ଭଳି ।

ଡେଲିଚୌକା ମେଳନ ହୁଏ ସେଇ ଗଛମୂଳେ ପ୍ରତି ବର୍ଷ । ନାଲି, ନେଳି, ଧଳା ହଳଦିଆ ଲୁଗା ଶାଢ଼ି ପିନ୍ଧି ଝିଅ ବୋହୂ ବୁଢ଼ାବୁଢ଼ୀ ଆଉ ପିଲାମାନେ ରୁଣ୍ଡ ହୁଅନ୍ତି ସେଇ ଗଛମୂଳରେ । କେତେ ହାଟ ଦୋକାନ ନାଚଗୀତ ବାଜାରେ ଉଚ୍ଛୁଳି ପଡ଼େ ଡେଲିଚୌକା !

ଇସ୍କୁଲ ଘରକୁ ସେ ଶବ୍ଦ ଶୁଣାଯାଏ ନାହିଁ ଆଦୌ । ଖାଲି 'ସାଧବ ବୋହୂ' ପୋକଭଳି ମଣିଷମାନେ ଯାଆସ କରୁଥିବା ବାରିହୁଏ ସିନା, ବାଜା ଶବ୍ଦ ସୁଦ୍ଧା ଶୁଣାଯାଏ ନି ।

ମନ ହୁଏ ମୋର ମୁଁ ସେଇ ତେଲିଚୌକା ବରଗଛ ହୋଇଥାନ୍ତି !

କେବେ ଦିନେ ସାଇକଲ-ଆରୋହୀ ଇସ୍କୁଲ ଆଗରେ ଓହ୍ଲାଇ ପଡ଼ି ପଚାରନ୍ତି, 'ଦିବ୍ୟସିଂହ ବାବୁ ଗାଁଆକୁ ଆସିଛନ୍ତି କି ?'

ମାଷ୍ଟରଙ୍କ ମୁହଁରୁ ନାସ୍ତିବାଣୀ ଶୁଣି ସାରି ସାଇକଲ ଚଢ଼ି ସେ ଚଳାଇଯାନ୍ତି । ଗୋଲ ଗୋଲ ଚକଯୋଡ଼ିକ ଭିତରେ ଛନ୍ଦା ସେଇ ସରୁ କାଠିଗୁଡ଼ିକ କ୍ରମେ ଅଦୃଶ୍ୟ ହୋଇପଡ଼େ । ଚାହୁଁ ଚାହୁଁ ଆରୋହୀ-ସମେତ ସାଇକଲଟି ଗଡ଼ିଗଡ଼ିକା ପୂର୍ବପଟ ବୈଷମ ତୋଟା ଆମ୍ବଗଛ-ଗହଳି ଭିତରେ ଗୋଟିଏ ବିନ୍ଦୁରେ ପରିଣତ ହୋଇ କାହିଁ ମିଳାଇ ଯାଏ !

ଗାରଡ଼ିପଞ୍ଚାଣର ପରଲୋକଗତ ସତ୍ୟବାଦୀ ସେନାପତି ମୋ ଭାଇନାଙ୍କର ବନ୍ଧୁ; କିନ୍ତୁ ଭାଇନା ତ କାହିଁ କେବେ ସାଇକଲ ଚଢ଼ନ୍ତି ନାହିଁ ! ତେବେ ସିନା ମୁଁ ଆଉ ଟିକିଏ ଭଲ କରି ହେଲେ ଦେଖିଥାନ୍ତି ।

ଭଲକରି ଦେଖିବା କଥା କ'ଣ ? ନିଜେ ତ ସାଇକଲ ଚଢ଼ା ଆରମ୍ଭ କରିଦେଲି ନିତି ରାତିରେ ଶୋଇ ସାରିବା ପରେ ! ପୁଣି ସେଇ ମୋତେ ରକ୍ଷା କରିଦେଲା ଅଲେଖ ମାଷ୍ଟରଙ୍କ ବିକଟ ଦନ୍ତୁରିତ ମୁଖବ୍ୟାଦାନର ଭୀଷଣ ଆକ୍ରମଣରୁ ! ସେ ମୁହଁଟା ଯେବେ ମୋତେ ଗୋଡ଼ାଇ ଧରିବାକୁ ଧାଏଁ, ସେତିକିବେଳେ ମୁଁ ଗୋଟାଏ ସାଇକଲ ଚଢ଼ି ଛୁଟାଇ ଦିଏଁ । ତଥାପି ତା'ର ବିରାଟ ମୁନିଆ ନଖଗୁଡ଼ାକ ଯେତେବେଳେ ମୋ କାନ୍ଧ ଉପରେ ପଞ୍ଝା ପକାଇବାକୁ ଲମ୍ବି ଆସେ, ଠିକ୍ ସେଇ ମୁହୂର୍ତ୍ତରେ ମୁଁ ପୃଥିବୀକୁ ଛାଡ଼ି ଆକାଶ ମାର୍ଗରେ ଉଡ଼ିବାକୁ ଆରମ୍ଭ କରିଦିଏଁ । ଏଇ ଉପାୟବଳରେ ହିଁ ପ୍ରାୟ ପ୍ରତି ରାତ୍ରିରେ ମୁଁ ସେତେବେଳେ ମୃତ୍ୟୁମୁଖରୁ ଉଦ୍ଧାର ପାଇଛି କେବଳ ଗାଁଆରେ ତ ନୁହେଁ, ଗାଆଁ ଛାଡ଼ି ସହରକୁ ଆସିବା ପରେ ମଧ୍ୟ । ବାଲ୍ୟ ଅବସ୍ଥା ଅତିକ୍ରମ କରି ଯୌବନ ଓ ପ୍ରୌଢ଼ ଅବସ୍ଥାରେ ପହଞ୍ଚି ସାରି ସୁଦ୍ଧା ଏମିତି ସପ୍ନ ଦେଖୁଥିଲି ।

ଶୁଣିଛି ମଣିଷର ବାତ ପ୍ରକୋପରୁ ଏପରି ସ୍ୱପ୍ନ ଦେଖାଯାଏ; ଫ୍ରଏଡ଼ ମଧ୍ୟ ସ୍ୱପ୍ନର ବୈଜ୍ଞାନିକ ବିଶ୍ଳେଷଣ କରିଛନ୍ତି । ପିଲାଦିନର ସେଇ ଭୟ ହୁଏ ତ ନାନା ଭାବରେ ମୋ ମନ ଭିତରେ କାର୍ଯ୍ୟ କରିଥିବ । ପୁଣି ମଣିଷର ତାହା ଯେ ଚିର ଚରମ ଭୟ, ଏଥିରେ ଆଜି ମୋର ସନ୍ଦେହ ନାହିଁ । ଜୀବନ ପ୍ରତି ଲୋଭ ଓ ମୃତ୍ୟୁ ଲାଗି ଭୟ—ଏ ଦୁଇଟାରୁ କ'ଣ ଆଜି ସୁଦ୍ଧା ମୋତେ ମୁକ୍ତି ମିଳିଛି ? ଅସୀକାର କଲେ ତାହା ଆତ୍ମପ୍ରବଞ୍ଚନା ଛଡ଼ା କିମ୍ବା ସତ୍ୟର ଅପଳାପ ଛଡ଼ା ଆଉ ତ କିଛି ହୋଇ ନ ପାରେ ।

ମନକୁ ମନ ଏ ସବୁ ଲେଖିଗଲାବେଳେ ସଙ୍କୋଚ ସଙ୍ଗେ ହସ ବି ମାଡୁଚି । କଥାରେ କହନ୍ତି, ଜୀବ ଥିଲେ ଲୋଭ ଅଛି । ସେଥିପାଇଁ ଜୀବ ଥାଉଁ ଥାଉଁ ଲୋଭ ମୋହ କ୍ରୋଧ ଆଦି ରିପୁଗୁଡ଼ିକୁ ଦମନ କରିବା ହେଲା ଆପ୍ତ ବାକ୍ୟ; କିନ୍ତୁ ଜୀବନକୁ ଆଗ କରି ଧରି ରଖିବା ଓ

ବଞ୍ଚାଇବା ପାଇଁ ଯେ ଲୋଭ, ସେ ଜୀବନ କ'ଣ ମୃତ୍ୟୁ ତାକୁ ଜୋର୍ ଜବରଦସ୍ତି ଛଡ଼ାଇ ନ ନେବା ପର୍ଯ୍ୟନ୍ତ ଆପଣା ଇଚ୍ଛାରେ କେବେ ହେଲେ ଚାଲିଯିବାକୁ ଚାହେଁ କି ? ଆଜି ସୁଦ୍ଧା କେବେ କେବେ ମୁଁ ସ୍ୱପ୍ନରେ ଦେଖେ ଯେ, ମରିଯାଇଛି ! ତା'ପରେ ଚେଇଁ ଉଠିଲେ ବୁଝେ ମୁଁ ସ୍ୱପ୍ନ ଦେଖୁଥିଲି । ମନଟା ଖୁସି ହୋଇଯାଏ; କିନ୍ତୁ କୈଶୋର ଅବସ୍ଥାର ଗୋଟାଏ ସମୟ ବିତିଯାଇଛି, ଯେତେବେଳେ ଜାଗରଣଟାକୁ ମଧ୍ୟ ମୁଁ ଅବିକଳ ସ୍ୱପ୍ନ ବିଚାରୁ ଥିଲି । ସେ କଥା ପରେ ଲେଖିବି ।

ପିଲାଦିନେ ଆଉ ଗୋଟାଏ ସାଧାରଣ ଭୟର କାରଣ ଥିଲେ ପ୍ରେତ, ଚଣ୍ଡୀ-ଚାମୁଣ୍ଡା, ବ୍ରହ୍ମରାକ୍ଷସ । କେଉଁ ବରଗଛ, ଆମ୍ବତୋଟାରେ ଅଧରାତିରେ ସେମାନେ ମଣିଷକୁ ଆକ୍ରମଣ କରନ୍ତି, ସେ ବିଷୟରେ ଗଳ୍ପର ସଂଖ୍ୟା ତ କମ୍ ନୁହେଁ ! ସାଙ୍ଗସାଥିଙ୍କ ମୁହଁରୁ କେତେ ପ୍ରତ୍ୟକ୍ଷଦର୍ଶୀ ବିବରଣ ମଧ୍ୟ ଶୁଣାଯାଏ । ସନ୍ଧ୍ୟାବେଳେ ଏକାଠି ଚାରିପାଞ୍ଚଜଣ ପିଲା ପିଣ୍ଡାରେ ବସି ଜଣେ ପୁରୁଖା ଲୋକ ମୁହଁରୁ କି ସାଙ୍ଗସାଥିଙ୍କ ମୁହଁରୁ ଭୂତ ଗପ ଶୁଣିବାକୁ ଯେମିତି ସୁଖ ଲାଗେ, ଶୁଣି ସାରିଲା ପରେ ସେଠାରୁ କୁଆଡ଼େ ଯିବାକୁ ସେମିତି ଡର ବି ମାଡ଼େ ।

ଅପନ୍ତରା ଗହୀରମଝିରେ ରାତି-ଅନ୍ଧାରରେ ଚିରିଗୁଣୀ ନିଆଁ ଜଳି ଉଠିବା, ମଶାଣି ଉପରେ ଡାହାଣୀମାନେ ମଲା ପିଲାକୁ ଗାତରୁ କାଢ଼ି ଜିଆଁଇ ଖେଳାଇବା, ଉଲଗ୍ନ ହୋଇ ମୁଣ୍ଡ ତଳକୁ ଗୋଡ଼ ଉପରକୁ ଟେକି ଚରି ବୁଲିବା ଏମିତି କେତେ କଳ୍ପନାର କ୍ରୀଡ଼ା, ମାକ୍‌ବେଥ ନାଟକର ତିନି ଡାହାଣୀଙ୍କ ଠାରୁ ତାଙ୍କ କରାମତି କିଛି ତ କମ୍ ନୁହେଁ ! ଆମ ସାହିତ୍ୟରେ ମଧ୍ୟ ବେତାଳ ପଞ୍ଚବିଂଶତିଠାରୁ ଯଦି ଆରମ୍ଭ କରାଯାଏ—

ତା'ଆଗରୁ, ଏମିତି କି ସୃଷ୍ଟି ଆରମ୍ଭରୁ ତ ମନ୍ତ୍ର ତନ୍ତ୍ର ଗୁଣି ଗାରେଡ଼ି ଆକାରରେ ସେଇ ଭୂତ ପ୍ରେତ ପ୍ରେତାତ୍ମା ପରମାତ୍ମାଙ୍କ ସ୍ତୁତି ବନ୍ଦନା ଆରାଧନା,—ପୃଥିବୀର ସବୁ ସାହିତ୍ୟର ଜନ୍ମ ପରା ଏହିଠାରୁ ! ବେଦ ବୋଇଲେ ତ ଏଇ ମନ୍ତ୍ରଗୁଡ଼ିକର ସମଷ୍ଟିକୁ ବୁଝାଇଥାଏ । ସାପ କି ବାଘଠାରୁ ଆରମ୍ଭ କରି ଭୂତପ୍ରେତଯାକେ ପୁଣି ଦୁଷ୍ଟ ଦୁର୍ଦ୍ଦାନ୍ତ ମଣିଷଙ୍କୁ ସାଧ କରିବାପାଇଁ ମଧ୍ୟ ସେଗୁଡ଼ିକର ପ୍ରୟୋଗ ଲୋଡ଼ା, ମଣିଷ ଦେହରେ ରକା ପଶିବା ପୁଣି ହାତ ଗୋଡ଼ ଖଣ୍ଡିଆ ହୋଇ ରକ୍ତ ବୋହିବାକୁ ବନ୍ଦ କରିବା ଲାଗି ମନ୍ତ୍ର ଅଛି । ସ୍କୁଲରେ ପଢ଼ିବା ସଙ୍ଗେ ସଙ୍ଗେ ଏମିତି କେତୋଟି ମନ୍ତ୍ର ମଧ୍ୟ ଭୋବନିଭାଇନାଙ୍କଠାରୁ ଶିଖି ମୁଁ ତାହା ମୁଖସ୍ଥ କରିଥାଏଁ । ତା'ଛଡ଼ା ଆମ ଦିଅଙ୍କ ଘର ପୋଥି ଖଟୁଲିରୁ ଗୋଟିଏ ତାଳପତ୍ର ଖେଦାରେ ଏମିତି କେତୋଟି ମନ୍ତ୍ର ମୋ ଆଖି ଆଗରେ ପଡ଼େ । କେତୋଟି ମନ୍ତ୍ର ସେଥିରୁ ମୁଁ ଶିଖି ପକାଏଁ । କାହାରି ହାତ କି ଆଙ୍ଗୁଠି କାଟି ରକ୍ତ ବାହାରିଲେ, ସେଇ ମନ୍ତ୍ର ପଢ଼ି ମୁଁ ଫୁଙ୍କି ଦିଏଁ । ତାହା ଫଳରେ ଉପକାର ପାଇବା କଥା ମଧ୍ୟ ମୋତେ କେତେ ଜଣ କହନ୍ତି । ଆତ୍ମସନ୍ତୋଷ ସଙ୍ଗେ ସଙ୍ଗେ ମନେ ମନେ ମୋର ଗର୍ବ ଆସେ ।

ଥରେ ମୁଢ଼ି କିଣିବାକୁ ଯାଇଥିଲି । ମୁଢ଼ିବାଲୀ ମୁଢ଼ି ଭାଜି ବସିଥାଏ । ତା'ର ପିଲା ତାକୁ ଝିଙ୍କାଓଟରା କରୁଥିବାରୁ ସେ ମୋ କଥା ଶୁଣିଲା ନାହିଁ । ତହୁଁ ରାଗିଯାଇ ଧମକ ଦେଲି—ଜାଣୁ, ମୁଁ ମନ୍ତ୍ର କରିଦେଲେ ତୋ ମୁଢ଼ି ଜମାରୁ ଫୁଟିବ ନାହିଁ ?

ସେ କିନ୍ତୁ ଖାତିର୍ ନ କରି ମୋତେ ଚାହିଁ ହସି ପକାଇଲା, ତା'ର ଗୋରା ତକତକ ମୁହଁରେ ରାଗରେ; ଫେରି ମୁଁ ମନ୍ତ୍ର ପୋଥି ଫିଟାଇଲି । କେଉଁ ନଟିର ଚେର ନେଇ ତା' ଚାଳରେ ଖୋସିଲେ ମୁଢ଼ି ଫୁଟିବ ନାହିଁ ବୋଲି ସେଥିରେ ଲେଖା ଥାଏ । ଖୋଜି ଖୋଜି ପଚାରି ସେଇ ଚେର ଆଣିଲି । କେହି ନ ଥିବା ବେଳେ ଯାଇ ମୁଢ଼ିବାଲୀ ଚାଳରେ ତାକୁ ଖୋସି ଦେଇ ଏକାବେଳେ ଏକମୁହାଁ ଦେ ଚମ୍ପଟ୍ ! ତା' ଆର ଦିନ ମଜା ଦେଖିବାକୁ ଅପେକ୍ଷା କରିଥାଏଁ । ମାତ୍ର ହତାଶ ହେଲି ଯେତେବେଳେ ଦେଖେଁ, ସେ ପୁଣି ମୁଢ଼ି ବିକି ବାହାରିଛି !

ତେବେ କ'ଣ ମନ୍ତ୍ର ମୋର କାଟୁ କଲା ନାହିଁ ? ପୋଥିରେ କ'ଣ ଭୁଲ୍ ଲେଖାଯାଏ ? କଦାପି ନୁହେଁ । ବୋଧହୁଏ ସେଟା ଠିକ୍ ଚେର ନୁହେଁ । ସନ୍ଦେହ ଓ ନିରାଶାରେ ମନଟା ମୋର ଘାଣ୍ଟି ହେଲା । ଛାଡ଼ ଛାଡ଼ ବୋଲି କାହାର ରାଣ, ନିତେଇ ଧୋବଣୀ ପିତେଇ ସଉରୁଣୀର କୋଟି କୋଟି ରାଣ—ଇତ୍ୟାଦି ମନ୍ତ୍ର ପଢ଼ି ତିନିଥର ଫୁଙ୍କିଦେଲେ ତ ରକ୍ତ ବନ୍ଦ ହୋଇଯାଏ । ଏବେ ଚାଉଳରୁ ମୁଢ଼ି ନ ହେବା ମନ୍ତ୍ରଟା କାଟୁ ନ କଲା କାହିଁକି ?

ପିତେଇ ସଉରୁଣୀର ଘର କାଉଁରୀ କାମଚଣ୍ଡୀ । ସେ ଗୋଟିଏ ମସ୍ତବଡ଼ ବରଗଛକୁ ମନ୍ତ୍ର ବଳରେ ଉପାଡ଼ି ତା'ରି ଉପରେ ବସି ଆକାଶରେ ଉଡ଼ି-ଉଡ଼ିକା ପବନ ବେଗରେ ଯାଉଥାଏ । ନିତେଇ ଧୋବଣୀ ଗଡ଼ିଆ ତୁଠରେ ଲୁଗା କାଚୁଥିଲା । ଉପରେ ସୁ ସୁ ଗର୍ଜନ ଶୁଣି ସେ ମୁହଁ ଟେକି ଚାହିଁଲା, ଲୁଗା ପୂଳାଏ ହାତରେ ଧରି । ତା' ପରେ !

ତା'ପରେ ଏମିତି ଗୋଟେ ପଦ ବୋଲି ଫୁଙ୍କିଦିଏ ଯେ, ଦି'ପଦ ବୋଲି ସାରି ତିନି ପଦ ବେଳକୁ ପିତେଇ ସଉରୁଣୀ ସମେତ ସେଇ ଗଛଟା ଠକ୍ କରି ଆସି ସେଠାରେ ପୋତି ହୋଇଯାଏ ! ତା'ପରେ ଦୁଇ ଗୁଣିଆଙ୍କ ଭିତରେ ଚାଲେ ତୁମୂଳ ଗୁଣି ଲଢ଼େଇ । ଜଣେ ଆଉ ଜଣକ ଉପରେ ବିଛୁଆତି ବାଣ ଛାଡ଼ିଲେ ପ୍ରତି ପକ୍ଷ ତା' ଉପରେ ଛାଡ଼େ ନିଆଁ ବାଣ । ଆଉ ସେସବୁ ବାଣକୁ କାଟି ଦେବାପାଇଁ ସେମିତି ଥାଏ ପ୍ରତିକାର ।

ଏମିତି ଗପ ସବୁ ଗାଁ ଭିତରେ ସାଙ୍ଗସାଥିମାନଙ୍କଠାରୁ ଶୁଣିବାରେ କେତେ ସୁଖ-ସନ୍ଧ୍ୟା ମୋର ବିତି ଯାଇଛି । କେତେ ହସ-କୌତୁକରେ ଗାଁଆର ସରୁ ଦାଣ୍ଡଟି ଯେ ଉଛୁଳି ପଡ଼ିଛି ! ରାତି-ଅନ୍ଧାରି ଦାଣ୍ଡପିଣ୍ଡାରେ ବସି ସାଙ୍ଗସାଥିମେଳରେ ଦୂର ବିଲରେ ଚିରିଗୁଣୀ ଆଲୁଅ ଦେଖି ବା ନ ଦେଖି ଛାତିଟା ଯେ ଧଡ଼ପଡ଼ ନ ହୋଇଛି !

ଶିରୁଭାଇନା କିନ୍ତୁ ଏମିତି କେତୁଟା ମନ୍ତ୍ର ଶିଖିଥାନ୍ତି । କେତେ ତିଖ ଆମ୍ବତାଳ ବାଘୁଆ ମହୁଫେଣାକୁ ତୁଳସୀପତ୍ର ଚୋବାଇ ମନ୍ତ୍ର ପଢ଼ି ସେ ଫୁଙ୍କି ଦେଲେ ହଜାର ହଜାର ମାଛି ପୋଷା ମାନିଲା ଭଳି ଫେଣା ଛାଡ଼ି ଉଡ଼ି ପଳାନ୍ତି । ତା'ପରେ ମହୁଫେଣା ଭାଙ୍ଗି ବୀର ଦର୍ପରେ ତଳକୁ ଓହ୍ଲାଇ ଆସନ୍ତି ଶିରୁଭାଇନା ! ସେଇ ତଟକା ମହୁ-ଫେଣାରୁ ଖଣ୍ଡେ ଲେଖାଁ ପାଟିକି ପକେଇ ଜିଭ ଅଗରେ ଥୋଇ ଖାଲି ଟିକିଏ ଚାପିଦେଲେ କେଡ଼େ ସୁଆଦ ସେ ମହୁ ! ଯେ ନିଜେ ନ ଚାଖିଛି ତା'ପକ୍ଷରେ ସମଜି ପାରିବା ଅସମ୍ଭବ ।

●

# ଟିକାଦିଆ ଆସିଲା

ଟିକାଦିଆ ଆସିଲା ଟିକାଦିଆ ! ପିଲାମାନେ ସିନା ଟିକା କହିଲେ ଡରନ୍ତି, ଆମ ଗାଁରେ କିନ୍ତୁ ବଡ଼ମାନେ ପୁଣି ବୁଢ଼ାମାନେ ସୁଦ୍ଧା ! ସେଥିପାଇଁ ଆଖପାଖ ସବୁ ଗାଁରେ ଟିକାଦିଆ ବୁଲି ଟିକା ଦିଅନ୍ତି । ଆମ ଗାଁଆକୁ ଆସିଲେ ତାଙ୍କୁ ମନାକରି ଦିଆଯାଏ । ମନାକରିବାକୁ ବଡ଼ ମକଦ୍ଦମମାନେ ତ ଜାଣି ଆଗୁଆ ହୋଇ ବାହାରି ପଡ଼ନ୍ତି ।

ସେ ବର୍ଷ ଆସିଥାନ୍ତି ଖୋଦ୍ ବଡ଼ ସାହେବ । ରୀତିମତ୍ ଜଣେ ଗୋରା ଡୋଳା ଯୋଡ଼ାକ ନେଳିଆସିଆ ଫିକା—କୋଟ ପ୍ୟାଣ୍ଟ ପୁଣି ଗୋଲ ଟୋପି ପିନ୍ଧା ଲମ୍ବା-ଚୌଡ଼ା ଚେହେରା । ଗାଁ କଣ୍ଡରାସମେତ ବାଲିପାଟଣା ଥାନା ପୁଲିସ ସିପାହି ସଦଳବଳେ ଆସି ହାଜର । ଗାଦିଦୁଆରେ ସମସ୍ତେ ଜମା । ସିପେହି କଣ୍ଡରା ଆସି ଘର ଘର କରି ସମସ୍ତଙ୍କୁ ଡାକି ନେଉଥାନ୍ତି । ଗାଁଟାଯାକ ଚହଳ ପଡ଼ି ଯାଇଥାଏ । ସମସ୍ତେ ଭୟରେ ଥରହର ।

ଟୋକାଙ୍କ ଭିତରୁ କିଏ ମଝିଗହୀର କିଆବୁଦା ମୂଳେ, କିଏ ଜାମୁଗଛ କି ଆମ୍ବଗଛ ଡାଳରେ ଚଢ଼ି ଲୁଚିଲେ । ଭଗିଆ କଣ୍ଡରା କିନ୍ତୁ କେଉଁ ଘରେ କେଉଁ ପିଲାକୁ ନଚିହ୍ନେ କି ? ତାକୁ ସାହାଯ୍ୟ କରିବାକୁ ପୁଣି ଥାନା ସିପେହି ନାଲି ପଗଡ଼ି ପିନ୍ଧି ! ଭଗି ମଳିକ କେଉଁ ପିଲାକୁ ଟେକାଫିଙ୍ଗି ଜାମୁଗଛ କି ବରଗଛ ଡାଳରୁ, ଆଉ କାହାକୁ ତା'ର ଲମ୍ବା ବାଉଁଶ ଠେଙ୍ଗାରେ କିଆବୁଦାମୂଳେ କେଞ୍ଚାମାରି ପଦାକୁ କାଢ଼ି ଧରିଆଣିଲା । କାହାକୁ ଘଷି ଭାଡ଼ି ଉପରୁ କି କୁଟାଗଦାରୁ ଆଉ କାହାକୁ ପୁଣି ଧାନକୋଠି ତଳୁ ସେ ଝିକି ଓଟାରି ବାହାର କଲା ।

ଏକା ଉଦିଆ ତା'କୁ ପଟାଏ ହିନସ୍ତା କରିଦେଲା । ତା' ଦାଣ୍ଡକବାଟରେ ଭଗିଆ ଯାଇ ଠେଙ୍ଗାପିଟି ଧକ୍‌କା ମାରେ । ତହୁଁ ଉଦିଆ ବାଡ଼ିକବାଟ ଫିଟାଇ ଖସି ପକାଇଲା । ଉଦିଆର କିନ୍ତୁ ଗୋଟାଏ ଦୋଷ ଥିଲା । ତା'ର ପାଦ ତଳିପାଯୋଡ଼ାକ ଏକାବେଳେ ଚେପ୍‌ଟାଥିବା ହେତୁ ସେ ଦୌଡ଼ିଲେ ଚଟି ମାଡ଼ିଲା ଭଳି ଫଟ୍ ଫଟ୍ ଶୁଣାଯାଏ ।

ଭଗିଆକୁ ତା'ର ଏଇ ବିଶେଷତ୍ୱଟା ଆଗରୁ ଜଣା । ଉଦିଆ ମେକାପ୍‌ର ପାଦଶବ୍ଦ ସଙ୍ଗେ କବାଟ ଫିଟିବା ଶବ୍ଦ ଶୁଣି ଭଗି ମଳିକ ଦୌଡ଼େ ବାରିପଟକୁ । ଦେଖେ ଉଦି ମେକାପ୍ ବାରିପଟ ବାଉଁଶ ବୁଦା ପାରି ହୋଇ ଧାଇଁଛି ଗହୀର ମଝିରେ । "ହେ ଉଦିଆ ! ହେ ଉଦିଆ ! ରହିଯା—"ଉଦିଆର ସପ୍ତପୁରୁଷ ଉଦ୍ଧାର କରି କରି ଭଗିଆ ଗୋଡ଼ାଏ, ତା'ର ପଛେ ପଛେ । ଖାଲ, ଢିପ, ବିଲହିଡ଼, କିଆବଣ ଡେଇଁ ଉଦିଆ ଚିରାମାରିଛି ସଡ଼କ ଆଡ଼କୁ । ଭଗିଆର ରାଗ ମଧ ଖରା ତାତିରେ ପଞ୍ଚମକୁ ଉଠିଲାଣି ।

ସଡ଼କ ମଝିରେ ଗାଁ ଗହୀରରେ ଗୋଟାଏ ପଥର ପୋଲ । 'ଶଙ୍ଖମୁହଁ' ନାମରେ ତାହା ପରିଚିତ । ତଳେ ତାହାର ପାଣି ଯିବାପାଇଁ କେତେଗୁଡ଼ିକ ଶଙ୍ଖ ବା ପୋଲ ଅଛି । ବର୍ଷାଦିନେ

ସେଇ ଶଙ୍ଖ ଭିତରେ ସଡ଼କର ଏପାଖ ପାଣି ସେପାଖେ ବାହାରିଯାଏ । ଖରାଦିନେ ଶୁଖିଲା ରହେ । ନିରୁପାୟ ଉଦିଆ ସେଇ ଶଙ୍ଖର ଗୋଟିକ ଭିତରେ ପଶିଗଲା ।

ଭଗି ମଳିକ ତା'କୁ ଲାଖକରି ଶଙ୍ଖଭିତରକୁ ଠେଙ୍ଗାରେ କେଞ୍ଚିଲା । ବିଲରୁ ଟେଳା ଗୋଟାଇ ଆଣି ଶଙ୍ଖ ଭିତରକୁ ଫିଙ୍ଗିଲା । କିନ୍ତୁ ତାହାର ଲକ୍ଷ୍ୟଭେଦ ହୁଏ ନାହିଁ । ସଂକୀର୍ଣ୍ଣ ସୁଦୀର୍ଘ ଶଙ୍ଖଭିତରେ ଉଦୟନାଥ ଟେକାମାଡ଼କୁ ସହଜରେ ଏଡ଼ିଦିଏ । ବିବ୍ରତ ବିରକ୍ତ ଭଗିମଳିକ ନିରୁପାୟ ହୋଇ ଶେଷକୁ ଗୁରୁଣ୍ଡି ଗୁରୁଣ୍ଡି ପଶେ ଶଙ୍ଖ ଭିତରେ । ଚୋର ଧରିବାରେ ଓସ୍ତାଦ୍ ସେ, ଅଥଚ ଏଇ ଟୋକାଟା ! ଆଜି ସେ ତାହାକୁ ପାଣି ପିଆଇ ଦେଲାଣି ! ଭଗି ମଳିକର ରାଗ ଓ ଜିଦ୍ ମଧ ଏଇ କାରଣରୁ ପଞ୍ଚମକୁ ଉଠି ଗଲାଣି । କିନ୍ତୁ ସେ ଗୋଟିଏ ଶଙ୍ଖ ନଳୀରେ ଗୁରୁଣ୍ଡି ଗୁରୁଣ୍ଡି ଅଧା ପଶିଯିବା ପରେ ଉଦିଆ ବାହାରିପଡ଼ି ଆଉ ଗୋଟିଏ ନଳୀ ଭିତରେ ସେମିତି ପଶି ଯାଉଛି ! ଏମିତି ଚାଲିଲା ଶଙ୍ଖ ଭିତରେ ଗୋଡ଼ିଆ ଗୋଡ଼ି କିଛି ସମୟ ପାଇଁ । ଶେଷକୁ ଦୁହେଁ ଥକାମାରି ବାହାରି ଆସନ୍ତି ପଦାକୁ । ଉଦିଆକୁ ଧରି ଭଗି ମଳିକ ହାଜର କରାଏ ଗାଦି ଦ୍ୱାର ଠାରେ ।

ଗାଁ ଦାଣ୍ଡ ମଝିରେ ଗାଦିଦ୍ୱାରରେ ସେତେବେଳକୁ ଲୋକାରଣ୍ୟ । ବାପାଙ୍କ କକେଇ ପୁଅ ଭାଇ ଦାଶରଥି । ଗାଁ ଲୋକଙ୍କୁ ଏମିତି ଜୋର୍ ଜବରଦସ୍ତି ଟିକା ଦେବା ଠିକ୍ ନୁହେଁ ବୋଲି ସେ ଯାଇ ଟିକାଦିଆ ସାହେବଙ୍କ ପାଖେ ଯୁକ୍ତି କରନ୍ତି । ସେ ଯୁକ୍ତିର ଜବାବ୍ ସରୂପ ତାଙ୍କୁ ଧରି ଜବରଦସ୍ତ ଟିକା ଦିଆଗଲା । ଘଟଣାଟା ଚାରିଆଡ଼େ ଚହଳ ପକାଇ ଦେଇଥାଏ । ଦାଶରଥିକକେଇ ଗେଡ଼ା ମଣିଷ । ବାତଜ୍ୱରରେ ଗୋଡ଼ହାତ ତାଙ୍କର ଫୁଲା ଫୁଲା ଦିଶେ । ଆଜି ତାଙ୍କ ବଂଶରେ ଦୁଇଟି ଝିଅଙ୍କର ଗୋଟିଏ ଲେଖାଁ ପୁଅ । ସେ ଦୁହିଁଙ୍କ ପରିବାର ଛଡ଼ା ଆଉ କେହି ନାହିଁ । ତାଙ୍କ ଘର, ଡିହ ବାଡ଼ି ଆମ ଘର ଡିହବାଡ଼ି ସଙ୍ଗେ ମିଶିଗଲାଣି । ପୁଣି ଆମ ଘର ବୋଇଲେ ଖାଲି ପଡ଼ିଛି । ମଣିଷ ସବୁ ବାହାରେ ।

ପିଲାଦିନୁଁ ମୁଁ କେବେ ଭୂତପ୍ରେତ କି ଆଉ କାହାରିକି ଭୟକଲା ଭଳି ତ ମନେ ପଡୁନି । ଟିକାଦିଆକୁ ବା ଡରନ୍ତି କାହିଁକି ? ଉଜଳାନାନୀଟା କିନ୍ତୁ ଟିକା ନେଇଆସି ଘରଭିତରେ ଛାନିଆ ହୋଇ ଶୋଇପଡ଼େ । ସଙ୍ଗେ ସଙ୍ଗେ ତା' ଦେହରେ ତବତି ପଶି 'ଜ୍ୱରହୁଏ । ମୋର ମାମୁପୁଅ ଭାଇ ଓ ଅନ୍ୟ ସାଙ୍ଗସାଥୀମାନେ ଆସି ମୋତେ ଦେଖନ୍ତି—ମୁଁ ଟିକା ନେଇସାରି ହାଣ୍ଡିଶାଳ ଚାଳରେ ଓହଳି ଖେଳୁଛି ଦୋଳି ।

ସେମାନେ ଯେଝା ବାହାରେ ଚିରା ହୋଇଥିବା ରକ୍ତବୋଳା ଟିକାକୁ ଚାହିଁ ''ଆହା ଉହୁ'' ହେଉଥାନ୍ତି । ମୋର ଦୋଳିଖେଳ ଦେଖି ସମସ୍ତେ କାବା ! ବୋଉ ତ ମୋତେ ହେତୁ ପାଇଲା ଦିନୁଁ ସବୁବେଳେ ସାହସ ଯୋଗାଇ ଆସିଛନ୍ତି । ଆଜି ମଧ ମୋତେ ଉଲୁଖା କରି ଉଜଳନାନୀ ଓ ଆଉ ପିଲାମାନଙ୍କୁ ମୋ' ଭଳି ନିର୍ଭୟ ହେବାକୁ ସେ ଉପଦେଶ ଦେଉଥାନ୍ତି— ''ଦେଖ, ଦେଖ, ପୁଅକୁ ମୋ'ର । କେମିତି ଖୁସିରେ ଦୋଳି ଖେଳୁଛି । ଆଉ ତୁମେ ସବୁ ଏଡ଼େ ଡରକୁଳା ! ଛି, ଛି !''

ସେ ସମୟରେ ଯେଉଁ ଗୋବୀଜ ଟିକା ଦିଆ ହେଉଥାଏ, ତାହା ବଡ଼ କଷ୍ଟଦାୟକ । ପ୍ରତି ବାହାରେ ତିନିଟି ଲେଖାଁ, ଏପରି ଦୁଇ ବାହାରେ ଛଅଟି କ୍ଷତକରାଯାଏ । ସେ ପୁଣି ଗୋଟିଏ କରତଭଳି ଦାନ୍ତୁଆ ଛୁରି ସାହାଯ୍ୟରେ । ଗୋଟିଏ ଟିକାପାଇଁ ସେଇ ଛୁରି ଦାଢ଼ରେ ତିନିଟା ଗାରକାଟି ସେ ଗାର ଉପରେ ଆଉ ତିନିଗାର ଛକି ପକାଇଲା ଭଳି ଚିରା ହୁଏ । ସେତେବେଳେ ପିଲାଗୁଡ଼ାକ ରଡ଼ି ଛାଡ଼ି ଚିଙ୍ଗୁଡ଼ି ପରି ଛଟପଟ ହୁଅନ୍ତି । ତା'ପରେ ତାଙ୍କ ବାହା ଯୋଡ଼ାକ ବେଙ୍ଗପୁଲା ପରି ଫୁଲିଯାଏ ।

ଦେହରେ ତବତି ହୋଇ ଟିକା ପାଚେ । ସେତେବେଳେ ନିମପତ୍ର ହଳଦୀ ବାଟି ଟିକା ଉପରେ ଲଦାଯାଏ । ଦୁଇଟାଯାକ ହାତ ଅଚଳ ହୋଇପଡ଼େ ଚାରି ପାଞ୍ଚଦିନ ପାଇଁ । ସେଥିରେ କିଛି ଅସୁବିଧା ହୁଏନି । ବୋଉ ତ ଥା'ନ୍ତି ଖୁଆଇ ଦେବାଠାରୁ ଆରମ୍ଭ କରି ସବୁ କାମ ତୁଲାଇ ଦେବାକୁ । ମୁଁ ଅବଶ୍ୟ ମୁହଁ ଭଡ଼ଙ୍ଗ କରି ଉଜଳନାନୀ ଆଗରେ ନିଜ ବାହାଦୁରି ଦେଖାଏଁ । କିନ୍ତୁ ସେ କଷ୍ଟ ଆଜି ପ୍ରାୟ ଷାଠିଏ ବର୍ଷ ପରେ ମଧ ମୋର ପାସୋର ଯାଇ ନାହିଁ । ପୁଣି ସେଇ ଚିହ୍ନକୁ ଦୁଇ ବାହାରେ ମୁଁ ଧରି ରଖିଛି ଆଜି ସୁଦ୍ଧା । ତା'ପରେ ଡାକ୍ତରଖାନାରେ ଶେଷ ବର୍ଷ ପର୍ଯ୍ୟନ୍ତ ଗୋଡ଼ ହାତ ପେଟ—କେତେଆଡ଼େ କେତେ ଯେ ଦାଗ, କେତେ ଯେ ଚିହ୍ନ ! ସେମିତି ପୁଣି ଆଉ କିଏ ନ ଦେଖିଲା ଭଳି ମନ ଭିତରେ !

ସେ ସବୁକୁ ଉଖାରି ବସିଲେ ଦେହ ଓ ମନର ଗୋଟିଏ ମାତ୍ର ହୋଇପଡ଼େ—ଦାଗ ! ଖାଲି ଦାଗ !



## ମଣିଷଠାରୁ ମହାନ୍

''ବୁଝିଲ ବାବୁ ! ବିଶ୍ୱନାଥପୁର ନୁହେଁ ଯେ ବିଷମପୁର, ଏ ଗାଁକୁ ସାହାବ ଟିକାଦିଆ ନ ଆସିଲେ ଆଉ କିଏ କ'ଣ ପାରନ୍ତା କି ?''

ସ୍କୁଲ ମାଷ୍ଟର ନରସିଂହପୁର ଗାଁର ଲୋକନାଥ ମିଶ୍ରଙ୍କ ଟିପ୍‌ପଣୀ ଶୁଣି ବାଞ୍ଛାକକେଇଙ୍କ ଛାତି କୁଣ୍ଢେମୋଟ ହୋଇଯାଏ । ପାନଖିଆ ପାଚିଲା ଦାନ୍ତ ଦେଖାଇ ସେ କହନ୍ତି, ''ହଁ ମାଷ୍ଟ୍ରେ, ଏ ଗାଁଆର ସବୁ ଛୁଆ ପରା ବିଛୁଆତି, ବିଶ୍ୱନାଥପୁର ଛୁଆଙ୍କୁ ସାଧ କରିବା ସହଜ ନୁହେଁ । ଗୋରା ସାହେବ ନ ଆସି ଆଉ କିଏ ଆସିଥିଲେ ଦେଖିଥାନ୍ତ, କ'ଣ ହୁଅନ୍ତା । ଯେତେହେଲେ ପରା ବିଲାତୀ ଲୋକ ସେ ।''

ଖୁବ୍ ବେଶି ଡେଙ୍ଗା ନୁହେଁ କି ଗେଡ଼ା ନୁହେଁ, ବର୍ଗ ଉଚ୍ଚରେ କମ୍, ଲମ୍ବରେ ଅଧିକ । ଆଖି ଯୋଡ଼ିକ ଟିକିଏ ବଡ଼ ବଡ଼ ଆଉ ବେଶ୍ ଉଜ୍ଜ୍ୱଳ । ସେଇ ଆଖିରେ ଯେମିତି ସେ ଖାଲି

ସବୁରି ବାହାରକୁ ତ ଦେଖେ ନାହିଁ, ଚିହ୍ନିପାରେ ତାଙ୍କ ଭିତରକୁ ସୁଦ୍ଧା । ମୋ ଭିତରକୁ ସେ ଏମିତି ଚିହ୍ନି ପକେଇଥିଲା ଯେ, ବୋଧହୁଏ ସେମିତି ଆଉ ଆଜିଯାକେ କେହି ପାରିନି । ସେଥିପାଇଁ ତା'ର ସେ ଚିହ୍ନାକୁ ମୁଁ ଯେବେ ଗ୍ରାସ କରି ପକେଇ ଥିଲି ବୋଲି କହେଁ, ତେବେ ବୋଧହୁଏ ଠିକ୍ ହୋଇପାରେ । ତା'କଥା ଲେଖିଲାବେଳେ ତା'ର ସେଇ ଆଖି ଯୋଡ଼ାକ ଏବେବି ଯେମିତି ଢଳଢ଼ଳ ଛଳଛଳ ହୋଇ ଚାହିଁଛି ମୋତେ ! ନଇଲେ ତାକୁ ମୁଁ ପାସୋରି ପାରିନି ଆଜିଯାକେ କାହିଁକି ?

ହଁ, ଆଜିଯାକେ ପ୍ରାୟ ଷାଠିଏ ବର୍ଷପରେ ସୁଦ୍ଧା ! ମୋର ସେଇ ଆହାର ବିହାର ଶୟନ ସ୍ୱପନର ସାଥୀ । ମୋ ଜୀବନର ତ ସେ ଖାଲି ସତ୍ୟ ନୁହେଁ, ଶିବ ଆଉ ସୁନ୍ଦର । ଯାହାକୁ ଆମରଣ ଅତିକ୍ରମ କରିଯିବା ମୋହ ପକ୍ଷରେ ଅସମ୍ଭବ—ଅସମ୍ଭବ ଏଇ ବିରାଟ ସଂସାର-ଜଞ୍ଜାଳ ମଧ୍ୟରେ ସୁଦ୍ଧା ।

ସେହି ମୋର ପିଲା ବୟସର ଚିର ସହଚର ଟିପି ! ରଙ୍ଗଟି ତା'ର କସରା, ରୁମଗୁଡ଼ିକ କଅଁଳ, କାନଯୋଡ଼ିକ ଲମ୍ବ । ଟିକିଏ କେଉଁଠି ଖୁଡ଼୍‌ଖାଡ଼୍ ହେଲେ ସେଇ କାନଯୋଡ଼ିକ ଠିଆ ହୋଇଯାଏ ଯେମିତି ଅବା ଆପେ ଆପେ । ଆଉ ମୋ ମୁହଁରୁ 'ଟିପି' ବୋଲି ବାହାରି ପଡ଼ିବାକ୍ଷଣି ଝାଁଉଳିପଡ଼େ ଲାଜକୁଳି ଲତାଭଳି ଅବିକଳ ।

ବାପା ତାହାକୁ ମୋରିପାଇଁ ଆଣି ଦେଇଥାନ୍ତି ପୁରୀରୁ । ତାକୁ କେବେହେଲେ ମୁଁ ମାଗିଥିଲି ବୋଲି ତ ମନେ ପଡୁନି । ତା'ଆଗରୁ କଙ୍କି ଧରି ତା'ପଛରେ ସିଙ୍କୁ ଅଠାରେ ଘାସପତ୍ର ଯୋଡ଼ି ଉଡ଼ାଇବା, ନାନାରଙ୍ଗ ପ୍ରଜାପତି ପଛରେ ଗୋଡ଼ାଇବା, ସାଧବବୋହୂ ପୋକ ଗୋଟାଇ ସିନ୍ଦୂର ଫରୁଆରେ ସାଇତିବା, ବଣି ଚଢ଼େଇଛୁଆକୁ ଧରି ପଞ୍ଜୁରି ଭିତରେ ପୋଷିବା ଥିଲା ମୋ'ର କୌତୂହଳ ଆଉ ଆଗ୍ରହର ସାମଗ୍ରୀ ।

ଏଣିକି ସବୁ କାମରେ ଟିପି ହେଲା ମୋ'ର ଚିର ସହଚର । ତା'ର ଖିଆପିଆ ଗାଧୁଆ ପାଧୁଆ ସବୁ କାମ ମୁଁ ତନଖି କରେଁ । ସେ ବି ସେମିତି ସକାଳୁ ମୋ'ର ଶେଯରୁ ଉଠିବାବେଳୁ ରାତିରେ ଶୋଇବାକୁ ଯିବାଯାକେ ଲାଗି ରହିଥାଏ ପାଖେ ପାଖେ । ଯେଉଁଠି ତାକୁ ବସି ରହିବାକୁ କହିଥିବି ସେଇଠି ଜଗିଥିବ ସେ । ଆଉ ଯେତେ ଯେ କହୁ, ଟିପେ ସେଠାରୁ ସେ ଚଳିବ ନାହିଁ ମୋ'ର ହୁକୁମ ନ ପାଇବା ଯାକେ । ପୁଣି ମୋ ମୁହଁରୁ 'ଟିପି 'ଟିପି' ଡାକ ବାହାରିବାକ୍ଷଣି ଯେଉଁଠି ଥାଉ, ତୀର ବେଗରେ ଚମକି ଆସିବ ଅବା ରଙ୍ଗମଞ୍ଚରେ ପାତ୍ର-ପାତ୍ରୀଙ୍କ ଆବିର୍ଭାବ ଭଳି । ତା'ପରେ ନାଚି ନାଚି ଲାଙ୍ଗୁଳ ହଲେଇବ—ତା'ର ସେଇ ଚଅଁର ଭଳି ଛାମୁଳା ଲାଙ୍ଗୁଳଟିକି । ଆଉ ମୋ'ରି ମୁହଁକୁ ଚାହିଁବ ଅନାବିଳ ଅସରନ୍ତି ସ୍ନେହ ବିଶ୍ୱାସ ଆସ୍ଥା ପୂରି ରହିଥିବା ବଡ଼ ବଡ଼ ଡୋଳା ଯୋଡ଼ିକରେ । ଆଜି ବି ଏଇ ମୁହୂର୍ତ୍ତରେ ଯେମିତି ଅବା ସେ ଚାହିଁ ରହିଛି ମୁହଁକୁ ମୋ'ର ।

ପ୍ରାୟ ଷାଠିଏ ବର୍ଷ ପରେ ସୁଦ୍ଧା ସେଇ ମୁହଁ ଆଉ ଢଳଢଳ ଡୋଳାଯୋଡ଼ିକ ମୋ' ଆଖିରେ ଅବା ନାଚୁଛି । ଆଜି ମଧ୍ୟ ଟିପି ପାଇଁ ମୋ'ର ମନ ଭିତରେ ଗୋଟାଏ ଭେକମ୍ ରହି ଯାଇଛି, ଯେଉଁ ଭେକମ୍‌ରେ ଆଉ କାହା କଥା କ'ଣ କହିବା, ପବନର ସୁଦ୍ଧା ସ୍ଥାନ

ନାହିଁ—ବାୟୁ ଶୂନ୍ୟ ଆକାଶ—ମହାଶୂନ୍ୟ ଅନ୍ତରୀକ୍ଷ—ଯାହାକୁ ପାର ହୋଇ ମଣିଷ ଆଜି ଚନ୍ଦ୍ରଲୋକରେ ପହଞ୍ଚିଲା ! ଅଥଚ ଟିପି ଯେଉଁ ଭେକମ୍ ରଖିଗଲା ମୋ'ର ମନଗହନରେ ତାକୁ କେବେହେଲେ ପାର ହେବାକୁ ମୁଁ ଯେ ନିରୁପାୟ, ନିଃସହାୟ ! ସତ କହିଲେ, ଟିପି ଭଳି ମୋତେ ଏମିତି ଖାତିର୍ ଆଉ କେହି କେଉଁଠି ସେତେବେଳେ କରୁ ନଥିଲେ । ଆଜିଯାକେ ବି କରନ୍ତିନି ତ ! ସେଇଥିପାଇଁ ସେ ଥିଲା ମୋ'ର ସର୍ବୋତ୍ତମ ଗର୍ବ । ଖାଲିତ ସେ ଖାତିର କରେ ନାହିଁ—ତା'ଭଳି ଏତେ ଭଲ ମୋତେ ଆଉ କିଏ କେବେ ପାଇଛି କି ପୂରାପୂରି ନିଃସ୍ୱାର୍ଥ ଭାବରେ, ଟିକିଏ ସୁଦ୍ଧା ପ୍ରତ୍ୟାଶା ନରଖି ? ପୁଣି ମୁଁ ବି ତା'ଠାରୁ ଆଉ ବେଶି ଭଲ କାହାକୁ ପାଇଛି—ଭଲ କରି ଠିକେ ଠିକେ ତାହା ବୁଝିପାରିବା ମୋ ପକ୍ଷରେ ଭାରି କଷ୍ଟକର ।

ବୋଉ ବାପା ଯେ ତାଙ୍କ ପୁଅ ଝିଅ ନାତୁଣୀ କାହାକୁ ବେଶି କାହାକୁ କମ୍ ଭଲ ପାଆନ୍ତି—ବୁଝିବା ମୁସ୍କିଲ; ସେମିତି ସ୍ତ୍ରୀ ପୁଣି ପୁତ୍ରକନ୍ୟା ବନ୍ଧୁମାନେ ମଧ । ମାତ୍ର ଟିପିର ଭଲ ପାଇବା ଯେମିତି ଅବା ଅହେତୁକ । ଆଜି ମଧ ମନ ଧାଇଁଛି ସେଇ ମୋର ନଅ ଦଶ ବର୍ଷ ବୟସ ପଛକୁ ଲେଉଟି ଯିବା ପାଇଁ, ଆଉ କାହାରିକି ନ ହେଲେ ସୁଦ୍ଧା ଟିପିକୁ ଥରେ ଭେଟିବା ପାଇଁ । ଭେଟିବା ପାଇଁ ସେଇ ତା'ର ଅସୀମ ପ୍ରାଣ-ପ୍ରେମପୂର୍ଣ୍ଣ ଢଳଢ଼ଳ ଛଳଛଳ ଉଜ୍ଜ୍ୱଳଡୋଳା ଯୋଡ଼ିକୁ ।

ଯିବା ବାଟକୁ ମୋ'ର ଓଗାଳି ବସି ତା'ର ସେଇ ସରୁ ସରୁ ଆଗ ଦୁଇଗୋଡ଼କୁ ନମସ୍କାର କଲାଭଳି ତଳେ ଥୋଇବା ଭଙ୍ଗିଟିକି, ପଛପଟ ଝଙ୍କା ଲାଙ୍ଗୁଡ଼କୁ ଗୋଲିଆକରି ମୋଡ଼ି ମୁହଁକୁ ମୋର ଗଭୀର ସ୍ନେହ ଦୃଷ୍ଟିରେ ସେଇ ଚାହିଁ ରହିବା ଠାଣିରେ ଯେମିତି ଅଟକି ଯାଇଛି ଚିର ଚଞ୍ଚଳ ଅସୀମ ସମୟ !

କୁଆଡ଼େ ଟିକିଏ ଘରଛାଡ଼ି ପଦାକୁ ମୁଁ ପାଦ କାଢ଼ିବାକ୍ଷଣି କାହୁଁ ଚମକି ଆସି ବାଟ ଓଗାଳି ନ ଛାଡ଼ିବା ଭଙ୍ଗୀରେ ତା'ର ଅଳି, କେତେବେଳେ ମୋ'ର ଦି' ଗୋଡ଼ ମଝିରେ ପଶି ଛନ୍ଦି ପକାଇବ, ନଇଲେ ଆଗରେ ସେମିତି ବସିପଡ଼ି ଲାଙ୍ଗୁଳ ପିଟିବ ମୁହଁକୁ ମୋ'ର ଚାହିଁ । ତା' ପାଖରେ ପୁଣି ଗାଁ ଗୋଟାକର କୁକୁରମାନଙ୍କର କି ଯେ ଖାତିର୍, କି ଯେ ସମ୍ଭ୍ରମ ! ସେମାନେ ସମସ୍ତେ ଯେମିତି କି ତା'ର ବଚସ୍କର ।

ଟିପିଖାଲି ଗୋଟିଏ ଥର ଚାହିଁଦେଲା କି ଗୋଟିଏ ଥର ଭୁକି ଦେଲା,—ବାସ୍ ସେତିକି ଯଥେଷ୍ଟ । ଗାଁଟାର ସବୁ କୁକୁର, କିଏ ବୁଦା ମୂଳରେ, କିଏ ପୋଖରୀ ହୁଡ଼ାରେ, କିଏ ରାସ୍ତା କଡ଼ରେ ମୁଣ୍ଡ ନୁଆଁଇ ଲାଙ୍ଗୁଳ ହଲାଇ ଧୀରେ ଧୀରେ ଆଗକିଛି ବାଟ ସନ୍ତର୍ପଣରେ ଚାଲି ତା'ପରେ ଦେ ଚମ୍ପଟ୍ । ମୋ ପାଇଁ ଭାତ ବଢ଼ା ହୋଇଥିବ, ଟିପି ଭୟରେ କେଉଁ ବିରାଡ଼ିର ସାହସ ଅଛି ଭାତଥାଳିର ପାଖ ମାଡ଼ିବାକୁ ପୁଣି ! ଟିପି ନଥିବା ବେଳେ ଯେତେ ବିରାଡ଼ି ଭାତଥାଳି ପାଖରେ ନଡ଼ବଡ଼ ହେଉଥିବେ, ତା'ର ପାଦଶବ୍ଦ ଶୁଣିବାକ୍ଷଣି କିଏ କୁଆଡ଼େ ଭାଗିସ୍ । ଗୋରୁ ଗାଈ କୁକୁର ବିରାଡ଼ିଠାରୁ ଆରମ୍ଭ କରି ମଣିଷଯାକେ କିଏ ଯେ ନ ଡରେ ଟିପିକୁ ।

ଘରେ ମୋ'ର ବୋଉ ପୁଣି ଆଉ ସମସ୍ତେ ବି ଭାରି ସୁଖ ପାଉଥିଲେ ତାକୁ, ଅକ୍ଷିତୃତୀୟା ସକାଳେ ଶଙ୍ଖୁଆର ଶଙ୍ଖଶବ୍ଦ ଭିତରେ ଶ୍ରୀନିବାସ ଅବଧାନଙ୍କର ମଧୁରକଣ୍ଠ ''ମଙ୍ଗଳମ୍ ଭଗବାନ୍ ବିଷ୍ଣୋ ମଙ୍ଗଳମ୍ ମଧୁସୂଦନ'' ସ୍ୱରଟି ଯୋଡ଼ିହୋଇଥାଏ । ବିଲକୁ ଚିତ୍ର ହୋଇଥିବା ଅଖିମୁଠି ଧାନବେତା ଉପରେ ନାସିଲଗା ନଡ଼ିଆ ଥୁଆହୋଇ ସଭା ଉପରେ ନାଲି-ପାଟ ସଜାଇ ବିଲକୁ ବୁହାହୁଏ ।



# ଚଷାଭାଇ ଧାନବୁଣ୍

ମୁଁ ଚାଲେଁ ବିଲକୁ ପହିଲି ଧାନବିହନ ମୁଠି ବୁଣିବାକୁ ! ମୋ ପଛେ ପଛେ ସେଇ ଶଙ୍ଖମହୁରି ରୋଶଣି ସାଙ୍ଗରେ ଚାଲେ ଟିପି, ବେଶ୍ ନୀରବ ସଂଭ୍ରମରେ ଆସ୍ତେ ଆସ୍ତେ ପାଦ ପକାଇ; ଆଉ ଯେବେ ମୁଁ ଧାନବୁଣା ବେଳେ ବିଲକୁ ଯାଏଁ ଡମେଇ ଭୋଇ ସାଥୀରେ, ତା'ପରେ ଗଉଣୀରେ ଧାନପୂରାଇ ବିଲଯାକ ବୁଣି ବୁଣିକା ଚାଲିଥାଏଁ ଏମୁଣ୍ଡ ହିଡ଼ରୁ ସେମୁଣ୍ଡ ହିଡ଼ଯାକେ, ବିଲହିଡ଼ ବେଣାବୁଦା ମୂଳେ କେଉଁଠି ଲୁଚି ଝିଙ୍କାରି ଧରିଥାଏ ଗୋଟାଏ ଅଛିଣ୍ଡା ସ୍ୱର । ନେଳି ଆକାଶତଳେ ଧଳା ବଉଦର ପାତଳ ପର୍ଦ୍ଦା ଉହାଡ଼ରେ ଶଙ୍ଖଚିଲ ତା'ର ଗେରୁଆ ଡେଣାକୁ ମେଲିଦେଇ ସେଇ ଅଛିଣ୍ଡା ସ୍ୱର ମଝିରେ ଶୁଣାଏ ତୁହାକୁ ତୁହା ତୀବ୍ର ଚିତ୍କାର ।

ସେତେବେଳେ ଟିପିର ଦୌଡ଼ ଦେଖିବ କ'ଣ ! ସତେ ଅବା ସେ ଆପଣା ମନଖୁସି ସମ୍ଭାଳି ପାରୁ ନାହିଁ ମୋଟେ, ଗୋଡ଼ ଚାରିଟା ଯେମିତି ତା'ର ମାଟିରେ କେଉଁଠି ଲାଗୁ ନାହିଁ ! ଆଉ ସେ ଖାଲି ପବନ-ବେଗରେ ଭାସି ଭାସିକା ଛୁଟିଛି ଆଖି ପିଛୁଳାକେ ଗହୀର ଗୋଟାକ ଏ କିଆରିରୁ ସେ କିଆରିକୁ !

ସେମିତି ପୁଣି ଧାନବଛା କି ଲଙ୍ଗଳ ମରା ବେଳେ, କିଆରି ଭିତରେ ଆଣ୍ଠୁଏ ପାଣି ଠିଆ ହୋଇଥିବ । ଡମେଇ ଭୋଇ (ଭଲ ନାଁଟି ତା'ର ବୋଧେ ଡମ୍ବରୁଧର ଅବା ଅପଭ୍ରଂଶ ନାଁ 'ଡମ' ହୋଇପାରେ; କିନ୍ତୁ ସମସ୍ତେ ଡାକନ୍ତି ଡମେଇ ଭୋଇ) ଲଙ୍ଗଳକଣ୍ଠିରେ ହାତପକେଇ ପାଣିକାଦୁଅ ଚପର ଚପର ବିଲରୁ ଯେବେ ଏ ମୁଣ୍ଡରୁ ସେମୁଣ୍ଡ ଯାକେ ଛୋଟ ଛୋଟ ଧାନଗଛ ଭିତରେ ଲଙ୍ଗଳ ବୁଲାଇ ଆଣେ, ଟିପି ମଧ ମୋ' ପାଖରୁ ଖସିଯାଇ ଡେଇଁ ପଡ଼ିବ ହିଡ଼ ଉପରୁ ବିଲ ଭିତରକୁ ଗୋଟାଏ କୁଦାମାରି—ଆଉ ସେଇ ଚିକିଟା ମାଟିର କାଦୁଅ ପାଣିରେ ଲଟ୍‌ପଟ ହୋଇ ଚାଲିଥିବ ହଳସାଥିରେ ପହଁରି ପହଁରି ।

ତା'ପରେ ମୋ'ର ବିରକ୍ତିସୂଚକ 'ଟିପି ଟିପି' ଡାକ ଶୁଣି ସେମିତି ପାଣିକାଦୁଅ ସରସର ହୋଇ ନିର୍ଲଜ୍ଜ ରୂପରେ ହିଡ଼ ଉପରକୁ ଉଠିଆସି ନୀରବରେ ଶୁଣିବ ମୋ

ଗାଳିଗୁଲଜ । ମୋ'ରି ଆଗରେ ଆପଣା ବାହାଦୁରିଟା ଦେଖାଇବାହିଁ ଯେମିତି କି ତା'ର ଅସଲ ମତଲବ । ଆଉ ଯେମିତି କି ଯାହା କିଛି କରିପାରେ ଏ ଦୁନିଆ ଭିତରେ ମୋତେ ଖାଲିଟିକିଏ ଖୁସି ରଖିବା ପାଇଁ ସେ ।

ହାଇରେ ନିର୍ବୋଧ ପଶୁ ! ମୋ'ର କେଉଁ ବାଲୁତ ବୟସରୁ ତ ବିଦାୟ ଘେନି ଗଲୁଣି ତୁ ଚିରଦିନ ପାଇଁ ଆଉରି ବିଦାୟ ଘେନି ଗଲୁଣି ଏଇ ଅତି ଅଦ୍ଭୁତ ଅତି ବିଚିତ୍ର ଦୁନିଆରୁ ମଧ ! ତୋରି ପରି ଆଉ ଗୋଟିଏ ଚତୁଷ୍ପଦ କି ଦ୍ୱିପଦ ପ୍ରାଣୀ ସଙ୍ଗେ କାହିଁ ଜୀବନରେ ତ ଭେଟ ହେଲାଭଳି ମନେ ପଡ଼େନି, ଯାହାର ଏକ ମାତ୍ର ଧ୍ୟାନ ମୋତେ ହିଁ ଖୁସି ରଖିବା , ନିର୍ଭୟ କରିବା । ଅଥଚ ଗୋଟାଦୁନିଆ ମୋତେ ଯେ ଖାଲି ଭୟ ଭ୍ରାନ୍ତି ଭିତରକୁ ପେଲି ଦେବା ପାଇଁ ତିଆରି !

ମନେ ପଡ଼େନି ଆଜି—ରୋଜ୍ ସକାଳୁ ମୁଁ ଶେଯରୁ ଉଠିଲା ପରଠାରୁ ତୋ ଛଡ଼ା ଆଉ କାହା ମୁହଁ ଆଗ ଚାହିଁଛି । ଆଉ କିଏ ମୋର ପାଖେ ପାଖେ ଲାଗିରହିଛି । ରାତିରେ ପୁଣି ମୁଁ ଶେଯ ଉପରକୁ ଯିବା ପର୍ଯ୍ୟନ୍ତ ମୋର ସବୁ ମାଡ଼ଗାଳି ଖାଇ ସୁଦ୍ଧା ଆଉ କିଏ ସେ ଦଣ୍ଡେହେଲେ ପାଖ ଛାଡ଼ି ନାହିଁ ତୋହ ପରି ?

ପବିତ୍ର ଭାଗବତ ଗ୍ରନ୍ଥରେ ପରା ଅଛି—ଧନ ଅର୍ଜିଲେ ଧର୍ମକରି, ଧର୍ମେ ପ୍ରାପତ ନରହରି । ଜୀବନଯାକ ତ ଯାହା ଧନ ଅର୍ଜିଲି, ତାହା ନିଜ ଖର୍ଚ୍ଚକୁ ନିଅଣ୍ଟ, ତହିଁରୁ ଆଉ ଧର୍ମ କରିବାକୁ ବଳକା ରହିଲା କେଉଁଠୁ ? ଧର୍ମପାଇଁ ପରା ଧନର କିଛି ନିଅଣ୍ଟ-ବଳକା ବିଚାର କରାଯାଏ ନାହିଁ ? କିନ୍ତୁ କହରେ ଟିପି ! ତୋ ସ୍ମୃତି କାହିଁକି ସବୁଧର୍ମ ଆଉ ଧନକୁ ବଳି ତ ଦାଉ ଦାଉ ହୋଇ ଝଟକି ଉଠିଲା ମୋ ମନ ଭିତରେ ?

କାହିଁକି ସେ ସ୍ମୃତି ନିଭିଲା ନାହିଁତ ଆଜିଯାକେ ଆହୁରି ଅସଂଖ୍ୟ ସ୍ମୃତି ନିଭିଗଲାଭଳି ! କହିଲୁ ଭଲା କାହିଁକି ? ମାତ୍ର ପୃଥ୍ୱୀସର୍ଜନା କାଳରୁ ଗୋଟିଏ ହେଲେ 'କାହିଁକି'ର ଜବାବ୍ ମିଳିଲାନି ବି ଆଜିପର୍ଯ୍ୟନ୍ତ !

ସତେ ସେଇ ଟିପି ଆଜିକି ଷାଠିଏ ବର୍ଷ ପରେ ବି ମୋର ଏ ବୟସରେ ସୁଦ୍ଧା ପଛେ ପଛେ ଗୋଡ଼ାଇଛି ଯେମିତି ! ଯେତେ ମନା କଲେବି ମାନୁ ନାହିଁ ସେ, ଯେତେ ଝିଙ୍କାରି ହେଲେ କି ଧମକେଇଲେ ଶୁଣୁ ନାହିଁ ସେ ଜମାରୁ । ସବୁ ଧିକ୍କାର ଧମକାଣରେ ବି ଆଗ ଭଳି ସେମିତି ଆସ୍ତେ ଆସ୍ତେ ଚଅଁର ଢାଳିଲା ଭଳି ହଲାଉଛି ତା'ର ଝଙ୍କା ଲୋମଶ ଲାଙ୍ଗୁଳଟିକି । ଆଉ ସେଇ ଗୋଟାଏ ଜାଗାରେ ସେମିତି ରହି ଯାଇଛି ସେ ଅବିକଳ—ଚିର କାଳ ପାଇଁ—

—ଯେଉଁଠି ସ୍ନେହଟା କେବଳ ଅବିକଳ, ଆଉ ପ୍ରେମଟା ନିପଟ ଦୁର୍ବୋଧ !

ଚୈତ୍ର ପୂର୍ଣ୍ଣମୀ ମେଳଣଟା ସେ ବର୍ଷ ଖୁବ୍ ଜମିଥାଏ ଆମ ଗାଁରେ । ବର୍ଷକୁ ବର୍ଷତ ତହୁଁବଳି ତହୁଁ ବଳି । ଚମ୍ପା, ରସକଦମ, ତୋପ, ବୋମା, ଚକ୍ରୀ, ହାବେଳି, ଫୁଲଝାଡ଼,

ଚଢ଼େୟା-ଚଢ଼ଉଣୀ ନାଚ, ରାଜାରାଣୀ, ବୁଢ଼ାବୁଢ଼ୀରୂପ, ବାଣ—ସବୁ ତ ମାସକ ଆଗରୁ ତିଆରି ପରଖ ହୋଇ ରହି ସାରିଛି ।

ଯେତେ ଯାହା ହେଉ ପଛେ ମନଟା ମୋର ସୁଖ ନ ଥାଏ, ଟିପିର ତୋଟି ଉପରେ କିମିତି ଗୋଟାଏ ଘା'ହୋଇ କେତେ ଦିନ ହେଲା ଭଲ ହେଉନି । ସବୁ ଉପାୟ ମୁଁ କରିସାରି ଥକିଲିଣି । ଏବେ ପୁଣି ଦି' ଦିନ ହେଲା ଶୋଇଲାଠାରୁ ସେ ଉଠିପାରୁନି । ଯାହା କିଛି ଟିକିଏ ଖାଇବାକୁ ତା' ପାଖରେ ରଖିଦେଲେ ତାକୁ ଖାଲି ଶୁଙ୍ଘିଦେଇ ପଡ଼ି ରହୁଛି ନିସ୍ତେଜ ହୋଇ । ଟିପି ପୁଣି ପଡ଼ି ରହନ୍ତା ଏମିତି !

ଶିରୁଭାଇନା, ପରମାନନ୍ଦ ପୁଣି ଆଉ ସବୁ ସାଙ୍ଗ ମେଳନ ତୋଟାକୁ ଗଲୁଁ । ଝାଞ୍ଜ, ମୃଦଙ୍ଗ, ସଂକୀର୍ତ୍ତନ, ଯାତ୍ରା-ସୁଆଙ୍ଗ, ଦୋକାନ ସଉଦା, ନାଚଗୀତ ଭିତରେ ଚାଲିଲା ପୁଣି ଆମ ପଇସାଖେଳ । ଶିରୁଭାଇନାଙ୍କ ତିଆରି ସେଇ ଛଅ ରଙ୍ଗରେ ଚିତ୍ରଘରମାନ ଅଙ୍କା ହୋଇଥିବା ଥାଳିଭଳି ଗୋଲପଟା ଖଣ୍ଡି ଉପରେ ଗୋଟାଏ କଣ୍ଟା ବୁଲି ବୁଲିକା ଯେଉଁ ଘରେ ଅଟକିଯାଏ—ଆଉ ସବୁଘର ପଇସାତକ ଆଣି ସେଇ ଜିତାପଟଘରେ ଲାଗିଥିବା ପଇସାର ଦି'ଗୁଣ ପଇସା ଦେବାକୁ ପଡ଼େ । ଶେଷରେ କିନ୍ତୁ ଖେଳାଉଥିବା ଲୋକର ଲାଭ ଛଡ଼ା ଲୋକସାନ ନାହିଁ । ଟିପିକଥା ମୋର ମନକୁ ଛୁଇଁଲା ସେଇ ଖେଳଟା ଜମିଆସିଲା ବେଳକୁ । ଖେଳ ଛାଡ଼ି ଫେରି ଆସିଲି ଘରକୁ । ବୋଉଙ୍କଠାରୁ ଶୁଣିଲି ଟିପି ଆଉ ନାହିଁ ।

ଝର୍‌ଝର୍ ହୋଇ ଦି' ଆଖିରୁ ମୋର ଛାଏଁ କିମିତି ଗଳିପଡ଼ିଲା ଲୁହାଗୁଡ଼ାକ । ପଇସାଖେଳରେ ସବୁଲାଭର ମହାସୁଖ ଯେ ଟିପି ମରିଯିବାର ଏଇ ଗୋଟାଏ ଲୋକସାନରେ ଯେମିତି ପାଣି ଫାଟିଯାଇ ମିଳେଇଗଲା ସେଇ ଲୁହଭିତରେ । ତା'ପରେ ଘରବାଡ଼ି, ଯାତ୍ରା ସୁଆଙ୍ଗ, ଝାଞ୍ଜ, ମୃଦଙ୍ଗ, ସଂକୀର୍ତ୍ତନ ନାଦ ସୁଦ୍ଧା ଆକାଶ ପବନଠାରୁ ଆହୁରି ବେଶି ଶୂନଶାନ ହୋଇ ପଡ଼ିଲା ଅକସ୍ମାତ୍ ।



# ପୁନରପି ଜନମ

ସ୍ମୃତି ! ସ୍ମୃତି ! ସ୍ମୃତି ! ଶ୍ରୁତି ପରିଣତ ହୁଏ ସ୍ମୃତିରେ । ଶୁଣିବା କଥା, ଦେଖିବା ପୁଣି ଅଙ୍ଗେ ନିଭେଇବା ଘଟଣାରୁ କେତେ ଅଂଶ ଅବା ସ୍ଥାନ ପାଇଥାଏ ସ୍ମୃତି ଭିତରେ !

ଦୁନିଆ ଉପରେ ପ୍ରତି ମୁହୂର୍ତ୍ତରେ କେତେ ଯେ ସ୍ମୃତିର ଉଦୟ ପୁଣି ବିଲୟ ! ଯେତିକି ପୁଣି ଅବଶେଷ ରହିଯାଏ—ତହିଁରୁ କେତେ ଯେ ଉଭେଇ ଯାଏ କୁଆଡ଼େ—ଡାକ୍ତରଖାନା କି ପୋଲିସ୍‌ଥାନାର ଜନ୍ମ—ମୃତ୍ୟୁ ତାଲିକାଭଳି ।

ଅବଶେଷ ହୋଇ ରହିଯାଅ ଖାଲି ତୁମେହିଁ—ସ୍ମୃତି ! ତାହା ସୁଦ୍ଧା କେତେ ବର୍ଷ ପୁଣି କେତେ ଯୁଗ ଅବା କେତେ ଦଣ୍ଡ ? ଏଇ ଅନନ୍ତ କାଳର ବ୍ଲାକ ବୋର୍ଡ଼ଟା ଉପରେ ତାହା ଚକ୍ ଖଡ଼ିର ଅକ୍ଷର ସିନା, ତଥାପି ତୁମେ ରହିଯାଅ ପରା କ୍ଷୀଣରୁ କ୍ଷୀଣତର ପୁଣି କ୍ଷୀଣତମ ହୋଇ ସୁଦ୍ଧା ! ।

ତୁମକୁ ଘେନି ଇତିହାସ, ବିଜ୍ଞାନ, ଦର୍ଶନ—ଆଉ ସେସବୁକୁ ମିଶାଇଦେଲେ ହୁଏ ସାହିତ୍ୟ । ତୁମେଇ ପରା ଅତୀତ ଉପରେ ପ୍ରତିଷ୍ଠା କର ବର୍ତ୍ତମାନକୁ ଗତିଉପରେ ପ୍ରଗତିକୁ, ଅସତ୍ ଉପରେ ସତ୍ୟକୁ । ତୁମେଇ ତ ଛିନ୍ନ କରିଦିଅ ଅତୀତ—ବର୍ତ୍ତମାନ-ପ୍ରବୀଣ-ନବୀନର ସବୁ ଫରକ । ତୁମେଇ ପ୍ରଜ୍ଞା, ବିଶ୍ୱର ନିରାଟ ନିବିଡ଼ ନିଘଞ୍ଚ, ଅଜ୍ଞାନ-ଅନ୍ଧକାର ଭିତରେ ଆଲୋକ ସଞ୍ଚାର କର କ୍ଷୀଣରୁ କ୍ଷୀଣତମ ମୃତ୍‌ପ୍ରଦୀପ ହୋଇ ଚିରକାଳ ।

ମୋର ନଅ-ଦଶ ବର୍ଷ ବୟସର ଏକ ପାଳିତ ସାରମେୟ ଟିପିର ସ୍ମୃତି ଅହରହ ମୋତେ ଅନୁସରଣ କରେ ଚବିଶ ପଚିଶ ବର୍ଷ ବୟସ ପର୍ଯ୍ୟନ୍ତ । ଆଉ ସବୁ ସ୍ମୃତି ଭିତରେ ହିଁ ସେ ଅଧିକ ମାର୍ଜିତ ଜୀବନ୍ତ ହୋଇଉଠେ ଯେମିତି ! ଆଉ ସେହି ନଅ ଦଶ ବର୍ଷ ବୟସରୁ ପଛେ ପଛେ ମୋର ଗୋଡ଼ାଇ ଶେଷରେ ତା'ର ପୁନର୍ଜନ୍ମ ଘଟେ ଏକ ଅଭାବନୀୟ ପରିବେଶ ମଧ୍ୟରେ । ଏଥିପାଇଁ ପୁନର୍ଜନ୍ମରେ ସଂସ୍କାରଗତ ସୁଦୂର ବିଶ୍ୱାସଟା ମୋର ଆଜି ପର୍ଯ୍ୟନ୍ତ ପରା ପୂରାପୂରି ନିଃଶେଷ ହୋଇପାରି ନାହିଁ ସହସ୍ର ଉଦ୍ୟମ ସତ୍ତ୍ୱେ । ଆଜି ଯେବେ ପ୍ରଥମ ପୃଥିବୀ ପରିକ୍ରମାରେ ବିଜୟ ହୁଏ ଗୋଟିଏ ଇତିହାସପ୍ରସିଦ୍ଧ ସାରମେୟ 'ଲାଇକା'—ମନେ ହୁଏ ଯେମିତି ସେଇ ଥିଲା ମୋର ଟିପି, ତା'ର ପୂର୍ବଜନ୍ମରେ । ଆଉ ମୁଁ ଏଯାଏ ବିଦେଶଭ୍ରମଣ ନ କଲେ ସୁଦ୍ଧା ମୋ ଟିପି ଯେ ପୃଥିବୀ ଭ୍ରମଣ କରିଛି ପୁଣି ଅନ୍ତରୀକ୍ଷରେ !

କଟକ ରେଭେନ୍‌ସା କଲେଜରୁ ବି.ଏ. ପାସ୍ କରିବା ସଙ୍ଗେ ସଙ୍ଗେ ୧୯୨୬ରେ ମୁଁ ସମବାୟ ବିଭାଗରେ ମ୍ୟାନେଜର ଚାକିରି ପାଏଁ ଅତି ସହଜରେ । ସେତେବେଳେ ସମବାୟ ବିଭାଗଟି ଥିଲା ଅଧା ସରକାରୀ । ଓଡ଼ିଶାରେ ଉକ୍ତ ବିଭାଗର ଆସିଷ୍ଟାଣ୍ଟ୍ ରେଜିଷ୍ଟ୍ରାର୍ ଥାନ୍ତି ସ୍ୱର୍ଗତ ଅବ୍‌ଦୁସ୍ ସମଦ୍ ଖାନ୍ । ପୁରୀ ସମବାୟ ବ୍ୟାଙ୍କର ଅଫିସ୍ ଆମ ରାମଚଣ୍ଡୀ ସାହି ଘର

ପଡ଼ିଶା; ସେକ୍ରେଟାରୀ ଥାନ୍ତି ମୋର ବାପା ଭାଇନାଙ୍କର ଏକାନ୍ତ ବନ୍ଧୁ ସ୍ୱର୍ଗତ କ୍ଷେତ୍ରମୋହନ ମହାନ୍ତି । କ୍ଷେତ୍ରମୋହନବାବୁ ମୋତେ ତାଙ୍କର ସାନଭାଇ ଦୃଷ୍ଟିରେ ଦେଖୁଥିଲେ । ସେଇ ଆଗ ଛାଏଁ ମୋ ପାଇଁ ସମବାୟ ବିଭାଗରେ ଚାକିରି କରିବା ପ୍ରସ୍ତାବ କରନ୍ତି ।

ତା'ପରେ ମୋତେ ସେ ସାଙ୍ଗରେ ଘେନିଯାନ୍ତି ପୁରୀ ସମୁଦ୍ରକୂଳେ ଆସି ରହୁଥିବା ଆସିଷ୍ଟାଣ୍ଟ୍ ରେଜିଷ୍ଟ୍ରାରଙ୍କ ପାଖକୁ । ଆସିଷ୍ଟାଣ୍ଟ୍ ରେଜିଷ୍ଟ୍ରାର ମୋ ନାଁ ସୁପାରିସ କରନ୍ତି ବିହାର ପ୍ରଦେଶରେ ଅବସ୍ଥିତ ସାବୁର କୋ-ଅପରେଟିଭ୍ ଟ୍ରେନିଂ ଇନିଷ୍ଟିଚିଉଟ୍‌ରେ ଯୋଡ଼ିଏମାସ ସମବାୟ ଶିକ୍ଷା ପାଇବାପାଇଁ ।

ଭାଗଲପୁର ନିକଟ ସାବୁର କୃଷିଫାର୍ମଟି ଯେପରି ପ୍ରଶସ୍ତ, ସେଭଳି ମନୋରମ । ସେଠାରେ ଅବସ୍ଥିତ କୃଷି ବିଦ୍ୟାଳୟ ଓ ସେଥିସଙ୍ଗେ ଛାତ୍ରାବାସ । ଚାରିଆଡ଼େ କଲମୀ ଆମ୍ବ, ସପେଟା, ଲିଚୁ, ପିଚୁ, ପିଜୁଳିଗଛ ସବୁ ଝାମ୍ପୁରା ହୋଇ ସାବୁରକୁ ଏକ ବନ ବିଦ୍ୟାଳୟ ରୂପ ଦେଇଥାନ୍ତି ।

ଗ୍ରୀଷ୍ମଛୁଟିରେ ସାବୁର ବିଶ୍ୱବିଦ୍ୟାଳୟଟି ବନ୍ଦଥିବା ବେଳେ ସେଇଠି ଯୋଡ଼ିଏ ମାସପାଇଁ ବସେ ଅସ୍ଥାୟୀ ସମବାୟ ଶିକ୍ଷାକେନ୍ଦ୍ର । ବଙ୍ଗ-ବିହାର-ଓଡ଼ିଶାରୁ ଶିକ୍ଷାର୍ଥୀମାନେ ଆସି ଯୁଟିଥାନ୍ତି ସାବୁର କେନ୍ଦ୍ରରେ । ନୂଆ ସ୍ଥାନରେ ନୂଆ ନୂଆ ବନ୍ଧୁତା ଜନ୍ମେ ।

ବଙ୍ଗ-ବିହାର-ଓଡ଼ିଶା ଆଗରୁ ଗୋଟିଏ ପ୍ରଦେଶ ଭାବରେ ଶାସିତ ହୋଇ ଆସି ପରେ ବିହାର ଓଡ଼ିଶା ବିଚ୍ଛିନ୍ନ ହୋଇଯାଏ ବଙ୍ଗରୁ; ତଥାପି ସାବୁର ସମବାୟ ଶିକ୍ଷାକେନ୍ଦ୍ରରେ ଓଡ଼ିଆ ବିହାରୀ ଓ ବଙ୍ଗାଳୀ ଶିକ୍ଷାର୍ଥୀମାନେ ଏକାଠି ଯୁଟିଥାନ୍ତି । ଏହି ସୂତ୍ରରେ ମୋର କେତେ ଜଣ ବଙ୍ଗୀୟ ଅନ୍ତେବାସୀଙ୍କ ସଙ୍ଗେ ଘନିଷ୍ଠତା ଜନ୍ମେ ।

ସେମାନେ ଏହି ପ୍ରାଦେଶିକ ପୁନର୍ଗଠନକୁ ପସନ୍ଦ କରୁ ନଥିଲେ । ବିଶେଷକରି ବଙ୍ଗ-ଓଡ଼ିଶାର ଭାଷାଗତ ପୁଣି ସୃଷ୍ଟିଗତ ନିକଟ ସମ୍ପର୍କ ହେତୁ ବିହାର ଓଡ଼ିଶା ଯୋଡ଼ାହେବାଟା ଏକ ବିଡ଼ମ୍ବନା ବୋଲି ମୁଁ ତାଙ୍କଠାରୁ ଶୁଣେ । ତା' ଆଗରୁ ଅବଶ୍ୟ ଉତ୍କଳ ସମ୍ମିଳନୀ ଗଢ଼ାଯାଇ ଓଡ଼ିଶାକୁ ବିଭିନ୍ନ ପ୍ରଦେଶରେ ଥିବା ବିଚ୍ଛିନ୍ନ ଅଂଶଗୁଡ଼ିକୁ ଆଣିବା ଆନ୍ଦୋଳନ ଚାଲିଥାଏ । ତା'ରି ଭିତରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରିବାର ପ୍ରଚ୍ଛନ୍ନ ଆକାଂକ୍ଷା ଥାଇପାରେ; ମାତ୍ର ମୁଖ୍ୟ ଉଦ୍ଦେଶ୍ୟ ଥିଲା, ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ ।

୧୯୨୬ ବେଳକୁ ଭାରତ ସ୍ୱାଧୀନତା ଆନ୍ଦୋଳନର ରୂପରେଖ ଅବଶ୍ୟ ପ୍ରକଟିତ ହୋଇ ଉଠିଲାଣି । ସେଥିସଙ୍ଗେ ଆଞ୍ଚଳିକ ତଥା ପ୍ରାଦେଶିକ ସଚେତନତା ମଧ୍ୟ ଉଗ୍ର ହେଲାଣି କେତେ କ୍ଷେତ୍ରରେ ।

ସାବୁର ସମବାୟ ଶିକ୍ଷା କେନ୍ଦ୍ରରେ ମୋତେ ଜଣେ ବଙ୍ଗୀୟ ବନ୍ଧୁ ପଚାରିଲେ, ''ଆପଣଙ୍କର ବଙ୍ଗ ସହିତ ରହିବାକୁ ଇଚ୍ଛା ନା ବିହାର ସହିତ ?''

''ଓଡ଼ିଶା ଚାହେ ସତନ୍ତ୍ର ପ୍ରଦେଶ ହେବାକୁ, କାହାରି ସାଥୀରେ ଗୁନ୍ଥାହୋଇ ରହିବା ତା'ପକ୍ଷରେ ଆଦୌ ସୁଖକର ନୁହେଁ''—ମୁଁ ତାଙ୍କୁ ଉତ୍ତର ଦିଏଁ ।

ମୋ କଥାଟା ତାଙ୍କ ମନକୁ ଟିକିଏ ଘେନିଲା ଭଳି ସେ କହନ୍ତି—''ବିଲ୍‌କୁଲ୍ ଠିକ୍— ଜଣେ ଶୁଖାଇ ଖାଇଲେ ଆଉ ଜଣେ ତିନ୍ତାଇ ଖାଏ । ଏକାବେଳେ ଉତ୍ତର ମେରୁ ଓ ଦକ୍ଷିଣ ମେରୁ ।'' କଥାଟିର ମର୍ମ ହେଲା, ଜଣେ ଛତୁଖୋର ହେଲେ ଆଉ ଜଣେ ଯେ ପଖାଳଖିଆ । ଦୁହେଁ ତା' ହେଲେ ଏକାଠି ରହିବେ କେମିତି ? କିନ୍ତୁ ଏଭଳି ସଂକୀର୍ଣ୍ଣ ପ୍ରାଦେଶିକତା ସବୁ ଦିନ ମୋ ପକ୍ଷରେ ଘୃଣ୍ୟ । ତା'ର କାରଣ ହୁଏତ ଆପଣା ପ୍ରାଦେଶିକ ହୀନମନ୍ୟତା ।

ସେ ଦିନ ସାବୁର ସମବାୟ ଶିକ୍ଷାକେନ୍ଦ୍ରରେ ଓଡ଼ିଆ, ବିହାରୀ ଓ ବଙ୍ଗାଳୀ ଶିକ୍ଷାର୍ଥୀମାନଙ୍କର ଗୋଟିଏ ମିଳିତ ଭୋଜିର ଆୟୋଜନ । ଶିକ୍ଷା କେନ୍ଦ୍ରରେ ଶିକ୍ଷକମାନେ ସମବାୟ ଦର୍ଶନର ଉଚ୍ଚତମ ଲକ୍ଷ୍ୟ ଉପସ୍ଥାପନ କରି ଜାତି-ଧର୍ମ-ଦଳମତ ନିର୍ବିଶେଷରେ ଏଇ ସଂସ୍ଥାର ସାମ୍ୟ ଓ ମୈତ୍ରୀ ଆଦର୍ଶକୁ ବହୁଜନ ହିତାୟ ଓ ବହୁଜନ-ସୁଖାୟ କରି ତୋଳି ଧରିଥାନ୍ତି ।

ସମବାୟ ଶିକ୍ଷାକେନ୍ଦ୍ରରେ ଭୋଜିରେ ହିନ୍ଦୁ, ମୁସଲମାନ, ଓଡ଼ିଆ, ବଙ୍ଗାଳୀ, ବିହାରୀ ଆଦି ସବୁ ଶିକ୍ଷାର୍ଥୀଙ୍କର ସହଯୋଗ । ଫିଷ୍ଟଲାଗି ମାଂସ ଯୋଗାଇବା ବେପାରୀଜଣକ ମୁସଲମାନ । ଛଅ ସାତଟି ଜିଅନ୍ତା ଛେଳି ଘେନି ସେ ଆସିଥାଏ ବୋଧହୁଏ ଆମ ହଷ୍ଟେଲ୍‌ର ମୁସଲମାନ୍ ସୁପରିଣ୍ଟେଣ୍ଡେଣ୍ଟଙ୍କ ବରାଦ ଅନୁଯାୟୀ ।

କାରଣ ସେ ନିଜେ ଉପସ୍ଥିତ ରହି ଭୋଜିର ସବୁ ବ୍ୟବସ୍ଥା ଦେଖୁଥାନ୍ତି । ଟିକିକେ ସେ ରାଗନ୍ତି ପୁଣି ହସନ୍ତି । ତାଳପତ୍ର ତିଆରି ସିପାହି ଭଳି ସୁପରିଣ୍ଟେଣ୍ଡେଣ୍ଟ ଚେହେରାଟି ନକନକ ପାତଳା । ସେ ଦିନ ଆମ ଫିଷ୍ଟ୍ ପାଇଁ କେଉଁ ଖାସିଟାରୁ କେତେ ମାଂସ ବାହାରିବ ତାହା ତନଖି କରିବାକୁ ସେ ଖୁବ୍ ଉତ୍ସାହିତ ହୋଇ ପଡ଼ିଥାନ୍ତି । ତାହା ଭିତରେ ଆପଣା କାର୍ଯ୍ୟଦକ୍ଷତାର ପ୍ରମାଣ କରିବା ଅବଶ୍ୟ ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା ବୋଲି ଆଜି ଅନୁମାନ କରାଯାଇପାରେ ।

ଗୋଟି ଗୋଟି କରି ପ୍ରତି ଛେଳିର ପେଟପଟୁ ଦୁଇ ହାତରେ ଟେକିଧରି ସେ ଓଜନ କଲେ । ମତଲବ ସବୁରି ଆଗରେ ନିଜ ବାହାଦୁରି ପୁଣି ବିଚକ୍ଷଣତା ଦେଖାଇବା । ପ୍ରତ୍ୟେକ ଖାସିର ପଛ ଫଡ଼ିଆ ଓ ଆଗ ଫଡ଼ିଆର ମୂଳପଟ ନିଜ ଆଙ୍ଗୁଠିରେ ଚିପି କେତେ ମାଂସ ସେଠାରେ ରହିଛି, ତାହା ଅନୁମାନ କରି ମହାଖୁସିରେ ସେ ଆମ ସମସ୍ତଙ୍କୁ ଚାହୁଁଥାନ୍ତି । ସେତେବେଳେ ସେ ଖାସିଗୁଡ଼ିକଙ୍କର ଆଖିକୁ ଚାହିଁ କିନ୍ତୁ ମୋତେ ଟିକିଏ କେମିତି ଲାଗିଲା ! ସେମାନେ ତାଙ୍କର ଆଶୁ ପରିଣାମ ବୋଧହୁଏ ବୁଝି ପାରୁଛନ୍ତି । ଫାଶିଖୁଣ୍ଟକୁ ଯିବା ଆଗରୁ ମଣିଷମାରୁ ଆସାମୀ ଯେମିତି ଜାଣିପାରେ; କିନ୍ତୁ ଏହି ନିରାମିଷାଶୀ ପ୍ରାଣୀଗୁଡ଼ିକ ଅବା କେଉଁ ଦୋଷରୁ କାହାକୁ ମାରିଥିବା ଯୋଗୁଁ ଆଜି ଏ ଦଶା ଭୋଗିବାକୁ ଯାଉଛନ୍ତି !

ସେତିକିବେଳେ ଦୁଇଟା ଗୋଟାଏ ବୁଲାକୁକୁର ସବୁ କଥା ଜାଣିପାରି ଯେମିତି ଆସି ଲଙ୍ଗପଙ୍ଗ ହେଉଥାନ୍ତି ଅବା ! ଶେଷ ଆଡ଼କୁ ଛେଳିଟାର ଖଣ୍ଡେ ଅଧେ ଠେଙ୍ଗି ମିଳିଗଲେ ତାକୁ ଧରି ଦାନ୍ତରେ ରେକେଟିବା ପାଇଁ ।

ସେ ଦିନର ଦୃଶ୍ୟଟା ମନରେ ମୋର କେଉଁ ଅଚେତନ ଅବସ୍ଥାରେ ଟିପି କୁକୁରର ସ୍ମୃତିକୁ ଓଟାରି ଆଣିଥିଲା । ଆଉ ବନ୍ଧା ହୋଇଥିବା ଖାସିଟିର ଅସହାୟ ଆଖି ଯୋଡ଼ିକୁ ଚାହିଁ ଯେମିତି ମୋର ଅନ୍ତରକୁ ଦୁହିଁ ଗୋଟାଏ ବିଳାପ ଧ୍ୱନି ବାଜି ଉଠିଥିଲା । ସେହି ରାତ୍ରିରେ ସାବୁର ଅନ୍ତେବାସୀମାନଙ୍କ ସାଙ୍ଗରେ ବସି ଭୋଜି ଖାଇଲାବେଳେ ।

ସେଇ ପରିସ୍ଥିତିଟା ହିଁ ମୋର କଳ୍ପଲୋକରେ ତୁମୁଳ ପ୍ରଳୟ ସୃଷ୍ଟି କରି ପ୍ରାରମ୍ଭିକ ରୂପରେଖ ଘେନିଥିଲା କ୍ଷୁଦ୍ରଗଳ୍ପ 'ମାଂସର ବିଳାପ !'



# ସକଳତୀର୍ଥ ତୋ ଚରଣେ

ସେତେବେଳକୁ ମୋର ଜଣ କେତେ ପାଠକ ଜୁଟିଲେଣି । ତାଙ୍କ ଭିତରେ ମୋ ଲେଖା ବିଷୟରେ ଟିକିଏ ଅଧେ ବିଚାରଆଲୋଚନା ଆରମ୍ଭ ହେଲାଣି ମଧ । ସେଥି ସଙ୍ଗେ ବଢ଼ିଚାଲେ ମୋର ଲେଖିବା ସ୍ପୃହା । କ୍ରମେ ସେଇ ସ୍ପୃହା ଏକପ୍ରକାର ନିଶାରେ ପରିଣତ ହେବାକୁ ଉଦ୍ୟତ ହୋଇପଡ଼େ ।

ସେଇ ଲେଖିବା-ନିଶା, ପାଠକପ୍ରାଣ ସହିତ ଲେଖକ ପ୍ରାଣକୁ ମିଶାଇ ଦେବା, ପାଠକର ଚିନ୍ତାଧାରା ସହିତ ଲେଖକର ଚିନ୍ତାଧାରା ମଧରେ ଯେଉଁ ନିବିଡ଼ ଯୋଗସୂତ୍ର ସ୍ଥାପିତ, ତାହାକୁ ନିକଟରୁ ନିକଟତର ପୁଣି ନିକଟତମ କରିପାରିବାର ଚରମ ସାର୍ଥକତା—ମଣିଷ ଚିନ୍ତାର ଅତୀତ—ବର୍ତ୍ତମାନ—ଭବିଷ୍ୟତ ମଧରେ ଯେଉଁ ନିରବଚ୍ଛିନ୍ନ ଛନ୍ଦ ସାହିତ୍ୟର ପରମ ଧର୍ମ ହୋଇ ରହିଆସିଛି, ଏକ ଅଖଣ୍ଡ ସାମଞ୍ଜସ୍ୟ ସ୍ଥାପନ କରି । ସେଇ ଧର୍ମରେ ସର୍ବଧର୍ମ ତ୍ୟାଗ ସଙ୍ଗେ ଆପଣାକୁ ସମ୍ପୂର୍ଣ୍ଣରୂପେ ଉତ୍ସର୍ଗ କରିଦେବାର ପ୍ରାଣପଣ ପ୍ରୟାସ ।

ସେଥିଲାଗି କେତେକ ଆନୁଷଙ୍ଗିକ ଉପାଦାନ ମଧ ଉପହାସ୍ୟ ହୋଇପଡ଼ି ହାସ୍ୟରସର ଉଦ୍ରେକ କରିଥାଏ । କିଏ କଳିବ କେଉଁ ଆଦିମ କାଳରୁ ମଣିଷ ମନରେ ଅଙ୍କୁରିଲାଣି ଧର୍ମ । ପୁଣି ସେଇ ଧର୍ମ ସଙ୍ଗେ ଜଡ଼ିତ ହୋଇ ରହିଲାଣି ଅଫିମ ଗଞ୍ଜେଇ ମଦ ଧୂଆଁପତ୍ର ! ଦୁଇଟି ମଧରେ ସମ୍ପର୍କଟା ଏତେ ନିବିଡ଼ ପୁଣି ଏତେ ପ୍ରାଚୀନ ଯେ ଧର୍ମଟାକୁ ହିଁ ଶେଷରେ କାର୍ଲମାର୍କସ୍ କହିଗଲେ ମଣିଷର ଅହିଫେନ । ଆଉ ସାହିତ୍ୟ ହେଲା ଯେ ସବୁ ଧର୍ମପ୍ରକାଶର ମୌଳିକ ଭିତ୍ତି !

ମାଦକଦ୍ରବ୍ୟମାନଙ୍କର ଅବତାର ମଧ ଅନେକ । ଧୂଆଁପତ୍ରର ଯେମିତି ବିଡ଼ି ସିଗ୍ରେଟ୍ ଗୁଣ୍ଡି ଗୁଡ଼ାଖୁ ଚୂନପତ୍ର ଖଇନି ନାସ ଆଦି ଅନେକ ରୂପ, ଗଞ୍ଜେଇ ସେମିତି ଭାଙ୍ଗ ମୋଦକ ଚିଲମ ରୂପରେ, ଅଫିମ ଗୁଳି ରୂପରେ ଦେବଦେବୀଙ୍କୁ ସୁଦ୍ଧା ପୂଜା କରାଯାଏ ଆମ ଦେଶରେ ଓ ଧର୍ମରେ । ଭକ୍ତଗଣ ତା'ପରେ ସେବନ କରନ୍ତି ପ୍ରସାଦ । ଧୂଆଁପତ୍ରର କିନ୍ତୁ ଠାକୁରଙ୍କ

ସହିତ ପ୍ରାୟ କିଛି ହେଲେ ସମ୍ପର୍କ ନ ଥାଏ । କୀଟପତଙ୍ଗ ପଶୁପକ୍ଷୀ ପକ୍ଷରେ ସୁଦ୍ଧା ତାହା ଅସ୍ପୃଶ୍ୟ, କେବଳ ମନୁଷ୍ୟକୁ ଛାଡ଼ି । ସେଥିଲାଗି ତାହା ସବୁମନ୍ତେ ମାରାତ୍ମକ ବୋଲି ଟଲଷ୍ଟୟ ଓ ଗାନ୍ଧି ପ୍ରମୁଖଙ୍କ ଘୋଷଣା ଓ ତାଗିଦ ଉତ୍ତର ପୁରୁଷମାନଙ୍କ ପ୍ରତି । ଅଥଚ ନିଜେ ସେଇ ଟଲଷ୍ଟୟ ତାଗିଦ୍ ନ ମାନି ସୁଦ୍ଧା ବଡ଼ ହେଲେ ଆଉ ଦେଖାଇଗଲେ ଯେ ତାଗିଦ୍ ନ ମାନିଲେ ମଣିଷ ବଡ଼ ହୁଏ !

ଆମ ଗାଁରେ ଧୂଆଁପତ୍ର ଯେପରି ସାର୍ବଜନୀନ ଓ ସର୍ବକାଳୀନ, ଗଞ୍ଜେଇ ଅଫିମ ସେପରି ନୁହେଁ ଅବଶ୍ୟ; କିନ୍ତୁ ପୂଜାପାର୍ବଣ ମେଳାମଉଛବରେ ପିଲାଙ୍କ ଭିତରେ ସୁଦ୍ଧା ଭାଙ୍ଗ ପାଚକ ହୁଏ, ବଡ଼ଙ୍କଠାରୁ ଦେଖାଦେଖି । ପୁଣି ଗାଁ ପାଖରେ ଆମର ଶିବତୀର୍ଥ ଭୁବନେଶ୍ୱର । ଭୋଳାନାଥ ଶିବଙ୍କର ତ ଗଞ୍ଜେଇ ହେଲା କୁଆଡ଼େ ଚିର ପ୍ରିୟ ବସ୍ତୁ ! ପୁରୀ ବନାରସ ଆଦି କେଉଁ ତୀର୍ଥ ସ୍ଥାନରେ ତା'ର ବହୁଳ ପ୍ରଚଳନ ନାହିଁକି ! ସବୁ ତୀର୍ଥ ଯେ ସାଧୁ ସନ୍ଥ ଯୋଗୀ ସନ୍ନ୍ୟାସୀମାନଙ୍କ ସାଧନ କ୍ଷେତ୍ର । ପୁଣି ସେ ସବୁ ପୁଣ୍ୟ ସ୍ଥାନରେ ଏଇ ନିରାମିଷ ଶାକଜାତୀୟ ପଦାର୍ଥର ଯେଭଳି ବହୁଳ ପ୍ରଚଳନ, ତୀର୍ଥଯାତ୍ରୀମାନଙ୍କୁ ଦେଖି ତ୍ରିନାଥମେଳା ଓ ଭଜନରତ ଗ୍ରାମବାସୀ ଶାକଜାତୀୟ ଧୂଆଁପତ୍ର ବା ଗଞ୍ଜେଇ ଅଫିମକୁ ପ୍ରସାଦରୂପେ ସେବନ କରି ବିଚାରିବା ବିଚିତ୍ର ନୁହେଁ—ସକଳତୀର୍ଥ ତୋ ଚରଣେ—ବଦ୍ରିକା ଯିବି କି କାରଣେ !

ତ୍ୟାଗୀ ମହାପୁରୁଷମାନଙ୍କ ସହିତ ଗଞ୍ଜେଇର ଏତେ ନିବିଡ଼ ସମ୍ପର୍କ ଯେ କେଉଁ ସୂତ୍ରରୁ ପ୍ରତିଷ୍ଠିତ ହୁଏ, କିଏ ଜାଣେ ! ଉତ୍କଳମଣି ଗୋପବନ୍ଧୁଙ୍କ ମୁହଁରୁ ଏ ସମ୍ପର୍କରେ ଗୋଟିଏ କୌତୁକ କଥା ଶୁଣିଥିଲି । ପୁରୀ ପଥୁରିଆ ସାହିରେ ସେତେବେଳେ 'ସମାଜ' ଅଫିସଟି ଥାଏ । ଦୁଇଜଣ ସନ୍ନ୍ୟାସୀ ଗାନ୍ଧୀଙ୍କ ବିଷୟରେ କଥାବାର୍ତ୍ତା କରୁଥିବାର ସେ ବର୍ଣ୍ଣନା କଲେ । ଉଭୟ ସନ୍ନ୍ୟାସୀ ଚିଲମ ଅଦଳ ବଦଳ କରି ଧୂଆଁ ଛାଡୁଥାନ୍ତି ।

ଜଣେ ସନ୍ନ୍ୟାସୀ କହୁଥାନ୍ତି—ଗାନ୍ଧୀ ତ ଘୋର ସଂସାରୀ, ତାଙ୍କର ସ୍ତ୍ରୀ ପୁତ୍ର ପରିବାର ଅନେକ । ତାଙ୍କୁ ଲୋକେ ତେବେ ତ୍ୟାଗୀ ସନ୍ନ୍ୟାସୀ ମହାତ୍ମା କହନ୍ତି କାହିଁକି ?

ଅନ୍ୟଜଣକ ତାଚ୍ଛଲ୍ୟ କରି ଉତ୍ତର ଦିଅନ୍ତି—ଆରେ ! ତୁମେ କ'ଣ ଜାଣିନ କି ? ସେ ଆମ ତୁମଠାରୁ ପରା ଢେର ବଡ଼ ସନ୍ନ୍ୟାସୀ, ତାଙ୍କ ଚିଲମ ଆମ ଚିଲମ ପରି ଆଙ୍ଗୁଠି ଲମ୍ବର ନୁହେଁ ମ, ତାହା ଏତେ ବଡ଼—କହି ଆପଣା ହାତର କହୁଣି ପର୍ଯ୍ୟନ୍ତ ଦେଖାଇ ଦିଅନ୍ତି ।

କହୁ କହୁ ଗୋପବନ୍ଧୁଙ୍କ ପ୍ରଗାଢ଼ ଦାଢ଼ି ଭିତରୁ ସୁନ୍ଦର ସୁଶ୍ରୀ ଦାନ୍ତଗୁଡ଼ିକରେ ଶିଶୁସୁଲଭ ଅମାୟିକ ଅକୁଣ୍ଠ ହସ ଯେମିତି ଉଚ୍ଛୁଳି ପଡ଼େ । ଗଞ୍ଜେଇକୁ ଧୂମ ରୂପେ ସେବନ କରିବାଟା କିନ୍ତୁ ଉଚ୍ଚବଂଶୀୟ ସମାଜରେ ଯେଭଳି ନିନ୍ଦନୀୟ, ଭାଙ୍ଗ ରୂପେ ପାନ କରିବା ସେଇପରି ଚଳନୀୟ; କାରଣଟା ତା'ର କ'ଣ—ସେତେବେଳେ କି ଆଜିସୁଦ୍ଧା ମୁଁ ସମଝି ପାରିନି କିମ୍ବା ସମଝିବାକୁ ଚେଷ୍ଟା କରିନି ।

ସେ ଯାହାହେଉ, ଭାଙ୍ଗପାଚକ ଥିଲା ସେତେବେଳେ ଆବାଳବୃଦ୍ଧବନିତା ସବୁରି ପକ୍ଷରେ ସେବ୍ୟ । ବିଶେଷକରି ଭକ୍ତ ଜାତିର ଲୋକଙ୍କ ଭିତରେ ।

ଜନ୍ତାଳ ମେଳା ମଉଛବରେ କିଶୋର ପିଲାଙ୍କ ଭିତରେ ସୁଦ୍ଧା ମଝିରେ ମଝିରେ ଭାଙ୍ଗପାଚକ ହୁଏ । ମୋର ମାମୁପୁଅ ଭାଇ ଶ୍ରୀନିବାସ ଓ ଶ୍ରୀକର ଆଦି ଭୁବନେଶ୍ୱର ମଠକୁ ତ ବରାବର ଯିବା ଆସିବା କରନ୍ତି । ପୁରୀ, ଗୟା, ବାରାଣସୀ ଆଦି ବିଷ୍ଣୁତୀର୍ଥ ଓ ଶିବତୀର୍ଥମାନଙ୍କ ଭଳି ଭୁବନେଶ୍ୱରରେ ମଧ୍ୟ ଭାଙ୍ଗପାଚକ ଅଫିମ ଗଞ୍ଜେଇର ପ୍ରଚଳନ ଯଥେଷ୍ଟ । ସ୍ୱୟଂ ମଙ୍ଗଳମୟ ମହାଦେବ ଶିବଙ୍କର ତାହା ଚିରପ୍ରିୟ ଭୋଗ୍ୟବସ୍ତୁ ହୋଇଥିବା ହେତୁ ସେ ଭୋଳାନାଥ ନାମରେ ବିଖ୍ୟାତ । ତାଙ୍କ ଦେଖାଦେଖି ପୁଣି ବିଷ୍ଣୁ ମଧ୍ୟ । ଜଣେ ଶ୍ମଶାନବାସୀ ହେଲେ ତ ଅନ୍ୟ ଜଣଙ୍କର ଜଳଧି ଭିତରେ ଅନନ୍ତ ଶୟନ ! ଯେହେତୁ ତାଙ୍କର

ଏକ ଭାର୍ଯ୍ୟା ପ୍ରକୃତିମୁଖରା ଦ୍ୱିତୀୟା ସା ଚଞ୍ଚଳା
ପୁତ୍ରସ୍ତ୍ୟେକୋ ତ୍ରିଭୁବନବିଜୟୀ ମନ୍ମଥୋ ଦୁର୍ନିବାରଃ

ଜଣେ ଧର୍ମପତ୍ନୀ ତ ସରସ୍ୱତୀ ସବୁବେଳେ ମୁଖରା କଳିହୁଡ଼ୀ ! ଆଉ ଜଣକ ମହାଲକ୍ଷ୍ମୀ ଯେ କେତେବେଳେ ବ୍ରିଟିଶ ଏମ୍ପାୟାରକୁ ଛାରଖାର କରି ପୁଣି ଆମେରିକା ଡୋଲାର—ସାମ୍ରାଜ୍ୟ ଗଢୁଛନ୍ତି ଚାହୁଁ ଚାହୁଁ । ଜଣେ ପୁଅ ମନ୍ମଥ-କନ୍ଦର୍ପ ଯେ, ତାହା ଭଳି ଅବାଧ ଅସଂଯତ ଅଶ୍ଳୀଳ ତ୍ରିଭୁବନ ବିଜୟୀ ଆଉ କେହିହେଲେ ନାହିଁ । ଅତଏବ ସେ ବିଚାରା ସ୍ୱୟଂ ପୃଥିବୀ ତ୍ୟାଗୀ ହୋଇ ଓ ସର୍ପଙ୍କ ଭିତରେ ଶେଷ ଶଯ୍ୟା ରଚନାକରି ପୁଣି,

ସ୍ମାରଂ ସ୍ମାରଂ ସ୍ୱଗୃହଚରିତଂ ଦାରୁଭୂତୋ ମୁରାରି

ନିଜ ଘର କଥା ଭାବିଭାବିକା ଶେଷକୁ କାଠ ପାଲଟିଯାଇ ଦାରୁବ୍ରହ୍ମ ରୂପେ ପୁରୀ ମନ୍ଦିରରେ ପୂଜା ପାଉଛନ୍ତି ସିନା ! ବୋଧହୁଏ ଚତୁର୍ମୁଖଙ୍କୁ ଛାଡ଼ି ସ୍ୱୟଂ ବିଷ୍ଣୁ ଓ ମହେଶ୍ୱରଙ୍କର ଏହିଭଳି ଅନ୍ତିମ ଦୁର୍ଦ୍ଦଶା ଯୋଗୁଁ ତାଙ୍କର ତୀର୍ଥସ୍ଥାନମାନଙ୍କରେ ପୁଣି ତାଙ୍କରି ପୂଜକ ଭକ୍ତମାନଙ୍କ ମଧ୍ୟରେ ଗଞ୍ଜିକା ଓ ଅହିଫେନକୁ ଆଦର ମିଳେ ଅଧିକ । ଯାତ୍ରା ପର୍ବରେ ଅବଶ୍ୟ ତାହାର ବ୍ୟାପକତା ବେଶି ହେବାଟା ସୁସ୍ପଷ୍ଟ ! ସେତେବେଳେ ତାହା ସ୍ୱୟଂ ଠାକୁରଙ୍କୁ ପୂଜାଉତ୍ସର୍ଗ କରାଯାଇ ରୀତିମତ ପବିତ୍ର ପ୍ରସାଦ ରୂପରେ ସେବ୍ୟ । କାହାରି ହେଲେ ତହିଁରେ କିଛି ଆପତ୍ତି ଅଭିଯୋଗ କିମ୍ବା ବାଦ ପ୍ରତିବାଦ କରିବା ହେଲା ସ୍ୱୟଂ ଭଗବାନ୍‌ଙ୍କ ପ୍ରତି ଦ୍ରୋହାଚାର ଓ ବିରୁଦ୍ଧାଚରଣ !

ଏପରିକି ବ୍ରାହ୍ମଣମାନଙ୍କ ମଧ୍ୟରେ ଧୂମପାନ ନିଷିଦ୍ଧ ଥିଲେ ମଧ୍ୟ ଭଜନ ଟୁଙ୍ଗିରେ ବସି ଆମ ବିଶିକକେଇ ସବୁ ଜାତିର ଲୋକଙ୍କ ମଧ୍ୟରେ ଚିଲମ ହସ୍ତାନ୍ତର କରି ପ୍ରସାଦ ସେବନ ପରେ ଖୁବ୍ ଜୋର୍‌ରେ ଖଞ୍ଜଣି ପିଟି ମୁଣ୍ଡ ଟୁଙ୍ଗାରି 'ଶରୀର ଭେଦ ଭଜନ' ବୋଲନ୍ତି—
''ବାୟାମନ, ମିଛ ମାୟାରେ କିପାଁ ହେଉ ଲଡ଼ବଡ଼, ଲଡ଼ବଡ଼ , ଲଡ଼ବଡ଼, ଲଡ଼ବଡ଼ ।''
ବ୍ୟାକରଣରେ 'ଲଡ଼ବଡ଼'ଟା ଅବ୍ୟୟ ପଦ ବୋଧହୁଏ । ବିଶିକକେଇ ମୁଣ୍ଡ ହଲାଇ ଶବ୍ଦଟାର ପୁନଃ ପୁନରାବୃତ୍ତି କଲାବେଳେ ମଧ୍ୟ ବିଶ୍ୱାସ ଜନ୍ମେ, ପ୍ରକୃତରେ ସେ ଶବ୍ଦଟାର ବ୍ୟୟ ନାହିଁ ପରା !

ଭଜନଟିର ମର୍ମ ହେଲା—ସଂସାରରେ ମଣିଷ ଜନ୍ମି ଖାଲି ବୃଥାଟାରେ ଘାଣ୍ଟିହୋଇ ଶେଷକୁ ମରିଯାଏ ସିନା, ତହୁଁ ଜାତି କୁଟୁମ୍ବ ବନ୍ଧୁବାନ୍ଧବ ଆସି ବାରଦିନ ପର୍ଯ୍ୟନ୍ତ ଶୁଦ୍ଧ ଶ୍ରାଦ୍ଧ

କରି ଶେଷରେ ଯେଝା ଘରକୁ ଯିବା ପାଇଁ ବାହାରନ୍ତି—''ଧଡ଼ପଡ଼, ଧଡ଼ପଡ଼, ଧଡ଼ପଡ଼, ଧଡ଼ପଡ଼ !—ଓଡ଼ିଶାର ଗାଁଗଣ୍ଡା ଅନ୍ଧିସନ୍ଧିରେ ଏମିତି ମନବୋଧ ଚଉତିଶାର ଦର୍ଶନ । ତହୁଁ ଖାଲି କଳାଶ୍ରୀମୁଖଙ୍କ ଦର୍ଶନ ମିଳିଲେ ସବୁ ମିଳିଗଲା—''ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ—ଘଟ ଛୁଟିଲେ ସର୍ବେ ବୋଲିବେ ଭୂତ ।'' ଅର୍ଥାତ୍ ଘରଦ୍ୱାର ଧନସମ୍ପତ୍ତି ଯେତେ କମାଅ ପଛେ, ମଲାପରେ ତେଣିକି ତ ଆଉ ତୁ ମଣିଷ ନୋହୁ, ଭୂତ ! ତେଣୁ ସବୁ ଛାଡ଼ି ଖାଲି କଳାଶ୍ରୀମୁଖଙ୍କ ପାଖରେ ଦେହ ମନପ୍ରାଣ ସବୁ ସମର୍ପି ଦେ ।

ବର୍ଣ୍ଣାଡ଼ ଶ'ଙ୍କ ମତରେ ଯେମିତି ଆମ ସାମ୍ବାଦିକତାର ଶତକଡ଼ା ଅନେଶତ ଭାଗ ମଦ୍ୟରୁ ଜନ୍ମଲାଭ କରେ—ଆମ ଧର୍ମ ଓ ସାହିତ୍ୟରୁ ଅଣୀଭାଗ ସେମିତି ଉତ୍ପନ୍ନ କରିଥାଏ ଗଞ୍ଜା ପୁଣି ଅହିଫେନ । ଆହୁରି ଆମ ରାଜନୀତିର ବହୁଳାଂଶ ଯେ କେଉଁ ନିଶାଦ୍ରବ୍ୟରୁ ଉଦ୍ଭବ ନ ଘଟେ !

ପୁରୀରେ ଥରେ ଆମ ମଦ୍ୟପ ପଡ଼ୋଶୀଙ୍କୁ ବାପା ପଚାରିଥିଲେ, ''ଆଚ୍ଛା ବାବୁ ! ଆପଣ ଦିନରାତି ସବୁବେଳେ ଏମିତି ନିଶାରେ ରହୁଥାନ୍ତି କାହିଁକି ?''

''ଆପଣ କ'ଣ ଜାଣନ୍ତିନି କି ମୁକ୍ତାରବାବୁ ! ସେଥିରୁ ଟୋପାଏ ଢୋକି ଦେଲେ ପରା ଷଣ୍ଢଗୁଡ଼ା ଛେଳି ଭଳି ମାଲୁମ୍ ହୁଅନ୍ତି ।''

ପିଲାଦିନେ ଆମର ଅବଶ୍ୟ ଷଣ୍ଢକୁ ଛେଳି ପରି ଦେଖିବା କି ମଣିଷକୁ ମେଣ୍ଢାପରି ଦେଖିବା ଆଶାରେ ଭାଙ୍ଗପାଚକ ହୁଏ ନାହିଁ । ହୁଏ ଖାଲି ଟିକିଏ ଫୂର୍ତ୍ତି ଫାଜିଲାମି କରିବା ପାଇଁ ।

ସେଥର ଠିକ୍ ଚୈତ୍ର କି ବୈଶାଖ ମାସ, ମନେ ନାହିଁ । ପାଚକ ପାଣି ପିଇସାରି ପିଲାଯାକ ଚାଲିଲୁଁ ତୋଟାକୁ ମହୁ ଭାଙ୍ଗିବା ପାଇଁ । ସୁଲୁସୁଲିଆ ଚଇତି ବାଆଟା ଗାଁଆ ମୁଣ୍ଡ ସଡ଼କ ଧୂଳିରେ ଏକ ଖଣ୍ଡିଆଭୂତ ସୃଷ୍ଟି କରିଥାଏ । କେତେ ଡାଙ୍ଗ ଶୁଖିଲାପତ୍ର ଗୋଟାଇ ନେଇ ଚାହୁଁ ଚାହୁଁ ଘୂରି ଘୂରିକା ପୁଣି ହିଡ଼ବିଲ ଡେଇଁ ଡେଇଁକା ସେ ସାତକାବାଦତୋଟା ତଳେ କାହିଁ ଅନ୍ତର୍ଦ୍ଧାନ ହୋଇଯାଏ ।

ଆମ ଗୋଡ଼ଗୁଡ଼ାକ ଯେମିତି ଅବା ସେଇ ଖଣ୍ଡିଆଭୂତ ପଛେ ପଛେ ହିଡ଼ ବାଟରେ ଛାଏଁ ଦଉଡ଼ିଯାଏ । ହିଡ଼ପରେ କେତେ ହିଡ଼ ଡେଇଁ ଶେଷରେ ଆମେ ପହଞ୍ଚିଯାଉଁ ବାଆବଙ୍କା ଆୟତୋଟାରେ ।



# ମଧୁ ବାତାଋତାୟତେ

ସବୁବେଳେ ସେଠାରେ ବାଆ ଖେଳି ବୁଲୁଥିବାରୁ ନାଆଁଟି ବୋଧହୁଏ ତା'ର 'ବାଆବଙ୍କା' । ତୋଟାଭିତରେ ଗୋଟିଏ କୁଡ଼ିଆ—ଜଣେ ବାବାଜି କୁଆଡ଼େ ସେଠି କୁଡ଼ିଆ କରି ରହୁଥିଲେ । ପୁଣି ଗୋଟିଏ ସାନ ପୋଖରୀ ବି ଅଛି । ବେଶ୍ ନିଛାଟିଆ, ଭାରି ଭଲ ଲାଗେ ମତେ ସେଠାରେ ।

ତୋଟା ଚାରିପଟଯାକ ଖାଲି ବିଲ ପରେ ବିଲ ଲମ୍ବିଯାଇଛି । ଧାନକଟା ସରି କେଉଁଠି ଠାଏ ଦୁଇଠା ମୁଗ କିଆରି ହୋଇଛି । ବିଲ ଶେଷରେ ଗଛ ଗହଳି ଭିତରେ ଖଣ୍ଡେ ଖଣ୍ଡେ ଚାଳ ଛପର ଘର । ଶିଶୋଲ, ବୋଧଖଣ୍ଡି, ସାତକାବାଦ, ତେଲିଚୌକା, ବାଗିଜଙ୍ଗ, ସାହାଣୀ ସାହି, ଫକିରପଡ଼ା—ଏମିତି କେତେ ଯେ ସାନ ସାନ ଗାଁ ଦୂରନିକଟ ଗଛ ଗହଳିରେ ଲୁଚକାଳି ଖେଳନ୍ତି ! ଆମ ଗାଁ ନିଶ୍ଚୟ ସେସବୁ ତୁଳନାରେ ବଡ଼ । ସେଗୁଡ଼ିକ ଭିତରୁ ଅନେକ ହେଲା ଆମ ଗାଁଆର ପଡ଼ା ମାତ୍ର ।

ସୁଲୁସୁଲିଆ ଦକ୍ଷିଣା ପବନରେ ସବୁରି ଡୋଳାଗୁଡ଼ିକ ବେଶ୍ ନାଳିବୁଲି ଆସିଲାଣି ପାଚକ ପିଆ ହୋଇଥିବାର—"ଆମର ନେତା ଶିରୁଭାଇନା—ଭୁଲୋ ମତ୍ । ଭୁଲୋ ମତ୍ !" କେତେବେଳେ ଗୋଟାଏ ଗଙ୍କା ଆମ୍ବ ଗଛରୁ ଡାଳିମହୁ ଖଣ୍ଡେ ଧରି ଆସି ମୋ ପାଖରେ ହାଜର । କି ମଜା !—ମହୁଫେଣା ଖଣ୍ଡେ ପାଟିରେ ପକାଇ ଜିଭରେ ସାମାନ୍ୟ ଚାପିଦେବା ମାତ୍ର ରସ ଗଳିତମ୍ ଥପମ୍ ଥପା ! ଏଇ ଅବସରରେ ଭିକାରିଟା କେତେବେଳେ ନିଜ ବାହାଦୁରି ଦେଖାଇବାକୁ ଯାଇ ଗୋଟିଏ ଗଙ୍କା ଆମ୍ବଗଛରେ ଚଢ଼ିଗଲାଣି । ତେଣିକି କାହାରି ହେଲେ ନଜର ନାହିଁ । ନଜର ପଡ଼େ, ଯେତେବେଳେ ଶୁଣାଯାଏ ଗୋଟାଏ ବିକଟ ବିକଳ ଚିତ୍କାର ।

କିଏ ଭିକାରି ! ହେଲା କ'ଣ କି ?

କିଛି ହେଲେ ନାହିଁ ଜବାବ ।

ଖାଲି ସେହି ମୁଖ ବ୍ୟାଦାନ କରି କରୁଣ ଆର୍ତ୍ତନାଦ—ଏଁ, ଏଁ !

ଡଲୁ ଶିରୁଭାଇନା ହୁକୁମ୍ କଲେ, କିରେ ଓହ୍ଲେଇ ଆ ଭିକାରି, ହେଲା କ'ଣ ତୋ'ର ?

ଭିକାରି ଆସ୍ତେ ଆସ୍ତେ ଗଛରୁ ଖସି ଆସେ । ତାହା ପରେ ମୋ ଆଗରେ ଠିଆ ହୋଇ ସେହି ବିକଟ ଲହ ଲହ ଜିହ୍ୱା ଦେଖାଇ ଚିତ୍କାର କରେ—ଏଁ—ଏଁ !

ଭୟରେ ଛାତିଟା ମୋର ଧଡ଼କିନା ପଡ଼େ—"ଭିକାରିଟା କେବେ ତ ଭାଙ୍ଗ ଖାଏନି, ଆଜି ତାକୁ ଦେଲ କାହିଁକି ଭଲା, ଶିରୁଭାଇନା ? ତା' ଜିଭଟା ଆଉ କ'ଣ ପାଟି

ଭିତରକୁ ପଶିପାରିବ ?'' ଦୁଃଖ, ଲଜ୍ଜା, ଅନୁତାପରେ ମନଟା ମୋର କ୍ଷୁବ୍‌ଧ ଭରାକ୍ରାନ୍ତ ହୋଇପଡ଼େ ।

''ଦେଉଥିଲା ସେଇଟାକୁ କିଏ କି, ଆପେ ଆସି ନିକୁଟି ସିକୁଟି ହେଲାରୁ କୁଣ୍ଡିଧୁଆ ପାଣି ଚଳାଏ ତାକୁ ଦେଇଛି ସିନା, ଟିକିଏ ସତାର କର ସମସ୍ତେ ! ଗୋଟିଏ ବ୍ରହ୍ମ ଚାପୁଡ଼ାରେ ସବୁ ପୁଣି ସଜାଡ଼ି ହୋଇଯିବ ଯେ''— ଶିରୁଭାଇନା ମନ୍ତବ୍ୟ ଦିଅନ୍ତି ।

ବିରକ୍ତ ହୋଇ ପରମାନନ୍ଦ ଏଥର ତାକୁ ଆକଟ କରେ—''କି'ରେ ଭିକାରି ! ମହୁଖିଆ କେମିତି ମଜା ?''

ମୁକୁନ୍ଦ କହେ, ''ସେ ତ ଆଗ କରି ବାହାଦୁରିଟା ଆପେ ନେବ ବୋଲି କାହାକୁ ନ କହି ଚୁପ୍‌ଚାପ୍ ଗଛ ଉପରେ ଚଢ଼ିଗଲା ସିନା, ହେଲେ ପୁଅ କିନ୍ତୁ ବିଛାମନ୍ତ୍ର ନ ଶିଖି ସାପ ଗାତରେ ହାତ ପୂରାଇ ଦେଇଛି । ଏବେ ପାଉଥା ଫଳ, ଖାଉଥା ମହୁ !''

ମୋତେ ଏ ପରିହାସ ଆଦୌ ସୁଖ ଲାଗୁ ନଥାଏ । ଭିକାରି ବିଚରାର ହେଇଛି କ'ଣ ନ ବୁଝି ନ ପଚାରି ଏମିତି ତାକୁ ଆକଟ କରିବା ନିଷ୍ଠୁରତା ବୋଲି ବନ୍ଧୁମାନଙ୍କ ବିରୋଧରେ ମୁଁ ଅଭିଯୋଗ କରେଁ । ଭିକାରି ପାଖକୁ ଯାଇ ଖୁବ୍ କଅଁଳ ଦରଦଭରା ସ୍ୱରରେ ପଚାରିଲି, ''କ'ଣ ହେଲା କି ଭିକାରି ?''

ଭିକାରି ବିଚରା ତ କିଛି ହେଲେ ଶବ୍ଦ ଉଚ୍ଚାରଣ କରିବା ଅବସ୍ଥାରେ ନ ଥାଏ । କିନ୍ତୁ ତା'ର ମୁଖବ୍ୟାଦାନ ମଧ୍ୟରେ ଆମୂଳଚୂଳ ଜିହ୍ୱାଟିର ଦୃଶ୍ୟ ଏତେ ସୁସ୍ପଷ୍ଟ ସ୍ଫୁଟି ହୋଇ ରହିଛି ଯେ, ଆଜି ମନେହୁଏ, ରୋଗୀର ଘଣ୍ଟିକା ଦେଖିବାକୁ ଉଦ୍ୟତ ଡାକ୍ତରଙ୍କ ପକ୍ଷରେ ଭିକାରିକୁ ପରୀକ୍ଷା କରିବାକୁ ସେତେବେଳେ ଆଦୌ ଅସୁବିଧା ହୁଅନ୍ତା ନାହିଁ । ଅଥବା ''ଏଁ—ଏଁ'' କରିବାକୁ ମଧ ପରାମର୍ଶ ଦେବାକୁ ପଡ଼ନ୍ତା ନାହିଁ । ସେ ପର୍ଯ୍ୟନ୍ତ ଅବଶ୍ୟ କେହି ଡାକ୍ତର ମୋ ଆଖିଆଗରେ କିମ୍ୱା ମନଭିତରେ ଉଦିତ ହୋଇ ନ ଥିଲେ । ମାତ୍ର ଭିକାରିର ମୁହଁକୁ ଚାହିଁ ମୋର ମହା ଭୟ ଜାତ ହେଲା—ହୁଏତ ଆଉ କେବେହେଲେ ସେ ଭଲହେବ ନାହିଁ ! ସବୁ ଦିନ ପାଇଁ ଜିଭଟା ତା'ର ଏମିତି ରକ୍ତପାୟିନୀ, ନୃମୁଣ୍ଡମାଳିନୀ କାଳିଠାକୁରାଣୀଙ୍କ ବିକଟମୁହଁ ଭଳି ରହିଗଲା କି ! ସମସ୍ତେ ତାଟକା ! କେହି କେହି ହେଲେ ଭିକାରିର ଏଇ ଅଦ୍ଭୁତ ରୋଗର ଡାଏଗ୍ନୋସିସ କରିପାରୁ ନ ଥାନ୍ତି ।

ସାହସୀ ଶିରୁଭାଇନା କିନ୍ତୁ ଭିକାରି ତୋଟିରେ ହାତ ପୂରାଇଦେଲେ ଚଟ୍‌କରି । ତା' ଭିତରୁ ଖଣ୍ଡେ ଅର୍ଦ୍ଧଭକ୍ଷ ମହୁଫେଣା ଆବିଷ୍କାର କରି ସମସ୍ତଙ୍କୁ ଦେଖାଇଲେ—ଦେଖ, ଦେଖ, ଚୋର କିମିତି ଧରାପଡ଼େ ! ଆହା ବିଚରା ! ସମସ୍ତଙ୍କୁ ଲୁଚାଇ ପ୍ରାଣବିକଳରେ ମହୁଫେଣା ଖଣ୍ଡେ ପାଟିକି ପକେଇଦେଲା ସିନା, ତେଣିକି ଆଉ ଯାଏ କୁଆଡ଼େ ? ସାରୁ ଭିତରେ ମାରୁ ଥିବାର ତାକୁ କ'ଣ ଜଣାଥିଲା କି ?

ତହୁଁ ଭିକାରିର ତୋଟି ଭିତରୁ ଆବିଷ୍କାର କରିଥିବା ଛୋଟ ମହୁଫେଣାଖଣ୍ଡିକୁ ସବୁରି ଆଗରେ ଧରି ଶିରୁଭାଇନା କହନ୍ତି—''ଦେଖୁଛଟି ଏଇ ମହୁମାଛିକି ? ପୁଣି ତା'ର ଏଇ

ଦାଢ଼ୁଆ ନାହୁଡ଼ଟାକୁ ? ତା'ରି ଯୋଗୁଁ ସିନା ଫେଣାଖଣ୍ଡ ପାଟିରେ ଅଟକି ପେଟଭିତରକୁ ଯାଇ ପାରିଲା ନି ବିଚରାର ! ହଁ ଦେଖ, ଦେଖ ତା'ର ଏଇ ଢଳଢଳ ଆଖି ଯୋଡ଼ାକୁ, ଆଉ ତା'ର ଗୋଢିଆ ମୁହଁଟାକୁ—ଯହିଁରେ ବିଚରା ଭିକାରିର ଠିକ୍ ଘଣ୍ଟିକାକୁ ସେ ଲାଖକରି ବସେଇଛି ଛୋଟ । ସତଟା କେବେହେଲେ ଭଲା ଲୁଚିଗଲାଣି କି ? ଖାଇଲୁ ତ ଖାଇଲୁ—ଏମିତି ଚୋରେଇ ଖାଇଲୁ କାହିଁକି ଭଲାରେ ଭିକାରି !

କହିସାରି ଜଅଁଳାବାଛୁରୀର ମୁହଁ ମେଲାକରି ଓ ଜିଭଟାକୁ ତା'ର ଓଟାରି ଧରି ପାଟି ଭିତରେ ଯେମିତି ଭାତ ତୋରାଣି ଢଳାହୁଏ, ଭିକାରିର ଥୋମଣିକୁ ସେମିତି ଫିଟାଇ ଶିରୁଭାଇନା ଆମ ସମସ୍ତଙ୍କୁ ଦେଖାନ୍ତି—ଦେଖ, ଦେଖ ? ଘଣ୍ଟିକାଟା ତା'ର ବେଙ୍ଗପରି ଫୁଲିଚି କେମିତି ।

ସେଇ ଦିନ ବୋଧହୁଏ ମନେ ମନେ ଆଉ କେବେହେଲେ ଭାଙ୍ଗ ଖାଇବିନି ବୋଲି ମୁଁ ହଲପ ଘେନିଥିଲି । କାରଣ ସେଇଥିପାଇଁ ସିନା ଭିକାରି ବିଚରାର ଏତେ ବଡ଼ ଦୁର୍ଦ୍ଦଶା । ମାତ୍ର ଭୁଲାମନ ପୁଣି ଭୁଲିଯାଏ ସବୁ ପ୍ରତିଜ୍ଞା ପାସୋରି ଦେଲାଭଳି ।

ମୋର ଭାଙ୍ଗ ଖାଇବା ପୁଣି ଅନ୍ୟକୁ ଖୁଆଇବା ପ୍ରସଙ୍ଗରେ ଗୋଟିଏ ନଗଦ ଘଟଣା ଏଠାରେ ଉଲ୍ଲେଖ କରିବା ସମୀଚୀନ ମନେ କରେଁ—'ଡଗର' ପତ୍ରିକାରେ ପୂର୍ବରୁ 'କଳନା' ଭଳି ମୋର ଆତ୍ମଜୀବନୀ ଧାରାବାହିକ ପ୍ରକାଶ ପାଉଥିବା ବେଳେ ପାଠକମାନଙ୍କ ପକ୍ଷରୁ ମିଳିଥିବା କେତେକ ପ୍ରଶଂସାପତ୍ର ମଧ ଛାପା ହୋଇଥାଏ । ସେଥିପ୍ରତି ଦୃଷ୍ଟି ଆକୃଷ୍ଟ ହୁଏ ଭୁବନେଶ୍ୱର ଗୋପବନ୍ଧୁ ନଗରରେ ପ୍ରତିଷ୍ଠିତ 'ସାମନ୍ତ ଚନ୍ଦ୍ରଶେଖର ସ୍ମୃତି ପରିଷଦର' ସମ୍ପାଦକ ଓ ଯୁବକ ଲେଖକ ସମ୍ମେଳନର କବି ଶ୍ରୀ ଚକ୍ରପାଣି ଶତପଥୀଙ୍କର । ସେ ମୋର ଜାତକ ଟିପ୍‌ପଣୀ ମଗାଇ ନେଇ ମୋ ପୂର୍ବଜନ୍ମର କେତେକ ଘଟଣା ଗଣନା କରିବାକୁ ମଧ ଉତ୍ସାହିତ ହୁଅନ୍ତି ଖୋଦ୍ 'ଭୃଗୁସଂହିତା' ଅନୁଯାୟୀ । ଇହ ଜନ୍ମରେ ମୋ ଜାତକରୁ ଫଳାଫଳ ଉଲ୍ଲେଖ କରିସାରି ମୋ ପୂର୍ବଜନ୍ମର ଏକ ଜ୍ଞାତବ୍ୟ ଘଟଣା ଭୃଗୁସଂହିତାରୁ ଉଦ୍ଧାର କରି ସେ ଲେଖିଛନ୍ତି—

''ହେ ପୁତ୍ର ! ଏହି ଜୀବ ପୂର୍ବଜନ୍ମରେ ବୃନ୍ଦାବନରେ ମନ୍ଦିରର ଜଣେ ପ୍ରଧାନ ପୂଜକ ଥିଲେ । ଥରେ ଜଣେ ଧନବାନ୍ ଯାତ୍ରୀକୁ ଭାଙ୍ଗପିଆଇ ଦେଇ ତାହାର ସମସ୍ତ ଧନ ଅପହରଣ କରିନେବା ଫଳରେ ସେ ଅଭିଶାପ ଦେଲା—ତୋର ସାଂସାରିକ ସୁଖ ନ୍ୟୁନ ହେଉ ।'' ଫଳରେ ଏ ଜନ୍ମର ଦଶା ! ପୂର୍ବଜନ୍ମରେ ଜଣେ ଧନବାନ୍ ବୃନ୍ଦାବନ ଯାତ୍ରୀକୁ ଭାଙ୍ଗ ପିଆଇ ତାହାରି ସମସ୍ତ ଧନ ଅପହରଣ କରିନେବା ଫଳରେ ପରଜନ୍ମ ଲାଗି ମଧ ଆହୁରି ଅନେକ ଦୁର୍ଦ୍ଦଶା ଅର୍ଜି ସାରିଲିଣି ଓ ମୋର ଜନ୍ମାନ୍ତର ଲାଗି ଅନେକ ଉପାଦାନ ଯୋଗାଡ଼ କଲିଣି । କେଉଁ ଜନ୍ମରେ ତା' ହେଲେ ମୋର, ହେ ଭଗବାନ୍ ବୁଦ୍ଧ ! ନିର୍ବାଣ ଭଲା ସମ୍ଭବପର ? ଆଉ କେତେ ସହସ୍ର ଯୋନି ଏ ଅଧମ ଜୀବକୁ ବିଚରଣ କରିବାକୁ ହେବ ? ମୋର ଏଇ ଅଜ୍ଞ ଅପରାଧରୁ ପରିତ୍ରାଣପାଇଁ କ'ଣ କିଛି ହେଲେ ପ୍ରତିକାର ନାହିଁ ?

ପ୍ରତିକାର ପାଇଁ ସ୍ୱୟଂ ଭୃଗୁମୁନି ଅବଶ୍ୟ ଏକ ପ୍ରେସ୍‌କ୍ରିପସନ୍ ଦେଇଛନ୍ତି ଯେ, ''ଶ୍ରଦ୍ଧା ପ୍ରମାଣେ ବ୍ରାହ୍ମଣଙ୍କୁ ଭୋଜନ ଦେଇ ଗୁପ୍ତଭାବରେ ସ୍ୱର୍ଣ୍ଣଦାନ କଲେ ପୂର୍ବପାପ ଖଣ୍ଡନ

ହେବ ।'' ଅଥଚ ଲେଖକ ସ୍ୱୟଂ ଜଣେ ବ୍ରାହ୍ମଣ କୁଳୋଦ୍ଭବ ହୋଇଥିବାରୁ ଓ ପ୍ରତ୍ୟହ ଶ୍ରଦ୍ଧା ପ୍ରମାଣେ ଭୋଜନ କରୁଥିବାରୁ ଅପର ବ୍ରାହ୍ମଣଙ୍କୁ ନିମନ୍ତ୍ରଣ କରି ଭୋଜନ ଦେବା ଆବଶ୍ୟକତା ଅନୁଭବ କରିପାରୁ ନାହିଁ । ପୁଣି ସରକାରଙ୍କ ସ୍ୱର୍ଣ୍ଣ-ନିୟନ୍ତ୍ରଣ ଆଦେଶ ବାତିଲ ହୋଇଥିଲେ ହେଁ ସୁନାଦୋକାନକୁ ଯାଇ ପ୍ରକାଶ୍ୟରେ ସୁନା କିଣି ଗୁପ୍ତଭାବରେ ବ୍ରାହ୍ମଣଙ୍କୁ ଦାନ କରିବା ପ୍ରବୃତ୍ତି ତା'ର ଜନ୍ମ ନାହିଁ । ଯାହାହେଉ, ଭୃଗୁମୁନିଙ୍କ ଗଣନାଭିତରେ ଏମିତି ସବୁ ଅପ୍ରିୟ ସତ୍ୟ ରହିଥିବାରୁ ବୋଧହୁଏ ଆଧୁନିକ ବିଜ୍ଞାନର ପକ୍ଷପାତୀ ଲୋକେ ଜାତକ ପତ୍ରକୁ ପ୍ରକାଶ୍ୟରେ ମାନନ୍ତି ନି ପରା ! ଅପ୍ରକାଶ୍ୟରେ ମାନିଲେ ମାନୁଥିବେ ଅବା କୌତୂହଳ ପରବଶ ହୋଇ ମୋହରି ପରି ।

ଭାଙ୍ଗ ନିଶା ଯେ ମୃତ୍ୟୁକୁ ମଧ୍ୟ ପରିହାସ କରିଥାଏ, ସେ ଭଳି ଏକ ଗଳ୍ପ ଶୁଣିଥିଲି ମୋର ସ୍ୱର୍ଗତ କନିଷ୍ଠ ସହୋଦର ପରିହାସପ୍ରିୟ ଭଗବତୀଙ୍କ ମୁଖରୁ । ଶ୍ରୀଜଗନ୍ନାଥଙ୍କର ଅନେକ ସେବକ ତ ପୁରୁଷାନୁକ୍ରମେ ସପରିବାର ଭାଙ୍ଗପ୍ରିୟ । ପୁରୀର ଜାଗାଘରଗୁଡ଼ିକରେ ଖେଳ କସରତ ସହିତ ଭାଙ୍ଗ ପାଚକର ପ୍ରଚଳନ ମଧ୍ୟ ସୁପରିଚିତ (ଦକ୍ଷିଣ ଭାରତୀୟମାନଙ୍କ ମଧ୍ୟରେ ଗରମ କଫି ପାନୀୟକୁ ପ୍ରସ୍ତୁତ କରିସାରି ଗୋଟିଏ ତାମ୍ରପାତ୍ରରୁ ଅନ୍ୟ ପାତ୍ରକୁ ଉର୍ଦ୍ଧ୍ୱ ବାହୁ ହୋଇ ଢାଳି ମିଶ୍ରିତ କଲାଭଳି ଭାଙ୍ଗକୁ ମଧ୍ୟ ସେମିତି ଭଙ୍ଗାଯାଉଥିବାରୁ ବୋଧହୁଏ ସେପରି ନାମକରଣ ହୋଇଛି) । ଥରେ ବାଜି ମରାମରି ହୋଇ କେତେଜଣ ଯୁବକ ଭାଙ୍ଗ ପିଇଲେ । ଜଣେ ଅନ୍ୟ ସମସ୍ତଙ୍କୁ ବାଜିରେ ଜିଣିବାପାଇଁ ସବୁଠାରୁ ଅଧିକ ପିଇଲେ । ତା'ପରେ ସେ ଚିର ନିଦ୍ରାରେ ଶୟନ କଲେ ।

ଖବର ପାଇ ବାପା ତାଙ୍କର ଏକମାତ୍ର ପୁତ୍ରକୁ ଦେଖିବାପାଇଁ ଆସନ୍ତି ଶେଷ ଶଯ୍ୟାରେ । ପ୍ରଥମେ ଆସି ପୁଅର ଆଖିପତାକୁ ଟେକି ଖୁସି ହୋଇ ପିତା ମନ୍ତବ୍ୟ ଦେଲେ ''ଆଃ ! କେଡ଼େ ବଢ଼ିଆ ନାଲି ଉଠି ଥିଲାଟି ପତାଯୋଡ଼ିକରେ !''

ଆଉରି ଏକ ଗପ ଶୁଣେଁ ଯୌବନର ବନ୍ଧୁ ପୂର୍ଣ୍ଣାନନ୍ଦଙ୍କ ଠାରୁ । ପୁରୀଠାରୁ ଦୁଇ ତିନି କୋଶ ନିକଟବର୍ତ୍ତୀ ହରେକୃଷ୍ଣପୁର ଶାସନର ଜଣେ ବ୍ରାହ୍ମଣ ପୁରୀରେ ପାଚକ ପାନକରି ସନ୍ଧ୍ୟାରେ ସ୍ୱଗ୍ରାମକୁ ବାହୁଡ଼ନ୍ତି । ହରେକୃଷ୍ଣପୁର ଚନ୍ଦନ ପୋଖରୀ ନିକଟରେ ତାଙ୍କୁ ପରିସ୍ରାବ ଦେଖାଏ । ତା'ପରେ ଅତର୍କିତ ଭାବରେ ମୁହଁଟି ତାଙ୍କର ଗ୍ରାମାଭିମୁଖୀ ନ ହୋଇ ପୁରୀ ଅଭିମୁଖୀ ହୋଇପଡ଼େ । ଶେଷରେ ମନ୍ଦିର ସିଂହଦ୍ୱାରରେ ଅର୍ଥାତ୍ ଯେଉଁଠାରୁ ସେ ଗ୍ରାମାଭିମୁଖୀ ହୋଇଥିଲେ, ସେଇଠାକୁ ଫେରିଆସି ଓ ବିସ୍ମୟରେ ଅଭିଭୂତ ହୋଇ ମନକୁ ମନ କହି ପକାନ୍ତି, ''ଆରେ ! ଏତେ ରାତି ହେଲାଣି । ମୁଁ ଆଜି ଗାଁକୁ ଫେରି ନାହିଁ !''

ପୃଥିବୀକୁ ଅପାର୍ଥିବ ପୁଣି ଜଗତକୁ ସ୍ୱପ୍ନମୟ ମଧୁର ଭାବରେ ଅନୁଭବ କରିବା ପାଇଁ ଏହି ରୂପେ ବହୁ ଉପାୟ ଉଦ୍‌ଭାବିତ । ସେ ଉଦ୍‌ଭାବନର କିଞ୍ଚିତ୍ ସଦୁପଯୋଗ କରିବାର ପରିବେଶ ଭିତରେ ମୁଁ ବଢ଼ିଉଠେଁ ତାହାର କୁପରିଣାମ କିମ୍ବା ସୁପରିଣାମ ଭୋଗ କରି ।



# 'ବାଷାର୍ଥ ପ୍ରତିପତ୍ତୟେ'

ଆମ ଅଞ୍ଚଳରେ ଦୋଳପୂର୍ଣ୍ଣମୀ ହେଲା ଚାଷବର୍ଷର ଆରମ୍ଭ । ନୂଆ ମୂଲିଆ ନମଦ ହୁଅନ୍ତି ସେଇଠୁଁ ପୁଣି ବର୍ଷକପାଇଁ । ଠାକୁରଙ୍କ ପାଖରେ ଭୋଗ ଲାଗିଥିବା ଚଣାଖଜା ନେଇଯିବା ପରେ ମୂଲିଆ ସେଦିନୁଁ ସତ୍ୟ କଲାଭଳି ଆଉ ତେଣିକି ତା'ର ଛାଡ଼ିଯିବା ଭୟ ନଥାଏ ।

ଠାକୁରଙ୍କ ପାଖେ ନୂଆ ଆମ୍ବକଷି ନ ଲାଗିବାଯାଏ ପଖାଳ ଭାତରେ ଆମ୍ବ ନସି ଭାଙ୍ଗିଖାଇବା ମନା । ସେଥିପାଇଁ ଆମ୍ବକଷି ପେନ୍ଥା ଖୋଜିଆଣି ଦୋଳ ଆଗରେ ଟାଙ୍ଗନ୍ତି । ଗାଁ ଦାଣ୍ଡ ବାଡ଼ିରେ ଖେଳି ବୁଲୁଥାଏ ଆମ୍ବବଉଳର ମନମତାଣିଆ ମହକ । ଆଉ ତା' ସାଙ୍ଗକୁ ଭଅଁରର ଭୁଁ-ଭୁଁ ଅଛିଣ୍ଡା ସର ।

ଦୋଳପୂର୍ଣ୍ଣମୀକୁ ଗାଁ ଦାଣ୍ଡ ଦୋଳବେଦୀ ଉପରେ ଗରାଏ ଭାଙ୍ଗ ବଟାହୋଇ ପୂଜା କରାଯାଏ । ଗାଁ ଭିତରେ ଫଗୁଦଶମୀଠାରୁ ବିଅଁ ବାହାରି ସାହି ସାହି ବୁଲି ଭୋଗ ଖା'ନ୍ତି । ଘରେ ଘରେ ଉଖୁଡ଼ା ହୁଡୁମ୍ବ ଖଜାଲଡୁ ବେତାଏ ଲେଖାଁ ଆଗରୁ ତିଆରି ହୋଇ ରହିଥାଏ । ଦାଣ୍ଡ ଦୁଆରେ ବିଅଁ ବସିବାକୁ ବେଦୀ ଲିପାହୋଇ ତା' ଉପରେ ନଡ଼ିଆ ଚାଞ୍ଚର ଛାମୁଁଡ଼ିଆ ।

ରାତି ଅଧରେ ଘଣ୍ଟାମାଦଳ ଶଙ୍ଖ କାହାଳୀ ପୁଣି ଝାଞ୍ଜ ମୃଦଙ୍ଗ ସଂକୀର୍ତ୍ତନ ଭିତରେ ବିଅଁ ବିଜେ ହୁଅନ୍ତି ଚଉଦୋଳରେ ବସି । ବୋଉ ମୋତେ ନିଦରୁ ଉଠାଇ ଦିଅନ୍ତି । ନିଦ ମଳମଳ ଆଖିରେ ଦାଣ୍ଡ ପିଣ୍ଡାରେ ବସି ବିଅଁ ଭୋଗଖିଆ ଦେଖେଁ ।

ଭୋଗ ସରିଲେ ଚଣ୍ଡ କାଢ଼ିନେଇ କୀର୍ତ୍ତନିଆଁ, ବେହେରା, ଘଣ୍ଟୁଆ, ଢୋଲିଆ, ଛତିତ୍ରାସ ଧରାଳି ପୁଣି ପଣ୍ଡା ପୂଜାରୀଙ୍କ ଭିତରେ ତାହା ବଣ୍ଟାଯାଏ ।

ତା'ପରେ ଗୋପନି ପୂଜାରୀ ମାଦଳ ତାଳେ ତାଳେ ମୁଣ୍ଡ ହଲାଇ ଘଣ୍ଟିଆଙ୍କ ଘଣ୍ଟତାଳ ସଙ୍ଗେ ତାଳ ପକାଇ ନାଚିନାଚିକା ଠାକୁରଙ୍କୁ ନେଇ ଅନ୍ୟ ମକଦ୍ଦମଙ୍କ ଦୁଆରକୁ ବାହାରନ୍ତି । ଆଗ ଅବଶ୍ୟ ଠାକୁରେ ଭୋଗ ଖା'ନ୍ତି ବଡ଼ ମକଦ୍ଦମ ଭୋବନିଦଦେଇଙ୍କ ଦାଣ୍ଡଦୁଆରେ ।

ଆଜି ତାଙ୍କ ଘର ପୁରୁଷଶୂନ୍ୟ ଓ ଧନହୀନ ହୋଇ ପଡ଼ିଥିଲେ ହେଁ ପୂର୍ବପ୍ରଥାଟି ରହି ଆସିଛି ବଡ଼ ମକଦ୍ଦମଙ୍କ ଦୁଆରେ ଆଗ ଭୋଗ ।

ପୂର୍ଣ୍ଣମୀ ଭୋରରୁ ଦୋଳବେଦୀ ପାଖ ନଡ଼ା ତିଆରି ମେଣ୍ଢା କୁଡ଼ିଆରେ ନିଆଁ ଲଗାଯାଇ ତା' ଚାରିପଟେ ଚଉଦୋଳଟି ଘଣ୍ଟମାଦଳର ତନାଘନା ବାଜା ଓ ଜ୍ୱଳନ୍ତ ମେଣ୍ଢା କୁଡ଼ିଆର ଘମାଘୋଟ ଧୂଆଁ ଭିତରେ କିଛିକ୍ଷଣ ଅଦୃଶ୍ୟ ହୋଇ ତା'ପରେ ଦୋଳବେଦୀ ଚାରିପଟେ ସାତଘେରା ବୁଲିଆସେ । ତହୁଁ ଠାକୁରେ ଆସି ଦୋଳବେଦୀ ଉପରେ ଦୋଳି ଖେଳନ୍ତି ।

ଉପରଓଳି ଗଳବସ୍ତ୍ର ନାହାକ ଆସି ଠାକୁରଙ୍କ ଆଗରେ ଠିଆ ହୋଇ ନୂଆପାଞ୍ଜି ପଢ଼ନ୍ତି ।—ଏ ରାଜା ଭୋଗ କଲେ ୧୦୮ ବର୍ଷ, —ଏ ରାଜା ଭୋଗକଲେ ଶହେ ତିରିଶ ବର୍ଷ—ଏ ରାଜାଙ୍କ ଅମଳରେ ନଶରେ ଡଙ୍ଗା ପଡ଼ିଲା ।

ଦୋଳବେଦୀ ଉପରେ ଭାଙ୍ଗଘୋଟା ପାଖରେ ବସି ଦର୍ଶକମାନଙ୍କ ଭିତରୁ ଟିପ୍‌ପଣୀ ଶୁଣାଯାଏ—ସେ ପର୍ଯ୍ୟନ୍ତ ତାହେଲେ ମଣିଷମାନେ ଏତେ ଡେଙ୍ଗା ଥିଲେ ଯେ ଡଙ୍ଗାର ଦରକାର ହେଉ ନଥିଲା । ଭାଷାତତ୍ତ୍ୱବିତ୍ ଯୁକ୍ତି କରିପାରନ୍ତି—ଡେଙ୍ଗା ଓ ଡଙ୍ଗା ଦୁଇଟି ଶବ୍ଦ ସେଇ କାରଣରୁ ହିଁ ଏକାଧାତୁରୁ ନିଷ୍ପନ୍ନ ପରା !

ଜ୍ୟୋତିଷୀ ସେ ଟିପ୍‌ପଣୀକୁ ସମର୍ଥନ କରି ପଢ଼ିଚାଲନ୍ତି ତାଳପତ୍ର ଖେଦା ଓଲଟାଇ—ଏ ବର୍ଷ ପିମ୍ପୁଡ଼ି ଦଶ ଭାଗ, ଜହ୍ନା ପନ୍ଦରଭାଗ, ଡାଉଁଶ ତିରିଶଭାଗ, ଝିଣ୍ଟିକା ଷାଠିଏ ଭାଗ, ମଶା ଚାଳିଶ ଭାଗ ଇତ୍ୟାଦି ।

ତହୁଁ ପୁଣି ଟିପ୍‌ପଣୀ ଚାଲେ—ତା'ହେଲେ ଧାନ ଫସଲ ଏଥର ଝିଣ୍ଟିକା ଦାଉରେ ଆଉ ଉଧେଇବ କ'ଣ ? ପୁଣି ମଶାଙ୍କ ପାଇଁ ଧୂଆଁ ଦେବାକୁ ଅଟେଇ ତିଆରିଲାଗି କୁଟା ଆଉ ଜଣେ ଟିପ୍‌ପଣୀ କରନ୍ତି । ପୁଣି ଚାଲେ ନାହାକଙ୍କ ପାଞ୍ଜିପଢ଼ା—

କେଉଁ ରାଜା ପୁରୀ ଦେଉଳ ତୋଳାଇଲେ—ଆଉ କିଏ କୋଣାର୍କ, କିଏ ଭୁବନେଶ୍ୱର, କିଏ କାଠଯୋଡ଼ି ପଥରବନ୍ଧ—ଏମିତି କେତେ କୀର୍ତ୍ତିଗାଥା ଓଡ଼ିଶାର ।

ଶେଷରେ କେଉଁ ରାଶିର ଆୟ କେତେ, ବ୍ୟୟ କେତେ, ତାହାର ସୁଦ୍ଧା ହିସାବ । ଆଉ ସେଇ ହିସାବ ଅନୁସାରେ ପରସ୍ପର ଭିତରେ ଟିପ୍‌ପଣୀ—

କି ହେ ଯଦୁ ! ତମର ପରା ବିଛାରାଶି ! ଦେଖିଲ ଟିକିଏ ଅବଧାନେ ବିଛାରାଶିର ଆୟ କେତେ ବ୍ୟୟ କେତେ !

ଅବଧାନେ ଆଗରୁ ଶିକ୍ଷା ପାଇଥାନ୍ତି—ଖେଦା ଓଲଟାଇ ମୁହଁ ଶୁଖାଇ ପଢ଼ନ୍ତି—ବିଛାରାଶିକୁ ତ ଆଜ୍ଞା ଆୟ ପାଞ୍ଚ, ବ୍ୟୟ ତିରିଶ ଲେଖୁଛି । ଟୋକାଗୁଡ଼ାକ ପରିହାସ ବୁଝି ମୁହଁରେ ଗାମୁଛା ଗୁଞ୍ଜି ହସନ୍ତି । କିଏ ନାକପୋଛି ଆଉ କିଏ ତୁଚ୍ଛାଟାରେ କାଶି କିମ୍ବା ଛିଙ୍କ ପକେଇ ହସ ବନ୍ଦକରିବା ବାହାନା କରନ୍ତି ।

କ'ଣ କହିଲେ, ଆୟ ପାଞ୍ଚ ବ୍ୟୟ ତିରିଶ ?

ତେବେ ତ ଆୟଠାରୁ ବ୍ୟୟ ପଚିଶ ବଳିପଡ଼ିଲାଣି । କି ହୋ ଯଦୁ ?

ଯଦୁ ସେତେବେଳକୁ ରାଗରେ ତମ ତମ ହୋଇ ଉଠିଲେଣି । କିନ୍ତୁ ଏତେଲୋକଙ୍କ ଆଗେ କିଛି କହିପାରୁ ନ ଥାନ୍ତି । ଆଖିର ଡୋଳା ଯୋଡ଼ାକ ଖାଲି ଏଣିକି ତେଣିକି ବୁଲିଯାଉଥାଏ ବନ୍ଧୁ କନକିର ମୁହଁଭଳି ।

ପାଚକପାଣି ଗରାରୁ ଡାଳକୁ ଓ ଡାଳରୁ ଗରାକୁ ଭାଙ୍ଗି ଶ୍ୟାମଭାଇନା କହନ୍ତି—କିରେ କାଳିଅଞ୍ଚ ? ଏ ଅଧିକା ପଚିଶ ତେବେ ଆଣିବୁ କେଉଁଠୁ ? ଏଥର ତା'ହେଲେ ଗାଁଯାକ ସମସ୍ତଙ୍କୁ ବାଡ଼ିବଗିଚା ନଡ଼ିଆ ବଗାତ ଆଉ ଧାନଗଦାସବୁ ଜଗାରଖା କରିବାକୁ ପଡ଼ିବ ସିନା । ରାତିରେ ତେବେ ଆଉ ନିଦ ହେବନି କାହାରିକି ?

ଅର୍ଥାତ୍ ଏବର୍ଷ ତାଙ୍କର ଅଭାବ ପୂରଣଲାଗି ସେ ଏଭଳି ଅସଦାଚରଣ କରିବେ—ଯହିଁରେ ଗାଁଯାକ ସମସ୍ତଙ୍କୁ ଦିନରାତି ଜାଗତିଆର ରହିବାକୁ ପଡ଼ିବ ଚୋରଭୟରେ !



# ଦୁଇଟି ଅକ୍ଷର

ପରିହାସ ଭିତରେ ଶ୍ଲେଷ । ଯଦୁଙ୍କ ରଙ୍ଗଟା କଳାବୋଲି ତାଙ୍କପ୍ରତି ଏ 'କାଳିଅଞ୍ଜ' ଶବ୍ଦଟି ଶାମଭାଇନା ଗଢ଼ିଥାନ୍ତି । ଚିଡ଼ିଗଲେ ଯଦୁଙ୍କ ମୁହଁରେ କିନ୍ତୁ କିଛି ହେଲେ ବାଡ଼ବତା ରହେ ନାହିଁ ।

ରଘୁବଂଶ ମହାକାବ୍ୟର ମଙ୍ଗଳାଚରଣରେ କବି ଈଶ୍ୱରଙ୍କୁ ଶବ୍ଦ-ବ୍ରହ୍ମର ଅର୍ଥ ଓ ପାର୍ବତୀଙ୍କୁ ବାଗ୍‌ଦେବୀ ବା ସେଇ ଶବ୍ଦ କିମ୍ବା ବାଣୀରୂପେ ବନ୍ଦନା କରନ୍ତି—ବାଗର୍ଥବିବ ସମ୍ପୃକ୍ତୌ ବାଗର୍ଥ ପ୍ରତିପତ୍ତୟେ—ଜଗତଃ ପିତରୌବନ୍ଦେ ପାର୍ବତୀ ପରମେଶ୍ୱରୌ ।'

ପ୍ରଥମେ ଆଦ୍ୟାନାରୀଙ୍କୁ 'ବାକ୍' ଓ ଆଦିପୁରୁଷଙ୍କୁ ତାହାର ଅର୍ଥରୂପେ ତୁଳନା ଓଡ଼ିଆ ଭାଷାରେ କିନ୍ତୁ 'ଶଳା' ଶବ୍ଦଟି ଯେ ପହିଲେ ଆବିଷ୍କାର କଲେ ତାଙ୍କ ଭିତରେ ରସବିରୋଧର କିଭଳି ଚିନ୍ତା ଉଦ୍ରେକ ହୋଇଥିଲା କେଜାଣି,—କିନ୍ତୁ ଆଦିରସ ପୁଣି ହାସ୍ୟରସ ସହିତ ରୌଦ୍ର ରସର ଏପରି ଏକ ଆଶ୍ଚର୍ଯ୍ୟ ମିଳନ ଉଭର ଭାରତୀୟ ଅନ୍ୟ କେତେ ଭାଷାଭଳି ଓଡ଼ିଆ ଭାଷାର ଆଉ କୌଣସି ଗୋଟିଏମାତ୍ର ଶବ୍ଦରେ ତ କାହିଁ ଏମିତି ପ୍ରକାଶ ପାଇନାହିଁ ପରା ! କେବଳ ତ ସେତିକି ନୁହଁ କଟୂତିକ୍ତାଦି ଷଡ଼ରସ ପୁଣି ଶୃଙ୍ଗାରାଦି ନବରସ ଯେମିତି ଏଇ 'ଦୋଅକ୍ଷରୀ' ବା ଯୋଡ଼ିଏ ମାତ୍ର ଅକ୍ଷରରେ ଠୁଳହୋଇଛନ୍ତି ଅବା ! ପୁଣି ସେ ଶବ୍ଦଟିର ବ୍ୟାପକ ଗଣତାନ୍ତ୍ରିକ ରୂପ ମଧ୍ୟ ବିସ୍ମୟକର । ଆଧୁନିକ ଅର୍ଥରେ ଶିକ୍ଷିତ କହିଲେ ଯାହାଙ୍କୁ ବୁଝାଯାଏ, ସେମାନଙ୍କ ମୁହଁରୁ ଅବଶ୍ୟ ଏ ଶବ୍ଦଟି ଖୁବ୍ ବେଶି ଉଚ୍ଚାରିତ ହେବା ଔଚିତ୍ୟର ପରିଚାୟକ ନୁହେଁ । ପୁଣି ଭାରତର ସ୍ୱାଧୀନତା ପରେ ଶବ୍ଦଟିର ପ୍ରୟୋଗ କମିଗଲା ପରି ହୁଏତ ମନେହୁଏ ପ୍ରତ୍ୟକ୍ଷରେ ଅନ୍ତତଃ । ପରୋକ୍ଷାନୁଭୂତି ଏଠାରେ ଅବଶ୍ୟ ବିଚାର୍ଯ୍ୟ ନୁହେଁ ।

ଗାଳି ଫଜିୟତିର ପୂର୍ବରୂପ ମଧ୍ୟ ଏବେ ଅନେକ ବଦଳି ଯାଇଛି । ତଥାପି ମନେକରିବାର ଅନେକ କାରଣ ଅଛି ଯେ, ଦୋ-ଅକ୍ଷର ସମ୍ବଳିତ ଏ ଶବ୍ଦଟାପ୍ରତି ତଥାକଥିତ ଭଦ୍ରସମାଜ ଭୟକରି ଖାଲି ତା'ଠାରୁ ଦୂରରେ ରହିବାକୁ ଲୋଡ଼ିଛି । ତା'ନହେଲେ ଆଧୁନିକ ଗଣତନ୍ତ୍ର ଯୁଗରେ ଏଭଳି ଗଣତାନ୍ତ୍ରିକ ଗୋଟିଏ ସୁଦ୍ଧା ଶବ୍ଦ ଆମ ଅଭିଧାନରେ ବିରଳ ପରା ! ସେତେବେଳେ କିନ୍ତୁ 'କୃଷ୍ଣ' ନାମବୋଲି ଯେଉଁ 'ଦି' ଅକ୍ଷର' ଭଳି ଏଇ ଦୋଅକ୍ଷରୀ ଅନେକ ମୁଖର ଜପାମାଳୀ ହୋଇଥାଏ ।

ଏବେ ଅବଶ୍ୟ ମୁହଁରେ ନ ବକି କିମ୍ବା ହାତରେ ନ ମାରି ଭାତରେ ମାରିବାର ଅନେକ ବାଟ ଫିଟିଗଲାଣି । ପୁଣି ବୋଧହୁଏ ଏହି ଶବ୍ଦଟିର ଅତୀତ ଇତିହାସ ବିଚାରରୁ ଯାହାଙ୍କ ସହିତ ସାକ୍ଷାତ୍ 'ଶଳା' ସମ୍ପର୍କ ସ୍ଥାପିତ ହେଉଛି, ତାଙ୍କୁ ସୁଦ୍ଧା ସେଇ ସମ୍ବୋଧନଟି କରାଯାଉ ନାହିଁ । ଯେପରି କରାଯାଉଛି ବାପକୁ, ବାପା ଭାଇକୁ 'ଭାଇ', ଭଉଣୀକୁ 'ଅପା' କିମ୍ବା 'ନାନୀ' ପୁଣି

ଦାଦୀ ଖୁଡ଼ୀ ପ୍ରଭୃତିଙ୍କ ପ୍ରତି ସମ୍ବୋଧନରେ । କେତେକ ସ୍ଥଳରେ ବଡ଼ଶଳାଙ୍କୁ 'ଭାଇ' କିମ୍ବା 'ଭାଇନା' ସମ୍ବୋଧନ ମଧ୍ୟ ଶୁଣାଯାଏ ।

ଶେଷକୁ ପୁଣି ଶବ୍ଦଟା ଏମିତି ହୀନମନ୍ୟତା ବା ନ୍ୟୂନତାର ପରିଚୟ ଦେଲା ଯେ, ଆମ ଗାଁପାଖର ଜଣେ ମାତବର ଲୋକ ତାଙ୍କ ଭଉଣୀମାନଙ୍କୁ ନିଜ ଘର ଭିତରେ ବୁଢ଼ୀ କଲେ ପଛେ, ବିବାହ ଦେଇ ନ ଥିଲେ କାହାରି ହେଲେ 'ଶଳା' ହେବେ ନାହିଁ ବୋଲି ! ଆମରି ଗାଁରେ ମଧ୍ୟ ବାପପୁଅ, ଭାଇଭାଇ, ଖୁଡୁତା ପୁତୁରା ସବୁରି ଭିତରେ ସେ ଶବ୍ଦଟାର ଅବାଧ ଗତିବିଧି ରହିଥିଲା ।

ସେ ଶବ୍ଦଟିର ସାଧୁ ରୂପାନ୍ତର 'ଶାଳକ' ହେଲେହେଁ ତାହାର ପ୍ରୟୋଗ ସ୍ଥାନବିଶେଷରେ କେବଳ ପରିହାସ ଛଳରେ ଶୁଣାଯାଇଥାଏ । ଆଉ କେଉଁଠି 'ପୁଅଙ୍କ ମାମୁଁ' ବା ଗୃହୀଣୀଙ୍କ 'ଭ୍ରାତା' ବୋଲି ପ୍ରୟୋଗ କରାଯାଏ । ପୁଣି ନିଜ ପ୍ରତି ମଧ୍ୟ ବିରକ୍ତିରେ ସେଇ ଦୋ-ଅକ୍ଷରୀ ଶବ୍ଦଟି ବାହାରିପଡ଼େ ବାରମ୍ବାର !

ମନେହୁଏ ଯେମିତି ସେଇ ଦୋ-ଅକ୍ଷରୀ ଶବ୍ଦଟିର କରାମତି କ୍ରମେ ଅତି ପ୍ରବଳ ହୋଇ ହୋଇ ଆମ ସମାଜକୁ ଦୁଇ ଭାଗରେ ଫାଡ଼ି ଅଲଗା କରି ପକାଇଛି, ପୁଣି ପ୍ରକାଶ କରିଛି ଆଧୁନିକ ସମାଜବାଦର ଶ୍ରେଣୀ-ସଂଘର୍ଷକୁ । ଭାରତ-ସ୍ୱାଧୀନତାର ପ୍ରାକ୍‌କାଳରେ ସେଇ ଶ୍ରେଣୀସଂଘର୍ଷ ହିଁ ଏ ଦେଶରେ ପ୍ରଭାବ ପକାଇଥିଲା । ତାହାକୁ ହିଁ ଲକ୍ଷ୍ୟ କରି ସେତେବେଳେ ଗୋଟିଏ କବିତା ରଚନା କରେଁ—'କିଏ ଶଳା ସଇତାନ' ? ଶିରୋନାମାରେ ।

ଗାଁରେ ପିଲାଦିନଟି କଟାଇ ଏଇ ଶବ୍ଦ ସହିତ କାନ ମୋ'ର ଏତେ ବେଶି ଅଭ୍ୟସ୍ତ ହୋଇ ପଡ଼ିଥାଏ ଯେ, ଆଧୁନିକ ଓଡ଼ିଆ କବିତାରେ ସୁଦ୍ଧା ତାହାର ସ୍ଥାନ ନିରୂପଣ କରିବାକୁ ମୁଁ ସଙ୍କୋଚ ବୋଧ କରିନଥିଲି । ବନ୍ଧୁ ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକ ଏହି କବିତାଟି କଥା ମଧ୍ୟ ଉଲ୍ଲେଖ କରନ୍ତି । ତାଙ୍କଭଳି ସୁରୁଚିସମ୍ପନ୍ନ କବିଙ୍କୁ ଏହାର ରଚନା-ରୀତି ଅବଶ୍ୟ ଆଘାତ ଦେଇଥିବ କିନ୍ତୁ ଏକ ଉତ୍ତେଜକ ଉପାଦାନ ଭାବରେ ଏହା ଏକାଧିକ ରାଜନୈତିକ ସଭା ସମିତିରେ ପଠିତ ଓ ଆବୃତ ହୋଇଥିବା ସମ୍ବାଦ ମୁଁ ପାଇଥିଲି ।

କବିତାଟିର ପ୍ରଥମ ଦୁଇଧାଡ଼ି ହେଲା—

ଜନ୍ମ ଆମର ମଣିଷ କୁଳରେ
                    ନାହିଁ ଇଜ୍ଜତ ମାନ
ଆମ ଝିଅ ବୋହୂ ସବୁରି ଶାଳୀ ହେ
                    ଆମେ ଶଳା ସଇତାନ !

ତାହା ପରେ ବ୍ୟାଖ୍ୟା କରାଯାଇଛି ପରବର୍ତ୍ତୀ ଧାଡ଼ିମାନଙ୍କରେ—

ବର୍ଷା ଖରାରେ ସବୁ ଶୁଖୁଁ ଆମେ
                    ଯାହାପାଇଁ ଟେକି ଛତି
ନିଜ ଘରେ ଡାକି ଆଣୁ ଅନ୍ଧାର
                    ଯାହାପାଇଁ ଜାଳି ବତି !

ଯାହା ପିଲାପାଇଁ ଭୋଜନ ସଜାନ୍ତି
ନିଜ ପିଲାମାରି ଭୋକେ
ହଜୁର ମଣିମା ସା'ନ୍ତ ସେମାନେ
ଆମେ ବଜ୍ଜାତ ଲୋକେ !
ତାଙ୍କରି ଝିଅ ବୋହୂ ଜରି ଶାଢ଼ି
ପିନ୍ଧିବେ ବୋଲି, ଜାଣ
ଆମ ଝିଅବୋହୂ ସବୁରି ଶାଳୀ ହେ
ଆମେ ଶଳା ସଇତାନ ।''

କବିତାଟି ଅବଶ୍ୟ ଏଇଠି ଶେଷ ହୋଇନି । ଆଉରି ଅଛି । ଏହା ମୋର ପ୍ରାପ୍ତ ବୟସରେ ୧୯୪୪-୪୫ର ରଚନା । କଂଗ୍ରେସରେ ସେତେବେଳକୁ ସାମ୍ୟବାଦ ଦେଖାଦେଇ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଅୟମାରମ୍ଭ । ପୁଣି ସୋସାଲିଜିମ୍‌ଠାରୁ ଆହୁରି ଉଗ୍ରତର ଓ ତୀବ୍ରତର କମ୍ୟୁନିଜିମ୍‌ର ଆବିର୍ଭାବ ମଧ ଘଟିଥାଏ । ଜଣେ ଯୁବକ କଂଗ୍ରେସ ନେତା ସେତେବେଳେ ଥରେ ଏଇ ଶବ୍ଦଟିକି ଏକ ସାଧାରଣ ସଭାରେ ପ୍ରୟୋଗ କରନ୍ତି କୌଣସି ନରମପନ୍ଥୀ ପୁରୁଖା ଓକିଲ ନେତାଙ୍କ ବିରୋଧରେ । ସେଥିଲାଗି ସେ ସମାଲୋଚିତ ହୋଇପାରନ୍ତି । ପୁଣି ବିଧାନସଭା ଗୃହରେ ଏଇ ଶବ୍ଦଟି ଅବୈଧାନିକ (Unparliamentary) ବୋଲି ବାସନ୍ଦ ହୋଇପାରେ । କିନ୍ତୁ ଓଡ଼ିଆ ଭାଷାରେ ଏହା ମ୍ୟାଜିକ୍ ଭଳି ଆଶ୍ଚର୍ଯ୍ୟ ।

ସମ୍ପୂର୍ଣ୍ଣ ଅହିଂସ ରହି ଏଇ ଶବ୍ଦଟାହିଁ କୌଣସି ବ୍ୟକ୍ତି ବା ଗୋଷ୍ଠୀ ବିଶେଷ ପ୍ରତି ଉଚ୍ଚାରିତ ହେବାକ୍ଷଣି—ସେ ଯେତେ ଉଚ୍ଚରେ ଉଡ଼ନ୍ତୁ ପଛେ—ଟେକା ମାଡ଼ରେ ଆମ୍ବ ଖସିଲା ଭଳି ବା ଗୁଳିଚୋଟରେ ଚଢ଼େଇ ପଡ଼ିଲା ପରି—ତାଙ୍କୁ ତଳକୁ ଝିଙ୍କିଆଣି ଏକାବେଳେ ସର୍ବ ସାଧାରଣ ସାମ୍ୟବାଦର ସ୍ତରଭୁକ୍ତ କରିପକାଏ । ଏକ ମୁହୂର୍ତ୍ତରେ ଏଇ ଶବ୍ଦଟି—ଅର୍ଥାତ୍ ତୁଣ୍ଡରୁ ଉଚ୍ଚାରିତ ହେବାମାତ୍ରେ । ଅନ୍ତତଃ ସେଇ ଶବ୍ଦଟାକୁ ପ୍ରୟୋଗ କରୁଥିବା ବ୍ୟକ୍ତିଙ୍କ ଶ୍ରେଣୀକୁ ତାଙ୍କୁ ଓଟାରି ଘେନିଆସେ । ଜଣେ ଉପରପାହ୍ୟା ବ୍ୟକ୍ତି ତଳପାହ୍ୟା ଲୋକ ପ୍ରତି ସେଇ ଶବ୍ଦଟିକି ବ୍ୟବହାର କରିବାମାତ୍ରେ ସେଇ ତଳପାହ୍ୟାକୁହିଁ ତାଙ୍କୁ ସେ ଶବ୍ଦଟା ହଠାତ୍ ଝିଙ୍କି ଓଟାରି ଖସାଇ ପକାଏ । ଆମ ଗାଁରେ ମଧ ଥରେ ଏମିତି ଗୋଟିଏ ଘଟଣା ଘଟେ ।

ଜଣେ ମକଦ୍ଦମଙ୍କ ମୂଲିଆ ସେଦିନ ଉଛୁର କରି କାମକୁ ଆସେ । ସେ ମକଦ୍ଦମ ହେଲେ ଉକ୍ତ ଶବ୍ଦଟିର ଭଣ୍ଡାର । କଥା କଥାକେ ତାହା ତାଙ୍କ ମୁଖରୁ ଅବଲୀଳାକ୍ରମେ ବାହାରିପଡ଼େ—ଏପରି କି ଆପଣା ଭାଇବନ୍ଧୁ ବାପ ଖୁଡ଼ୁତା କୁଟୁମ୍ବ ସମେତ ନିଜପ୍ରତି ମଧ ବିରକ୍ତ ହେଲାବେଳେ ସେଇ ସମ୍ପର୍କଟା ସେ କାରଣ ଅକାରଣରେ ବସାଇ ଦିଅନ୍ତି ।

ପରିହାସପ୍ରିୟ ଗ୍ରାମବାସୀ ସେ ଶବ୍ଦଟିର ଏକ ନାମକରଣ କରନ୍ତି ଅନ୍ୟାନ୍ୟ ଅଶ୍ଳୀଳ ଶବ୍ଦ ଓ ଭର୍ତ୍ସନା ସହିତ—'ଦୋ-ଅକ୍ଷରୀ' ! —ସେଇଠୁ ପୁଣି ଜନ୍ମ କୁଆଡ଼େ 'ରାଧା' 'କୃଷ୍ଣ'

'ସୀତା' 'ରାମ' ଜପମନ୍ତ୍ରର ! ସେ ଦୋ-ଅକ୍ଷରୀ ପରେ ଏ ଦୋ-ଅକ୍ଷରୀ ଜପ କଲେ ସବୁ ପାପଖଣ୍ଡନ ! କବି ଦୀନକୃଷ୍ଣଙ୍କ ଭାଷାରେ—''କୃଷ୍ଣ ନାମରେ ପାପ କ୍ଷୟ ଯେତେ, — କରି ନ ପାରେ ପାପ ପାପୀ ତେତେ ।''

ମୂଲିଆ ଉଚ୍ଛୁର କରି ଆସିବାରୁ ସେଇ ଶବ୍ଦ-ବାଣଟିକି ସେଦିନ ତାହାପ୍ରତି ସେ ବାରମ୍ବାର ପ୍ରୟୋଗ କରି ଲାଗିଲେ । ବିଚାରା ମୂଲିଆଟି ଦୁଇ ଆଣ୍ଠୁରେ ମୁହଁ ପୋତି ଚୁପ୍‌ଚାପ୍ ବସିରହେ । ଗାଳି ଉପରେ ଗାଳିବର୍ଷଣ ଚାଲିଥାଏ । ଶେଷରେ ମକଦ୍ଦମ ଗର୍ଜି ଉଠନ୍ତି ।

''କିବେ କ'ଣ କାମକୁ ଯିବୁନି ?''

''କିମିତି ଯିବି କହିଲ ସା'ନ୍ତ ?'' ଶେଷରେ ମୂଲିଆ ମୁହଁରୁ ନରମ ସ୍ୱରରେ କଥା ବାହାରେ ।—''କିମିତି ଯିବି କହିଲ ସା'ନ୍ତ । ଭଉଣୀକି ମୋର ତମ ଘର ଭିତରେ ଛାଡ଼ି ଦେଇ ? ଆଜି ତାକୁ ସାଥୀରେ ନ ନେଲେ ଯିବି କୁଆଡ଼େ ? ବୋଉ ପରା କହିଛି—'' ଆଉ ସମ୍ଭାଳି ନ ପାରି ଜବାବ ଦିଏ—''ଉଚ୍ଛୁର କରି ଆସିଲି ପରା ମୋ ଭଉଣୀକୁ ନେବାପାଇଁ ଭିଣୋଇଙ୍କ ଘରୁ ଆମ ଘରକୁ । ବୋଉ କହିଛି—ସହଳ ପଠେଇ ଦିଅ ।'' ମକଦ୍ଦମ ତାହାପ୍ରତି ଏ ଶବ୍ଦଟି ବ୍ୟବହାର କରିବାରୁ ହେଲେ ତା'ର ହକ୍‌ରେ ଭିଣୋଇ, ଆଉ ତାଙ୍କ ସ୍ତ୍ରୀ ହେଲେ ତ 'ଶଳା'ର ଭଉଣୀ ମଧ୍ୟ ।

ସେଇ ଶବ୍ଦକୁ ଆପଣା ପ୍ରତି ବ୍ୟବହାର କଲେ ତହିଁରେ ଥାଏ ଆତ୍ମଧିକ୍‌କାର, ଅନୁତାପ, ଅନୁଶୋଚନାର ଭାବ—ଯାହା ଫଳରେ ଆତ୍ମସଂଶୋଧନ ବା ଆତ୍ମଶୁଦ୍ଧିର ପ୍ରକ୍ରିୟା ଆରମ୍ଭ ହୁଏ ହୁଏତ । ପୁଣି ନିଜ ପ୍ରତି ସୁଦ୍ଧା ସେ ଶବ୍ଦର ବ୍ୟବହାର କରିବା ଉଦାହରଣ ତ ବିରଳ ନୁହେଁ !

'କଂଗ୍ରେସର' ଓଡ଼ିଆ ରୂପାନ୍ତର 'ସମୂହବାଦ' କରାଗଲେ 'ସୋସାଲିଜିମ୍'କୁ 'ସମାଜବାଦ' ଓ କମ୍ୟୁନିଜିମ୍‌କୁ 'ଶ୍ରେଣୀ-ସଂଘର୍ଷବାଦ' କୁହାଯାଇପାରେ । କିନ୍ତୁ ଭାରତୀୟ ପ୍ରତି ଆଞ୍ଚଳିକ ଭାଷାରେ ଏ ସବୁର ଅନୁବାଦ କଲେ ଦେଶକେ ଫାଙ୍କ ନଣକେ ବାଁଙ୍କ ଭଳି କିଏ ଯେ ଶେଷରେ କୁଆଡ଼େ ଯାଇ ପହଞ୍ଚିବେ ତା'ର କିଛି ପରା ରହିବ ନାହିଁ । ତେଣୁ ଏହି ବୈଦେଶିକ ନାମଗୁଡ଼ିକୁ ବି ସ୍ୱଦେଶୀ କରି ନିଆଯାଇଛି ସବୁ ଅଞ୍ଚଳରେ । ଅଥବା ସେଇ ଶବ୍ଦଗୁଡ଼ିକ ଜବରଦସ୍ତି ପ୍ରବେଶ କରିଛନ୍ତି—ଅନ୍ୟାନ୍ୟ ଆନ୍ତର୍ଜାତିକ ବା ବୈଦେଶିକ ଆଚାର ବ୍ୟବହାର ପରିଚ୍ଛଦ ଭଳି । ଆଉ ଯେମିତି ସ୍ୱଚ୍ଛନ୍ଦରେ ସେମାନେ ଏକାନ୍ତ ଆତ୍ମୀୟ ହୋଇ ପଡ଼ିଛନ୍ତି ମୋ'ର ଦେଶି ବିଦେଶୀ ମିଶା ଟିପି କୁକୁର ଭଳି !



# ଯାତ୍ରୀ

ସାହିତ୍ୟ, ଇତିହାସ, ଅଙ୍କ, ଭୂଗୋଳ, ସାସ୍ଥ୍ୟରକ୍ଷା, ଡ୍ରଇଂ ଆଦି ସବୁ ବିଷୟରେ କାଳିନ୍ଦୀଚରଣ ପାଣିଗ୍ରାହୀ ନାମକ ଛାତ୍ରଟିର ପାରଦର୍ଶିତା ପରୀକ୍ଷା କରି ଦେଖିଲି । ଏହି ଛାତ୍ରଟିକି ବୃତ୍ତି ପରୀକ୍ଷା ପାଇଁ ପଠାଯିବା ଉଚିତ ବୋଲି ମୁଁ ସୁପାରିସ କରୁଛି ।

ବିଶ୍ୱନାଥପୁର ଉ.ପ୍ରା. ବିଦ୍ୟାଳୟର ପରିଦର୍ଶକ ଅବିକଳ ଏଇଭଳି ଭାଷାରେ ନ ହେଲେ ସୁଦ୍ଧା ଯେତେଦୂର ମୋର ମନେପଡ଼େ, ଠିକ୍ ଏହି ମର୍ମରେ ସ୍କୁଲ ପରିଦର୍ଶନ ବହିରେ ମନ୍ତବ୍ୟ ଲେଖିଥାନ୍ତି । କିନ୍ତୁ କାହିଁକି କେଜାଣି ସେ ପିଲାଟିର ଭାଗ୍ୟରେ ବୃତ୍ତିପରୀକ୍ଷାରେ ବସିବା ସୁଯୋଗ ଜୁଟିଲା ନାହିଁ । ତାହାକୁ ଯିବାକୁ ପଡ଼ିଲା ପୁରୀ ଜିଲ୍ଲା ସ୍କୁଲରେ ନାମ ଲେଖାଇବା ପାଇଁ । ପୁରୀ ! କେତେ ବଡ଼ ସହର ! ପୁଣି ତା'ଠାରୁ କାହିଁ କେଡ଼େ ବଡ଼ ସମୁଦ୍ର ! ଆଗରୁ ଯାଇ ସେ ଥରେ ଦି'ଥର ଅବଶ୍ୟ ପୁରୀ ସହର ଦେଖି ଆସିଛି ।

କେତେ କୋଠାବାଡ଼ି ଦିଅଁ ଦେଉଳ, କେଡ଼େ ଚୌଡ଼ା ବଡ଼ଦାଣ୍ଡ, କେଡ଼େ ଉଚ୍ଚ ସେ ବଡ଼ ଦେଉଳ !—ଭୁବନେଶ୍ୱର ଲିଙ୍ଗରାଜ ଦେଉଳଠାରୁ ବି ଆହୁରି ବଡ଼ । ପୁଣି ସେଇ ନୀଳ ସମୁଦ୍ର—କାହିଁ, କୁଆଡ଼େ କେତେ ଦୂରେ ତା'ର ଥଳକୂଳ ! ସେଇ ସମୁଦ୍ରର ଲହଡ଼ି ଭାଙ୍ଗିଲା ପରି ତାହାରି କୂଳ ବାଲି ଉପରେ ସେତେବେଳେ କେତେ ଯେ ନାଚିକୁଦି ଡିଆଁମାରେ ସେ ! ଗାଁ ପାଖେ ତା'ର ରଥଯାମା ଗ୍ରାମ । ସେଇଠି ଦୟାଭାର୍ଗବୀ ନଈ ବାଲିଠାରୁ ସେ ବାଲି ଯେମିତି ଆହୁରି ବେଶି କଅଁଳ । ତହୁଁ ? ବଳି ବେଶି ମନ ମତାଣିଆ ।

ସେଇ ସମୁଦ୍ର—କୁଆଡ଼େ କାହିଁ ତା'ର ନୀଳିମା ଆକାଶ ସାଥିରେ ମିଶିଯାଏ—ଯେମିତି ଗୋଟାଏ ସରୁ ସୂତା ଖିଅର—ଆମ ଗାଁର ଗହୀର ସେପଟେ ଗଛ ଗହଳରେ ଆଉ ସବୁ ଗାଁ ଲୁଚି ଗଲା ପରି ତାହା ତ ନୁହେଁ କଦାପି ! ସେଇ ସମୁଦ୍ର ପାଖେ ପୃଥିବୀ ବିଲ୍‌କୁଲ୍ ଶେଷ । ତା'ପରେ ତ ଆଉ କିଛି ହେଲେ ନାହିଁ କେଉଁଠି ! ଠିକ୍ ସେଇଠାରେ ଆକାଶଟା ପୁଣି ତଳକୁ ଏକାବେଳେ ନଇଁପଡ଼ି ସମୁଦ୍ର ସାଥିରେ ଏକାକାର !

ବଳଦ ଗାଡ଼ିରେ ଆମ ଗାଁରୁ ଭୁବନେଶ୍ୱର ଆସିଲାବେଳେ ବାଳକାଟି ଗାଁ ମୁଣ୍ଡରେ ମହାଦେବ ମନ୍ଦିର ଓ ସ୍କୁଲ ପାର ହେଲେ ଦୂରରୁ ଦିଶେ ଉଚ୍ଚା ନାଲିସଡ଼କ । ବିରାଟ ଗଛ ଗହଳିରେ କି ଯେ ରହସ୍ୟମୟ ତା'ର ରୂପ । କଚା ସଡ଼କରେ ଗାଁରୁ ବାହାରି ଓ ବାଟଯାକ ଧକଡ଼ ଚକଡ଼ ହୋଇ, ଆଉ ଦୁଇପଟେ ଖଣ୍ଡିଆ ଖାବରା ବିଲହିଡ଼ ଉପରେ ବଗବଗୁଲିଙ୍କୁ ଚାହିଁ ଚାହିଁ ଶେଷରେ ଶଗଡ଼ିଆ ପୁଣି ଆରୋହୀ ପିଣ୍ଡରେ ଯେମିତି ପ୍ରାଣ ପଶେ । ଯେତେବେଳେ ପୁଣି ସେଇ ନାଲି ସଡ଼କ ଗଡ଼ାଣି ଉପରକୁ ଶଗଡ଼ ଉଠେ, ଦୟା ଭାର୍ଗବୀର

ଉପ୍ତ୍ରିସ୍ଥଳ ଧୋବ ଫରଫର ବାଲି ମଝିରେ କାଚକେନ୍ଦୁ ଭଳି ନିର୍ମଳ ଜଳଧାରକୁ ଚାହିଁ କାହା ମନ ଯେ ଉଲୁସି ପଡ଼େନି ! ପୁଣି ନଈ ସେ ପାଖରେ ଲିଙ୍ଗରାଜ ମନ୍ଦିର ଆକାଶ ତଳେ ପତାକା ଉଡ଼ାଇ ଡାକେ ଯେମିତି ହାତଠାରି ! ବାଆଁପଟେ କେତେ ଦୂରରେ କୁମ୍ଭକର୍ଣ୍ଣ ନିଦ ଶୋଇ ରହିଥାଏ ଗୋଟାଏ ମସ୍ତ ହାତୀଭଳି ଧଉଳି ପାହାଡ଼ ଚିରକାଳ ପାଇଁ ।

ନଈ ଭିତରକୁ ଗଡ଼ାଣି । ପୁଣି ସେପଟେ ଲିଙ୍ଗିପୁର ଆମ୍ବ ତୋଟାକୁ ଉଠାଣି । ଶଗଡ଼ରୁ ଡେଇଁପଡ଼ି ନଈର କଅଁଳ ବାଲିରେ ପାଦ ଯୋଡ଼ାକ ଯେମିତି ତୁଳା ଉପରେ ଚାଲିବା ପରି ଲାଗେ !

ଶଗଡ଼ିଆ ପୁଣି ବଳଦ ଯୋଡ଼ାକ ଲିଙ୍ଗିପୁର ଅଙ୍କାବଙ୍କା ଉଠାଣି ରାସ୍ତାରେ ଥକି ପଡ଼ିଥାନ୍ତି । ଲିଙ୍ଗିପୁର ତୋଟାରେ ଟିକିଏ ଦମ୍ଭ ମାରିବାକୁ ହୁଏ । ତହୁଁ ପଡ଼େ ଦୁଇପଟ ଆଖୁ କିଆରି ମଝିରେ ଗଙ୍ଗୁଆ ପୋଲ । ତେଣିକି ଭୁଆସୁଣୀ ଠାକୁରାଣୀ ଓ ଆମ୍ବତୋଟା ପାରି ହେଲେ ଭୁବନେଶ୍ୱର । ଚାହୁଁ ଚାହୁଁ ଅନ୍ଧାର ହୋଇ ଆସେ । ଭୁବନେଶ୍ୱର ମଠରେ ଟିକିଏ ଦମ୍ଭ ମାରି ଆଉ ମୋର କକେଇ-ଅଜା ସାମୀ କୃତ୍ତିବାସ ଗୈରିକ ବସନ ପରିହିତ ମୁଣ୍ଡିତ ମସ୍ତକ ସେଇ ବତା ପରି ପାତଳା ସ୍ୱାମୀଙ୍କ ପାଦ ତଳେ ପଡ଼ି ବୁଦ୍ଧେଶ୍ୱର ଷ୍ଟେସନକୁ ଗାଡ଼ି ଚାଲେ । ଦୁଇ ପାଖରେ କୋଚିଲା ବଣ । ସେଇଠୁ ବାଘ ଯାଇ ରାତାରାତି ଆମ ଗାଁରେ ଶିକାର କରି ଲେଉଟି ଆସେ ।

ଆମ ଗାଁଠାରୁ ପୁଣି ଭୁବନେଶ୍ୱର ସହରଠାରୁ ସେ କେତେ ବଡ଼ ! ସେତେବେଳେ ଆଜିର ନୂଆ ଭୁବନେଶ୍ୱର ଥିଲା ବାଘ ଭାଲୁଙ୍କର ରାଜଧାନୀ । ସେଉଠୁ ଚନ୍ଦକା ଜଙ୍ଗଲ ଭିତରୁ କେବେ କିମିତି ଗୋଟାଏ ଅଧେ ଚିତାବାଘ ରାତିରେ ଆମ ଗାଁ ଯାକେ ଆଠ ନଅ ମାଇଲ ବାଟ ଖେପି ଆସି ଚଢ଼ଉ କରନ୍ତି ଛେଳି, କୁକୁର କି ବାଛୁରୀ ଉପରେ ! ତା'ପରେ ଗହୀର ମଝିରେ ଧାନ ବିଲରେ ଠେଙ୍ଗା ପ୍ରହାରରେ ହୁଏ ତାଙ୍କର ପଞ୍ଚତ୍ୱ ପ୍ରାପ୍ତି । ସେତେବେଳେ ଗାଁ ଭିତରେ ତାହାହିଁ ହୋଇପଡ଼େ ସବୁଠାରୁ ବଡ଼ ଚମକପ୍ରଦ ଖବର । ସମସ୍ତେ ଯେମିତି ମାରିଛନ୍ତି ଆଜି ବାଘଭଳି ଭୀଷଣ ଜାନୁଆରକୁ—ସବୁରି ମନରେ କି ଦମ୍ଭ, କି ସାହସ କି ହସ, ପୁଣି କି ଯେ ବାହା ଫୁଟ୍‌କି ! ଘର ଭିତରୁ ଆରମ୍ଭ କରି ଦାଣ୍ଡଯାକେ ଝିଅ ବୋହୂ ପିଲା ବୁଢ଼ା—ସବୁରି ମୁହଁରେ ବାଘ ଖବର ।

ଗାଁ ଦାଣ୍ଡରେ ବାଘଟା ଘୋଷରା ହୋଇ ଯାଉଥିବା ବେଳେ ଯେମିତି ଅବା ଗୋଟାଏ ଯାତ୍ରା ! ପିଲାବୁଢ଼ା ସ୍ତ୍ରୀ ପୁରୁଷ ସମସ୍ତେ ବାହାରି ଆସନ୍ତି ବାଘଦେଖି, ଭୁଆସୁଣୀ ବୋହୂମାନେ ଅଧ ଆଉଜା କବାଟ ସନ୍ଧାରୁ ଚାହାନ୍ତି ଜୁଳୁଜୁଳୁ ଆଖିରେ, କେତେ ଝିଅ ବୋହୂ ଦା କୁ ବାହାରି ଆସନ୍ତି ବାଘ ପାଟିରେ ହାତ ପୂରାଇବାକୁ । ବାଘ ପାଟିରେ ହାତ ପୂରାଇଲେ କୁଆଡ଼େ ଯାହା ରାନ୍ଧିଦେବ, ତାହା ହେବ ସୁଆଦ ।

କିଏ କେତେ ଥଟ୍ଟା ତାମ୍‌ସା କରନ୍ତି—ହଁ, ମଲାବାଘ ବୋଲି ସିନା ଏଡ଼େ ସାହସ !—ଜିଇଁଥିଲେ... ?

ଆଉ କିଏ କହନ୍ତି—ଖବରଦାର ! ବାଘଟା ଛଟା ଗାଳିଛି ପରା ! ସତେ କ'ଣ ସେ ମରିଛିକି ?

ଝିଅ ବୋହୂଙ୍କ ଭିତରୁ କେହି ବାଘ ପାଟିକି ହାତ ନେଉ ନେଉ ଅଟକି ଯାନ୍ତି । କିଏ ଓଢ଼ଣା କାନିକୁ ପାଟିରେ ପୂରାଇ ହସ ଚାପନ୍ତି । ସେତେବେଳେ କେଉଁ ଦୁଷ୍ଟ ଟୋକା ହୁଏତ ବି' ହାତରେ ବାଘର ପାଟିକୁ ମେଲାକରି ଝିଅ ବୋହୂମାନଙ୍କୁ ଡାକପକାଏ—ଆସ ଏଥର, ଜିଇଁଥିଲେ ବି ତା' ପାଟିକି ମୁଁ ଛାଡ଼ିବି ନାହିଁ । ଏକାବେଳେ ସେ ମହାବୀର ପାଲଟି ଯାଏ ଝିଅ ବୋହୂଙ୍କ ସାମ୍ନାରେ ବାହାଦୁରି ନେବାପାଇଁ !

ଆସନ୍ତି ପୁଣି ସାପୁଆ କେଳା—ଆଜିସୁଦ୍ଧା ସହର ବଜାରରେ ଯେମିତି ସେମାନେ ପେଡ଼ିଭାର କାନ୍ଧେଇ ବୁଲନ୍ତି ! 'କଂସର ଘରଣୀ, ପଦ୍ମାବତୀ ରାଣୀ, ସେ କଲା ଧନିତ୍ରୀ ଓଷା—ଲକ୍ଷେଭାର ପଦ୍ମ ଦେବୁରେ କହ୍ନାଇ ନଥିବ ପାଖୁଡ଼ାମିଶାକି ଗୋବିନ୍ଦ ହରି ! ଭାଇଲା, ଭାଇଲା, ମାରି ପାରିବୁନି ବୁଢ଼ା, ଗଦ ଅଛି, ସୁଙ୍ଘେଇ ଦେବି— ?'' ଅବିକଳ ସେଇ ଭାଷା ସେଇ ସାହିତ୍ୟ ରହି ଯାଇଛି ତ ଆଜିଯାଏ !

ରହିଯାଇଛି ପୁଣି ସେଇ ଗୋବିନ୍ଦ-ମୂଷା ଧାନ ଶୁଖେଇଲାବେଳେ ନୂଆଭୂଆସୁଣୀ ଯେମିତି ଓଢ଼ଣା ଉହାଡ଼ରୁ ଏଣିକି ତେଣିକି ଚାହେଁ, ମୂଷା ବି ସେମିତି ପେଡ଼ି ଭିତରେ ବୁଲି ବୁଲିକା ଚାହିଁ ବାହାରକୁ ମୁହଁ କାଢ଼ି ପୁଣି ଲୁଚିଯାଏ । କେଳା ତାକୁ ନିଜ ଆଙ୍ଗୁଠିରେ ବସାଇ, ଆଉ ସେଥିରୁ ସୂତାଟାଏ ଝୁଲାଇ ମୂଷାକୁ କରାଏ ନୂଆବୋହୂର ଅଭିନୟ ।—ଦିଅର ଆସିଲାବେଳେ ଭାଉଜ କେମିତି ରହି ରହିକା ଛୋପରୀ ପଣ ଦେଖାଇ ପାଣିକାଢ଼େ—ପୁଣି ଦେଢ଼ଶୁର ଆସିଗଲେ ବେଗବେଗ କରି-ଧଡ଼ପଡ଼ କରି ତରବର କରି !

ଧାନ କିଆରିରେ ଧାନହଳା ହିସାବ, ମୁଗବିଲ ହରଡ଼ ବିଲରେ ପଶି ଛୁଇଁ ଖାଇବା, ଆଖୁଶାଳରେ ବସି ଦୋରୁଅ ପିଇବା, ନଡ଼ିଆ ବଗିଚାରେ ପଇଡ଼ ପିଇବା—ସବୁ ପଛକୁ ପକାଇଦେଇ ଚାଲିଲି କେଉଁ ଅଜଣା ଅଶୁଣା ରାଜ୍ୟକୁ ଅତି ପରିଚିତ ପରିବେଶକୁ ଛାଡ଼ି । ଭୁବନେଶ୍ୱର ରେଳଷ୍ଟେସନ ସେତେବେଳେ ଏକ ରହସ୍ୟର ଜାଲ ବୁଣିଥାଏ ମୋହପାଇଁ ।

ଶଗଡ଼ ଚାଲେ, ସବାରି ଚାଲେ, ମଣିଷ ଚାଲେ, ପୁଣି ଗୋରୁଗାଈ ପଶୁପକ୍ଷୀ—, ସେଇ ଆମଗାଁ ମୁଣ୍ଡ କଚା ସଡ଼କ ଉପରେ, ବର୍ଷାଦିନେ କଚା ସଡ଼କଟା ଚିକିଟା ମାଟିରେ ଏମିତି ଅଠା ଧରିଥାଏ ଯେ, ଶଗଡ଼ ବଳଦ ଶଗଡ଼ିଆ ଓ ଆରୋହୀ ସମେତ ଘଣ୍ଟା ଘଣ୍ଟା ଧରି ଗୋଟିଏ ଗୋଟିଏ ଥାନରେ ଏକାବେଳେ ଲାଖିଯାନ୍ତି । ଯାବଚ୍ଚନ୍ଦ୍ରାର୍କେ ସେଠାରୁ ଯେମିତି ତାଙ୍କର ଆଉ ସଚଳ ହେବାର ପ୍ରଶ୍ନ ନାହିଁ ! ସତେ ଯେମିତି ଅଚଳଯୋ-ସନାତନ ! ଆଉ ଯଦି ସାରଥି ଆରୋହୀ ପୁଣି ସହାନୁଭୂତିଶୀଳ ପରୋପକାରୀ ସହଯାତ୍ରୀ ପଥିକମାନଙ୍କର ସମବେତ ଚେଷ୍ଟା ତର୍ଜନ ଗର୍ଜନ ଲମ୍ଫଝମ୍ଫ ଫଳରେ ଶକଟ ଯାନଟି ତିନି ଚାରି ଫୁଟ ଅଗ୍ରସର ହୋଇଯାଏ । ତାହା ପରେ ଆରୋହୀଙ୍କର ଭୂଗୋଳ ଓ ଖଗୋଳ-ଜ୍ଞାନର ଅକସ୍ମାତ୍ ବିସ୍ଫୋରଣ ଘଟି ଯଥାର୍ଥରେ ପୃଥିବୀ ଚାରିପଟେ ସୂର୍ଯ୍ୟ କି ସୂର୍ଯ୍ୟ ଚାରିପଟେ ପୃଥିବୀ ପରିକ୍ରମା କରୁଛି—ଏହି

ସନ୍ଦେହ ଦୃଢ଼ତର ହୋଇଥାଏ । ଅଥବା କୌଣସି ବିଜ୍ଞ ଜ୍ୟୋତିଷକୁ ପଚାରି ସେ ସ୍ଥାନରୁ ଆଉ କେଉଁ ଦିଗକୁ କିମ୍ବା ସିଧା ସଳଖ ସ୍ୱର୍ଗକୁ ଯିବା ପାଇଁ ନିଜ ଜାତକରେ ଅଛି, ଜାଣିବାକୁ ଆଗ୍ରହ ଜନ୍ମେ ।

ଅବଶ୍ୟ ଆଉ କାହିଁ ନ ଯାଇ ରାସ୍ତା ସହିତ ଲଢ଼େଇ କରି ଗୋଟିଏ ମାଇଲକୁ ଅନ୍ତତଃ ଦେଢ଼ଘଣ୍ଟା ଲାଗିଯାଏ । ସର୍ବଶେଷରେ ଦୁଇଟି ବଳଦ ଦୁଇଜଣ ଶଗଡ଼ିଆ ଓ ଦୁଇଜଣ ଆରୋହୀ ଆସି ଦୀର୍ଘନିଃଶ୍ୱାସ ପକାନ୍ତି ଦୟାଭାର୍ଗବୀ ଦୁଇ ନଦୀର ଉପରିସ୍ଥଳ ରଥଯାମା ନାଲିସଡ଼କ ପାଖରେ—ଦୁଇ ପାର୍ଶ୍ୱରେ ସେଇ ଦ୍ରୁମଛାୟା-ସେବିତ ଜଗନ୍ନାଥ ରାସ୍ତା । ଜଗନ୍ନାଥ ସଡ଼କ ଧଇଲେ ସତେ ଯେମିତି ମଣିଷ ବଳଦ ସମସ୍ତେ ଦୀର୍ଘନିଃଶ୍ୱାସ ଛାଡ଼ନ୍ତି । ସେଇଠି ଜଗନ୍ନାଥ ସଡ଼କ ଉପରୁ ଦିଶେ ଦିଗ୍‌ବଳୟ ତଳେ ଚିତ୍ର ଅଙ୍କା ହେଲାଭଳି ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ।

ସବୁରି ମନରେ ଖେଳିଯାଏ ଆଶା ଉତ୍ସାହ—ଶଗଡ଼-ବଳଦ ଘିଡ଼ି ଘିଡ଼ି ହୋଇ ଚାଲନ୍ତି । ତା'ପରେ ଲିଙ୍ଗିପୁର ଡୋଟାକୁ ଉଠାଣି (ଉଃ ! କେଡ଼େ ତିଖ ଉଠାଣି ସେ । ଶଗଡ଼ର ଦଣ୍ଡା ପୁଣି ଝୁରାଅଗରେ ଶଗଡ଼ିଆଙ୍କର ଚିତ୍କାର)—ଗଙ୍ଗୁଆ-ନଣପୋଲ, —ଭୁବନେଶ୍ୱର, ଉତ୍ତର ପାର୍ଶ୍ୱ ସାମୀଙ୍କ ମଠରେ ରହଣି । ଶେଷରେ ଦୁଇପାଖ ଘଞ୍ଚବଣ ଭିତରେ ଶଗଡ଼ଚାଲେ ବୁଦ୍ଧେଶ୍ୱର ଷ୍ଟେସନ ଭିତରକୁ । ଏଇଠୁଁ ଲାଗିଛି ଚନ୍ଦକା ଜଙ୍ଗଲ—ବାଘହାତୀଙ୍କର ଚରାଭୂଇଁ । ରାତିରେ ଶଗଡ଼ତଳେ ଲଣ୍ଠନ ଝୁଲେ । ଶଗଡ଼ ଆଗରେ ପଛରେ ଝୁରାମୁଣ୍ଡ ଦଣ୍ଡାଧରି ଚାଲନ୍ତି ଦୁଇ ଦୁଇଟା ଶଗଡ଼ିଆ ।

ବୁଦ୍ଧେଶ୍ୱର ଷ୍ଟେସନ । ପୁରୀ ଗାଡ଼ି ଆସିବାକୁ ବିଳମ୍ବ ଅଛି । ଟିକେଟ୍ ଘରେ କିରାସିନି ଆଲୁଅ ଝରକା ଭିତରୁ ଦେଖାଯାଏ । ଟିକେଟ୍ କିଣିବାକୁ ଜଣକେତେ ଯାତ୍ରୀ ଏପାଖ ସେପାଖ ହେଉଛନ୍ତି । ଷ୍ଟେସନ ପ୍ଲାଟ୍‌ଫର୍ମରୁ ଅନେକ ଦୂରରେ ଦେଖାଯାଉଛି ସିଗ୍‌ନାଲର ନାଲିଆଖି, କେଉଁ ରହସ୍ୟ-ଘେରା ନିବିଡ଼ ଅନ୍ଧକାର ଭିତରେ ।

ଟିକେଟ୍ ଝରକାପାଖରେ ଆହୁରି ଲୋକ ଗୋଟି ଗୋଟି ହୋଇ ଜମା ହେଉଛନ୍ତି । ଘର ଭିତରେ ଗୋଟାଏ ଲମ୍ବ ଡେସ୍କ ଉପରେ ଶୋଇଯାଇ ଘୁଙ୍ଗୁଡ଼ି ମାରୁଛନ୍ତି ଟିକେଟ୍‌ବାବୁ । ଘର ଭିତରୁ ଝରକା ବନ୍ଦ । ଖାଲି ଘୁଙ୍ଗୁଡ଼ି ଶବ୍ଦଟା ଶୁଣାଯାଉଛି ବାହାରକୁ ।

''ଗାଡ଼ି ଆସିଲା ବାବୁ—ଟିକେଟ୍—''

ଉତ୍ତରରେ ଖାଲି ସେ ଘୁଙ୍ଗୁଡ଼ି ଶବ୍ଦଟା ଅଧିକ ଜୋର୍ ଶୁଣାଯାଏ । ତାଙ୍କ ପଛରେ ଆଉ ଚାରିପାଞ୍ଚ ଜଣ ଆସି ଛିଡ଼ା ହୋଇଯାନ୍ତି—ବ୍ୟସ୍ତଯାତ୍ରୀଙ୍କ ଭିତରେ କଥାବାର୍ତ୍ତା ଚାଲେ ।

''ଦେଖିଲ, ମାଗଣା ଟିକେଟ୍ ଦେଲାଭଳି ବାବୁ ଏକାବେଳେ ନିରାଲମ୍ବ ହୋଇ ଶୋଇ ଯାଇଛନ୍ତି ।''

ତାଙ୍କର ପୁଣି କ୍ୟା ପରବାୟ । କୋଉ ମକଦ୍ଦମା ଅବା ଖାରଜ ହୋଇଯାଉଛି କି ?

''ଛାଡ଼, ଦିନଯାକ ଖଟି ଖଟି ଟିକେ ନିଦେଇ ଯାଇଛନ୍ତି ।''

''ଏଁ ? ନିଦେଇ ଯାଇଛନ୍ତି ! ଏଣେ ଯେ କାଲି ମୋ'ର ମକଦ୍ଦମା ତାରିଖ । ହାଜର ନହେଲେ ମକଦ୍ଦମା ଖାରଜ । ପୁଣି ଗଣିବି ଓକିଲ ଫିସ୍, ପେସ୍କାର ପାଉଣା ।''

''ମକଦ୍ଦମା କ'ଣ ମାଗଣାରେ ହୁଏ କି ?'' ଆଉ ଜଣେ ଟିପ୍ପଣୀ କରନ୍ତି—''ତା ନାଁ ପରା ମାମଲା । ମା' ମରିଗଲେ ଯେମିତି, ମାମଲାରେ ପଶିଲେ ବି ସେମିତି ହଇରାଣ ।''

ଅର୍ଦ୍ଧରାତ୍ରିର ନିସ୍ତବ୍ଧତାକୁ ଭାଙ୍ଗି ପ୍ଲାଟ୍‌ଫର୍ମର ଟିଣ୍ ଟିଣ୍ ଘଣ୍ଟା ଘନ ଘନ ବାଜିଉଠେ । ଟିକେଟ୍ ଘର ଝରକା ଫିଟିଯାଏ । ନିଦ ମଳମଳ ଆଖିରେ ବାବୁ ଟିକେଟ୍ ଦିଅନ୍ତି ଲ୍ୟାମ୍ ଆଲୁଅରେ ଖଟ୍ ଖଟ୍ କରି ତାରିଖ ମୋହର ବସାଇ ।

ଟିକେଟ୍ କିଣିସାରି ବାପା ମୋତେ ସାଙ୍ଗରେ ନେଇ ପ୍ଲାଟଫର୍ମକୁ ଚାଲନ୍ତି । ଚାରିଆଡ଼ର ଘନ ଅନ୍ଧାର ଭିତରେ ଷ୍ଟେସନ୍ ପ୍ଲାଟଫର୍ମଟି ଗୋଟିଏ କୁହୁକଜାଲ ବିସ୍ତାର କଲାପରି ଲାଗୁଥାଏ । ଷ୍ଟେସନ୍ ପ୍ଲାଟଫର୍ମର କିରାସିନି ଆଲୋକସ୍ତମ୍ଭ କେତୋଟି ସେଇ ଅନ୍ଧାରକୁ ଯେମିତି ଆହୁରି ଘନୀଭୂତ କରି ଦେଖାଉଥାଏ । ପୁଣି ଆଉ ଗୋଟାଏ ଘଣ୍ଟାର ଟିଂ ଟିଂ ନାଦ ।

ଗାଡ଼ିର ସାଇଟ୍-ବେଲ୍ !

ଗଣ୍ଠିଲିପତ୍ର ଉଠାଇ ସମସ୍ତେ ପ୍ରସ୍ତୁତ ହୁଅନ୍ତି, ଆଗ କେମିତି ଗାଡ଼ି ଭିତରେ ପଶିଯିବେ । ନଇଲେ ଗାଡ଼ି କାଳେ ଛାଡ଼ିଦେବ ।

ଅନେକ ଦୂରରେ ଗଛଗହଳି ଭିତରେ ଅନ୍ଧାରଟା ଯେଉଁଠି ବରଫ ଭଳି ଜମାଟ ବାନ୍ଧିଯାଇଛି, ସେଇଠି ଆକାଶ ତଳେ ଷ୍ଟେସନ ସିଗ୍‌ନାଲର ଲାଲ୍ ଆଖିଟା ଗୋଟାଏ ମସ୍ତବଡ଼ ରକ୍ତଚିତା ଭଳି ଦିଶେ । ତା'ପରେ ଗାଡ଼ିର ଇଞ୍ଜିନ ଆଲୁଅ ଓ ଶେଷରେ ଷ୍ଟେସନ୍ ପ୍ଲାଟଫର୍ମ ତଳେ ଲମ୍ବିଯାଇଥିବା ରେଲ୍‌ଲାଇନ୍ ଉପରେ ଘଡ଼ଘଡ଼ ଶବ୍ଦ । ତହୁଁ ପୁଣି ପ୍ରବଳ ଠେଲାପେଲା ଭିତରେ ତୃତୀୟଶ୍ରେଣୀ ଯାତ୍ରୀଙ୍କର ଗାଡ଼ିଭିତରୁ ଗଣ୍ଠିଲିପତ୍ର ସମେତ ଓହ୍ଲାଇବା ଓ ତଦନୁରୂପ ଗାଡ଼ିଭିତରକୁ ପଶିବା ପର୍ଯ୍ୟାୟ ।

ତୃତୀୟଶ୍ରେଣୀ ଡବା ଭିତରକୁ ପଶିବା ଓ ସେଥିରୁ ଓହ୍ଲାଇବା ଅନୁପାତରେ ସେଠାରେ ବସିବାପାଇଁ ଥାନ କରିବାକୁ ମଧ ହୁଏ । ପୁଣି ସେଇ ମାତ୍ର ଥାନଟିକକରେ ଗଣ୍ଠିଲିକୁ ଆଉଜି ବେଶ୍ ନିଦ ଆସିଯାଏ । ରାତି ପାହିଲା ବେଳକୁ ଗାଡ଼ି ପହଞ୍ଚେ ପୁରୀ ଷ୍ଟେସନରେ । ତା'ପରେ ସେହି ବଳଦ ଗାଡ଼ିରେ ବସି ପହଞ୍ଚି ଯାଉ ରାମଚଣ୍ଡୀ ସାହି ବସାରେ । କିଛିକାଳ ପରେ ବଳଦ ଯୋଡ଼ିକ ସ୍ଥାନରେ ପୁଣି ସେଇ ଗାଡ଼ିକୁ ମଣିଷ ଟାଣିଲେ । ଏବେ ସେ ଶଗଡ଼ର ଉନ୍ନତି ଘଟି ରିକ୍‌ସା ହେଲାଣି । ମାତ୍ର ମଣିଷର ଉନ୍ନତି ହେଲା ନାହିଁ—ଶଗଡ଼ ସ୍ଥାନରେ ଯାହା ସେ ରିକ୍‌ସା ଟାଣୁଛି ସିନା !

ବାପାଙ୍କ ସଙ୍ଗରେ ଯାଏଁ ପୁରୀ ଜିଲ୍ଲାସ୍କୁଲ ହେଡ଼ମାଷ୍ଟରଙ୍କ କ୍ୱାଟରକୁ ନାମ ଲେଖାଇବା ପାଇଁ । ହେଡ଼ମାଷ୍ଟର ୰ ଦାଶରଥି ପାଣିଗ୍ରାହୀଙ୍କ ଚେହେରା ଦେଖି ଓ କଥାବାର୍ତ୍ତା ଶୁଣି ଖୁବ୍

ସଙ୍କୁଚିତ ହୋଇପଡ଼ିଲି । ମୁଖମୟ ଶ୍ମଶ୍ରୁ ମଧ୍ୟରୁ ତାଙ୍କର ତୀବ୍ର କଟାକ୍ଷ ଓ ସଂଯତ କଥାବାର୍ତ୍ତା ଭିତରେ ମଝିରେ ମଝିରେ ହସି ସେ ବାପାଙ୍କ ସାଙ୍ଗରେ କଥାବାର୍ତ୍ତା କରୁଥାନ୍ତି ।

ଆମ ଗାଁ ଉ:ପ୍ରା: ସ୍କୁଲର ଛାତ୍ରରୂପେ ମୋ ସମ୍ବନ୍ଧରେ ପରିଦର୍ଶକଙ୍କ ମନ୍ତବ୍ୟ ଦେଖି ହେଡ୍‌ମାଷ୍ଟର ଖୁବ୍ ଖୁସି ହୋଇଗଲେ; କିନ୍ତୁ ମୁଁ ଇଂରାଜୀ ଜାଣି ନ ଥିବାରୁ ମୋତେ ପୁଣି ପ୍ରାଥମିକ କ୍ଲାସରୁ ଆରମ୍ଭ କରିବାକୁ ପଡ଼ିଲା । ଅର୍ଥାତ୍ ପୁଣି ଦୁଇ କ୍ଲାସ ପଛରେ ନାମ ଲେଖାଇବାକୁ ହେଲା । ଅତଏବ ହେଡ୍‌ମାଷ୍ଟର ଓ ବାପାଙ୍କ ଭିତରେ ପରାମର୍ଶ ହୋଇ ମୋ'ର ପ୍ରକୃତ ବୟସରୁ ଦୁଇଟି ବର୍ଷ କମାଇ ଦିଆଗଲା । ଦରକାର ହେଲେ ପ୍ରକୃତ ବୟସଟା ଯେ କମ୍ ବେଶି କରାଯାଇ ପାରେ, ସେ କଥା ମୁଁ ସେଇ ଦିନ ଜାଣିଲି; କିନ୍ତୁ 'ହିତୋପଦେଶ'ର ଉକ୍ତି ଅନୁସାରେ ବୟସଟାକୁ କାହିଁକି ଯେ ଲୁଚାଇ ରଖିବା ଲୋଡ଼ା, ଏ ଯାଏ ତାହା ବୁଝିବା ପାଇଁ କ୍ଷମ ହେଲି ନାହିଁ । ବରଂ କେହି କାହାରି ବୟସ ପଚାରିବାରେ ଯେମିତି ଭଦ୍ରତାର ହାନି ଘଟେ—

ସାହିତ୍ୟରେ କିନ୍ତୁ ସବୁ ବୟସର କଳନା—ବାଳଖିଲ୍ୟ ବାଳକୃଷ୍ଣଙ୍କଠାରୁ ଆରମ୍ଭ କରି ପିତାମହ ବ୍ୟାସ ଭୀଷ୍ମଙ୍କ ପର୍ଯ୍ୟନ୍ତ ଶିଶୁ ଯୁବକ ପ୍ରୌଢ଼ ବୃଦ୍ଧ କାହାରି ହେଲେ ଏ ଚାରିଟା ଅବସ୍ଥାରୁ ତ ନିସ୍ତାର ନାହିଁ । ବରଂ ଏ ଚାରିଟାଯାକ ଅବସ୍ଥା ପହଞ୍ଚିବା ଆଗରୁ ଅନେକ ବିଦାୟ ଘେନିଯାନ୍ତି ଦୁନିଆରୁ । ସେଇଥିପାଇଁ ବୋଧହୁଏ ବେଶି ବୟସ ହେଲେ କିମ୍ବା ଚାରିଟାଯାକ ଅବସ୍ଥାକୁ ଭୋଗ କରିସାରିଲେ ମଣିଷକୁ ଲାଜମାଡ଼େ ଆପଣାର କୀର୍ତ୍ତି ଅପକୀର୍ତ୍ତି ମନେ ପକାଇ । ମନେପକାଇ ଏଇ ସତଟାକୁ ଯେ ଦୁନିଆ ଇତିହାସରେ ତାହା କୀର୍ତ୍ତି ଅପକୀର୍ତ୍ତିର ସ୍ଥାନ କେଉଁଠି ?

କାହିଁକି ଅବା ତା'ର ଜନ୍ମ—ମରଣର ହିସାବ କିତାବ ଲୋଡ଼ା ହେବ ? ଆଉ କି ସାହିତ୍ୟ ଅବା ଲୋଡ଼ା—ଏଇ ଦୁନିଆ ଉପରେ ? ସେଇ ସୁମହାନ୍ ଅତୀତର ଅଭୁଲା କାହାଣୀ ପୁଣି ତାକୁ ଉଜ୍ଜ୍ୱଳତର ଅନାବିଷ୍କୃତ ଭବିଷ୍ୟତ ଗଢ଼ିବାକୁ ଯୋଗାଇଦିଏ ପ୍ରଭୂତ ପ୍ରେରଣା । ଯୋଗାଇଦିଏ ଏଇ ନିରବଚ୍ଛିନ୍ନ ଜୀବନ-ପ୍ରବାହର ନବନବ ସ୍ପନ୍ଦନ ।



# ସାଗରେ—ଅମ୍ବରେ

ସର୍ବନିମ୍ନ ସପ୍ତମ ଶ୍ରେଣୀର ଶିକ୍ଷକ ଥା'ନ୍ତି ପୁରୀ ଶାସନ ଦାମୋଦରପୁର ଗ୍ରାମର ପଣ୍ଡିତ ବିଶ୍ୱନାଥ ରଥ କାବ୍ୟତୀର୍ଥ । ପଢ଼ିଲାବେଳେ ହସି ହସି କେତେ ବିଚିତ୍ର କଥା ଓ କାହାଣୀ କହି ସେ ପିଲାମାନଙ୍କୁ ବୁଝାଇଦିଅନ୍ତି । ଛାତ୍ରମାନଙ୍କ ଭିତରେ ଅତି ସହଜରେ ପ୍ରିୟ ଆପଣାର ହେବା ତାଙ୍କ ପକ୍ଷରେ ସହଜ ହୁଏ । କିନ୍ତୁ ଦୁଷ୍ଟ ଛାତ୍ରଙ୍କୁ ଆୟତ୍ତ କରିବାରେ ତାଙ୍କ ବେତ୍ରର କରାମତି ମଧ ସାମାନ୍ୟ ନୁହେଁ ।

ମୋ'ର ଏଇ ଶେଷୋକ୍ତ ଅଭିଜ୍ଞତା କେବଳ ଗାଁରେ ସିନା ଥରେ ଦି'ଥର ମିଳିଛି, ପୁରୀରେ କିନ୍ତୁ ମିଳିଥିବା ସ୍ମରଣ ହେଉ ନାହିଁ—ଥରେ ଅଧେ ବେଞ୍ଚ ଉପରେ ଠିଆହେବା ଘଟଣା ଛାଡ଼ି । ବରଂ ମୁଁ ଜଣେ ସୁଶୀଳ ସୁବୋଧ ମେଧାବୀ ଛାତ୍ର ଭାବରେ ସହପାଠୀଙ୍କ ଦ୍ୱାରା ଉପହସିତ ହୁଏଁ । ସେଥିପାଇଁ ଦାୟୀ ବାପାଙ୍କର କଡ଼ା ଆଦେଶ । ସେ କଚେରିଯିବା ସମୟରେ ତାଙ୍କ ସାଥୀରେ ମୋର ସ୍କୁଲକୁ ଯିବା, ଖେଳଛୁଟି ହେଲେ କଚେରିକୁ ଯାଇ ଜଳଖିଆ ଖାଇବାବେଳେ ତାଙ୍କ ସଙ୍ଗେ ପ୍ରିୟ ସାକ୍ଷାତ୍ କରିବା ସ୍କୁଲଛୁଟିବେଳେ ତାଙ୍କ କଚେରି ଫେରନ୍ତି ଅନୁଗାମୀ ହେବା—ବାପାଙ୍କ ନିର୍ଦ୍ଦେଶର ଏହା ଥିଲା ମୋ'ର ଦୈନନ୍ଦିନ କାମ ।

ବାପା ଏତେ ଧୀରେ ଚାଲନ୍ତି ଯେ, କଚେରିରୁ ରାମଚଣ୍ଡୀ ସାହି ଘରକୁ ପ୍ରାୟ ଗୋଟିଏ ଫର୍ଲଂ ରାସ୍ତାପାଇଁ ଗୋଟିଏ ଘଣ୍ଟାରୁ ତାଙ୍କୁ କମ୍ ଲାଗେ ନାହିଁ । ସ୍କୁଲରୁ ବାହାରି ତାଙ୍କ ପଛେ ପଛେ ଚାଲିଲା ବେଳକୁ ମୋର ଗୋଡ଼ ଦି'ଟା ଛନ୍ଦି ହୋଇଗଲା ପରି ଲାଗେ । ଜଳନ୍ଧର ପ୍ରଭୃତି ମୋର କେହି କେହି ସହପାଠୀ ପରିହାସ କରି ମୋ ସହିତ ଚାଲନ୍ତି ବ୍ୟଙ୍ଗ ବିଦ୍ରୂପ ଅଙ୍ଗ ଭଙ୍ଗୀରେ । ବାପା କଦାପି ପଛକୁ ନ ଚାହିଁ ଧୀରେ ଧୀରେ ଚାଲୁଥିବାରୁ ସେମାନଙ୍କର କିଛି ଅସୁବିଧା ହୁଏ ନାହିଁ । ମୋତେ କିନ୍ତୁ ତାଙ୍କର ଏଭଳି ଆଚରଣ ଭାରି ଖରାପ ଲାଗେ । ତାଙ୍କ ସହିତ ମିଶିବାକୁ ମୁଁ ଘୃଣା କରେଁ । ମାତ୍ର ସେମାନେ ମୋତେ ପୁଣି ଅପମାନ କରିବା ଭୟରେ ମୁହଁ ଫିଟାଇ କିଛି କହିପାରେଁ ନାହିଁ । ତାଙ୍କ ସହିତ ନ ମିଶିବାର ମଧ ଉପାୟ ନଥାଏ—ସେଇପରି ବିଦ୍ରୂପ ଭୟରେ ! ସେମାନେ ଥିଲେ ମୋ'ଠାରୁ ବେଶି ବଳୁଆ ପୁଣି ଫୁଟବଲଆଦି ଖେଳରେ ପାରଙ୍ଗମ ।

ଘରକୁ ଫେରି ସେଠାରୁ ଆଉ ଖେଳପଡ଼ିଆକୁ ଆସିବା ପାଇଁ ବାପାଙ୍କର ମନା ଥାଏ । ସେଥିପାଇଁ ମୁଁ ଦାଣ୍ଡପିଣ୍ଡାରେ ବସି ସାଥୀ ପିଲାମାନଙ୍କୁ ଯା'ଆସ କରୁଥିବା ଲକ୍ଷ୍ୟ କରେଁ । କ୍ଲାସକୁ ଗଲେ ତାଙ୍କ ଥଟ୍ଟା ପରିହାସର ଶିକାର ହୁଏଁ । କିନ୍ତୁ ବାପାଙ୍କ ନିର୍ଦ୍ଦେଶକୁ ଅମାନ୍ୟ କରିପାରେ ନାହିଁ ।

ବଡ଼ଭାଇ ଦିବ୍ୟସିଂହ ସେତେବେଳେ କଲିକତାରେ ଓକିଲାତି ପଢୁଥା'ନ୍ତି । ଆଉ ସାନ ଭାଇ ଭଗବତୀ ଥା'ନ୍ତି ଗାଁରେ ବୋଉ ଓ ଭଉଣୀମାନଙ୍କ ସାଥୀରେ । ବଡ଼ଭାଇନାଙ୍କ ପାଖକୁ ମୁଁ ଥରେ କଲିକତା ଠିକଣାରେ କାର୍ଡ଼ ଖଣ୍ଡେ ଲେଖେଁ, ମୋହଲାଗି ଗୋଟିଏ ଘଣ୍ଟା ଆଣିବାକୁ । ଭାଇନା କିନ୍ତୁ ଆଣିଦେଲେ ଗୋଟିଏ ବଡ଼ ଟାଇମ୍‌ପିସ୍ ।

ବାପା କହନ୍ତି—''ସେ ଗୋଟିଏ ଛୋଟ ଘଣ୍ଟା ମାଗିଥିଲା ସିନା । ଏତେ ବଡ଼ ଘଣ୍ଟା ତ ନୁହେଁ ।'' ଭାଇନା କହନ୍ତି ''ସାନ ଘଣ୍ଟା ସେ ହଜାଇ ଦେବ ।'' ''ନାହିଁ, ସେ ତାକୁ ପକେଟରେ ରଖି ସ୍କୁଲକୁ ଯା'ନ୍ତା ପରା !'' ଭାଇନା ହସନ୍ତି । କିନ୍ତୁ ସେଇ ଟାଇମ୍‌ପିସ୍‌ଟି ମୋର ଖୁବ୍ କାମରେ ଲାଗେ ସ୍କୁଲ ବେଳ ଜାଣିବାକୁ । ତା'ଛଡ଼ା ସେଥିରେ ଯେଉଁ ସେକେଣ୍ଡ କଣ୍ଟାଟି—ସେ କିମିତି ପ୍ରତି ମୁହୂର୍ତ୍ତକୁ ଗଣି ଠିକ୍ ଠିକ୍ ହୋଇ ଚାଲେ ତାକୁ ଦେଖି ଗୋଟିଏ ଲେଖା ମଧ ରଚନା କରେଁ ଭାବବିହ୍ୱଳ ହୋଇପଡ଼ି । ୧୮/୧୧/୧୯୧୮ ତାରିଖରେ ସେଇ ଲେଖାଟି ଏଠାରେ ଅବିକଳ ନକଲ କରିପାରେଁ କି ନିଜ ଲଜ୍ଜାକୁ ପାଠକମାନଙ୍କ ଅନୁକମ୍ପା ନିକଟରେ ଉତ୍ସର୍ଗ କରି ?

''ସେକେଣ୍ଡ କଣ୍ଟା ! ତୁ ମାନବକୁ କି ଶିକ୍ଷା ଦେଉଛୁ ? ତୁ ଏତେ ଛୋଟ ବୋଲି କ'ଣ ତୋ'ଠାରୁ କିଛି ଶିଖାଯାଇ ନ ପାରେ ? ନା, ତା' ନୁହେଁ, ଛୋଟଠାରୁ ଯେ ବଡ଼ କଥା ଶିଖାଯାଏ । ଜଳବିନ୍ଦୁଠାରୁ ଯେ ମହାସାଗରର ବିଶାଳତା ଶିକ୍ଷା ହୁଏ । ସୁନ୍ଦରୀ ସ୍ତ୍ରୀର ମୃତ୍ୟୁ ପରେ ତାହାର କ୍ଷୁଦ୍ର କଙ୍କାଳ ଖଣ୍ଡରୁ ଯେ ବୈରାଗ୍ୟବ୍ରତ ଶିକ୍ଷା ହୁଏ । ଲୋକ ନିଜକୁ ନୀଚ୍ ଭାବିଲେ ଶେଷକୁ ଏକ ମହତ୍ ପୁରୁଷ ହୁଏ ! ତୋ'ଠାରୁ ସେହିପରି ମଧ ସମୟର ମୂଲ୍ୟ ଜଣାଯାଏ । ସେହି ଦୁର୍ମୂଲ୍ୟ ସମୟ, ସେହି ପବିତ୍ର ସମୟ, ସେହି ସୁଖମୟ ସମୟ ସେକେଣ୍ଡ କଣ୍ଟା ! ମୁଁ କି ଅବଲୀଳାକ୍ରମେ ଅତିବାହିତ କରୁଅଛି ? ମୁଁ କେତେଦିନ ପାଇଁ ଆସିଛି । କାଲି ତ ପୁଣି ଚାଲିଯିବି ।

ଆହା ! ସେକେଣ୍ଡ କଣ୍ଟା ! ତୋ' କ୍ଷୀଣ ଶରୀରରେ ବ୍ୟଥା ହେଉ ନାହିଁ ? ସର୍ବଦା ତ ତୁ ଟିକ୍ ଟିକ୍ ଶବ୍ଦ କରି ଦ୍ରୁତ ଗତିରେ ଧାବମାନ । ପ୍ରତି ତାଳେ ତାଳେ ତ ତୁ ସମୟ ଉପରେ ଆଘାତ କରୁଛୁ । ପିଲାଏ ଲୁଚକାଳି ଖେଳିବାବେଳେ ଚୋର କରିବାକୁ ଯେପରି ଏକ ଦୁଇ କରି ଜଣ ଜଣ କରି ଗଣିଯା'ନ୍ତି ଏବଂ ଶେଷରେ ଯାହା ଉପରେ କୋଡ଼ି ପଡ଼େ ତାକୁ ଚୋର କରନ୍ତି । ତୁ ସେପରି ଗୋଟିଏ ଗୋଟିଏ ରେଖା ଉପରେ ଡେଇଁ ଡେଇଁ ଚାଲିଯାଉଛୁ । ଯେଉଁଦିନ ମୋତେ ସଂସାରରୁ ବିଦାୟ ନେବାକୁ ହେବ, ଯେଉଁଦିନ ସବୁ ମାୟା ମମତା ତ୍ୟାଗ କରିବାକୁ ହେବ, ଯେଉଁଦିନ ଏ ସୁକୁମାର ଶରୀର ମାଟି ହୋଇଯିବ, ତେତିକିବେଳେ ଚୋର ଗଣୁ ଗଣୁ ତୋ' କୋଡ଼ି ମୋ ଉପରେ ପଡ଼ିଯିବ ।

ମୋ ସମୟ ସେହିଠାରୁ ସରିଯିବ । ମାତ୍ର ତୋ କୋଡ଼ିଗଣା ସେହିପରି ତ ଚାଲିଛି । ତାହାର ତ ବିରାମ ନାହିଁ । ତୋର ଅପବ୍ୟବହାର କରୁଥିବା ଲୋକକୁ କ'ଣ ତୁ ପରିହାସ ଛଳରେ ମୁହଁ ଏଡ଼ିଦେଇ ଚାଲିଯାଉଛୁ ? ଅବା କ'ଣ ସ୍ୱୀୟ ଆଙ୍ଗୁଠି ପ୍ରଦର୍ଶାଇ ଦେଇ ସମୟ

କିପରି ଚାଲିଯାଉଛି ତାହା ଦର୍ଶାଇ ଦେଉଛୁ ? ଏହି ସେକେଣ୍ଡ କଣ୍ଟା ! ଚାଲୁଛ, ପୁଣି ଆଖି ଫେରାଇ ଦେଖେଁ, ସ୍ୱୀୟ ସ୍ଥାନକୁ ଆଉ ଥରେ ଫେରି ଆସିଲୁଣି । ଏତେ ସୁଖ ସ୍ୱାଚ୍ଛନ୍ଦ୍ୟ, ଆମୋଦ ପ୍ରମୋଦ, ଏତେ ବିଭବ ବାଞ୍ଛା ସବୁ ତୋର ଏକ ଫୁଟିକିକୁ ମଧ ଅଣ୍ଟିବେ ନାହିଁ । ମାନବ କି ଅନ୍ଧ ।

ଯେତେ ମହାପୁରୁଷ, ଯେତେ କର୍ମବୀର, ଯେତେ ସ୍ୱନାମଧନ୍ୟ ବ୍ୟକ୍ତି ସମସ୍ତେ ତୋହରି ସେବା ଫଳରୁ ସିନା ଏପରି ପୂଜ୍ୟ, ଏପରି ଆଦର୍ଶ ! ତୁ ସମୟକୁ ଦେଖାଉ ନା ତୋତେ ସମୟ ଦେଖାଏ—ଏ ଗୂଢ଼ ରହସ୍ୟ ସେକେଣ୍ଡ୍ କଣ୍ଟା ! ମୋ ହୃଦୟରେ ତ ପ୍ରବେଶ କରିପାରୁ ନାହିଁ । କ୍ଷୁଦ୍ର ମୁଁ, କାହୁଁ ବୁଝିବି, ସମୟ ଜାଣିବାକୁ ହେଲେ ତୋତେ ଦେଖିବାକୁ ହୁଏ । ତୋତେ ଦେଖିଲେ ମଧ ସମୟ ଜଣାଯାଏ । ତେବେ ତୁ କ'ଣ ସମୟ !

ଯାହାହେଉ ସେକେଣ୍ଡ କଣ୍ଟା ! କେତେ ରଜା, କେତେ ମହାରାଜା, କେତେ ପଣ୍ଡିତ, କେତେ ମହାପୁରୁଷଙ୍କୁ ତୁ ଏହି ଟିକ୍ ଟିକ୍ ରବରେ ଚେତନା କରାଇ ଦେଇଛୁ, ଦଉଛୁ, ଏବଂ ସେହି ରବରେ କୁଆଡ଼େ ଉଡ଼ାଇ ଦେଇଛୁ, ଦେଉଥିବୁ । ଚାଲ୍ ସେକେଣ୍ଡ କଣ୍ଟା । ଆଉ ଦ୍ରୁତଗତିରେ ଚାଲ । ମୂର୍ଖ ନର ତୋ ମହିମା ବୁଝୁ । ମୋତେ ତୋ ଟିକ୍ ଟିକ୍ ରବ ଶୁଣା । ମୁଁ 'ଟିକି' (କ୍ଷୁଦ୍ର) ହୁଏଁ ।''

ଆଜି ୨୩/୧୧/୭୧ତାରିଖକୁ ଠିକ୍ ତେପନ ବର୍ଷ ପୂର୍ବର ଏଇ ରଚନାର ଭାଷା ଓ ଚିନ୍ତାଧାରା ମୋର ବେଶି କିଛି ବଦଳିଲା ଭଳି ଲାଗୁ ନାହିଁ ତ ! ଅଥଚ ମଝିରେ କେତେ ଯେ କ'ଣ ଘଟିଗଲାଣି, ମୋର ପୁଣି ଦେଶ ଦୁନିଆର ! କେତେ ଲକ୍ଷ ଥର ସେକେଣ୍ଡ୍ କଣ୍ଟା ବୁଲି ଆସିଲାଣି ତା'ରି ବୃତ୍ତ ଚାରିପଟେ ।

ବର୍ଷକ ପରେ ଆଉ ଗୋଟିଏ ବର୍ଷ ଅବଲୀଳାକ୍ରମେ ମୁଁ ପରୀକ୍ଷାରେ ପାସ୍ କରି କ୍ଲାସ୍ ଉଠିଲି । ବାପାଙ୍କ କଡ଼ାକଡ଼ି ନିୟମ ମଧ ମୋହ ପ୍ରତି କୋହଳ ହୋଇ ଆସେ । ସାଙ୍ଗସାଥୀ ମେଳରେ ଖେଳପଡ଼ିଆ ପୁଣି ସମୁଦ୍ରକୂଳ ବୁଲିଯିବାକୁ ଆଉ ସେମିତି କଟକଣା ରହିଲାନି ।

କ୍ଲାସକୁ ଶିକ୍ଷକ ଆସି ନ ଥିବାବେଳେ ସହପାଠୀମାନଙ୍କୁ ମୁଁ ଗପ କହେଁ । ସେସବୁ ଗପ ମୁଁ ଗାଁରେ ସାଙ୍ଗସାଥୀମାନଙ୍କଠାରୁ ଶୁଣିଥାଏଁ । କେତେ ଭୂତପ୍ରେତ ବୁଢ଼ୀ ଅସୁରୁଣୀ ଗପ—ସେମାନେ ମୋତେ ଘେରିବସି ଏକ ଧ୍ୟାନରେ ଶୁଣନ୍ତି । ପୁଣି କେତେ 'ବାନ୍ଧ୍ ଦଉଡ଼ି ପିଟ୍ ଠେଙ୍ଗା' ଗପ ଶୁଣି ହସି ହସି ଗଡ଼ିଯା'ନ୍ତି । ଏଇ ସୂତ୍ରରେ ଅନେକ ଅପରିଚିତ ମୋର ନିକଟତମ ବନ୍ଧୁ ହୋଇପଡ଼ନ୍ତି । ରୋଜ୍ ନୂଆ ନୂଆ ଗପ କହିବାକୁ ବରାଦ ଆସେ । ମୁଁ ଏତେ ଗପ ଶିଖିଥାଏଁ ଯେ ପ୍ରତି ଦିନ ନୂଆ ଗପ କହିବାକୁ ପୁଣି ହୁଏତ ନିଜେ ତା' ଭିତରୁ ନୂଆ ଗପଟିଏ ଫାନ୍ଦିଦେବାକୁ ମତେ ବି ଲାଗେ ଭାରି ମଜା ।

'ଗପ' ଉତ୍ତାରୁ 'ଗୀତ'— !

ଗାଁରୁ ଗୀତ ବୋଲିବାର ଟିକିଏ ମୋ'ର ଅଭ୍ୟାସ ବି ଥିଲା । ଖଣ୍ଡେ ଛୋଟ ବେହେଲା କିଣି ବଜାଇ ଶିଖିଲି । ସାଧୁକକେଇ ଥିଲେ ବେହେଲା ଓସ୍ତାଦ୍ । ପୁରୀ ସମୁଦ୍ର କୂଳକୁ ବୁଲି

ଗଲାବେଳେ ସାଙ୍ଗମାନଙ୍କ ଅନୁରୋଧରେ ସମୁଦ୍ର ଲହରୀର ନୃତ୍ୟ ତାଳେ ତାଳେ ଗୀତ ବୋଲେଁ—

ସାଇତା ଥିବାରେ ଲୋଡ଼ା ନୋହିବାରେ
ଲିଭିବାର ବଡ଼ କ୍ଲେଶରେ ସଙ୍ଗାତ ! ଆଉ କି ପଚାରୁ ବେଶ ।''
ପୁଣି, ''ବ୍ରଜରାଜ ସୁତ ଫାନ୍ଦେ ପଡ଼ି ମିତ
କେତେ କଥା ଦେହ ସହୁଛି—'' ଇତ୍ୟାଦି ।

ଉପେନ୍ଦ୍ର-କବିସୂର୍ଯ୍ୟଙ୍କଠାରୁ ଆରମ୍ଭ କରି ଆଧୁନିକ କବି କୃଷ୍ଣମୋହନଙ୍କ 'ସାଗରେ ଭୂଧରେ ପ୍ରାନ୍ତରେ ଅମ୍ବରେ ଶୁଭୁ ଉତ୍କଳର ଜୟଗୀତି' ପର୍ଯ୍ୟନ୍ତ ଅନେକ ସଙ୍ଗୀତ ମୋର ମୁଖସ୍ଥ । ବନ୍ଧୁ ମେଳରେ ବସି ସେସବୁ ବୋଲିବା ସଙ୍ଗେ ବାହାବା ମଧ ପାଏଁ ଅନେକ । ଅଥଚ ଆଜି ସେମିତି ଅଭିନୟ କଲେ ଉପହସିତ ହେବା ଛଡ଼ା ଅନ୍ୟ ପୁରସ୍କାର ତ କଦାପି ଆଶା କରାଯାଇ ନ ପାରେ !

ସେଇ ଗୁଣପାଇଁ ମିଳିଛି ମୋତେ ସ୍କୁଲରୁ ମଧ ପୁରସ୍କାର । ସର୍ଗତ ଦାଶରଥି ପାଣିଗ୍ରାହୀଙ୍କ ଭଳି କଡ଼ା ହେଡ଼ମାଷ୍ଟର ସୁଦ୍ଧା ମୋ ଆବୃତ୍ତିରେ ମୁଗ୍ଧ ହୋଇ ସାବାସ୍ ଦେଇଛନ୍ତି ସ୍କୁଲର ବାର୍ଷିକ ପୁରସ୍କାର ବିତରଣ ଉତ୍ସବରେ । ସହପାଠୀ 'ଚାରୁ' ଓ ମୁଁ ଦୁହେଁ ଯେତେବେଳେ ଏକ ସ୍ୱରରେ ଗାଉଥିଲୁଁ—

କେହି ରହି ନାହିଁ ରହିବେ ନାହିଁଟି
ଭବରଙ୍ଗ ଭୂମି ତଳେ
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳବଳେ ।

ସେତେବେଳେ ଏତେ ବଡ଼ କଡ଼ା ହେଡ଼ମାଷ୍ଟର ଶ୍ରୀ ଦାଶରଥି ପାଣିଗ୍ରାହୀଙ୍କ ରୋଲଡ଼ଗୋଲଡ଼୍ ଫ୍ରେମ୍‌ର ଚଷମାଭିତରୁ ମଧ ଦୁଇ ଆଖି ଜକେଇ ଆସେ । ତାଙ୍କ ପାଖରେ ବସି ଆମ ଆବୃତ୍ତି ଶୁଣୁଥିବା ପଣ୍ଡିତ ଶ୍ରୀ ଫକୀର ମିଶ୍ର କାବ୍ୟତୀର୍ଥଙ୍କୁ ଦାଶରଥିବାବୁ ନିଜର ଫ୍ରେଞ୍ଚକଟ୍ ବିପୁଳ ଶ୍ମଶ୍ରୁ ଭିତରୁ ବୋଧହୁଏ କହିପକାନ୍ତି, ''ବାଃ, ଚମତ୍କାର'' ।

ପଣ୍ଡିତ ମହାଶୟ ମୁଣ୍ଡ ଟୁଙ୍ଗାରି ନିଜ ସମର୍ଥନ ଜଣାନ୍ତି । ଭାବମୟ ସଙ୍ଗୀତକଳାରେ ପିଲାଦିନୁ ଗାଁଠାରେ ଯେଉଁ ପ୍ରସ୍ତୁତି ଆରମ୍ଭ କରିଥିଲି, ତାହାର ଆଜି ଏଇ ସୁଫଳ ଲାଭ କରି ମୁଁ ଉତ୍‌ଫୁଲ୍ଲ ହୋଇପଡ଼େଁ । ସମୁଦ୍ରକୂଳରେ ସାନ୍ଧ୍ୟଭ୍ରମଣ ସମୟରେ ବନ୍ଧୁମାନଙ୍କଠାରୁ ବରାଦ ଆସେ ଗୀତ ବୋଲିବାପାଇଁ ଅଧିକରୁ ଅଧିକ ।

ଗୀତବୋଲାରେ ମୋର ସୁଖ୍ୟାତି ସଙ୍ଗେ ବନ୍ଧୁ ବାନ୍ଧିବା ପରିସର ବଢ଼ିଯାଏ । ଗାଁରେ ଯେମିତି ବାଗୁଡ଼ି, ବୋହୂଚୋରି, ପୋଖରୀ ପହଁରା, ବନଶୀପକା ଆଦି ଖେଳରେ ବନ୍ଧୁ ସମାଗମ ଚାଲିଥାଏ, ପୁରୀରେ ସେମିତି କେତେ ନୂଆ ବନ୍ଧୁ ଜୁଟିଗଲେ ଏମିତି ଗୀତ ଶୁଣିବା

ପାଇଁ । ସମୁଦ୍ରର କଅଁଳ ବାଲି, ନୃତ୍ୟଶୀଳ ଲହରୀମାଳା ପୁଣି ଦିଗହରା ବିସ୍ତୃତି ଯେମିତି ମୋତେ ନଚାଇ ଖେଳାଇ କନ୍ଦାଇ ହସାଇ ଅହରହ ଚେତାଇ ମତାଇ ରଖିଲା ।

କେତେ ଯେ ନୂଆ ନୂଆ ବନ୍ଧୁ ଆସି ଜୁଟିଗଲେ! କେତେ ସଞ୍ଜସକାଳ ଯେ ସମୁଦ୍ରପଡାରେ ବୁଡ଼ିଲା ସୂର୍ଯ୍ୟ ଓ ଉଇଁଲା ସୂର୍ଯ୍ୟକୁ ଚାହିଁ ବିତିଗଲା । ବିତିଗଲା କେତେ ନୂଆ ନୂଆ ବନ୍ଧୁ ସମାଗମ, ହସଖୁସି ମିଳନ ପୁଣି ମନାନ୍ତର—ସମୁଦ୍ର ଭିତରକୁ ଫେରିଯାଉଥିବା ଲହଡ଼ି ପଛେ ପଛେ ଗୋଡ଼ାଇଯାଇ ପୁଣି ଉଜାଣି ମାଡ଼ି ଆସୁଥିବା ସଂଖ୍ୟାତୀତ ଲହଡ଼ିଗୁଡ଼ିକୁ ଆଲିଙ୍ଗନ କରିବା—ପର କ୍ଷଣରେ ତାଙ୍କର ପୁଣି ଅନ୍ତର୍ଦ୍ଧାନ ଭଳି !

ସେଥିଲାଗି ତେବେ ଶୋଚନା ହୁଏ କାହିଁକି କେଜାଣି ! ମୋ ଆଗରୁ ତ ଏଇ ଅଭିନୟ କରିସାରି କେତେ ଆସି କେତେ ଗଲେଣି, ମୋ ସାଙ୍ଗରେ ବି ଚାଲିଛନ୍ତି ଆଉ ମୋ ପରେ ମଧ ଚାଲିବେ କେତେ ! ସୁଖ ଶୋଚନା ବି ଚାଲୁ ରହିଛି ସେମିତି—ସେମିଚି ଚାଲିଛି ସୁଖ ଦୁଃଖ ମାନାପମାନକୁ ସମଦୃଷ୍ଟିରେ ନବିଚାରିବାର ସାଧନା ! କିମାଶ୍ଚର୍ଯ୍ୟମତଃ ପରମ୍ ?

ସହରକୁ ଆସିବା ପରେ ବାପାଙ୍କର କଡ଼ା ଆଦେଶ ଥାଏ, ମୁଁ ସ୍କୁଲରୁ ଫେରି କୁଆଡ଼େ ଯିବିନି, ଖାଲି ଦାଣ୍ଡପିଣ୍ଡାରେ ତୁନିହୋଇ ବସି ସବୁରି ଯା'ଆସ ଦେଖୁଥିବି । ସେଥିଲାଗି ସାଥୀପିଲାଙ୍କ ପରିହାସର ମୁଁ ଶିକାର ହୁଏଁ । କେହି କେହି ଖେଳପଡ଼ିଆକୁ ଗଲାବେଳେ ମୋ ଆଗରେ ହାତ ହଲାଇ ବୋଲନ୍ତି---

ପିତାମାତା ପରି ଆଉ କେ ଅଛି ସଂସାରେ ।
ଧନ୍ୟ ସେ ଯେ ଦିଏ ପ୍ରାଣ ତାଙ୍କରି ସେବାରେ ।।''

ଆଉ କିଏ ଚାହିଁଚାପରା କରନ୍ତି ମଧ ମୋ ଆଗରେ ନାଚି ନାଚିକା ।

''ବାଳକେ ମୋର ବୋଲକର
ସତ୍ୟ ପାଳିବ ନିରନ୍ତର ।''

ଏହି ରୂପେ ପ୍ରଥମ ଦୁଇ ଚାରିଟିବର୍ଷ ବିତିଯିବା ପରେ ଅବଶ୍ୟ ବନ୍ଧନ ମୋର କୋହଳ ହୋଇପଡ଼େ ।



# ନମୋ ଗଣେଶ ବିଘ୍ନେଶ

ଗାଁରେ କାନଫୋଡ଼ା ବିଦ୍ୟାରମ୍ଭ । ୧୦୮ଟା ନଡ଼ିଆ ଭାଙ୍ଗୁ ଭାଙ୍ଗୁ ହାତମୋର ରହିଯାଏ ତହୁଁ ପୁରୋହିତ ଆପଣେ ସାହାଯ୍ୟକରି ଶିଳପଟା ଉପରେ ନଡ଼ିଆତକ ଗୋଟିକପରେ ଆଉ ଗୋଟିଏ ଭାଙ୍ଗନ୍ତି ମନ୍ତ୍ର ପାଠକରି—

ନମୋ ଗଣେଶ ବିଘ୍ନେଶ ଗିରିଜାନନ୍ଦନ ପ୍ରଭୁଃ ।
ମମ ବିଘ୍ନ ବିନାଶାୟ ଗଣାଧିପତୟେ ନମଃ ॥

ନଡ଼ିଆ ତକ ଭଙ୍ଗାଯାଇ ଗୋଟାଏ ବଡ଼ ବେତାରେ ଭର୍ତ୍ତି ହୁଏ । ଶେଷରେ କାନ ଫୋଡ଼ିଥିବା ବାରିକ, ଶ୍ଳୋକ ବୋଲିଥିବା ନାହାକ ଅବଧାନ ଓ ମନ୍ତ୍ରପାଠ କରିଥିବା ପୁରୋହିତଙ୍କ ମଧରେ ଅନେକ ଯୁକ୍ତିତର୍କ ମଧେ ମଧେ ଗାଳି ଫଜିୟତିରେ ପରିଣତ ହୋଇ ଭଙ୍ଗା ନଡ଼ିଆ ଭାଗ ବଣ୍ଟା ହୁଏ ।

ଅବଶ୍ୟ କାନ-ଫୋଡ଼ାର ଅନେକ ଆଗରୁ ମୋ'ର ବିଦ୍ୟାରମ୍ଭ ହୋଇ ସାରିଥାଏ । ଆଜି ବି ମୋ'ଠାରୁ ପାଞ୍ଚବର୍ଷ ବଡ଼ କମଳାନାନୀ ସେଇ ଘଟଣାକୁ ମନେ ପକାଇ କହେ, କାନଫୋଡ଼ା ଆଗରୁ କୁଆଡ଼େ ମୁଁ ବହୁତ ପାଠ ପଢ଼ି ସାରିଥିଲି ।

କାନଫୋଡ଼ାର ଅଳ୍ପ କେତେଟା ବର୍ଷ ପରେ ପୁଣି ଆସେ ମୋ'ର ବ୍ରତଘର । ସବୁ ଭଉଣୀ ଭିଣୋଇମାନେ ଜମା ହୋଇ କରନ୍ତି ଆସି ଘର ଗହଳି । ଦିଅଁ ମଙ୍ଗୁଳା ଠାରୁ ସାତ ମଙ୍ଗୁଳା ଯାକେ ଶଙ୍ଖ ମହୁରି ବାଜା ବରକାଠରେ ଉଚ୍ଛୁଳି ପଡ଼େ ଗାଁ ଦାଣ୍ଡ । ସବୁରି ଘରେ ଯେମିତି ସେଇ ଉତ୍ସବର ସୁଅ ଛୁଟିଛି । ସବୁରି ଘର ପିଲାଙ୍କ ଭିତରେ ହସ ଖେଳ ନାଚ ଗୀତର ଢ଼େଉ ।

ବ୍ରତ ପରେ ନିଜର ଟିକିଏ ସ୍ୱାତନ୍ତ୍ର୍ୟବୋଧ ଆସେ । ପଇତାକୁ ଏକ ପବିତ୍ର ପଦାର୍ଥ ଜ୍ଞାନରେ ମଳମୂତ୍ର ତ୍ୟାଗ ସମୟରେ ତାହାକୁ କର୍ଣ୍ଣରେ ଧାରଣ କରିବାକୁ ହୁଏ । କାରଣ ସ୍ୱୟଂ ଗଙ୍ଗାଦେବୀ ବ୍ରାହ୍ମଣ କର୍ଣ୍ଣରେ ବାସକରନ୍ତି । ଅନ୍ନ ଆହାର ସମୟରେ ଚଳୁ କରି 'ବ୍ରହ୍ମଣେ ନମଃ, ଧର୍ମରାଜାୟ ନମଃ', ଇତ୍ୟାଦି ପୂଜା ପାଠ କରିସାରି ଖାଇବା ସମୟରେ ବାନାୟ ସ୍ୱାହା, ପାନାୟ ସ୍ୱାହା, ଅପାନାୟ ସ୍ୱାହା କହି ପଞ୍ଚଗ୍ରାସ କରିବା ଭଳି କେତେକ ନିୟମ ଓ ମନ୍ତ୍ର ଭିତରେ ନିଜର ଦୈନନ୍ଦିନ ଦୈହିକ କର୍ମଗୁଡ଼ିକ ନିୟନ୍ତ୍ରିତ ହୋଇଥାଏ ।

ସକାଳୁ ନିଦ ଭାଙ୍ଗିବା ମାତ୍ରେ ଶେଯରୁ ଉଠି ପ୍ରତି କାମ ପାଇଁ ସ୍ୱତନ୍ତ୍ର ମନ୍ତ୍ରପାଠର ବିଧାନ ଅଛି ଶେଷରେ ଶୋଇବାକୁ ଯିବା ପର୍ଯ୍ୟନ୍ତ । ସେଗୁଡ଼ିକୁ ମୁଖସ୍ଥ କରି ବସିବା, ଉଠିବା, ଛିଙ୍କିବା, କାଶିବା ଆଦି ସବୁ କାମରେ ଆବୃତ୍ତି କରିବା ମୋ' ପକ୍ଷରେ ସମ୍ଭବପର ହୁଏ ନାହିଁ ।

ସେଇ ତ୍ରୁଟି ପାଇଁ ଅବଶ୍ୟ ମୋର ଲଜ୍ଜା ନ ଥାଏ । କାରଣ ମୋର ସାଙ୍ଗସାଥୀ କି ବଡ଼ବଡ଼ିଆ କେହି ହେଲେ ନିତ୍ୟ କର୍ମ ପଦ୍ଧତିର ସବୁ ନିର୍ଦ୍ଦେଶକୁ ମାନି ଚଳିପାରନ୍ତି ନି । ତାହା ବୋଧହୁଏ ସମ୍ଭବପର ନୁହେଁ । ତେଣୁ ସେଗୁଡ଼ିକର ସଂକ୍ଷେପକରଣ କରାଯାଇ ଶେଷରେ ମନ୍ତ୍ରପାଠ ଏକାବେଳେ ନିପାତ ।

ଆମ ଘରେ ବାପାଙ୍କଠାରେ ବି ସେଇ କଥା ମୁଁ ଦେଖେଁ । ଘର ଭିତରେ ବାପା ସବୁବେଳେ ଗେରୁଆ ଲୁଗା ପିନ୍ଧନ୍ତି । ପଇତା ଘେନନ୍ତି, ଚଳୁ କରନ୍ତି । ରୋଜ ଗାଧୋଇ ସାରି ଗୀତା ପଢ଼ନ୍ତି ଓ ଜପ କରନ୍ତି ପ୍ରାୟ ଗୋଟିଏ ଘଣ୍ଟା—କିନ୍ତୁ ଚିତା ଘେନନ୍ତି ନାହିଁ । ଆମ ବେଳକୁ ତା'ର ସଂକ୍ଷିପ୍ତ ସାର ହୋଇ ଶେଷକୁ ସବୁ କ୍ରିୟାକାଣ୍ଡ ଅସାର ହୋଇ ପଡ଼ିଲାଣି ।

ବ୍ରତଘର ପରେ ବ୍ରାହ୍ମଣ କର୍ମକର୍ମାଣିରେ ଯେମିତି ମନୋନିବେଶ କରିଥିଲି ତାହାର ପ୍ରଧାନ ଗୁରୁଥିଲେ ମୋ'ର ସେଇ ପିଇସୀପୁଅ ଭାଇ ଭୋବନିଭାଇନା । ତାଙ୍କରିଠାରୁ ପଇତାମନ୍ତ୍ରଣ ଶିଖିଲି । ପୁଣି ସାଙ୍ଗସାଥି ମାମୁପୁଅ ଭାଇଙ୍କ ଠାରୁ ମଧ ସନ୍ଧ୍ୟା ଗାୟତ୍ରୀ ଆଦି ମନ୍ତ୍ର ଶିଖି ସକାଳୁ ଉଠି ରାତିରେ ଶୋଇବା ପର୍ଯ୍ୟନ୍ତ ଯେତେ ପ୍ରକାର କର୍ମ ସଙ୍ଗେ ମନ୍ତ୍ରପାଠ କରାଯାଏ, ସେଗୁଡ଼ିକୁ ଅଭ୍ୟାସ କଲି ।

'ନିତ୍ୟକର୍ମ ପଦ୍ଧତିଃ' ବୋଲି ଏଇସବୁ ମନ୍ତ୍ର ଛପା ହୋଇ ଖଣ୍ଡିଏ ଚଟି ବହି ଅଛି । ସେ ବହି ଖଣ୍ଡି କିଣି ଏ ସବୁ ମନ୍ତ୍ର ସେଥିରୁ ମୁଖସ୍ଥ କଲି । ଏବେ ମଧ ସେଇ ବହି ମିଳୁଛି ବଜାରରେ । କିନ୍ତୁ ବ୍ରତ ହୋଇ ମନ୍ତ୍ରଗୁଡ଼ିକୁ ମୁଖସ୍ଥ କରିବା ରୀତି ବୋଧହୁଏ ବହୁତ କମିଗଲାଣି । ମୋରି ପୁଅ ନାତିମାନେ ଆଉ ସେସବୁ ଉପରେ ଗୁରୁତ୍ୱ ଦିଅନ୍ତି ନାହିଁ ।

ଆମରି ଘରେ ମଧ ବାପା କେବେହେଲେ ଏ ସବୁ ମନ୍ତ୍ରପାଠ ଉପରେ ଗୁରୁତ୍ୱ ଦେଉ ନ ଥିଲେ । ନିଜେ କେବଳ ପ୍ରାୟ ଗୋଟିଏ ଘଣ୍ଟା ସମ୍ପୂର୍ଣ୍ଣ ନୀରବ ରହି ଗୀତାପାଠ ଜପତପ ଛଡ଼ା ଚିତା ତିଳକ ପ୍ରଭୃତି କିଛି କରୁ ନଥିଲେ ସେ । ଗାଁରେ ଯେମିତି ଗାଧୋଇସାରି କୁଟୁମ୍ବମାନଙ୍କ ଭଳି ଦିଅଁଙ୍କ ଘରେ ମୁଁ ଚିତା କରୁଥିଲି, ପୁରୀକୁ ଆସି ତାହା ପାସୋରି ପକାଇଲି । 'ନିତ୍ୟକର୍ମ ପଦ୍ଧତି'ର ପ୍ରଭାବ ମୋ ଉପରୁ କ୍ରମେ ପୂରାପୂରି କମି ଆସିଲା ।



# ବଡ଼ ଦେଉଳକୁ ଚାହାଁରେ

ପୁରୀକୁ ଆସି ଦେଖେଁ, ମସ୍ତ ବଡ଼ ସହର । ଆମ ଗାଁ ପାଖ ଭୁବନେଶ୍ୱର (ଅବଶ୍ୟ ପୁରୁଣା ଭୁବନେଶ୍ୱର) ଠାରୁ ଆଉ ଏମିତି ବଡ଼ ସହର ପୁଣି ନିତି କେବେହେଲେ ଏତେ ବିଚିତ୍ର ବେଶଭୂଷାରେ ଲୋକେ ଯା'ଆସ କରୁଥିବା ମୁଁ ଦେଖି ନ ଥିଲି । ତା'ସାଙ୍ଗକୁ ପୁଣି ମହା ସମୁଦ୍ର କେତେ ପାଣି, କି ବିରାଟ ଲହରୀମାଳ, କୁଆଡ଼େ ତା'ର ଶେଷ !

ଗାଁ ଚିକିଟା ମାଟିରୁ ଆସି ଦୟା ଭାର୍ଗବୀ କଅଁଳ ବାଲିରେ ଶଗଡ଼ ଚକ ପୋତି ହୋଇପଡ଼ି ବଳଦଙ୍କ ଚାଲି ମନ୍ଥର ହେଲାବେଳେ ଶଗଡ଼ରୁ ଡେଇଁପଡ଼ି ବାଲି ଉପରେ ଚାଲିବା ମଜାଠାରୁ ଏ ଯେ ଆହୁରି କେତେ ବେଶି । ସେଠାରେ ତ ଗୋଟାଏ ପଟେ ବାଲୁକାଟି ପୁଣି ଆରପଟେ ଲିଙ୍ଗିପୁର ନଈବନ୍ଧ ଉପରେ ଆୟପଣସର ଗଛଗହଳି ମଝିରେ ବାନ୍ଧିହେଲା ଭଳି କୁଆଖାଈରୁ ଦୟା ପୁଣି ଭାର୍ଗବୀ ନଈ ଦୁଇ ପଟକୁ ଅଲଗା ହୋଇ ଯାଇଛନ୍ତି । ଏଠାରେ ଯେ ସମୁଦ୍ରଟା କେଉଁଠି ଛିଡ଼ିଛି ଆଖି ପାଏନି; ତା'ରି ବାଲି ଉପରେ ଡେଇଁଲାବେଳେ ସତେ ଯେମିତି ସମୁଦ୍ର ଲହରୀ ସାଥିରେ ଡେଇଁଲା ଭଳି ମନଟା କାହିଁ କୁଆଡ଼େ ଯେ ପଳାଏ, ତା'ର ଅନ୍ତ କାହିଁ ?

ପୁରୀର ସେଇ ସମୁଦ୍ର ଲହଡ଼ି ମନ ଭିତରେ ମୋର କେତେ ଯେ ଲହଡ଼ି ନଚାଏ, ପୁଣି ତା'ର ସେଇ ଅପୂର୍ବ ନୀଳ ଦିଗ୍‌ବଳୟ କେତେ ରହସ୍ୟରେ ଯେ ହସାଏ ! ଆଜି ନାଚକୁଦ କରିବା ବୟସର ଗଲେବି ମନଟା ତ କାହିଁ ଯାଇନି । ଆଜି ବି ସେମିତି ମନ ଧାଏଁ ବାଲି ଉପରେ ଡେଇଁବାକୁ—ସମୁଦ୍ର ଭିତରେ ଲହଡ଼ି ଭାଙ୍ଗି ନାଚିବାକୁ—ଗୋଟିକ ପରେ ଆଉ ଗୋଟିଏ ଲହଡ଼ିକୁ ସେମିତି ଆଲିଙ୍ଗନ ଚୁମ୍ବନ ଦେବାକୁ । କେତେ ବର୍ଷ ପରେ ଏଇ ସମୁଦ୍ର—ସ୍ମୃତିରେ ଲେଖିଛି କବିତା ପୁଣି ମୋର ଛୋଟଗଳ୍ପ 'ସାଗରିକା'।

'ସାଗରିକା' ଗଳ୍ପଟି ମୋର କେତେ ବିଶିଷ୍ଟ ପାଠକଙ୍କ ମନକୁ ଛୁଇଁଥିଲା ସେତେବେଳେ କଳ୍ପନା-ବିଳାସର ପ୍ରତୀକ ରୂପେ । ସେଇପରି ସମୁଦ୍ର ବିଷୟରେ କବିତା ମଧ । ଗଳ୍ପଟି ଅବଶ୍ୟ 'ଉତ୍କଳ ସାହିତ୍ୟ' ମାସିକ ପତ୍ରିକାରେ ପ୍ରକାଶିତ ହୁଏ ମୋ'ର କଲେଜପଢ଼ା କାଳରେ । ତାହାରି ପ୍ରାୟ ସମସାମୟିକ ସୁଦୀର୍ଘ କବିତା ହେଲା ମୋ'ର 'ପୁରୀ-ମନ୍ଦିର' । 'ସାଗରିକା' ଗଳ୍ପଟି ଯେପରି ଶ୍ରୀ ହରିଶ୍ଚନ୍ଦ୍ର ରାୟ ପ୍ରମୁଖ ବହୁ ପାଠକଙ୍କ ମୁଖରୁ ପ୍ରଶଂସା ଆକର୍ଷଣ କରେ, ସେଇପରି ମଧ 'ପୁରୀ-ମନ୍ଦିର' କବିତା ଶ୍ରୀ ରାଜକୃଷ୍ଣ ବୋଷଙ୍କଠାରୁ ଆରମ୍ଭ କରି ସର୍ଗତ ଚିନ୍ତାମଣି ଆଚାର୍ଯ୍ୟଙ୍କ ପର୍ଯ୍ୟନ୍ତ । କିନ୍ତୁ ବାପା କ୍ରୁଧ ହୋଇଥିଲେ—''କାଷ୍ଠ ପାଷାଣ ନିର୍ମିତ ହେ ନିର୍ଜୀବ ଦେବତା—ମୂରତି'' ପ୍ରଥମ ଧାଡ଼ିଟି ପଢ଼ିବାକ୍ଷଣି ।

''ଜଗନ୍ନାଥଙ୍କ ପାଇଁ ଏଇ ବର୍ଣ୍ଣନା ବିଶେଷଣ ତୋତେ ମିଳିଲା ?'' ବିରକ୍ତ ହୋଇ ବାପା ମନ୍ତବ୍ୟ କରନ୍ତି ।

''କାହିଁକି ? ପର ଧାଡ଼ିରେ ତ ତାଙ୍କୁ ମୁଁ 'ବିଶ୍ୱର କୀରତି' ବୋଲି ପ୍ରଶଂସା କରିଛି ମଧ୍ୟ ।'' ଏଇ ଭଳି ଯୁକ୍ତି ବାଢ଼ିବାକୁ ମୁଁ ଉଦ୍ୟମ କରେଁ ।

''ଓଃ, ଖୁବ୍ ଦୟା ଅନୁଗ୍ରହ କରିଛୁ ଜଗନ୍ନାଥଙ୍କୁ । ଆଚ୍ଛା ଗୋଟିଏ କଥା କହିଲୁ ଦେଖି—ଜଗନ୍ନାଥେ ବିଶ୍ୱର କୀରତି ନା ବିଶ୍ୱ ତାଙ୍କର କୀରତି ?'' ବାପା ଉତ୍ତେଜିତ ହୋଇଉଠନ୍ତି ।

ଯେଉଁ କବିତା ଉପରେ ମୁଁ ଏତେ ପ୍ରଶଂସା ଚାରିଆଡ଼ୁ ପାଇଲି, ସେ ତାହାକୁ ନାପସନ୍ଦ କରିବାରୁ ମନଟା ମୋର ବିଗିଡ଼ିଯାଏ । ମୁଁ ଆଜି ବୁଝୁଛି, ସେ ଦିନ କବି ଚଣ୍ଡୀଦାସଙ୍କ ସେଇ ସୁପରିଚିତ ଉକ୍ତିଟିକି ତାଙ୍କୁ ନଜିର ସ୍ୱରୂପ ଦେଇପାରିଥାନ୍ତି କି—''ସବୁରି ଉପରେ ମଣିଷ ସତ୍ୟ ତା' ଉପରେ କେହି ନାହିଁ ।''

କିନ୍ତୁ ବାପା କ'ଣ କାହାରି କଥା ଶୁଣନ୍ତେ ? କବି ଚଣ୍ଡୀଦାସଙ୍କୁ ସୁଦ୍ଧା ସେ ପାସଙ୍ଗରେ ପକାନ୍ତେ ନାହିଁ । ତାଙ୍କ ପାଖରେ ମଣିଷ କଦାପି ସତ୍ୟ ହୋଇ ନ ପାରେ । ତାହାର ଯେ ପ୍ରତି ମୁହୂର୍ତ୍ତରେ ଜନ୍ମ ପୁଣି ପ୍ରତି ମୁହୂର୍ତ୍ତରେ ମୃତ୍ୟୁ !

ଅହନ୍ୟହନି ଭୂତାନି ଗଚ୍ଛନ୍ତି ଯମ ମନ୍ଦିରମ୍ ।
ଶେଷାସ୍ତୁ ସ୍ଥିରମିଚ୍ଛନ୍ତି କିମାଶ୍ଚର୍ଯ୍ୟ ମତଃପରମ୍ ॥

ଧର୍ମବକଙ୍କୁ 'କିମାଶ୍ଚର୍ଯ୍ୟମ୍ ?' ପ୍ରଶ୍ନର ପରା ଏଇ ସନ୍ତୋଷଜନକ ଉତ୍ତର ଦେଇଥିଲେ ସ୍ୱୟଂ ଧର୍ମରାଜ ଯୁଧିଷ୍ଠିର—ସୃଷ୍ଟି ରହସ୍ୟର ଏତେବଡ଼ ଉଦ୍‌ଘାଟନ ଆଉ କିଛି ଅବା ଅଛି କେଉଁଠି ?

ବାପାଙ୍କ ସଙ୍ଗେ ଯୁକ୍ତି କରି ହାରିଯିବା ଗୌରବ ଏମିତି ପଦେ ପଦେ ମୋତେ ମିଳିଥାଏ ।

ପୁରୀର ବଡ଼ଦେଉଳ ଆଉ ସମୁଦ୍ର ମନଟାକୁ ମୋର ସତେ ଅବା ଗାଁର ଛୋଟ ସଂକୀର୍ଣ୍ଣ ପରିବେଶ ଛାଡ଼ି ଉଚ୍ଚ ବିଶାଳ ହେବାକୁ ଶିଖାଇଲା । ସେଥି ସଙ୍ଗେ ସଙ୍ଗେ ଶିଖାଇଲା ବାସ୍ତବତାକୁ ଛାଡ଼ି ଅଧିକ କଳ୍ପନାପ୍ରିୟ ହେବାପାଇଁ; ଜୀବନଟାକୁ ମେଲି ଦେବାପାଇଁ ନିରାଲମ୍ବ ହୋଇ, କୂଳର ଲହରୀ ଯେମିତି ଗୋଟା ସମୁଦ୍ରକୁ ଅବା ମେଲିଦିଏ ପ୍ରଶାନ୍ତ ବାଲିପନ୍ତାର ଉପରେ ଅକୁଣ୍ଠ ନିଃସଙ୍କୋଚ ଭାବରେ । ଆଉରି ଗୋଟା ଆକାଶ ଯେମିତି ତାହାର ସୂର୍ଯ୍ୟଚନ୍ଦ୍ର ପୁଣି ଅସୁମାରି ତାରାର ସମ୍ଭାର ଘେନି ଆପଣାକୁ ପୂରାପୂରି ମିଶାଇଦିଏ ସମୁଦ୍ର ସେଇ ଚିର ବିଘୋଷିତ ମହିମା ଭିତରେ ।

ସମୁଦ୍ରକୂଳକୁ ଯିବାପାଇଁ କିନ୍ତୁ ବାପାଙ୍କର ମନା ଥାଏ । ଆଜିକାଲି ପୁରୀର ଯେଉଁ ଘରେ ସଂସ୍କୃତ କଲେଜ ବସିଛି, ସେଠି ଥାଏ ପୁରୀ ଜିଲ୍ଲା ସ୍କୁଲ । ସ୍କୁଲର ଖେଳ ଛୁଟିବେଳେ ବାପାଙ୍କ ବରାଦ ଥାଏ କଚେରି ଯିବାପାଇଁ । ସେଠାରେ ଗୁଡ଼ିଆକୁ ବରାଦ ଥାଏ ମୋତେ ଚାରିପଇସାର ଜଳଖିଆ ଦେବାକୁ । ଚାରିପଇସାରେ ସିଙ୍ଗଡ଼ା, କଚୁରି, ରସଗୋଲା, ପାନତୁଆ ପେଟେ ଜଳଖିଆ ମିଳେ । ଏତେ ଖାଇବାକୁ ଇଚ୍ଛା ହୁଏ ନାହିଁ ।

ଯୋଗକୁ ବାପା ସେ ଚାରିପଇସା ମୋ ହାତକୁ ଦିଅନ୍ତି । ସେଥିରୁ ଦୁଇ ପଇସାର ଜଳଖିଆ ଖାଇ ବାକି ଯୋଡ଼ିଏ ପଇସା ମୁଁ ସାଇତି ରଖେଁ । କ୍ରମେ ସେ ପଇସାତକ ପାଖରେ ମୋର ଜମିଗଲେ କଟକ କିମ୍ବା କଲିକତାକୁ ଚିଠି ଲେଖି ରଙ୍ଗବାକ୍ସ, ବଙ୍ଗଳା ମ୍ୟାଜିକ୍ ବହି, ହାତ-ହାରମୋନିୟମ ବାଜା ପ୍ରଭୃତି ମଗାଏଁ ।

ଡାକବାଲା ପାର୍ଶଲ ଆଣି ପହଞ୍ଚିଗଲେ, ସେ ଯେ ମୋର କି ଆନନ୍ଦ ! ଆଜି ତାହା ବର୍ଣ୍ଣନା କରିବା ଅସମ୍ଭବ । ସତେ ଅବା ମୁଁ ଗୋଟାଏ ଗଡ଼ ଜିଣିଛି !

ମ୍ୟାଜିକ୍ ବହି ପଢ଼ିବାକୁ ମୋର କଷ୍ଟ ହୁଏ ନାହିଁ । ରାମଚଣ୍ଡୀ ସାହିରେ ଏବେ ସୁଦ୍ଧା ଯେଉଁ ଘରେ ମୋ ସାନଭାଇ ଭଗବତୀର ପିଲାମାନେ ରହନ୍ତି, ତାହାର ପଡ଼ିଶା ଅଡ଼ିଶା ସମସ୍ତେ ଥିଲେ ପ୍ରାୟ ବଙ୍ଗାଳୀ । ମୋ'ର କେତେକ ବଙ୍ଗାଳୀ ସହାଧ୍ୟାୟୀ ମଧ୍ୟ ଥାନ୍ତି । ବାପାଙ୍କ ଛୋଟ ଲାଇବ୍ରେରୀଟିରେ ବି ଅନେକ ବଙ୍ଗଳା ବହି । ତା' ଭିତରୁ 'ଶ୍ରୀମଦ୍‌ଭାଗବତ ଗୀତା', 'ଶିବପୁରାଣ', ଓ 'ପଞ୍ଚଦଶୀ' ଆଜି ମନେପଡ଼େ । ସେ ସବୁ ଅବା ମୁଁ ବୁଝେ କ'ଣ ! କିନ୍ତୁ ବଙ୍ଗଳା ଅକ୍ଷର ଚିହ୍ନିବାକୁ ପୁଣି ପଡ଼ିଶା ଅଡ଼ିଶାଙ୍କ ମୁହଁରୁ ବଙ୍ଗଳା କଥା ଶିଖିବାକୁ ମୋତେ ସୁଯୋଗ ମିଳେ । ମ୍ୟାଜିକ୍ ସରଞ୍ଜାମ ଭିତରେ ପୁରୀରୁ ତାସ ପ୍ରଭୃତି କେତେଟା ଜିନିଷ କିଣି ନେଇ ଗାଁରେ ଶିରୁଭାଇନାଙ୍କୁ ବହି ପଢ଼ି ବୁଝାଇ ଦେଲେ ସେ ଚଟ୍‌କରି ଯେକୌଣସି ମ୍ୟାଜିକ୍ ଦେଖାଇ ଦେଇପାରନ୍ତି କି ବିଚକ୍ଷଣ ବୁଦ୍ଧି ତାଙ୍କର ! ଅଧିକ ପଢ଼ିବା ସୁଯୋଗ ପାଇଥିଲେ ଶିରୁଭାଇନା ଯେ ଜଣେ ବିଚକ୍ଷଣ ବୁଦ୍ଧିଜୀବୀ ହୋଇ ପାରିଥାନ୍ତେ, ଏଥିରେ ମୁଁ ନିଃସନ୍ଦେହ ।



# ନିତି ନୂଆ ମଣିଷ

ପୁରୀକୁ ଆସିଲି ୧୯୧୨ ଖ୍ରୀଷ୍ଟାବ୍ଦରେ । ତାହାର ଦୁଇଟି ବର୍ଷ ପରେ ୟୁରୋପରେ ଲାଗିଯାଏ ପ୍ରଥମ ପୃଥିବୀ ମହାସମର । ଯେଉଁ ଇଂରେଜ ସାମ୍ରାଜ୍ୟରେ ସୂର୍ଯ୍ୟ ଅସ୍ତ ହେଉ ନ ଥିଲେ, ଅର୍ଥାତ୍ ପୃଥିବୀର ଦୁଇଟିଯାକ ଗୋଲାର୍ଦ୍ଧ ଉପରେ ଯେଉଁ ସାମ୍ରାଜ୍ୟ ବିସ୍ତାର ଲାଭ କରିଥିଲା, ତାହାରି ବିରୋଧରେ ଶୁଣାଗଲା ଜର୍ମାନୀ କାଇଜରଙ୍କ ରଣ-ହୁଙ୍କାର । ପୁଣି ସେହି ଯୁଦ୍ଧ ସମୟରେ ହିଁ ପୃଥିବୀବ୍ୟାପୀ ଦଳିତ, ନିଷ୍ପେଷିତ, ନିପୀଡ଼ିତ, ଶ୍ରମିକଶ୍ରେଣୀର ମୁକ୍ତିର ଶ୍ରେଷ୍ଠ ନିଶାଣ କମ୍ୟୁନିଜିମ୍‌ର ବିସ୍ତାର ସଙ୍କେତ ମିଳେ ।

ଲେନିନ୍ ଏ ଯୁଦ୍ଧକୁ ଘୋଷଣା କରନ୍ତି, ଆର୍ଥନୀତିକ ଯୁଦ୍ଧ ନାମରେ । ଯୁଗବ୍ୟାପୀ ଯେଉଁ ପୃଥିବୀର ରକ୍ତାକ୍ତ ଇତିହାସ ତାକୁ ଖଣ୍ଡିତ ବିଚ୍ଛିନ୍ନ କରି ରଖି ଆସିଥିଲା, ଏଇ ଯୁଦ୍ଧର ଭୟାବହ ରୁଧିର-ସ୍ନାନ ମଧ୍ୟରେ ଏକ ଜଗତ୍ ବା ଏକ ପୃଥିବୀର ମିଳନ-ଶଙ୍ଖ ଅବା ବାଜି ଉଠିଲା ଉତ୍ତର ମେରୁଠାରୁ ଦକ୍ଷିଣମେରୁ ପର୍ଯ୍ୟନ୍ତ । ବଡ଼ଠାକୁର ଜଗନ୍ନାଥଙ୍କ ବାହୁଛାୟା ତଳେ

ରହି ଏତେ ଦୂରରେ ମଧ ପୁଣି ଏତେ କମ୍ ବୟସରେ ମୋର ସେଇ ଯୁଦ୍ଧ-କଥା ଲାଖି ରହିଛି ମନ ଗହନରେ—

ଚାହୁଁ ଚାହୁଁ ପୁରୀରେ ଲୁଗାପଟା ଦର ବଢ଼ିଯାଏ, ସେଥିସଙ୍ଗେ ଆଉ ସବୁ ବିଦେଶୀ ଜିନିଷର ମଧ୍ୟ । କିନ୍ତୁ ସେଥିପାଇଁ ବ୍ୟକ୍ତିଗତ ଭାବରେ ମୋତେ ଅବଶ୍ୟ ବିବ୍ରତ ହେବାକୁ ପଡ଼ି ନାହିଁ । ଯେହେତୁ ଅର୍ଥ ମନର୍ଥ ଭାବୟ ନିତ୍ୟଂ ମନକୁ ତ ମୋର ସ୍ପର୍ଶ କରି ନଥାଏ !

ପ୍ରତିଦିନ ରାମଚଣ୍ଡୀ ସାହିରୁ ବର୍ତ୍ତମାନ ସଂସ୍କୃତ କଲେଜ ବସୁଥିବା ପୁରୀଜିଲ୍ଲା ସ୍କୁଲକୁ ଯିବା ଓ ସେଠାରୁ ଫେରିଆସି ବସାଘରେ ରହିବା ଥିଲା ମୋର ଦୈନନ୍ଦିନ ରୁଟିନ୍ କାମ । ତା'ପରେ କୁଆଡ଼େ ବୁଲି ବାହାରିବାକୁ ବାପାଙ୍କର ଆକଟ । ଅଧିକାଂଶ ଦିନ ସେ କଚେରିରୁ ଫେରନ୍ତି ପ୍ରାୟ ଆମରି ସ୍କୁଲ ଛୁଟିବେଳକୁ । ଉଦ୍ଦେଶ୍ୟ ନିଶ୍ଚୟ ଥାଏ, ଛୁଟି ପରେ ମୁଁ ଆଉ କାହିଁ ବୁଲାଚଲା ଡିଆଁ ଡେଇଁ ନ କରି ତାଙ୍କରି ସାଥିରେ ଘରକୁ ବାହୁଡ଼ିବି । ଗୋଟାଏବେଳେ ଯେଉଁ ଅଧଘଣ୍ଟାଏ ଛୁଟି ମିଳେ—ସେତେବେଳେ ସୁଦ୍ଧା ବାପାଙ୍କର ବରାଦ ଥାଏ କଚେରିକୁ ଯାଇ ତାଙ୍କ ସଙ୍ଗେ ଦେଖା କରିବାକୁ ।

ପ୍ରତି ଶନିବାର ବାପା ଆସନ୍ତି ଗାଁକୁ । କାରଣ ଗାଁରେ ମୋ'ର ବୋଉ ପୁଣି ଭାଇ ଭଉଣୀମାନେ ରହିଥା'ନ୍ତି । ତିନି ଚାରିବର୍ଷପରେ ଅବଶ୍ୟ ଭାଇନା ଦିବ୍ୟସିଂହ କଲିକତାରୁ ପାସ୍ କରି ଆସି ପୁରୀ କଚେରିରେ ଓକିଲାତି କରନ୍ତି । ସେତେବେଳେ ରାମଚଣ୍ଡୀ ସାହିରୁ ଆମେ ଘର ବଦଳାଉଁ ହେରା-ଗୋହିରୀ ସାହିକୁ ।

ରାମଚଣ୍ଡୀ ସାହିରେ ମାତ୍ର ଯୋଡ଼ିଏ ବଖରା ଚାଳଘର, ତାହାର ପୁଣି ରାମଚନ୍ଦ୍ରଙ୍କ ଲଙ୍କାପୋଡ଼ା ଦୂତମାନଙ୍କ ଉତ୍ପାତରେ ଏପରି ଦୁରବସ୍ଥା ଘଟିଥାଏ ଯେ, ବର୍ଷା ହେବା ମାତ୍ରେ ଘର ଭିତରଟି ପାଣିରେ ଭାସେ । ବାକ୍ସ ପେଟରା ଯାହା ଖଣ୍ଡେ ଦି'ଖଣ୍ଡ ଥାଏ, ତାକୁ ଗୋଟାଗୋଟି କରି ଖଟ ଉପରେ ଥୋଇବାକୁ ହୁଏ । ଏମିତି ଥରେ ରାତି ଅଧରେ ଆସିଲା ଭୀଷଣ ଝଡ଼ ।

ଘରଖଣ୍ଡି ସେ ଝଡ଼ରେ ରହିବ କି ନାହିଁ କେଜାଣି ! ସୁ ସୁ ପବନ ଗର୍ଜନରେ ଛାତି ଥରିଲା । ଲଣ୍ଠନ ଜାଳି ବାପାଙ୍କ ପାଖରେ ବସିଲି । ଶେଯ ବିଛଣା ସବୁ ଖଟ ଉପରେ ଗୁଡ଼ାଇ ଅନେକ ରାତି ପର୍ଯ୍ୟନ୍ତ ବୋଧହୁଏ ତା'ରି ଉପରେ ଆଉଜି ବସିଥାଉଁ । ରାମଚଣ୍ଡୀ ସାହି ଘରର କାନ୍ଥ ଥିଲା 'ବାଡ଼ି ତିଆରି'—ଅର୍ଥାତ୍ ସରୁ ସାରିଙ୍ଗି ବାଉଁଶରେ ବାଡ଼ ତିଆରି ହୋଇ ତା'ରି ଉପରେ ମାଟି ଛଟା ହୋଇଥିଲା । ସେ କାନ୍ଥରୁ ଅନେକ ଜାଗାରେ ବାଲିଆ ମାଟି ଖସି ବାଉଁଶ ବାଡ଼ ଦେଖା ଯାଉଥାଏ । ଆଉ ସନ୍ଧିରେ ତା'ର ଛାରପୋକ ଭର୍ତ୍ତି ।

ଭାଇନା ଓକାଲତି ଆରମ୍ଭ କଲାବେଳେ ହେରାଗୋହିରୀ ସାହିର ଯେଉଁ ଘରକୁ ଆସିଲୁଁ, ତାହା ଚାଳ ଛପର ହେଲେ ବି ଇଟା କାନ୍ଥ ଥିଲା । ରାମଚଣ୍ଡୀ ସାହିରେ ଆମର ଲଗାଲଗି ପଡ଼ୋଶୀ ଥାଆନ୍ତି ଯେଉଁ ବାବୁ, ତାଙ୍କରି ଦୋତାଲା କୋଠାକୁ ଲାଗି ଆମ ଭଡ଼ାଘର ଖଣ୍ଡି । ସେଇ ବାବୁଙ୍କ ଘର ଆର ପାଖରେ ରହିଥା'ନ୍ତି ବିହାରିବାବୁ ପୋଲିସ ଇନ୍‌ସପେକ୍ଟର । ଖୁବ୍ କଡ଼ା ଅଫିସର ଥିଲେ ସେ । ତାଙ୍କ ଘରକୁ ଲାଗି ଗୋଟିଏ ଖୋଲା ପଡ଼ିଆ ।

ଛୁଟିଦିନେ ଆମେ ବଲ୍ କିମ୍ୱା ଆଉ କିଛି ଖେଳିଲେ ଭୟଙ୍କର ଭାବରେ ଚିତ୍କାର କରି ଉଠନ୍ତି ସେ । ବିହାରିବାବୁଙ୍କ ପୁଅ କିନ୍ତୁ ରୂପ ଓ ଗୁଣରେ ବଡ଼ ସୁନ୍ଦର ପିଲାଟିଏ । କଥା ଯେପରି ନମ୍ର, ସେପରି ଭଦ୍ର । ତା'ରି କଥାବାର୍ତ୍ତାରେ ଏକ ଅମାୟିକ ବନ୍ଧୁତାର ସ୍ପର୍ଶ ଲାଭ କରି ବିହାରିବାବୁଙ୍କ କର୍କଶ ବ୍ୟବହାରକୁ ମୁଁ ପାସୋରି ପକାଏଁ । ଆଉ ଆମ ଘର ପଡ଼ିଶା ବାବୁ ଥିଲେ ଭୀଷଣ ମାତାଲ । ମାତାଲ ହୋଇ ମଝିରେ ମଝିରେ ଯେପରି ଦୌରାତ୍ମ୍ୟ ସେ କରନ୍ତି, ସେଥିରେ ମୋ'ର କ୍ରୋଧ ଓ ଘୃଣା ଜାତ ହେଉଥିଲା । ମନେ ପଡ଼େ—ଗୋଟିଏ ଖାଲି ସବାରି କାନ୍ଧେଇ ବେହେରାମାନେ ଆମ ଦାଣ୍ଡରେ ଯାଉଥିବାବେଳେ ସେହି ବାବୁ ମାତାଲ ହୋଇ ହଠାତ୍ ସବାରି ଭିତରକୁ ଡେଇଁ ପଡ଼ନ୍ତି । ତା'ପରେ ବାହାରକୁ ଦୁଇଗୋଡ଼ ଲମ୍ୱାଇ ଦେଇ ଦୋଳି ଖେଳିଲା ଭଳି ଝୁଲିବାକୁ ଲାଗନ୍ତି । ସେତେବେଳେ ବେହେରାମାନଙ୍କ କାନ୍ଧକୁ କାଟିବାରୁ 'ବାବୁ ମରିଗଲୁଁ, ମରିଗଲୁଁ' ବୋଲି ଡକା ଛାଡ଼ିଥାନ୍ତି ସେମାନେ ।

ବାବୁ କିନ୍ତୁ ମଦ ନିଶାରେ ମସ୍‌ଗୁଲ୍ । ବିଚରା ବେହେରାମାନଙ୍କ କାତର ମିନତି କାନରେ ତାଙ୍କର ବାଜିବ କିପରି ?

ଆଉ ଥରକ ଘଟଣା । ମୋର ସାନମାମୁ ଗାଁରୁ ଆସିଥାନ୍ତି । ମୁଣ୍ଡରେ ତାଙ୍କର ପୂର୍ବ ରୀତି ଅନୁସାରେ ଚୁଟି ଥାଏ; ସେଇ ବାବୁ ଓ ତାଙ୍କ ସାଥୀମାନେ ମାମୁଙ୍କ ଘରକୁ ତାଙ୍କର ଡାକିନେଇ ଚୁଟି ଧରି ନାନା ପ୍ରକାର ଥଟ୍ଟା ପରିହାସ କରିଥିଲେ ।

ବାପା ଏସବୁ କଥା ଜାଣି ମଧ ତାଙ୍କୁ କିଛି କହୁ ନଥାନ୍ତି । ସେଇ ବାବୁ ଅବଶ୍ୟ ବାପାଙ୍କୁ ଖାତିର କରନ୍ତି ଖୁବ୍ । ମାମୁଙ୍କୁ ଅଯଥା ଅପମାନ ଦେଲେହେଁ ବାପାଙ୍କର ତୁନି ରହିବାଟା ମତେ ସୁଖ ଲାଗିଲା ନି ।

ବାପାଙ୍କ ମୁହଁରୁ ଶୁଣିଚି—ଥରେ ସେ ବାବୁଙ୍କୁ ପଚାରିଲେ—ଆପଣଙ୍କୁ ମଦରୁ କି ଲାଭ ମିଳେ ? ଏ ପ୍ରଶ୍ନର ଉତ୍ତର ମିଳେ—ମଦ ପିଇଲେ ଷଣ୍ଢଗୁଡ଼ାକ ଛେଳି ପରି ଦେଖାଯାନ୍ତି ।

ରାମଚଣ୍ଡୀ ସାହିରେ ରହିଥିଲାବେଳେ ପୁରୀର ଯେଉଁସବୁ ନାମଜାଦା ପଣ୍ଡା ପଢ଼ିହାରୀଙ୍କୁ ଦେଖିଥିଲି ତାଙ୍କ ଭିତରୁ 'ବଡ଼େ ଲୋକନାଥ', 'ବଡ଼େ ହରିହର'ଙ୍କ ନାମ ଯାତ୍ରୀ ଗୁମାସ୍ତାମାନଙ୍କ ମୁହଁରେ ଶୁଣାଯାଏ । ମନେପଡ଼େ—ଲୋକନାଥ ପଢ଼ିହାରୀଙ୍କ ଚେହେରା—ଏକ ପ୍ରକାଣ୍ଡ ଧଳାଘୋଡ଼ା ଚଢ଼ି ମୁଣ୍ଡରେ ଯୋଧପୁରୀ ଛାଞ୍ଚର ଉଚ୍ଚା ଛିଟ ପଗଡ଼ି ଓ କପାଳରେ ଚିତା ସିନ୍ଦୂର ଝଟକି ଉଠେ ତାଙ୍କର । ସେଇ ରାସ୍ତାରେ ସେ ଯା'ଆସ କରନ୍ତି । ଘୋଡ଼ା ଚାଲିଥାଏ କଦମ ପକାଇ ମୁଣ୍ଡକୁ ଝୁଲାଇ ନାଚିନାଚିକା । ତାଳେ ତାଳେ ବାଜିଉଠେ ତା'ର ବେକରେ ଝୁଲୁଥିବା ଘଣ୍ଟି-ଘାଗୁଡି । ପଢ଼ିହାରୀଙ୍କ ହସ ହସ ମୁହଁ ଏବେ ସୁଦ୍ଧା ମୋ'ର ମନେପଡ଼େ—ଫେରି ଆସେ ପୁଣି ବାଳକ ବୟସର ସେହି ବିସ୍ମୟ ସେଇ ଔତ୍ସୁକ୍ୟ—ଦାଣ୍ଡରେ ଘଣ୍ଟି ଶବ୍ଦ ଘୋଡ଼ାର ଶୁଣି ଘର ଭିତରୁ ଧାଇଁ ଆସେ ଯେବେ ମୁଁ ପରମ କୌତୂହଳରେ !

କେବେ କେବେ ପୁଣି ମନେପଡ଼େ, ସବାରି ଚଢ଼ିଯାଉଥିବା ବଡ଼େ ହରିହର ଗୁରୁଙ୍କ ଚେହେରା । ଭାଲପଟରେ ପ୍ରଶସ୍ତ ସିନ୍ଦୂର ଓ ଚନ୍ଦନ ଚିତା । ଗଳାରେ ପ୍ରକାଣ୍ଡ ରୁଦ୍ରାକ୍ଷ ମାଳି । ବିରାଟକାୟ ପୁରୁଷ । ସେତେବେଳେ 'ବଡ଼େ ହରିହର' ଜଣେ ମହା ଦାନୀ ଭାବରେ ମଧ

ପୁରୀରେ ପରିଚିତ । ହରିହର ଗୁରୁଙ୍କ ସବାରି ଗଲାବେଳେ ପିଲାମାନେ ଦୌଡ଼ନ୍ତି ତାଙ୍କଠାରୁ ବାସନା ନାସ ମାଗିବା ପାଇଁ । ହରିହରଙ୍କ ଦ୍ୱାରରୁ କେହି ପ୍ରାର୍ଥୀ କେବେ ଖାଲି ହାତରେ ଫେରି ନ ଥିବା ଶୁଣାଯାଏ, ଆଉ ସମ୍ଭ୍ରମରେ ତାଙ୍କ ପ୍ରତି ମନ ମୋର ପୂରି ଉଠେ । ପରେ ପିଲାଙ୍କ ପାଠ୍ୟପୁସ୍ତକରେ ତାଙ୍କ ଦାନଶୀଳତା ବିଷୟରେ ଗୋଟିଏ କାହାଣୀ ଲେଖେଁ; କଟକର ଜଣେ ଓକିଲଙ୍କଠାରୁ ଶୁଣେ, ଜଜ୍ କୋର୍ଟରେ ଗୁରୁଏଷ୍ଟେଟ୍‌ର କୌଣସି ଏକ ମକଦ୍ଦମାରୁ ଜଣାପଡ଼େ, ଦୈନିକ ତାଙ୍କର ୫୦ ଟଙ୍କାରୁ ଊର୍ଦ୍ଧ୍ୱ ଦାମ୍‌ରେ କେବଳ ମାଛ କିଣା ହେଉଥିଲା । ତହିଁରୁ କିଛି ଅଂଶ ରୋଜ ପଠାଯାଏ ଝିଅମାନଙ୍କ ଘରକୁ ।

ହେରାଗୋହିରୀ ସାହିକୁ ଘର ବଦଳେଇବା ଫଳରେ ମୋ'ର ଏକ ନୂଆ ପରିବେଶରେ ନୂଆ ନୂଆ ବନ୍ଧୁମାନେ ଜୁଟିଲେ । ବିଶେଷ ଭାବରେ ପଡ଼ୋଶୀ ହେଲେ ଆମ ସ୍କୁଲର ଶିକ୍ଷକ ଶ୍ରଦ୍ଧେୟ ଚିନ୍ତାମଣି କର । ତାଙ୍କ ପୁଅ ଗୋପବନ୍ଧୁ ପୁଅ ହୋଇ ଯାଇଥିବାରୁ 'ମିଶ୍ର' ସାଂଜ୍ଞାରେ ପରିଚିତ । ଗୋପବନ୍ଧୁଙ୍କ ପଡ଼ୋଶୀ ସଦାଶିବ ଥିଲେ ମଧ ମୋର ସହାଧ୍ୟାୟୀ । ତହୁଁ ଆମ ଭିତରେ ବନ୍ଧୁତା ବଢ଼ି ଯାଇଥିଲା । ପୁଣି ପଡ଼ୋଶୀ ଭାବରେ ଆମ ତିନିଟିଘର ଲଗାଲଗି ହୋଇ ରହିଥିବାରୁ ପାରିବାରିକ ଘନିଷ୍ଠତା ମଧ । ଗୋପବନ୍ଧୁ ଏବେ ଓଡ଼ିଶା ପବ୍ଲିକ୍ ସର୍ଭିସ୍ କମିସନ୍‌ର ଚେୟାରମ୍ୟାନ ପଦରୁ ଅବସର ନେଲେଣି ଓ ସଦାଶିବ ହାଇକୋର୍ଟରେ ଓକିଲାତି କରନ୍ତି । ସଦାଶିବ ମୋର କଟକ ଘର ଜମି କିଣାଇ ଦିଅନ୍ତି ପୁଣି ଗୋପବନ୍ଧୁଙ୍କ ବନ୍ଧୁତା ଏବେ ବି 'ତୁ' 'ତୋର' ଭିତରେ ଆବଦ୍ଧ ।



# ଲଞ୍ଜାତାରା

ସହରକୁ ଆସିବା ଆଗରୁ ତ ବାରିଅଗଣାର ଚାରିକଣିଆ ପରିଧି ଭିତରେ ଆବଦ୍ଧ ରହିଥାଏ ଗାଁରେ ସେହି ଆକାଶଟି ! ଖରାଦିନେ ସେହି ପରିଧି ଭିତରେ ଚିତ୍ ହୋଇ ଶୋଇ ରହି ଆକାଶର ତାରାମାନଙ୍କ ସଙ୍ଗେ ମୋ'ର ରହସ୍ୟମୟ ପରିଚୟ ! ମନେ ପଡ଼େ, ଥରେ ସେଇ ତାରା ଗହଳି ଭିତରେ ଗୋଟିଏ ଲଞ୍ଜାତାରାର ଉଦୟ ହୁଏ ।

ଲଞ୍ଜାତାରା ପଡ଼ିଲେ କେହି କେହି ବଡ଼ଲୋକ ମରନ୍ତି ବୋଲି ଗାଁରେ ସବୁ କୁହାକୁହି ହୁଅନ୍ତି । ସତକୁ ସତ ସେଇ ବର୍ଷ କୁଆଡ଼େ ଆମ ଦେଶର ସମ୍ରାଟ୍ ସପ୍ତମ ଏଡ୍‌ୱାର୍ଡ ତାଙ୍କ ଦେଶ ଇଂଲଣ୍ଡରେ ପ୍ରାଣତ୍ୟାଗ କଲେ । ଆଉ ତାଙ୍କ ପୁଅ ପଞ୍ଚମ ଜର୍ଜ ହେଲେ ସମ୍ରାଟ୍ ।

ପଞ୍ଚମ ଜର୍ଜ ସିଂହାସନରେ ବସିବା କଥା ମନେ ଅଛି । ଗାଁ ପାଖ ନୂଆପଡ଼ା ଗାଁ ସ୍କୁଲ ପିଲାପାଳ ମାଷ୍ଟରଙ୍କ ସାଥିରେ ଯାଇଥାଉଁ । ଆଉ ପଞ୍ଚମଜର୍ଜଙ୍କ ସିଂହାସନ ଆରୋହଣ ପାଇଁ ଆମ ସ୍କୁଲର ଶିକ୍ଷକ ଯେଉଁ ଗୀତଟି ଲେଖି ଦେଇଥିଲେ, ବୋଲିବୋଲିକା ଚାଲିଥାଉଁ ସେଇ ଗୀତଟି ।

ନୂଆପଡ଼ାକୁ ପାଖଆଖ ଗାଁମାନଙ୍କ ସ୍କୁଲରୁ ଅନେକ ପିଲା ଆସିଥାନ୍ତି । ପ୍ରତି ପିଲାକୁ ରାଜାଙ୍କ ମୂର୍ତ୍ତି ଅଙ୍କା ହୋଇଥିବା ଗୋଟିଏ ଲେଖାଏଁ ଟିଣ ମୋହର ଉପହାର ଦିଆଯାଇଥିଲା । ଆଉ ସେହି ଉପହାର ପାଇ ମନଖୁସିରେ ଆମେ ସବୁ ଘରକୁ ଫେରୁଁ । ଗୋରାତକତକ ଚେହେରା ନୂଆପଡ଼ା ରାଉତଙ୍କର । ସେଇ ଆମକୁ ମୋହର ବାଣ୍ଟିଥିଲେ ହସି ହସି ଗଛଗହଳିରେ ତାଙ୍କ ବୈଠକଘର ପିଣ୍ଡା ଉପରୁ ।

ସେହି ସମୟରେ ଆହୁରି ଏକ ଘଟଣା—ଆମ ଆଟୁଘର କାନୁରେ ନାନା ରଙ୍ଗର ଅନେକ ଚିତ୍ର ଟଙ୍ଗା ହୋଇଥାଏ । ସେଗୁଡ଼ିକୁ ଭାଇନା ଆଣିଥାନ୍ତି ପୁରୀରୁ କିମ୍ବା କଟକରୁ । ଆମ ଭାଇଭଉଣୀମାନଙ୍କୁ ସେ ବୁଝାଇ ଦେଇଥାନ୍ତି ଯେ ଏଇ ଛବିଗୁଡ଼ିକରେ ଯାହାଙ୍କର ଚିତ୍ର ରହିଛି, ସେଇମାନେ ହେଲେ ରୁଷିଆ ଦେଶର ରାଜାରାଣୀ ଆଉ ତାଙ୍କ ପିଲାମାନେ । ସେମାନଙ୍କୁ କୁଆଡ଼େ ସେ ଦେଶର ଲୋକେ ନିର୍ବିଚାରରେ ମାରି ପକାଇଥାନ୍ତି । ତାଙ୍କର ସବୁ ରଙ୍ଗର ବିଚିତ୍ର ପୋଷାକ ଭିତରୁ ଅତି ସୁନ୍ଦର ମୁହଁ ଓ ଜଳଜଳ ଆଖିଗୁଡ଼ିକର ଚାହାଣି ଚିତ୍ର ଏବେ ସୁଦ୍ଧା ମୋ'ର ମନ ଭିତରୁ ନିଭି ନାହିଁ।

ରୁଷିଆ ଦେଶର ଲୋକେ ଯେ ଭାରି ନିଷ୍ଠୁର ପୁଣି ସେମାନେ ଏଡ଼େ ସୁନ୍ଦର ଝିଅ ପୁଅମାନଙ୍କୁ ମାରି ପକାଇଛନ୍ତି—ଏହାର କାରଣ ବୁଝିବାକୁ ଆମେ ଅକ୍ଷମ ହେଉଁ; ଆହା ! ଏଇ ସୁନ୍ଦର ସୁନ୍ଦର ଝିଅଗୁଡ଼ିକ ପୁଅ ! ତାଙ୍କ ବାପା ସିନା ରଜା ହୋଇ ଅତ୍ୟାଚାରୀ ଥିଲେ; କିନ୍ତୁ ଏଇ ନିରୀହ ସୁନ୍ଦର ପିଲାଗୁଡ଼ିକ କାହାର ଅବା କି କ୍ଷତି କରିଥିଲେ କି ? ମନ ଭିତରେ ମୋ'ର ଗଭୀର ଚିନ୍ତାର ଛାୟାପାତ କରେ ଏଇ ପ୍ରଶ୍ନ । ସେମାନଙ୍କ ହସହସ ମୁହଁ ଫୁଟି ଉଠେ ଗୋଲାପ ରଙ୍ଗର ଫୁଲାଫୁଲା ଗାଲ ଭିତରୁ ।

ପୁରୀକୁ ଆସି ପ୍ରଥମ ପୃଥିବୀ ମହାଯୁଦ୍ଧର ଯେଉଁ ସ୍ମୃତି ମୋ' ମନରେ ଅଙ୍କା ହୋଇ ରହିଛି, ସେହି ସମୟର ଘଟଣା ହେଲା ରୁଷ୍ ବିପ୍ଳବରେ ରାଜବଂଶର ନିର୍ମମ ନିପାତ । ମୋର ବାଳକ ଚିତ୍ତରେ ତାହା ଯେଉଁ ଆଲୋଡ଼ନ ସୃଷ୍ଟି କରିଥିଲା, ସେଥିରେ ରାଜା ଶାସକମାନଙ୍କ ଅତ୍ୟାଚାର ସହିତ ପ୍ରଜାକୁଳର ନୃଶଂସତା କଥା ମନେ ପଡ଼େ ।

ସେଥି ସଙ୍ଗେ ସଙ୍ଗେ ମନେପଡ଼େ ପ୍ରଥମ ମହାଯୁଦ୍ଧରେ ଇଂରେଜମାନେ ହାରିଯିବେ ବୋଲି ଯେମିତି ଅବା ସମସ୍ତେ ଆଶା କରୁଥିଲେ ।

ଆମ ଘରେ ବାପା ମଧ୍ୟ ଏହି ଭାବରେ ତାଙ୍କ ସାଙ୍ଗସାଥୀମାନଙ୍କ ସହିତ ବରାବର କଥାବାର୍ତ୍ତା ହୁଅନ୍ତି । ଆଉ ତାଙ୍କ ସାଙ୍ଗସାଥୀମାନେ ଥିଲେ 'ଅମର ଯୁମର' ଓ 'ମାଳିକା' ପ୍ରଭୃତି ବହିଗୁଡ଼ିକର ପାଠକ । ତହିଁରୁ ଅନେକ ପ୍ରମାଣିତ ତଥ୍ୟ ଉଦ୍ଧାର କରି ସେମାନେ ପ୍ରାୟ ଧରି ନେଇଥାନ୍ତି ଯେ ଇଂରେଜମାନେ ନିଶ୍ଚୟ ହାରିଯିବେ ।

ପିଲାଙ୍କ ସାଥିରେ ମିଳିମିଶି ଅନେକ ଗଳ୍ପକହି ସେ ପାଠ ପଢ଼ାନ୍ତି । ସେଥିପାଇଁ ସେ ପିଲାଙ୍କର ଥିଲେ ପ୍ରିୟ ଶିକ୍ଷକ । କେବଳ ଇଂରାଜୀକୁ ଛାଡ଼ି ମୋ ପକ୍ଷରେ ଅନ୍ୟ ପାଠଗୁଡ଼ିକ ଆଦୌ କଷ୍ଟକର ନଥିଲା । କାରଣ ସେ ସମସ୍ତ ମୁଁ ଗାଁ ଅପର ପ୍ରାଇମେରୀ ସ୍କୁଲରେ ପଢ଼ି

ସାରିଥିଲି । ଇଂରାଜୀରେ ଯେଉଁ ଫାଷ୍ଟବୁକ୍ ଖଣ୍ଡିକ ପଢ଼ାହେଲା, ବାପାଙ୍କର ପ୍ରତି ସନ୍ଧ୍ୟାରେ ନିତ୍ୟନୈମିତ୍ତିକ କର୍ମଥିଲା, ସେ ଖଣ୍ଡକୁ ମୋତେ ପଢ଼ାଇବା ।

ଫାଷ୍ଟବୁକ୍‌ର ଘୋଡ଼ା ଲେସନ୍‌ଟି ପଢ଼ିପାରିଲେ ଇଂରାଜୀ ଭାଷା ଭିତରେ ପ୍ରଥମ ପ୍ରବେଶ କରାଗଲା ବୋଲି ବାପା କହୁଥାନ୍ତି । ଆଜି ମଧ୍ୟ ସେଇ ଲେସନ୍ ପ୍ରଥମ ଧାଡ଼ିଟି ମନ ଭିତରେ ମୋର ଲାଖି ରହିଛି—କାରଣ ସେଇ ଛୋଟା ଲୋକଟିକି ଆଜି ବି ଯେମିତି ମୋର ଭେଟ ହୁଏ କେଉଁ ଅଜଣା ଅଶୁଣା ଗଳିଭିତରେ—One morn I met a lame man in a lane—କିନ୍ତୁ ଇଂରାଜୀ ପଢ଼ାଇଲାବେଳେ ବାପା ଯେପରି ଆଜିକାଲି ଶିକ୍ଷାର ସମାଲୋଚନା କରନ୍ତି, ତାଙ୍କ ବନ୍ଧୁମାନଙ୍କ ସମକ୍ଷରେ, ତାହା ଫଳରେ ପାଠ ପଢ଼ିବାକୁ ସ୍ପୃହା ମୋ'ର କମିଯାଏ ।

ବାପା ଆମ ପାଠ ସଙ୍ଗେ ଇଂରାଜୀ ପାଠର ତୁଳନା କରି କହନ୍ତି—ଚାଟଶାଳୀ ପାଠରେ—

କମଳ ଲୋଚନ ଶ୍ରୀହରି,
କରେଣ ଶଙ୍ଖ ଚକ୍ରଧାରୀ ।

—ଇତ୍ୟାଦି ପାଠକୁ ବାତିଲ କରି ଦେଇ ଆଜିକାଲି ପିଲାଙ୍କୁ ଶିଖା ହେଉଛି—The cock has wings—ଅର୍ଥାତ୍ ପିଲାଦିନୁ ସେମାନେ କିପରି କୁକୁଡ଼ା ଖାଇବାକୁ ଶିଖିବେ, ତାହା ହେଲା ପାଠର ଆଦର୍ଶ । ଏହାଛଡ଼ା ସ୍କୁଲ କଲେଜରେ ପରୀକ୍ଷାଖାତାରେ ନମ୍ବର ଦେବା ପ୍ରଣାଳୀ ଉପରେ ମଧ୍ୟ ସେ ଅତି କଟୁ ସମାଲୋଚନା କରୁଥିଲେ ।

ଶିକ୍ଷା-ପଦ୍ଧତି ଉପରେ ବାପାଙ୍କର ତୀବ୍ର ସମାଲୋଚନା ମନ ଭିତରେ ମୋର ଅଳ୍ପ ବୟସରୁ ହିଁ ଯେଉଁ ଦାଗ କାଟି ଦେଇଥିଲା, ଆଜିଯାକେ ତାହା ନିଭି ନାହିଁ ।

ମନେହୁଏ—ସେହିପରି ସମାଲୋଚନା ହିଁ ମୋର ଛାତ୍ର-ଜୀବନରେ ପରୀକ୍ଷାରେ ସର୍ବୋତ୍ତମ ସ୍ଥାନ ଅଧିକାର କରିବା ଅଭିଳାଷକୁ ବହୁ ପରିମାଣରେ ଶିଥିଳ କରିପକାଏ । ଭାଇନା କଲିକତାରେ ଓକିଲାତି ପାସ୍‌କରି ପୁରୀ କଚେରିରେ ଆଇନ ବ୍ୟବସାୟ ଆରମ୍ଭ କରନ୍ତି । ମୋର ପଢ଼ାପଢ଼ି ଉପରେ ସେ କଡ଼ା ନଜର ଦେଲେ; ମାତ୍ର ସେତେବେଳକୁ ଲେଡ଼ିଗୁଡ଼ କହୁଣିକୁ ବୋହିଗଲାଣି ।

ଯଥାର୍ଥରେ ସ୍କୁଲପାଠ୍ୟ କିମ୍ବା ତାହା ପରେ କଲେଜ ପାଠ୍ୟପ୍ରତି ମୁଁ ଯଥାଯୋଗ୍ୟ ଅଭିନିବେଶ ଦେଇ ପାରିଲି ନାହିଁ । ବାପାଙ୍କର ଚାକିରି-ବାକିରି କିମ୍ବା ଧନ ଉପାର୍ଜନ ପ୍ରତି କ୍ୟା-ପରବାୟ ମନୋଭାବ ମୋ ଭିତରେ ଏକ ଗଭୀର ଓ ପ୍ରଚ୍ଛନ୍ନ ରେଖାପାତ ଆରମ୍ଭରୁ ହିଁ ସୃଷ୍ଟି କରି ଦେଇଥାଏ ।

ସେତେବେଳେ ଗାଁରୁ ପୁରୀ ଆସିବା ଥିଲା ଏକ ଉଲ୍ଲେଖଯୋଗ୍ୟ ଘଟଣା । କଟକ ମୋଟେ ଗାଁରୁ ଦଶକୋଶ ବାଟ ସିନା, ପୁରୀ ଥିଲା ଷୋଳକୋଶ । ଚାଲିବାଟା ଥିଲା ବେଶି ।

ଯେହେତୁ ଯାନବାହନ ଅତି କମ୍ । ଶଗଡ଼, ସବାରି, ଘୋଡ଼ା ଖାଲି ବଡ଼ଲୋକଙ୍କ ପାଇଁ । ଲୋକେ କାହିଁ ଦୂର-ଦୂରାନ୍ତରୁ ବାଟ ଚାଲି ଚାଲି ପୁରୀ ଆସୁଥିଲେ ଜଗନ୍ନାଥ ଦର୍ଶନ ପାଇଁ ।

ଆମ ଗାଁର ତ ପୁରୀରେ ଥିଲା ଜିଲ୍ଲା କଚେରି; ତାହା ପୁଣି ଜଗନ୍ନାଥଙ୍କ ଲାଗି ଓଡ଼ିଶା ଭିତରେ ବିଖ୍ୟାତ ସହର । ଆମ ଗାଁର କେତେ ଜଣ ପଣ୍ଡା ଗୁମାସ୍ତା କାମ କରି ପୁରୀକୁ ଭାରତର ନାନା ଅଞ୍ଚଳରୁ ଯାତ୍ରୀମାନଙ୍କୁ ଆଣୁଥିଲେ । ସେ ସବୁ ଅଞ୍ଚଳ କଥା ପୁଣି ଯାତ୍ରୀମାନଙ୍କ କଥା ମୁଁ ସେଇମାନଙ୍କଠାରୁ ଶୁଣେ । କେହି କେହି ଦି'ଜଣ ଜଣେ ଯାତ୍ରୀ ମଧ୍ୟ ଗୁମାସ୍ତାଙ୍କ ସହିତ ଆମ ଗାଁକୁ ଆସନ୍ତି ।



# ଅକ୍ଷର ସ୍ୱାକ୍ଷର

ପୁରୀ ଜିଲ୍ଲା ସ୍କୁଲରେ ଯେଉଁ ବନ୍ଧୁମାନେ ଜୁଟିଲେ ତାଙ୍କ ସହିତ ମୋର ଏକ ସହଜ ଯୋଗସୂତ୍ର ସ୍ଥାପିତ ହେଲା । ସାହିତ୍ୟ ଚର୍ଚ୍ଚାପାଇଁ ଆମେ ସବୁ ଏକ ଛାତ୍ରସମିତି ଗଢ଼ି ବାହାର କଲୁଁ 'ଛାତ୍ର ଦର୍ପଣ' ନାମରେ ଗୋଟିଏ ହାତଲେଖା ପତ୍ରିକା ମଧ୍ୟ । ସ୍କୁଲ ଛାତ୍ରଥିବା ଅବସ୍ଥାରେ ଚିହ୍ନା-ପରିଚୟଟା ଛାଏଁ ଯେମିତି ହୋଇଯାଏ । ସେଥିଲାଗି ତୃତୀୟବ୍ୟକ୍ତିର ଲୋଡ଼ା ହୁଏନି । ତେଣୁ ପରିଚୟର ପରିସ୍ଥିତି ବଦଳରେ ମନେପଡ଼େ ଖାଲି ସେତେବେଳର ଅସମ୍ଭବ ଉଦ୍ଦାମତା ।

ଆମ ଛାତ୍ର-ସମିତିର ବନ୍ଧୁମାନଙ୍କ ଭିତରୁ କଟକର ଶ୍ରୀଯୁକ୍ତ ସଦାଶିବ ମିଶ୍ର ଏଡ଼୍‌ଭୋକେଟ୍ ଥିଲେ ଛାତ୍ର-ସମିତିର ସର୍ବସମ୍ମତିକ୍ରମେ ନିର୍ବାଚିତ ସେକ୍ରେଟାରୀ । ଆଉ ମୁଁ ଥାଏଁ ଏହି ସଂସ୍ଥାର ମୁଖପତ୍ର 'ଛାତ୍ର-ଦର୍ପଣ'ର ସମ୍ପାଦକ । ପ୍ରାୟ ପ୍ରତି ଦିନ ସ୍କୁଲ ଛୁଟି ପରେ କିମ୍ବା ରବିବାର ଓ ଛୁଟିଦିନମାନଙ୍କରେ ଆମର ବୈଠକ ବସି ସାହିତ୍ୟ ଆଲୋଚନା ଚାଲୁହୁଏ ।

ସେତେବେଳେ ଶ୍ରୀ ହୃଦାନନ୍ଦ ମହାନ୍ତି, ପଥୁରିଆସାହିର ସ୍ୱର୍ଗୀୟ ବାନାମ୍ବର ମିଶ୍ର, ସ୍ୱର୍ଗୀୟ ପୂର୍ଣ୍ଣଚନ୍ଦ୍ର ମହାନ୍ତି ଓ ଡାକ୍ତର ନନ୍ଦଦୁଲାଲ ସେନ୍‌ଗୁପ୍ତ ପ୍ରମୁଖ ବନ୍ଧୁମାନଙ୍କ ମଧ୍ୟରେ ଛାତ୍ରସମିତି ବିଷୟରେ ପ୍ରାୟ ଆଲୋଚନା ହୁଏ । କବି ଲେଖକମାନଙ୍କୁ ନିମନ୍ତ୍ରଣ କରି ତାଙ୍କ ଭାଷଣ ଶୁଣିବା, ପୁଣି ବିଭିନ୍ନ ସଭାସମିତିରେ ଯୋଗଦାନ କରିବା ଥିଲା ଆମ କେତେଜଣଙ୍କ ଭିତରେ ଗୋଟାଏ ବଡ଼ ଝୁଙ୍କ୍ ।

ସେଥିରେ ପୁଣି କେତେ ମନୋମାଳିନ୍ୟ ପୁଣି ମନମିଳନ ! 'ଛାତ୍ର-ଦର୍ପଣ' ପତ୍ରିକାଟି ମୁଦ୍ରଣ କରିବାର ଆଗ୍ରହ ସେତିକି ବେଳେ ଆମ ମୁଣ୍ଡ ଭିତରେ ଜାଗି ଉଠେ ।

ହଁ, ପ୍ରଥମ ଥର ପାଇଁ ନିଜ ନାଁକୁ ଛପା ଅକ୍ଷରରେ ଦେଖିବା ! ତାହାଠାରୁ ପୁଣି ବେଶି ସୌଭାଗ୍ୟ ବେଶି ଆନନ୍ଦ କ'ଣ ? ଆମେ କେତେ ଜଣ ଲାଗିପଡ଼ିଲୁଁ ନିଜ ନିଜର କେତୋଟି

ଲେଖା ଦେଇ 'ଛାତ୍ର-ଦର୍ପଣ' ପ୍ରକାଶ କରିବାକୁ । କି ସୂତ୍ରରେ କିଏ କିପରି ଆମ ଭିତରୁ ବାହାରି ପତ୍ରିକାଟିକୁ ଛପାଇ ପାରିଲେ, ଆଜି ସେମାନଙ୍କର ନାମ ମୋର ସ୍ମୃତିପଟରୁ ନିଭିଗଲାଣି । କିନ୍ତୁ ମୋ'ରି ସମ୍ପାଦନାରେ ଯେ 'ଛାତ୍ର-ଦର୍ପଣ' ଛପା ହେଲା, ଏହା ଆଜି ମନେ ପଡ଼ୁଛି ।

ସେହି ପ୍ରଥମ ଥର ଗୋଟିଏ ସାହିତ୍ୟ ପତ୍ରିକାର ପ୍ରଥମ ପୃଷ୍ଠା ଉପରେ ସମ୍ପାଦକ ଭାବରେ ମୋ' ନାମକୁ ଛପା ଅକ୍ଷରରେ ଦେଖିଲି—ଦୁନିଆ ଉପରେ ବଡ଼ ଐଶ୍ୱର୍ଯ୍ୟ ! ତାହାଠୁଁ ବଳି ଆଉ ବଡ଼ ଗର୍ବର ଘଟଣା ଜୀବନବ୍ୟାପୀ କେତେ ଯେ ମୋ'ର ଘଟିଛି, ସ୍ମରଣ କରିପାରୁ ନାହିଁ ତ ! ପତ୍ରିକାଟି ପ୍ରକାଶ ପାଇବା ମାତ୍ରେ ଯେମିତି ଅବା ବନ୍ଧୁମାନଙ୍କ ଭିତରେ ଖେଳିଗଲା ଗୋଟାଏ ଅସମ୍ଭବ ଉତ୍ସାହର ଜୁଆର । ଏହି ଆମର ଗର୍ବର ସାମଗ୍ରୀକୁ ସବୁଆଡ଼େ ପରିଚୟ କରାଇବାକୁ ଆମେ ଆଗ୍ରହୀ । ଏହାଠୁଁ ବଳି ବଡ଼ ଦିଗ୍‌ବିଜୟ ଆଉ ବା କ'ଣ ଥାଇପାରେ !

ପୁରୀଜିଲ୍ଲା ସ୍କୁଲ ନୂଆ କୋଠା (ବର୍ତ୍ତମାନ ଯେଉଁ କୋଠାରେ ସାମନ୍ତ ଚନ୍ଦ୍ରଶେଖର ପୁରୀ କଲେଜ ହୋଇଛି) ସେ ପାଖରେ ଉତ୍କଳ ଗୌରବ ମଧୁସୂଦନଙ୍କ 'ଶୈଳ ନିବାସ' । ଆମେ ସ୍ୱର୍ଗତ ପଦ୍ମଚରଣ ପଟ୍ଟନାୟକ ପ୍ରମୁଖ ସ୍ଥାନୀୟ କବି ଲେଖକମାନଙ୍କ ଆବାସ ଅବଶ୍ୟ ହାସଲ କରିସାରିଥାଉଁ । ମୁଣ୍ଡରେ ଆମର ଖିଆଲ ପଶିଲା ମଧୁସୂଦନଙ୍କୁ 'ଛାତ୍ର-ଦର୍ପଣ' ଖଣ୍ଡେ ଭେଟି ଦେଇ ତାଙ୍କଠାରୁ ହାସଲ କରିବୁ ପ୍ରଶଂସା ।

ଖବର ପାଇଲୁଁ ମଧୁବାବୁ ପୁରୀ ଆସି ଶୈଳ ନିବାସରେ ରହୁଛନ୍ତି । ଅତଏବ ପ୍ରସ୍ତୁତ ହେଲୁ, ତାଙ୍କୁ ସାକ୍ଷାତ୍ କରି 'ଛାତ୍ର-ଦର୍ପଣ' ଖଣ୍ଡିଏ ଭେଟି ଦେବୁ ବୋଲି । ଆଗରୁ ବିଚରାବିଚରି ହୋଇ ଦିନେ ସକାଳେ 'ଛାତ୍ର-ଦର୍ପଣ' ଧରି ଆମେ କେତେ ଜଣ ବାହାରିଲୁଁ ଶୈଳ-ନିବାସକୁ । ବାରଣ୍ଡା ପେଟ ଉପରକୁ ଉଠି ମଧୁବାବୁଙ୍କ ଦେଖା ମିଳିଲା ନାହିଁ । ତହୁଁ ଟିକିଏ ଏପଟ ସେପଟ ହେଲୁଁ ସେହି ଲମ୍ୱ ବାରଣ୍ଡାରେ । ଦେଖିଲୁଁ ଝରକା ପାଖରେ ବସି ମଧୁବାବୁ ନିଜ ହାତରେ ଖିଅର ହେଉଛନ୍ତି । ଆମକୁ ଚାହିଁ ପଚାରିଲେ, ''କିଏ ତୁମ୍ଭେମାନେ ?''

ତାଙ୍କ ରୋକ୍‌ଠୋକ୍ ପ୍ରଶ୍ନରେ ଆମେ ସାହସ ବାନ୍ଧି ଉତ୍ତର କଲୁଁ ''ଆମେ ଏଇ ପୁରୀଜିଲ୍ଲା ସ୍କୁଲ ଛାତ୍ରମାନେ—ଆପଣଙ୍କ ସଙ୍ଗେ ଦେଖା କରିବାକୁ ଆସିଛୁଁ ।''

''ଆଚ୍ଛା ପିଲାମାନେ, ମୋତେ ଟିକିଏ ମାଫ୍ କରିବ, ସେପାଖ ବୈଠକଖାନାରେ ଦୁଇ ମିନିଟ ଅପେକ୍ଷା କର, ମୁଁ ଆସୁଛି ।''

ମଧୁବାବୁଙ୍କ ମୁହଁରୁ ମୁଁ ସେଦିନ ଏହି 'ମାଫ୍' ଶବ୍ଦଟି ଶିଖିଥିଲି, ଆଉ କିଭଳି ସ୍ଥଳରେ ତାହାର ଠିକ୍ ରୂପେ ପ୍ରୟୋଗ କରାଯାଇଥାଏ ମଧ । କିନ୍ତୁ ଅନେକ ପରେ ଶିଖିଲି, କିପରି କେଉଁଠି ଭଦ୍ରଲୋକଙ୍କୁ ଭେଟିବାକୁ ହୁଏ ।

ବୈଠକଖାନାକୁ ଯାଇ ଆମେ ଚୁପ୍‌ଚାପ୍ ବସି ରହିଲୁଁ । ସ୍ୱୟଂ ପରଂବ୍ରହ୍ମ ଶ୍ରୀଜଗନ୍ନାଥ ଯେ ଭକ୍ତଙ୍କୁ ତାଙ୍କର ଯେ କୌଣସି ସମୟ କିମ୍ବା ଅବସ୍ଥାରେ ଦର୍ଶନ ଦିଅନ୍ତି ନାହିଁ, ତାଙ୍କର ମଧ ସ୍ନାନ, ପହଡ଼, ଭୋଗଆଦି ନିତ୍ୟକର୍ମ ରହିଛି ସେ କଥା ବିଚାରିବା ଆମର କର୍ତ୍ତବ୍ୟ ଥିଲା ।

କିଛି ସମୟ ପରେ ମଧୁବାବୁ ଆସି ପଶିଲେ ଘର ଭିତରେ । ଆମେ ସବୁ ଠିଆ ହୋଇ ଜଣାଇଲୁଁ ଅଭିବାଦନ ।

ସସ୍ନେହ କଣ୍ଠରେ ମଧୁବାବୁ ପଚାରିଲେ—''କୁଆଡ଼େ ସବୁ ଆସିଲ ପିଲାମାନେ ?''

''ଆମେ ଏହି ପତ୍ରିକା ଖଣ୍ଡି ବାହାର କରିଛୁଁ । ଆସିଛୁଁ ଆପଣଙ୍କୁ ଉପହାର ଦେବା ପାଇଁ ।'' ଖୁବ୍ ସାହସରେ ଉତ୍ତର କରି ସେଇ ନାଲି ମଲାଟର ପତ୍ରିକାଟି ତାଙ୍କ ହାତକୁ ବଢ଼ାଇ ଦେଉଁ ସନ୍ତର୍ପଣରେ ।

''ଓ ! ପତ୍ରିକା ବାହାର କରିଛ ।'' ମଧୁବାବୁ ଆମ ପତ୍ରିକାଟି ନେଲେ । ତିରିଶ ବତିଶ ପୃଷ୍ଠାର ଅବୟବ ଘେନି ଆମ ଗର୍ବଗୌରବର ଶ୍ରେଷ୍ଠ ନିଶାଣ 'ଛାତ୍ର-ଦର୍ପଣ' ଖଣ୍ଡି ଓଡ଼ିଶା ରାଜ୍ୟର ଏଇ ମହାନ୍ ରଥୀଙ୍କ ହାତରେ ତିନି ଚାରି ମିନିଟ ଏପାଖ ସେପାଖ ଓଲଟପାଲଟ ହେଲା । ତା' ପରେ ଶୁଭିଲା ତାଙ୍କର ସହଜ ସରଳ ମନ୍ତବ୍ୟ—

''ହଁ, ମୋ ପାଖକୁ ରୋଜ୍ ଏମିତି ଇଂରାଜୀ ବଙ୍ଗଳା ପୁଣି ଅନ୍ୟ ଭାଷାରେ କେତେ ପତ୍ରିକା ଆସୁଛି, ବୁଝିଲ ? ସେ ସବୁର ପୃଷ୍ଠା ଓଲଟାଇବାକୁ ତ ବେଳ ମିଳେନି ମୋତେ ! ତହୁଁ ଏହି ଓୟେଷ୍ଟ୍ ପେପର ବାସ୍କେଟ୍ ଭିତରେ ସେଗୁଡ଼ିକ ଲାଗି ସ୍ଥାନ ମିଳେ ।'' ଏହା କହି ତାଙ୍କ ଟେବୁଲ୍‌ତଳେ ଗୋଡ଼ ପାଖେ ଥୁଆ ହୋଇଥିବା ଓ୍ୱେଷ୍ଟପେପର ବାସ୍କେଟ୍‌ଟିକୁ ସେ ଦେଖାଇଦେଲେ ।

ସତେ ଯେମିତି 'ଛାତ୍ର-ଦର୍ପଣ' ସମେତ ଆମ ସମସ୍ତଙ୍କୁ ସଶରୀରରେ ସେଇ ଓୟେଷ୍ଟ ପେପର ବାସ୍କେଟ୍‌ର ଅଳିଆ ଭିତରକୁ ସେ ଫିଙ୍ଗିଦେଲେ ! ଆଉ ସେଇ ଓୟେଷ୍ଟ୍ ପେପର୍ ବାସ୍କେଟ୍ ଭିତରେ ଆମେସବୁ ଛଟପଟ ହେଉଥିଲାବେଳେ ଠିକ୍ ମନେପଡ଼େ, ଧପ୍‌କରି ଛାତିଟା ମୋ'ର ଅଟକି ଗଲା ଯେମିତି ! ମନରେ ହତାଶା, ନିରୁତ୍ସାହ ସହିତ ମଧୁବାବୁଙ୍କ ପ୍ରତି ଅଶ୍ରଦ୍ଧା ଜାଗି ଉଠିଲା । ତା'ପରେ ସେ 'ଛାତ୍ର-ଦର୍ପଣ' ମଲାଟକୁ ଆହୁରି ଥରେ ଓଲଟାଇ ଚାହିଁ କହିଲେ—

''ତୁମେ ତମର ଏହି ପତ୍ରିକାଟିର ନାମ ପରା 'ଛାତ୍ର-ଦର୍ପଣ' ରଖିଛ ! କିନ୍ତୁ ଜାଣକି ପିଲାଏ ? ଭାରତବର୍ଷକୁ ଯେତେବେଳେ ଦର୍ପଣ ଆସି ନଥାଏ, ସେତେବେଳେ ଏଇ ଦେଶର ସବୁ ସ୍ତ୍ରୀ ପୁଣି ସବୁ ପୁରୁଷ ବିଚାରୁଥିଲେ ଯେ, ତାଙ୍କ ମୁହଁ ଆଉ ସମସ୍ତଙ୍କ ମୁହଁଠାରୁ ବେଶି ସୁନ୍ଦର ।'' ଏଥର ତାଙ୍କ କଥା ଶୁଣି ଆମର ଟିକିଏ-ହୋସ୍ ଆସେ, ସେ ଆମ ଅବସ୍ଥାକୁ ଭ୍ରୂକ୍ଷେପ ନକରି କହି ଚାଲନ୍ତି ଅନର୍ଗଳ—''କିନ୍ତୁ ଦର୍ପଣ ଯେଉଁ ଦିନ ଆସି ପହଞ୍ଚେ, ତା'ପରେ ସେଇ ଦର୍ପଣରେ ନିଜ ମୁହଁକୁ ଚାହିଁବାର ସୁବିଧା ସେମାନେ ପାଇଲେ, ସେଥି ସଙ୍ଗେ ଖାଲି—ଆଖିରେ ବି ଅନ୍ୟର ମୁହଁକୁ ଚାହିଁଲେ; ତୁଳନା କରି ବୁଝିପାରିଲେ ଯେ ତାଙ୍କ ମୁହଁଠାରୁ ବି ଆହୁରି ସୁନ୍ଦର କିମ୍ବା ଆହୁରି କୁତ୍ସିତ ମୁହଁ ସବୁତ ରହିଛି !' ଆଚ୍ଛା କହିଲ ଦେଖି—ତୁମେ ଭଲା ସେମିତି ଏଇ 'ଛାତ୍ର-ଦର୍ପଣ' ବାହାର କରି ତା' ଭିତରେ ଆପଣା ମୁହଁକୁ ଚାହିଁ ଦେଖିଲଣି କି ? ଏଇ 'ଛାତ୍ର-ଦର୍ପଣ' ବାହାର କରି, ବୁଝିଲଣିକି ଆହୁରି ତୁମଠାରୁ ଭଲ ଲେଖକ, ଭଲ କବି ଏ ଦେଶରେ ରହିଛନ୍ତି ବୋଲି ?''

ଆମେ ଯେଉଁ ପାଞ୍ଚଛ'ଜଣ ଯାଇଥାଉଁ; ମୁହେଁ ମୁହେଁ ଜବାବ୍ ଦେବାର ସାହସ କାହାରି ହେଲେ ଆସୁନଥାଏ । କି ଅବା ଜବାବ୍ ଦେବୁଁ ? ଖୋଜି ପାଉଣୁନି ମଧ ଭାଷା । ତହୁଁ ଆମକୁ ସେ ଏକ ସାଧାରଣ ସଭା ବୋଲି ଜ୍ଞାନକରି ରୀତିମତ ଗୋଟିଏ ବକ୍ତୃତା ଦେବାକୁ ଆରମ୍ଭ କରିଦେଲେ—

''ଜାଣିଚ ପିଲାମାନେ ! ମୋର ସାନଭାଇ ଗୋପାଳ (ସ୍ୱର୍ଗତ ଗୋପାଳବଲ୍ଲଭ ଦାସ, —ଶ୍ରୀମତୀ ରମାଦେବୀ ତାଙ୍କ ଝିଅ) ଯେତେବେଳେ ପାଠପଢ଼ି ସାରି ଚାକିରି କରିବାକୁ ବାହାରିଲା, ସେତିକି ବେଳେ ମୁଁ ତାକୁ କହିଲି—ଦେଖ୍ ଗୋପାଳ, ତୁ ଯଦି ଚାକିରି କରୁ, ତେବେ ମୁଁ ତୋତେ ଗୁଳିକରି ମାରିଦେବି ।''

ଆମେ ସବୁ ଚମକିପଡ଼ୁଁ—ସତେ ଅବା ସେ ଆମକୁ ଲକ୍ଷ୍ୟ କରି ଗୁଳି ମାରିବାକୁ ଉଦ୍ୟତ ! ତାଙ୍କ କହିବା ଭଙ୍ଗି ମଧ ସେମିତି ! ହାତରେ ବନ୍ଧୁକ ଦେଖାଇ ଯେମିତି ଅବା ସେ କହି ଚାଲିଛନ୍ତି,—''ସରସ୍ୱତୀ ବେଶ୍ୟା ନୁହେଁ ଯେ, ତୁ ତାକୁ ବଜାର ହାଟରେ ବିକ୍ରିକରି ଟଙ୍କା ରୋଜଗାର କରିବୁ । ଗୋପାଳ ମୋ କଥା ଶୁଣିଲାନି, ତୁମେ ସେମିତି ପିଲାମାନେ ! ପାଠପଢ଼ି ସାରି କ'ଣ କରିବ ଜୀବନରେ—ଆଜିଠାରୁ ବିଚାରି ଦେଖିଲଣିକି ?''

ଆମେ କିନ୍ତୁ ସେତେବେଳେ କବାଟ ଝରକା ଆଡ଼ିକି ଚାହିଁ ବିଚାରୁଥାଉଁ, କେଉଁବାଟେ ବିଦାୟ ଘେନିବୁଁ କେତେବେଳେ—ବାଘ ଆଗରୁ ହୁଏତ ଛେଳିପରି । ସତରେ କିନ୍ତୁ ବାଟ କାହିଁ ଯେ ! ଓଡ଼ିଶାର ଏଇ ପୁରୁଷ ସିଂହ ଯେ ବାଟ ଓଗାଳି କହି ଚାଲିଛନ୍ତି ଅନର୍ଗଳ ''ସାହିତ୍ୟ ସାଧନା ହେଲା ସରସ୍ୱତୀଙ୍କ ଆରାଧନା । ବେଶ୍ ! ବାଗ୍‌ଦେବୀ ସରସ୍ୱତୀଙ୍କୁ ତୁମେ ସବୁ ପୂଜା କରୁଛ, କିନ୍ତୁ ଯେବେ ଚାକିରିକର ତେବେ ତାଙ୍କୁ ବଜାରରେ ବିକିଦେଲା ଭଳି ହେବ ନାହିଁ କି ?''

ସେଥିରୁ ଯୁକ୍ତି କରି ଜବାବ ଦେବାକୁ ଆମର ସାହସ ଅବା ଭାଷା କାହିଁ ? ବିଦାୟ ଘେନି ଆସିଲୁଁ । 'ଛାତ୍ର-ଦର୍ପଣ'ର ତାହାହିଁ ବୋଧେ ପ୍ରଥମ ଓ ଶେଷ ମୁଦ୍ରିତ ସଂଖ୍ୟା । ମାତ୍ର ଦର୍ପଣ ସହିତ ସାହିତ୍ୟ ଶବ୍ଦଟିର ସଂଯୋଗ ଯେତିକି ପ୍ରାଚୀନ ସେତିକି ବ୍ୟାପକ ବୋଲି ପରେ ଜାଣିଲି । ଇଂରାଜୀ ଭାଷାରେ ସାହିତ୍ୟ ଶବ୍ଦଟିର ଏକ ସୁପରିଚିତ ସଂଜ୍ଞା ରହିଛି—

Literature is the mirror of society—ସାହିତ୍ୟ ହେଲା ସମାଜର ଦର୍ପଣ । ଦର୍ପଣରେ ଆମେ ଯେମିତି ମୁହଁ ଦେଖୁଁ, ସାହିତ୍ୟରେ ସେହିଭଳି ଦେଖାଯାଏ ସମାଜର ସୁଖ ଦୁଃଖ ପୁଣି ଭଲମନ୍ଦ ମଣିଷର ଚିତ୍ର । ଭାରତବର୍ଷର ଶ୍ରେଷ୍ଠ ଅଳଙ୍କାରକୁ ପ୍ରାଚୀନ ଯୁଗର ବିଶ୍ୱନାଥ କବିରାଜ ମଧ ତାହାଙ୍କ ଅମରକୃତୀ, ସଂସ୍କୃତ ଅଳଙ୍କାର ଶାସ୍ତ୍ରର ନାମକରଣ କରିଥିଲେ— 'ସାହିତ୍ୟ-ଦର୍ପଣ' ।

ମଧୁବାବୁଙ୍କ ମୁଖରୁ ଦର୍ପଣର ସାହିତ୍ୟ ସଙ୍ଗେ ଏତେ ସମ୍ପର୍କ ରହିଥିବା କଥା ମୁଁ ଶୁଣି ନ ଥାଏଁ । ଆମ ଓଡ଼ିଶାରୁ ଅନ୍ୟତମ ମାସିକ ପତ୍ରିକା ସ୍ୱର୍ଗତ ବ୍ରଜସୁନ୍ଦର ଦାସଙ୍କ ସମ୍ପାଦନାରେ ପ୍ରକାଶିତ ହେଉଥିଲା 'ମୁକୁର' ନାମ ଘେନି । ଇଂରାଜୀ ଭାଷାରେ 'Mirror'(ମିରର୍)

ପତ୍ରିକାର ଅନୁବାଦ କରି ବ୍ରଜସୁନ୍ଦର ଯେ ତାଙ୍କ ସମ୍ପାଦିତ ପତ୍ରିକାର ନାମକରଣ 'ମୁକୁର' ରଖିଥିଲେ, ଏକଥା ବିଚାରିବା ଯେତିକି ଅସଙ୍ଗତ, ସାହିତ୍ୟ କ୍ଷେତ୍ରରେ ଅନ୍ୟଠାରୁ ନକଲ କରିବା କଥା କହିଲାବେଳେ ସେଥିଲାଗି ଖୁବ୍ ସାବଧାନତା ଅବଲମ୍ବନ ଆବଶ୍ୟକ ହୋଇଥାଏ ।

କଳା କିମ୍ବା ସାହିତ୍ୟକୁ ଦର୍ପଣ ସହିତ ତୁଳନା କରିବାର ଉଦାହରଣ ମଧ୍ୟ ଆମ ଓଡ଼ିଆ ସାହିତ୍ୟର ପ୍ରାଚୀନ ଓ ଆଧୁନିକ କବିମାନଙ୍କ ରଚନାରେ ବିରଳ ନୁହେଁ । କବି-କଳାକାର ପ୍ରାଣମନ ଦେଇ ଯେଉଁ ସୃଷ୍ଟି କରେ, ତାହାର କିଞ୍ଚିତ୍ ଅବମାନନା ସବୁଠାରୁ ବଡ଼ ହତାଶା ରୂପେ ବିବେଚିତ ହୁଏ । କବିତାର ମୂଲ୍ୟାୟନ ସେଇଥିପାଇଁ ଅର୍ଥ ବିନିମୟରେ କରାଯାଏ ନାହିଁ । କବି-କଳାକାର ତାହାର ସୃଷ୍ଟିର ମୂଲ୍ୟ କେବଳ ଗୋଟିଏ ସାବାସ୍‌ରେ ହିଁ ପାଇଥାଏ ବୋଧହୁଏ ।

ଓଡ଼ିଶାର କବି ଯଦୁମଣି ବିଷ୍ଣୁ ପ୍ରତିମାଟିଏ ରାଜାଙ୍କୁ ଭେଟି ଦେବାର ଘଟଣା ମନେ ପଡ଼େ । ରାଜ ପ୍ରତିମାଟିକୁ ଦେଖିସାରି ତଳେ ଥୋଇ ଦେବାରୁ ଯଦୁମଣି ପରା ଗାଇଥିଲେ—

ଅନ୍ଧ ଦେଶକୁ ଗଲି ଦର୍ପଣ ବିକି ।<br>
କନ୍ଧ ହାତରେ ଦେଲି ଗୋଦାନ ଟେକି ॥

କଳା-ସାହିତ୍ୟ ସଙ୍ଗେ ଦର୍ପଣର ଏପରି ଦୃଷ୍ଟାନ୍ତ ପୃଥିବୀର ସବୁ ସାହିତ୍ୟରେ ଭରି । ସେଇଥିଲାଗି ମଧୁବାବୁଙ୍କ ପାଖରେ 'ଛାତ୍ର-ଦର୍ପଣ' ପତ୍ରିକା ଭେଟି ଦେବାବେଳେ ସେ ଆମକୁ ତହିଁରେ ଆପଣା ମୁହଁ ଦେଖିବାର କଥା ପ୍ରଶ୍ନ କରିଥିଲେ ବୋଲି ପରେ ଜଣାପଡ଼ିଲା ।



# ଅଶବଦ ଘରୁ ଶବଦ

କବିତା ଲେଖିବାର ପ୍ରଥମ ପ୍ରେରଣା ମୋତେ ମିଳିଥିଲା ଆମ ଗାଁର ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ସ୍ୱର୍ଗତ ଆନନ୍ଦ ଚନ୍ଦ୍ର ମିଶ୍ରଙ୍କ ଠାରୁ । ସେତେବେଳେ ଯେଉଁ ପ୍ରଥମ କବିତା ଲେଖିଥିଲି ତାହା ଅବଶ୍ୟ ଆଜି ଶେଷ ହୋଇ ଗଲାଣି ।

ସ୍ୱପ୍ନ ଭଳି ଯାହା ମନେ ପଡ଼େ—ଚୈତ୍ର କିମ୍ବା ଦୋଳ ପୂର୍ଣ୍ଣିମା ସମୟ । ଗାଁ ବୈଷ୍ଣମ ତୋଟାରେ ଏକୁଟିଆ ବୁଲୁଥିଲା ବେଳେ ଚାରି ପାଖର ବିଲ ପଡ଼ିଆ ଡେଇଁ ଯେଉଁ ପବନ ଯେଉଁ ଆଲୁଅ ଛାତିକୁ ମୋର ଉଲୁସାଇଥିଲା, ତାହାରି କବିତା ସେ—ଭାଷାହୀନ, ଛନ୍ଦହୀନ—ଅଥଚ ସବୁ ଛନ୍ଦ, ସବୁ ଭାଷାର ଏକ ଅହେତୁକ ଉମୁକ୍ତ ଆବେଶ । ସେ ଆବେଶ ଭିତରେ କବି ହେବାର ଆକାଂକ୍ଷା ଅବା କିଛି ଯୋଜନାର ଚିହ୍ନ ନ ଥାଏ । ଖାଲି ସେପାଖର ସୁଦୂର ଗଛ ଗହଳରେ ଲୁଚି ଯାଇଥିବା ବୌଦ୍ଧଖଣ୍ଡି, ଶିଶୋଲ, ଗାରଡ଼ିପଞ୍ଚାଣ, ସାତକାବାଦ, ବାରିଜଙ୍ଗ, ପୁରୋହିତପୁର ଗାଁଗୁଡ଼ିକର ରହସ୍ୟମୟ ଦୃଶ୍ୟ କିଶୋର ଚିତ୍ତରେ ମୋର ସୃଷ୍ଟି

କରେ ଏକ ଅହେତୁକ ତୁମୁଳ ଆଲୋଡ଼ନ । ଯେମିତି ଅବା ସେଇଠି ମୋ ଜୀବନର ଅସଲ ମୁହୂର୍ତ୍ତଟି ଜନ୍ମଲାଭ କରେ ସବୁ ସରାକୁ ହଜାଇ ଦେଇ ।

ପୁରୀକୁ ଆସି ସେଇ ଦୃଶ୍ୟ ସେଇ ପରିବେଶର ବିଚ୍ଛେଦ ପ୍ରାଣରେ ମୋର ମାରିଦିଏ ଦାରୁଣ ଗଭୀର ଆଘାତ । ଗାଁରେ ଶୁଣିଥିଲି ଶିକ୍ଷକ ସର୍ଗତ ଆନନ୍ଦ ଚନ୍ଦ୍ର ମିଶ୍ରଙ୍କ ଠାରୁ ବଙ୍ଗଳା ଭାଷା ଓ ବଙ୍ଗଳା ସାହିତ୍ୟ ଖୁବ୍ ଉନ୍ନତ ବୋଲି । କଲିକତାରେ ଚାକିରି କରି ଫେରିଥିବା କେତେକ ଗ୍ରାମବାସୀଙ୍କ ମୁଖରୁ ଓ ସେଇ ଭାଷାରୁ ପଦେ ଦି'ପଦ ଶୁଣିଥିଲି ।

ବଙ୍ଗଳା ଭାଷା ଶିଖିବା କିନ୍ତୁ ମୋ ପକ୍ଷରେ ସହଜ ହୋଇ ପଡ଼େ ପୁରୀକୁ ଆସି । ପଡ଼ିଶା ଅଡ଼ିଶା ଅନେକେ କହନ୍ତି ବଙ୍ଗଳା, ଖାଣ୍ଟି କିମ୍ବା ମିଶ୍ରିତ ରୂପରେ । ସ୍କୁଲରେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ସଂସ୍କୃତ ଉପକ୍ରମଣିକା ବହିଖଣ୍ଡିକ ପଢ଼ାହୁଏ । ତାହା ବଙ୍ଗଳା ଅକ୍ଷରରେ ଛପା । ତହୁଁ ବଙ୍ଗଳା ବହିର ବିଜ୍ଞାପନ ପଢ଼ି ପାର୍ଶଲ ମଗାଏଁ । ତାହା ଅବଶ୍ୟ କୌଣସି ସାହିତ୍ୟ ନୁହେଁ, ମ୍ୟାଜିକ୍ ବହି । ଗାଁରେ ଶିରୁଭାଇନା କେଳାମାନଙ୍କ ଭୁଜ୍‌ବିଦ୍ୟାକୁ ଲକ୍ଷ୍ୟକରି ଯେଉଁ କେତୋଟି ମ୍ୟାଜିକ୍ ଆବିଷ୍କାର କରିଥିଲେ, ତାହାକୁ ଆହୁରି ଉନ୍ନତ କରିବା ମୋର ହେଲା ଧ୍ୟାନ । ସେହି ବହି ପଢ଼ି ତାସ୍, ଗ୍ଲାସ କଳାକନା ପ୍ରଭୃତି ଅନେକ ପ୍ରକାର ସରଞ୍ଜାମ ଖରିଦ କରେଁ ।

ଶିରୁଭାଇନା କେଳାଙ୍କ ଭୁଜ୍‌ବିଦ୍ୟା ଦେଖି ପୁଣି ଗାଁ ହୁଡ଼ାରୁ ଖଣ୍ଡିଏ କାଉଁରୀ ହାଡ଼ ଆଣି ମ୍ୟାଜିକ୍ ମୁଣି ଓ ତାଳପତ୍ର ଖେଦା ଇତ୍ୟାଦି ସିଲାଇ କରି ରଖିଥାନ୍ତି । ସେଥି ସଙ୍ଗେ ସହରରୁ କିଣା ହୋଇଥିବା ତାସ୍ ଗ୍ଲାସ ପ୍ରଭୃତି ମିଶେ । ବାପାଙ୍କଠାରୁ ପ୍ରତିଦିନ ଜଳଖିଆ ପାଇଁ ପଇସା ନେଇ ସେଥିରୁ ଯାହା କାଟି ରଖିଥାଏଁ, ତାହା ଏଇ ମ୍ୟାଜିକ୍ ଜିନିଷ ଖରିଦରେ ଖର୍ଚ୍ଚ ହୁଏ ।

ଗାଁ ଭିତରେ ଘର ଘର ବୁଲି ଝିଅ ବୋହୂମାନଙ୍କୁ ଆମେ ସେଇ ସବୁ ମ୍ୟାଜିକ୍ ଦେଖାଉଁ । ଅବଶ୍ୟ ତାହାର ପାଉଣା ବାବଦରେ ପଇସା ନ ପାଇଁ କେବଳ ପ୍ରଶଂସାରେ ଆମେ ଖୁସ୍ । ସେଥିଲାଗି ଗାଁ ଏ ମୁଣ୍ଡରୁ ସେମୁଣ୍ଡ ଯାଏ ଆମକୁ ଆସେ ନିମନ୍ତ୍ରଣ ।

ସାଥୀ ପରମାନନ୍ଦ ଏହିପରି ସାତୋଟି ଅଣ୍ଡା ଗୋଟିକ ପରେ ଗୋଟିଏ ଢୋକିସାରି ମୂକ ହୋଇ ବସି ରହେ । ମୁଁ ମୋ'ର ମ୍ୟାଜିକ୍ ବାଡ଼ି ଧରି ତାକୁ ଧମକଦିଏଁ ମୋର ସବୁତକ ଅଣ୍ଡା ଫେରାଇ ଦେବାକୁ । ଯେହେତୁ ସେ ମୋତେ ଅଣ୍ଡାର ଦାମ୍ ଦେଇ ନଥାଏ । ମୋ ଧମକ ଶୁଣି ସେ ଆବାକାବା ହୋଇ ଚାହେଁ । ତହୁଁ ତା'ର ମୁଣ୍ଡ ଓ ପେଟରେ ମୁଁ ମ୍ୟାଜିକ୍ ବାଡ଼ିକୁ ଠକ୍ ଠକ୍ କରି ପିଟେଁ । ଫଳରେ ଗୋଟିକ ପରେ ଆଉ ଗୋଟିଏ ଅଣ୍ଡା ସେ ଆଁ କରି ଦେଖାଏ । ଅଣ୍ଡାଗୁଡ଼ିକ ପାଟି ଭିତରୁ ତା'ର ବାହାର କରେଁ । ତା'ପରେ ସେଗୁଡ଼ିକୁ ଏକ ଡାଲା ଭିତରେ ସଜାଡ଼ି ରଖି ଗଣତି କରିବାକୁ ବୁଲାଇ ଆଣେ ମୁଁ, ସବୁ ଦେଖଣାହାରିଙ୍କର ବାହାବା ଭିତରେ ।

ସେହିପରି କେତେ ରକମ ତାସ ମ୍ୟାଜିକ୍—ତାସମୁଠା ଭିତରୁ ତାସ କିପରି ଉପରକୁ ଉଠେ, ତା'ପରେ ଦର୍ଶକମାନଙ୍କ ହାତରୁ ସୁନାମୁଦି ଆଣି ତାକୁ ରୁମାଲରେ ରଖି ଶେଷରେ

ରୁମାଲ ଝାଡ଼ି ମୁଦିକୁ ଉଡ଼ାଇ ଦିଆଯାଏ । ପୁଣି ଫେରାଇ ଆଣି ଅନ୍ୟମାନଙ୍କ ସମେତ ମୁଦିର ମାଲିକଙ୍କୁ ଅବାକ୍ କରାଯାଏ—

ଏହିସବୁ ଥିଲା ସେତେବେଳେ ମୋର ମହା ଗବେଷଣାର ବିଷୟ । ଅବଶ୍ୟ ଜାଣିଲି ଯେ, ଆମ ଧର୍ମ ଓ ସାହିତ୍ୟ ଭିତରେ ପୁଣି ବିଜ୍ଞାନ ଗବେଷଣାଗାରରେ ବଡ଼ ବଡ଼ ମ୍ୟାଜିକ୍ ସୃଷ୍ଟି କରିବା ହିଁ ହେଲା କବି ସାହିତ୍ୟିକ କିମ୍ବା ବୈଜ୍ଞାନିକମାନଙ୍କର ସାଧନାର ମୁଖ୍ୟ ଉଦ୍ଦେଶ୍ୟ ।

ସାହିତ୍ୟର ଆଦିମ ସ୍ୱରୂପ, ତନ୍ତ୍ରମନ୍ତ୍ର, ଗୁଣି ଗାରଡ଼ିରେ ଆରମ୍ଭ ହୁଏ; ଆପଦ ବିପଦ, ରୋଗ ଦୁଃଖ ପ୍ରଭୃତିକୁ ତନ୍ତ୍ରମନ୍ତ୍ର, ଗୁଣି ଗାରଡ଼ିରେ ହିଁ ସେ କାଳରେ ଉପଶମ କରାଯାଇଥିଲା ସବୁ ଦେଶରେ । ଆଉ କବିତାର ଆଦିମତମ ସ୍ୱରୂପ ଥିଲା ପରା ଏହି ତନ୍ତ୍ରମନ୍ତ୍ର ଯାହାର ସାକ୍ଷୀ ସ୍ୱୟଂ ପ୍ରାଚୀନତମ ବେଦ !

ପରବର୍ତ୍ତୀ ଯୁଗରେ ପୁଣି ପଢ଼ି ଜାଣିଲି ଯେ, ଇଂରେଜ କବି (W.B.Yeats) ଇଟ୍‌ସ ଓ ଫରାସୀ କବି ନାର୍ଭାଲ (Gerad De Nerval) ଓ ରିମ୍ବ (Jean Arthur Rimbard) ଯଥାର୍ଥରେ ମ୍ୟାଜିକ୍ ଶିକ୍ଷା କରିଥିଲେ, ଆଉ ଟିକିଏ ପ୍ରାଚୀନ ୱାଡ଼ସୋର୍ଥ (Wordsworth), ଶେଲି (Shelly) କିମ୍ବା କିଟ୍‌ସ (Keats) ପ୍ରମୁଖ ଇଂରେଜ କବିମାନେ କବିତାର ମୂଳ ଉତ୍ସକୁ ଏକ ଅଜ୍ଞେୟ ଶକ୍ତି ବୋଲି ବିଚାର କରୁଥିଲେ । ସେହିପରି ଆମ ଓଡ଼ିଆ କବି ସାରଳା ଦାସ କିମ୍ବା ଉପେନ୍ଦ୍ର ଭଞ୍ଜ ପ୍ରମୁଖ ତାଙ୍କ ରଚନାଗୁଡ଼ିକୁ ଶାରଳା ଠାକୁରାଣୀ କଣ୍ଠରେ ବସି ପ୍ରକାଶ କରିଥିବା କିମ୍ବା ରାମତାରକ ମନ୍ତ୍ରବଳରେ କବିତା ସ୍ଫୁରିତ ହେଉଥିବା କଥା ନିଜେ ମଧ୍ୟ ସ୍ୱୀକାର କରିଯାଇଛନ୍ତି ।

ପୁଣି ପୃଥିବୀର ସବୁ ଧର୍ମହିଁ ଯେପରି ଏହି ତନ୍ତ୍ରମନ୍ତ୍ର ଓ ମ୍ୟାଜିକ୍ ଉପରେ ପ୍ରତିଷ୍ଠିତ— କେବଳ ବୈଦିକ ଧର୍ମ ନୁହେଁ ତ, ଆଧୁନିକ ଖ୍ରୀଷ୍ଟ ଧର୍ମରେ ମଧ ସେଇ କଥା—

God said. "Let their be light",
and there was light.

ଭଗବାନ୍ କହିଲେ ଆଲୋକ ହେଉ ଏବଂ ତାଙ୍କରି ଆଦେଶରେ ବିଶ୍ୱ ହୁଏ ଆଲୋକିତ । ଆମ ଗାଁରେ ଯେଉଁ ତ୍ରିନାଥ ମେଳା ହୁଏ, ପୁରୀକୁ ଆସି ବୋଉ ମଧ ଘରେ ତାହା ଆରମ୍ଭ କରନ୍ତି । ଭାଇନା କହନ୍ତି, ଏହା ଗଞ୍ଜିକା ସେବନର ଗୋଟିଏ ଉପାୟ; କାରଣ ତ୍ରିନାଥମେଳା ବହିଟିରେ ତିନିଟି ଗୁଆ, ତିନିଟି ଦୀପ, ତିନି ପଇସାର ଭୋଗ ଓ ତିନି ପଇସାର ଗଞ୍ଜେଇ ସେଥି ସଙ୍ଗେ ପୂଜା କରିବାର ବ୍ୟବସ୍ଥା ରହିଛି । ତ୍ରିନାଥ ଗୋସେଇଁ ହେଲେ ସ୍ୱୟଂ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର । ମୁଁ ମଧ ଭାଇନାଙ୍କୁ ସମର୍ଥନ କରି ପ୍ରତିବାଦ କରେ ।

ମୋ ଉପରେ ବୋଉ ଚିଡ଼ିଯାଇ କହନ୍ତି, "ତୁ ଭଲା ତ୍ରିନାଥମେଳା ପରି ଗୀତ ଲେଖି ପାରିବୁ ?" ତାହାଠାରୁ ଭଲ ଲେଖିପାରେଁ ବୋଲି ବୋଉଙ୍କ ଆଗେ ମୁଁ ଫୁଟାଣି କରେଁ, କିନ୍ତୁ ଏବେ ସୁଦ୍ଧା 'ତ୍ରିନାଥମେଳା' ବହି ଭଳି ଲୋକପ୍ରିୟ ଗୀତ ଲେଖିବାର ସୌଭାଗ୍ୟ ମୋର ଘଟିଛି ବୋଲି ତ ମନେ ହୁଏ ନାହିଁ ।

ଅଳ୍ପ ବୟସରେ ପୁରୀକୁ ଆସି ମୁଁ ଭାରତବର୍ଷର ପ୍ରାୟ ସବୁ ଅଞ୍ଚଳର ଭାଷାଭାଷୀ ଜଗନ୍ନାଥ ଯାତ୍ରୀମାନଙ୍କୁ ଦେଖିପାରିଲି । ରାମଚଣ୍ଡୀ ସାହିରେ ସେତେବେଳେ ଆମ ପଡ଼ୋଶୀ ଭାବରେ ଯେଉଁମାନେ ରହୁଥିଲେ, ତାଙ୍କ ଭିତରୁ ଅଧିକାଂଶ ଓଡ଼ିଶାବାସୀ ବଙ୍ଗାଳୀ କିମ୍ବା ବଙ୍ଗବାସୀ ।

ବଡ଼ ଦେଉଳ ପଣ୍ଡା ପଡ଼ିହାରୀ ବା ଗୁମାସ୍ତାମାନେ ଭାରତବର୍ଷର ପ୍ରାୟ ସବୁ ଭାଷାରେ କଥାବାର୍ତ୍ତା କରିଥାନ୍ତି । ସେଥି ସହିତ ଯେଉଁ ଓଡ଼ିଆ ସେମାନେ କହନ୍ତି, ତାହାକୁ ଖୁବ୍ ଖାଣ୍ଟି ନ କହି ତ ଚାରା ନାହିଁ । ତେଣୁ ଗାଁ ଛାଡ଼ି ପୁରୀ ଆସିବା ଫଳରେ ମୋତେ ଟିକିଏ ସଂକୀର୍ଣ୍ଣ ପରିବେଶରୁ ଉତୁରି ବିରାଟ ବିସ୍ତୃତ ଭାରତବର୍ଷର ବିଶାଳ ଗର୍ଭ ଭିତରେ ସୁଦ୍ଧା ଆହୁରି ଖାଣ୍ଟି ଓଡ଼ିଆ ହୋଇ ରହିବା ଭଳି ଜଣାପଡ଼ିଲା ଯେମିତି ! ଜଣାପଡ଼ିଲା, ମୁଁ ଅବା କେଉଁ ଥଳକୂଳ ମିଳୁ ନଥିବା ଗୋଟାଏ ବିରାଟ ଅତୀତ ପୁଣି ଏକ ଅସୀମ ବର୍ତ୍ତମାନର ମିଳନ ଚୌମୁହାଣିରେ ଆସି ଛିଡ଼ା ହେଲିଣି । ସାମ୍ନାରେ ସମୁଦ୍ରକୁ ଚାହିଁ ହାତ ପାଉନି କି କାତ ପାଉନି, ସେପଟେ ବଡ଼ଦେଉଳକୁ ଚାହିଁ ଆଖି ପାଉନି । ସତେକି ଦେଉଳଟା ଉଠି ନାହିଁ ମାଟି ଉପରୁ,—ଆକାଶରୁ ପଡ଼ିଚି ଓହଳି ।

ସାତ ସାଇ ବୟାଳିଶ ଗଳି—ଯୁଆଡ଼େ ଚାହଁ ମଠ ମନ୍ଦିର । ମଣିଷ ଖାଲି ଯା'ଆସ କରୁଛନ୍ତି ବଡ଼ଦାଣ୍ଡରେ; ଆଉ ଅଟକି ଯାଉଛନ୍ତି ସ୍ୱର୍ଗ ଦ୍ୱାରରେ । ତେବେବି ଗହଳ ବନ୍ଦ ନାହିଁ, ବନ୍ଦ ନାହିଁ ପୁଣି ଜୁଇଗାତ ଖୋଳା ।

ଯେଉଁ ବନ୍ଧୁମାନେ ପୁରୀରେ ଜୁଟିଲେ ସମସ୍ତେ ଏମିତି ସମୁଦ୍ର ଲହଡ଼ି ପରି ଆସି ପୁଣି ପର ମୁହୂର୍ତ୍ତରେ ଲେଉଟିଗଲା ଭଳି ଲାଗୁଛି ଆଜି ! ରୋଜ ସେଇ ସମୁଦ୍ର ଢେଉ ଭଳି କେତେ ନୂଆ ନୂଆ ବେଶ ପୋଷାକ ଠେକା ଟୋପିର ମଣିଷ—ପିଲା, ବୁଢ଼ା, ପୁରୁଷ, ନାରୀ ।

ରୋଜ ଯେମିତି ନୂଆ ହୋଇ ଜିଇଁ ରହିଚି ପୁରୀ ସହରଟା—ଜୈନ, ବୁଦ୍ଧ, ଶଙ୍କର, ଚୈତନ୍ୟ, ନାନକ, କବୀର, ରାମାନୁଜ ଯୁଗରୁ !



# ଯଥା ଅର୍ଥରେ ବି ଅନର୍ଥ

ସହାଧ୍ୟାୟୀମାନଙ୍କ ମଧ୍ୟରେ ନିକଟତର ବନ୍ଧୁ ଯେପରି ଜୁଟିଲେ, ସେହିପରି ଶିକ୍ଷକମାନଙ୍କ ପ୍ରଭାବ ମଧ୍ୟ ଗଭୀର ଭାବରେ ପଡ଼େ ମୋ ଉପରେ । ମାଇନର କ୍ଲାସ୍ ଅର୍ଥାତ୍ ସେତେବେଳର ୬ଷ୍ଠ ଶ୍ରେଣୀର ପ୍ରଧାନ ଶିକ୍ଷକ ଥିଲେ ସ୍ୱର୍ଗତ ପୂର୍ଣ୍ଣଚନ୍ଦ୍ର ବୋଷ । ଛାତ୍ରମାନଙ୍କୁ ସେ ନାନାପ୍ରକାର ଗଳ୍ପ ମଧ୍ୟ କହି ହସାନ୍ତି । ଛାତ୍ରମାନେ ସେମିତି ଶିକ୍ଷକଙ୍କର ସାନ୍ନିଧ ଲାଭ କରି କେତେବେଳେ ତାଙ୍କୁ ହସାନ୍ତି, ଆଉ କେତେବେଳେ ରଗାନ୍ତି ମଧ୍ୟ ।

ପଞ୍ଚମ ଶ୍ରେଣୀରେ ପଢୁଥିବା ସମୟରେ ଗୋଟିଏ ଘଟଣା ଉଲ୍ଲେଖନୀୟ । ଆଉ ଜଣେ ଶ୍ରେଣୀ-ଶିକ୍ଷକଙ୍କର ସ୍ୱଭାବ ଟିକିଏ ଚିଡ଼ିଚିଡ଼ା । ପିଲାମାନଙ୍କୁ ଶିକ୍ଷା ଦେଲାବେଳେ ଥରକୁ ଥର 'ବୁଝିଲ', 'ବୁଝିଲ' ବୋଲି ସେ ପୁନରାବୃତ୍ତି କରନ୍ତି । ପୁଣି 'ବୁଝିଲ' ଶବ୍ଦଟିର ଉଚ୍ଚାରଣ ଏତେ ଜଲଦି ସେ କରି ପକାନ୍ତି ଯେ, ତାହା 'ଭୂୟାଁ' 'ଭୂୟାଁ' ଶୁଣାଯାଏ । ପିଲାଏ ସେହି 'ଭୂୟାଁ' ଶବ୍ଦଟାକୁ ବି ସେମିତି ପରସ୍ପର ଭିତରେ କୁହାକୁହି ହୋଇ ପରିହାସ କରନ୍ତି ପରସ୍ପରକୁ ।

ଥରେ ଶିକ୍ଷକ ମହାଶୟ ଜଣେ ସହାଧ୍ୟାୟୀକୁ ଶ୍ରେଣୀ ଭିତରେ ପଢ଼ାଇଲାବେଳେ ଗୋଟିଏ ପ୍ରଶ୍ନ କରନ୍ତି । ଉତ୍ତରଟି ଛାତ୍ରଜଣକ ଯେପରି ଦେଲେ, ତାହା ଅବାନ୍ତର ହୋଇ ପଡ଼ିଥିଲା । ତହୁଁ ମୁଁ ଏକ ଟିପ୍‌ପଣୀ କରେଁ—''ନଈ ନ ଦେଖି ଲଙ୍ଗଳା'' ।

ମନ୍ତବ୍ୟଟାରେ ମୋର ସହାଧ୍ୟାୟୀମାନେ ହସିପକାନ୍ତି । ସେ ହସରେ ଶ୍ରେଣୀ ଶିକ୍ଷକ ମଧ୍ୟ ଯୋଗ ଦିଅନ୍ତି—ଫଳରେ ହସଟା ଟିକିଏ ଗୁରୁତର ଆକାର ଧାରଣ କରେ; ଆଉ ହୁଏତ ଶ୍ରେଣୀ-ଶୃଙ୍ଖଳା ରକ୍ଷାରେ ବାଧା ଜନ୍ମାଏ । ତହୁଁ ଶ୍ରେଣୀ-ଶିକ୍ଷକ ହଠାତ୍ ଗମ୍ଭୀର ହୋଇ ପଡ଼ନ୍ତି । ମୋର ଏଭଳି, ଭାଷା-ପ୍ରୟୋଗକୁ ପରମୁହୂର୍ତ୍ତରେ ଗ୍ରାମ୍ୟ ବୋଲି ସେ ମନ୍ତବ୍ୟ ଦିଅନ୍ତି, ଯାହା ଫଳରେ ମୋତେ ବେଞ୍ଚ ଉପରେ ଠିଆ ହେବାକୁ ଆଦେଶ ମିଳେ ।

ଏଇ ଆକସ୍ମିକ ଦଣ୍ଡରେ ମୁଣ୍ଡ ମୋ'ର ଘୂରିଯାଏ—ହାଲୁକା କଥାଟାର ପରିଣାମ ଏମିତି ଗୁରୁତର ହେଲା ଅନୁଭବ କରି । ଦେଶକାଳ-ପାତ୍ର-ଭେଦରେ ହିଁ ପରିହାସର ପରିଣତି ନିର୍ଭର କରେ ବୋଲି ସେ ଦିନ ଘଟଣାରୁ ଶିକ୍ଷା ମିଳିଥିଲା ମୋତେ ।

ଶ୍ରେଣୀ-ଶିକ୍ଷକଙ୍କ ବିଷୟରେ ଗୋଟିଏ କଥା ଶୁଣିଥିଲି—ସେ ଏକଜିଦିଆ, ପୁଣି ତାଙ୍କ ଯୁକ୍ତିର ସ୍ୱାତନ୍ତ୍ର୍ୟ ମଝିରେ ମଝିରେ ବିସ୍ମୟକର ହୋଇପଡ଼େ ।

ଘଟଣାଟି ହେଲା, ସେ କୁଆଡ଼େ କୌଣସି ଲୋକଠାରୁ କିଛି ଋଣ କରିଥିଲେ । ପରିଶୋଧ କରିବାରେ ବିଳମ୍ବ ହେତୁ ବାରମ୍ବାର ତାଙ୍କୁ ତାଗଦା କରି ଶେଷରେ ଋଣଦାତା କେତେକ କଡ଼ାକଥା କହନ୍ତି । ତହୁଁ ସେ ଆଉ ପରିଶୋଧ କରିବେ ନି ବୋଲି ପରିଷ୍କାର ଜଣାଇଦେଲେ ।

ଅଗତ୍ୟା ତାଙ୍କ ବିରୋଧରେ ନାଲିସ୍ ଦାଏର କଲେ ଋଣଦାତା; କଚେରିରେ ସୁଦ୍ଧା ସେ ତାରିଖରେ ହାଜର ହେବାକୁ ଅପମାନ ବୋଧକଲେ । ଶେଷରେ ବାହାରେ ତାଙ୍କ ବିରୋଧରେ ୱାରେଣ୍ଟ୍ ।

ପୋଲିସ ତାଙ୍କୁ ଧରି ଦିଆନ-ଫାଟକରେ ରଖିବାକୁ ନେଇଯାନ୍ତି । ବାଟରେ ଶିକ୍ଷକମହାଶୟଙ୍କୁ ଏଭଳି ଦୁରବସ୍ଥାରେ ଦେଖନ୍ତି ଜଣେ ତାଙ୍କର ପରିଚିତ ବନ୍ଧୁ । ଅନୁସନ୍ଧାନ କରି ବନ୍ଧୁଜଣକ ବୁଝନ୍ତି ଯେ, ମାତ୍ର ୪୦ଟି ଟଙ୍କା ପାଇଁ ଶିକ୍ଷକ ମହାଶୟଙ୍କୁ ଜେଲ୍‌ଭିତରକୁ ନିଆଯାଉଛି । ବନ୍ଧୁଜଣକ ନିଜେ ସେତକ ଟଙ୍କା ଦେଇ ପୋଲିସ୍ ହାତରୁ ତାଙ୍କୁ ମୁକୁଳାଇ ଆଣିଲେ ।

ପରେ ବନ୍ଧୁଯାଇ ଶିକ୍ଷକ ମହାଶୟଙ୍କୁ ଟଙ୍କା ମାଗନ୍ତି । ଫଳରେ ତାଙ୍କୁ ଉତ୍ତର ମିଳେ, ''କି ଟଙ୍କା ?'' ବନ୍ଧୁ ମନେ ପକାଇଦେଲେ ତାଙ୍କୁ ସେ ଦିନର ଘଟଣା—''ମନେ ନାହିଁ ? ପୁଲସ୍ ଯେବେ ତୁମକୁ ଦିଆନ୍ ଫାଟକକୁ ନେଉଥିଲା, ମୁଁ ପରା ଚାଳିଶ ଟଙ୍କା ଦେଇଥିଲି ? ଜାମିନ୍ ହୋଇଛି ତୁମପାଇଁ ।''

ତହୁଁ ଉତ୍ତର ମିଳେ—''ତୁମକୁ ତ ମୁଁ ଜାମିନ୍ ହେବାକୁ କହିନି ।''

ବନ୍ଧୁ ଜଣକ ହତବାକ୍ !

''ହଁ, କହି ନଥିଲ ଅବଶ୍ୟ, କିନ୍ତୁ ଯେଉଁଭଳି ଅବସ୍ଥାରେ ପୋଲିସ୍ ତୁମକୁ—ରାସ୍ତା ମଝିରେ ପୁଣି ମୋ' ଦୁଆର ଆଗରେ''—

ସଙ୍ଗେ ସଙ୍ଗେ ଉତ୍ତର ମିଳେ, ''ସେଥିରେ ତୁମର କ'ଣ କ୍ଷତି ହେଉଥିଲା ?''

''ମୋତେ ସେ ଦୃଶ୍ୟ ଭାରି ଖରାପ ଲାଗିଲା ।''

''ତେବେ ତୁମକୁ ଭଲ ଲାଗିବା ପାଇଁ ଟଙ୍କା ଦେଇଥିଲ, ମୋତେ ଭଲ ଲାଗିବା ପାଇଁ ତ ନୁହେଁ । ଟଙ୍କା ଦେଲାବେଳେ ଏହା ତମର ବିଚାରିବା ଉଚିତ ଥିଲା । ନିଜେ ଏତେବଡ଼ ଉପକାରୀ ବନ୍ଧୁବୋଲି ତେବେ ଦେଖାଇ ହେବାକୁ ଯାଉଥିଲ କାହିଁକି ? ତୁମେ ମୋତେ ସାହାଯ୍ୟ କଲ ମୋ'ର ବିନା ଅନୁରୋଧରେ । ସେଥିରେ ତମର ସିନା ସୁନାମ ହେଲା । ମୋ'ର ତା'ହେଲେ ପରିଶୋଧର ପ୍ରଶ୍ନ କେଉଁଠି ?'' ଉପକାରୀ ବ୍ୟକ୍ତି କାନମୁଣ୍ଡା ଆଉଁଶି ଲେଉଟିଲେ ।

ତୃତୀୟ ଶ୍ରେଣୀରେ ପଢୁଥିବା ବେଳେ ଅର୍ଥାତ୍ ମାଟ୍ରିକ୍ୟୁଲେସନ ପରୀକ୍ଷାଦେବାକୁ ମାତ୍ର ତିନିଟି ବର୍ଷ ବାକି ଥାଏ—ଶ୍ରେଣୀ-ଶିକ୍ଷକ ଥାନ୍ତି ସ୍ୱର୍ଗତ ବାସୁଦେବ ମହାପାତ୍ର । ସେତେବେଳେ ଭୂଗୋଳ, ଇତିହାସ, ସ୍ୱାସ୍ଥ୍ୟରକ୍ଷା, ଅଙ୍କ, ଜ୍ୟାମିତି, ବୀଜଗଣିତ, ସାହିତ୍ୟ, ଇଂରାଜୀ ପୁଣି ବୋଧହୁଏ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କକୃତ ସଂସ୍କୃତ ବ୍ୟାକରଣ 'ଉପକ୍ରମଣିକା' ମଧ୍ୟ ଆମର ପଢ଼ା ହେଉଥାଏ । ପ୍ରତି ବିଷୟରେ ପରୀକ୍ଷାରେ ହେଡ଼୍‌ମାର୍କ ଥାଏ ଶହେ ନମ୍ବର । ବାର୍ଷିକ ପରୀକ୍ଷାରେ ମୁଁ ଯେପରି ନମ୍ବର ରଖିଥିଲି, ତାହା ମୋର ଆଜି ବି ସ୍ମରଣୀୟ ହୋଇ

ରହିଛି; ଅର୍ଥାତ୍ ପ୍ରତ୍ୟେକ ବିଷୟରେ ଷାଠିଏ ନମ୍ବରରୁ କମ୍ ନୁହେଁ କିମ୍ବା ଅଣସ୍ତରିରୁ ବେଶି ନୁହେଁ । ଏହିଭଳି ନମ୍ବର ମୋ'ର ରହିଥିବା ଦେଖି ମୁଁ ନିଜେ ମଧ ବିସ୍ମିତ ହୋଇ ପଡ଼ିଥାଏଁ ।

ଶ୍ରେଣୀ ଶିକ୍ଷକ ବାସୁବାବୁ ସବୁ ଛାତ୍ରଙ୍କର ନମ୍ବର ମିଶାଇ କ୍ଲାସ ଭିତରେ ମୋତେ ଚିହ୍ନାଇ ଦେଇ କହିଥିଲେ—

"Here is a square-headed boy !"

'ସ୍କୋୟାର୍ ହେଡ଼େଡ୍' ଶବ୍ଦଟା ସେଇ ଦିନ ମୁଁ ଶିଖିଲି ତାଙ୍କରି ଠାରୁ; ଶୁଣିବା ମାତ୍ରେ ମୁଣ୍ଡଟା ମୋର ଘୂରିଲାଗିଲା କୁମ୍ଭାରଚକରେ ହାଣ୍ଡି ତିଆରି ପାଇଁ କାଦୁଅ ମେଞ୍ଚାଟା ଘୂରିଲାଭଳି । କାରଣ ମଣିଷର ମୁଣ୍ଡତ ଆକାରରେ ପ୍ରାୟ ଗୋଲ । ତାହା ସିନା 'ରାଉଣ୍ଡ ହେଡ଼େଡ୍' ହୁଅନ୍ତା— 'ସ୍କୋୟାର୍ ହେଡ଼େଡ୍' ହେବ କିପରି ?

ସେ କଥାଟା ମନ ଭିତରେ ମୋର ଆଗ ଖଟ୍କା ଲାଗିଲା । କେତେକାଳ ପରେ ମୋର ସବୁ ବିଷୟରେ ସମାନ ପାରଦର୍ଶିତା ରହିଥିବା ଯେ ଏହି ମନ୍ତବ୍ୟରୁ ବୁଝାଯାଏ, ତାହା ଉପଲବ୍ଧି କଲି । ଗାଁ ପ୍ରାଥମିକ ସ୍କୁଲରେ ଇନ୍ସପେକ୍ଟର ମଧ ଏଇଭଳି ସବୁ ବିଷୟରେ ମୋର ସମାନ ପାରଦର୍ଶିତା କଥା ଉଲ୍ଲେଖ କରିଥିଲେ ।

ପ୍ରଶଂସାରେ ମନମୋଟିଆ ହୋଇପଡ଼ିବାଟା ଯଦି ସତ ହୁଏ; ତେବେ ପରିଣାମ ମୋତେ ନିଶ୍ଚୟ ଭୋଗିବାକୁ ପଡ଼ିଚି ଭବିଷ୍ୟତରେ ଜୀବନ ପ୍ରତି 'କ୍ୟା ପରବାୟ ନୀତି'ରେ ଚାଳିତ ହୋଇ । ବାସୁଦେବବାବୁଙ୍କ ପ୍ରଶଂସା ଶୁଣି ଯେମିତି ଖୁସି ହୋଇଥିଲି, ତା'ପରଠାରୁ ମୋର ନିଜ ମସ୍ତିଷ୍କ ଉପରେ ବିଶ୍ୱାସଟା ବୋଧହୁଏ ବେଶି ହୋଇପଡ଼େ । ଯେଉଁଥିପାଇଁ ଓଡ଼ିଆ ଭାଷାରେ ଗୋଟିଏ ଶବ୍ଦ ରହିଛି—ମନମୋଟିଆ; ଆଉ ତାହାର ପରିଣାମ ସୁଦ୍ଧା ନ ଜାଣେ ନ ବୁଝେ କିଏ ?

ଅଳ୍ପ ଆୟାସରେ ଏଣିକି ମସ୍ତିଷ୍କଟା ମୋର ବୋଲମାନି ସବୁ ପାଠ ଦୋରସ୍ତ ହଜମ କରିପକାଇବ ଛାଏଁ ଛାଏଁ ! ସେଥିଲାଗି ଆଉ କିଛି କସରତ୍ ଲୋଡ଼ା ନାହିଁ ତେବେ ! ଏଇ 'ମୁଣ୍ଡ' ଶବ୍ଦଟାର ମଧ ଆଉ ଏକ ବିଶେଷଣ ଶୁଣେ—ହେଡ଼ମାଷ୍ଟର ମହାଶୟ ଉପେନ୍ଦ୍ରନାଥ ଦତ୍ତଗୁପ୍ତଙ୍କ ମୁଖରୁ । ଛାତ୍ରମାନଙ୍କୁ ପ୍ରଶ୍ନ ପଚାରି ସେ ଉତ୍ତର ନ ପାଇଲେ–'Block-head' ବୋଲି ବିରକ୍ତ ସୂଚକ ମନ୍ତବ୍ୟ ତାଙ୍କଠାରୁ ଶୁଣାଯାଏ । ସେଥିଲାଗି ତାଙ୍କ ପ୍ରତି ମୋର ଭୟ ଓ ସଂଭ୍ରମ ଥିଲା ଅଧିକ—ଯଦି ମୋ'ର ସ୍କୋୟାର ହେଡ୍'କୁ ସେ ପୁଣି କେବେ ବ୍ଲକ୍‌ହେଡ୍ କରିପକାନ୍ତି !

ଗାଆଁର ନିତି ଜଣାଶୁଣା ନିପଟ ପୁରୁଣା ପରିବେଶରୁ ବାହାରି ଆସି ବିରାଟ ଭାରତବର୍ଷ ଭିତରେ ସୁଦ୍ଧା ଆହୁରି ଖାଣ୍ଟି ଓଡ଼ିଆ ହୋଇପଡ଼ିବା ମୋତେ ବୋଧହେଲା । କବୀର, ନାନକ, ଶଙ୍କର, ରାମାନୁଜ—ଜୈନ, ବୌଦ୍ଧ, ଶୈବ, ବୈଷ୍ଣବ—କେତେ ମଠ, କେତେ ମନ୍ଦିର, ସମ୍ପ୍ରଦାୟ ଭିତରେ ରୂପ ଭେକ ବି ସେମିତି ଅନେକ ।

ଯେଉଁ ବନ୍ଧୁମାନେ ପୁରୀରେ ଜୁଟିଲେ, ତାଙ୍କ ମଧ୍ୟରେ ମୁଁ ଲକ୍ଷ୍ୟ କରିଛି ଏହି ଭାବ । ଆହୁରି ଲକ୍ଷ୍ୟ କଲି ଯେ ଭାରତବର୍ଷର ବିଭିନ୍ନ ଭାଷା-ଭାଷୀ ଲୋକେ ଜଗନ୍ନାଥ ଦର୍ଶନ ପାଇଁ ଆସି ମନ୍ଦିର ଭିତରେ ଓ ବାହାରେ ଗହଳି କରନ୍ତି, କିମ୍ବା ପୁରୀ ସମୁଦ୍ର କୂଳରେ ଜଳବାୟୁ ପରିବର୍ତ୍ତନ କରିବାକୁ ଆସି ନିଜ ନିଜ ଭାଷା ଓ ରାଜନୀତିର ବିଚିତ୍ର ଫରକଗୁଡ଼ିକୁ ମହାକାଶ ଓ ମହୋଦଧିର ମହାମିଳନରେ ହଜାଇ ଦିଅନ୍ତି ସେମାନେ । ମଣିଷର ଏମିତି ନାନା ଭାଷା, ବେଶପୋଷାକ, ଆଚାର ବିଚାର, ଧର୍ମ ସମ୍ପ୍ରଦାୟ ରଙ୍ଗଢଙ୍ଗ—ସବୁରି ଭିତରେ ହିଁ ସବୁକାଳେ ରହିଂଆସିଚି ତ ଖାଣ୍ଟି ମଣିଷଟା ! ମିଳନ, ବିଭେଦ ଦୁଇଟାଯାକର ଯୋଗସୂତ୍ର ଭିତରେ ସେଇ ଯେମିତି ଅବା ଜିଇଁ ରହେ ଚିର କାଳ ।



## ଆଶ୍ରମ ବିଶ୍ରାମ

ଅନେକ ନୂଆ ବନ୍ଧୁଙ୍କ ପରିଚୟ ଘଟେ ପୁରୀଜିଲ୍ଲା ସ୍କୁଲରେ । ସେଥି ସଙ୍ଗେ ଶିକ୍ଷକଙ୍କର ମଧ୍ୟ ।

ବାର୍ଷିକ ପୁରସ୍କାର-ବିତରଣୀ ସଭାରେ ମୋତେ ପ୍ରଥମ କିମ୍ବା ଦ୍ୱିତୀୟ ପୁରସ୍କାର ପାଇବାର ସୌଭାଗ୍ୟ ଜୁଟେ ଉପର କ୍ଲାସରେ ସିନା, ତଳ କ୍ଲାସରେ ନୁହେଁ ।

ତଳ କ୍ଲାସରେ କିନ୍ତୁ ମୁଁ ପୁରସ୍କାର ପାଇଥିଲି ଗୀତ ବୋଲି । ମୋ ସହିତ ଚାରୁଚନ୍ଦ୍ର ବୋଲି ଆଉ ଜଣେ ସହାଧ୍ୟାୟୀ ମଧ୍ୟ ଗୀତ ବୋଲିଥିଲେ । ଗୀତଟି ଥିଲା—

କେହି ରହି ନାହିଁ ରହିବେ ନାହିଁଟି
ଭବରଙ୍ଗ ଭୂମି ତଳେ,
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳବଳେ ।

କବିବର ରାଧାନାଥ ରାୟଙ୍କର ପାର୍ବତୀ କାବ୍ୟରୁ ଏହି ଅଂଶଟିର, କେତେ ପଦ ପୁରସ୍କାର ବିତରଣୀ ସଭାରେ ଆବୃତ୍ତି କରିବା ଆଗରୁ ହେଡ଼ମାଷ୍ଟରଙ୍କ ସମକ୍ଷରେ ପରୀକ୍ଷା ଦେଇଥିଲୁଁ । ମନେଅଛି—ସେତେବେଳେ ପଣ୍ଡିତ ଫକୀର ମିଶ୍ରଙ୍କ ସହିତ ଦାଶରଥିବାବୁ ହେଡ଼ମାଷ୍ଟର ତନ୍ମୟଭାବରେ ସେ ଗୀତ ଶୁଣି 'ଆହା' 'ଆହା' କହି ଆଖିରୁ ଲୁହ ପୋଛିଥିଲେ ! ତାଙ୍କ ନିର୍ଦ୍ଦେଶରେ ଥରକୁ ଥର ସେଇ ଗୀତ ଆମକୁ ଆବୃତ୍ତି କରିବାକୁ ହୁଏ । ଉଭୟ ଆଜି ପୃଥିବୀରୁ ଅନ୍ତର୍ଦ୍ଧାନ ହୋଇ ଗଲେଣି । ଆଉ ଥରେ ସେଇ ସ୍ୱରରେ ଆବୃତ୍ତି କରିବାକୁ ଗାୟକର କଣ୍ଠ ମଧ୍ୟ ଅସମର୍ଥ । ଆବୃତ୍ତ କବିତାଂଶର ଶେଷ ପଦ ଥିଲା—

ସେହି ବଂଶ କାହିଁ ଏହି କଥା ଯେବେ
ଏକାମ୍ରେ ପୁଛିବ ଯାଇ
ପ୍ରତିଧ୍ୱନି ଛଳେ କାନନେ ଦେଉଳ
ପ୍ରତିବାଣୀ ଦେବ 'କାହିଁ' ?

ସ୍କୁଲରେ ପଢ଼ିବାବେଳେ ମୋର ଆଉ ଗୋଟିଏ ଗୁଣ ଥିଲା, ସାଙ୍ଗ ପିଲାମାନଙ୍କୁ ଘେନି ଲିଜର ପିରିଅଡ଼ରେ ଗପ କହିବା ।

ସେ ସବୁ ଗପ ମୁଁ ଗାଁରେ ଶୁଣୁଥାଏଁ, ଅଥଚ ସହର ସାଙ୍ଗମାନେ ତାକୁ ନୂଆ ବୋଲି ବିଚାରି ମୋତେ ବେଢ଼ିବସି ଜିଗର କରନ୍ତି, ସେଇ ମଫସଲୀ ଗପ ଶୁଣିବାକୁ । ଗପ ଶୁଣୁ ଶୁଣୁ କେହି କେହି ଟେବୁଲ ଡେସ୍କ ବାଡ଼େଇ ହସ କୌତୁକରେ କ୍ଲାସ ଘର କମ୍ପାନ୍ତି । ଯେହେତୁ ସେ ସବୁ ଅଧିକାଂଶ ମଜା ଗପ ।

ପାଠ ପଢ଼ାରେ ମୁଁ ବିଶେଷତ୍ୱ ଦେଖାଏଁ କେବଳ ଉପର କ୍ଲାସରେ । କାରଣ ଘରେ ଜ୍ୟେଷ୍ଠ ଦିବ୍ୟସିଂହଙ୍କ କଡ଼ା ତାଗିଦ ସଙ୍ଗେ ମୋର ଟିକିଏ ଦାୟିତ୍ୱବୋଧ । ସେତେବେଳକୁ ଭାଇନା କଲିକତାରୁ ଓକିଲାତି ପାସ୍ କରି ପୁରୀ କଚେରିରେ ଯୋଗ ଦେଲେଣି । ଆଉ ତାଙ୍କର କଚେରି ଯିବା ଦିନଠାରୁ ବାପା ଆଇନ ବ୍ୟବସାୟ ଛାଡ଼ି ସମ୍ପୂର୍ଣ୍ଣ ବିଶ୍ରାମ ନେଲେଣି ଘରେ ।

ଆଇନ ବ୍ୟବସାୟଟା ହଠାତ୍ ଛାଡ଼ିଦେବା କାରଣ କେହି ତାଙ୍କୁ ପଚାରିଲେ, କହନ୍ତି— ପୁଅ ଯେତେବେଳେ ସେଇ ବ୍ୟବସାୟ କଲେଣି, ଅପରପକ୍ଷ ମୋତେ ମକଦ୍ଦମା ଲଢ଼ିବାକୁ ଡାକିଲେ ମୋର ତାଙ୍କୁ ତ ମନା କରିବା ଉଚିତ ହେବ ନାହିଁ । ତେବେ କ'ଣ ବାପ ପୁଅ ଦୁଇ ପକ୍ଷ ସମର୍ଥନ କରି ପରସ୍ପର କୋଟ ଆଗରେ ସପକ୍ଷ ବିପକ୍ଷରେ ମକଦ୍ଦମା ଲଢ଼ିବୁଁ ?

ମୋ ଝିଅ 'କୁନି' (ନନ୍ଦିନୀ) କିନ୍ତୁ ରେଡ଼ିଓମନ୍ତ୍ରୀ ହେଲାବେଳେ ମୁଁ ରେଡ଼ିଓ ଚାକିରି ସଙ୍ଗେ ସଙ୍ଗେ ଛାଡ଼ି ପାରି ନଥିବା ହେତୁ ବାପାଙ୍କ କଥା ବାରମ୍ବାର ମନେ ପଡ଼ିଲା ମୋର ।

ଗାଁରୁ ବୋଉ, ଭାଉଜ, ନାନୀ ଆଉ ମୋର ସାନଭାଇ ଭଗବତୀ ଆସି ରହିଲେଣି ପୁରୀ ହେରାଗୋହିରୀ ସାହିରେ । ଆଗେ ବାପା ଯେପରି ସ୍କୁଲରୁ ମୋତେ ଡାକିଆଣି ଘରେ ବସାଇ ରଖୁଥିଲେ, ତହିଁରେ ମଧ ଟିକିଏ ପରିବର୍ତ୍ତନ ଦେଖାଗଲାଣି । ପାଖ ପଡ଼ିଶାଙ୍କ ଭିତରେ ଗୋପବନ୍ଧୁ, ସଦାଶିବ ପ୍ରଭୃତିଙ୍କ ସହିତ ବନ୍ଧୁତା; ପୁଣି ସ୍କୁଲରେ ମଧ ଅନ୍ୟାନ୍ୟ ସହାଧାୟୀଙ୍କ ସଙ୍ଗେ ନୂଆ ନୂଆ ବନ୍ଧୁତାର ସୂତ୍ରପାତ ହୁଏ । ନିକଟରେ ବ୍ରାହ୍ମଣ ସମିତି ଛାତ୍ରାବାସରେ ରହୁଥାନ୍ତି ପଣ୍ଡିତ ଜଗନ୍ନାଥ ରଥ, ଅନନ୍ତ ମିଶ୍ର ଓ ନରସିଂହ ମିଶ୍ର ପ୍ରଭୃତି । ଛାତ୍ରାବାସଟି ସାମନ୍ତ ଚନ୍ଦ୍ର ଶେଖରଙ୍କ ନାମରେ ନାମିତ ।

ସ୍ୱର୍ଗତ ପଣ୍ଡିତ ସଦାଶିବ ମିଶ୍ର କାବ୍ୟକଣ୍ଠଙ୍କ ନେତୃତ୍ୱ ସେଥିରେ, ପୁଣି ପୁରୀ ମୁକ୍ତିମଣ୍ଡପ ସଭାର ସଙ୍ଗଠନରେ ଅନୁଭୂତ ହୁଏ । ସେହି ସମୟରେ ସାକ୍ଷୀଗୋପାଳ ସ୍କୁଲର ଅଭ୍ୟୁଦୟ । ପଣ୍ଡିତ ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ଓ ହରିହର ପ୍ରଭୃତି ଯା-ଆସ କରନ୍ତି ଆମ ଘରକୁ ଭାଇନାଙ୍କ ସହିତ ସେମାନଙ୍କର ଘନିଷ୍ଠତା ଥିବାରୁ ।

ସାମନ୍ତ ଚନ୍ଦ୍ରଶେଖର ହଲ୍‌ରେ ସାଧାରଣ ସଭାମାନ ମଧ ଅନୁଷ୍ଠିତ ହୁଏ, କାବ୍ୟକଣ୍ଠ ସଦାଶିବ ମିଶ୍ରଙ୍କ ଉଦ୍ୟମରେ । ଏହି ସବୁ ସଭାଭିତରେ ଥରେ କଲିକତା ବିଶ୍ୱବିଦ୍ୟାଳୟର

କୁଳପତି ସାର୍ ଆଶୁତୋଷ୍ ସଭାପତିତ୍ୱ କରି କହିଥିଲେ ଯେ, ଉତ୍କଳଗୌରବ ମଧୁସୂଦନ ଥିଲେ ତାଙ୍କର ଗୃହଶିକ୍ଷକ–ଆଉ ସେହି କାରଣରୁ ସେ ଉତ୍କଳ ନିକଟରେ ଋଣୀ ।

ସେହି ହେରାଗୋହିରୀ ସାହି ଘରେ ରହିଥିବା ସମୟରେ ହିଁ ମୋହ ଭିତରେ ଏକ ତୁମୂଳ ଅନ୍ତର୍ଦ୍ୱନ୍ଦ୍ୱ ଜାତହୁଏ । ସେ ଦ୍ୱନ୍ଦ୍ୱର କାରଣ ବଖାଣିବାକୁ ଗଲେ—ବୋଧହୁଏ ତାହା ବୟସର ପୁଣି ପାରିପାର୍ଶ୍ୱିକ ପରିସ୍ଥିତିର ପ୍ରଭାବ ।

ଯୌବନର ପ୍ରାରମ୍ଭ କାଳ । ବୟସ ସେତେବେଳେ ଷୋହଳ କିମ୍ୱା ସତର । ବାପାଙ୍କର ଗେରୁଆପିନ୍ଧା ସନ୍ନ୍ୟାସ ଭାବ ଓ ତାଙ୍କ ବନ୍ଧୁମାନଙ୍କ ସହିତ ସନ୍ନ୍ୟାସ-ଜୀବନର ଦୃଷ୍ଟାନ୍ତ ସହିତ ଆଲୋଚନା ମୋ ଉପରେ ହୁଏତ ପରୋକ୍ଷ ପ୍ରଭାବ ପକାଏ । ସେଥି ସଙ୍ଗେ ମୁଁ ଅମୃତଲାଲ ନାଗ ନାମକ ଜଣେ ପରମ ଶ୍ରଦ୍ଧାବାନ୍ ଓ ଚରିତ୍ରବାନ୍ ପଡ଼ୋଶୀ ବନ୍ଧୁଙ୍କ ଦ୍ୱାରା ମଧ ପ୍ରଭାବିତ ହୁଏଁ । ତାଙ୍କ ସହିତ ଭକ୍ତିମାର୍ଗ ଓ ଜ୍ଞାନମାର୍ଗ ଆଦି ଐହିକ ପାରତ୍ରିକ ବହୁ ବିଷୟରେ ହୁଏ ଆଲୋଚନା । ସ୍ୱାମୀ ଶ୍ରୀ ନିଗମାନନ୍ଦ ସରସ୍ୱତୀଙ୍କ ରଚିତ 'ବ୍ରହ୍ମଚର୍ଯ୍ୟ' ପୁସ୍ତକରେ ପ୍ରାଣାୟାମ, ପାନାହାର, ନିଦ୍ରା, ଜାଗରଣ, ପୁଣି ଭାବନା କିମ୍ୱା ଚିନ୍ତା—ସଂଯମ ଦିଗରେ ମଧ ମନ ମୋର ଆକୃଷ୍ଟ ହୁଏ । ସେହି ଅନୁସାରେ ମୁଁ ଶାକାହାରୀ ହୋଇ ଧୌତି ଓ ପ୍ରାଣାୟାମାଦି ଅଭ୍ୟାସ କରେଁ ।

ସ୍ୱାମୀ ଶ୍ରୀ ନିଗମାନନ୍ଦ ସରସ୍ୱତୀଙ୍କ ନିକଟକୁ ଆସାମ ଠିକଣାରେ ମଧ ମୁଁ ପତ୍ର ବିନିମୟ କରେଁ । ସେତିକିବେଳେ ପୁଣି ପହଞ୍ଚେ ଆସି ମୋର କେତେକ ବିବାହ ପ୍ରସ୍ତାବ । ଦିନେ ବୋଉଙ୍କ ସମକ୍ଷରେ ମୁଁ ସଂସାରୀ ନ ହୋଇ ସନ୍ନ୍ୟାସୀ ହେବା ଅଭିଳାଷ ପ୍ରକାଶ କରିବାରୁ ସେ ହଠାତ୍ ମୋତେ ଅବାକ୍ ବିମୂଢ଼ କରିପକାଇ ବିକଳ ଚିତ୍କାରରେ କାନ୍ଦି ଉଠିଲେ । ବାପା ମଧ ଅଭିଭୂତ ହୋଇ ପଡ଼ନ୍ତି । ସ୍ୱାମୀ ନିଗମାନନ୍ଦ ମୋତେ ମାତାପିତାଙ୍କ ଅନୁମତି ଘେନି ଗୃହତ୍ୟାଗ କରିବାକୁ ପରାମର୍ଶ ଦେଇଥାନ୍ତି । ମାତ୍ର ସେହି ଅନୁମତି ଘେନିବାକୁ ଯାଇ ପରିଣାମରେ ତାହା ଯେ ଏଭଳି ରୂପ ଗ୍ରହଣ କରିପାରେ, ତାହା ଥିଲା ମୋର କଳ୍ପନାର ବାହାରେ ।

ଶେଷରେ ଅବସ୍ଥା ହେଲା ମୋର—ସେହି ସନ୍ନ୍ୟାସ ବ୍ରତ-ଗ୍ରହଣ ଅଭିଳାଷୀ ଯୁବକର କାହାଣୀ ଭଳି । କାହାଣୀଟି କଟକ ରେଭେନ୍ସା କଲେଜ୍‌କୁ ଆସି ଶୁଣିଥିଲି କେତେକ ପରିହାସପ୍ରିୟ ବନ୍ଧୁଙ୍କ ମୁଖରୁ । ସେମାନେ ଅବଶ୍ୟ ମୋର ସନ୍ନ୍ୟାସ ଗ୍ରହଣ ବ୍ୟାପାରରେ ଅବହିତ ନଥିଲେ ।

ଉପାଖ୍ୟାନର ନାୟକ ଯୁବକଟିର ସଂସାର ପ୍ରତି ବିତୃଷ୍ଣା କ୍ରମଶଃ ତୀବ୍ରତର ହୋଇ ବୈରାଗ୍ୟ ଜାତ ହୁଅନ୍ତେ ସେ ଗୃହତ୍ୟାଗ କରି ଜଣେ ଗୁରୁଙ୍କ ଆଶ୍ରୟ ନିଏ । ତହୁଁ ଆଶ୍ରମ ନିୟମ ଅନୁସାରେ ଗୁରୁ ତାହାକୁ ପଠାନ୍ତି ଭିକ୍ଷାକରି ଆଣିବା ପାଇଁ । ସାଧାରଣତଃ ଗୃହସ୍ଥମାନେ ତ ଭିକ୍ଷାପାଇଁ ପ୍ରାୟ ଧାନ ଓ ଗୋଡ଼ିମିଶା ଖୁଦ ଚାଉଳ ରଖିଥାନ୍ତି । ତହୁଁ ଶିଷ୍ୟ ବିଚାରା ଯେଉଁ ଭିକ୍ଷା ଆଣେ, ଗୁରୁଙ୍କ ନିର୍ଦ୍ଦେଶରେ ସେସବୁ ତାହାକୁ ପରିଷ୍କାର କରିବାକୁ ପଡ଼େ । ଏମିତି ଦିନେ ସେ ଭିଖ ଚାଉଳରୁ ଧାନଖୁଦ ଗୋଟି ଗୋଟି କରି ବାଛି ବସିଛି, ଗାଁରୁ ଜଣେ ପଡ଼ୋଶୀ ତା'ର କୁଶଳ ସମ୍ୱାଦ ବୁଝିବାକୁ ଆସି ପହଞ୍ଚେ ।

ଏହିଭଳି ଦୁଃସ୍ଥିତି ଭିତରେ ପଡ଼ି ଦିନେ ସଂସାର ପ୍ରତି ଯାହା ତା'ର ବୈରାଗ୍ୟ ଉଦୟ ହୋଇଥିଲା, ଏବେ ସନ୍ନ୍ୟାସବ୍ରତର ପ୍ରାରମ୍ଭରୁ ତିକ୍ତ ଅଭିଜ୍ଞତା ଲାଭ କରି ସେଥିପ୍ରତି ମଧ ସେଇଭଳି କିମ୍ବା ତତୋଽଧିକ ଉଗ୍ର-ବୈରାଗ୍ୟ ତା'ର ଜାତ ହେଲାଣି ।

ପଡ଼ୋଶୀଜଣକ ଏଇ ଅବସ୍ଥାରେ ତାକୁ ଦେଖି କୁଶଳ ପ୍ରଶ୍ନ କରନ୍ତେ ଯୁବକଟି ଜଣାଏ—

ଧାନ ଗୋଟି ଗୋଟି ଖୁଦ ଗୋଟି ଗୋଟି
ବାଛୁ ବାଛୁ ରାତି ପାହିଲା ।
ବାପାଙ୍କୁ କହିବ ହଡ଼ା ନ ବିକିବେ
(ମୋର) ବଇଷମ ହେବା ନୋହିଲା ॥

ବିଚାରାକୁ ବାପା ତା'ର ସବୁବେଳେ ବିଲକାମ କରିବାକୁ ତାଗିଦା କରିବାରୁ ସେ ସନ୍ନ୍ୟାସ ଗ୍ରହଣ କରେ । କିନ୍ତୁ ସନ୍ନ୍ୟାସ ଯେ ତହୁଁ ବଳି କ୍ଲେଶଦାୟକ, ସେ ଅଭିଜ୍ଞତାରୁ ସୁଦ୍ଧା ତାକୁ ତ୍ରାହି ମିଳିଲା ନାହିଁ । ମୋ' ପାଇଁ ସେମିତି ସ୍ୱାମୀ ଶ୍ରୀ ନିଗମାନନ୍ଦଙ୍କ ଆଶ୍ରମ-ଦ୍ୱାର ମଧ ରୁଦ୍ଧ ହୋଇଗଲା । ଆଉ ବୈରାଗ୍ୟ ମୋର କ୍ଷଣସ୍ଥାୟୀ ହେଲା ଶ୍ମଶାନ-ବୈରାଗ୍ୟ ଭଳି ।

କେବଳ ସେତିକି ନୁହେଁ ତ ! ପ୍ରାଚୀନ ଭାରତର ଚାରିଗୋଟି ଆଶ୍ରମ ମଧ୍ୟରୁ ଗୃହସ୍ଥାଶ୍ରମ ଅପେକ୍ଷା ବରଂ ଅନେକ ବେଶି ସୁବିଧା ସୁଯୋଗ ମିଳିବାର ଦ୍ୱାର ସେହି ସମୟରେ ନୂଆହୋଇ ଖୋଲା ଯାଉଥିବା 'ସ୍ୱରାଜ୍ୟାଶ୍ରମ' ପ୍ରତି ମଧ ଉତ୍ସାହ ମୋ'ର କମିଆସିଲା ।

ନିମ୍ନଟୀକା ଭାବରେ ଏଇ ସମୟର ଏକ ଘଟଣା ମନେପଡ଼େ । ଇଂରାଜୀ ଭାଷାରେ ସେତେବେଳେ ମୋର ପ୍ରବେଶାରମ୍ଭ । ସଂସାର ତ୍ୟାଗ ଓ ନାରୀକୁ କେବଳ ମାତୃରୂପେ ବିଚାର କରି ତାଙ୍କ ମୁଖକୁ ନ ଚାହିଁ ସର୍ବଦା ଭକ୍ତିପରାୟଣ ଚିତ୍ତରେ ପଦନିରୀକ୍ଷଣ କରିବା ଥିଲା ସ୍ୱାମୀ ନିଗମାନନ୍ଦଙ୍କର ଉପଦେଶ । ସ୍ୱପ୍ନ କିମ୍ବା ଜାଗରଣରେ ଏହି ଅଭ୍ୟାସ ଦ୍ୱାରା ବ୍ରହ୍ମଚାରୀ ଜୀବନରେ ମୁଁ ବହୁ ପରିମାଣରେ ସଫଳକାମ ହୁଏଁ ।

ସ୍ୱାମିଜୀଙ୍କ ନିର୍ଦ୍ଦେଶ ଅନୁଯାୟୀ ନାରୀକୁ ପ୍ରେମିକା ଜ୍ଞାନ କରିବା ବ୍ରହ୍ମଚାରୀ ପକ୍ଷରେ ନିଷିଦ୍ଧ, ଗର୍ହିତ ଓ ନିନ୍ଦନୀୟ । ସେ ବିଷୟରେ ମୋ'ର ବନ୍ଧୁମାନଙ୍କ ସହିତ ମଧ ଯୁକ୍ତିତର୍କ ଓ ଆଲୋଚନା ହୁଏ । ତାଙ୍କ ଭିତରୁ କିଏ କେଜାଣି କହିଥିଲେଯେ, ସେଥିଲାଗି ଇଂରାଜୀରେ ଗୋଟିଏ ପରା କଥା ଅଛି—Love is blind—ଓଡ଼ିଆରେ ମଧ 'ପ୍ରେମାନ୍ଧ' ଶବ୍ଦଟି ଅପ୍ରଚୁର ନୁହେଁ; କିନ୍ତୁ ଅର୍ଥ-ବିଭ୍ରାଟ ଅଛି ତହିଁରେ । ଇଂରାଜୀଟା ହିଁ ଠିକ୍ ବୋଲି ବିଚାରିଲି ।

ମୋର ବୈରାଗ୍ୟ ଲାଗି ଏହାକୁ ଗୋଟିଏ ମଟୋ କରି ଓ ସୁନ୍ଦର ଅକ୍ଷରରେ ବିଭିନ୍ନ ରଙ୍ଗରେ ଲେଖି ପଢ଼ାଘରେ ଟାଙ୍ଗିଥାଏଁ; ଅଥଚ ଭାଇନା ଦିନେ ମୋ'ର ପଢ଼ାଘରେ ମୋତେ ଯାଞ୍ଚକରିବାକୁ କି କାହିଁକି ପଶିଯାଇ ଏହି 'ମଟୋ'ଟି ଦେଖିପକାଇ ଭୀଷଣ ରାଗିଯାନ୍ତି । ତାଙ୍କ ପ୍ରତି ତ ବାପାଙ୍କଠାରୁ ଆରମ୍ଭ କରି ଘରଯାକ ସମସ୍ତଙ୍କର ସମ୍ଭ୍ରମ ।

ଭାଇନା କ୍ରୋଧରେ ମୋର ସେଇ ମଟୋକୁ ଟାଣି ଯେତେବେଳେ ଚିରି ଫିଙ୍ଗି ଦିଅନ୍ତି, ସେତେବେଳେ ତାଙ୍କ ଆଚରଣ ମୋ' ପକ୍ଷରେ ଯେତିକି ଦୁର୍ବୋଧ ହୋଇପଡ଼େ,ସେତିକି ମୋତେ ଲାଞ୍ଛିତ କରେ । ଘରେ ବାପା, ବୋଉ, ଭଉଣୀ ପ୍ରଭୃତି ସମସ୍ତଙ୍କର ଦୃଢ଼ ବିଶ୍ୱାସ

ଯେ ମୁହିଁ ନିଶ୍ଚୟ ଦୋଷୀ, ଭାଇନାଙ୍କର କେବେହେଲେ ଭୁଲ୍ ହୋଇ ନ ପାରେ—The king can do no wrong- ରାଜଭକ୍ତ ଇଂରେଜମାନଙ୍କର ଯେପରି ଅଖଣ୍ଡ ବିଶ୍ୱାସ ଯେ ରାଜା କେବେହେଲେ ଭୁଲ କରିପାରନ୍ତି ନି ବୋଲି । ତହୁଁ ଏଇ ଚିରାଚରିତ ପ୍ରବାଦଟି ରହି ଆସିଛି, ଆଜି ଇଂରେଜ ରାଜାଙ୍କର ଭୁଲ କି ଠିକ୍ କିଛି ହେଲେ କରିପାରିବା ଶକ୍ତି ନ ଥିଲେ ସୁଦ୍ଧା ।

ପରେ ଅବଶ୍ୟ ବୁଝିଲି ଯେ, ମୁଁ କାହାରି ପ୍ରେମରେ ନ ପଡ଼ି ମଧ୍ୟ ସେ ଦିନ ଶାସ୍ତି ଭୋଗ କରିଛି ଆପଣା ଇଂରାଜୀ ଭାଷାଜ୍ଞାନରେ କିଛି କେବଳ ତ୍ରୁଟିବିଭ୍ରାଟ ଉପୁଜିଥିବା ହେତୁ । ଏମିତି ପରା ସଂସ୍କୃତ ବ୍ୟାକରଣର ଛାତ୍ର 'ବ୍ୟାଘ୍ର' ଶବ୍ଦକୁ ବିଶେଷ ରୂପେ ଆଘ୍ରାଣ କରେ ବୋଲି ଅର୍ଥ କରି ତାହାର ପରୀକ୍ଷା ସ୍ୱରୂପ ବାଘ ମୁହଁକୁ ଆସି ପରିଣାମ ଭୋଗ କରନ୍ତି ପ୍ରାଣ ବିସର୍ଜନ ଦେଇ ।



# କୁହୁ କୁହୁ କୁହୁ

ଦିନେ ଯେଉଁ ଘଟଣାକୁ ଜୀବନର ଏକ ଓଜନଦାର ଅଙ୍ଗ ବିଚାରୁଥିଲି—ଆଜି ପୁଣି ତାହା ଆଉ କାହାରି ନୁହେଁ, ମୋରି ନିଜ ବିଚାରରେ ବି ହାଲୁକା ହୋଇ ପଡ଼ିଲାଣି । ଏପରି କି ପ୍ରାୟ ହାସ୍ୟାସ୍ପଦ । ତହୁଁ କୌଣସି ବିଷୟରେ ଗୁରୁଲଘୁ ବିଚାର କେବଳ ବୟସ ବା ସମୟସାପେକ୍ଷ ବୋଲି ବୋଧ ହୋଇଥାଏ ମୋତେ ଆଜି ।

ମୋର ସେଇ 'Love is blind' ମଟୋ ଚିରାହେଲା ସିନା; କିନ୍ତୁ ସେଇ ବୋଧହୁଏ ଦାୟୀ ହେଲା ସେତିକିବେଳେ ମୋର କେତେ ସ୍ଥାନରେ ତନାଘନା ବିବାହ ପ୍ରସ୍ତାବକୁ ମଧ୍ୟ ଚାଲୁ କରିବାରେ । କାରଣ ଅବଶ୍ୟ ସୁସ୍ପଷ୍ଟ—ଏଇ ମଟୋରୁହିଁ ମୋର ଦୃଷ୍ଟିଶକ୍ତି ପୂରାପୂରି ହାନି ଘଟିବା ଆଶଙ୍କା । ତା'ଛଡ଼ା ମୋତେ ସନ୍ନ୍ୟାସ-ପଥରୁ ଆଣି କୁଳଧର୍ମ ରକ୍ଷା କରିବାକୁ ବାପା ତାଙ୍କର ପୈତୃକ କର୍ତ୍ତବ୍ୟ ସମାପନ ଲାଗି ତତ୍ପର ହୋଇ ପଡ଼ନ୍ତି ।

ମୁଁ ସନ୍ନ୍ୟାସ ଗ୍ରହଣ କରି ବିବାହକୁ ଏଡ଼ି ଦେବାପାଇଁ ଇଚ୍ଛା କରୁଥିଲାବେଳେ ବାପା, ବୋଉ ଯେପରି ଅବା ଟାଣି ଓଟାରି ମୋତେ ଆଣି ସଂସାର ଭିତରେ ପୂରାଇଲେ—ଏଇଭଳି ସଂସ୍କାର ଅଥବା କାରଣ ବଳରେ । ପୁଣି ହୁଏତ ମୋର ଦୁର୍ବଳତା ଓ ସଂଶୟ ମୋତେ ଅନ୍ୟ ସମସ୍ତ ଦିଗରୁ ଟାଣିଆଣି ସମ୍ପୂର୍ଣ୍ଣରୂପେ ପିତୃଭକ୍ତ ସନ୍ତାନ କରି ପକାଇଲା !

ସେଥିରେ କିନ୍ତୁ ମାତାପିତାଙ୍କର କିମ୍ବା ମୋର ଅବା କି ଯେ ଲାଭ ହେଲା, ତାହାର ହିସାବ କିତାବ କରିବା ଆଜି ତ ଆଉ ସମ୍ଭବପର ନୁହେଁ । ପୁଣି ସଂସାରତ୍ୟାଗୀ ହୋଇ ସନ୍ନ୍ୟାସ ଗ୍ରହଣ କରିଥିଲେ ? କାହାର କି ଅବା ଲାଭ ହୁଅନ୍ତା ? ହଁ, ଏ ପ୍ରଶ୍ନର ସତେ ଉତ୍ତର କାହିଁ, ସବୁ ମୌଳିକ ପ୍ରଶ୍ନ ଭଳି ?—ଆମର ଜନ୍ମ, ମୃତ୍ୟୁ ପୁଣି ଏଇ ସଂସାର-ସୃଷ୍ଟି—କାହିଁକି ? କାହିଁକି ? କାହିଁକି ?— ?

ହେରାଗୋହିରୀ ସାହି ପରେ ଆମେ ପୁଣି ଘର ବଦଳାଇ ଆସିଲୁଁ ସଦରଥାନା ଗଳିକୁ ସ୍ୱର୍ଗତ ମୁକ୍ତିଆର ଉପେନ୍ଦ୍ର କରଙ୍କର ପଡ଼ୋଶୀ ହୋଇ ।

ଆଗ ଯେମିତି ବାପାଙ୍କର କଡ଼ା ନଜରବନ୍ଦୀ ଭିତରେ ରହିଥିଲି, ଏବେ ଭାଇନା ଦିବ୍ୟସିଂହଙ୍କ ଓକିଲାତି ଆରମ୍ଭରେ ଗାଁରୁ ବୋଉ ଭାଉଜ, ନାନୀ ପୁଣି ଭାଗୁ (ଭଗବତୀ ପାଣିଗ୍ରାହୀ) ଆସିବାରୁ ମୁଁ ଟିକିଏ ଲଗାମ୍‌ଛଡ଼ା ହୋଇପଡ଼େଁ—ପରିବେଶଟାର ବିସ୍ତୃତି ବା ବ୍ୟାପକତା ହେତୁ ଆଉ ବାପାଙ୍କ ସାମ୍‌ନାରେ ଏକ ନ ରହି ଅନେକ ଆସି ପହଞ୍ଚିବାରୁ । ଭାଗୁ ମଧ ପହଞ୍ଚିଯାଏ ପଛେ ପଛେ ମୋର ଗୋଡ଼ାଇବା ପାଇଁ ଯେତେବେଳେ ଯୁଆଡ଼େ ଟିକିଏ ଘରୁ ଗୋଡ଼ କାଢ଼ି ପଦାକୁ ବାହାରିଲି । ସେତେବେଳେ ମୋର ମୁରବିପଣିଆ ଜାହିର କରିବାକୁ ଘରେ ସବୁ ବୟୋଜ୍ୟେଷ୍ଠଙ୍କ ଭିତରେ ସେଇଥାଏ ଏକମାତ୍ର କନିଷ୍ଠ । ବୋଉ ନାନୀଙ୍କଠାରୁ ଆକଟ ଶୁଣେ ତାକୁ ସାଥିରେ ସବୁବେଳେ ନେବାକୁ ।

ମୋର ଛାତ୍ର-ସଂଗଠନ ପୁଣି ସାହିତ୍ୟ ସଭାସମିତିକୁ ଏଡ଼େ ସାନ ପିଲାଟାକୁ ନେବାପାଇଁ ଭାରି ଅଡୁଆ ଲାଗେ ଓ ଲାଜମାଡ଼େ ମୋତେ । ବୋଉ, ନାନୀ ଖୁବ୍ ଆକଟ କରି କହନ୍ତି—ସେ କ'ଣ ଗନ୍ଧିଆମନ୍ଧିଆ କି କୋତରାମୋତରା, ହୋଇଛି କିରେ—କାହିଁକି ନବୁ ନି ତାକୁ ? ଭାଗୁ ପିଲାଦିନୁଁ ଭାରି ସଫା ସୁତୁରା ହେଲେବି ସେମାନଙ୍କୁ ମୋର ଅସୁବିଧା ବୁଝାଇବା ଅତି କଠିଣ । ଏଡ଼େ ସାନ ପିଲାକୁ ତ ମୋର କେହି ହେଲେ ସାଙ୍ଗ ସାହିତ୍ୟସଭାକୁ ଆଣନ୍ତି ନାହିଁ ! ତାକୁ ନେଲେ ମୋତେ ସମସ୍ତେ ହସିବେ ସିନା !

ନାନୀ ବୋଉ ଆକଟ କରନ୍ତି—''କ'ଣ କହିଲୁ ? ହସିବେ ? ଚାଲିଲୁ କିଏ ହସିବ ! କାହାର ଏଡ଼େ ବହପ ! ତା' ହସ ନିକାଲି ଦେବିନି ସାଙ୍ଗେ ସାଙ୍ଗେ !'' ଜଣେ ଭାଗୁ ସାଥିରେ ଆହୁରି ଦି'ଜଣ—ନାନୀ ଓ ବୋଉ ବାହାରିଲେଣି ଆମ ମିଟିଂକୁ ଯିବାକୁ ! ଅତଏବ—ଯଃ ପଳାୟତି, ସଜୀବତି ! ତା'ର କେତେକ ବର୍ଷପରେ କିନ୍ତୁ ଭାଗୁ ଯେଉଁସବୁ ସଭା କଲା, ସେସବୁ ସଭାକୁ ମୋତେ ସେ ଡାକିଲେ ସୁଦ୍ଧା ଯିବା ଆଗରୁ ମୋତେ ବିଚାର କରିବାକୁ ପଡ଼ିଲା, ଜେଲ ଓ ପୁଲିସ୍ ଭୟରେ ବୋଧହୁଏ !

ସେହି ସମୟକୁ ଆମ ସ୍କୁଲ ଯେଉଁଠି ଥିଲା, ସେଠାରୁ ଉଠି ଆସିଲାଣି ସଦର ଥାନା ପାଖ ପ୍ରକାଣ୍ଡ ନୂଆ ଘରକୁ । ହେଡ଼ମାଷ୍ଟର ଦାଶରଥିବାବୁଙ୍କ ପରେ ଆସିଲେଣି ଚନ୍ଦ୍ରମୋହନ ମହାରଣା । ଚନ୍ଦ୍ରମୋହନବାବୁଙ୍କ ସହିତ ଖୁବ୍ ନିକଟବର୍ତ୍ତୀ ହେବାର ସୌଭାଗ୍ୟ ମୋର ଘଟି ନାହିଁ; ମାତ୍ର ସାହିତ୍ୟ କ୍ଷେତ୍ରରେ ଓ ଚରିତ୍ରବଳରେ ଏହି କଠୋର ସମାଲୋଚକ ହେଡ଼ମାଷ୍ଟରଙ୍କ ବିଷୟରେ ଆଗରୁ ଆମେ ଶୁଣିଥାଉଁ ।

ତହୁଁ ଖୁବ୍ ସନ୍ତର୍ପଣରେ ତାଙ୍କ ସଙ୍ଗେ ଚଳିବାକୁ ହୁଏ । କବିବର ରାଧାନାଥ ରାୟଙ୍କର ଏହି ସମାଲୋଚକ ମୋହ ପକ୍ଷରେ ଭୟ ଓ ସଂଭ୍ରମର ଏକ ବିରାଟ ରହସ୍ୟ ହୋଇ ପଡ଼ିଥିଲେ—ତାଙ୍କୁ କେବେ ହସଖୁସିରେ କାହାରି ସହିତ କଥାଭାଷା ହେବାର ଦେଖିବା ସୁଯୋଗ ମୋର ଘଟି ନାହିଁ । ଛାତ୍ରମାନଙ୍କ ମଧରେ କୁହାକୁହି ହୁଅନ୍ତି ଯେ, ଚନ୍ଦ୍ରମୋହନବାବୁ ଯେମିତି କଡ଼ା, ସେମିତି ପାଠୁଆ ଲୋକ ।

ତାଙ୍କର ସାଧାରଣ କଥାବାର୍ତ୍ତାରେ ସୁଦ୍ଧା ସଂସ୍କୃତ ବ୍ୟାକରଣର ନିୟମଗୁଡ଼ିକ ସେ ପାଳନ କରିଥାନ୍ତି ବୋଲି ଶୁଣେଁ । ସେଥି ସଙ୍ଗେ ବାକ୍‌ସଂଯମ ତାଙ୍କର ଲକ୍ଷ୍ୟଣୀୟ—ଅଳ୍ପ କଥା କହୁଥିବାରୁ ତାହା ଓଜନଦାର ।

'ହରି' ନାମଧେୟ ତାଙ୍କର ଗୋଟିଏ ପରିଚାରକ ଥିଲା । ତାହାକୁ ଡାକିଲା ବେଳେ କୁଆଡ଼େ ସେ 'ହରେ' ବୋଲି ସୁଦୀର୍ଘ ଉଚ୍ଚାରଣ କରିଥାନ୍ତି । ଛାତ୍ରମାନଙ୍କ ମୁହଁରୁ ଏହି କଥା ପରିହାସ ଛଳରେ ଆଲୋଚିତ ହୁଏ । ଇଂରାଜୀ ଭାଷାରେ ମଧ୍ୟ ସେ ଥିଲେ ଖୁବ୍ ଧୁରନ୍ଧର ।

ମୁଁ ପଢୁଥାଏଁ ବୋଧହୁଏ ମାଟ୍ରିକ୍ୟୁଲେସନ୍ କ୍ଲାସ ଟେନ୍‌ରେ,—'ଚିଲ୍‌ଡ୍ରେନ୍'ସ୍ ଟ୍ରେଜେରୀ' କିମ୍ବା 'ଗୋଲଡ଼ନ୍ ଟ୍ରେଜେରୀ' ଇଂରାଜୀ କବିତା ସଂକଳନରୁ ଚନ୍ଦ୍ରମୋହନ ବାବୁ ଆମକୁ 'The Cuckoo' ବା 'କୋଇଲି' କବିତାଟି ପଢ଼ାଉଥାନ୍ତି ।

ପଢ଼ାଇବା ଆରମ୍ଭ କଲା ଆଗରୁ ସେ ପିଲାଙ୍କୁ ପଚାରିଲେ—"ତୁମେ ସବୁ କୋଇଲି ଦେଖିଛ ?" ଆମ କ୍ଲାସ୍‌କୁ ଏଇ ତାଙ୍କର ପ୍ରଥମ ଆଗମନ । ହେଡ୍‌ମାଷ୍ଟରମାନେ କ୍ବଚିତ୍ ଉପର କ୍ଲାସ୍‌ରେ ପଢ଼ାନ୍ତି । ଖୁବ୍ କଡ଼ା ହେଡ୍‌ମାଷ୍ଟର ବୋଲି ତ ଶୁଣିଥାଉଁ, ତହୁଁ ଅତି ସନ୍ତର୍ପଣରେ ଚୁପ୍‌ଚାପ୍ ବସି ରହିଥାଉଁ; ହେଡ୍‌ମାଷ୍ଟର ସ୍କୁଲକୁ ଆସିବାମାତ୍ରେ ଚାରିଆଡ଼େ ତୁନ୍‌ତାନ୍ । ଆଜି ତାଙ୍କର ଏଭଳି ପ୍ରଶ୍ନରେ କିଏ 'ହଁ' ପୁଣି କିଏ 'ନାହିଁ' କହେ । ତହୁଁ ସେ ପ୍ରଶ୍ନକଲେ, 'ଆଚ୍ଛା କୋଇଲିର ଶବ୍ଦ ଶୁଣିଛ ?' ସେ ପ୍ରଶ୍ନର ଉତ୍ତରରେ ପ୍ରାୟ ସବୁପିଲା ଏକ ସ୍ୱରରେ କହି ଉଠିଲେ 'ହଁ' ।

ତା'ପରେ ହେଡ୍‌ମାଷ୍ଟରଙ୍କ ନିର୍ଦ୍ଦେଶ—"ଆଚ୍ଛା, କୋଇଲି କିପରି ଶବ୍ଦକରେ, ତୁମ୍ଭେମାନେ କର ଦେଖି ।" ସବୁପିଲା ଏକ ସଙ୍ଗରେ କୁହୁକୁହୁ ଆରମ୍ଭ କରିଦେଲେ । କ୍ଲାସ୍ ତମାମ 'କୁହୁ' ନାଦରେ ଫାଟି ପଡ଼େ । ବୋଧହୁଏ—ଆମ ଭୟ ଭାଙ୍ଗିବାକୁ ସେ ଏଇ ଉପାୟ କରିଥିଲେ ।

କବିତାଟିର ପଢ଼ା ଆରମ୍ଭ ହୁଏ । କବିବର ରାଧାନାଥଙ୍କ 'ମହାଯାତ୍ରା' କାବ୍ୟର ସମାଲୋଚକ ଚନ୍ଦ୍ରମୋହନବାବୁ । ଯେଉଁ ସମାଲୋଚନା ଫଳରେ ସେ କାବ୍ୟଟି ଅସମ୍ପୂର୍ଣ୍ଣ ରହିଗଲା ବୋଲି ଶୁଣାଯାଏ । ପିଲାଙ୍କ ସାମ୍‌ନାରେ ଭୟ ଓ ସମ୍ଭ୍ରମର ପ୍ରତିମୂର୍ତ୍ତି ସେଇ ଚନ୍ଦ୍ରମୋହନ ଯେ ଛାତ୍ରମାନଙ୍କୁ ଏମିତି ଖୁସିରେ ଖେଳାଇ ପଢ଼ାଇପାରନ୍ତି, ପରେ ସେ କଥା ଆଲୋଚିତ ହୁଏ ଆମ ଭିତରେ ।

ଅତି ଆଗ୍ରହରେ ମନୋନିବେଶ କଲୁଁ ତାଙ୍କ ଅଧ୍ୟାପନାରେ । ପ୍ରଥମ ପଦରୁ ଆରମ୍ଭ କରି ଯେଉଁ ରୀତିରେ ସେ ପଢ଼ାଇଲେ—ଯେଉଁସବୁ ଉଦାହରଣ ଦେଇ ପ୍ରତିଶବ୍ଦର ବ୍ୟାଖ୍ୟା, ବ୍ୟବହାର ଇଂରାଜୀ ସାହିତ୍ୟରେ ଦର୍ଶାଇ ଯେତେ ପ୍ରମାଣ ଓ କୋଇଲିର ସ୍ଥାନ ଭାରତୀୟ କବିତାରେ ନିରୂପଣ କରିବାକୁ ଯାଇ ଯେଉଁ ବିସ୍ତୃତ ବିଶ୍ଳେଷଣ ସେ ଉତ୍‌ଥାପନ କଲେ—ଦିନ ପରେ ଦିନ, ଗୋଟିକ ପରେ ଆଉ ଗୋଟିଏ ଇଂରାଜୀକ୍ଲାସ ଚାଲିଲା । କିନ୍ତୁ Cuckoo କବିତା ବୁଝାଇବା ଶେଷ ହେଲାନାହିଁ ଚନ୍ଦ୍ରମୋହନବାବୁଙ୍କ ପକ୍ଷରେ । ଠିକ୍ ଯେମିତି କୋଇଲିର 'କୁହୁ' ଶେଷ ହୁଏ ନାହିଁ ଶୁଣିବା ଲୋକର ଜୀବନବ୍ୟାପୀ !

ଓଡ଼ିଆ ଶିକ୍ଷକ-ମାନଙ୍କ ଉତ୍ସାହ ଉଦ୍ଦୀପନାରେ ହିଁ ମୋହର ବାଲ୍ୟଜୀବନର ସାହିତ୍ୟ ସାଧନାକ୍ରମେ ବିକଶିତ ହୋଇଉଠେ । ସ୍ୱର୍ଗୀୟ ପଣ୍ଡିତ ନରସିଂହ ମିଶ୍ରଙ୍କର ଏହି ଲିଖିତ ପତ୍ରଖଣ୍ଡି ତାଙ୍କର ଅପରିଶୋଧ ସ୍ନେହର ପ୍ରମାଣ ବହନ କରିଛି । ଆମ ଘରେ ମୋର ପିଲାଦିନେ ବଡ଼ମାନେ ଡାକିଲାଭଳି ମୋତେ ସେ ସ୍ନେହରେ 'କାଳିଆ' ବୋଲି ସମ୍ବୋଧନ କରୁଥିଲେ—(କାଳିଆ, କୃଷ୍ଣ, ଯମୁନା ଓ ତା'ର ଜଳର ବର୍ଣ୍ଣ ଭିତରେ ସାମଞ୍ଜସ୍ୟ ଥିବା ହେତୁ

ପୁଣି ହୁଏତ ମୋ ଦେହର ରଙ୍ଗ ହେତୁ, ଯାହା ଠିକ୍ କଳା ନୁହେଁ ବୋଲି କେହି କେହି ସହୃଦୟ ବନ୍ଧୁ ମୋ ନାମର ଅଯଥାର୍ଥ୍ୟ ପ୍ରମାଣ କରିବାକୁ ଲୋଡ଼ିଥାନ୍ତି ।)

ବୀରନରସିଂହପୁର
ଜି.ପୁରୀ, ତା ୧୦.୧.୬୧

ଆୟୁଷ୍ମାନ୍ କାଳିଆ,

ଅନେକ ଦିନ ପୂର୍ବେ ପୁରୀରେ ହରନାରାୟଣ ସିଂହଙ୍କ ★ ସଭାପତିତ୍ୱରେ ଅନୁଷ୍ଠିତ ସାହିତ୍ୟ ସମ୍ମିଳନୀରେ ତୋ ସଙ୍ଗେ ଦେଖା ହୋଇଥିଲା । ପୁଣି ସେହି ପୁରୀରେ ରମେଶର ଝିଅ ବିଭାଘର ଦିନ ଦେଖା । ମୁଁ ଥରେ କଟକ ଯାଇ ତୋର ଘରେ ପହଞ୍ଚି ତତେ ଦେଖିବାକୁ ଚାହିବାରୁ ତୋର ଶରୀର ଅସୁସ୍ଥ ବୋଲି ତୋର ଝିଅ କହିଲା । ଏବେ ଅଳ୍ପ ଦିନ ତଳେ କଟକ ଯାଇ ତୋ ଘର ଭୁଲିଯାଇ ଫେରିଲି । ଆଉ ଥରେ କଟକ ଗଲେ ତୋ ଘରକୁ ଯିବି । ମୋତେ ସଙ୍ଗରେ ନେଇ Radio Station ଦେଖାଇ ଆଣିବୁ । ଆମ ଗାଁରେ ୫/୬ଟି ରେଡ଼ିଓ ଅଛି । ପଅରି ଦିନ ରେଡ଼ିଓରେ ତୋର 'ଦାଣ୍ଡ ମୂଳିଆ' ନାଟକଟି ଶୁଣିବାକୁ ପାଇଲି । ତା' ପୂର୍ବରୁ ଆଉ ଗୋଟିଏ ନାଟକ ଶୁଣିବାକୁ ପାଇଥିଲି । ଖବର କାଗଜରୁ ତୋର ସୁନାମ ଶୁଣିବାକୁ ପାଏଁ ଅନେକ ସମୟରେ । ଏଥିରେ ଛାତି କୁଣ୍ଢେମୋଟ ହୋଇଯାଏ । ତୋର 'ମାଟିର ମଣିଷ' ଓ 'ଲୁହାର ମଣିଷ' ପଛକୁ 'ସୁନାର ମଣିଷ' ଲେଖା ପଢ଼ିଲେ ବିଶେଷ ଆନନ୍ଦିତ ହେବି । ମୋ ଭାଗ୍ୟରେ ସେ ସୁଯୋଗ ଘଟିବ କି ନାହିଁ କେ ଜାଣେ ! ଆଶାକରେଁ, ଭଲ ଅଛୁ । କାଲି ପୁରୀ ଯାଇଥିଲି, ମୋର ଘନିଷ୍ଠ ସମ୍ପର୍କରେ ଥିବା କେତେକ ଛାତ୍ରଙ୍କ ସଙ୍ଗେ ସାକ୍ଷାତ୍ ହେବାରୁ ମୁଁ ଭାରି ଖୁସି ହେଲି ।

ଇତି
ସତତ ଶୁଭାନୁଧ୍ୟାୟୀ,
ପଣ୍ଡିତ ନରସିଂହ ମିଶ୍ର

ବାଲ୍ୟଶିକ୍ଷକଙ୍କଠାରୁ ମୋର ବାର୍ଦ୍ଧକ୍ୟରେ ସୁଦ୍ଧା ଏଭଳି ଅନାବିଳ ସ୍ନେହପତ୍ର ଲାଭକରିବାର ମୂଲ୍ୟାୟନ ଅସମ୍ଭବ । ମୋର ଅସୁସ୍ଥ ଅବସ୍ଥାରେ ସେ ଦ୍ୱାରସ୍ଥ ହୋଇ ଲେଉଟି ଯାଇଥିଲେ ମଧ୍ୟ ସୁସ୍ଥ ହେବା ପରେ ତାଙ୍କୁ ଯାଇ ସାକ୍ଷାତ୍ କରିବା ସୌଭାଗ୍ୟ ମୋର ଯୁଟିଲା ନାହିଁ । ଏଇଭଳି ବହୁ କ୍ଷେତ୍ରରେ ମୋର ଅକ୍ଷମଣୀୟ ତ୍ରୁଟିରାଶି ଘେନି ମୁଁ ହତଭାଗ୍ୟ ରହିଗଲି । ସେ ତ୍ରୁଟିର ହିସାବ ପିଲାଦିନୁଁ ଆଜିସୁଦ୍ଧା ନିକାଶ କରିବା ଅସମ୍ଭବ । ସେ ଋଣ ଚିର ଅପରିଶୋଧ୍ୟ । ମାନସ-ନୀଡ଼ର ରୁଦ୍ଧ ଦ୍ୱାରଦେଶରେ ମୋର କେତେ ଯେ ଏମିତି ଡାକରା ଆସେ ! କେତେ ଅନାବିଳ ସ୍ନେହର ସଂକେତ ! ହତଭାଗ୍ୟ ମୁଁ—ତଥାପି ମୋ ନିଦ ଭାଙ୍ଗେ ନାହିଁ—ଫିଟେ ନାହିଁ ମୋର ଦୁଆର କାହିଁ ତ ଭାସିଯିବାକୁ ସେଇ ସ୍ନେହର ଜୁଆର ଭିତରେ !

---

★ ଡକ୍ଟର ହରନାରାୟଣ ସିଂହ—ସୁକବି, ସୁଲେଖକ ଓ ନାଗପୁର ବିଶ୍ୱବିଦ୍ୟାଳୟର ଅଧ୍ୟାପକ । ସ୍ୱର୍ଗତ ବାଳକୃଷ୍ଣ କରଙ୍କ ଅଧ୍ୟକ୍ଷତାରେ ଉତ୍କଳ ସାହିତ୍ୟ ସମାଜର ନିଷ୍କ୍ରିୟତା ବିରୋଧରେ ପ୍ରତିବାଦ ଉଠାଇଥାଏ ନବଗଠିତ ଓଡ଼ିଆ ସାହିତ୍ୟ ସମ୍ମେଳନ । ତାହାରି ପ୍ରଥମ ସାଧାରଣ ଅଧିବେଶନ ଅନୁଷ୍ଠିତ ହୁଏ ପୁରୀଠାରେ ବୋଧହୁଏ ୧୯୪୫-୪୬ରେ ।

●

# ନିର୍ମଳ-ବନ୍ଧୁତା

ଜଣେ ସହାଧ୍ୟାୟୀ ବନ୍ଧୁଙ୍କୁ ପାଇଥିଲି ପୁରୀ ଜିଲ୍ଲା ସ୍କୁଲରେ । ନାମ ତାଙ୍କର ନିର୍ମଳଚନ୍ଦ୍ର ଘୋଷ । ଘର କୃଷ୍ଣନଗର । ତାଙ୍କ ବାପା ଆସିଥାନ୍ତି ପୁରୀର ସବ୍‌ଡିଭିଜନାଲ ଅଫିସର ହୋଇ । ନିର୍ମଳର ମୋହପ୍ରତି ଅହେତୁକ ବନ୍ଧୁତା ସ୍ମରଣୀୟ ହୋଇ ରହିଛି । ସେ ବନ୍ଧୁତାରେ କେତେ ଯେ ମନୋମାଳିନ୍ୟ ! ପରେ ପୁଣି କଥାବାର୍ତ୍ତା ! ମୁହଁ ଚାହାଁଚାହିଁ ଏକାବେଳେ ବନ୍ଦ । ଗଡ଼ିଚାଲେ ଏମିତି ଦିନ ପରେ ଦିନ ଘର ବାହାର ଚତୁର୍ଦ୍ଦିଗ କେବଳ ବିରାଟ ଶୂନ୍ୟତାରେ ଭରିଦେଇ ନିର୍ମଳ ଚନ୍ଦ୍ର ଅବା ଥିଲେ ମୋ ଅନ୍ଧାରର ପ୍ରକୃତ ନିର୍ମଳଚନ୍ଦ୍ର ।

ତା'ପରେ କେଉଁ ସୂତ୍ରରୁ କାହିଁକି କିପରି ପୁଣି ପତ୍ରବିନିମୟ ଆରମ୍ଭ ହୁଏ ! କେତେ ମାନ ଅଭିମାନ ରାଗରୋଷ ପରେ । ପତ୍ରଗୁଡ଼ିକ ଅବଶ୍ୟ ଇଂରାଜୀରେ ଲେଖା । କାରଣ ନିର୍ମଳ ଜାଣେନି ଓଡ଼ିଆ । ପୁଣି ବଙ୍ଗଳାରେ ମୁଁ ଅନଭିଜ୍ଞ । ଆଜି ଯାହା ଅତି ସାମାନ୍ୟ ହାସ୍ୟାସ୍ପଦ ମନେ ହୁଏ, ସେତେବେଳେ ତାହାହିଁ ଥିଲା ଅସାମାନ୍ୟ; କାରଣ ଓଡ଼ିଆ ଭାଷା ଓ ସାହିତ୍ୟକୁ କେହି ତୁଚ୍ଛ ତାଚ୍ଛଲ୍ୟ କରିବା ମୋ ପକ୍ଷରେ ଥିଲା ଅସହ୍ୟ । ପୁରୀ ରାମଚଣ୍ଡୀ ସାହିକୁ ଆସିବାଦିନୁଁ ମୁଁ ପଡ଼ୋଶୀ ବଙ୍ଗୀୟ ବନ୍ଧୁମାନଙ୍କ ଭିତରେ ଏଇଭଳି ଓଡ଼ିଆଙ୍କ ପ୍ରତି ତୁଚ୍ଛ ତାଚ୍ଛଲ୍ୟ ଲକ୍ଷ୍ୟ କରିଥିଲି । ସେଥିଲାଗି ଯେ ଓଡ଼ିଆଙ୍କର ବହୁ କ୍ଷେତ୍ରରେ ଅକ୍ଷମତା ଓ ଦୁର୍ବଳତା ପୁଣି ଅଜ୍ଞତା ଥିଲା ମୁଖ୍ୟତଃ ଦାୟୀ, ଅନେକ ସମୟରେ ଅବଶ୍ୟ ସେଇ ସତ୍ୟଟା ମୋର ପାସୋର ହୋଇଯାଏ ।

ସତ୍ୟବାଦୀ ବନବିଦ୍ୟାଳୟର ଆଦର୍ଶ ସେତେବେଳେ ପ୍ରବଳ ପ୍ରଭାବ ବିସ୍ତାର କରେ ସମଗ୍ର ଓଡ଼ିଶାବ୍ୟାପୀ । ଭାରତୀୟ ସଂସ୍କୃତି ଉପରେ ପ୍ରତିଷ୍ଠିତ ଶିକ୍ଷାଦାନ-ପ୍ରଣାଳୀ ଓ ଋଷି ଆଶ୍ରମର ବୈଦିକ ବିଚାରଧାରା ସଙ୍ଗେ ଜାତୀୟ ପ୍ରେରଣା ଆଧାରିତ ଗୋଟିଏ ଚମତ୍କାର ସ୍ମରଣିକା ପ୍ରକାଶ ପାଏ । ବଙ୍ଗଳାର ତଥା ଅନ୍ୟ ଅଞ୍ଚଳର ବହୁ ସ୍ୱନାମଧନ୍ୟ ଶିକ୍ଷାବିତ୍ ସତ୍ୟବାଦୀ ସ୍କୁଲର ଆଦର୍ଶ ଓ ଶିକ୍ଷାଦାନ ପ୍ରଣାଳୀ ସମ୍ପର୍କରେ ଉଚ୍ଛ୍ୱସିତ ପ୍ରଶଂସା କରି ଲେଖିଥାନ୍ତି ସେଥିରେ ।

ନିର୍ମଳ ଥିଲା, ଓଡ଼ିଶାର ଜଣେ କଟୁ ସମାଲୋଚକ ପୁଣି ମତେ ଉତ୍ୟକ୍ତ କରିବାକୁ ଏହା ଥିଲା ତା'ର ସହଜ ଅସ୍ତ୍ର । ତହୁଁ ସବୁ କ୍ଷେତ୍ରରେ ଓଡ଼ିଆମାନଙ୍କର ନ୍ୟୂନତା ପ୍ରତିପାଦନ କରି ବଙ୍ଗାଳୀମାନଙ୍କ ମହତ୍ତ୍ୱର ପ୍ରଭାବହିଁ ତାଙ୍କ ଉପରେ ପଡ଼ିଥିବା କଥା ସେ ଗୋଟି ଗୋଟି କରି ପ୍ରମାଣ ବାଢ଼ି ଦେଖାଏ ! ଓଡ଼ିଆମାନଙ୍କର ଆଚାରବିଚାର ରୀତିନୀତିକୁ ନିନ୍ଦା ଓ ସମାଲୋଚନା କରି ମୋତେ ଜବରଦସ୍ତି ଚିଡ଼ାଇବାଟା ଯେମିତି ଥିଲା ତା'ର ଏକ ଉପଭୋଗ୍ୟ ବିଳାସ । ବଙ୍ଗଳା ସହିତ ଓଡ଼ିଶାର ଏହି ପ୍ରତିକୂଳ ତୁଳନା ମୋ ପକ୍ଷରେ ଅନେକ ସମୟରେ ଅସହ୍ୟ ହୋଇପଡ଼େ ।

ମୁଁ ସତ୍ୟବାଦୀ ସ୍କୁଲର ସେହି ପ୍ରଶଂସାମୁଖର ସ୍ମରଣିକାଟି ଆଣି ନିର୍ମଳକୁ ଦେଖାଇଲି । ତାକୁ ମଧ ସେ ଉପହାସର ସାମଗ୍ରୀ କରି କହିଲା—"ଯେଉଁମାନେ ପ୍ରଶଂସା କରିଛନ୍ତି ସେମାନେ ନିଶ୍ଚୟ ଆହୁରି ବଡ଼ ନୁହନ୍ତି କି ? କାରଣ ତାଙ୍କରି ସାର୍ଟିଫିକେଟ୍‌କୁ ତୁ ପ୍ରମାଣ ରୂପେ ବାଢୁଛୁ ।" ଉତ୍ୟକ୍ତ ହୋଇ କହେଁ, "ବଙ୍ଗାଳୀମାନେ ତେବେ ଏତେ ସଂଖ୍ୟାରେ ସମୁଦ୍ର ବାଲି-ପନ୍ତାରେ ଆମର ଆଶ୍ରୟ ନିଅନ୍ତି କାହିଁକି ?" "ଓଡ଼ିଆମାନଙ୍କୁ ଭଦ୍ରତା ଓ ସଭ୍ୟତା ଶିଖାଇବା ପାଇଁ"—ହସି ହସି ମୋତେ ଚିଡ଼ାଏ ସେ ।

ହଁ, ଠିକ୍ ଏହି ସମୟରେ ମୋର ମାନସିକ ପରିସ୍ଥିତିରେ ବହି ଚାଲିଥାଏ ଏକ ତୁମୂଳ ଝଡ଼—ଆଜି ତାହା କାରଣ ଶୂନ୍ୟ ନିରୁଦ୍ଦେଶ୍ୟ ପରି ବୋଧହୁଏ । ଆଉ ସେ ଝଡ଼ର ହେତୁ ଓ ଆଭିମୁଖ୍ୟ ଯାହା, ତାହାକୁ ବୈରାଗ୍ୟ, ଆଧ୍ୟାତ୍ମିକ କିମ୍ୱା କଳ୍ପନାବିଳାସ ଅବା ପୌଗଣ୍ଡର ଚାପଲ୍ୟ—ଏବେ ଯାହା କିଛି କୁହାଯାଇପାରେ; ତଥାପି ଏବେ ବି କ'ଣ ସେ ଅବସ୍ଥାରୁ ମୁଁ ପୂରାପୂରି ମୁକ୍ତ ହୋଇପାରିଛି କି ? ଏଇ ପ୍ରଶ୍ନର ଉତ୍ତର ମଧ ଦମ୍ଭୋକ୍ତି ସହିତ ପ୍ରକାଶ କରିବାକୁ ତ ସାହସ ପାଉ ନାହିଁ ।—ଆଜି ଏଇ ସତୁରି ବର୍ଷ ବୟସ ପାର ହୋଇ ସୁଦ୍ଧା !

ପରମହଂସ ନିଗମାନନ୍ଦ ସରସ୍ୱତୀଙ୍କର ରଚନାବଳୀ ସହିତ ଅନ୍ୟାନ୍ୟ ଧର୍ମଗ୍ରନ୍ଥ ପଢ଼ି ଶୁଣି ବାପା ତାଙ୍କ ବନ୍ଧୁମାନଙ୍କ ସହିତ 'ଅମର କୁମର' ବହି ପ୍ରଭୃତି ସମେତ ସାଧୁ, ସନ୍ଥ ଯୋଗୀମାନଙ୍କ ବିଷୟରେ ରୋଜ ଆଲୋଚନା କରୁଥିବା ଶୁଣି ହୁଏତ ସମୁଦାୟ ବିଶ୍ୱସୃଷ୍ଟି ମିଥ୍ୟାବୋଲି ମୋ ମନରେ ଏକ ସର୍ବଗ୍ରାସୀ ସନ୍ଦେହ ଜନ୍ମିଥାଏ । ଆଉ ସେହି ସନ୍ଦେହଟା ପରିଣତ ହୁଏ ଦୃଢ଼ ବିଶ୍ୱାସରେ ।

ସବୁ ମିଥ୍ୟା, ସବୁ ସପ୍ନ ! ମୋର ଜାଗରଣକୁ ମଧ ଏକ ସର୍ବଗ୍ରାସୀ ସ୍ୱପ୍ନ ରୂପେ ଯେପରି ଅବା ସାକ୍ଷାତ୍ ଅନୁଭବ କରେଁ ମୁଁ । ଯେତେବେଳେ ଯାହା ସହିତ ଦେଖାହୁଏ, ଯେଉଁଠାକୁ ଯାଏଁ, ଯାହା କରେଁ ବା କହେଁ, ଶୁଣେ କିମ୍ୱା ଦେଖେଁ ସବୁ ଯେପରି ସ୍ୱପ୍ନ, ନିରାଟ ସ୍ୱପ୍ନ, ଆଉ କଳ୍ପନା ମାତ୍ର । କିଛି ସଚ୍ଚା ନୁହେଁ, ସବୁ କେବଳ କଚ୍ଚା । କେଉଁଠି ହେଲେ ପାଦ ଥୋଇବାକୁ ଥାନ ନାହିଁ, ସବୁ ଖସଡ଼ା ଏ ପୃଥିବୀସାରା । ବାପାଙ୍କର ଦୃଢ଼ ଈଶ୍ୱର-ବିଶ୍ୱାସକୁ—ଦୁନିଆସାରା ସବୁଆଡୁ ଗୋଡ଼ ଖସି ଖସି ଶେଷରେ 'ତତ୍ ତ୍ୱମ୍ ଅସି' ବୋଲି ଦ୍ରଷ୍ଟା କହିଲାଭଳି—ସବୁ ଅସ୍ଥିରତା, କ୍ଷଣିକତାକୁ ପାର ହୋଇ 'ତୁମେ ଅତଏବ ଅଛ' କହିବାକୁ ଇଚ୍ଛା ହୁଏ । ତେବେ ସେ ବାଟରେ ମୁଁ କେତେ ଦୂର ଯାଇଛି କି ?

କିଛି ସତ ନୁହେଁ—ସବୁ ଇନ୍ଦ୍ରଜାଲ, ଭେଳିକି ମାତ୍ର–ପିଲାଦିନେ ମୋର ମ୍ୟାଜିକ୍ ଖେଳଭଳି । ଏହି ସ୍ୱପ୍ନ ଭିତରେ ହିଁ ମୁଁ ଯେ କେବଳ ଅଣ୍ଡାଳି ହୋଇ ମିଛକୁ ସତ, କଳ୍ପନାକୁ ବାସ୍ତବ ମଣି ଭ୍ରମ କରୁଛି ! ପୁଣି ମୋର ସକଳ କାର୍ଯ୍ୟକୁ ଗୋଟାଏ ବିଶ୍ୱମୟ ସ୍ୱପ୍ନ ଯେ ଚାଳନା କରୁଛି ପ୍ରତି ମୁହୂର୍ତ୍ତରେ–ଏଇ ଭଳି ଚିନ୍ତା ମୋତେ ଗ୍ରାସ କରେ । ଯାହା ଦେଖୁଛି, ସବୁ ମିଛ–ଯାହା ଶୁଣୁଛି, ସବୁ ଭୁଲ୍ ! ସେତେବେଳେ ମୁଁ ମୋର ଦିନଲିପି ମଧ ଲେଖିରଖେଁ । ତାହାର ଅସଲ ଉଦ୍ଦେଶ୍ୟ—ଏହି ସ୍ୱପ୍ନରୁ ଉଦ୍ଧାର ପାଇ ଜାଗ୍ରତ ଅବସ୍ଥାକୁ ଆସିବାର ପ୍ରୟାସ । ତଥାପି ସବୁ ଜାଗ୍ରତ ଅବସ୍ଥା ହିଁ ସେହି ସ୍ୱପ୍ନ ଭିତରେ ଲୀନ ହୋଇଯାଏ । କେଉଁ ଅଥଳ-ଅକୂଳରେ ! ସେତିକିବେଳେ ନିର୍ମଳର ବନ୍ଧୁତା ହିଁ ଥିଲା ଯେମିତି ମୋର ଏକମାତ୍ର କୂଳ ।

ଘରଦ୍ୱାର, ବାପମାଆ, ଭାଇଭଉଣୀ, ବନ୍ଧୁସୋଦର—ପୁରୀର ସମୁଦ୍ର ଆଉ ମନ୍ଦିର—ସମସ୍ତ ସେଇ ସ୍ୱପ୍ନ ଭିତରେ ଏକାକାର ହୋଇ ପଡ଼ନ୍ତି । ଏହା ଭିତରେ ସତ୍ୟ ବୋଲି ତ କିଛି ନାହିଁ । ଆଖି ବୁଜି ନିଦରେ ଶୋଇଲେ ଯେପରି ସ୍ୱପ୍ନ—ଆଖି ଫିଟାଇ ଯାହାକୁ ଚାହେଁ, ପୁଣି କାନରେ ଯାହା ବା ଶୁଣେ–ସେସବୁ ମଧ୍ୟ ସେହିପରି କେବଳ ଇନ୍ଦ୍ରଜାଲରେ ଛନ୍ଦା । ଏକ ମହାସ୍ୱପ୍ନରେ ଲୀନ ହୋଇଯାନ୍ତି ଯେମିତି ! କିଏ ସତ, କିଏ ମିଛ, କିଏ କଳ୍ପନା, କିଏ ବାସ୍ତବ—କୌଣସି ପ୍ରଭେଦ ମୁଁ କାହାରି ଭିତରେ ଅନୁଭବ କରିପାରେଁ ନାହିଁ । ଏକମାତ୍ର ବାସ୍ତବ ହୋଇଉଠେ ନିର୍ମଳ ଆଉ ତା'ର ଅଯାଚିତ ବନ୍ଧୁତା ।

ପରେ ଅବଶ୍ୟ ବୈଜ୍ଞାନିକ ଫ୍ରଏଡ଼୍‌ଙ୍କର ସ୍ୱପ୍ନର ବିଶ୍ଳେଷଣ ପଢ଼ିଲି; କିନ୍ତୁ ସେଥିରେ ଆଦୌ ମନବୋଧ ହେଲା ନାହିଁ ମୋର । ଯେଉଁ ସ୍ୱପ୍ନ ବଳରେ ମାର୍କଣ୍ଡେୟ ମହର୍ଷି ବିଶ୍ୱସୃଷ୍ଟିର ମହାପ୍ରଳୟ ଦର୍ଶନ କରିଥିଲେ—ମୁହୂର୍ତ୍ତକ ମଧ୍ୟରେ–ଯୁଗ ଯୁଗର କର୍ମପ୍ରବାହ ପୁଣି ଅଣୁ ଭିତରେ ବିଶ୍ୱ ବ୍ରହ୍ମାଣ୍ଡର ନିର୍ମାଣ ଛାୟା—ଏ ସମସ୍ତ ଯେ ସେହି ସ୍ୱପ୍ନଦ୍ୱାରା ସମ୍ଭବପର–ତାହା ମୁଁ ଅଙ୍ଗେ ଅଙ୍ଗେ ଅନୁଭବ କରେଁ । ଅନୁଭବ କରେଁ, ଜନ୍ମମୃତ୍ୟୁର ବ୍ୟବଧାନ କିଛି ନୁହେଁ । ଦୁଇଟା ଭିତରେ ଫାଁକ୍ ନାହିଁ—ସେ କେବଳ ଗୋଟାଏ—ଆଲୁଅ-ଅନ୍ଧାର ଭଳି । ତାକୁ ଖାଲି ଦେଖିବାର ଭଙ୍ଗିରେ ଯାହା ବା ଫରକ ।

ପୁରୀରେ ଯେତେ ନୂଆ ନୂଆ ବନ୍ଧୁତାର ସୂତ୍ରପାତ ହୁଏ, ତହୁଁ ପଛକୁ ଛାଡ଼ିଥିବା ପଲ୍ଲୀ-ପରିବେଶ ପାଇଁ ଅନ୍ତର ଭିତରେ ଚେଇଁଉଠେ କେତେ ଆବେଗମୟ ସ୍ମୃତି । ସମୁଦ୍ର କୂଳରେ ଦେଶ ଦେଶାନ୍ତର କେତେ ରଙ୍ଗଢ଼ଙ୍ଗ ବେଶଭୂଷାର ମଣିଷ । ପୁଣି ପ୍ରତିଦିନ ରାମଚଣ୍ଡୀ ସାହି ଘରଆଗରେ ରେଲ୍ ଷ୍ଟେସନରୁ କେତେ ଭାଷାଭାଷୀ ନାରୀପୁରୁଷ, ଶିଶୁଯୁବାଙ୍କର ଯା'ଆସ,–ଏଇ ମଣିଷ-ସମୁଦ୍ର ଭିତରେ ଯେମିତି ଅବା ମୁଁ ବୁଡ଼ିଯାଇ ଅଣନିଃଶ୍ୱାସୀ ହୋଇପଡ଼େଁ । ପାଏ ନାହିଁ କାହିଁ ଥଳକୂଳ । ଅଣ୍ଡାଳି ହୁଏଁ, କେଉଁଠି ଯେମିତି ପାଦ ଦି'ଟାକୁ ଥୟକରି ଆପଣାକୁ ଟିକିଏ ସମ୍ଭାଳି ନେବାପାଇଁ । ସାହାଭରସା ମିଳେ ନାହିଁ ତିଳେ ଦୁନିଆଁ ଭିତରେ ମୋତେ !

ଏକ ନିରାଟ ନିରବଚ୍ଛିନ୍ନ ପଲ୍ଲୀପରିବେଶର କର୍ମ ପ୍ରବାହରୁ ଆସି ଏଇ ବୈଚିତ୍ର୍ୟ ଭିତରେ ଆପଣାକୁ ଉପଲବ୍ଧି କରିବାର ପ୍ରୟାସ ମୋର ଯେମିତି ଜାଗିଉଠେ । ଜାଗିଉଠେ ପୁଣି ନିଜକୁ ଏଇ ବିଚିତ୍ର ବିଶ୍ୱସାଥିରେ ଏକାକାର କରି ମିଶାଇ ଦେବାର ଏକ ଆବେଗ । ସେତିକିବେଳେ ନିର୍ମଳର ଅଯାଚିତ ବନ୍ଧୁତା ମୋତେ ଫେରାଇ ଆଣେ ପୁଣି ଯେମିତି ବାସ୍ତବତା ଆଡ଼କୁ । ଦିନେ ଦେଖା ନ ହେଲେ କୋଟି ଯୁଗ ଭଳି ଲାଗେ ।

ପନ୍ଦର କିମ୍ବା ଷୋହଳ ବର୍ଷ ବୟସରେ ହିଁ ସ୍କୁଲର ସାହିତ୍ୟ-ଶିକ୍ଷକମାନଙ୍କର ଦୃଷ୍ଟି ମୁଁ ଆକର୍ଷଣ କରିପାରିଥିଲି ଲେଖକ ଭାବରେ । ସେମାନଙ୍କ ମଧ୍ୟରୁ ପଣ୍ଡିତ ଜଗନ୍ନାଥ ରଥ କାବ୍ୟତୀର୍ଥ ମୋତେ ବୋଧହୁଏ ସର୍ବପ୍ରଥମେ କ୍ଲାସରେ ପରିଚୟ କରାଇଦେଲେ ଯେ, ରଚନାକ୍ଷେତ୍ରରେ ମୁଁ ବିଶେଷତ୍ୱ ପ୍ରତିଷ୍ଠା କରିପାରିଛି । ରଚନାର ବିଷୟବସ୍ତୁ ଥିଲା, ଗାଈ । ଗାଈର ଆପାଦମସ୍ତକ ବର୍ଣ୍ଣନା କରି ଗୋଦୁଗ୍ଧଠାରୁ ଗୋମୟସମେତ ମଣିଷର ଶୈଶବରୁ ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ଗୋରୁର ପ୍ରତ୍ୟେକ ଅଙ୍ଗର ଉପଯୋଗିତା ସମ୍ପର୍କରେ ପ୍ରବନ୍ଧଟିରେ ମୋର ଆଲୋଚନା କରିଥାଏଁ । ଆହୁରି ନିଶ୍ଚୟ ଆଲୋଚନା କରିଥାଏଁ ଗାଈର ପ୍ରୟୋଜନୀୟତାର ଗୁରୁତ୍ୱକୁ ମନୁଷ୍ୟ ପୁଣି ସକଳ ଜୀବଜନ୍ତୁଙ୍କ ପକ୍ଷରେ ସେମାନଙ୍କର ଜନ୍ମାବଧି ।

ଯେ କୌଣସି ଜୀବ ଜନ୍ମ ପରେ ମାତୃହୀନ ହେଲେ ଗୋଦୁଗ୍ଧ ପାନକରି ସେ ପ୍ରାଣ ଧାରଣ କରିପାରେ, ଏହା ହିଁ ଥିଲା ବୋଧହୁଏ ମୋର ପ୍ରଧାନ ପ୍ରତିପାଦ୍ୟ ବିଷୟ । ଆଉ ସେଇଥିପାଇଁ ପଶୁ ହେଲେ ସୁଦ୍ଧା ସେ ଗୋମାତା ରୂପେ ପୂଜ୍ୟ ।

ରାଜନୀତିର ପ୍ରଭାବ ସେତେବେଳେ ଦେଶରେ ତୀବ୍ର ଭାବରେ ଅନୁଭୂତ ହୋଇ ନଥାଏ । ହିନ୍ଦୁ ମହାସଭା କିମ୍ବା ଜନସଂଘ ପ୍ରଭୃତି ରାଜନୀତିକ ଦଳମାନଙ୍କର ଉଦ୍ଭବ ରହିଥାଏ ଅନେକ ଦୂରରେ; ନଚେତ୍ ପଣ୍ଡିତ ମହାଶୟଙ୍କ ସୁପାରିସରେ ସେହି ଦିନୁ ମୋର ଭାରତୀୟ ରାଜନୀତିରେ ପ୍ରତିଷ୍ଠା ବଢ଼ିଯାଇଥାନ୍ତା ହୁଏତ !

ପରିଣତ ବୟସରେ ଏବେ ସେହି ଗାଈର ଗୋଟିଏ ଚିତ୍ର ଦେଖିଲି ଲଣ୍ଡନରୁ ପ୍ରକାଶିତ ସୁବିଖ୍ୟାତ ଟାଇମ୍‌ସ ପତ୍ରିକାର ଏକ 'ଲିଟେରାରି ସପ୍ଲିମେଣ୍ଟ' ବା (ସାହିତ୍ୟ କ୍ରୋଡ଼ପତ୍ର) ସଂଖ୍ୟାରେ । ବିସ୍ମିତ ହେଲି, ତାହାର ପ୍ରଥମ ପୃଷ୍ଠାରେ ଗାଈର ଗୋଟିଏ ରେଖାଚିତ୍ର ଦେଖି— ପୁଣି ତା'ର ଲାଙ୍ଗୁଡ଼ଠାରୁ ଆରମ୍ଭ କରି ମୁହଁ ଥୋମଣି ପର୍ଯ୍ୟନ୍ତ ପ୍ରତି ଅଙ୍ଗରେ ଗୋଟିଏ ଗୋଟିଏ ରେଖାଚିତ୍ର ରହିଛି । ପ୍ରତ୍ୟେକ ଚିତ୍ର ଉପରେ ଜଣେ ଜଣେ ଦେବତାଙ୍କର ନାମ ଅଙ୍କିତ । ଦେବତାମାନେ ହେଲେ ପ୍ରାଚୀନତମ ସେଇ ଚୀନ୍‌ଦେଶର, ଯେଉଁ ଚୀନବାସୀଙ୍କୁ ଆଜି ସର୍ବଭକ୍ଷ ଆମିଷାଶୀ ବୋଲି କୁହାଯାଏ । ପୁଣି କୁହାଯାଏ ମାର୍କସ୍‌ବାଦୀ ନିରୀଶ୍ୱର ବୋଲି ତାଙ୍କର ସେଇ ଚୀନ୍‌ବାସୀଙ୍କ ଦାବି ଅନୁଯାୟୀ ।



# ଲାଜ ରାଖୋ ଗିରିଧାରି !

ପନ୍ଦର ବର୍ଷ ବୟସରେ ରଚିତ ମୋର କବିତାର ନମୁନା ଆଜି ମଧ ଏକ ଟିପାଖାତାରେ ବିଦ୍ୟମାନ । ସେହି ବୟସରୁ ମନରେ ଯେଉଁ ଅହେତୁକ ଅଶାନ୍ତି ବା ଅସ୍ୱସ୍ତିର ଆଲୋଡ଼ନ ମୁଁ ଅନୁଭବ କରେଁ, ଆଜି ସୁଦ୍ଧା ସେହି ଅବସ୍ଥାର ସ୍ମୃତି ଜାଗରୂକ ହୁଏ । ସବୁଠାରୁ ପୁରୁଣା ଯେଉଁ ଟିପାଖାତାଟି ଏବେ ମୋ ସାମନାରେ ବିଦ୍ୟମାନ, ସେଥିରେ ବ୍ୟବହାର କରାଯାଇଛି ତିନୋଟି ରଙ୍ଗର ସ୍ୟାହି—ବାଇଗଣି, କଳା ଓ ଈଷତ୍-ନୀଳ । କବିତା, ଗଦ୍ୟ, ଗଳ୍ପ, ପ୍ରବନ୍ଧ, ରମ୍ୟରଚନା ଆଦି ସବୁ ପ୍ରକାର ଲେଖାର ପ୍ରମାଣ ଏହି ଟିପା ଖାତା । ପୁଣି ମୋର ଦିନଲିପି ସୁଦ୍ଧା— !

ସେଥିଲାଗି ଆଜି ମୁଁ ନିଜକୁ ନିଜେ ଅଭିନନ୍ଦନ କରୁଛି—ଯେହେତୁ ଆଉ କାହାରି କରିବା ସମ୍ଭାବନା ନାହିଁ ଏକମାତ୍ର ହାସ୍ୟରସିକ ବ୍ୟତିରେକେ । ପନ୍ଦରବର୍ଷ ବୟସରେ ଯେଉଁ ଅସ୍ୱସ୍ତିର ଆଲୋଡ଼ନ ମୁଁ ଅନୁଭବ କରିଥିଲି, ତାହା ସୁଦ୍ଧା ଲିପିବଦ୍ଧ ରହିଛି ଗୋଟିଏ କବିତାରେ । କବିତାର ନାମ ହେଲା 'ଅଶାନ୍ତି'—ରଚନା କାଳ–୨୯/୨/୧୯୧୬— ରାତ୍ର–ସ୍ଥାନ—ପୁରୀ ।

କାହିଁପାଇଁ ମନ ଆଜି ଦୁଃଖେ କାତର
ସର୍ବ ତୁଚ୍ଛ ଜ୍ଞାନ କିପାଁ ହୁଏ ମୋହର ।

ସେତେବେଳର ଦୁଃଖ—ବୈରାଗ୍ୟରେ ମ୍ରିୟମାଣ ହେବା ଆଜି ହାସ୍ୟୋଦ୍ଦୀପକ । ଭାଷା ମଧ୍ୟ ତତୋଽଧିକ । ରଚନାଟିକୁ ବାଲ୍ୟ-ଚାପଲ୍ୟର ଏକ ସୁସ୍ପଷ୍ଟ ନିଦର୍ଶନ ରୂପେ କିନ୍ତୁ ଗ୍ରହଣ କରାଯାଇପାରେ ଆଜି । ଏଥିରୁ ଯେ କେହି ବାଳକ ଯେ ଭବିଷ୍ୟତରେ ଲେଖକ, ସାହିତ୍ୟିକ ପୁଣି କବି ମଧ୍ୟ ବୋଲାଇପାରେ, ସେଇ ପ୍ରେରଣାର ଜୀବନ୍ତ ଦୃଷ୍ଟାନ୍ତ ମଧ୍ୟ ମିଳିଥାଏ । ଆଉ ଯଦି ଏହାକୁ ବାଲ୍ୟ-ଚାପଲ୍ୟର ବା ହାସ୍ୟରସର ଗୋଟାଏ ନିଦର୍ଶନ ବୋଲି ଧରି ନିଆଯାଏ, ତେବେ ପରିଣତ ବୟସର ଚପଳତାକୁ ମଧ୍ୟ କ୍ଷମା କରିବାର ଯଥାର୍ଥ୍ୟ କେଉଁଠି ରହିଛି କି ? ଭାଷା, ଭାବ, ପ୍ରକାଶ-ଭଙ୍ଗୀରେ କେଉଁ ରଚନା ମୋର ଯେ ସମ୍ପୂର୍ଣ୍ଣରୂପେ ତ୍ରୁଟିର ନଗ୍ନତାକୁ ଏଡ଼ିଦେଇ ପାରିଛି ? ନଗଦ ହେଉ କି ସାବକ ହେଉ–କେଉଁ ରଚନା ଆଜି ମୋର ମନେ ପକାଇ ଦେଉନି କି ପରମା ସନ୍ନ୍ୟାସିନୀ କବି ମୀରାବାଈଙ୍କର ସେଇ ସୁପରିଚିତ ସଙ୍ଗୀତ–"ଲାଜ ରାଖୋ ଗିରିଧାରି !"

କିମ୍ବା ପୁରୁଣା ଓଡ଼ିଆ କବିଙ୍କ ସଙ୍ଗୀତ—ଲଜ୍ଜା ନିବାରଣ ବାନାକୁ ଡାକି;

"ଲାଜେ ମୁଁ ଗଲିଟି ସଢ଼ି,
ଲୁଚାଇଛ କାହିଁ ଶ୍ୟାମ ହେ ! ଦିଅ ମୋ ଲାଗି ଶାଢ଼ି ।"

ଯାହା ମଧ୍ୟ ଲେଖୁଛି ବର୍ତ୍ତମାନ, ସେଥିରେ ମୁଁ 'ମହତ୍‌ସରା' ହେଉଛି କି ନିଜ ଇଜ୍ଜତ ରକ୍ଷା କରୁଛି, ତାହାର ବିଚାରକ ହେବା ବିଡ଼ମ୍ବନା । ତେବେ ସେ ଶ୍ୟାମ କି ଶୁଭ୍ର, ଯାହା ହୁଅନ୍ତୁ କିମ୍ବା ନ ହୁଅନ୍ତୁ ପଛେ, ଆଜ ଅବଧି ମୋର ଲଜ୍ଜା ଯେ ଦୂର ହେଲା ନି, ପୁଣି ସାହିତ୍ୟ ବନାମ ସବୁ କ୍ଷେତ୍ରରେ 'ଦେଲ ଯାହା ନେଲ ତାହା' କହି ଗାଳି ଦେବାକୁ ଯେ ପ୍ରଚୁର ନଗଦ ଉପାଦାନ ରହିଛି, ତାହାର ନଜୀର ବାଢ଼ିବା ଆଦୌ କଷ୍ଟକର ହେବ ନାହିଁ ତ ! ଏଇଠି ଦିଏଁ ଟିକିଏ ମୋର ଗଦ୍ୟରଚନାର ନମୁନା—"ପ୍ରତିଟି ମୁହୂର୍ତ୍ତ ବୋଧହୁଏ ଅତି ମୂଲ୍ୟବାନ । କୌଣସି ମୁହୂର୍ତ୍ତର ଅପବ୍ୟବହାରରେ ଅନୁତାପ ଜାଗିଉଠେ । ମୁଁ ସେହି ମୂଲ୍ୟବାନ୍ ସମୟକୁ ଅକାରଣ ଅତିବାହିତ କରୁଛି !"

ଜୀବନର ଦ୍ୱାରଦେଶରେ ଉଭାହୋଇ ସେତେବେଳେ ଯେଉଁ ଅସିଦ୍ଧ ଚପଳ ଭାଷା ଓ ଚିନ୍ତା ଭିତରେ ମୋର ସାହିତ୍ୟିକ ଜୀବନର ଅୟମାରମ୍ଭ ହୋଇଥିଲା, ସେହି ସମୟର ରଚନା ଇଏ; ଅଥଚ ତାହାକୁ ଆଜି ବିଚାରକ ଆସନରେ ବସି 'ଚପଳ' କିମ୍ବା 'ଅସିଦ୍ଧ' କହିବା ମଧ୍ୟ ସେଇଭଳି ବା ତହୁଁ ବଳି ଚପଳତା ହେବ ନାହିଁ ତ !

ସାହିତ୍ୟ ସାଧନା ଭିତରେ ନିଜକୁ ମୁଁ ଅବା ଖୋଜି ପାଇବାକୁ ଏକ ତୁମୁଳ ସଂଗ୍ରାମରେ ଅବତୀର୍ଣ୍ଣ ହୁଏଁ ସେତେବେଳେ; ଯଦି ବା ତହିଁରୁ କିଛି କମ୍ ନୁହେଁ ତ ଏତେବେଳେ ସୁଦ୍ଧା !

ଆଉ ସେହି ସଂଗ୍ରାମ ସମ୍ମୁଖରେ ପହଞ୍ଚି ମନରେ ମୋର ଯେମିତି ଜାତ ହୋଇଥିଲା ଏକ ସର୍ବଗ୍ରାସୀ ହତାଶାମୟ ଏକ ପ୍ରକାର ବିଷାଦଯୋଗ—ଆଜି ଯାହା ଭିତରେ ହାସ୍ୟରସର

ମିଶ୍ରଣ ମଧ୍ୟ ଅନୁମେୟ । କାରଣ ସେତେବେଳେ ବଡ଼ହୋଇଉଠେ ମୋର 'ମୁଁ'ତ୍ୱ–ଆଉ ଆଜି ! ଭାବି ବସିଲେ ପରିଣାମଟା ତା'ର ହାସ୍ୟ କିମ୍ବା ହାହାକାର ବ୍ୟତୀତ ଆଉ ବା କ'ଣ ଅଧିକ ?

ସେଇ ପ୍ରଥମ ରଚନା 'ଅଶାନ୍ତି' କବିତାର ମାତ୍ର ଦୁଇ ଦିନ ପରେ ତା ୨.୩.୧୯୧୬ରିଖ ପୁରୀଠାରେ ହିଁ ଲେଖିଥିଲି ମୋର ଦ୍ୱିତୀୟ କବିତା । ଠିକ୍ ଯେମିତି ପିଲା ଦିନେ ପହଁରା ଶିଖିବାକୁ ଯାଇ ବୁଡୁବୁଡୁ ମୁଁ ଉପରକୁ ଭାସି ପ୍ରାଣ ପାଇଥିଲି ! ଆହୁରି ମଧ୍ୟ ଏହି ସ୍ୱପ୍ନଗ୍ରାସୀ ତରୁଣ ଅବସ୍ଥାରେ ରାତିରେ ସ୍ୱପ୍ନ ଦେଖୁଥିଲି ଏକ ବିକଟରୂପୀ ରାକ୍ଷସର— ଯେ ମୋତେ ଆକ୍ରମଣ କରିବାକୁ ଧାବିତ ହୁଏ–ଆଉ ମୁଁ ତାହାଠାରୁ ମୁକ୍ତି ପାଇବାପାଇଁ ଉପରକୁ ଉପରକୁ ଉଠି ଉଡ଼ିବୁଲେଁ ମହାଶୂନ୍ୟ ଆକାଶରେ ।

କବିତାଟିର ଶିରୋନାମା ଥିଲା 'ମୁଁ' । ନିଜକୁ ବିଶ୍ଳେଷଣ କରିବା ଆଉ ନିଜ ସହିତ ଦୁନିଆ ସମ୍ପର୍କ ପ୍ରତିଷ୍ଠା କରିବାର ଏକ ଚପଳ ପ୍ରୟାସ; ପୁଣି ମନୁଷ୍ୟର ଅହମିକା ଉପରେ ଏକ ତୀବ୍ର କଟାକ୍ଷ !—ଏକାବେଳେ ବିରାଟ ଦାର୍ଶନିକ ହୋଇପଡ଼େଁ ପ୍ରାରମ୍ଭରୁ !

ତାତ୍ପର୍ଯ୍ୟ ହେଲା, ମନୁଷ୍ୟ ସବୁବେଳେ ଅହମିକା-ମଦରେ ମତ୍ତହୋଇ ଏକା ସେହି କେବଳ ସବୁ କର୍ମର କର୍ତ୍ତା, ସବୁ ଦର୍ଶନର ଦ୍ରଷ୍ଟା ଓ ସବୁ ଶବ୍ଦର ଶ୍ରୋତା ବୋଲି ଗର୍ବ କରିଥାଏ—ଆହୁରି ଗର୍ବ କରିଥାଏ ସର୍ବଶକ୍ତିମାନ୍ ବୋଲି !

ଅଥଚ— 'ଦେଖ ଅଛି ବୋଲି ବୋଲଇ ମାନବ
ଦେଖୁ ତ ନାହିଁ ସେ ନିଜେ
ଆଲୋକର ଦ୍ୱାରା ଦେଖୁଅଛି ସିନା
ଭାବି ସର୍ବଜ୍ଞାନ ହଜେ ।'

ଏହିପରି ରଚନା ପୁଣି କବିତାର ଯତିପାତ ଓ ଛନ୍ଦ ! ଶେଷରେ ଜଗଦୀଶଙ୍କଠାରେ ପ୍ରାର୍ଥନା କରାଯାଇଛି ଯେ, 'ମୁଁ' ପଦର ଅହମିକା ଯେପରି ଏଇ ମନରେ କଦାପି ସ୍ଥାନ ନ ପାଏ—ଏହି ସୁମତି ତାହାର ହେଉ । ଅଥଚ ଜୀବନବ୍ୟାପୀ ସେ ସୁମତି କେବେ ଯେ ତା'ର ଉଦିତ ହୋଇଛି, ଆଜି ସ୍ମରଣ କରିବା ଦୁଷ୍କର ।

ଅତି ଅଳ୍ପ ବୟସରେ ମୋହ ଭିତରେ ଆତ୍ମବିଶ୍ଳେଷଣ କରିବାର ଏକ ଚପଳ ଉଦ୍ୟମ ଅବଶ୍ୟ ଏହା । ସେହି ବୟସରେ ବୋଧହୁଏ ମଧ୍ୟବର୍ତ୍ତୀ ପନ୍ଥା ବୋଲି କିଛି ଜଣା ନ ଥିଲା ମୋତେ । ଯେଉଁ ବିଷୟ ବା ବ୍ୟକ୍ତି ବିଶେଷଙ୍କୁ ଭଲ ପାଇବାର କିମ୍ବା ଘୃଣା କରିବାର କଥା—ତା' ଭିତରେ ଆଉ କୌଣସି ଫାଙ୍କ୍ ବା ସାଲିସ୍ ମୋ ପକ୍ଷରେ ସ୍ୱୀକାର୍ଯ୍ୟ ନ ଥିଲା । ସେଇଟାହିଁ ବୋଧହୁଏ ରୋକ୍‌ଠୋକ୍ ବେଗରସାଲିସ୍‌ର ସମୟ । ଯାହାକୁ କହନ୍ତି—ଇସ୍‌ପାର, ନାହିଁ ତୋ ଉସ୍‌ପାର ।

ଗଭୀର ଭାବପ୍ରବଣତାର ଗୋଟିଏ ନଜରି ସ୍ୱରୂପ ଅନ୍ୟତମ ଶିକ୍ଷକ ସ୍ୱର୍ଗୀୟ ପଣ୍ଡିତ ଫକୀର ମିଶ୍ର କାବ୍ୟତୀର୍ଥଙ୍କୁ ଏତେ ବେଶି ଭଲ ପାଉଥିଲି ଯେ, ତାଙ୍କର ସମ୍ବଲପୁର ହାଇସ୍କୁଲକୁ

ବଦଳି ହୋଇଯିବା ଘଟଣାରେ ଶୋକାଚ୍ଛନ୍ନ ହୋଇ ଗୋଟିଏ ବିଦାୟ ସଙ୍ଗୀତ ମଧ ଲେଖିପକାଏଁ ।

ସେତେବେଳର ଗଭୀର ଦୁଃଖ ବର୍ତ୍ତମାନ କେବଳ ହାସ୍ୟରସ ଉଦ୍ରେକ କରିବା ଆଶଙ୍କାରେ ତାହାର ଉଦାହରଣ ଏଠାରେ ଦେବାରୁ କ୍ଷାନ୍ତ ହେବା ବ୍ୟତୀତ ନାନଃ ପନ୍ଥା ବିଦ୍ୟତେଽୟନାୟ । ଏହି ରଚନାର କାଳ ୧୬/୬/୧୯୧୬ ତାରିଖ, ସ୍ଥାନ—ମୋର ଜନ୍ମସ୍ଥାନ ବିଶ୍ୱନାଥପୁର ଗ୍ରାମ ।

ସେତେବେଳେ କିନ୍ତୁ ଗୁରୁଶିଷ୍ୟ ମଧ୍ୟରେ ଯେଉଁ ସମ୍ପର୍କ ରହିଥିଲା ତାହାର ଗୋଟିଏ ଉଦାହରଣ ଏଥି ପୂର୍ବରୁ ଲିପିବଦ୍ଧ ହୋଇଛି ସ୍ୱର୍ଗତ ପଣ୍ଡିତ ନରସିଂହ ମିଶ୍ରଙ୍କ ପତ୍ରରେ । ସ୍ୱର୍ଗତ ପଣ୍ଡିତ ଫକୀର ମିଶ୍ର ମଧ ମୁଁ ଅସୁସ୍ଥ ହୋଇ ଶଯ୍ୟାଶାୟୀ ଅବସ୍ଥାରେ ଥିବା ସମୟରେ ମୋତେ କଟକରେ ଦେଖିଆସି ମୁଣ୍ଡରେ ମୋର ହାତ ବୁଲାଇ ଦୀର୍ଘଜୀବନ ଆଶୀର୍ବାଦ କରିଯାଇଥିଲେ; ଅଥଚ ତାଙ୍କର ତିରୋଧାନ ସମ୍ବାଦ ରଖିବା ମଧ ମୋହ ପକ୍ଷରେ ସମ୍ଭବପର ହୋଇପାରି ନାହିଁ । କିନ୍ତୁ ସେତେବେଳେ ତାଙ୍କ ପାଇଁ 'ଫେୟାର ଓୟେଲ' (Farewell) ମିଟିଂକୁ ବିଦାୟ ସଙ୍ଗୀତ ଲେଖିଛି !



## ଅୟମାରମ୍ଭ

ପ୍ରାୟ ପ୍ରତି ରଚନାର ମାସ ତାରିଖ ଲେଖିବା ଅଭ୍ୟାସ ଗୋଟିଏ ଟିପା ଖାତାରେ ଆରମ୍ଭ କରେଁ । ସେହି ସମୟରୁ ହିଁ ଆତ୍ମବିଶ୍ଳେଷଣ କରି ତାହାକୁ ଲିପିବଦ୍ଧ କରିବାର ପ୍ରୟାସ ମୋର ଜାତ ହୁଏ ।

ଗାଁରୁ ପୁରୀକୁ ଆସି ୧୩-୭-୧୯୧୬ ମସିହାରେ 'ମୋହର ଆନ୍ତରିକ ଭାବ' ଶୀର୍ଷକ ଗୋଟିଏ ଲେଖା ଆଜି ଏହି ଟିପା ଖାତାଟିରୁ ମିଳେ—ଯାହାକୁ ଆବିଷ୍କାର କରି ମୋ'ର ଆତ୍ମଜୀବନୀ ପ୍ରସ୍ତୁତିର ପ୍ରାରମ୍ଭ କାଳ ବୋଲି ନିଜକୁ ମୁଁ ସାବାସ୍ ନ ଦେଇ ରହିପାରୁ ନାହିଁ ।

ଏହି ଲେଖାଟିର ଆରମ୍ଭ କରାଯାଇଛି ବେଶ୍ ଏକ ଗମ୍ଭୀର ପରିବେଶରେ—

''ମୋ'ର ଷୋଳବର୍ଷ ପର୍ଯ୍ୟନ୍ତ ଯେଉଁପରି ମୁଁ ଚଳି ଆସୁଥିଲି, ତାହାର ସଂକ୍ଷେପ ବିବରଣ ତଳେ ଲେଖି ଈଶ୍ୱରଙ୍କ ନିକଟରେ କ୍ଷମାପ୍ରାର୍ଥୀ ହେଉଅଛି ।''

''ମୁଁ ଗ୍ରାମଠାରେ ପ୍ରାୟ ୧୨ ବର୍ଷ ଓ ଶ୍ରୀକ୍ଷେତ୍ରରେ ପ୍ରାୟ ୪ ବର୍ଷ ଅତିବାହିତ କଲିଣି ।''

× × ×

''ସଂସାରରେ ଯେ ସୁମହତ୍ ସୁଖ ଭୋଗ କରିବାକୁ ଈଶ୍ୱର ଛାଡ଼ି ଦେଇଛନ୍ତି, ସେ ସୁଖ ପ୍ରତି ମୋ'ର କୌଣସି ପ୍ରକାର ଚେଷ୍ଟା ନ ଥିଲା । ସେ ସୁଖ ହେଉଛି, 'ଚିନ୍ତା' । ଖାଲି 'ଚିନ୍ତା' କହିଲେ ହେଲା ନାହିଁ । ଚିନ୍ତା ଦୁଇ ପ୍ରକାର । ପ୍ରଥମ ଐହିକ ଚିନ୍ତା ଓ ଦ୍ୱିତୀୟ ଐଶ୍ୱରିକ ଚିନ୍ତା । ଏ ଦୁଇ ଚିନ୍ତା ମଧ୍ୟରେ ସମ୍ପୂର୍ଣ୍ଣ ପାର୍ଥକ୍ୟ ରହିଛି । ପ୍ରଥମ ଚିନ୍ତାର ଅର୍ଥ ହେଉଛି, ସାଂସାରିକ ଚିନ୍ତା । ଈଶ୍ୱରଙ୍କ ବିଷୟରେ ଚିନ୍ତା ଏହି ଯେ—ଈଶ୍ୱର ପ୍ରକୃତରେ ଅଛନ୍ତି କି ନା ? ନାହାନ୍ତି ଯଦି କି ବୃଥାରେ ନାମକରଣ ହୋଇଛି ? ମୁଁ କେଉଁଠାରେ ଥିଲି, କେଉଁଠାକୁ ଆସିଲି ? ମୋତେ ଏଡ଼େ ସୁନ୍ଦର ମୂର୍ତ୍ତି କିଏ ତିଆରି କଲା ?''

× × ×

''ଏ ଦୁଇ ଚିନ୍ତା ଭିତରୁ ଈଶ୍ୱର ଚିନ୍ତା ପରମ ସୁଖଦାୟକ ଅଟେ । ଏ ବୋଧଗମ୍ୟ ଭାବ ମୋର ମନକୁ ସ୍ପର୍ଶକରି ନଥିଲା । ସ୍ପର୍ଶ କରୁବା ନକରୁ ମୋର ମନର ନିକଟବର୍ତ୍ତୀ ସୁଦ୍ଧା ହୋଇ ନଥିଲା । କେବଳ ମୋର ପରମବନ୍ଧୁ ଶ୍ରୀ ଅମୃତଲାଲ ନାଗଙ୍କଠାରୁ ଏହି ଉପଦେଶ ଶୁଣି ସେ ଉପଦେଶରେ ମୋର ମନ ଚାଲିବାରୁ × × × 'ହରି' ଚିନ୍ତାରେ ନିମଗ୍ନ ହେବାକୁ ଚେଷ୍ଟା କଲି, ମାତ୍ର ଶେଷରେ ହରି ଯାହା କରିବେ ।''

''ମୋର ବନ୍ଧୁଙ୍କ ହିତୋପଦେଶ ପାଇ ମନ ଏକ ପ୍ରକାର ଐଶ୍ୱରିକ ଚିନ୍ତା ନିମିତ୍ତ ଅତି ସାମାନ୍ୟ ଧାରଣାରେ ଉପନୀତ ହୋଇଥିବାରୁ, ମୁଁ ମୋର ମନର ଗଭୀର ପ୍ରଦେଶରୁ ଧନ୍ୟବାଦ ପ୍ରଦାନ କରୁଛି ଏବଂ ଈଶ୍ୱରଙ୍କୁ ପ୍ରାର୍ଥନା କରୁଅଛି, ସେ ଯେଉଁ ପଥରେ ଅଗ୍ରସର ହୋଇଛନ୍ତି, ସେ କାର୍ଯ୍ୟରେ ସେ ପାରଦର୍ଶିତା ଲାଭ କରନ୍ତୁ ଏବଂ ମୁଁ ତାଙ୍କଠାରୁ 'ଈଶ୍ୱର ଚିନ୍ତା'ର ସଦୁପଦେଶ ପ୍ରାପ୍ତ ହୋଇ ତାଙ୍କ ପଛେ ପଛେ ସେହି ପଥକୁ ଅନୁସରଣ କରେଁ । ତାଙ୍କଠାରୁ ଏହି ଭାବ ମୁଁ ଇଂରାଜୀ ଜୁଲାଇ ମାସ ୮ ତାରିଖ ୧୯୧୬ ମସିହାରେ ଶୁଣି ଅତି ଅଳ୍ପ ମାତ୍ର ଜ୍ଞାନଚକ୍ଷୁ ଉନ୍ମୀଳନ କରିଅଛି ।''

ଏହିଠାରେ ହିଁ ହାସ୍ୟ ସମ୍ବରଣ କରି ଉଲ୍ଲେଖନୀୟ ଯେ 'ଅତି ଅଳ୍ପମାତ୍ର ଜ୍ଞାନଚକ୍ଷୁ ଉନ୍ମୀଳନ' କରିବାର ପାଞ୍ଚଦିନ ପରେ ଅର୍ଥାତ୍ ୧୩-୭-୧୯୧୬ ମସିହାରେ 'ମୋହର ଆନ୍ତରିକ ଭାବ' ଲିପିବଦ୍ଧ ହୁଏ । ସେଥି ସଙ୍ଗେ ପ୍ରକାଶ ପାଏ ପାଠ ପ୍ରତି ମଧ୍ୟ ବିତୃଷ୍ଣା ! ତେଣୁ ହୁଏତ 'ପାଠପଢ଼ା ବଡ଼ ଦୁଃଖ'' ହେତୁ ସଂସାର ପ୍ରତି ଏଇ ବୈରାଗ୍ୟ ଜାତ ହୋଇପାରିଥାଏ !

ଏହି ଟିପା ଖାତାରେ କବି ଉପେନ୍ଦ୍ର ଭଞ୍ଜଙ୍କଠାରୁ ଆରମ୍ଭକରି ଦୀନକୃଷ୍ଣ, ବନମାଳୀ ଓ କବିସୂର୍ଯ୍ୟ ପ୍ରଭୃତି ପ୍ରାଚୀନ କବିମାନଙ୍କର ଯେଉଁ ସବୁ ସଙ୍ଗୀତ ମୋତେ ମୁଗ୍‌ଧ କରିଥିଲା, ତହିଁରୁ କେତେଗୋଟି ମଧ୍ୟ ଲିପିବଦ୍ଧ ରହିଛି । ସଂସ୍କୃତ କବି ଜୟଦେବଙ୍କର—

''ବଦସି ଯଦି କିଞ୍ଚିଦପି ଦନ୍ତରୁଚି କୌମୁଦୀ
ହରତି ଦର ତିମିର ମତି ଘୋରଂ
ପ୍ରିୟେ ! ଚାରୁଶୀଳେ ମୁଞ୍ଚମୟି ମାନମନିଦାନଂ ।''

ସଙ୍ଗୀତରେ ବିହ୍ୱଳ ହେଉଥିଲି । କେବଳ ବିହ୍ୱଳ ହେଉ ନଥିଲି, ବନ୍ଧୁମାନଙ୍କ ସମାଗମରେ ସେହି ସଙ୍ଗୀତଗୁଡ଼ିକୁ ସ୍ୱର ସହିତ ବୋଲି ସେମାନଙ୍କଠାରୁ ମଧ୍ୟ ହାସଲ କରୁଥିଲି

ସାବାସ୍ ! ସମୁଦ୍ର କୂଳଟା ହିଁ ଏହି ସଙ୍ଗୀତ-ଆସର ପାଇଁ ପ୍ରଧାନ ସ୍ଥଳ ଥିଲା, ଜଳ-ସଙ୍ଗୀତ ସହିତ ।

ସେତେବେଳେ ପୁରୀରେ ସର୍ଗତ ମୋହନ ସୁନ୍ଦର ଗୋସ୍ୱାମୀଙ୍କର ରାଧାକୃଷ୍ଣ ରାସଲୀଳା ଅଭିନୟ ଏକ ତୁମୂଳ ଆଲୋଡ଼ନ ସୃଷ୍ଟି କରିଥାଏ । ସେ ସ୍ୱୟଂ ଜଣେ ଉତ୍କୃଷ୍ଟ ସଂକୀର୍ତ୍ତନ ଗାୟକ ରୂପେ ଶ୍ରୋତାମାନଙ୍କୁ ମୁଗ୍ଧ କରୁଥିଲେ । ଥିଏଟରଗୃହ ଥିଲା ରାମଚଣ୍ଡୀ ସାହିର ବର୍ତ୍ତମାନ ସିନେମାଗୃହ ନିକଟରେ । ନାମ ଥିଲା ତା'ର—'ଜଗନ୍ନାଥ ଥିଏଟର କ୍ଲବ୍' କିମ୍ବା ଏମିତି କିଛି ।

ସାହିତ୍ୟ ସାଧନାର ପ୍ରାରମ୍ଭିକ ଜୀବନରେ ଟିପି ରଖୁଥିଲି 'କେତେଗୋଟି ମନୋମୁଗ୍ଧକର ଟିପା' (କେତେଗୋଟି ଉକ୍ତି, ଉପମା ଓ ତୁଳନା) । ତହିଁରୁ ମଧ କିଞ୍ଚିତ୍ ଏଠାରେ ପାଠକମାନଙ୍କ ଧୈର୍ଯ୍ୟ ପରୀକ୍ଷା ଲାଗି ଉଦ୍ଧାର କରୁଛି—

''ଯେଉଁଠାରେ ଅତୀବ କଠିନ ପ୍ରସ୍ତର—ତା'ରି ତଳେ ଥାଏ ପୁଣି ସ୍ୱଚ୍ଛ, ସୁଶୀତଳ ଜଳ । ଜଳଧିର ଭଙ୍ଗୁର ଲହରୀ ଗଣିବା (ମାନବର ସୁଖସଙ୍ଗେ ତୁଳନା) ।''

ଏହା ବ୍ୟତୀତ 'ସାହିତ୍ୟର ବିଷୟବସ୍ତୁ'—'ସମାଜ ସମ୍ବନ୍ଧେ ଚିନ୍ତା କଳ୍ପନା' ଯଥା—''ଉନ୍ନତି ଅବନତିର କାରଣ ଓ ଇତିହାସ ସମାଜର ଭବିଷ୍ୟତ ସମ୍ବନ୍ଧେ କଳ୍ପନା ।''—ସେଇ ସମୟରୁ ଅବା ସମାଜବାଦ ପ୍ରତି ମୋର ଝୁଙ୍କର ଅଙ୍କୁରୋଦ୍‌ଗମ !

ଉପନ୍ୟାସର ଉପାଦାନ, ନାଟକର କଥୋପକଥନ, ଦୃଶ୍ୟ ଏବଂ କଳା, ଭାଷା, ପୁଣି ଛୋଟ ଗଳ୍ପର ଗଠନ-ପ୍ରଣାଳୀରେ ଲିଖିତ ହୋଇଛି–

୧ । ଗୋଟିଏ ଚରିତ୍ରକୁ ଲକ୍ଷ୍ୟକରି ତଦନୁଯାୟୀ ଘଟଣାବଳୀର ସୃଷ୍ଟି ।

୨ । ଗୋଟିଏ ଘଟଣାକୁ ଲକ୍ଷ୍ୟକରି ତଦନୁଯାୟୀ ଚରିତ୍ରର ସୃଷ୍ଟି ।

୩ । ଗୋଟିଏ ଦୃଶ୍ୟର କଳ୍ପନା କରି ତଦନୁଯାୟୀ 'ଚରିତ୍ର ଓ ଘଟଣାର ସମାବେଶ' ଇତ୍ୟାଦି ।

ସେଇ ସମୟରେ ହିଁ କବିତା ରଚନା କରି ପତ୍ରିକାକୁ ପ୍ରକାଶ ପାଇଁ ପଠାଇବାର ଆଗ୍ରହ ମୋ'ର ଲିପିବଦ୍ଧ ହୋଇ ରହିଛି । ପୁରୀଜିଲ୍ଲା ସ୍କୁଲ ମାଟ୍ରିକ୍ୟୁଲେସନ୍ ତୃତୀୟ ଶ୍ରେଣୀରେ ପଢୁଥିବା ବେଳେ ୨୯/୯/୧୯୧୮ରେ ଗୋଟିଏ କବିତା ରଚନା କରେଁ ।

ତାହା 'ଭକ୍ତିବଳ' ଶିରୋନାମାରେ ବାଳଭକ୍ତ ପ୍ରହ୍ଲାଦଙ୍କ ବିଶ୍ୱାସ-ଭକ୍ତିର ଅଟଳଦୃଢ଼ତା ବିଷୟରେ ଅମିତ୍ରାକ୍ଷର ଛନ୍ଦରେ ରଚିତ ଏକ ଦୀର୍ଘ କବିତା । କଟକରୁ ପ୍ରକାଶିତ 'ମୁକୁର' ପତ୍ରିକାର ସଂପାଦକଙ୍କ ନିକଟକୁ କବିତାଟି ମହା ଆଗ୍ରହରେ ପଠାଏଁ; ମାତ୍ର ତାହା ଫେରିଆସେ ମୋ ନିକଟକୁ । ସଂପାଦକ ସ୍ୱର୍ଗତ ବ୍ରଜସୁନ୍ଦର ଦାସଙ୍କ ସହିତ ବ୍ୟକ୍ତିଗତ ପରିଚୟ ତ ଦୂରର କଥା, କଟକ ଦେଖିବାର ସୌଭାଗ୍ୟ ମଧ ମୋର ହୋଇ ନଥାଏ ସେତେବେଳେ ।

କବିତାଟି ପାଇ ସମ୍ପାଦକ ମହୋଦୟ ଖୁବ୍ ଖୁସିହୋଇ ମୋତେ ଆଶୀର୍ବାଦ କଲେ ଖଣ୍ଡିଏ କ୍ଷୁଦ୍ର ପତ୍ରରେ । ସେଥିରେ ସେ ଉତ୍ସାହ ଦେଲେ ଯେ, ଭବିଷ୍ୟତରେ ମୁଁ ଜଣେ ଭଲ ଲେଖକ ହେବି । କିନ୍ତୁ ଛାପା ଅକ୍ଷରରେ କବିତା ସହିତ ନିଜ ନାମଟିକୁ ଦେଖିବା ସୌଭାଗ୍ୟ

ମୋର ଜୁଟିଲା ନାହିଁ । ଲେଖାଟିକି ପ୍ରତ୍ୟାଖ୍ୟାନ କଲେ ମଧ୍ୟ ସେତେବେଳର ବିଖ୍ୟାତ 'ମୁକୁର' ପତ୍ରିକାର ସମ୍ପାଦକଙ୍କ ହସ୍ତାଙ୍କିତ ପତ୍ର ହିଁ ଉତ୍ସାହର ଏକ ଉତ୍ସ ହୋଇ ଉଠିଥିଲା ମୋହ ପକ୍ଷରେ । କାରଣ ସେପରି ଉତ୍ସାହ ମୁଁ ଏକାଧିକ କ୍ଷେତ୍ରରୁ ଲାଭ କରିବା ପାଇଁ ଚେଷ୍ଟାକରି ସୁଦ୍ଧା ସମର୍ଥ ହୋଇ ନଥାଏଁ । ଅନେକ ପତ୍ରପତ୍ରିକାକୁ ଲେଖା ପଠାଇବାର ଉଦ୍ୟମ କରେଁ, ଅଥଚ ପ୍ରାପ୍ତି ସ୍ୱୀକାର ପାଇଁ ମଧ୍ୟ ଅସମର୍ଥ ହୁଏଁ । ଆଜିକାଲି ଦୈନିକ ପତ୍ରିକାମାନଙ୍କର ସାପ୍ତାହିକ ସାହିତ୍ୟ ସଂଖ୍ୟାମାନ ସେତେବେଳେ ଥାଏ ସ୍ୱପ୍ନ ।

ଅମିତ୍ରାକ୍ଷର ଛନ୍ଦରେ ରଚିତ ଏହି କବିତାଟିର ଆରମ୍ଭ ହେଲା—

ଫିଙ୍ଗି ଅଗାଧ ଜଳରେ ଭୀଷଣ ଅଗ୍ନିରେ
କଚାଡ଼ି ଶକ୍ତ ଶିଳାରେ, ତୀକ୍ଷ୍ଣ ଖଡ୍‌ଗଧାରେ
ଛେଦିବାକୁ ପୁଣି ଆହା ! କଲେ ଯେତେ ଚେଷ୍ଟା

ନୃଶଂସ ଜନକ, ସବୁ କରିଲା ବିଫଳ
ପତିତପାବନ 'ହରିନାମ'—ଉଚ୍ଚାରିତ
ହୋଇ ସଦା ବାଳକର ସୁକୁମାର ମୁଖୁଁ ।

ପ୍ରତି ଥର ଦେଇ ଦଣ୍ଡ ଜିଜ୍ଞାସନ୍ତି ଯେବେ
ଭୃତ୍ୟଗଣ, ''ଅଛୁ କିରେ ପ୍ରହ୍ଲାଦ ଜୀବନେ ?''
ପ୍ରେମ ଗଦ ଗଦ ଭାଷେ ଭାଷଇ ବାଳକ—
''ହରିନାମ ବୋଲ ସେହି ଅନାଥ ଶରଣ !''

ସମ୍ପାଦକମାନେ କିନ୍ତୁ ଯୁବ-ଉତ୍ସାହକୁ ହତ୍ୟା କରିବାକୁ ଅସମର୍ଥ ହେଲେ ଶେଷରେ । ରଚନା ମୋର ଖୋଜି ବୁଲେ ନୂଆ ନୂଆ ପ୍ରକାଶ ପଥ । ନିଜ ଲେଖାକୁ ଛାପା ଅକ୍ଷରରେ ଦେଖିବା ପାଇଁ ଜାଗିଉଠେ ପ୍ରବଳ ଆଗ୍ରହ । ସେ ଆଗ୍ରହ ଦୃଢ଼ ସଂକଳ୍ପରେ ପରିଣତ ହେବାକୁ ଧାଏଁ ଅବିଳମ୍ବେ । ତହୁଁ ମନ ଭିତରେ କଳ୍ପନା କଳ୍ପନା ଯୋଜନା ପ୍ରସ୍ତୁତି ସବୁର ବିଚାର । ନିଜେ ଏକ ସ୍ୱତନ୍ତ୍ର ପତ୍ରିକାର ସମ୍ପାଦନ, ମୁଦ୍ରଣ ଓ ପ୍ରକାଶନ ଲାଗି ଯୋଜନାର ଅୟମାରମ୍ଭ । ଅବଶେଷରେ ତାହାର ପରିଣତି କାର୍ଯ୍ୟ କ୍ଷେତ୍ରରେ ।

ଲେଖକ କିମ୍ବା ବକ୍ତାମାନଙ୍କର ସେତକ ସ୍ୱାଧୀନତା ସବୁକାଳେ ବୋଧହୁଏ ବିଦ୍ୟମାନ । ଛାପାଖାନା ନ ଥିବା ଯୁଗରେ ବି ଥିଲା ତାଳପତ୍ର ବା ଭୂର୍ଜପତ୍ର; ପୁଣି ବକ୍ତା କିମ୍ବା ଗାୟକ ଅବଶ୍ୟ ସମ୍ଭବିପାରନ୍ତି ଶ୍ରୋତା କେହି ନ ମିଳିଲେ ସୁଦ୍ଧା !

'ଛାତ୍ରଦର୍ପଣ' ହାତଲେଖା ପତ୍ରିକାଟିଏ ହେଲେହେଁ ଆମ ଛାତ୍ରସମାଜର ମୁଖପତ୍ର ରୂପେ ତା'ର ଆଦର କିଛି କମ୍ ନଥିଲା । ଆମ ଛାତ୍ର ସମିତିର ସର୍ବସମ୍ମତିକ୍ରମେ ସଂପାଦକ ଥା'ନ୍ତି ବର୍ତ୍ତମାନ ଓଡ଼ିଶା ହାଇକୋର୍ଟର ଏଡ଼୍‌ଭୋକେଟ୍ ଶ୍ରୀ ସଦାଶିବ ମିଶ୍ର—ଆଉ ମୁଁ ଥାଏଁ 'ଛାତ୍ରଦର୍ପଣ' ପତ୍ରିକାର ସହଂ-ସମ୍ପାଦକ୍, ଅବଶ୍ୟ ବନ୍ଧୁମାନଙ୍କର ସମ୍ମତିକ୍ରମେ । ସ୍ୱର୍ଗତ ପୂର୍ଣ୍ଣଚନ୍ଦ୍ର ମହାନ୍ତି, ଶ୍ରୀ ହୃଦାନନ୍ଦ ମହାନ୍ତି, ଡାକ୍ତର ନନ୍ଦଦୁଲାଲ ସେନ୍‌ଗୁପ୍ତ ପ୍ରମୁଖ ଲେଖକ,

ପୁଣି ଶିକ୍ଷୀମାନଙ୍କ ଉତ୍ସାହ ଉଦ୍ୟମ ଓ ଘନିଷ୍ଠ ସହଯୋଗ ଛାତ୍ର ସମିତିକୁ ଗଢ଼ି ତୋଳେ ଜୀବନ୍ତ ରୂପଦେଇ । ବୟୋଜ୍ୟେଷ୍ଠ ବାନାମ୍ବର ମିଶ୍ରଙ୍କର ପୂର୍ଣ୍ଣ ସମର୍ଥନ ମଧ୍ୟ ଜଡ଼ିତ ଥାଏ । ରୂପରେ ଯେମିତି, କଥାବାର୍ତ୍ତା ବ୍ୟବହାରରେ ମଧ୍ୟ ସେ ଥିଲେ ସେମିତି ନିର୍ମଳ ସଚ୍ଚୋଟ । ଆମେ ତାଙ୍କୁ ବଡ଼ଭାଇ ପରି ଖାତିର କରୁଥାଉଁ ।

ସେ ଅବା ଏକ ନବଜାଗରଣର ଯୁଗାରମ୍ଭ । ସତ୍ୟବାଦୀ ବନବିଦ୍ୟାଳୟର ସୁନାମ ବ୍ୟାପିଥାଏ ଚତୁର୍ଦ୍ଦିଗରେ । ସେମିତି ଆମ ଭିତରେ ସୁଦ୍ଧା କେତେ ଜଣ ଆଗୁଆ ହୋଇ ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ପ୍ରଭୃତି ପ୍ରଥିତଯଶା ନେତାମାନଙ୍କ ନିମନ୍ତ୍ରଣ କରୁଁ ଆମ ଛାତ୍ର ସମିତିର ଏକ ବିଶେଷ ଅଧିବେଶନକୁ । ସେମାନଙ୍କର ତ ସାକ୍ଷୀଗୋପାଳରୁ ପୁରୀକୁ ପ୍ରାୟ ଯାତାୟାତ ହେଉଥାଏ । ଆମ ନିମନ୍ତ୍ରଣକୁ ରକ୍ଷାକରିବା ତେଣୁ ତାଙ୍କ ପକ୍ଷରେ କଠିଣ ହୁଏ ନାହିଁ ।

ସେଦିନ ସଭା ଆମର ହେରାଗୋହିରୀ ସାହି ସାମନ୍ତ ଚନ୍ଦ୍ରଶେଖର ହଲ୍‌ରେ । ଏହି ସଭାର ସଭାପତି ସ୍ୱୟଂ ପଣ୍ଡିତ ଗୋପବନ୍ଧୁ । ପାଖରେ ତାଙ୍କର ବସିଥାନ୍ତି ପଣ୍ଡିତ ନୀଳକଣ୍ଠ ଓ ଆଉ କେତେ ଜଣ ଶିକ୍ଷକ । ସଭାପତିଙ୍କ ନିକଟରେ ରଖା ହୋଇଥାଏ ଖଣ୍ଡିଏ 'ଛାତ୍ରଦର୍ପଣ' ହାତ ଲେଖା ପତ୍ରିକା ।

ଗୋପବନ୍ଧୁଙ୍କର ଗୋଟିଏ କଥା ଏହି ସଭାରେ ଛାଇଛାୟା ମନେପଡ଼େ । ''ତୁମେ ସବୁ ପ୍ରତିଦିନ ଯାହା କରିବ, ଦେଖିବ, ଯୁଆଡ଼େ ଯିବ କି ଯାହା ଖର୍ଚ୍ଚ କରିବ, ତା'ର ହିସାବ ଟିପି ରଖିବ ।'' ଶେଷ କଥାଟି ମନକୁ ଆମର ସେତେ ବେଶି ଘେନିଲା ନାହିଁ । ଆମ ହାତକୁ ପଇସା ଅବାକେତେ ଆସେ, ପୁଣି କ'ଣ ଅବା ରୋଜ ଆମେ ଖର୍ଚ୍ଚ କରୁଁ ଯେ, ଟିପି ରଖିବାର ପ୍ରଶ୍ନ କେଉଁଠି ! ତେବେ ଏମିତି ଡାଏରି ଲେଖିବା ଇଚ୍ଛାଟା ମୋର ବୋଧହୁଏ ତାଙ୍କ ଉପଦେଶରୁ ପୁଣି ବନ୍ଧୁମାନଙ୍କ ସହିତ ଆଲୋଚନାରୁ ଜନ୍ମିଥିବ ।

ବଡ଼ ହେଲାପରେ କଥାଟାର ଉପାଦେୟତା ବୋଧହେଲା ସିନା; କିନ୍ତୁ ମୋହ ପକ୍ଷରେ କେବଳ ଏହା ସାମୟିକ ଉଦ୍ୟମ ଭିତରେ ହିଁ ଆବଦ୍ଧ ହୋଇ ରହେ ।

ସାଧାରଣ ପାଣ୍ଠି ନ ହେଲେ ବି ନିଜ ଦୈନିକ ଖର୍ଚ୍ଚ ନିଜେ ଟିପିବା ଫଳରେ ଯେ ଅନେକ ଆତ୍ମବିଶ୍ଳେଷଣର ବିଚାର ମଧ୍ୟ ତାହା ଭିତରେ ରହିଛି—ସେକଥା ଯେତିକି ବେଶି ମୁଁ ଉପଲବ୍ଧି କରେଁ, ସେତିକି ପଛାଏଁ କିନ୍ତୁ କାମ ଉପରେ ।

ଆଉ ଗୋଟିଏ କଥା ମଧ୍ୟ ମନେପଡ଼େ ତାଙ୍କର । ସାପ ମହାଦେବଙ୍କର ବାହନ ହେଲେ ବି ମଣିଷ ଓ ଜୀବଜନ୍ତୁଙ୍କୁ ସେ ହତ୍ୟା କରେ । ତହୁଁ ଈଶ୍ୱର ତାକୁ ଉପଦେଶ ଦିଅନ୍ତି—

ତୁ ମୋ'ର ବାହନ ହୋଇ ଲୋକଙ୍କୁ ଏମିତି ହତ୍ୟା କରିବା ମୋହ ପକ୍ଷରେ ବଡ଼ ନିନ୍ଦା । ତୁ ଏଣିକି ଏଭଳି ଦୁର୍ବୁଦ୍ଧି ଛାଡ଼ ।

ପ୍ରଭୁଙ୍କ ନିର୍ଦ୍ଦେଶରେ ସାପ କାହାରିକୁ ନ କାମୁଡ଼ି ପଡ଼ି ରହିଲା ଚୁପ୍‌ଚାପ୍ ।

ସାପଟାଏ ପଡ଼ିଛି ଦେଖି ବଡ଼ଠାରୁ ପିଲାଯାକେ ଯିଏ ସେବାଟେ ଗଲେ, ସମସ୍ତେ ତାକୁ ଫିଙ୍ଗିଲେ ଟେକା, ଅବା ପିଟିଲେ ବାଡ଼ିରେ ।

ସାପ ବିଚରା ତା'ର ଦୁର୍ଦ୍ଦଶା ଜଣାଇଲା ଯାଇ ମହାଦେବଙ୍କୁ । ଶିବ ତହୁଁ ହସି ହସି କହିଲେ—ତୋତେ ସିନା ମୁଁ କାମୁଡ଼ିବାକୁ ମନା କରିଥିଲି, ଫଣା ଟେକିବାକୁ କି ଗର୍ଜନ ଛାଡ଼ିବାକୁ କ'ଣ ନାହିଁ କରିଛି ?

ଉଦାହରଣଟି ଦେଇ ଗୋପବନ୍ଧୁ ଆମକୁ ଅନ୍ୟର କ୍ଷତି କରିବାକୁ ନିବର୍ତ୍ତାଇ ଥିଲେ ମଧ, ପ୍ରବର୍ତ୍ତାଇଥିଲେ ଅନ୍ୟର ଆକ୍ରମଣରୁ ଆତ୍ମରକ୍ଷା କରିବାକୁ । କଥାଗୁଡ଼ିକରେ ତାଙ୍କର ଯେଉଁ ସରଳତା ପୂରି ଉଠିଥିଲା, ଆଜିବି ନାଚିଉଠେ ସେଇ ରୂପ ସେଇ ଆଖି ଯେମିତି ସାମନାରେ । ଆହୁରି ବି ନାଚିଉଠେ ସେଇ ୧୯୧୯ ମସିହାର ନୀଳକଣ୍ଠବାବୁଙ୍କ ଚେହେରା । ଛାତ୍ର ସଭାରେ ଆମର ସଭାପତି ହୋଇ ସେହି କରନ୍ତି ପରା 'ଛାତ୍ରଦର୍ପଣ' ହାତଲେଖା ପତ୍ରିକାର ଉଦ୍‌ଘାଟନ । ମଲାଟ ଉପରେ ରଙ୍ଗିନ ଛବି ଆଙ୍କିଥାନ୍ତି ମୋର ସହାଧ୍ୟାୟୀ ବନ୍ଧୁ ଡାକ୍ତର ନନ୍ଦଦୁଲାଲ ସେନଗୁପ୍ତ । ଛବିଟି ସବୁଜ ରଙ୍ଗର ଜଙ୍ଗଲ ପାହାଡ଼ ଭିତରେ ସୂର୍ଯ୍ୟୋଦୟର ରକ୍ତିମ ଛଟାକୁ ଉକୁଟାଇ ଅଙ୍କାବଙ୍କା ହୋଇ ବୋହି ଯାଉଥିବା ଏକ ଝରଣାର ।

ପତ୍ରିକାର ପ୍ରଥମ ରଚନା ମୋର 'ବନ୍ଦନା' କବିତାର ଅନୁସରଣରେ ଛବିଟି ଅଙ୍କିତ ହୋଇଥାଏ । ସେହି ଟିପାଖାତାହିଁ ଆଜି ସୁଦ୍ଧା ତାହାର ସାକ୍ଷ୍ୟ ବହନ କରି ସାମ୍‌ନାରେ ମୋର ବିରାଜମାନ—

ଝର ଝର ଝରେ ଝରଣାଧାର
ମୁଖରିତ କରେ ଅଚଳଶିର
ଛବିଳ ଉଳ୍ଳେ ଲାଗିଅଛି ସଦା ଶୋଭାର ଏ ହାଟ ପରକୃତିର ।(୧)
ଏ ହାଟେ ହାଟୁଆ ହୋଇବା ପାଇଁ
ବହୁ ଦିନୁଁ ଆଶା ପୋଷିଛି ମୁହିଁ
ମେଣ୍ଟିବ କି ସତେ ଏ ଆଶା ମୋର, ଘୁଞ୍ଚିବ ଦୁର୍ଦ୍ଦଶା ମୋ ଜନନୀର ।
ବେଗତର ହେବ ଝରଣା ଧାର
କମ୍ପିବ ଅଧିକ ଅଚଳ ଶିର
ଛବିଳ ଉଳ୍ଳେ ଲାଗିଥିବ ସଦା ଶୋଭାର ଏ ହାଟ ପରକୃତିର । (୨)

କବିତାଟି ଉପରେ ଆଖି ବୁଲାଇ ପଣ୍ଡିତ ନୀଳକଣ୍ଠ ପଚାରିଲେ, ଏ କବିତାଟିର କିଏ ରଚୟିତା ? ନୀଳକଣ୍ଠଙ୍କ ମୁଖରୁ ମୋର ଏହି କବିତା ଉପରେ ପ୍ରଶଂସା ଶୁଣି ମୁଁ ଯେପରି ଉତ୍ସାହିତ ହୋଇଥିଲି, ତାହା ଆଜି ମଧ ସ୍ମରଣୀୟ ।

ତାଙ୍କ ନିର୍ଦ୍ଦେଶରେ ମୋତେ ଠିଆ ହେବାକୁ ପଡ଼ିଲା । ନୀଳକଣ୍ଠ କହିଲେ, ''କବିତାଟି ବେଶ୍ ଭଲ ହୋଇଛି ।'' ପ୍ରଶଂସାର ପମ୍ପ୍ ଜୋର୍‌ରେ ଛାତ୍ରସମିତି ସହିତ ତାହାର ମୁଖପତ୍ର 'ଛାତ୍ର ଦର୍ପଣ' କିଛିକାଳ ପ୍ରକାଶ ପାଇଥିଲା । ସେହି ବୟସରୁ ଗଳ୍ପ ଓ କବିତା, ପ୍ରବନ୍ଧ, କଥୋପକଥନ ଓ ଦିନଲିପିଗୁଡ଼ିକୁ ଘେନି ମୋର ସାହିତ୍ୟିକ ଜୀବନର ବିଭିନ୍ନ ଦିଗରେ ପରୀକ୍ଷା ନିରୀକ୍ଷାରେ ଆରମ୍ଭ । ପୁଣି ଏହି ସମୟରେ ଅଗ୍ରଣୀ କବି ସାହିତ୍ୟିକମାନଙ୍କ ସହିତ ପରିଚୟର ସୁଯୋଗ ମଧ ପୂରୀଠାରେ ଆମକୁ ମିଳିଥାଏ ।

ନିଜ ଘରେ ମୋର ଜ୍ୟେଷ୍ଠଭ୍ରାତା ଦିବ୍ୟସିଂହ ଓ ତାଙ୍କର ସମସାମୟିକ କବି ପଦ୍ମଚରଣ ପଟ୍ଟନାୟକଙ୍କଠାରୁ ସାହିତ୍ୟ-ପ୍ରେରଣା ଲାଭ କରିବାର ସୁଯୋଗ ପାଏଁ । ଘର ଭିତରେ ବାପା ମଧ ସାହିତ୍ୟିକ—ସେ ଦର୍ଶନ ଓ ଧର୍ମସାହିତ୍ୟ କ୍ଷେତ୍ରରେ ଚିନ୍ତା-ଗବେଷଣା କରନ୍ତି । ମାସ ପରେ ମାସ 'ଉତ୍କଳ ସାହିତ୍ୟ' ଓ 'ମୁକୁର' ପତ୍ରିକା ଆମ ଭିତରେ ସାହିତ୍ୟର ନୂତନ ସନ୍ଦେଶ ବହନ କରି ଆଣେ । ବହନ କରି ଆଣେ କେତେ ବିଚିତ୍ର କୌତୂହଳର ଉଦ୍ଦୀପନ, କେତେ ନିବିଡ଼ ରହସ୍ୟର ଉଦ୍‌ଘାଟନ !

ପ୍ରତ୍ୟକ୍ଷ ଭାବରେ ଅବଶ୍ୟ ସେତେବେଳେ ମୋର ଜ୍ୟେଷ୍ଠ ଦିବ୍ୟସିଂହଙ୍କଠାରୁ ଉତ୍ସାହ ପାଇବାରୁ ମୁଁ ବଞ୍ଚିତ ହୁଏଁ । ବଙ୍ଗ କ୍ଲାସରେ ଭଲ ନମ୍ବର ରଖି ପ୍ରଥମ ଶ୍ରେଣୀରେ ପାସ୍ କରିବାପାଇଁ ସେ ବରାବର ମୋତେ କୋଚଲାଉ ଥିଲେ । ଆଶ୍ଚର୍ଯ୍ୟ ! ସେ ନିଜେ ତ ଜଣେ 'ଉତ୍କଳ ସାହିତ୍ୟ'ର ଧାରାବାହିକ ଗଳ୍ପଲେଖକ, ଆଉ ସେଇଥିପାଇଁ ତାଙ୍କର ବହୁମୁଖରେ ପ୍ରଶଂସା ! ଅଥଚ ମୋ ବେଳକୁ ଏମିତି କାହିଁକି ସେ ? ବୁଝିପାରେଁ ନାହିଁ ମୋର ଅଗ୍ରଜଙ୍କର ରୀତିନୀତି—''କୃପା କଟାକ୍ଷ କାହିଁକି, ମୋ ବେଳକୁ ଗଲ ଶୁଖି ! ଜାଣିଲି ମୋ କର୍ମ ମନ୍ଦ ନୁହେଁ ସଳଖ !'' 'ଉତ୍କଳ ସାହିତ୍ୟ' ଭଳି ସେତେବେଳର ଶୀର୍ଷସ୍ଥାନୀୟ ଓଡ଼ିଆ ପତ୍ରିକାରେ ମୋର କ୍ଷୁଦ୍ରଗଳ୍ପ ପ୍ରଥମ ପ୍ରକାଶ ପାଇଛି । ସ୍କୁଲରେ ବନ୍ଧୁ ଓ ଶିକ୍ଷକ ମହଲରୁ ପ୍ରଶଂସାର ଜୁଆର ଛୁଟେ; ଅଥଚ ଭାଇନା ନିଜେ ଜଣେ ଲେଖକ ହୋଇ ମୋ ପ୍ରତି ଏମିତି ବିମୁଖ କାହିଁକି ?

ପ୍ରସିଦ୍ଧ ଇଂରେଜ କବି ଉଇଲିୟମ୍ କୁପର (William Cowper) କୁ ବାପା ତାଙ୍କର ପିଲାଦିନେ ଏମିତି ଆକଟ କରନ୍ତି ପରା !କବିତା ରଚନାରେ ମାତିଲେ ପୁଅ ତ ସଂସାରକ୍ଷେତ୍ରରେ ଅକର୍ମଣ୍ୟ ହୋଇପଡ଼ିବ । ଏଇ ଆଶଙ୍କାରେ ତାଙ୍କୁ ଯେବେ ସେ ନିଷ୍ଠୁର ପ୍ରହାର କରନ୍ତି, ବାଳକ ଉଇଲିୟମ୍ କୁପରଙ୍କ କରଯୋଡ଼ି ବାପାଙ୍କୁ ଅନୁନୟ—

Papa ! Papa ! Bity take !!
I shall never verses make !

(ଦୟାକର ବାପା ଦୟାଥାଉ, ଗୀତ ନ ଯୋଡ଼ିବି କେବେ ଆଉ)

ହତଭାଗ୍ୟ କବି ବିଚାରା ! କିନ୍ତୁ ସେ ଯେ ନିରୁପାୟ ନାଚାର ! ତାହାର ଉଦ୍ଧାରପନ୍ଥା କାହିଁ ? କ୍ଷମା ମାଗୁଛି ଯେଉଁଥିପାଇଁ, ତାହା ଭାଷା ସୁଦ୍ଧା ପାଲଟିଯାଏ କବିତାରେ !

ସବୁ ଆକଟ ସେମିତି ମୋର ବାହାରିଯାଏ ଏ କାନରେ ପଶି ସେ କାନରେ । ଲେଖାର ଗତି ରହେ ଅପ୍ରତିହତ; ଯଦିବା 'ଉତ୍କଳ ସାହିତ୍ୟ' ପତ୍ରିକାରେ ତାହା ପ୍ରକାଶ ପାଇବା ସମ୍ଭବପର ହୁଏ ନାହିଁ । ବହୁ ଚେଷ୍ଟା ପରେ ଯେଉଁ ଗଳ୍ପଟି ମୋତେ ଓ ଆଉ ସମସ୍ତଙ୍କୁ ଚମକାଇ ଦେଇ ପ୍ରକାଶ ପାଏ, ତାହାର ବିଷୟବସ୍ତୁ ଥିଲା—ଗୋଟିଏ ବାଳବିଧବାର ବିବାହ କାହାଣୀ ।

ବ୍ରାହ୍ମଣ-କୁଳରେ ଏହା ନିଷିଦ୍ଧ ହେଲେ ମଧ ବିବାହ କରି ନବଦମ୍ପତି ବ୍ରାହ୍ମଧର୍ମ ଗ୍ରହଣ କରନ୍ତି । 'ଉତ୍କଳ ସାହିତ୍ୟ'ର ସମ୍ପାଦକ ଓ ପ୍ରସିଦ୍ଧ ସମାଜ ସଂସ୍କାରକ ସୁପଣ୍ଡିତ ଶ୍ରୀ ବିଶ୍ୱନାଥ

କର ମହାଶୟଙ୍କୁ ଏହା ସୁଖଲାଗିବ ବୋଲି ମୁଁ କୌଶଳକ୍ରମେ ଗଳ୍ପଟିର ବିଷୟବସ୍ତୁକୁ ବାଛିଥାଏଁ । ନିରପରାଧ ବାଳବିଧବା ଉପରେ ସାମାଜିକ ଅନ୍ୟାୟକୁ କରିଥାଏଁ ତୀବ୍ର କଟାକ୍ଷ ।

ବିଶ୍ୱନାଥବାବୁ ଥିଲେ ଓଡ଼ିଶାରେ ପ୍ରସିଦ୍ଧ ସମାଜ-ସଂସ୍କାରବାଦୀ ଅଦ୍ୱୈତ ବ୍ରାହ୍ମମତର ପୁରୋଧା । ଫଳରେ ମଧ ଦେଖିଲି—ଯୋଜନା ମୋର ସାଫଲ୍ୟମଣ୍ଡିତ ! ଗଳ୍ପଟି ପ୍ରକାଶ ପାଇଛି ସୁବିଖ୍ୟାତ 'ଉତ୍କଳ ସାହିତ୍ୟ' ପତ୍ରିକାରେ । ପରିଚିତ ଅପରିଚିତ ବାଟରେ ଘାଟରେ ଯେ ଦେଖିଲେ, ମୋ ଗଳ୍ପ ବିଷୟ ଉଲ୍ଲେଖ କରନ୍ତି; ଛାତ୍ର ପୁଣି ଶିକ୍ଷକ ମହଲରୁ ମଧ ଆଶାତୀତ ଉଚ୍ଛ୍ୱସିତ ପ୍ରଶଂସା ! ସବୁରି ଭିତରେ ମୁଁ ହିଁ ବାରି ହୋଇପଡ଼େଁ ଏକମାତ୍ର ନାମଜାଦା ଲେଖକ ରୂପେ । ମୋର ଶିକ୍ଷକ ପଣ୍ଡିତମାନେ ସମସ୍ତେ ପ୍ରାୟ ପୁରୀ ଶାସନବାଡ଼ର ବ୍ରାହ୍ମଣ ହେଲେହେଁ ବାଳବିଧବାର ଦୁଃଖକୁ ଯେପରି ମୁଁ ହୃଦୟଗ୍ରାହୀ କରି ଚିତ୍ରି ଥାଏଁ, ତହିଁରେ ସେମାନଙ୍କର ସହାନୁଭୂତି ମଧ ଆକର୍ଷଣ କରେଁ । କାରଣ ବୋଧହୁଏ ଶାସନବାଡ଼ର ଅପର୍ଯ୍ୟାପ୍ତ ସୌନ୍ଦର୍ଯ୍ୟ ହିଁ ସେତେବେଳେ କରୁଣ ହୋଇଉଠେ ନିରାଭରଣ ବାଲ୍ୟ ବୈଧବ୍ୟହେତୁ ମାତା-ପିତା ବନ୍ଧୁସ୍ୱଜନଙ୍କ ଦୁଃଖ-ଶୋକରେ ।



# ଯଥା ରାବଣସ୍ୟ ମନ୍ଦୋଦରୀ

*ଗୋଟିଏ ପ୍ରବଚନ—* କହି ଦେଉଥାଇ ପରକୁ ।
ବୁଦ୍ଧି ନ ଦିଶଇ ଘରକୁ ॥

ଲେଖକ ଯାହା ଲେଖନ୍ତି, ନିଜ ଜୀବନରେ ତାହାର ପ୍ରତିପାଳନ କରିବା ଯେ ତାଙ୍କ ପକ୍ଷରେ ସମ୍ଭବପର ହୁଏ ନାହିଁ; ପୁଣି କେବଳ ପରକୁ ଉପଦେଶ ଦେବାରେ ଯେ ପାଣ୍ଡିତ୍ୟ ପ୍ରକାଶ ପାଇଥାଏ—ଏକଥାଟା ନିଶ୍ଚୟ ବହୁ ଅଭିଜ୍ଞତାରୁ ଆସିଛି । ମୋର ଗଳ୍ପ-ରଚନାରେ ପୁଣି କବିତାରେ ବୈଧବ୍ୟର ଦୁଃଖ ବର୍ଣ୍ଣନା କରିବାଦ୍ୱାରା ବିଧବା-ବିବାହର ସମର୍ଥକ ହୋଇ ମଧ ମୁଁ ଯେଉଁ ଆଦର୍ଶ ଏହି କ୍ଷେତ୍ରରେ ନିଜେ ଦେଖାଇଥାଏଁ, ତାହା ସମ୍ପୂର୍ଣ୍ଣ ବିପରୀତ, ଅର୍ଥାତ୍ ଏକାବେଳେ ନିପଟ ନିସ୍ତେଜ ବାଲ୍ୟବିବାହର ଆଦର୍ଶ ।

ସେତେବେଳେ ମୋର ବିବାହ ପ୍ରସ୍ତାବ ଆସେ କେତେକ ସ୍ଥାନରୁ, ତହୁଁ ଚାଲେ ଗତାନୁଗତିକ ଜାତକ-ଦେଖା ବା ଟିପଣା ସୁଝିବା ପର୍ବ । ସର୍ବ ଶେଷରେ ପୁରୀ ଦୋଳମଣ୍ଡପ ସାହିରେ ସ୍ଥିର ହୁଏ । ସେତେବେଳେ ତ ବାପା କଚେରି କାମ ଛାଡ଼ି ଦେଇଥାନ୍ତି । କଚେରି ତାଙ୍କର ବସେ କିନ୍ତୁ ଏହି ଟିପଣା ସୁଝିବା କାର୍ଯ୍ୟରେ । ତାଙ୍କର ଜଣେ ଘନିଷ୍ଠ ବନ୍ଧୁ କୁମ୍ଭାରପଡ଼ାର ସଦେଇବାବୁ; ସଦେଇବାବୁ ମୋର ଟିପଣା ଦେଖି ମତ ଦିଅନ୍ତି ଯେ, ଏ ବିବାହ ହୋଇ ନ ପାରେ । କାରଣ ହେଲା-ନାଗନାଡ଼ି ଷଡ଼ାଷ୍ଟକ, ଅତଏବ ମୋ ପକ୍ଷରେ କୌଣସି

ବିପଦ ଥାଉ କି ନ ଥାଉ, କନ୍ୟାପକ୍ଷରେ ତୁରନ୍ତ ବୈଧବ୍ୟଯୋଗ ସୁନିଶ୍ଚିତ; ଏହା ଅନ୍ୟଥା କରିପାରନ୍ତି, ନ ବ୍ରହ୍ମା ଶଙ୍କରୋ ହରିଃ ।

ସଦେଇବାବୁ ତ ବାପାଙ୍କର ଏକାନ୍ତ ବନ୍ଧୁ, ପଡ଼ୋଶୀ ଭାବରେ ମଧ୍ୟ ଆମ ଗାଁ ମାଖର କୁମ୍ଭାରପଡ଼ା ତାଙ୍କ ବାସସ୍ଥାନ । ତାଙ୍କ କଥା ତ କଦାପି ଅନ୍ୟଥା ହୋଇ ନପାରେ ! ବିବାହର ଏତେ ଆୟୋଜନ କଳ୍ପନା ଜଳ୍ପନା ଆନନ୍ଦ ଉଲ୍ଲାସ ! ତା' ଭିତରେ ସଦେଇବାବୁଙ୍କର ଟିପ୍ପଣୀ ଉପରେ ରାୟ !—ପୂର୍ଣ୍ଣିମା ରାତ୍ରରେ ବଜ୍ରପାତ ଭଳି ବୋଧହେଲା ପ୍ରଚଣ୍ଡ ବିପଦ ।

ବାପାଙ୍କର ତତ୍ପରତା ମଧ୍ୟ ବହୁଗୁଣିତ ହୁଏ । ବୋଉଙ୍କ ସହିତ ଦିନରାତି ପରାମର୍ଶ ଚାଲେ ଘନ ଘନ । ଶେଷରେ ଯେଉଁ ଜ୍ୟୋତିଷୀ କୃଷ୍ଣ ଦାସ ଏ ବିବାହକୁ ମଞ୍ଜୁର କରିଥିଲେ, ତାଙ୍କରି ପାଖକୁ ଧାଁଧପଡ଼ । ସମସ୍ତ କଥା ଶୁଣି ସେ କିନ୍ତୁ ହସରେ ଉଡ଼ାଇ ଦେଇ କହିଲେ ଯେ, ଦୁଇଟି କୋଷ୍ଠୀରେ ତ ଲେଖୁଛି ରାଜଜୋଟକ !

ହଁ–ରା–ଜ–ଜୋ–ଟ–କ ! ରାଜଯୋଟକ ଥିଲେ ଯେ ଆଉ ସବୁ ବିଘ୍ନ ଖଡ଼େ ଖଡ଼େ ବାତିଲ । ରାଜଯୋଟକ ପାଖରେ ପୁଣି ନାଗନାଡ଼ୀ ଷଡ଼ାଷ୍ଟକର କି କରାମତି ? ସେହି ସମୟରେ ଆମେ ଥାଉଁ ପୁରୀ ସଦରଥାନା ଗଳି ବିଖ୍ୟାତ ଆଇନଜୀବୀ ମୁକ୍ତିଆର ସ୍ୱର୍ଗତ ଉପେନ୍ଦ୍ର କରଙ୍କର ପଡ଼ୋଶୀ ହୋଇ ଗୋଟିଏ ଭଡ଼ାଘରେ । ଉପେନ୍ଦ୍ରବାବୁ ମଧ୍ୟ ଏହି ଜାତକ ଦେଖା ମାମଲାରେ କିଛି କିଛି ଅଂଶ ଗ୍ରହଣ କରୁଥାନ୍ତି । ରାଜଯୋଟକ ଯେ ସୁପ୍ରିମକୋର୍ଟର ରାୟ—ଏଥିରେ ସେ ମଧ୍ୟ ହେଲେ ଏକମତ ।

ଗୌରକାନ୍ତି, ସ୍ପଷ୍ଟବାଦୀ ସଦା ସହାସ୍ୟ ଉପେନ୍ଦ୍ରବାବୁଙ୍କର ମୁହଁ ଏବେ ମଧ୍ୟ ନାଚିଯାଉଛି ଆଖି ଆଗରେ । ପୋଲିସ ଇନ୍‌ସ୍ପେକ୍ଟର ସୁଦର୍ଶନବାବୁ ଆସନ୍ତି, ଆସନ୍ତି ପୁଣି କଠାଉ ଠକ୍ ଠକ୍ କରି ଗେରୁଆ ପିନ୍ଧା ରୁଦ୍ରାକ୍ଷମାଳି ବେକରେ ପଣ୍ଡିତ ମହାଶୟ— 'ଓକିଲାଃ ଭୋକିଲାଃ ସର୍ବେ' ଶ୍ଳୋକ ବୋଲି । ଆହୁରି ଆସନ୍ତି ଲମ୍ବା ଓଭରକୋଟ ଶୀତଦିନେ ପିନ୍ଧି ସାକ୍ଷୀଗୋପାଳରୁ ସାଙ୍ଗସାଥୀ ସହିତ ଗୋପବନ୍ଧୁ, ହସକୌତୁକରେ ଦାଣ୍ଡ ଫଟାଇ—ପୁଣି ସାଇକଲ ଚଢ଼ି, ମୁଣ୍ଡରେ ଠେକାଭିଡ଼ି ଆଚାର୍ଯ୍ୟ ହରିହର !

ଉପେନ୍ଦ୍ରବାବୁ ମୋତେ ତାଙ୍କ ସାନଭାଇ ପରି ସ୍ନେହ ଚକ୍ଷୁରେ ଦେଖୁଥିଲେ—ସେହିପରି ଉଭୟ ପରିବାର ଭିତରେ ମଧ୍ୟ ସମ୍ପର୍କ ଓ ସହୃଦୟତା—ଗୋଟାଏ ଘର ଭଳି ଚଳବିଚଳ ।

ବାପାବୋଉଙ୍କ ମନ ଆହୁରି ଖୁସି ହୋଇଉଠେ । ବାରମ୍ବାର ତାଙ୍କ ବନ୍ଧୁଙ୍କର ଭ୍ରମ ସ୍ୱୀକାର କରି ବାପା ଏହି ଜାତକ-ଗଳ୍ପର ପୁନରାବୃତ୍ତି କରୁଥାନ୍ତି । ଯଥାବିଧି ନିର୍ବନ୍ଧ, ଦିଅଁ-ନିମନ୍ତ୍ରଣ, ବନ୍ଧୁ-ନିମନ୍ତ୍ରଣ, ଗୁଆ-ମହାପ୍ରସାଦ ଚାଳିତ ହୁଏ ଚତୁର୍ଦ୍ଦିଗକୁ । ତହୁଁ ଚାଲେ ବିବାହ ଆୟୋଜନ-ଭଉଣୀମାନେ ଆସନ୍ତି ଆଗରୁ ଲୋଡ଼ା ହୋଇ । ପିଇସୀପୁଅ ଭାଇ ଭୋବନି ଭାଇନା ଆସନ୍ତି ଗାଁଆରୁ ଚୂଡ଼ା, ଚାଉଳ, ପନିପରିବା ଓଗେର ଧରି—ପୁଣି ନାହାକ ଶଙ୍ଖୁଆ ଯଥାକ୍ରମେ ପାଞ୍ଜି ଓ ଶଙ୍ଖ ହାତରେ, ବାରିକ ଆସେ ତା'ର ଖିଅର ସଜ ଘେନି । ଗାଁ-ହେତା ଜମିବାଡ଼ି ପାଇ ଆଗରୁ ସେସବୁ ଖଞ୍ଜା । ପଣ୍ଡା, ମାଳୀ ଯେଝା କାମରେ ସେ ନମଦ ।

ସେହିଠାରୁ ଭାଇନାଙ୍କର ଓକିଲାତି ବ୍ୟବସାୟରେ ଉନ୍ନତି ଘଟେ । ରାମଚଣ୍ଡୀ ସାହିରେ ଯେଉଁ ଭଡ଼ାଘରେ ଭାଇନାଙ୍କର, ମୋ'ର ପୁଣି ଭଗବତୀର ମଧ ସ୍କୁଲ ପାଠପଢ଼ା ହେଉଥିଲା, ସେହି ଜାଗାକୁ ଖରିଦ କରି ନୂଆ ଘର ତୋଳା ହୁଏ । ଅବଶ୍ୟ ଘରଟି ସାନ ଓ ଆମର ମିଳିତ ପରିବାର ପକ୍ଷରେ ଯଥେଷ୍ଟ ନ ଥିଲା ସେତେବେଳେ ।

ସଦର-ଥାନା ଭଡ଼ା ଘରେ ଥିବାବେଳେ ମୋ'ର ଯେ ବିବାହ ପୁରୀ ସହରରେ ସମାପନ କରାଗଲା, ତାହା ଆମ ପରିବାର ଇତିହାସରେ ସର୍ବପ୍ରଥମ । ସେ ପର୍ଯ୍ୟନ୍ତ ଗାଁରୁ କିମ୍ବା ଆମ ଘରୁ ଆଉ କେହି ସହରରେ ବିବାହ କରି ନଥିଲେ । ଅବଶ୍ୟ ବରଯାତ୍ରୀମାନେ ଆସିଥାନ୍ତି ଗାଁରୁ; ଆଉ ଭଉଣୀ ଭିଣୋଇ ପ୍ରଭୃତି ସେମିତି ଗାଁମାନଙ୍କରେ ରହୁଥିବାରୁ ସେଇଠୁଁ ଆସନ୍ତି ଲୋଡ଼ା ହୋଇ । ମୋର ଶ୍ୱଶୁରଙ୍କ ଜନ୍ମସ୍ଥାନ ସେମିତି କଟକ ଜିଲ୍ଲାର ଗୋଟିଏ ଗାଁ ଚାନ୍ଦପୁର ହେଲେ ମଧ ସେଠାରୁ ଆସି ସେ ପୁରୀରେ ବ୍ୟବସାୟ ଓ ବସବାସ କରିଥାନ୍ତି ।

ଉଭୟ ପକ୍ଷର ମୂଳ ବାସସ୍ଥାନ ମଫସଲ ହେଲେ ହେଁ ସହରରେ ବିଭାଘର । ପୁଣି ମୋର ଶ୍ୱଶୁର ସ୍ୱର୍ଗତ ବନମାଳୀ କର ପୁରୀର ଜଣେ ପ୍ରସିଦ୍ଧ ବ୍ୟବସାୟୀ । ଖୁବ୍ ରୋଶଣି ଓ ଜାକଜମକରେ ବିବାହର ଆୟୋଜନ । ଏଇ ବିରାଟ ନାଟକର ପ୍ରଧାନ ନାୟକ ଏକା ମୁଁ । ମୋତେ ଦେଖିବାକୁ ଆଜି ସାରାସଂସାର ଉଦ୍‌ଗ୍ରୀବ । କବାଟ ଝରକା ସନ୍ଧିରୁ କେତେ ଯେ ଉତ୍ସୁକ ଆଖି, କେତେ ଯେ କୌତୂହଳ ଆବାଳବୃଦ୍ଧବନିତାଙ୍କର ! କେତେ ଭିଡ଼ ଠେଲାପେଲା ! ତହୁଁ ମନଟା ମଧ ମୋର କୁଣ୍ଢେମୋଟ ! ସାରା ଦୁନିଆରେ ଏକାଙ୍ଗ ଚକ୍ରବର୍ତ୍ତୀ ମୁଁ ।

ପୁରୀ ସଦର ଥାନା ଗଳିରୁ ବରଯାତ୍ରୀ ବାଜା ବର କାଠସହ ପୂର୍ବମୁଖା ହୋଇ ଶୁଭଯାତ୍ରାରମ୍ଭ । ସିଂହଦ୍ୱାରରୁ ଦୋଳମଣ୍ଡପ ସାହି ଭିତରକୁ ଚାହିଁଲେ ଦିଶୁଛି ଶ୍ୱଶୁର ଘର । ରୋଶଣିରେ ଚାଲିଥାନ୍ତି ଠାକୁରରାଜାଙ୍କ ହାତୀ, ପାହୁଲ ତାଳରେ ଘଣ୍ଟି ବଜାଇ ବାଦ୍ୟ ବଡ଼କାଠ ସହିତ । ହାତୀ ପିଠିରେ ପାଟଜରି ପୋଷାକ ଜକମକ ହେଉଥାଏ ସୂର୍ଯ୍ୟ କିରଣରେ । ସିଂହଦ୍ୱାର ନିକଟରେ ରୋଶଣି ଅଟକେ ପତିତପାବନଙ୍କ ଦର୍ଶନ ଲାଗି ।

ପାଲିଙ୍କି ପାଖରେ ଜଣ କେତେ ସ୍ତ୍ରୀ ପୁରୁଷ ଆସି ନିରୀକ୍ଷଣ କରୁଥାନ୍ତି ମୋତେ । ଆଉ ମୁଁ ମନେ ମନେ ଏହି ଉତ୍ସବ ନାଟ୍ୟର ପ୍ରଧାନ ନାୟକଭାବରେ ନିଶ୍ଚୟ ଫୁଲି ଉଠିଥାଏଁ ଗର୍ବରେ । ବାକିଥାଏ ଅବା ଖାଲି ଫାଟି ପଡ଼ିବାକୁ ! କବିସୂର୍ଯ୍ୟଙ୍କ ରଚନାରେ ଯେମିତି—
ଫାଟି ପଡ଼ିବାର ନିକୁଞ୍ଜ ସଞ୍ଚାର ଶ୍ରମୁ ମୋ' ଚରଣ ତଳ, ଫୁଲିଗଲୁ ଫୁଲ ଲଲାମ ରସିକା—

ଲକ୍ଷ୍ୟ କଲି, ଜଣେ ବୃଦ୍ଧା ଆସି ମୋ'ର ଆପାଦ ମସ୍ତକ ସମୁଦାୟ ଅଙ୍ଗକୁ କୌତୂହଳରେ ଚାହିଁ ଚାହିଁ ପାଲିଙ୍କିର ଏ ପାଖରୁ ସେ ପାଖକୁ ଯାଉଥାନ୍ତି—ଆଉ ଶେଷରେ ତାଙ୍କର ମନ୍ତବ୍ୟ ହେଲା—''ଛିଆରେ ! ଏଇ ବୁଢ଼ା ବରଟା ! ବନମାଳୀ କର ତାରପରା ଝିଅ ପାଇଁ ଶେଷରେ ଏମିତି ରୋଗଣା ବୁଢ଼ାଟାକୁ ଜ୍ୱାଇଁ କରିବାକୁ ବାଛିଲା । ଆଉ କ'ଣ ପାତ୍ର ମିଳିଲେ ନି କି କେଉଁଠାରେ !''

ଅଠର ବର୍ଷ ବୟସରୁ ମୁଁ ଯେ ବୁଢ଼ା ହୋଇଯାଇଛି, ମୋର ସାଡ଼ମ୍ବର ସୁସଜ୍ଜିତ ବରବେଶରେ ସୁଦ୍ଧା ଜଣେ ସାମାନ୍ୟ ବୃଦ୍ଧା ମୁଖରୁ ସେ କଥା ଶୁଣି ଦୁଃଖ, କ୍ରୋଧ ପୁଣି ଲଜ୍ଜାରେ

ମନେ ମନେ ଏଡ଼େ ଟିକେ ହୋଇ ପଡ଼ିଲି । ସେତେବେଳେ କିନ୍ତୁ ଶିବ ପାର୍ବତୀ ବିବାହର ପ୍ରାଚୀନ ବର୍ଣ୍ଣନା ମନେ ପଡ଼ିଥିଲେ ନିଶ୍ଚୟ ମୁଁ ହସିଥାନ୍ତି— 'ଭସ୍ମ କଉପୁନି ଶିରରେ ଜଟା' ଲୋଳିତଚର୍ମ ପଳିତମୁଣ୍ଡ ବୁଢ଼ା ବର ସହିତ 'ରାଜହଂସୈରିବ ସନ୍ନତାଙ୍ଗୀ ଶିରୀଷ ପୁଷ୍ପାଧିକ— ସୌକୁମାର୍ଯ୍ୟ' ରୂପସୀ ବଧୂ !

ବୃଦ୍ଧାଙ୍କର ମୋହ ପ୍ରତି ଏହି ମନ୍ତବ୍ୟର ଅବଶ୍ୟ କାରଣ ଥିଲା ଯଥେଷ୍ଟ । ଅଠର ବର୍ଷ ବୟସରେ ସ୍ୱାସ୍ଥ୍ୟ ଯେଭଳି ରହିବାର କଥା ତାହା ତୁଳନାରେ ମୁଁ ମଳିନ ଓ କ୍ଷୀଣ ଦୁର୍ବଳ ଥିଲି । ପୁଣି ମୋର ଶ୍ୱଶୁରଘରର ପୁତ୍ର କନ୍ୟାମାନେ ଯେଭଳି ହୃଷ୍ଟପୁଷ୍ଟ ଓ ବଳିଷ୍ଠ ହୋଇଥାନ୍ତି, ଯାହାକୁ କହନ୍ତି—ଦେହରୁ ମାଛି ଖସିପଡ଼ିଲା ଭଳି ଚେହେରା । ସେମାନଙ୍କ ସହିତ ସମାନ ଭାବରେ ମିଶିବା ବସିବା ପାଇଁ ମୋର ଶାରୀରିକ ସମ୍ବଳର ଅଭାବ ଥିଲା ଅନେକ ।

ପୁଣି ସେତେବେଳେ ବ୍ରାହ୍ମଣ ପରିବାରରେ ଏତେ ବେଶି ବୟସରେ ବୋଧହୁଏ ଅଳ୍ପ କେତେ ଜଣ ହତଭାଗ୍ୟ ବିବାହ କରୁଥିଲେ ମୋହ ଭଳି । ଆଉ ମୋର ସ୍ତ୍ରୀଙ୍କ ବୟସ ଥିଲା 'ଗର୍ଭ-ନଅବର୍ଷ' ମାତ୍ର; ଅର୍ଥାତ୍ ଯେଉଁଦିନୁ ସେ ମାତୃଗର୍ଭକୁ ଆସିଲେ । ଗର୍ଭରୁ ତା'ପରେ କ୍ରୋଡ଼କୁ ଆସିବା ଦିନୁଁ ବୟସ ଆଠ । 'ଯୋଡ଼ା' ବର୍ଷରେ ବିବାହ ନିଷିଦ୍ଧ ବୋଲି ସୁବିଧା ଦେଖି ଏଭଳି ବୟସ-ଗଣନାର ପ୍ରଥା ଅଛି, ପ୍ରଚଳିତ ପୋଥିରେ ।

ପରବର୍ତ୍ତୀ କାଳରେ ଦେଖାଗଲା ଶ୍ୱଶୁରଙ୍କ ବଂଶଧରମାନେ ଶାରୀରିକ ଆୟତନରେ ଆମ ପରିବାର ସହିତ ପ୍ରାୟ ସମାନ ହୋଇପଡ଼ିଛନ୍ତି । ବୈବାହିକ ଜୀବନରେ ସେଇ ସ୍ୱପ୍ନ ମୋର ଅବଶ୍ୟ ଅଳ୍ପ କାଳ ପାଇଁ ରହେ । 'ଅଷ୍ଟବର୍ଷାତ୍ ଭବେଦ୍ ଗୌରୀ'ଙ୍କ ସହିତ ମୋର ଚିଠିପତ୍ର ଦେଖା ସାକ୍ଷାତ୍ ସବୁ ସେତେବେଳେ ବିନିମୟ ହୁଏ କେବଳ ସିନା ସପ୍ନରେ— ବାସ୍ତବ ସମ୍ଭାବନା ନଥିବା ହେତୁ । ପରେ କିନ୍ତୁ ସେ ସପ୍ନ ନିର୍ମମ ବାସ୍ତବତାରେ ପରିଣତ ହୁଏ । ସମ୍ମୁଖରେ ମୋର ଉଭା ହୁଏ ଆସି ସଂସାରିକ ଦାୟିତ୍ୱ ତୁଲାଇବାର କର୍ତ୍ତବ୍ୟ ।

ସେଇ କର୍ତ୍ତବ୍ୟ-ବୋଧଟା କିନ୍ତୁ ଆଜି ସୁଦ୍ଧା ମୋର ଆସିଛି କି ନାହିଁ, ତାହା ବୁଝିବାକୁ ମୁଁ ଅକ୍ଷମ । ଅର୍ଥାତ୍ ବୟସ ବିଚାରରୁ କେତେ ଲୋକଙ୍କର ବୃଦ୍ଧାବସ୍ଥାରେ ସୁଦ୍ଧା ନାଁବାଳକୀ ଦୂର ହୁଏ ନାହିଁ ବୋଲି ଯେଉଁ ବ୍ୟଙ୍ଗୋକ୍ତି ରହିଛି, ସେଇ ଶ୍ରେଣୀରେ ନିଜକୁ ଅନ୍ତର୍ଭୁକ୍ତ କଲାଭଳି ନଗଦ ଦୃଷ୍ଟାନ୍ତ ସବୁର ଅଭାବ କିଛି ତ କମ୍ ନୁହେଁ ମୋହ ପକ୍ଷରେ ! ଆଜି ମଧ କିଛି କମ୍ ଭୁଲଭ୍ରାନ୍ତି ବିଚାର-ବିଭ୍ରାଟର ଶିକାର ହୁଏ ନାହିଁ ତ ମୁଁ !

ବାଲ୍ୟବିବାହ ପରେ ଯେଉଁ ଦୂର୍ବାକ୍ଷତ ଆଶୀର୍ବାଦ ପର୍ବ ସେତେବେଳେ ଅନୁଷ୍ଠିତ ହେଉଥିଲା, ସେଇ ଉତ୍ସବ ଲାଗି ମୋତେ ସୁଦୀର୍ଘ ଚାରିଟି ବର୍ଷର ଉଦ୍‌ବେଗ ଉତ୍କଣ୍ଠା ଜୀର୍ଣ୍ଣ କରିବାକୁ ପଡ଼ିଥିଲା—ସେଥି ସଙ୍ଗେ ହୁଏ ତ କିଛି ଖୋରାକ ମିଳେ କଳ୍ପନାର, କବିତା କିମ୍ବା ଗଳ୍ପର । ପୁଣି ଯେଉଁ ତରୁଣ ବୟସର ଉତ୍କଣ୍ଠା ଉଦ୍‌ବେଗର ପ୍ରକୋପରେ ହୁଏତ ବାର୍ଦ୍ଧକ୍ୟର ସନ୍ନିକଟ ହୋଇସୁଦ୍ଧା ହୃଦ୍‌ରୋଗରେ ମୁଁ ମାସ ମାସ ଶଯ୍ୟାଶାୟୀ ହୁଏଁ । ଆଉ ସେଇ ଉତ୍କଟ ଉତ୍କଣ୍ଠା ଫଳରେ ସାଧାରଣ ଭାବପ୍ରବଣତା ମୋର ଅଧିକ ଉଜ୍ଜୀବିତ ଉତ୍ତେଜିତ ହୋଇଥିଲା

କି କ'ଣ ! ସେ ସବୁର ପ୍ରକାଶ ଭଙ୍ଗିରେ ମଧ୍ୟ ସେମିତି ମୋର ମସ୍ତିଷ୍କ ବିକୃତିର ବହୁ ଲକ୍ଷଣ ଆଜି ଲକ୍ଷ୍ୟ କରାଯାଇପାରେ ହୁଏତ !

ଉତ୍କଣ୍ଠାକୁ କେବଳ ବିରହ ବିଚ୍ଛେଦ ଲାଗି ଦାୟୀ ନ କରି ପାଠ ଓ ପରୀକ୍ଷା ପୁଣି ଅନ୍ଧକାରମୟ ଭବିଷ୍ୟତର ଭୟ-ଉଦ୍‌ବେଗକୁ ମଧ୍ୟ ହିସାବ ଭିତରେ ନେବା ଉଚିତ । ଆଜି ସୁଦ୍ଧା ଜୀବନର ଶେଷ ପର୍ଯ୍ୟାୟରେ ସେହି ଘୋର ତିମିରାଚ୍ଛନ୍ନ ଅନ୍ତିମତାର ଅଜ୍ଞତା ଭୟ ରୂପରେ କଣ୍ଠରୁଦ୍ଧ କରି ଅଣନିଃଶ୍ୱାସୀ କରି, ହୃତ୍‌ପିଣ୍ଡ କ୍ରିୟାକୁ ନିସ୍ତବ୍ଧ ନିଷ୍କଳ କରିଦେବା ଭୟ ପ୍ରତି ମୁହୂର୍ତ୍ତରେ ରହିଥିଲେ ହେଁ ଏଣିକି ଯେମିତି ଗୋଟାଏ କ୍ୟାପରବାୟ ଭାବ ଆସି ଗଲାଣି । ମନେହେଲାଣି ଉଦ୍‌ବେଗ ଉତ୍କଣ୍ଠା ହିଁ ଜୀବନର ଲକ୍ଷଣ । ତାହାର ଅବସାନ ଅର୍ଥ ଜୀବନ ପ୍ରବାହର କ୍ଷୀଣତା । ଅଥଚ କେତେ ସହଳ ଆସିଯାଏ ବୟସର ବାର୍ଦ୍ଧକ୍ୟ ! ମନଟା ଯାହା ତାକୁ ନ ମାନିବାକୁ ଲୋଡ଼େ ଖାଲି ଗାଲୁଭୁରୁଡ଼ିରେ ସିନା !

ବିବାହ ପରେ ପୁନର୍ବିବାହ ଲାଗି ଅପେକ୍ଷା କରିବାକୁ ହୁଏ ସୁଦୀର୍ଘ ଚାରିଟି ବର୍ଷ । 'ବିଭାଘର' ପରେ ଏହାର ନାମ ଦୂର୍ବାକ୍ଷତ 'ଆଶୀର୍ବାଦଘର' । ଆହୁରି କେତେ ମନଗଢ଼ା ଇଂରାଜୀ ଶବ୍ଦଭଳି ଇଂରାଜୀ ଶିକ୍ଷିତମାନେ ଏହାକୁ (Remarriage) ଆଖ୍ୟା ଦେଇଥାନ୍ତି । ଆକାଂକ୍ଷା ଔତ୍ସୁକ୍ୟ ଉଦ୍‌ବେଗ ଉତ୍‌କଣ୍ଠାର ଚାରିଶତାବ୍ଦୀ ଭଳି ଚାରିଟି ବର୍ଷ (୩୬୫×୪) = ୧୪୬୦ ଦିନ ! ପୁଣି ଦିନରାତି ମିଶି ୨୪ ଘଣ୍ଟା ! ସେକ୍‌ସପିଅର କାଳିଦାସଙ୍କଠୁଁ ଆରମ୍ଭ କରି ଭଞ୍ଜ କବିସୂର୍ଯ୍ୟଙ୍କ ପର୍ଯ୍ୟନ୍ତ କାହାକୁ ଆଉ କେଉଁଠୁ ମିଳନ୍ତା ପ୍ରେରଣା ? ସୀତାରାମ, ରାଧେକୃଷ୍ଣ, ଯୁଗେ ଯୁଗେ ଯୁଗଳମୂର୍ତ୍ତିର ବିରହ-ମିଳନ ଭିତରେ ସାହିତ୍ୟ ପ୍ରେରଣାର ଚୂଡ଼ାନ୍ତ ଉତ୍ସ ପ୍ରକୃତି—ପୁରୁଷର ଗହନ ବ୍ୟାଖ୍ୟା ଆସନ୍ତା କାହୁଁ ? ପ୍ରାକୃତ ପ୍ରେମ, ଅପ୍ରାକୃତ ପ୍ରେମ, ଦେଶପ୍ରେମ, ଜାତିପ୍ରେମ—ସେଇ ପ୍ରେମରୁ ପୁଣି ପ୍ରଳୟ— ।

ମୋର ଏଇ ଦ୍ୱନ୍ଦ୍ୱ ଉତ୍କଣ୍ଠା ଭିତରେ ମଧ୍ୟ ପ୍ରଳୟଙ୍କରୀ ବିଦ୍ରୋହ ବିପ୍ଳବର ଏକ ଝଡ଼ ବୋହୁଥାଏ—ପ୍ରବଳ ଝଡ଼ । ମଣିଷର ଚିନ୍ତନ ଉପମହାଦେଶ ଏଇ ଭାରତବର୍ଷର ଆକୁମାରୀ ହିମାଳୟ ସେଇ ଝଡ଼ର ପ୍ରକୋପରେ ଧ୍ୱସ୍ତବିପର୍ଯ୍ୟସ୍ତ ହେବା ଉପକ୍ରମ କରିଥାଏ । ପୁଣି ପୃଥିବୀବ୍ୟାପୀ ସାମ୍ରାଜ୍ୟବାଦକୁ ନିଶ୍ଚିହ୍ନ ନିର୍ମୂଳ କରିବାପାଇଁ କେବଳ ନୀତିହୀନ ଯୁକ୍ତିହୀନ ବିଚାରଶୂନ୍ୟ ପାଶବିକ ଶକ୍ତିଘେନି ରାକ୍ଷସୀ ଜବରଦସ୍ତି ବଳରେ ମଣିଷ ଉପରେ ମଣିଷର ଅବିଚାର ଅନ୍ୟାୟ ଅତ୍ୟାଚାରକୁ ନୀରବରେ ମୁଣ୍ଡ ନୁଆଁଇ ସହିଯିବା ବିରୋଧରେ ଏକ ସ୍ୱର ଟେକିଥାଏ ପ୍ରଚଣ୍ଡ ଅଖଣ୍ଡ ମେଘମଲ୍ଲାର—ସ୍ୱର ଉଠିଥାଏ ଅବା ପୃଥିବୀପୃଷ୍ଠରେ ଦିବସରାତ୍ରିର ଆଲୋକ ଅନ୍ଧାର ପ୍ରତି ପୃଷ୍ଠାରେ ।



# ଜଗବନ୍ଧୁ ଓ ଗୋପବନ୍ଧୁ

ପ୍ରଥମ ପୃଥିବୀ-ମହାସମର ହିଁ ଉଠାଏ ସେଇ ସ୍ୱର-ମୂର୍ଚ୍ଛନା, ସାମ୍ରାଜ୍ୟବାଦର ଉଚ୍ଛେଦ ବିରୋଧରେ ପ୍ରଚଣ୍ଡ ସ୍ୱର-ଧରାବକ୍ଷର କୋଟି କୋଟି ଦଳିତ ନିଷ୍ପେଷିତ ନରନାରୀଙ୍କର ପ୍ରଳୟଙ୍କର ଚିତ୍କାର ହିଁ ସେଇ ସ୍ୱରର ସରୂପ ।

ବୈବାହିକ ଜୀବନର ପ୍ରଥମ ମିଳନ-ବିଚ୍ଛେଦ ସାଥିକୁ ଅଚ୍ଛେଦ୍ୟ ଅଦାହ୍ୟ ସାମ୍ରାଜ୍ୟବାଦୀ ଶକ୍ତିଗୋଷ୍ଠୀ ମଧ୍ୟରେ ବିଶ୍ୱବ୍ୟାପୀ ସଂଘର୍ଷ ଶତ୍ରୁତା । ଜାତି, ଧର୍ମ, ବର୍ଣ୍ଣ, ଭାଷା ଆଦି ଆଦିମ ବିଚାରରୁ ଦେଶ ଦେଶ ଜାତି ଜାତି ଭିତରେ ବିଭେଦ—ବ୍ୟକ୍ତିଗତ ଓ ବିଶ୍ୱଗତ ପାର୍ଥକ୍ୟ, ଈର୍ଷା, ଦ୍ୱେଷ, ହିଂସା, ଅସହନ ସ୍ୱଭାବ ଭିତରେ ଶୁଣାଯାଏ ପୁଣି ଆକୁମାରୀହିମାଳୟ ବିରାଟ ଭାରତର ମହା ମିଳନର ଉଦାତ୍ତ ବାଣୀ—ସେଇ ବାଣୀ ଭିତରେ ହିଁ ଆପଣାକୁ ବୁଡ଼ାଇଦେବା, ହଜାଇଦେବାର ଏକ ଅଭୂତପୂର୍ବ ବିପୁଳ ଆଗ୍ରହ । ସାମ୍ରାଜ୍ୟବାଦୀ ବିପୁଳ ଶକ୍ତିର ଶିକାର ହୋଇପଡ଼ିଥିବା ଦୁର୍ବଳ ନିଃସହାୟ ନିରୁପାୟ ନିରସ୍ତ୍ର ଭାରତବର୍ଷ—ଯୁଗଯୁଗବ୍ୟାପୀ ଯାହାକୁ ଛିନ୍ନଭିନ୍ନ ବିଦୀର୍ଣ୍ଣ କରିଦେବା ହୋଇଛି ବୈଦେଶିକ ଆମନ୍ତ୍ରଣକାରୀ ଓ ଆଭ୍ୟନ୍ତରୀଣ ପ୍ରତିକ୍ରିୟାଶୀଳ ଶକ୍ତିସମୂହର ଏକମାତ୍ର କାମ୍ୟ; କେବଳ ଶୋଷଣ ସାହାଯ୍ୟରେ ସାର୍ଥସିଦ୍ଧି ହାସଲ କରିବା ଉଦ୍ଦେଶ୍ୟରେ—ତାହାରି ବିରୋଧରେ ସ୍ୱର ଉତ୍ତୋଳନ କରିବାକୁ କି ଉପାଦାନ, କି ଉପାୟ ଅବା ଥାଇପାରେ ତା'ର ? ତଥାପି ଯେତିକି ଥାଇପାରେ, ତାହାରି ଉପଯୋଗ କରିବାକୁ ହିଁ ସେ ପ୍ରସ୍ତୁତ ହୁଏ । ଆକୁମାରୀ ହିମାଚଳ ଜନସମୁଦ୍ର ଭିତରେ ଖେଳିଉଠେ ସେଇ ପ୍ରେରଣା, କେବଳ ସେଇ ଏକଜୁଟ୍ ହେବାର ପ୍ରେରଣା—ଏକ ମନ ଏକ ପ୍ରାଣ ହେବାର ପ୍ରବଳ ଆଗ୍ରହ ।

ଜନତାର ସମ୍ମିଳିତ ଶକ୍ତିକୁ ଖାଲି ଟିକିଏ ଜଗାଇଦେବା–ଘମାଘୋଟ ଅନ୍ଧାର ଭିତରେ ପ୍ରାଣକୁ ଟିକିଏ ଟେକି ଦେବାପାଇଁ—ତୈଳହୀନ ଦୀପର କ୍ଷୀଣ ଦୁର୍ବଳ ଶୁଷ୍କ ସଳିତାକୁ ଟିକିଏ ଟେକି ମୁହୂର୍ତ୍ତକ ଲାଗି ସ୍ୱଚ୍ଛ ନିର୍ମଳ ଆଲୁଅ କରିଦେବାର ଉପାୟ । ଉପାୟଟା ମିଳିଯାଇଥାଏ ସେଇ ମୁହୂର୍ତ୍ତରେ । ସେଥିଲାଗି କାହାରି ପ୍ରତି ହିଂସା ନାହିଁ, ଦ୍ୱେଷ ନାହିଁ, ବାଦବିବାଦର ପ୍ରଶ୍ନ ନାହିଁ; ଖାଲି ସେଇ ଆଲୁଅଟିକୁ ଟେକି ଦେଇ ଆମେ ଆମର ଆତ୍ମନିରୀକ୍ଷଣ କରିବୁଁ । ଯୁଗଯୁଗର ଅତି ପୁରୁଣା, ବହୁ ଭାଷା, ବହୁଧର୍ମ, ବହୁ ଜାତି, ବହୁ ମତରେ ଖଣ୍ଡ ଖଣ୍ଡ ହୋଇ ପଡ଼ିରହିଥିବା ବିକ୍ଷତ ରୂପକୁ ଟିକିଏ ଚାହିଁବା, ଚିହ୍ନିବା—ସେହିଖଣ୍ଡଗୁଡ଼ିକୁ ମନେ ମନେ ଯୋଡ଼ିଯୋଡ଼ି । ମୁହୂର୍ତ୍ତକ ଲାଗି ଅଖଣ୍ଡ ରୂପରେ ଦର୍ଶନ କରିବାର ନିରୀହ ନିର୍ବେଦ ପ୍ରୟାସମାତ୍ର— ସେତିକିରେ ମିଳିଥାଏ ଘୋର ଅନ୍ଧକାର ଭିତରେ ମୃତ୍-ପ୍ରଦୀପର କ୍ଷୀଣ ଆଲୋକ-ଦୀପ୍ତ ଗମ୍ଭୀର ବେଷ୍ଟନୀରେ ପୂର୍ଣ୍ଣ ଦର୍ଶନ । ଉଚ୍ଛୁଳି ଉଠେ ଘଣ୍ଟାକାହାଳୀ ଶଙ୍ଖବାଦ୍ୟର ନିନାଦ । ନ୍ୟାୟଅନ୍ୟାୟ ସତମିଛର ତଉଲା, ନିଜ ଦେଶ ଯେ ନିଜ ଶାସନାଧୀନରେ ରହିବା

ସ୍ୱାଭାବିକ—ବିଦେଶୀ ଶାସନଟା ଅସ୍ୱାଭାବିକ । ଏଇ ସହଜ ସୂତ୍ରଟାର ପ୍ରମାଣ ଦେବାକୁ ଭାରତବ୍ୟାପୀ ସ୍କୁଲ କଲେଜ ଛାତ୍ରମାନେ ଶତସହସ୍ର ସଂଖ୍ୟାରେ ବାହାରି ଆସନ୍ତି ରାଜପଥକୁ । ଦେଶମାତୃକାର ଡାକରା—ସେ ଡାକ ଧ୍ୱନିତ ହୁଏ ନେତାମାନଙ୍କ ମୁଖରେ ।

ମୁଁ ଜଣେ ଭଲ ଛାତ୍ର ରୂପେ ପୁଣି କ୍ଲାସର ମନିଟର ରୂପେ ଚୁପ୍ ହୋଇ ରହନ୍ତି କିପରି ? ମୋ ପଛରେ ଚାଲିଲେ ଆମ କ୍ଲାସ ପୁଣି ସ୍କୁଲର ପିଲାମାନେ । ଭାଗ୍ୟର ପରୀକ୍ଷା ହେବ ତୋର ଆଜ, ଲଭିବୁ ତୁ ଯଶ ଅବା ତହିଁ ଲାଜ ।

ପୁରୀରେ ସେତେବେଳେ କଂଗ୍ରେସ-ନେତୃତ୍ୱ ନେଇଥାନ୍ତି ଓକିଲ ଜଗବନ୍ଧୁ ସିଂ, ବନମାଳୀ ଦାସ ଆଉ ମୋର ଭାଇନା ପ୍ରମୁଖ । ଭାଇନାଙ୍କ ପାଖକୁ ମୋ'ର ଛାତ୍ରନେତା ଭାବରେ ଯିବା ତ ସମ୍ଭବ ନୁହେଁ । ଚାଲିଲି କେତେଜଣ ସାଥୀଙ୍କୁ ଘେନି ବନମାଳୀବାବୁଙ୍କ ଘରକୁ । ବନମାଳୀବାବୁ ଆମ କଥା ଶୁଣି ପଚାରନ୍ତି, ''କେତେ ଜଣ ତୁମେ ସ୍କୁଲ ଛାଡ଼ିବାକୁ ଚାହଁ ?''

''ସମସ୍ତେ''—ଉତ୍ତର ଦେଉ ଆମେ ।

ସେ ପୁଣି ପଚାରନ୍ତି, ''କ'ଣ ସ୍କୁଲର ସବୁପିଲା ?''

''ଆଜ୍ଞା, ହଁ ।''

''ଆଚ୍ଛା, ଚାଲ ତେବେ ଜଗବନ୍ଧୁବାବୁଙ୍କ ପାଖକୁ ।''

ବନମାଳୀବାବୁଙ୍କ ପଛେ ପଛେ ଚାଲିଲୁ ଆମେ କେତେ ଜଣ ଛାତ୍ରନେତା ।

ଜଗବନ୍ଧୁବାବୁ ତାଙ୍କ ଓକିଲଖାନା ଝରକା ପାଖରେ ଚକାପକାଇ ବସିଥାନ୍ତି ସବୁ ଦିନ ପରି । ଟେବୁଲ୍ ଓ ଚୌକି ସବୁ ପଡ଼ିଥିଲେ ମଧ ସେ ପ୍ରାୟ ତଳେ ବସି ଲେଖନ୍ତି । ସେତେବେଳେ ତାଙ୍କ 'ପ୍ରାଚୀନ ଉତ୍କଳ' ପ୍ରକାଶ ପାଉଥାଏ ଧାରାବାହିକରୂପେ ମାସିକ ପତ୍ରରେ ।

ଚହଳ ପକାଇଥାଏ ପାଠକମହଲରେ, କବି ଜୟଦେବଙ୍କ ଜନ୍ମସ୍ଥାନ ପୁରୀଜିଲ୍ଲା ବାଲିପାଟଣା ନିକଟବର୍ତ୍ତୀ କେନ୍ଦୁବିଲ୍ୱ ଗ୍ରାମ ବୋଲି ତାଙ୍କର ପ୍ରମାଣ ବାଢ଼ିବା ପ୍ରଣାଳୀ ।

ବନମାଳୀବାବୁ ତାଙ୍କ ଲେଖାରେ ବ୍ୟାଘାତ ଜନ୍ମାଇ କହିଲେ—''ଏମାନେ ପୁରୀଜିଲ୍ଲା ସ୍କୁଲର ଛାତ୍ର ।''

''ହଁ—କ'ଣ ହେଲା ?'', ଜଗବନ୍ଧୁବାବୁ ତାଙ୍କ ଚଷମା ଭିତରୁ ଆମମାନଙ୍କୁ ନିରୀକ୍ଷଣ କରି ବନମାଳୀବାବୁଙ୍କୁ ପଚାରନ୍ତି ।

''ଏମାନେ ସ୍କୁଲ ଛାତ୍ର ସବୁ । ଏକଜୁଟ୍ ହୋଇ ସରକାରୀ ସ୍କୁଲ ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାକୁ ପ୍ରସ୍ତୁତ ।''

''ଦିଅନ୍ତୁ, କିଏ ମନା କରୁଛି କି ?'' ସେମିତି ଅଚଳ ମହାମେରୁ ପରି ନିର୍ବିକଳ୍ପ ସମାଧିସ୍ଥ ହୋଇ ଗମ୍ଭୀର ଗଳାରେ ଜଗବନ୍ଧୁଙ୍କ ଉତ୍ତର । ଉତ୍ତେଜିତ ହୋଇପଡ଼ନ୍ତି ବନମାଳୀବାବୁ ତାଙ୍କ କଥାରେ—

''କ'ଣ କହୁଛନ୍ତି ଆପଣ ? ଦେଶବ୍ୟାପୀ କେଉଁଠି ନେତାମାନେ ସଭାକରି ଛାତ୍ରମାନଙ୍କୁ ସ୍କୁଲ କଲେଜ ଛାଡ଼ିବାକୁ ହଁ ଆହ୍ୱାନ ଦେଉଛନ୍ତି; ଅଥଚ ଆମ ପାଖକୁ ସେମାନେ ଆସି ପହଞ୍ଚିଲେ ବି ଆମେ ତାଙ୍କୁ ଟିକିଏ ଉତ୍ସାହ ଦେବା ନାହିଁ ! ଏହାଠୁଁ ବଳି ଆମ ପକ୍ଷରେ ଦୁଃଖ ଆଉ ଲଜ୍ଜାର କଥା କ'ଣ ଥାଇପାରେ ?''

ବନମାଳୀବାବୁଙ୍କ କଥାରେ ଅବଶ୍ୟ ଜଗବନ୍ଧୁବାବୁଙ୍କ ଚକା ଟିକିଏ ହଲଚଲ୍ ହେଲାନି । କେବଳ ସେମିତି ଚଷମାତଳୁ ତାଙ୍କୁ ଚାହିଁ ସେ କହିଲେ, ''ତେବେ କ'ଣ କହୁଛ ତୁମେ ? ଗୋପବନ୍ଧୁବାବୁଙ୍କୁ ଡାକିବା । ସେଇ ଆସିଲେ କ'ଣ କରାଯିବ, କହିଯାନ୍ତୁ ପିଲାମାନଙ୍କୁ । ଏହାଛଡ଼ା ଆମେ ଆଉ କ'ଣ କରିପାରିବା, ବନମାଳୀ ? କାଲି ଗୋପବନ୍ଧୁ ବାବୁ ଆସନ୍ତୁ । ପିଲାମାନଙ୍କ କଥା ବୁଝନ୍ତୁ । କ'ଣ କହୁଛ ?'' ବନମାଳୀବାବୁ ରାଜିହେଲେ । ଆମେ ଫେରିଲୁ ଘରକୁ ।

ସବୁରି ମନରେ ଉଦ୍‌ବେଗ । ରାତି ପାହି ସକାଳ ହୁଏ । ସବୁ ଦିନ ଭଳି ସ୍କୁଲଘଣ୍ଟା ବାଜେ, ଦିନ ଦଶଟାରେ ଯେଝା କ୍ଲାସରେ ପଢ଼େ ଉପସ୍ଥିତି । କ୍ଲାସ ଆରମ୍ଭ ହୁଏ, ଶିକ୍ଷକମାନେ ମଧ୍ୟ ଛାତ୍ର-ଆନ୍ଦୋଳନ ସହିତ ପରୋକ୍ଷ ସମର୍ଥନ କଲାଭଳି ଜଣାପଡୁଥାଏ ।

ଦେଶବ୍ୟାପୀ ବିପୁଳ ଜାଗରଣ । କିଏ ବା ତହିଁରୁ ଅଲଗା ରହି ଦେଶଦ୍ରୋହୀ ହେବାର ଅବମାନନାକୁ ସାମନା କରିପାରେ ଏମିତି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ—ଲେନିନ୍ ବୋଧହୁଏ ଯାହାକୁ କହିଥିଲେ ବିପ୍ଳବର ଜିରୋ ଆୱାର (Zero hour) !

ପୂର୍ବରୁ ମୋର ବିବାହ କର୍ମ ସମାପ୍ତି ପରେ ଆରମ୍ଭ ହୋଇଥାଏ ନବବଧୂ ମୁଖଦର୍ଶନ ଲାଳସା; କିନ୍ତୁ ତାହା କିଛି ପ୍ରତିବନ୍ଧକ ସୃଷ୍ଟି କରେ ନାହିଁ ଦେଶବ୍ୟାପୀ ଏଇ ବିପୁଳ ଆହ୍ୱାନ ସମକ୍ଷରେ । ସବୁ କୁଆଡ଼େ ପାଣିଫୋଟକା ଭଳି ମିଳେଇଯାଏ, ଏଇ ଆବେଗମୟ ସ୍ରୋତ ସହିତ ।

ଗୋପବନ୍ଧୁଙ୍କ ଆସିବା ସମ୍ବାଦ ବିଜୁଳିବେଗରେ ତମାମ୍ ସ୍କୁଲରେ ବ୍ୟାପିଯାଏ । ମୁଁ ଜଣେ ଭଲ ଛାତ୍ର, କ୍ଲାସ ମନିଟର । ମୁଁ ଯେଣୁ ନେତୃତ୍ୱ ନିଏଁ, ''ମହାଜନୋ ଯେନ ଗତ ସ ପନ୍ଥାଃ'' ନୀତିରେ ଶ୍ରେଣୀର ପ୍ରାୟ ସବୁ ଛାତ୍ର ସହଯୋଗ କରନ୍ତି ସରକାରୀ-ସ୍କୁଲ-ଶିକ୍ଷା ସହିତ ଅସହଯୋଗ ଆନ୍ଦୋଳନରେ । ''ଭାରତମାତାକୀ ଜୟ'', ''ଗାନ୍ଧିଜୀକି ଜୟ'' ନିନାଦ ସ୍କୁଲ ଗୃହଠାରୁ ସଦରଥାନା ଗଳିବାଟେ ହେରାଗୋହିରି ସାହି, 'ସାମନ୍ତ ଚନ୍ଦ୍ରଶେଖର ହଲ' ପର୍ଯ୍ୟନ୍ତ ଆକାଶକୁ ନିନାଦିତ କରେ । ଶିକ୍ଷକଙ୍କଠାରୁ ଆରମ୍ଭ କରି ବାଟର ବାଟୋଇ ପର୍ଯ୍ୟନ୍ତ ସମସ୍ତେ ଯେମିତି ଆମକୁ ସ୍ୱାଗତ କରୁଥାନ୍ତି ସହାସ ବଦନରେ ।

ସେଇ ସାମନ୍ତ ଚନ୍ଦ୍ରଶେଖର ହଲ୍‌ରେ ସଭା ହୁଏ । ଗୋପବନ୍ଧୁ ଦିଅନ୍ତି ଭାଷଣ ଦେଶର ପରିସ୍ଥିତି ବୁଝାଇ । ଧୀର-ସ୍ଥିର ଭାବରେ ଛାତ୍ରମାନଙ୍କୁ ନିଜ ନିଜର ଭବିଷ୍ୟତ ବିଚାର କରି ଓ କ୍ଷଣିକ ଉତ୍ତେଜନାରେ ଭାସି ନଯାଇ ଯେଝା କର୍ମପନ୍ଥା ବାଛି ନେବାକୁ ତାଙ୍କର ଆହ୍ୱାନ ।

''ନାହିଁ ଯଦି ଦେଶପାଇଁ ତ୍ୟାଗ ସ୍ୱୀକାର କରିବାକୁ ଚାହ, ତେବେ ସଂସାର-ଦାୟିତ୍ୱ ଓ ନିଜ ଭବିଷ୍ୟତକୁ ସମ୍ପୂର୍ଣ୍ଣ ଜଳାଞ୍ଜଳି ଦେବାକୁ ହେବ ବିନା ସର୍ତ୍ତରେ । କି ଏ ସବୁ ତୁମେ ରାଜି, ଠିଆ ହେଲ ଦେଖି ?''

ଆମ ଭିତରୁ ଜଣେ ମାତ୍ର ଠିଆ ହେଲେ—ମଙ୍ଗମଠର ଶ୍ରୀ ଫକୀରଚରଣ ପାଣ୍ଡେ ।

ସ୍ୱାଭାବିକ ପରିହାସ ସ୍ୱରରେ ଦାଣେ ଆପଣେ କହନ୍ତି—''ଟା' ହେଲେ ଏକଷ୍ଚନ୍ଦ୍ର ସ୍ତମୋହନ୍ତି, ନଚ ତାରାଗଣେରପି ।'' ସମସ୍ତେ ହୋ ହୋ ହସି ଉଠିଲେ ।

ଗୋପବନ୍ଧୁଙ୍କ ଭାଷଣ ଶୁଣି ଆମେ ସବୁ ପରୀକ୍ଷା ଦେବାକୁ ପ୍ରସ୍ତୁତ ହେଉଁ । ସେଥି ସଙ୍ଗେ ମୋର ପଢ଼ିବା ସ୍ପୃହା ବଳବତ୍ତର ହୋଇଉଠେ, ଅବଶ୍ୟ ପାଠ୍ୟ-ପୁସ୍ତକ ନୁହେଁ । ଅନ୍ୟାନ୍ୟ ଇଂରାଜୀ ସାହିତ୍ୟ ଓ ଇଂରାଜୀ ମାଧ୍ୟମରେ ଫରାସୀ ଜର୍ମାନୀ ଆଦି ଶ୍ରେଷ୍ଠ ସାହିତ୍ୟ ପୁରୀଜିଲ୍ଲା ସ୍କୁଲ ଲାଇବ୍ରେରୀରୁ ଆଣି ମୁଁ ରାତାରାତି ଅନିଦ୍ରା ହୋଇ ପଢ଼େଁ । ଅଭ୍ୟାସ କରେଁ ନାସ—ଧୂଆଁପତ୍ରର ଅନ୍ୟ ସଂସ୍କରଣ । ଘରେ ବାପା ଓ ଭାଇନାଙ୍କର ଥିଲା ସେଇ ଅଭ୍ୟାସ । ତେଣୁ ମୋ' ପକ୍ଷରେ ତାହା ଗ୍ରହଣ କରିବା କଷ୍ଟକର ହେଲା ନାହିଁ । ବହୁ କାଳୁଁ ସେ କୁ-ଅଭ୍ୟାସ ଛାଡ଼ି ଏବେ ମୋର ରାତି ଅନିଦ୍ରା ଅଭ୍ୟାସରେ ପଡ଼ିଯାଇଛି ।

ଗ୍ୟେଟେଙ୍କର 'ଇଲେକ୍ଟିଭ୍ ଏଫିନିଟି' ଓ 'ଫାଉଷ୍ଟ' ପୁଣି ହ୍ୟୁଗୋଙ୍କର 'ଲା-ମିଜରେବ୍ଲସ୍', 'ହଞ୍ଚ୍ ବ୍ୟାକ୍' ସହ କାଳିଦାସଙ୍କ 'କୁମାର ସମ୍ଭବ' ରାତିତମାମ୍ ବସି ପଢ଼ିଛି । ଅନ୍ଧାରରେ ଲୁଚି ଯାଇଥିବା ଆକାଶଟା ଝରକା ବାଟେ ଆସ୍ତେ ଆସ୍ତେ ଫସର ପାଟି ନିର୍ମଳ ହୋଇ ଦେଖାଦିଏ, କୁଆଁତାରା ଉଠି କୁଆ ଡାକେ ଆସି କା—କା— । କୋଇଲି କୁ କୁ ଡାକି ଉଡ଼ିଯାଏ । ସେତେବେଳେ ମନଟା ମୋର ନାଚିଉଠେ—ଯେମିତି ଅବା ମୁଁ ଜୟ କରିଛି ଗୁଡ଼ାକେଶ ସବ୍ୟସାଚୀଙ୍କ ଭଳି ନିଦ୍ରାକୁ, ସ୍ୱପ୍ନକୁ, ରାତି ପୁଣି ଅନ୍ଧକାରକୁ !



# ଅଚାନକ ଜଣେ ବାଲ୍ୟବନ୍ଧୁ

ଜଗବନ୍ଧୁ-ଗୋପବନ୍ଧୁଙ୍କ କଥା ଲେଖିସାରିବା ପରେ ଏକ ଅପ୍ରତ୍ୟାଶିତ ବିସ୍ମୟକର ଘଟଣା—ଆମ ଛାତ୍ରସମିତିର ଅନ୍ୟତମ ସମ୍ପାଦକ ବନ୍ଧୁ ହୃଦାନନ୍ଦ ମହାନ୍ତିଙ୍କଠାରୁ ଅଚାନକ ଏକ ପତ୍ର ପାଏଁ, ପତ୍ରଖଣ୍ଡି ମୋତେ ଅଭିଭୂତ କରି ପକାଏ ଗଭୀର ବିସ୍ମୟରେ ।

ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ହୃଦାନନ୍ଦ କେଉଁଠି ଥିଲେ, କ'ଣ କରୁଥିଲେ, ତାହା ଜାଣିବାର ସୁଯୋଗ ମୋର ନ ଥିଲା । ଚିଠିଖଣ୍ଡିକ ପାଇ ତତ୍‌କ୍ଷଣାତ୍ ଟେଲିଫୋନ କରେଁ ଅନ୍ୟତମ ସହପାଠୀ ବାଲ୍ୟବନ୍ଧୁ କଟକର ଆଡ଼ଭୋକେଟ୍ ଶ୍ରୀ ସଦାଶିବ ମିଶ୍ରଙ୍କୁ । ସେ ମଧ ବିସ୍ମିତ ହୋଇ ପଚାରନ୍ତି—''ହୃଦାନନ୍ଦ କ'ଣ ବଞ୍ଚିଛି ?''

ହସି ଦେଇ କହିଲି, ''ହଁ, ପୁରୀ ଜିଲ୍ଲାର ସେଇ ଆମ ସ୍କୁଲ ସହାଧ୍ୟାୟୀ 'ଛାତ୍ର ସମିତି'ର ହୃଦାନନ୍ଦ ।''

ହୃଦାନନ୍ଦ ଚିଠିଖଣ୍ଡି ଲେଖିଛନ୍ତି ଭୁବନେଶ୍ୱରରୁ—

ଚିଠିର ତାରିଖ ତା ୨୪/୭/୭୨

ଲେଖିଛନ୍ତି ସେ—କୌଣସି ସମ୍ବୋଧନ ନକରି ନିଶ୍ଚୟ ଖୁବ୍ ସନ୍ତର୍ପଣ ଓ ସମ୍ଭ୍ରମରେ—

''ବହୁଦିନୁଁ ଭାବୁଛି, ଖଣ୍ଡେ ଚିଠି ଲେଖିବି ବୋଲି । ପୁଣି ଭାବେଁ, ସେ କେଉଁଠି ମୁଁ କେଉଁଠି—ଆକାଶ-ପାତାଳ ପ୍ରଭେଦ । ଚିଠି ଦେଇ ଲାଭ କ'ଣ ? ଖବରକାଗଜରେ ପଢ଼େଁ, କେତେ ଲୋକ ଚନ୍ଦ୍ରଲୋକକୁ ଗଲେଣି । ଏ ତ ପୁଣି ସମ୍ଭବ ହେଲା—ମୁଁ ଖଣ୍ଡେ ଚିଠି ଦେବି ଉତ୍ତର ନ ପାଇବି । ଏଥିପାଇଁ ଦୁଃଖିତ କାହିଁକି ହେବି ?

କାହିଁ ଶ୍ରୀକୃଷ୍ଣ ଦ୍ୱାରକାଧିପତି, କାଇଁ ଭିକ୍ଷୁକ ସୁଦାମା, ଏମାନଙ୍କର ତ ପୁଣି ସାକ୍ଷାତ୍ ହେଲା—କେଜାଣି ଏପରି ଯଦି ହୋଇଯାଏ—ଖବରକାଗଜ ଡାକ ପକାଉଛି—ସାମ୍ୟବାଦ—ବଡ଼ଲୋକ ସବୁ ମଟରଗାଡ଼ିରେ ଧୂଳି ଉଡ଼ାଇ ଡାକ ଦେଉଛନ୍ତି–ସାମ୍ୟବାଦ; ରାଜପଥରେ—ଗରିବ ଭିକାରି—ଶୁଣୁଛି ମାତ୍ର ।''

''ପଚାଶବର୍ଷ ତଳର କଥା, ବୋଧହୁଏ ୧୯୨୦ ମସିହା; ବ୍ରାହ୍ମଣ ସମିତି ପାଖ ଚନ୍ଦ୍ରଶେଖର ହଲ୍‌ରେ—ପଣ୍ଡିତ ଗୋପବନ୍ଧୁ, ଜଗବନ୍ଧୁ ସିଂହ ପ୍ରଭୃତିଙ୍କ ନେତୃତ୍ୱରେ ଜାତୀୟ ବିଦ୍ୟାଳୟର ପ୍ରସ୍ତାବ ମନେ ଅଛି କି ନା, ମୁଁ କହି ପାରିବି ନାହିଁ ।''

ବିଶ୍ୱନାଥ ଖୁଣ୍ଟିଆ, ବିଶ୍ୱନାଥ ମିଶ୍ର, ପୂର୍ଣ୍ଣାନନ୍ଦ ମହାନ୍ତି, ତୁମ୍ଭେ ଓ ମୁଁ ସମୁଦ୍ରକୂଳ ବି.ଏନ୍.ଆର ହୋଟେଲ ରାସ୍ତାରେ ଯିବା ସମୟରେ ଜଣେ ବିଦେଶୀ—ପୂର୍ଣ୍ଣାନନ୍ଦ ହସିବାରୁ ଏକ ଥାପଡ଼ ପକାଇଲା । ସଙ୍ଗେ ସଙ୍ଗେ ଫେରି ହେଡ଼ମାଷ୍ଟରଙ୍କୁ କହିଲୁଁ । ସେତେବେଳେ ହେଡ୍‌ମାଷ୍ଟର ପୁରୀ ଜିଲ୍ଲା ସ୍କୁଲର ଉପେନ୍ଦ୍ର ନାରାୟଣ ଦତ୍ତଗୁପ୍ତ ।

କିଏ କୁଆଡ଼େ ଗଲେଣି, କେବଳ ମୁଁ ଶୁଣେ ସଦାଶିବ ମିଶ୍ର କଟକରେ ଆଡ଼ଭୋକେଟ୍ ହୋଇଛନ୍ତି । ଆଉ ପଦ୍ମଭୂଷଣ କାଳିନ୍ଦୀଚରଣ ପାଣିଗ୍ରାହୀ ସାହିତ୍ୟିକ ।

ସେଦିନ ରେଡ଼ିଓରୁ ଶୁଣିଲି, 'ମଂସର ବିଳାପ' । 'ମାଟିର ମଣିଷ' ମୁଁ ପଢ଼ିଥିଲି ।

ଏବେ ଖବରକାଗଜରେ ପଢ଼ିଲି ଓ ଜାଣିଲି—ନନ୍ଦିନୀ ଶତପଥୀ ତୁମ୍ଭର ଝିଅ । ଯଦି ସେ ପରଗୋତ୍ରୀ ତଥାପି ତ ଝିଅ । ଏଟା ନିଶ୍ଚୟ ଆମ୍ଭମାନଙ୍କର ଗୌରବ । କାହିଁ, ପୁଅକଥା ତ କିଛି ଜାଣି ପାରୁ ନାହିଁ ।

ଏଣିକି ମୋ କଥା ଦି'ପଦ ଲେଖିବି । ସାମାନ୍ୟ କମ୍ପାଉଣ୍ଡରୀ ପଢ଼ି ଅଠର ବର୍ଷ ଚାକିରି କରି ପେଟ ନପୋଷିବାରୁ ଏହି ଭୁବନେଶ୍ୱରଠାରୁ ଚାକିରି ଇସ୍ତଫା ଦେଇ ପାଣିକାଦୁଅ ଚକଟି ଚାରି ପୁଅ ଚାରି ଝିଅର ବାପା ମୁଁ । ଅବଶ୍ୟ ଝିଅମାନେ ବିଭା ହୋଇ ଗଲେଣି । ଗୋଟିଏ ପୁଅ, ପୋଷ୍ୟପୁଅ ହୋଇ ଆମ ଗାଁରେ । ଅନ୍ୟ ତିନିଟି ଏହି କ୍ୟାପିଟାଲରେ ଅଛନ୍ତି'' ଇତ୍ୟାଦି ।

ଚିଠି ଖଣ୍ଡି ପାଇ ସଙ୍ଗେ ସଙ୍ଗେ ତାଙ୍କୁ ମୁଁ ଜଣାଏଁ, ଆମେ ସ୍କୁଲଛାତ୍ର ଥିବା ସମୟରେ ତାଙ୍କ ସ୍ମୃତିକଥା ମୋତେ ଲେଖଇବାକୁ । ଉତ୍ତରରେ ସେ ଲେଖିଛନ୍ତି—

''ମୋ ଦେହ ସବୁ ସମୟରେ ଭଲ ରହୁ ନାହିଁ । ସେଥିପାଇଁ ଚିଠିର ଉତ୍ତର ଦେବା ଡେରି ହେଲା ।''

''ହଁ, ପଚାଶ ଷାଠିଏ ବର୍ଷ ତଳର କଥା, କ'ଣ ମନେ ପଡୁଛି ଲେଖିବି—'ଛାତ୍ର ଦର୍ପଣ' ବାରଖଣ୍ଡଯାକ ନନ୍ଦକିଶୋର ବଳଙ୍କୁ ଅନୁରୋଧ କରି ଦେଇଥିଲେ । ସେ ବାଛି କେତୋଟି କବିତା ଓ ଗଦ୍ୟ ଠିକ୍ କରିଥିଲେ—ତାହାହିଁ ବୋଧହୁଏ ପ୍ରଥମ ଓ ଶେଷ ଛପା ସଂସ୍କରଣ—ଯେଉଁଥିରେ କି ତୁମ୍ଭେ ପ୍ରଥମ ଓ ମୁଁ ଦ୍ୱିତୀୟ ପୁରସ୍କାରରେ ତାଙ୍କରି ଦ୍ୱାରା ପୁରସ୍କୃତ ହୋଇଥିଲେଁ । ସେଇ ବହିରୁ ଖଣ୍ଡିଏ ମିଷ୍ଟର ଦାସଙ୍କୁ ତୁମେ, ମୁଁ, ସଦାଶିବ, ଆଉ କିଏ ମନେ ପଡୁ ନାହିଁ—ପୁରୀ 'ଶୈଳବାଳା' ଭବନ ଷ୍ଟେସନ ପାଖ କୋଠାକୁ ଯାଇଥିଲେଁ । ସେ 'ଛାତ୍ର ଦର୍ପଣ'କୁ ଦେଖି ପଚାରିଲେ—ଦର୍ପଣର ସୃଷ୍ଟି କେବେହେଲା ? କେହି କହିପାରି ନଥିଲେ । ସେ କ'ଣ ଉତ୍ତର ଦେଇଥିଲେ ମନେ ନାହିଁ ।

ବାର୍ଷିକ ଉତ୍ସବ ଚନ୍ଦ୍ରଶେଖର ହଲରେ ହେଲା—ସଭାପତି ନନ୍ଦକିଶୋର ବଳ, ଦର୍ଶକ ଖୁବ୍ କମ୍ । ଆମ୍ଭେମାନେ ଚିନ୍ତିତ ଥିଲେଁ । ଏ ସମୟରେ ଉତ୍କଳମଣି ଗୋପବନ୍ଧୁ, ତାଙ୍କର ସହକର୍ମୀମାନେ ହଠାତ୍ ପହଞ୍ଚିଗଲେ । ହଲ୍ ଭର୍‌ପୂର୍ ହୋଇଗଲା ।

ବୟସ ବା'ସ୍ତରି, ହାତ ଥରିଲାଣି, ଆଖିକୁ ଭଲ ଦିଶୁ ନାହିଁ, କାନକୁ ଭଲ ଶୁଭୁ ନାହିଁ—ଭଲ ଜୀର୍ଣ୍ଣ ହେଉ ନାହିଁ—ତଥାପି ପିଲାଙ୍କ ଭଳି ସବୁ ଖାଇବାକୁ ଇଚ୍ଛା ।

ତୁମ୍ଭ ଜୀବନୀରେ କିଛି ଅଂଶ ଆମ୍ଭମାନଙ୍କ କଥା ଲେଖିବ ଓ ଖଣ୍ଡେ ବହି ପାଇବି–ଏ ଅପେକ୍ଷାରେ ବିରହିଣୀ ରାଧା କୃଷ୍ଣ ଦର୍ଶନ ପାଇଁ ଉଜାଗର ହୋଇ ବସିଛି । ଯଦି ଏ ମଧ୍ୟରେ ଖସିଯାଏଁ, ମୋ ନାମରେ ଉତ୍ସର୍ଗ କରି ମହାନଦୀରେ ବିସର୍ଜନ କରିଦେବ । ସଦାଶିବ ପାଖୁ ସଙ୍ଗେ ସଙ୍ଗେ ଫୋନ କଲ୍ । ସେ ମଧ ଆଶ୍ଚର୍ଯ୍ୟ ହେଲା । ମୁଁ ଜାଣେ, ସେ ଆଡ୍‌ଭୋକେଟ୍ ହୋଇଛି, ସେପରି କିଛି ମକଦ୍ଦମା ପଡ଼ି ନାହିଁ । ସେମାନେ ତ ବିନା ଫିସ୍‌ରେ କଥା କହନ୍ତି ନାହିଁ, ତେଣୁ ମୁଁ କେଉଁ ସାହସରେ ତାକୁ ମୋ କଥା ଜଣାଇବି ।

× × ×

ବାପାଙ୍କ ନାମରେ ଘରର ନାଁ ଦେଇଛ, ମୁଁ ପୂର୍ଣ୍ଣାନନ୍ଦଠାରୁ ଜାଣିଥିଲି—ବହୁତ ଥର କଟକ ଯାଉଛି, କେବେ ଗଲେ ଘର ଓ ତୁମ୍ଭଙ୍କୁ ଦେଖିଆସିବି ।

ହଉ ଥାଅ ଭାଇ କାଳିନ୍ଦୀ

ଆଜି ଏତିକି,

ଅଭାଗା

ହୃଦାନନ୍ଦ ।

ହୃଦାନନ୍ଦଙ୍କ ଚିଠି ଦୁଇଖଣ୍ଡି ଫିଟାଇ ଦିଏ, ପୁଣି ବିସ୍ମୃତିର କେତେ ରୁଦ୍ଧ କବାଟ । ହେରାଗୋହିରୀ ସାହି ଭଡ଼ାଘରେ ଥାଉଁ ଆମ ପରିବାର, ସେଇଠୁଁ ମ୍ୟୁନିସିପାଲିଟି ମାର୍କେଟ୍ ଯିବା ଛକଉପରେ ସ୍ୱର୍ଗତ ଓକିଲ ବ୍ରହ୍ମାନନ୍ଦବାବୁଙ୍କ ଘରେ ରହୁଥାନ୍ତି ତାଙ୍କ କୁଟୁମ୍ବ ଭାଇ ହୃଦାନନ୍ଦ ।

ଅଳ୍ପ କେତେକ ପାହୁଣ୍ଡରେ ସାମନ୍ତ ଚନ୍ଦ୍ରଶେଖର ହଲ୍ । ସେଦିନ ଆମ ଛାତ୍ରସାହିତ୍ୟ ସମିତିର ବାର୍ଷିକ ଉତ୍ସବରେ ଉତ୍କଳମଣି ଗୋପବନ୍ଧୁ ତାଙ୍କ ସହକର୍ମୀମାନଙ୍କ ସହିତ ଦୈବାତ୍ ପହଞ୍ଚିବା କଥା ହୃଦାନନ୍ଦ ଉଲ୍ଲେଖ କରିଛନ୍ତି । ସେଇ ଥର ଗୋପବନ୍ଧୁ ତାଙ୍କ ଭାଷଣରେ କହିଲା ଭଳି ଅନ୍ଦାଜ ହୁଏ—

"ତୁମେ ସବୁ ପ୍ରକୃତରେ ଓଡ଼ିଆ ସାହିତ୍ୟ ଚର୍ଚ୍ଚାକରିବାକୁ ଯଦି ଆଗ୍ରହୀ ଥାଅ, ପ୍ରତିଦିନ ଜଗନ୍ନାଥ ଦାସଙ୍କ ଭାଗବତ ପଢ଼ । ନ ବୁଝି ପାରିଲେ ବାରମ୍ବାର ପଢ଼, ଭାଷା ଅତି ସରଳ; କିନ୍ତୁ ଭାବ ସେତିକି ଗଭୀର । ସାହିତ୍ୟ ତାହାକୁ ହିଁ ବୁଝାଏ, ଯାହା ସାକ୍ଷର ନିରକ୍ଷର ସବୁରି ପ୍ରାଣକୁ ଛୁଇଁପାରେ, ଯାହା ମଣିଷ ଜୀବନକୁ ଗଢ଼େ; ତା' ଭିତରେ, ପ୍ରାଣସଞ୍ଚାର କରେ । ଅଭ୍ୟାସ ନ କଲେ ପାଠ ହୁଏନି କି ସାହିତ୍ୟ ହୁଏନି; ଏକାଦଶ ସ୍କନ୍ଧ ଭାଗବତ ଖଣ୍ଡି ପ୍ରତିଦିନ ତୁମେ ପଢ଼, ଯେତିକି ଥର ପଢୁଥିବ, ସେତିକି ରସ ପାଇବ ତହିଁରୁ; ନଅଟି ଅକ୍ଷରରେ ଗୋଟିଏ ପଦ, ପଢ଼ିବାକୁ ଯେତିକି ସହଜ, ସେତିକି ସୁଖ ।"

ଏମିତି ସେଦିନ 'ଦାଣେ ଆପଣେ'ଙ୍କର କେତେ କଥା, କେତେ ଉପଦେଶ ଏ କାନରେ ପଶି ସେ କାନରେ ବାହାରିଯାଏ । ତାଙ୍କ ଉପଦେଶ ମାନି ଚଳିଥିଲେ ଆଜି ଘରଦ୍ୱାର କରି ରହିଥାନ୍ତି କେଉଁଠି ? ଅଦ୍‌ଭୁତ ଚରିତ୍ର 'ଅବଧୂତ' ହୋଇ ବୁଲନ୍ତି ସିନା !—

"ଆହାରେ ଭଲ ମନ୍ଦ ନାହିଁ
ଯେ ସ୍ଥାନେ ଯେମନ୍ତ ମିଳଇ
ଅଳପ ବହୁତେ ସନ୍ତୋଷ
ନମିଳେ କରେଁ ଉପବାସ ॥"

ଶେଷରେ ଉପବାସ କରି ମଧ ସନ୍ତୁଷ୍ଟ ରହିବାକୁ ଉପଦେଶ ! ଗୋପବନ୍ଧୁଙ୍କ ପରାମର୍ଶରେ ଦୁନିଆର ମଣିଷ ଯଦି ଅବଧୂତ ଚରିତ୍ରକୁ ଅନୁସରଣ କରନ୍ତେ, ତା'ହେଲେ ତ ଯେ କୌଣସି ଦଳର ସରକାର ହେଣ୍ଡିମାରି ଯାବଚ୍ଚନ୍ଦ୍ରାର୍କେ ଦେଶ ଶାସନ କରୁଥାନ୍ତେ ମହାସୁରୁଖୁରୁରେ, ! ନିଜେ ମଧ ଦାଣେ ଆପଣେ ଦୈନିକ ଏକାଦଶ ସ୍କନ୍ଧ ଭାଗବତ ପାରାୟଣ କରି ସ୍ୱାଧୀନତା ସମରରେ ଝାସଦେଲେ କାହିଁକି ? କାହିଁକି ପରଦୁଃଖ ଦେଖି ଗଡ଼ାଇଲେ ଏତେ ଲୁହ ?

ଏ ସବୁ ପ୍ରଶ୍ନର ଉତ୍ତର ଖୋଜିବାକୁ ପୁଣି ସେଇ କୃଷ୍ଣାର୍ଜ୍ଜୁନ ସମ୍ବାଦ ଗୀତାରହସ୍ୟ ଉଦ୍‌ଘାଟନ କରିବା କଥା ଉଠେ—"ଭଣଇ ଦାସ ଜଗନ୍ନାଥ, କୃଷ୍ଣଚରିତେ ଭାଗବତ ।" ଗୀତାରହସ୍ୟର ଉଦ୍‌ଘାଟକ ସେଇ ଶ୍ରୀକୃଷ୍ଣ ମହାଭାରତ ଆରମ୍ଭ ଯୁଗରୁ ଗୋପବନ୍ଧୁ-ଗାନ୍ଧୀ-ବିନୋବାଙ୍କ ଯୁଗପର୍ଯ୍ୟନ୍ତ ସାରଥି ହୋଇଛନ୍ତି ଅବା ନବଭାରତ-ନନ୍ଦିଘୋଷର ।

ଓଡ଼ିଆ ଭାଗବତ ସ୍ରଷ୍ଟା—କୃଷ୍ଣଚରିତକୁ ଏ ରାଜ୍ୟର ଘରେ ଘରେ ଭାଗବତଟୁଙ୍ଗି, ଭାଗବତଗାଦି, ଭାଗବତ ମେଳନ, ଭାଗବତ ପାରାୟଣ ମାଧମରେ ପ୍ରତିଷ୍ଠା କରିଯାଇଥିବା ଅତିବଡ଼ୀ ଜଗନ୍ନାଥ ଦାସଙ୍କ ନୂତନ ପ୍ରତିମୂର୍ତ୍ତିର ପ୍ରତିଷ୍ଠା କରାଯାଏ ପୁରୀ ସାତ୍‌ଲହଡ଼ୀ ମଠର

ନବନିର୍ମିତ ମନ୍ଦିରରେ ୨୩/୯/୧୯୭୨ ତାରିଖ ଭାଦ୍ରପୂର୍ଣ୍ଣିମାରେ । 'ସମାଜ' ପତ୍ରିକାର ସମ୍ପାଦକ ଓ ସ୍ୱର୍ଗତ ପଣ୍ଡିତ ଗୋପବନ୍ଧୁ ଦାଶଙ୍କର ପ୍ରିୟ ଶିଷ୍ୟ ଶ୍ରୀ ରାଧାନାଥ ରଥ ସଭାପତି । ମୁଁ ଥିଲି ଉଦ୍‌ଘାଟକ ।

ଜଗନ୍ନାଥ ଦାସଙ୍କ 'ଭାଗବତ' ଯେ ଗୋପବନ୍ଧୁ ନେତୃତ୍ୱର ଶ୍ରେଷ୍ଠ ପ୍ରେରଣା ଥିଲା, ତାହା ମୋର ଭାଷଣରେ ମୁଁ ଉଲ୍ଲେଖକରି ପାରେଁ ନାହିଁ, କିନ୍ତୁ 'ବହୁଜନହିତାୟ, ବହୁଜନସୁଖାୟ' ଲାଗି ଜଗନ୍ନାଥ ଦାସଙ୍କ ସରଳ ମଧୁର ନବାକ୍ଷରୀ ଛାନ୍ଦରେ ରଚିତ ଭାଗବତ ସବୁଠାରୁ ବେଶି ଲୋକ ପଢ଼ିବା ଶୁଣିବା ବିଚାରରୁ ତାହା ଓଡ଼ିଆ ସାହିତ୍ୟର 'ହୃତ୍‌ପିଣ୍ଡ' ବୋଲି ଉଲ୍ଲେଖ କରେଁ । ମଣିଷର ହୃତ୍‌ପିଣ୍ଡ ରୁଗ୍‌ଣହେଲେ ଆଜିର ବୈଜ୍ଞାନିକ ଅସ୍ତ୍ରୋପଚାର କରି ତାହା ବଦଳରେ ଅନ୍ୟ ହୃତ୍‌ପିଣ୍ଡ ରୋପଣ ଦ୍ୱାରା ପ୍ରାଣଶକ୍ତି ଅବ୍ୟାହତ ରଖେ । ମାତ୍ର ଓଡ଼ିଆ ସାହିତ୍ୟର ଏଇ ହୃତ୍‌ପିଣ୍ଡ ଚିର ଭାସର—ଓଡ଼ିଆନାଡ଼ିର ସ୍ପନ୍ଦନ ଓ ନିଃଶ୍ୱାସ ପ୍ରଶ୍ୱାସ ଭଳି ଏହା ଅବ୍ୟୟ, ଅକ୍ଷର । ପୁରୀ ରାମଚଣ୍ଡୀ ସାହିର କିନ୍ତୁ ସେଇଘରେ— ଯେଉଁଠି ଆଜି ବି ଭାଗୁର ପରିବାର ରହନ୍ତି—ସେଇ ଘରେ ଚାଳଛପର ଥିବା ଅବସ୍ଥାରେ ଭଡ଼ାନେଇ ବାପାଙ୍କ ଆଇନ୍ ବ୍ୟବସାୟ ଚାଲେ । ସେଇଠି ଭାଇନା, ଭାଗୁ ଓ ମୁଁ ସ୍କୁଲକୁ ଯାଉଁ ଛାତ୍ରଭାବରେ । ସେଇ ଘର ପୁଣି ଖରିଦ୍‌କରି ଭାଇନାଙ୍କ ଓକିଲାତି, ମୋର ବ୍ୟାଙ୍କ୍‌ଚାକିରି; ଭାଗୁର ବିବାହକର୍ମ ସେଇଠାରେ ।

ସେଇ ଘର ଦାଣ୍ଡପିଣ୍ଡାରେ ବସି ବାପା ଆଲୋଚନା କରନ୍ତି, ତାଙ୍କ ବନ୍ଧୁମାନଙ୍କ ସହିତ ଭାରତୀୟ ଧର୍ମଦର୍ଶନ । ବଙ୍ଗର ପ୍ରଖ୍ୟାତ ବୈଷ୍ଣବ ଅତୁଲ୍ୟକୃଷ୍ଣ ଗୋସ୍ୱାମୀ ଆସି ବାଲ୍ୟଲୀଳାର ସଂସ୍କୃତଶ୍ଳୋକ ଆବୃତ୍ତିପରେ ବୟାନ କରନ୍ତି ତା'ର ତାତ୍ପର୍ଯ୍ୟ—

ସ୍ୱୟଂ ବ୍ରହ୍ମାଣ୍ଡଠାକୁର ହୋଇ ବାଳକୃଷ୍ଣ କାହିଁକି ସାଧାରଣ ମନୁଷ୍ୟ ଶିଶୁଭଳି ନିଜପାଦର ବୃଦ୍ଧାଙ୍ଗୁଳି ଟେକି ଓଷ୍ଠରେ ଲେହନ କରନ୍ତି ? ଏଇ ପ୍ରଶ୍ନର ଉତ୍ତର ପୁଣି—

ଭଗବାନ୍‌ଙ୍କ ମନରେ ସନ୍ଦେହ ମଧ୍ୟ ! ସେ ପରୀକ୍ଷାସ୍ୱରୂପ ବିଚାରନ୍ତି—ମୋର ଏଇ ବୃଦ୍ଧାଙ୍ଗୁଳିରେ କି ସ୍ୱାଦ ଅଛି ଯେ, କୋଟି କୋଟି ଭକ୍ତ ତାହାର ରେଣୁ ନେଇ ମୁହଁରେ ମୁଣ୍ଡରେ ଲଗାନ୍ତି !

କଲିକତାର ମଇମନମ୍ ସିଂ ମହାରାଜା ମନୀନ୍ଦ୍ରଚନ୍ଦ୍ର ନନ୍ଦୀ ମଧ୍ୟେ ମଧ୍ୟେ ଅତୁଲ୍ୟ କୃଷ୍ଣଙ୍କ ସହିତ ଆସି ବାପାଙ୍କ ପାଦରେ ମୁଣ୍ଡ ଲଗାନ୍ତି । ବୃଦ୍ଧ ବୟସରେ ସୁନ୍ଦର ତାଙ୍କର ଗୌରବର୍ଣ୍ଣ ସୁନ୍ଦର ଚେହେରା ଆଖି ଆଗରେ ଆଜି ଭାସିଉଠେ । ପିନ୍ଧାଲୁଗାର କୁଞ୍ଚ ଫେର ନିର୍ମଳ ଚିକ୍ ଚିକ୍ କଳା ପମ୍ପ-ଜୋତା ଭିତରେ ଅର୍ଦ୍ଧେକ ଆଚ୍ଛନ୍ନ ଧବଳପାଦ ଦୁଇଟି ଉପରେ ଲୋଟୁଥାଏ, ପୁଣି ହାରଭଳି ଝୁଲୁଥାଏ ସେମିତି ଫିନ୍‌ଫିନ୍ ପତଳା କୁଞ୍ଚ ଚାଦର ସ୍କନ୍ଧ ଦେଶରେ । ନମ୍ରତା ଓ ଭଦ୍ରତାର ଏକ ପ୍ରତିମୂର୍ତ୍ତି ।

ପଡ଼ୋଶୀବାବୁ ଶ୍ରୀଶଚନ୍ଦ୍ର ଘୋଷ ଭାଇନାଙ୍କର ବନ୍ଧୁ । ମୋତେ ଓ ଭାଗୁକୁ ଦେଖନ୍ତି ଆପଣା ସାନଭାଇ ଭଳି । ପୁରୀର ସବୁ ସାଧାରଣ କାର୍ଯ୍ୟରେ ଅଗ୍ରଣୀ । ଆମ ଘରର

ସୁଖଦୁଃଖରେ ପୁଣି ଭାଗୀଦାର । ଲମ୍ବା ଚଉଡ଼ା ପ୍ରକାଣ୍ଡ ଚେହେରା ଭଳି ତାଙ୍କ କଥାରେ ମଧ ଟାଣ ଓ ଗାମ୍ଭୀର୍ଯ୍ୟ ।

ମହାମହୋପାଧ୍ୟାୟ ସଦାଶିବ କାବ୍ୟକଣ୍ଠଙ୍କର ଛାତ୍ର ହେବାର ସୌଭାଗ୍ୟ ସେତେବେଳେ ମୋର ଯେପରି ଜୁଟେ, ସେଇପରି ବୈଦ୍ୟରତ୍ନ ମାଗୁଣି ବ୍ରହ୍ମାଙ୍କର ଚିକିତ୍ସାକ୍ଷେତ୍ରରେ ସଦାଶୟତାର ପରିଚୟ ପାଏଁ । ଉଭୟଙ୍କ ରୂପ ଭଳି ଓଜନଦାର ବ୍ୟକ୍ତିତ୍ୱ ମଧ ମହିମାମଣ୍ଡିତ ହୋଇଥାଏ ।

ରାମଚଣ୍ଡୀ ସାହି ଜଗନ୍ନାଥ କ୍ଲବରେ ମୋହନସୁନ୍ଦର ଗୋସ୍ୱାମୀଙ୍କର ଶ୍ରୀକୃଷ୍ଣ ରାସଲୀଳା ଅଭିନୟ କେବଳ ପୁରୀ କାହିଁକି ଓଡ଼ିଶାବ୍ୟାପୀ ଚହଳ ପକାଇଥାଏ । ଆଜି ମଧ ତାଙ୍କ ସୁଲଳିତ କଣ୍ଠ କର୍ଣ୍ଣ-କୁହରରେ ଯେପରି ଅବା ମୋର ପ୍ରତିଧ୍ୱନିତ ହୋଇ ଉଠୁଛି, ''ବନ୍ଧୁରେ ତୋଲାଗି ଭସ୍ମଜଟା ବଇରାଗୀ ହେଲି'' ।

ତାଙ୍କପରେ କବିଚନ୍ଦ୍ର କାଳିଚରଣଙ୍କଠାରୁ ପାଏଁ 'ମିତ' ସମ୍ବୋଧନ ଓ ସମ୍ମାନ ଆଉ ତାଙ୍କ 'ରାସଲୀଳା' ପରେ 'ଓଡ଼ିଶା ଥିଏଟର୍ସ'ର ଅଭିନୟଗୁଡ଼ିକରୁ ଗଭୀର ରସାସ୍ୱାଦ ।



## ''ବର୍ଷକ ଭିତରେ ସ୍ୱରାଜ୍ୟ''

ସ୍ୱରାଜ୍ୟ ମୋର ଜନ୍ମ-ଅଧିକାର

ବିସ୍ମୟ ! ବିସ୍ମୟ ! ଜୀବନଟା ଏକ ମହାବିସ୍ମୟରେ ଆଚ୍ଛନ୍ନ । ସେଇ ବିସ୍ମୟ ବହନକରି ଉଇଁଉଠେ ନୂତନ ସୂର୍ଯ୍ୟ । ତରୁଣ ଅରୁଣ ଆଭାରେ ରଞ୍ଜିତ ହୁଏ ଭାରତର ଭାଗ୍ୟାକାଶ । ଅକସ୍ମାତ୍ କେଉଁ ନିବିଡ଼ ସୂତ୍ରରେ ବନ୍ଧାହୋଇଯାଏ ଆକୁମାରୀ ହିମାଳୟ ଏଇ ବିଶାଳ ଉପ ମହାଦେଶ ! ବହୁ ଜାତି, ବହୁ ଧର୍ମ, ବହୁ ଭାଷା, ବହୁ ବିଚିତ୍ର ବେଶଭୂଷା, ଆହାର ବ୍ୟବହାର, ଆଚାର-ବିଚାର, ଜଳବାୟୁ ବିଭେଦସତ୍ତ୍ୱେ ଗୋଟିଏ ତାଳରେ ବାଜିଉଠେ କୋଟି କୋଟି ଜନତାର କଦମ୍ । ଗୋଟିଏ ସ୍ୱରରେ ଧ୍ୱନିତ ହୁଏ ଭାରତର ଗଗନ ପବନ ।

ଆଲୋକର ଛଟା ଚମକିଉଠେ ଦିଗ୍‌ବିଦିଗବ୍ୟାପୀ । ସେଇ ଆଲୋକର ଆବାହନଲାଗି ପ୍ରସ୍ତୁତ ହୁଏ ସମଗ୍ର ଦେଶ—କୋଟି କୋଟି ପୁରୁଷ ନାରୀ, ଶିଶୁ, ବୃଦ୍ଧ ହୋଇପଡ଼ନ୍ତି ମାତ୍ର ଗୋଟିଏ ମଣିଷ । ସମସ୍ତେ ପ୍ରସ୍ତୁତ ଜୀବନ ପଣକରି—''ମନ୍ତ୍ରଂ ବା ସାଧୟେତ୍ ଶରୀରଂ ବା ପାତୟେତ୍'' ଏହା ଯେପରି ଅବା ଏକ ନିରବଚ୍ଛିନ୍ନ ସଂଗ୍ରାମ—ବାରିହୁଏ ନାହିଁ କେଉଁଠାରେ କାହିଁ ବିଶ୍ରାମ—ଆରାମ ହାରାମ ହେି ।

ସେଇ ଅଖଣ୍ଡ ଅସୀମ ଲଢ଼େଇରେ ଲାଭାଲାଭର ହିସାବ କାହିଁ ? ସେଇ ଲଢ଼େଇଟା ଯେ ନିଜେ ନିଜର ବିଜୟ ! ସବୁ ହାରଜିତ୍‌ର ସବୁଉପରେ ତା'ର ଥାନ, ସେଇଠାରେ ହିଁ ମୃତ୍ୟୁଟା ଯେମିତି ଅମୃତ—ସର୍ଗ ।

ସେ ଲଢ଼େଇଟା ତ ଆଜି ନୂଆ ନୁହେଁ । ଯୁଗ ଯୁଗ ଧରି ତାହାରି ବାଟ ବଡେଇ ଆସିଛି ପୁରୁଣା ଏଇ ଭାରତବର୍ଷ ।

ଆଜି ପୁଣି ଆସିଗଲା ସେଇ ମହାଭାରତର ଡାକରା । ତାହା ପାଖରେ ତ ଓଡ଼ିଆ ନାହିଁ କି ବଙ୍ଗାଳୀ ନାହିଁ, ତେଲୁଗୁ ନାହିଁ କି ତାମିଲ ନାହିଁ, ଗୁଜରାଟୀ ନାହିଁ କି ମରାଠୀ ନାହିଁ, ଅସମୀୟା ନାହିଁ କନଡ଼ମାଳୟ ନାହିଁ—ନାହିଁ କିଛି ଧନୀ ଗରିବ ଫରକ—ସେ ଯେ ମହାଭାରତ ଡାକରା ।

ସେଇ ଡାକରାରେ କମ୍ପିଉଠିଲା ଭାରତର ମାଟି, କମ୍ପିଉଠିଲା ଧରିତ୍ରୀ ମାତା । କୋଟି କୋଟି ମଣିଷର ପାଦ ଅବା ଚିହିଁକିଗଲା ମାଟିତଳୁ ଚାଖଣ୍ଡେ ଉପରକୁ । ହଠାତ୍ ଯେମିତି କୋଟି କୋଟି ପାଦ ଏକ ସାଥିରେ ଧାଇଁବାକୁ ଆରମ୍ଭ କରିଦିଏ କ୍ଷିପ୍ରବେଗରେ । ଆଉ ସେ ଧାଇଁବାର ଶେଷ ନାହିଁ କେଉଁଠି ହେଲେ—ଆରାମ, ହାରାମ୍ ହି । କୋଟି କୋଟି ମଣିଷ ଆଲିଙ୍ଗନ କରେ ପରସ୍ପରକୁ ଭାଇଭାଇ ଡାକଦେଇ । କିଏ ସେଠାରେ ଆଗ, ପୁଣି କିଏ ସେଠାରେ ପଛ—ହିସାବ ନଥାଏ ତା'ର ।

ସାହାଣ ମେଲା ଦର୍ଶନ—ଭାରତଦର୍ଶନ—କିଏ ଅବା ସବୁରି ପଛରେ ଗରୁଡ଼ ସନ୍ନିଧାନ ହୋଇ— ଆଉ କିଏ ଏକାବେଳେ ବଡ଼ଦାଣ୍ଡ ଧୂଳିକୁ ମୁଣ୍ଡରେ ବୋଳି ଅରୁଣ ଖୁମ୍ବ ପାଖେ ପତିତପାବନକୁ ଚାହେଁ !

ହଠାତ୍ ଯେମିତି କେଉଁ କୁହୁକ ବଳରେ ଏକ ହୋଇ ପଡ଼େ ସବୁରି ଅନ୍ତର—ମଣିଷକୁ ମଣିଷ ଭଲ ପାଇବାର ସହଜ ଧର୍ମଟା ଯେମିତି ଦୋହଲାଇ ଦିଏ କୋଟି ପ୍ରାଣକୁ କେଉଁ ଏକ ପ୍ରଚଣ୍ଡ ଝଡ଼ର ଆବେଗରେ । ସେଇ ଆବେଗର ଅଯମାରମ୍ଭ ହୁଏ ପହିଲେ ତିଳକ ମହାରାଜଙ୍କ ମନ୍ତ୍ରରୁ "Swaraj is my birth-right" —ସ୍ୱରାଜ ମୋର ଜନ୍ମଗତ ଅଧିକାର—ଜୀବନଠାରୁ ଅଧିକ ପ୍ରିୟ, ଅଧିକ ମୂଲ୍ୟବାନ୍ ମୋର ସ୍ୱରାଜ ।

ଗାନ୍ଧୀ ଆଣିଲେ ସେଇ ସ୍ୱରାଜକୁ ଏକାବେଳେ ହାତମୁଠାରେ— "Swaraj within a year" ବର୍ଷକ ଭିତରେ ସ୍ୱରାଜ । ଏହାହିଁ ଭାରତ ଜନତାର ହୁଏ ଏକମାତ୍ର ମନ୍ତ୍ର—ଯେପରି ଅବା ଏକମାତ୍ର ଧ୍ୟାନ, ଏକମାତ୍ର କାମ୍ୟ । ଭାରତର କୋଟି କୋଟି ଜନତା କେବଳ ପରସ୍ପରକୁ ଭଲପାଇ ଏକଜୁଟ ହେବାର ମନ୍ତ୍ର ଏହା ।

ଖାଲି ଭାରତ କାହିଁକି—ଭାରତର ଏଇ ଡାକରାରେ ଯେମିତି ଚମକିଯାଏ, ପୃଥିବୀର ଗୋଟିଏ ସୀମାରୁ ଅନ୍ୟ ସୀମାଯାକେ । ସାରା ଦୁନିଆର ମଣିଷ ଅବା ହୋଇପଡ଼େ ଅକସ୍ମାତ୍ ଏକଜୁଟ୍ । ବ୍ୟାକୁଳ ହୋଇଉଠେ ଶାନ୍ତି ସହାବସ୍ଥାନଲାଗି । ସେଠାରେ ହାରଜିତ୍‌ର ପ୍ରଶ୍ନ ନାହିଁ—ପ୍ରଶ୍ନ କେବଳ ଭଲ ପାଇବାର—ମଣିଷକୁ ମଣିଷ ଭଲପାଇବା । ସେ ଯେ ସୃଷ୍ଟିର

ନିୟମ । ଭଲ ପାଇବାକୁ ଯାଇ ହାରିଯିବାଟା ଯେ ବିଜୟ । ତାହା ଯେ ପ୍ରୀତି ପାଖରେ ହାରିଯିବା !—

''ମୁଁ ହାରିଲେ ହେଉ ଏତିକି ଗୋ ।
କୁହାରୁଛି ଶ୍ୟାମ ପ୍ରୀତିକି ଗୋ ॥''

ସେଇଠାରେ ହିଁ ସୃଷ୍ଟିର ନିୟମକୁ ମାନି ନିଆଯାଏ—ସେଇ ପ୍ରେମ ପାଖରେ ହାରିଯିବା ଯେ ପରମ ଗୌରବ ! ଭଲ ପାଇବାରୁ ହିଁ ସୃଷ୍ଟିର ଆରମ୍ଭ—ଆଉ ଘୃଣାରୁ ତା'ର ଧ୍ୱଂସ ।

ମ୍ୟାଟ୍ରିକ୍ ପରୀକ୍ଷା ଦେବା-କି-ନ-ଦେବା ଅନ୍ତର୍ଦ୍ୱନ୍ଦ୍ୱର ନିଷ୍ପତ୍ତି ସେ ଦିନ ପୁରୀ ସାମନ୍ତ ଚନ୍ଦ୍ରଶେଖର ହଲ୍‌ରେ ଯେଭଳି ବ୍ୟର୍ଥ ହୁଏ, ସେଭଳି ବ୍ୟର୍ଥତା ଘୋଟି ରହେ ଅବା ମୋ ଜୀବନର ପଦେ ପଦେ । ମୋ ନିଜର ଅନ୍ତର୍ନିହିତ ବହୁ ଆକାଙ୍‌କ୍ଷା, ବହୁ ସଂକଳ୍ପ ପ୍ରତିହତ ଓ ବ୍ୟର୍ଥ ହୋଇପଡ଼େ ବାରମ୍ବାର ।

ସେଇଭଳି 'ଥିବିକି ଛାଡ଼ିବି ପ୍ରାଣ'ର ସଂଶୟ—ଜୟ ପରାଜୟର ଦ୍ୱନ୍ଦ୍ୱ—ସାର୍ଥକତା ଓ ବ୍ୟର୍ଥତାର ମଧ୍ୟବର୍ତ୍ତୀ ଚରମ ମୁହୂର୍ତ୍ତ–କର୍ତ୍ତବ୍ୟା-କର୍ତ୍ତବ୍ୟ ସ୍ଥିର କରି ନ ପାରିବାର ଅସାମର୍ଥ୍ୟ, ଅନୁଶୋଚନା—ପଶ୍ଚାତକ ବା ପରାଜିତ ମନୋଭାବଦ୍ୱାରା ପଦେ ପଦେ ଆକ୍ରାନ୍ତ ହୋଇ ପଡ଼ିବାର ବିଡ଼ମ୍ବନା—ମାନସିକ ମହାସଂଘର୍ଷର ସମ୍ମୁଖୀନ ହୋଇ ବାଟ ଖୋଜିବାକୁ ଅଣ୍ଡାଳି ହେବା—''ତୁଳସୀ ଦିଅ ବାଟ ଦେଖାଇ, କେଉଁଠାରେ'ଛନ୍ତି ମୋ ଭାବଗ୍ରାହୀ''—କିଏ ମୋର ଭାବ ଗ୍ରହଣ କରନ୍ତି ପ୍ରାଣର ?

ପଦେ ପଦେ ମୁହାଁମୁହିଁ ହେବା ଜୀବନବ୍ୟାପୀ ବିରାଟ ବ୍ୟର୍ଥତାର ଅଖଣ୍ଡ ଏକ ବିକଟ ବୀଭତ୍ସ ରୂପ ସହିତ । ପଦେ ପଦେ ଜୀବନ-ସଂଗ୍ରାମର ଦ୍ୱନ୍ଦ୍ୱ—ପୁଅ ମୁଣ୍ଡକୁ ଆଶା, ତେଲଘଡ଼ିକୁ ଆଶା—ଥରକୁ ଥର ଅସହାୟ ଭାବରେ ତ୍ରିଶଙ୍କୁ ହୋଇ ଝୁଲିପଡ଼ିଛି ମୁଁ ସର୍ଗ ମର୍ତ୍ତ୍ୟ ମଝିରେ—ଉପରକୁ ନ ଉଠି କିମ୍ବା ତଳକୁ ନ ଖସି । ବାଲ୍ୟବନ୍ଧୁ ହୃଦାନନ୍ଦଙ୍କ ଜୀବନଦର୍ଶନ ଠାରୁ ମୋର ଅବା ଫରକ୍ କେଉଁଠି ? ସେ ଫରକ୍ ଖାଲି ଇଟା, ଗୋଡ଼ି ଚୂନ, ସୁର୍କି ଛଡ଼ା ଆଉ କ'ଣକି ? ଶେଷରେ ନିଷ୍ଠୟ ଅବିକଳ ହୋଇ ରହିଯାଏ, ସେଇମାତ୍ର ଗୋଟାଏ କଥା—ଭଲ ପାଇବା ।

ଜୀବନ-ଯୁଦ୍ଧରେ ବିଜୟୀ ହେବାଲାଗି ଭଲ ପାଇବାଠାରୁ ଯେ ବଡ଼ ଅସ୍ତ୍ର ହୋଇ ଆଉ କିଛି ନାହିଁ—ଶେଷ ନିଃଶ୍ୱାସ ଛାଡ଼ିଲାବେଳେ ଏଇ ଗୋଟାଏ କଥା ଯେମିତି ମୋର ସ୍ମରଣ ହୁଏ—ଜୀବନବ୍ୟାପୀ ଅସଂଖ୍ୟ ପରୀକ୍ଷା ନିରୀକ୍ଷା ଭିତରେ, ଶତ୍ରୁ ମିତ୍ର ଠଉରେଇବାର ବିଫଳ ପ୍ରୟାସ ସହିରେ ଏଇ ବିଶ୍ୱାସ ମୋର ଦୃଢ଼ରୁ ଦୃଢ଼ତର ପ୍ରମାଣ ଉପରେ ଚଢ଼ି ପ୍ରତିପଦକ୍ଷେପରେ ହିଁ ଯେମିତି ଉଭାହୁଏ ଉଚ୍ଚରୁ ଉଚ୍ଚତର ହୋଇ ।

ଭଲ ପାଇବାରେ ଯଦିବା ହାରିଯାଏଁ, ସେଭଳି ପରାଜୟକୁ ମାନି ନେବାଲାଗି ମୋର ସୁଦୀର୍ଘ ଜୀବନ ହିଁ ଆଘାତ ଉପରେ ଆଘାତ ପାଇ ଅବା ମୋତେ ଶିଖାଇ ଆସିଛି ଥରକୁ ଥର । ମୋର ପ୍ରତି ପଦସ୍ଖଳନ ଓ ପତନରେ ତାହାହିଁ ଆଣିଦିଏ ସବୁ ଆଶା-ବିଶ୍ୱାସ ଦମ୍ଭ ଓ ସାହସ । ସକଳ ପ୍ରବଞ୍ଚନା ଭିତରେ ସେଇ ଗୋଟିଏ କଥା, ଯୋଡ଼ିଏ ଅକ୍ଷର—ପ୍ରେମ ।

ଜୀବନ ଯୁଦ୍ଧରେ ଥରକୁ ଥର ଲଢ଼େଇ କରି ମୁଁ ଯେତିକି ହାରିଛି, ପୁଣି ସେଥିଲାଗି ଅନୁତାପାନଳରେ ଯେତିକି ଜଳି ଖସି ଯାଇଛି ତଳକୁ ତଳକୁ—ସବାତଳରେ ହିଁ ମିଳେ ଯେମିତି ପୁଣି ସବୁଠୁଁ ମଧୁର ଶୀତଳ ସେଇ ପ୍ରୀତିର ଆସ୍ୱାଦ—ଆଉ ସେଇ ଭଲପାଇବାର ପ୍ରଗାଢ଼ ପ୍ରୟାସ, ମଣିଷଠାରୁ ବାରମ୍ବାର ଆଘାତ ଲାଞ୍ଛନା ଅବମାନନା ଲାଭକରି ସୁଦ୍ଧା ସବୁରି ସହିତ ସହାବସ୍ଥାନ ଲାଗି ଆଦିମ ଯୁଗରୁ ସାହିତ୍ୟ—ସୃଷ୍ଟିର ମୌଳିକ ହେତୁ ପୁଣି ଆକ୍ଷରିକ ମର୍ମାନୁବାଦ—ପ୍ରତି ମୁହୂର୍ତ୍ତରେ ହୃତ୍‌ପିଣ୍ଡ-ଯନ୍ତ୍ରକୁ ଆଶ୍ଚର୍ଯ୍ୟଭାବରେ ଚାଳନ କରେ ଅବା ସେଇ ପ୍ରୀତି କେବଳ—ସକଳ ସାହିତ୍ୟ, ଅର୍ଥନୀତି, ବିଜ୍ଞାନ, ଯୁଦ୍ଧ, ବିଗ୍ରହ, ଶାନ୍ତିର ବିଶ୍ୱସୃଷ୍ଟି ଆରମ୍ଭଠାରୁ (ଯଦି ପ୍ରକୃତରେ ଏହାର ଆରମ୍ଭ ଓ ଶେଷ ବୋଲି କିଛି ହେଲେ ଥାଏ ପ୍ରକୃତରେ !)

ସେଇ ଅହେତୁକ ଅଜ୍ଞ ଅନ୍ଧ ପ୍ରୀତିହିଁ ଆଣି ଦେଇଛି, ମୋତେ ଜୀବନ ପ୍ରତି ଏକ ବେପରୁଆ ଶକ୍ତି, ସାହସ, ଦମ୍ଭ ପୁଣି ନିର୍ଭୀକତା, ପ୍ରତି ପଦକ୍ଷେପରେ ।

ସେଇ ପ୍ରୀତି ହିଁ ମୋତେ ଓଟାରିନିଏ ଜାତିର ଜନକ ଡାକରା ପ୍ରତି—ବର୍ଷକ ଭିତରେ ସ୍ୱରାଜ୍ୟ ! ସର୍ତ୍ତ କେବଳ ଗୋଟିଏ—କୁଟି ଖାଅ, କାଟି ପିନ୍ଧ—ବିଦେଶୀ ଲୁଗା ଛାଡ଼ । ଅତି ସହଜ ସରଳ ନିର୍ଦ୍ଦୋଷ କଥା । ଆଇନ୍ ବେଆଇନ ପ୍ରଶ୍ନ ନାହିଁ । ନିଜ କାମ ନିଜେ କର । ଆତ୍ମନିର୍ଭରଶୀଳ ହୁଅ । ବାସ୍ ! ଅତି ସାଧାସିଧା ପୁରୁଣାକାଳିଆ ବିଚାର ଅଜା ଆଈ ବୁଢ଼ାବୁଢ଼ୀଙ୍କର । ଅଥଚ—ତାହୁଁ, ତାହୁଁ— !

ଆକୁମାରୀ ହିମାଳୟ ଥରହର ସେଇ ଡାକରେ—ସହର ବଜାରରେ ଜଳିଉଠେ ଏକ ଅଦ୍ଭୁତ ନିଆଁ—ବିଦେଶୀ ଲୁଗା ପୋଡ଼ା ହେବାର—ଘରେ ଘରେ ଗାଁଏ ଗାଁଏ ଚାଲେ ଅରଟ ସୂତାକଟାର । ଆମ ଘରେ ତ ବାପା ଓ ଭାଇନାଙ୍କଠାରୁ ଆରମ୍ଭ କରି ସ୍ୱଦେଶୀ-ଗାନ୍ଧୀ ଆଦର୍ଶରେ ଅନୁପ୍ରାଣିତ । ତହୁଁ ଘରେ ସୂତାକଟା ଖଦଡ଼—ପିନ୍ଧାର ସହଜ ଅବାଧ ପ୍ରବେଶ । ତା' ଆଗରୁ ଭାଇନାଙ୍କ ମୁହଁରେ ହିଁ ରବୀନ୍ଦ୍ର ସାହିତ୍ୟର ପ୍ରଶଂସା ଶୁଣି ମୁଁ ସେଥିପ୍ରତି ଆକୃଷ୍ଟ ହୁଏଁ । କଲିକତାରୁ ତାଙ୍କର 'ସୋନାର ତରୀ' କବିତା, ପ୍ରବନ୍ଧାବଳୀ, ଓ 'ଗୀତାଞ୍ଜଳି' ଆଦି ମଗାଇ ପଢ଼େଁ । ତାଙ୍କ 'ଜୀବନସ୍ମୃତି' ପାର୍ଶଲଟି ପାଇବା ଦିନ ମନ ମୋର ନାଚି ଉଠିଥିଲା ଅପାର ଆନନ୍ଦରେ । ସତେ ଅବା ରବୀନ୍ଦ୍ର ମୋର ହାତମୁଠାରେ ଧରା ପଡ଼ିଗଲେ ! ଆମ ଘର ଭିତରେ ରାଜନୀତି ଓ ସାହିତ୍ୟର ଯଥାର୍ଥ ଆଦର୍ଶର ବିହନ ବୁଣନ୍ତି ଜ୍ୟେଷ୍ଠ ଦିବ୍ୟସିଂହ ।

ସେଥି ସଙ୍ଗେ ମୋର ଅସହଯୋଗ ଆନ୍ଦୋଳନରେ ସ୍କୁଲ ଛାଡ଼ିବା କିମ୍ବା ପରୀକ୍ଷା ନ ଦେବାର ପକ୍ଷପାତୀ ଅବଶ୍ୟ ନଥିଲେ ସେ । ଛାତ୍ର ଅବସ୍ଥାରେ ଆଗ ନିଜ କର୍ତ୍ତବ୍ୟ ତୁଲାଇ ସାରି ପରେ ଦେଶ ସେବାରେ ମନ ଦେବା ତାଙ୍କର ଥିଲା ମତ । ସେ ମତଟାକୁ ରବୀନ୍ଦ୍ରନାଥ ସମେତ କେତେକ କଂଗ୍ରେସ ନେତା ବି ପୋଷଣ କରୁଥିଲେ ।

ବାପାଙ୍କର ମତାମତ ମଧ୍ୟ ଉଗ୍ରତର, ପୁଣି ପ୍ରଚଳିତ ଶିକ୍ଷା ପ୍ରଣାଳୀର ସେ ଘୋର ବିରୋଧୀ ହେଲେହେଁ ନିଜେ ଆଇନ୍ ବ୍ୟବସାୟ ଛାଡ଼ି ଘରେ ଅକର୍ତ୍ତବ୍ୟ ହୋଇ ବସିଥାନ୍ତି । ଅତଏବ ମୁଁ ଅତ୍ୟନ୍ତ ନିରୁପାୟ ହୋଇ ମ୍ୟାଟ୍ରିକ ପରୀକ୍ଷା ଦିଏଁ—ଗାନ୍ଧୀ ବିଚାରଧାରାକୁ ଆଡ଼େଇ ଦେଇ ।

ମାତ୍ର ସେତେବେଳେ ମୋର ଚିନ୍ତା ଓ ଆଦର୍ଶକୁ ଖୋରାକ ଯୋଗାଏ କାଳିଦାସ ଓ ରବୀନ୍ଦ୍ର ସାହିତ୍ୟ, ସେକ୍‌ସପିଅର ଓ ମିଲଟନ୍‌ଙ୍କ ସଙ୍ଗେ ହ୍ୟୁଗୋ, ଗ୍ୟେଟେ ଆଦି ଆନ୍ତର୍ଜାତିକ ସାହିତ୍ୟ । ଜୀବନର ବିପୁଳ ରାଜନୀତିକ ଫାଙ୍କଟା ପୂରଣ ହୁଏ ଅବା ମୋର କେବଳ ସାହିତ୍ୟ ସାହାଯ୍ୟରେ ।

ରବୀନ୍ଦ୍ର ଶତବାର୍ଷିକୀ ଜୟନ୍ତୀ ଉତ୍ସବ ପାଳିତ ହୁଏ ୧୯୬୨ ବମ୍ବେଠାରେ । ଗୁଜୁରାଟର ପ୍ରଖ୍ୟାତ କବି ଶ୍ରୀ ଉମାଶଙ୍କର ଯୋଶୀଙ୍କ ସହିତ ମୁଁ ଏକତ୍ର ଗୋଟିଏ ହୋଟେଲ୍‌ରେ ଅବସ୍ଥାନ କରେଁ, ପ୍ରଧାନମନ୍ତ୍ରୀ ନେହେରୁ ଉତ୍ସବ ଉଦ୍‌ଘାଟନ କରି କହନ୍ତି—ଯୌବନରେ ସେ ବେଶି ଆକୃଷ୍ଟ ହୁଅନ୍ତି ଗାନ୍ଧୀଙ୍କ ଅପେକ୍ଷା ରବୀନ୍ଦ୍ରଙ୍କ ପ୍ରତି, ମାତ୍ର ଗାନ୍ଧୀ ତାଙ୍କୁ ଓଟାରି ଆଣନ୍ତି ମାନସ-ଲୋକରୁ ଏକାବେଳେ କଠୋର କର୍ମ କ୍ଷେତ୍ରକୁ ।

ମୋ ଜୀବନରେ କିନ୍ତୁ ସେଇ ସାଧାରଣ କଥାଟି ପ୍ରତିଫଳିତ ହୁଏ ପରା !—

''ମନ ବୋଲେ ମୁଁ ଜଗତୀ ଚଢ଼ିବି ।
କର୍ମ ବୋଲେ ମୁଁ ବିଆଳି ବାଛିବି ।।''

ମାନସିକ ବହୁ ଦ୍ୱନ୍ଦ୍ୱ ଅସ୍ଥିରତା ଭିତରେ ମ୍ୟାଟ୍ରିକ୍ ପରୀକ୍ଷାରେ ମୁଁ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୁଏଁ । ସେତେବେଳେ ବାପାଙ୍କ ବରାଦରେ ଗାଁରେ ରହିଥାଏଁ ଧାନ ଅମଳ କରାଇବାକୁ । ମ୍ୟାଟ୍ରିକ୍ ପରୀକ୍ଷା ଫଳଟା ପ୍ରତି 'କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ' ଭଳି ମୋର ନିସ୍ପୃହ ମନୋଭାବ । ଗାନ୍ଧିପ୍ରମୁଖ ଶ୍ରେଷ୍ଠ ନେତାମାନେ ତ ସେତେବେଳର ଶିକ୍ଷା ପ୍ରଣାଳୀକୁ ପୂରା ନାକଚ କରିଦେଇଥାନ୍ତି ଏକ ନୌକାର ସହି ମନୋଭାବ ଗଢ଼ିବାର କୌଶଳ ଭାବରେ । ସେଇ ପ୍ରଣାଳୀର ବେଶି କିଛି ଅଦଳ ବଦଳ ଆଜି ସୁଦ୍ଧା ତ ହେଲାନାହିଁ ପରା ! ସେତେବେଳେ ମୁଁ କିନ୍ତୁ ଟିକିଏ ବିଚଳିତ ହୋଇପଡ଼େ, ଖଣ୍ଡେ ଚିଠିପାଇ, କାର୍ଡ଼ଟି ପଠାଇଥାନ୍ତି ବନ୍ଧୁ ଶ୍ରୀ ଅନ୍ନଦାଶଙ୍କର ରାୟ ତାଙ୍କ ଘର ଢେଙ୍କାନାଳରୁ । ତାଙ୍କର ମଧ ସେଇ ଦ୍ୱିତୀୟ ଶ୍ରେଣୀରେ ପାସ୍ । ତହିଁରେ ବିବ୍ରତ ନ ହୋଇ କଲେଜରେ ଉନ୍ନତି କରିବାକୁ ନିଜେ ବଦ୍ଧପରିକର ହେବାପାଇଁ ମଧ ସେ ଉତ୍ସାହ ଦେଇଥାନ୍ତି କିନ୍ତୁ ସେ ଉତ୍ସାହରେ ମୁଁ ଯୋଗ ଦେଇପାରେଁ ନାହିଁ ।

କାରଣଟା ଏବେ ଅନୁମାନ କରାଯାଇପାରେ । ଆମ ଦୁହିଁଙ୍କ ଭିତରୁ ସେ ଥିଲେ ଅବିବାହିତ । ଆର୍ଥିକ ଦୃଷ୍ଟିରୁ ସ୍ୱୟଂ ସ୍ୱାଧୀନ ନ ହେବାଯାକେ ବିବାହ ପ୍ରଶ୍ନ ତାଙ୍କ ପକ୍ଷରେ କଳ୍ପନାତୀତ ।

ମୁଁ କିନ୍ତୁ ଜୀବନଟାକୁ ଆରମ୍ଭରୁ ହିଁ ବେୟାରିଂ ପୋଷ୍ଟରେ ଛାଡ଼ି ଦେଇଥାଏଁ । ଆରମ୍ଭରୁ ହିଁ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ''ଅର୍ଥମନର୍ଥମ୍ ଭାବୟ ନିତ୍ୟମ୍—ନାସ୍ତି ତତଃ ସୁଖ ଲେଶଃ ସତ୍ୟମ୍'' କେବଳ ମୁଖସ୍ଥ ନ କରି ଏକାବେଳେ ଢୋକିଦେଇ ଦୋରସ୍ତ ଉଦରସ୍ଥ କରି ହଜମକରି ପକାଇଥାଏଁ ଯେମିତି ! ଅଥଚ, ଭଗବାନ ଶଙ୍କରଙ୍କ ଭଳି ଚିର ବ୍ରହ୍ମଚାରୀ ହେବା ଦୂରେ ଥାଉ, ବାଲ୍ୟବିବାହ କରି ରୀତିମତ ସଂସାର ଆରମ୍ଭ କରିପକାଏଁ ଅଧ୍ୟୟନ କାଳରେ; ଅବଶ୍ୟ ପ୍ରାଥମିକ ଅବସ୍ଥାଟା କଳ୍ପନାରେ ଖାଲି । ଆଉ ସେଇ କଳ୍ପନା ହିଁ ଥିଲା ବାସ୍ତବଠାରୁ ଢେର୍ ବେଶି ସତ୍ ଯେମିତି ।

ବିବାହ ସଙ୍ଗେ ସଙ୍ଗେ ପୁଣି ସୁଦୀର୍ଘ ଚାରିଟି ବର୍ଷର ବିଚ୍ଛେଦ ! କେଉଁ ଯୁବକ ଆଜି ସମାଜବାଦର ଏଭଳି ଅସାମାଜିକ ଅନ୍ୟାୟକୁ ବରଦାସ୍ତ କରିପାରେ କହନ୍ତୁ ଦେଖି ? ମୋ'ର ସେଇ ଚାରିଟାବର୍ଷ ଗଣି ଗଣି ବିତିଗଲେ ସୁଦ୍ଧା ଏଣେ ବର୍ଷକ ଭିତରେ ସ୍ୱରାଜ ତ କାହିଁ ଆସିଲା ନି !

ଇଂରେଜ ସରକାର—ବାଘ ଛେଳିକୁ ଯେ ଏକାଠି ପାଣି ପିଆଏ । ଶାସନ ବେଢ଼ିଟା ହୋଇଉଠେ ତା'ର ଆହୁରି ଦୃଢ଼ରୁ ଦୃଢ଼ତର । ତେବେ କ'ଣ ଏତେ ଜେଲ୍ ଜୋରିମନା ହାତକଡ଼ି ଘରପୋଡ଼ି ବେତ୍ରାଘାତ—ସବୁ ଅକାରଣ, ବ୍ୟର୍ଥ, ବିଫଳ' ।

ମନରେ ମୋ'ର ଦ୍ୱନ୍ଦ୍ୱ ଉପୁଜେ ଦେଶର ଭବିଷ୍ୟତ ପୁଣି ନିଜ ସମ୍ପର୍କରେ ମଧ୍ୟ । ସମସ୍ୟାର ଯେ ଆଦିଅନ୍ତ ମିଳେ ନାହିଁ ! ଅଥଚ ସମାଧାନ ? ସମାଧାନ କେଉଁଠି ? ତାହାରି ଅନ୍ୱେଷଣ ହିଁ ବୋଧହୁଏ ଜୀବନ !

ଜୀବନ ! ଜୀବନ ! କେଉଁଠି ଲୁଚୁରେ ଜୀବନ ! ଚାରିଆଡ଼େ ଏଇ ଘୋଟି ଆସେ ଯେ ମୃତ୍ୟୁର କରାଳ ଅଟ୍ଟହାସ । କେତେ ଯେ ରାକ୍ଷସୀ ଛଦ୍ମବେଶିନୀ ସୂର୍ପଣଖାର କୌଶଳରୁ ତୁହି ଉତୁରି ଆସୁରେ ଜୀବନ ! କେତେ କାନ୍ଦଣାର ଲୁହ-ସମୁଦ୍ରରେ ବାନ୍ଧୁରେ ତୁ ପୁଣି ସେତୁବନ୍ଧ !



## ବଡ଼ଦେଉଳ, ବଡ଼ଦାଣ୍ଡ,
## ମହାସାଗର କୂଳେ ମହାମାନବ

ସାପ୍ତାହିକ 'ସମାଜ' ପୁରୀରୁ ପ୍ରକାଶ ପାଉଥାଏ । ସତ୍ୟବାଦୀ ପ୍ରେସ୍ ସାକ୍ଷୀଗୋପାଳରୁ ଉଠିଆସି ବସିଥାଏ ପୁରୀ ପଥୁରିଆ ସାହିର ପଥରକୋଠା ଭିତରେ । ମୋର ମାଟ୍ରିକ ପରୀକ୍ଷା ସରିଥାଏ । ପ୍ରାୟ ପ୍ରତିଦିନ ଗୋପବନ୍ଧୁଙ୍କ ପାଖକୁ ଯାଏଁ । ତାଙ୍କ ପାଖରେ ରହିଥିବା ରାମ କେଉଁ ଦିନ ମୁଢ଼ି ନଡ଼ିଆ, ଆଉ କେବେ ସୋରିଷତେଲ ମୁଢ଼ିରେ ଗୋଳାଇ ସକାଳ ଜଳଖିଆ ରଖିଯାଏ । ସେଥିରୁ ଗଣ୍ଡିଏ ମୋପାଇଁ ମଧ୍ୟ ବରାଦ ହୁଏ ।

ମୁଢ଼ି ଚୋବାଉଁ ଚୋବାଉଁ ସେ କେତେ ଦୁଃଖ ସୁଖ ହୁଅନ୍ତି; ସତେ ଅବା ମୁଁ ତାଙ୍କର ଜଣେ ଅତି ଆପଣାର ସାଙ୍ଗସାଥୀ ! କେତେ ଗାଁ ସେ ବୁଲିଲେ, କେଉଁଠି ଲୋକେ ପୁରୁଣି ସାଗରେ ଛୁଙ୍କ ଦେଲାଭଳି ମୁଠାଏ ଚାଉଳ ସିଝାଇ ପେଟ ପୂରାଇ ମାତ୍ର ଚଳନ୍ତି କେମିତି, କେଡ଼େ କଷ୍ଟରେ, ଇତ୍ୟାଦି ଇତ୍ୟାଦି ।

ଦୂରରେ ବାରଣ୍ଡା ସେପାଖେ ଦିଶେ ଛାପାଖାନା କାମରେ ଅହରହ ବ୍ୟସ୍ତ ରହିଥିବା ଖାଲି ଦେହରେ ଯୁବକ ଶ୍ରୀ ରାଧାନାଥ ରଥଙ୍କର ଗୋରାଟକଟକ ଚେହେରାଟି ଫୁଙ୍ଗୁଳା ଦେହରେ ଖଣ୍ଡେ ଖଦଡ଼ ଧୋତି ପିନ୍ଧି ।

କାଲ ଆଗରେ ମୂଳା ଚୋବାଇଲା ଭଳି ଗୋପବନ୍ଧୁ ମୋତେ କହି ଲାଗନ୍ତି, ''ଦେଖୁଚଟି ଆମ ସରକାରକୁ, ପୁଣି ନିଜେ କେମିତି ଲାଟସାହେବ ସ୍ତ୍ରୀ ଲୋକମାନଙ୍କ ହାତରେ ପିତଳବାହି ଦେଖି ତାହାକୁ ସୁନାଖଡୁ କହି ଖୁବ୍ ସୁଖରେ ସେମାନେ ଅଛନ୍ତି ବୋଲି ତାଙ୍କ ପ୍ରତି ଭ୍ରୂକ୍ଷେପ କରନ୍ତି ନାହିଁ— କେଡ଼େ ନିର୍ମମ ଏ ସରକାର !''

ମୋ' ମୁହଁରୁ ବାହାରି ପଡ଼ିଲା, ''ଲୋକଗୁଡ଼ା କ'ଣ ସମସ୍ତେ ଭଲ ?''

ଗୋପବନ୍ଧୁଙ୍କ ତାଳୁରୁ ତଳିପାଯାକେ ଥରିଉଠେ । ଆଖି ଯୋଡ଼ିକ ଲୁହଛଳଛଳ । ଓଠ ଯୋଡ଼ିକ ପିଲାଙ୍କ ଭଳି କଇଁ କଇଁ ହୋଇ କାନ୍ଦିଉଠେ ।

''କ'ଣ କହିଲ ? ଲୋକେ ଭଲ ନୁହନ୍ତି ?'' ଆଉ କିଛି ସେ କହି ପାରିଲେନି । ଏଇ କଥାରେ ସେ ଯେମିତି ପାରନ୍ତି, ତାହା ମୋ'ର କଳ୍ପନାର ଏକାବେଳେ ଯେ ବାହାରେ । ହତବାକ୍ ହୋଇପଡ଼େ ମୁଁ ଆତ୍ମଧିକ୍କାରରେ ।

ମନେହୁଏ କୌଣସି ପୁରୁଷଙ୍କୁ ତାଙ୍କ ସ୍ତ୍ରୀ ଅସତୀ ବୋଲି କେହି କହିଲେ ସୁଦ୍ଧା ସେ ଏତେଦୂର ଅପମାନ ପାଇବେ ନାହିଁ ପରା ! ନୀରବରେ ମୁଁ କିଛି ସମୟ ପରେ ଉଠିଆସେଁ । ଆଉଥରେ ରାମ ସେମିତି ମୁଢ଼ି ଥାଳିଆ ଥୋଇଦେଇ କହେ, 'କାଲି ଚିତୋଉ ଅମାସ୍ୟା, ସେ ତା'ର ଗାଁକୁ ଯିବ ।'

''ଏଁ ଚିତୋଉ ଅମସ୍ୟା ?''

ତା'ପରେ ମୋତେ ଚାହିଁ ମୁରୁକି ହସି କହନ୍ତି, ''ଶୁଣୁଚ ତ ? କାଲି ତା'ର ଚିତୋଉ ଅମାସ୍ୟା । ଆଉ ମୋର ? ଚିତୋଉ ଚକୁଳି ସବୁ ସରିଲାଣି ମୋର—ନୁହେଁ କି ? ତୁମେ ପରା କବି ? ବୁଝିପାରୁଥିବ ନିଶ୍ଚୟ ।''

ଦିନେ ପୁଣି ପଚାରେଁ ମୁଁ—''ଆପଣ ଆଉ କବିତା ଲେଖୁନାହାନ୍ତି କାହିଁକି ?''

''ଏଁ ? କ'ଣ କହିଲ ?'' ମୋ'କଥା ଶୁଣି ତାଙ୍କର ନ ଶୁଣିଲା ପରି ପ୍ରଶ୍ନ—''ହଁ, କବିତା ଲେଖିବି ? ତେବେ କ'ଣ ଜାଣ କି ? କୋଇଲିର କୁହୁଧ୍ୱନି ଆଉ ତ କାହିଁକି ମୋ କାନରେ ବାଜୁନି । ବାଜୁଛି ଖାଲି ଭୋକିଲା ମଣିଷର ଚିତ୍କାର । ତାହା ଭିତରେ ପୁଣି କବିତାର ଥାନ କେଉଁଠି ?''

ଦୁଇ ଚାରିଦଣ୍ଡ ବିତିଯାଏ । ମୋତେ କିଛି ପଇଟେ ନାହିଁ କହିବାକୁ ତାଙ୍କୁ—ତା'ପରେ ତାଙ୍କରି ଆଡୁ ପ୍ରଶ୍ନ—''ଆଚ୍ଛା କହିଲ ଦେଖି, କୋଣାର୍କଠାରୁ ଆଉ ବଡ଼ କୀର୍ତ୍ତି କେଉଁଠି ଅଛି ? ପୁଣି ସେ ଦେଉଳର ମୁଣ୍ଡି ମାଇଲା ଯେଉଁ ପିଲାଟି ? ତା' ବିଷୟରେ ତ କିଏ କିଛି ଲେଖିଲେନି ?'' ସେତେବେଳକୁ ନୀଳକଣ୍ଠଙ୍କ 'କୋଣାର୍କେ' କିମ୍ବା ଗୋପବନ୍ଧୁଙ୍କ 'ଧର୍ମପଦ' ଲେଖାହୋଇ ନଥାଏ । ମୁଁ କିନ୍ତୁ ଗୋଟିଏ ସାନକବିତା ରଚନା କରିଥିଲି । ସେକଥା କହିବାକୁ ମୋ'ର ଖୁବ୍ ସଂକୋଚବୋଧ ହେଲା ତାଙ୍କ ଆଗରେ । 'ସହକାର'ରେ କି କାହିଁରେ ସେ କବିତା ମୋର ବାହାରେ । ଆଜି କିନ୍ତୁ ତାହା ପାଉନି ତ !

କଥା କଥାକେ ଉତ୍କଳମଣିଙ୍କ ଗହଳ ଦାଢ଼ିଭିତରୁ ସେଇ ଆଖି ଛଳଛଳ କରୁଣ ହସ ଯେ କେବେ ନିଭିବ, କିଏ କହିପାରେ ?—କେଉଁ ପ୍ରେମିକ ? କେଉଁ ସାଧକ ? କେଉଁ କବି ସେ ? କିନ୍ତୁ--

କବିତା କେବେହେଲେ ତ କାହାରି ବୋଲ ମାନି ନାହିଁ ।

କବିର ବୋଲ ସେ ମାନନ୍ତା ଅବା କିପରି ! ବନ୍ଦୀ କବିର ଆତ୍ମ-କଥା ହୋଇ ସବୁ ବନ୍ଧନ ବାଡ଼ବତା ଛିଣ୍ଡାଇ ଦେଇ ସେ ବାହାରି ଆସେ । ଓଡ଼ିଶାର ନଈବଢ଼ିରେ ବର୍ଷ ବର୍ଷ ଧରି ଯେତେ ପାଣି ମାଡ଼ିଯାଇ ଗାଁ ଗଣ୍ଡା ଉସାଇ ନିଏ ଯୁଗ ଯୁଗ ଧରି, ସେଇ ଆଖି ପାଣିଠାରୁ କେବେହେଲେ ତାହା ତ ଅଧିକ ହୋଇପାରିବ ନାହିଁ !

ଅଥଚ, ମୁଁ ସ୍ତମ୍ଭିତ ହୋଇପଡ଼େଁ ସେଇ ଅମାୟିକ ନିଷପଟ କାନ୍ଦଣାର ମଧ ଲଘୁ ସମାଲୋଚନା ଶୁଣି । ବକ୍ତୃତା ଦେଲାବେଳେ 'ଲାଲ-ବାଲ-ପାଲ' ସୁବିଖ୍ୟାତ ନେତୃତ୍ରୟୀଙ୍କ ମଧ୍ୟରୁ ସ୍ୱର୍ଗତ ବିପିନଚନ୍ଦ୍ର ପାଲ୍‌ଙ୍କର ଭାବପ୍ରବଣ ଭାଷଣ ମଧ ଶୁଣେଁ । ସେତେବେଳେ ପୁରୀ ସିଂହଦ୍ୱାରରେ ସମବେତ ଶ୍ରୋତାମାନଙ୍କୁ 'ଭକ୍ତିଯୋଗ' ପ୍ରଣେତା ଏଇ ମନୀଷୀଙ୍କର ଅନର୍ଗଳ ଭାଷଣ ଆମ ଭିତରେ ଗଭୀର ପ୍ରଭାବ ପକାଏ ।

ଆଉ କେବେ ଏଇଠି ଶୁଣୁଁ ପଞ୍ଜାବର ସିଂହ ଲାଲ ଲାଜ୍‌ପତ୍ ରାୟଙ୍କ ମୁଖରୁ ଗୁରୁଗମ୍ଭୀର ଭାଷଣ । ସେ ଭାଷଣର ପ୍ରତ୍ୟେକ ଶବ୍ଦ ଯେପରି ସୁସ୍ପଷ୍ଟ—ସେଇପରି ନିର୍ଭୀକ ଓ ନିଷ୍କମ୍ପ । ସେ ଭାଷଣରେ ହାସ୍ୟ କ୍ରନ୍ଦନର ସ୍ଥାନ ନାହିଁ, ଆବେଗ, ଉତ୍କଣ୍ଠା ଅବା ଉତ୍ତେଜନାର ଚିହ୍ନ ନାହିଁ । ଅଥଚ ତାହା ଯେଭଳି ତୀକ୍ଷ୍ଣ, ସେଇଭଳି କଠୋର ପୁଣି ଓଜନଦାର ।

ବଡ଼ଦାଣ୍ଡର ଗୋଟିଏ ସୀମାରେ ସିଂହଦ୍ୱାର, ଅପର ସୀମାରେ ଗୁଣ୍ଡିଚା ମନ୍ଦିର । ସିଂହଦ୍ୱାରରେ ଲାଲା ଲାଜପତ୍‌ରାୟଙ୍କ ସଭା ବସିଲେ 'ବଳଗଣ୍ଡି' ବା ଗୁଣ୍ଡିଚା ପଡ଼ିଆରେ ବସେ ଗାନ୍ଧୀଙ୍କ ସଭା ।

୧୯୨୧ ଖ୍ରୀଷ୍ଟାବ୍ଦ ଗାନ୍ଧୀଙ୍କର ପ୍ରଥମ ପୁରୀ ଆଗମନ । ସେତେବେଳକୁ ଭାରତବ୍ୟାପୀ ଚତୁର୍ଦ୍ଦିଗରେ ଗାନ୍ଧୀଙ୍କର ନାମ ଲୋକମୁଖରେ ଶୁଣାଗଲାଣି । ଶୁଣାଗଲାଣି ଗାନ୍ଧୀ ଅବତାର କାହାଣୀର ବହୁ ବିଚିତ୍ର ଆକାର ପ୍ରକାର । ଗାନ୍ଧୀ ଓହ୍ଲାଇବେ ସେ ଦିନ ପୁରୀ ରେଳ ଷ୍ଟେସନରେ । ହଜାର ହଜାର ଲୋକ ଦର୍ଶନ ପାଇଁ ରୁଣ୍ଡ ହୋଇଛନ୍ତି । ସ୍ୱେଚ୍ଛାସେବକ ଛାତ୍ରମାନଙ୍କ ମଧ୍ୟରେ ମୁଁ ମଧ ନେଇଥାଏଁ ସଙ୍ଗଠନର ଦାୟିତ୍ୱ ।

ପ୍ଲାଟ୍‌ଫର୍ମ ଭିତରକୁ ରେଳଗାଡ଼ିର ବେଗ କମି ଆସିବାମାତ୍ରେ ଦେଖାଗଲା—ଗୋଟିଏ ତୃତୀୟ ଶ୍ରେଣୀ ଡବାଦୁଆରେ ହାତଯୋଡ଼ି ଠିଆ ଜଣେ ଯାତ୍ରୀ । ସେଦିନ ଅପରାହ୍ଣରେ ଶତ ସହସ୍ର ଲୋକଙ୍କ ଉତ୍ସାହ ଉତ୍କଣ୍ଠା ଭିତରେ ଗାନ୍ଧିଜୀ ସଦଳବଳେ ଓହ୍ଲାନ୍ତି ପୁରୀ ଷ୍ଟେସନ ପ୍ଲାଟଫର୍ମରେ । ଶଙ୍ଖ ହୁଳହୁଳି ନାଦରେ ଧ୍ୱନିତ ହୁଏ ଆକାଶ ପବନ । ଗୋଟିଏ ଖୋଲା ଫିଟନ ଘୋଡ଼ାଗାଡ଼ି ଭିତରେ ବସି ଗାନ୍ଧିଜୀ ଜନତାକୁ ନମସ୍କାର କରୁଥାନ୍ତି—ତାହାର ଜବାବରେ ଶଙ୍ଖ, ହୁଳହୁଳି, ହରିବୋଲ—"ଗାନ୍ଧିଜୀ କି ଜୟ । ଭାରତମାତା କି ଜୟ ।"

ବିରାଟ ରୋଶଣି ଚାଲେ ବଡ଼ଦାଣ୍ଡ ଅତିକ୍ରମ କରି ସିଂହଦ୍ୱାରକୁ । ସେହିଠାରୁ ଦୋଳମଣ୍ଡପ ସାହି ଭିତରେ ସମୁଦ୍ର କୂଳରେ 'ରମାଭିଲା' ଲାଲକୋଠିରେ ଗାନ୍ଧିଙ୍କର ରହଣି ।

ଭଗ୍ନୋନ୍ମୁଖ ଏହି 'ରମାଭିଲା'ର ରୂପରଙ୍ଗ ଆଜି ଫିକା ପଡ଼ିଗଲାଣି । ଝରକା ଦୁଆର ଉପକ୍ରମ କଲାଣି ଖସି ପଡ଼ିବାକୁ ପାଚେରି ସମେତ । ଆଜି ମଧ୍ୟ ସେଇ ସ୍ମୃତିଚିହ୍ନ ବହନକରି ପତନୋନ୍ମୁଖ ଅବସ୍ଥାରେ ଠିଆ ହେବାକୁ ଅବା ତା'ର ଅସହାୟ ଉଦ୍ୟମ ! ସାମ୍ନାରେ ନୀଳ ସମୁଦ୍ର ଲହରୀମାଳ ଗୋଟିକ ପରେ ଗୋଟିଏ ଭାଙ୍ଗି ପଡୁଛି ପ୍ରତି ମୁହୂର୍ତ୍ତରେ । ସେହିଭଳି ଭାଙ୍ଗି ପଡ଼ିବାର ଦ୍ରୁତ ଉପକ୍ରମ କରୁଛି ଅବା ଗାନ୍ଧିଙ୍କ ପୁରୀ ଅବସ୍ଥାନ ବେଳର ଏହି 'ରମାଭିଲା'କୁ ଆଜି ଚାହିଁ ମୋର ସମୁଦାୟ ଅତୀତ ଆଉ ବର୍ତ୍ତମାନ । ତଥାପି ତାହାକୁ ଟୋକି ଧରିବା ଉଦ୍ୟମରେ ମଧ୍ୟ ଅନ୍ତନାହିଁ ମୋର ।

—ସେଥିସଙ୍ଗେ ପୁଣି କେତେ ଉତ୍ସାହ ଉନ୍ମାଦନାରେ ଉଚ୍ଚ–କେତେ ଯୋଜନା କଳ୍ପନାର ଉତ୍ତାଳ ତରଙ୍ଗ !

'ରମାଭିଲା' ଉପର ତାଲାରେ ଗାନ୍ଧିଜୀ ବସି ସୂତା କାଟୁଥାନ୍ତି ଚରଖାରେ । ସେଦିନ ସୋମବାର—ତାଙ୍କର ମୌନ ଦିବସ । ମୁଁ ଯାଇ ତାଙ୍କରି ଆଗରେ ବସେଁ । ମୋହ ପାଖରେ ଆସି ବସନ୍ତି ନେତାଜୀ ସୁଭାସ ବୋଷଙ୍କ ପିତା ଶ୍ରଦ୍ଧେୟ ଜାନକୀନାଥ ବୋଷ । ମୌନ ଦିନମାନଙ୍କରେ ଗାନ୍ଧିଜୀଙ୍କୁ କେହି କିଛି ପଚାରିଲେ ଲିଖିତ ଆକାରରେ ପ୍ରଶ୍ନ କରନ୍ତି । ଗାନ୍ଧି ମଧ୍ୟ ସେହିଭଳି ଲେଖି ଉତ୍ତର ଦିଅନ୍ତି ।

ଗାନ୍ଧିଜୀଙ୍କ ସାମ୍ନାରେ ବସି ମୁଁ ଏତେ ବେଶି ବିହ୍ୱଳ ବିମୂଢ଼ ହୋଇ ପଡ଼ିଥାଏଁ ଯେ, କୌଣସି ପ୍ରଶ୍ନ ପଚାରିବା ଅବସ୍ଥା ନଥାଏ ମୋର । ମୂକଭଳି ଏମିତି ତାଙ୍କୁ ଖାଲି ଚାହିଁରହି ଶେଷରେ ଓହ୍ଲାଇଆସେଁ ତଳକୁ । ତଳେ ଦେଖେଁ ଗୋଟିଏ ବଖରାରେ ଶୋଇ ଯାଇଥାନ୍ତି ଡକ୍ଟର ରାଜେନ୍ଦ୍ର ପ୍ରସାଦ । ନିଘୋଡ଼ ନିଦରେ ବୋଧହୁଏ ସେ ଘୁଙ୍ଗୁଡ଼ି ମାରୁଥିଲେ । ଶୋଇବା ଅବସ୍ଥାରେ ତାଙ୍କ ଚକ୍ଷୁରେ ଚଷମା ଦେଖି କାରଣଟା ତାହାର ବୁଝିବା ମୋ ପକ୍ଷରେ ସେତେବେଳେ ଖୁବ୍ କୌତୂହଳପୂର୍ଣ୍ଣ ଅସମ୍ଭବ ହୋଇପଡ଼ିଥିଲା ବୋଲି ଆଜିସୁଦ୍ଧା ମନେ ରହିଛି ।

ଅନ୍ୟ ବଖରାରେ ଦେଖିଲି ବୋଧହୁଏ କସ୍ତୁରବାଙ୍କ ସହିତ ତାଙ୍କ ପୁଅ ରାମଦାସଙ୍କୁ । ଗାନ୍ଧିଜୀ ପୁରୀ ଷ୍ଟେସନରେ ଓହ୍ଲାଇବା ପରେ ସ୍ୱେଚ୍ଛାସେବକମାନେ ଗାନ୍ଧିଜୀଙ୍କ ପଛରେ ଯାଇ ତାଙ୍କ ପୁଅ ଓ ଅନ୍ୟ ସମସ୍ତଙ୍କୁ ପାସୋରି ପକାଇଥିଲେ ନିଶ୍ଚୟ । ତହୁଁ ସେମାନଙ୍କୁ ବହୁ କଷ୍ଟରେ 'ରମାଭିଲା' ଆବିଷ୍କାର କରି ସେଇଠାକୁ ଆସିବାକୁ ପଡ଼ିଥିଲା ।

ପରଦିନ ଗୁଣ୍ଡିଚା ପଡ଼ିଆରେ ବିରାଟ ସାଧାରଣ ସଭା । ଗୋପବନ୍ଧୁ ତାଙ୍କର ସଭାବ ସୁଲଭ ଭାବପ୍ରବଣ ଉତ୍ତେଜନାପୂର୍ଣ୍ଣ ଭାଷଣରେ ଗାନ୍ଧିଙ୍କ ପରିଚୟ ଦେଇ କହନ୍ତି—ଭାରତରେ ବଡ଼ଲାଟ୍ ହେଉଛନ୍ତି ସର୍ବୋଚ୍ଚ ଶାସନକର୍ତ୍ତା । ମାତ୍ର କୋଟି କୋଟି ଜନତାର ହୃଦୟ ସିଂହାସନର ବଡ଼ଲାଟ୍ ଆଜି ଆମ ସାମ୍ନାରେ ଉପସ୍ଥିତ ।

ତୁମୁଳ କରତାଳି ଧ୍ୱନି ସହିତ 'ଭାରତମାତା କି ଜୟ, ଗାନ୍ଧିଜୀ କି ଜୟ', ଧ୍ୱନିରେ ବଡ଼ଦାଣ୍ଡ ପୁଣି ଉଚ୍ଛୁଳିଉଠେ । ଗାନ୍ଧିଜୀ ଅତି ସରଳ କଥୋପକଥନ ଭାଷାରେ ଭାଷଣ ଦେଇ କହନ୍ତି,—ତୁମ୍ଭେମାନେ ଜଗନ୍ନାଥଙ୍କୁ ପୂଜା କର ଅଥଚ ସେହି ଜଗନ୍ନାଥଙ୍କୁ ତୁମେ ବିଦେଶୀ ବସ୍ତ୍ରରେ ସଜାଇ ବିଦେଶୀକରି ପକାଇଛ । ନିଜ ଦେବତାଙ୍କୁ ଯେ ବିଦେଶୀ କରିଦିଏ ସେ ତାଙ୍କର ଆଶୀର୍ବାଦ ପାଇବ କିପରି ? ସେବକ ଭକ୍ତମାନେ ଆଗ ନିଜ ଚରିତ୍ରକୁ ବିଶୁଦ୍ଧ କରିବା

ଆବଶ୍ୟକ । ଆମେ ଭଗବାନ୍‌ଙ୍କୁ ଦର୍ଶନ କରିବାକୁ ନିଜେ ଆଗ ଯୋଗ୍ୟହେବା, ସ୍ୱୟଂ ଜଗନ୍ନାଥ ସେବକମାନଙ୍କ ଭିତରେ ଯଦି ଗୁଣ୍ଡାମି ଓ ରଣ୍ଡୀବାଜ୍ ଆଦି ବହୁ କଳଙ୍କ ପ୍ରବେଶ କରିଥାଏ, ତହିଁରୁ ଆଗ ଆମକୁ ମୁକ୍ତହେବାକୁ ପଡ଼ିବ ।

ଗାନ୍ଧୀଙ୍କ ମୁହଁରୁ ଏହି ଜଗନ୍ନାଥ ଅନୁଷ୍ଠାନରେ 'ଗୁଣ୍ଡାମି' ଓ 'ରଣ୍ଡୀବାଜ' ଶବ୍ଦ ମୋ କାନକୁ ଯେପରି ଅପ୍ରିୟ ଓ ଖଟକା ଶୁଣାଯାଇଥିଲା, ଆଜି ପଚାଶବର୍ଷ ପରେ ମଧ୍ୟ ତାହା ମୁଁ ପାସୋରି ପାରି ନାହିଁ, ପରେ ପଢ଼ି ଜାଣିଲି ଏଇ ଶବ୍ଦ ପୁରୀ ଜଗନ୍ନାଥଙ୍କ ସମ୍ପର୍କରେ ଗାନ୍ଧିଙ୍କର ନିଜସ୍ୱ ନୁହେଁ । ଏହା ସ୍ୱୟଂ କାର୍ଲମାର୍କସଙ୍କର ଉକ୍ତି, ଏହି ଉକ୍ତିର ସତ୍ୟତା ଉପଲବ୍ଧି କରିବାପାଇଁ ମୋର ଅବଶ୍ୟ କିଛିକାଳ ବିତିଯାଇଥିଲା । ସେ ଦିନ ତାଙ୍କ ସୁସ୍ପଷ୍ଟ ବକ୍ତବ୍ୟ ଭିତରେ ବିଦେଶୀ ଶାସନ କବଳରୁ ଭାରତବର୍ଷକୁ ମୁକ୍ତ କରିବା ପାଇଁ ଆମକୁ ସମ୍ପୂର୍ଣ୍ଣ ରୂପେ ଖାଦ୍ୟ ପରିଧାନରେ ସ୍ୱାବଲମ୍ବୀ ହେବାକୁ ପଡ଼ିବ ବୋଲି ଗାନ୍ଧିଜୀ ଜୋର୍‌ଦେଇ କହିଥିଲେ ମଧ୍ୟ ।

ଗାନ୍ଧୀଙ୍କ ଭାଷଣକୁ ଓଡ଼ିଆରେ ତର୍ଜମା କରି ଗୋପବନ୍ଧୁ ସ୍ୱଭାବ-ସୁଲଭ ସରଳଭାଷାରେ ବୁଝାଇ ଦିଅନ୍ତି, ଆଗରୁ ଜନତାକୁ ଉଦ୍ଦେଶ୍ୟ କରି ସେ ସାବଧାନ କରି ଦେଇଥାନ୍ତି ଯେ, ସଭାରେ କେହି ତାଳିମାରିବେ ନାହିଁ । କାରଣ ଭାରତର ସବୁଲୋକ ଯଦି ଏକ ସମୟରେ ଖାଲି ତାଳି ମାରିଦିଅନ୍ତି, ତା'ହେଲେ ସହସ୍ରଶିରା ରାବଣ ତାଳିମାରି ରାମଲକ୍ଷ୍ମଣ ଓ ତାଙ୍କର ସୈନ୍ୟସାମନ୍ତ ସମେତ ସବୁ ଯୋଦ୍ଧାଙ୍କୁ ଲକ୍ଷ ଯୋଜନ ପର୍ଯ୍ୟନ୍ତ ଉଡ଼ାଇ ନେଲା ଭଳି ଭାରତବର୍ଷର ଲୋକଙ୍କର କେବଳ ଏକ ସମୟରେ ସେଇ ତାଳିଶବ୍ଦ ଉଠିଲେ, ଇଂରେଜ ସରକାର ତାଙ୍କର ସବୁ ସୈନ୍ୟ ସାମନ୍ତଙ୍କ ସହିତ ଦରିଆ ଆରପାରିକୁ ଉଡ଼ିଯିବେ । ଏଇ କଥାରେ ଜନତା ମୁଖରୁ ଉଚ୍ଛୁଳି ପଡ଼େ 'ଗାନ୍ଧୀଜୀ କି ଜୟ' ସହିତ 'ହରିବୋଲ ହୁଳହୁଳି' ପୁଣି କାନ ଅତଡ଼ା କରତାଳି !

ଗୋପବନ୍ଧୁଙ୍କ ଓଡ଼ିଆଭାଷଣର ଅର୍ଥ ଗାନ୍ଧିଙ୍କୁ କିଏ ବୁଝାଇ ଦେଲାକି କ'ଣ, ସଙ୍ଗେ ସଙ୍ଗେ ସେ ଉଲ୍ଲସିତ ହୋଇ ହସିଉଠନ୍ତି, ଶେଷରେ ଗାନ୍ଧୀଜୀ ପ୍ରଶ୍ନ କରିଥିଲେ, ଲୋକେ କ'ଣ ଚାହାନ୍ତି ? ଗୋପବନ୍ଧୁ ଗାନ୍ଧିଙ୍କ କଥାକୁ ତର୍ଜମାକରି ବୁଝାଇଦେବାରୁ ସଙ୍ଗେ ସଙ୍ଗେ ଜନତାରୁ ଜବାବ୍ ମିଳେ—ଚାଉଳ, ଚାଉଳ ! ❖

ହସିହସି ଗୋପବନ୍ଧୁ ବୁଝାଇଦିଅନ୍ତି ଯେ, ଗାନ୍ଧୀ ଚାଉଳବସ୍ତା ସାଥୀରେ ଘେନି ଏଠାକୁ ଆସିନାହାନ୍ତି । ସେଇ ସମୟରୁ ଆଜି ସରିକି ଠିକ୍ ଅର୍ଦ୍ଧଶତାବ୍ଦୀ ବା ପଚାଶବର୍ଷ ବିତିଗଲେ ବି ପୁଣି ସ୍ୱାଧୀନତାର ପଚିଶବର୍ଷ ରୌପ୍ୟଜୟନ୍ତୀ ପାଳିତ ହେଲେବି ଓଡ଼ିଶା ରାଜ୍ୟରେ ଏହି ଚାଉଳ ହିଁ ସର୍ବଶ୍ରେଷ୍ଠ ମହାକାବ୍ୟ ହୋଇ ରହିଗଲା ପରା ! ଆଉ ତା'ରି ଦେହରେ ବାଜି ସବୁ ରାଜନୀତି ଉଠିଲା ପଡ଼ିଲା ସମୁଦ୍ର ଢେଉଭଳି ଖାଲି ବାଲି ପନ୍ତାରେ ଯେମିତି !

●

---

❖ ସେଇ ସଭାରେ ସାକ୍ଷୀ ଗୋପାଳରୁ ମୋର ସହାଧ୍ୟାୟୀ ବନ୍ଧୁ ଅବସରପ୍ରାପ୍ତ ଜଷ୍ଟିସ ଶ୍ରୀ ହରିହର ମହାପାତ୍ର ମଧ ଯୋଗଦେଇ ଥିବା କଥା 'ସମାଜ'ରେ ପ୍ରକାଶିତ ତାଙ୍କର ଏକ ପ୍ରବନ୍ଧରୁ ଜାଣିଲି । ତା'ପରେ ଅବଶ୍ୟ ରେଭେନ୍‌ସା କଲେଜରେ ତାଙ୍କ ସଙ୍ଗେ ମୋର ପରିଚୟ ।

# କଟକ ନଗର ଧବଳ ଟଗର

ଆଗରୁ କେତେକଥା ଶୁଣିଥିଲି କଟକ ବିଷୟରେ । ସେଠାରେ ଖାଲି ବାପ ମା'ଙ୍କୁ ଛାଡ଼ି ସବୁ ମିଳିପାରେ ପଇସା ପାଖରେ ଥିଲେ । ଆଉ ସେଇ ପଇସାର ବି ଅଭାବ ନାହିଁ କ'ମେଇ ପାରିଲେ ।

ନାମ ଲେଖାଏଁ ଆସି ସେଇ କଟକ ରେଭେନ୍‌ସା କଲେଜରେ । ସେଇ ସେ 'କଟକ ସହର ବଡ଼ ମହରଗ' ଭିତରକୁ ଆସି ମନେହୁଏ ମୋର କଥାଟା କେବଳ ବିରୋଧାଭାସ । ଏଇ ମାତ୍ର ମୋର ପହିଲେ କଟକ ଦର୍ଶନ । କଲେଜ ଉଠି ଆସିଥାଏ ଚାଉଳିଆଗଞ୍ଜ ନୂଆ କୋଠାକୁ । ସେଇ କୋଠାରେ ଆମର ନୂତନ ଗୃହ ପ୍ରବେଶ । ଗରିବ ଓଡ଼ିଆପିଲା ଏଡ଼େବଡ଼ ପ୍ରାସାଦରେ ପଢ଼ିବା ବ୍ୟବସ୍ଥାକୁ ସମାଲୋଚନା କରିଥାନ୍ତି ପଣ୍ଡିତ ଗୋପବନ୍ଧୁ ଦାଶ ।

ରେଳଗାଡ଼ି ଯେବେ କାଠଯୋଡ଼ି ପୋଲ ଉପରେ ପହଞ୍ଚେ, ସେ ସବୁ ସମାଲୋଚନାକୁ ପାସୋରି ପକାଏ ଦୂର ନଣକୂଳର ବିଜୁଳି ଆଲୁଅ ଧାଡ଼ିଟା ମନଭିତରେ ଆଣିଦିଏ ମୋର କି ଏକ ରହସ୍ୟମୟ ଉନ୍ମାଦନା । ତହୁଁ ଯେମିତି କେନାଲ ପୋଲ ଉପରେ ଘର୍ଘର ଗର୍ଜନରେ ଆସ୍ତେ ଚାଲିଯାଏ ଷ୍ଟେସନ ଆଡ଼କୁ—ସତେ ଅବା ମୁଁ ଆବିଷ୍କାର କରି ବାହାରିଛି ଉଉରମେରୁ !

ରେଭେନ୍‌ସା କଲେଜର ଆଖି ନ ପାଇଲା ଭଳି ପ୍ରକାଣ୍ଡ ବିରାଟ ନୂଆ କୋଠା । ସେଥିରୁ ଖାଲି ଗୋଟାଏ ଫାଳ ପୂର୍ବ ଛାତ୍ରାବାସ, ଠିକ୍ ମୁହାଁମୁହିଁ ଆର ପଟେ କାହିଁ କେତେଦୂରେ ପଶ୍ଚିମ ଛାତ୍ରାବାସ—ଏ ପାଖରୁ ଚାହିଁଲେ ସେପାଖ ପିଲାଙ୍କୁ ଚିହ୍ନି ହୁଏ ନାହିଁ ।

ସାମ୍ନାରେ ଲମ୍ବା ଦୋତାଲା କୋଠିରେ ଆର୍ଟସ୍ କ୍ଲାସ । ପଛପଟେ ଲନ୍ ପାରିହେଲେ କନିକା ଲାଇବ୍ରେରୀ । ଲାଇବ୍ରେରୀ ଦି'ପାଖେ ବିଜ୍ଞାନକ୍ଲାସ ଓ ଲାବରେଟୋରୀ । ପୂର୍ବ ଛାତ୍ରାବାସ ଉପର ମହଲାରେ ଆମେ ପୁରୀରୁ ଆସିଥିବା ପିଲାମାନଙ୍କ ପାଇଁ ସ୍ଥାନ ନିର୍ଦ୍ଦିଷ୍ଟ ଥାଏ ।

ସେଇପରି ଜିଲାଓଆରିରେ ବାଲେଶ୍ୱର ମେସ୍, ସମ୍ବଲପୁର ମେସ୍, ମୟୂରଭଞ୍ଜ ମେସ୍, ପୁରୀ ମେସ୍, ଗଞ୍ଜାମ ମେସ୍ ଇତ୍ୟାଦି । ସମ୍ବଲପୁର ମେସ୍ ତରକାରିରେ ଯେମିତି ଟିକିଏ ବେଶି ରାଗ ଲୋଡ଼ା ହୁଏ, ଗଞ୍ଜାମ ମେସ୍‌ପାଇଁ ସେଇଭଳି ତେନ୍ତୁଳି ଆମ୍ବୁଲର ଅଧିକ ଆଦର କିମ୍ବା ପୁରୀ କଟକୀ ପିଲାମାନଙ୍କର 'ମଧୁରେଣ ସମାପୟେତ୍' ହେଲେ ମଧ ପରସ୍ପର କଥାବାର୍ତ୍ତା ଭିତରେ କିମ୍ବା ବ୍ୟବହାରରେ ତାହା ଅବଶ୍ୟ ଲକ୍ଷ୍ୟ କରାଯାଏ ନାହିଁ । ଅର୍ଥାତ୍, ସବୁ କ୍ଷେତ୍ରରେ ସମ୍ବଲପୁରୀ ପିଲାଏ ରାଗ ମୁହଁରେ ରହି ନ ଥାନ୍ତି କିମ୍ବା ପୁରୀ କଟକ ପିଲାଙ୍କ ମୁହଁରୁ ସବୁବେଳେ ମଧୁବର୍ଷଣ ହୁଏ ନାହିଁ; ଅଥବା ଦକ୍ଷିଣ ଓଡ଼ିଶାର ପିଲାଙ୍କ ମୁହଁ ଚିନ୍ତାପାଣ୍ଟୁରେ ଆମ୍ଳିକ ଲାଳାୟିତ ହୋଇ ରହିନଥାଏ । ପରସ୍ପର ମିଳାମିଶା ହାସ ପରିହାସ ନୂତନ ବନ୍ଧୁତା ଭାବରେ ସୌହାର୍ଦ୍ଦ୍ୟ ସହଯୋଗର ତ୍ରୁଟି ଘଟେ ନାହିଁ ।

ପୂର୍ବ ଛାତ୍ରାବାସକୁ ଲାଗି ସାମ୍ନା ପଟେ ଦୋତାଲା ଉପରେ ହଷ୍ଟେଲ୍ ସୁପରିଣ୍ଟେଣ୍ଡେଣ୍ଟ୍ ଓଡ଼ିଆ ଅଧ୍ୟାପକ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି, ତଳ ମହଲାରେ ସହକାରୀ ସୁପରିଣ୍ଟେଣ୍ଡେଣ୍ଟ୍ ଅଧ୍ୟାପକ ଶ୍ରୀ ଗୁରୁଚରଣ ମହାନ୍ତି । ବିପରୀତ ଦିଗ ଉପରେ ମହଲାରେ ଓଆଡ଼ନ୍ ଶ୍ରୀ ଶ୍ୟାମଚରଣ ତ୍ରିପାଠୀ ଆଉ ତଳ ମହଲାରେ ପୂର୍ବ ଛାତ୍ରାବାସର କମନ୍ ରୁମ୍ ।

ପଶ୍ଚିମ ଛାତ୍ରାବାସର ବିଭାଗୀକରଣ ମଧ୍ୟ ଅବକଳ ସେମିତି । ତାହାର ସୁପରିଣ୍ଟେଣ୍ଡେଣ୍ଟ୍ ଅଧ୍ୟାପକ ଶ୍ରୀ ନାରାୟଣ ମିଶ୍ର ଓ ଓଆଡ଼େନ୍ ଡକ୍ଟର ପ୍ରାଣକୃଷ୍ଣ ପରିଜା । ମେସ୍‌ମାନଙ୍କରେ ସବୁ ଜାତିର ଛାତ୍ର ରହିଥିବା ହେତୁ ଏକତ୍ର ବସି ଆହାର କରିବା ବ୍ୟବସ୍ଥା ଥାଏ । ତଥାପି କେହି କେହି ଆପତ୍ତି କରନ୍ତି ଏଇ ସାମାଜିକ ବ୍ୟବସ୍ଥାରେ । ଏଭଳି ଭେଦ-ବିଚାରକୁ ମୁଁ ପ୍ରକାଶ୍ୟରେ ନିନ୍ଦା କରିବାରୁ ଅନ୍ତେବାସୀମାନଙ୍କଦ୍ୱାରା କେତେଥର ଉପହସିତ ହୋଇଛି ।

ଚେହେରା ଚାଲିଚଳନ ପୁଣି କଥୋପକଥନ ଭାଷାରେ ସୁଦ୍ଧା ଓଡ଼ିଶାର ଗୋଟିଏ ଜିଲ୍ଲାର ଛାତ୍ର ଅନ୍ୟ ଜିଲ୍ଲା ଛାତ୍ରଙ୍କଠାରୁ ବାରି ହୋଇପଡ଼ନ୍ତି । ସେତେବେଳେ ପୁଣି ଗଞ୍ଜାମ କୋରାପୁଟ କିମ୍ବା ଗଡ଼ଜାତ ଅଞ୍ଚଳର ମିଶ୍ରଣ ହୋଇ ନଥାଏ । ସ୍ୱତନ୍ତ୍ର ପ୍ରଦେଶ କିମ୍ବା ରାଜ୍ୟ ରୂପେ ଓଡ଼ିଶା ଚିହ୍ନିତ ହେବାପାଇଁ ବିଳମ୍ବ ରହିଥାଏ ଅନେକ ବର୍ଷ ।

କଥାଭାଷାର ଉଚ୍ଚାରଣରେ ଆଞ୍ଚଳିକତା ବାରି ହୋଇପଡ଼େ ସହଜରେ—ଗଞ୍ଜାମ ପିଲାଙ୍କ ଓଡ଼ିଆ କଥାରେ ତେଲୁଗୁ ଟାଣ, ବାଲେଶ୍ୱର, ମୟୂରଭଞ୍ଜ ପିଲାଙ୍କ କଥାରେ ବଙ୍ଗାଳୀ ଛାଞ୍ଚ, ପୁଣି ସମ୍ବଲପୁର ଖଡ଼ିଆଳ ଅଞ୍ଚଳ ବନ୍ଧୁମାନଙ୍କ ଭାଷାରେ ହିନ୍ଦୀ ପ୍ରଭାବ ମଧ୍ୟ ଧରାପଡ଼ିଯାଏ । ଏମିତି କି ପୁରୀ ଓଡ଼ିଆ ଓ କଟକୀ ଓଡ଼ିଆ କଥୋପକଥନ ଭାଷାରେ ଅନେକ ଫରକ୍ । ଆମ ବିଚାର ଆଲୋଚନାର ସାମଗ୍ରୀ ହୋଇପଡ଼େ କିଏ ଖାଣ୍ଟି, କିଏ ଭେଲ ବାଛିବାପାଇଁ ।

ପୁରୀରେ ଯେମିତି ଗୋଟା ଭାରତବର୍ଷର ଯାତ୍ରୀଙ୍କୁ ଦେଖି ମହାସାଗର ସହିତ ଆପଣାକୁ ଭସାଇଦେବା, ହଜାଇଦେବାପାଇଁ ମନ ମୋ'ର ନାଚିଉଠେ, କଟକ ଆସି ସେମିତି ସାରା ଓଡ଼ିଶା ମୋ'ର ହୋଇପଡ଼େ ନିକଟରୁ ନିକଟତର, ପୁଣି ନିକଟତମ—ଅତି ଆପଣାର । କଟକିଆମାନେ ଯେ ଖଟିଖିଆ କିନ୍ତୁ ମାଗିଖିଆ ନୁହନ୍ତି, କେବଳ ପୂର୍ବ ପୁରୁଷ-କୀର୍ତ୍ତିର ପ୍ରଦର୍ଶନୀ ଫିଟାଇ ତମାମ୍ ଓଡ଼ିଶାର ମେହନତି ମଣିଷ ସହିତ ଏଇଠି ମୋ'ର ଯେମିତି ଭେଟ ହୁଏ—ଭେଟହୁଏ ଓଡ଼ିଶାର ପ୍ରାଣକେନ୍ଦ୍ର ସାଥିରେ । କଟକର ତାରକସି କାମଠାରୁ ଆରମ୍ଭ କରି କଟକୀ ଗାମୁଛା ପର୍ଯ୍ୟନ୍ତ । ଭେଟହୁଏ ପୁଣି—

ଐତିହାସିକ ଏ ଦୁର୍ଗ ବାରବାଟୀ ।
ବୀରରକ୍ତ ପିଣ୍ଡେ ଗଢ଼ା ଯା'ର ମାଟି ॥

କବିତାରେ ସିନା ବାରବାଟୀ ଦୁର୍ଗ; କିନ୍ତୁ ଯେତେ ଯୁଆଡ଼େ ଖୋଜି ବୁଲିଲେ ତା'ର ପତ୍ତା ମିଳେ ନି ମୋତେ । ବାଲିଯାତ୍ରା ପଡ଼ିଆ ପାଖ ଏଇ ଭଙ୍ଗା ପଥର-ଫାଟକ ଆଉ ସେଇଠୁଁ ଚାରିପଟେ

ଘେରି ରହିଥିବା ଗୋଟାଏ ପଚାପାଣିର ଖାଲ ହେଉଛି ଗଡ଼ଖାଇ । ପୁଣି ମଝିରେ ତା'ର ମାଟିକୁଦଟା ଥିଲା କୁଆଡ଼େ ନବତଳ ପ୍ରାସାଦ । ଦେଖିଲେ ମନେହୁଏ, ଐତିହାସିକମାନଙ୍କର କେବଳ ତଥ୍ୟ ସଂଗ୍ରହରେ ତ ଦକ୍ଷତା ନାହିଁ, କବି କଳ୍ପନାରେ ମଧ୍ୟ ସେମାନେ 'ବେଶ୍ ଧୁରନ୍ଧର !

ଯେ କୌଣସି ଉଇହୁଙ୍କା ଖାଲଖମାକୁ ମଧ୍ୟ ସେମାନେ ଇତିହାସର ଗନ୍ତାଘର କରି ପାରନ୍ତି ତ ! ତା'ପରେ କାଠଯୋଡ଼ି ପଥରବନ୍ଧ—ବଡ଼ ବୁରୁଜ ! କଟକ ସହର ଭଳି ତିନିପାଖରେ ନଈ ବେଢ଼ି ରହିଥିବା ତ୍ରିକୋଣ ଭୂଇଁ ଯେ କି ସୂତ୍ରରେ ଗୋଟାଏ ଜାତିର ଇତିହାସ ଗଢ଼ିଦେଲା ! ଆଉ ସେଇ ଇତିହାସ ଉପରେ ଠିଆ ହୋଇଯାଏ ଗୋଟାଏ ସାହିତ୍ୟ, କଳା ସଂସ୍କୃତିର ସ୍ୱାତନ୍ତ୍ର୍ୟ ! କେଉଁ ବାଇମୁଣ୍ଡୀ ସେ ଦିନ ଏ ସ୍ୱାତନ୍ତ୍ର୍ୟକୁ କାଠଯୋଡ଼ି ବଢ଼ିରୁ ବଞ୍ଚାଇବାପାଇଁ କଟକ ଚିନ୍ତାରେ ମଗ୍ନ ହୁଏ ! ତହିଁରୁ ତାକୁ ପୁଣି ଉଦ୍ଧାର କରିବାକୁ ପଥର ବନ୍ଧ ତୋଳାଏ ରାଜା ମର୍କତକେଶରୀ ! ଅଦ୍ଭୁତ, ଅପୂର୍ବ ଏଇ ମଣିଷ ! ଚେନାଏ ଲେଖାଁ ପୃଷ୍ଠା ଯେ ତା'ର ଗଢ଼ଇ କେତେ ଅମର ଇତିହାସର କାହାଣୀ !

କଟକ ଧୂଳିରେ ପାଦ ଦେଇ ସେମିତି କେତେ ଅଜଣା ଅଶୁଣା କାହାଣୀର ସ୍ପନ୍ଦନ ଅଲକ୍ଷ୍ୟରେ ମୋତେ ଅଭିଭୂତ କରେ । ଏଠାରେ ପୁରୀର ଠାକୁର ଜଗନ୍ନାଥ ନାହାନ୍ତି କି ଠାକୁର-ରାଜା ନାହାନ୍ତି । ଖାଲି କଟକି ଗାମୁଛା, ତାରକସି, ରସଗୋଲା ଓ କଟକୀ ଚଟି । ଏଠାରେ କେହି କାହାକୁ ହାତ ପତାଇ ଆଳୁ କାହାରି ଦୟାଧର୍ମ ଘେନି ବଞ୍ଚେ ନାହିଁ । ଖଟିଖିଆ ସମସ୍ତେ । ଧର୍ମ ବୋଇଲେ ଖାଲି ଦାନ ଦକ୍ଷିଣା ଦୟା ଅନୁଗ୍ରହ ନୁହେଁ । ଧର୍ମସାଥିରେ ଯୋଡ଼ି ହୋଇ ରହିଛି କର୍ମ । କଟକିଆ କହିଲେ ବୁଝାଏ ଯେଝା ହାତରେ ସେ ଚଉଦପା‍ !

ଦଶପଇସା ରୋଜଗାର କରୁଥିବା ମୂଲିଆ ଦଶହଜାରୀ ମହାଜନକୁ ପରୁଆ କରେନି । ମେହନତିର ମୂଲ ମର୍ଯ୍ୟାଦା ସବୁଠାରୁ ଯେମିତି ଅଧିକ । କଟକକୁ ମୁଁ ଭଲପାଇଲି ଅତି ନିବିଡ଼ଭାବରେ ଏକାନ୍ତ ଆତ୍ମୀୟକରି । ଓଡ଼ିଶାର ପ୍ରାୟ ସବୁ ଅଞ୍ଚଳ ଛାତ୍ରମାନେ ରେଭେନ୍‌ସା କଲେଜରେ ଏକଜୁଟ୍ ହେବାରୁ ତାହା ସମୁଦାୟ ଉତ୍କଳୀୟ ସଂସ୍କୃତିର ସଙ୍ଗମସ୍ଥଳ ପରି ବୋଧହୁଏ । ତା'ରି ଅଲକ୍ଷ୍ୟ ସ୍ପନ୍ଦନ ହିଁ ସେତିକିବେଳୁ ମୋର କଟକ ପ୍ରତି ଆକର୍ଷଣକୁ ଆହୁରି ଚହ୍ଲାଇଦିଏ । ଗାଁ ତୁଳନା ତ କଟକ ସହିତ ଅସମ୍ଭବ । ମାତ୍ର ପୁରୀ ତୁଳନାରେ ଯେ ସବୁ ଜିନିଷର ଦର ଏଠାରେ ଶସ୍ତା ଯେମିତି, ପ୍ରାଚୁର୍ଯ୍ୟ ସେମିତି । ମହରଗ ଖାଲି ବୋଧହୁଏ ପଇସା, ଗାଁର ଅତି ସଂକୀର୍ଣ୍ଣ ପରିବେଶ ତୁଳନାରେ ପୁରୀ ଯେମିତି ପ୍ରଶସ୍ତତର ମନେହେଲା, ପୁରୀ ତୁଳନାରେ କଟକ ବୋଧହେଲା ସେହିପରି ଓଡ଼ିଆ ପ୍ରାଣଶକ୍ତିର କର୍ମକେନ୍ଦ୍ର ରୂପେ । ମନଭିତରେ ଖାଲି ଖଟକା ଲାଗିଲା ଗୋଟାଏ ଦୃଶ୍ୟ କଟକ ସହର ଚେହେରାକୁ ଚାହିଁ ଆଉ ପଛରେ ପକେଇ ଆସିଥିବା ପୁରୀକୁ ତା' ସହିତ ତୁଳନା କରି ।—

'କଟକନଗର ଧବଳଟଗର' କଥାଟା ଯେଡ଼େ ସିଧା ସଳଖ, ଯେଡ଼େ ନିର୍ମଳ— ତା'ଭିତରେ ହ୍ରସ୍ୱ, ଦୀର୍ଘ, ଇକାର, ଉ କାର ପ୍ରଭୃତିକୁ ଯେମିତି ବାଦ୍ ଦିଆଯାଇଛି, ସହରଟାର ଭିତର କି ବାହାର ଚେହେରାରେ କାହିଁ ତ କେଉଁଠି ଚିହ୍ନ ତା'ର ନାହିଁ । ଆଠ ଦଶ ପାହୁଣ୍ଡ

ଚାଲିଗଲେ ସୁଦ୍ଧା ବଙ୍କା ଡଙ୍କା ରାସ୍ତାରେ ନ ପଡନ୍ତି ଚାରା ନାହିଁ କାହାରି । ଚାରିଆଡ଼ତ ବଙ୍କା ଡଙ୍କା ଗଳି କନ୍ଦି—

କେଉଁ କନ୍ଦିରେ ମଣିଷ ପଶିଲେ ଆଉ କେଉଁଠି ଯେ ଯାଇ ବାହାରିବ, ତାହା ଖାଲି ମା କଟକଚଣ୍ଡୀଙ୍କୁ ଗୋଚର । ପୁଣି 'ଧବଳ ଟଗର' ଫୁଟେ କେଉଁଠି ? ଯୁଆଡ଼େ ଯାଅ ଖାଲି ତ ଆଣ୍ଠୁଏ ନାଳିଧୂଳି । ଚୂନଧଉଳା କୋଠାଘର ଅବଶ୍ୟ ଅନେକ ଦିଶେ ଟଗରଫୁଲ ଫୁଟିଲାଭଳି, ତଥାପି ଏବକୁ ସିନା ପିଚୁରାସ୍ତା ପୁଣି ଲିଙ୍କ୍‌ରୋଡ଼ଭଳି ସିଧାଚଉଡ଼ା ଲମ୍ୱ ରାସ୍ତାଟି । ହେଲେ ପୁରୀ ପୁରୁଣା ବଡ଼ଦାଣ୍ଡ ପାଖରେ ସେ ଲାଭଦିଆ ହବନା ? ପୁଣି ସେ ବଡ଼ଦାଣ୍ଡଟା ଯେ କେଉଁଯୁଗରୁ ତିଆରି—

ଆମେରିକା ଭଳି ଦୂରଦେଶନ୍ତରୁ ଯେଉଁ ହିପ୍‌ପିମାନେ ପୁରୀକୁ ଆସି ମୁଣ୍ଡ ଖିଅର ହୋଇ, ଗେରୁଆଲୁଗା ପିନ୍ଧି ଝାଞ୍ଜମୃଦଙ୍ଗ ବଜାଇ ସଂକୀର୍ତ୍ତନରେ ନାଚ କରୁଛନ୍ତି, ସେମାନେ କୁଆଡ଼େ ସାର୍ଟିଫିକେଟ ଦେଲେଣି ଏଡ଼େବଡ଼ ଲମ୍ୱାଚୌଡ଼ା ଦାଣ୍ଡ ପୃଥିବୀର ଆଉ କେଉଁ ସହରରେ ଦେଖିବାକୁ ମିଳିବନି । କବି ମଦନମୋହନଙ୍କ ଭାଷାରେ—

''ବଡ଼ଦାଣ୍ଡ ଧୂଳିକଣା ସରଗର ସମ୍ପଦ ଗୋ ।
ବଧଦାଣ୍ଡେ ଚାଲୁଥିଲେ ନାହିଁ ଥାଏ ବିପଦ ଗୋ ।।''

ପୁଣି ପୁରୁଣା କବିଙ୍କ ପଦ ଯୋଜନା ସାତସାହି ବୟାଳିଶ କନ୍ଦିର ପୁରୀ ସହର ଛାଡ଼ି—ଯେଉଁଠିକି ବଡ଼ ଦେଉଳ ସବୁଆଡ଼କୁ ଦିଶେ ଆଉ ବାଟ ବତାଏ—ଦିଗବାରିଣୀ ହୋଇ ।

ତଥାପି କଟକ ସହରକୁ ମୁଁ ଭଲ ପାଇଲି—ବେଶି ଭଲ ପାଇଲି ତା'ର ଖଟିଖିଆ ମଣିଷକୁ; ପୁରୀର ଖାଲି ଠାକୁରଙ୍କ ରାଣ ପକାଇ ମାଗିଖିଆ ମଣିଷଠାରୁ କଟକରେ ଲାଗିଖିଆ ମଣିଷର ଭେଟପାଏଁ ମୁଁ ସବୁ ଗଳିକନ୍ଦି ଭିତରେ—ପରେ ସେଇ କଟକ ଉପରେ ମୋର କବିତା ରଚନା 'କଟକ ରାଜନୀତି'—

ଉଡ଼ି ଚାଲିଥିଲି ଉପରେ ଆକାଶ-ରଥେ
କେତେ ଗିରିମାଳ ମନେ ନାହିଁ ତା'ର ନାମ
କେତେ ନଦୀ ବିଲ, କେତେ ଶାଳବନ-ପଥେ
କେତେ ଯେ ଦେଉଳ ଅପରୂପ କାରୁକାମ ।
କଟକ ସହର ଅଟକାଇଦେଲା ମତେ !
ଦୋକାନ ବଜାର ସାହି ଗଳି ବାଟେ ଚାଲି
ସବୁଠାରେ ଯାହା ଶୁଣିଲି ଦେଖିଲି ସତେ
କଟକେ କେବଳ ରାଜନୀତି ଆଜିକାଲି !

ରେଭେନ୍‌ସା କଲେଜରେ ପଢୁଥିବାବେଳେ ପ୍ରଥମ କଟକ ଦର୍ଶନ, ତହୁଁ ପୁଣି କଟକରେ ରହି ବ୍ୟାଙ୍କ୍ ଚାକିରି—ଶେଷରେ ସେଇ କଟକରେ ବସତି ସ୍ଥାପନ । ଓଡ଼ିଶା ରାଜ୍ୟର ଐତିହାସିକ-ନଗରୀ କଟକ ।

କଥାରେ କହନ୍ତି, ପୁରୀରେ ରାତି ନାହିଁ କି କଟକରେ ଜାତି ନାହିଁ । ବଡ଼ସିଂହାର ଧୂପ ପରେ ଠାକୁର ପହଡ଼ କେତେ ସମୟ—ତହୁଁ ଶୁଣାଯାଏ ମଙ୍ଗଳ ଆଳତି ଘଣ୍ଟା । କଟକରେ ଘଣ୍ଟା ବଜାଏ ମେହନ୍‌ତି ମଣିଷର କାମ । ଆଉ ସେଇ କାମ ଭିତରେ କେତେ କୌତୁକ କଥା—କୁନ୍ତୀ କି ଗାନ୍ଧାରୀ ତାଙ୍କ ପୁଅମାନଙ୍କ ସାଥିରେ କଟକ ଭ୍ରମଣରେ ଆସି କୁଆଡ଼େ ଆହୁରି ସନ୍ତାନ ପ୍ରସବ କରିବାପାଇଁ ଇଚ୍ଛା ପ୍ରକାଶ କରନ୍ତି ଏଇଠି !

ଆଜିର କିନ୍ତୁ ''ଦୁଇଟି ସନ୍ତାନ-ସୁଖୀ ପରିବାର'' ସଭ୍ୟ ଯୁଗରେ କଟକ ମ୍ୟୁନିସିପାଲିଟି ତାଙ୍କୁ ରାସ୍ତାକଡ଼ରେ ଟାଳି ପକେଇ ରହିବାକୁ ସୁଦ୍ଧା ବାସନ୍ଦ କରିଦିଅନ୍ତା ପରା !



# ଲେଖି ଆରମ୍ଭିଲା ବସି ବିନୟ ପତର

କବି ଉପେନ୍ଦ୍ର ଭଞ୍ଜଙ୍କ ସମୟରୁ କିମ୍ବା ଆହୁରି କେତେ ପୂର୍ବରୁ ପ୍ରେମପତ୍ର ବିନିମୟ ଓଡ଼ିଶାରେ ପ୍ରଚଳିତ ଥିଲା—ତାହାର ଅନୁସନ୍ଧାନ ଓଡ଼ିଆ ସାହିତ୍ୟର ତଥ୍ୟ ଗବେଷକ ଓ ଐତିହାସିକମାନଙ୍କ କାମ । ପୃଥିବୀର ସବୁ ସାହିତ୍ୟରେ ନାୟକ ନାୟିକାର ବିରହ ବିଚ୍ଛେଦକୁ ପ୍ରେମପତ୍ରଦ୍ୱାରା ହିଁ ପୂରଣ କରାଯାଇଛି ।

ଅତୀତରେ ଅବଶ୍ୟ ଡାକବିଭାଗର ସଂଗଠନ ଆଜିଭଳି ନ ଥିଲା । ତଥାପି ପତ୍ର ବିନିମୟ ପୁଣି ପ୍ରେମପତ୍ରର ଦାବି ! ତାହାହିଁ ଆଜି ଡାକବିଭାଗରୁ ଏଭଳି ଶକ୍ତିଶାଳୀ କରିପାରିଛି ଅବା ! କରିପାରିଛି ଏଭଳି ଏକାନ୍ତ ଅନିବାର୍ଯ୍ୟ ।

ମୋହ ସମେତ ବନ୍ଧୁ ଶ୍ରୀ ହରିହର ମହାପାତ୍ର ଓ ଆଉ କେତେକ ସହାଧ୍ୟାୟୀ କଲେଜ ଛାତ୍ରଙ୍କର ମଧ୍ୟ ସ୍କୁଲ ପାଠ୍ୟ ସହିତ ବିବାହ କର୍ମ ସମ୍ପନ୍ନ ହୋଇ ସାରିଥାଏ । ଅର୍ଥାତ୍, ଆମେ ଆଗ ଗୃହସ୍ଥାଶ୍ରମର ସମ୍ପୂର୍ଣ୍ଣ ବ୍ୟବସ୍ଥା କରିସାରି ତା'ପରେ ବ୍ରହ୍ମଚର୍ଯ୍ୟାଶ୍ରମ ପାଳନ କରିବା ପାଇଁ କଲେଜ ଆସିଥାଉଁ । ମାତ୍ର କଲିଜା ଆମର ନିଶ୍ଚୟ ଉବୁଟୁବୁ ହେଉଥାଏ ପ୍ରେମରେ !

ତଥାପି ପ୍ରେମପତ୍ର ଆଦାନ ପ୍ରଦାନ ପର୍ଯ୍ୟାୟଟା ଠିକ୍ ଯାହାକୁ ବୁଝାଏ, ସେ ଦିଗରେ ଆମ ଭିତରୁ କେତେ ଜଣ ଯେ ଆଗୁଆ ହୋଇଥାନ୍ତି, ତାହାର ହିସାବପୈଠ କଷ୍ଟକର । କାରଣ ପ୍ରେମପତ୍ରଟା ଉଭୟ ପକ୍ଷରୁ ବିନିମୟ କରା ନ ହୋଇ ବହୁ କ୍ଷେତ୍ରରେ ଖାଲି ଏକତରଫା ଡିଗ୍ରୀ ନେବାର ସମ୍ଭାବନା ଥାଏ ଅଧିକ—ଅପରପକ୍ଷର ଗରହାଜରା ବା ପୂର୍ଣ୍ଣ ନୀରବତା କାରଣରୁ । ଗୀତାର ନିଷ୍କାମ କର୍ମ ସାଧନ ଲାଗି ପ୍ରଶସ୍ତ କ୍ଷେତ୍ର ଯେମିତି ଅବା !

ଓଡ଼ିଶାର କେତେ ଅଞ୍ଚଳରେ ତ ଶିଶୁ ଗର୍ଭସ୍ଥ ହେବାର ଅନେକ ଆଗରୁ ମାତାମାନେ ଜାମାତା ଓ ବଧୂ ସମ୍ବନ୍ଧ ସ୍ଥାପନ କରିଦିଅନ୍ତି ବୋଲି ଶୁଣାଯାଏ । ଅତଏବ କଲେଜକୁ ଆସିବା ଆଗରୁ ମୋ ଅପେକ୍ଷା ବିବାହ କ୍ଷେତ୍ରରେ ଅଧିକ ଅଗ୍ରଗାମୀ ସହାଧ୍ୟାୟୀ ବନ୍ଧୁ ମଧ୍ୟ ଜୁଟିଥାନ୍ତି ।

କ୍ଲାସ ଚାଲିଥିବାବେଳେ ଥରେ ଜଣେ ସହପାଠୀଙ୍କ ନାମରେ ଏକ ଟେଲିଗ୍ରାମ ଆସି ପହଞ୍ଚେ । ଶ୍ରେଣୀ-ଅଧ୍ୟାପକ ଛାତ୍ରଙ୍କୁ ଡାକି ତାଙ୍କ ହାତକୁ ଟେଲିଗ୍ରାମଟି ବଢ଼ାଇ ଦିଅନ୍ତି । ତା'ପରେ ଶ୍ରେଣୀର ଅନ୍ୟମନସ୍କ ଛାତ୍ରମାନେ ଅବାକ୍ ହୋଇପଡ଼ନ୍ତି ଏକ ଚିତ୍କାର ଶୁଣି । ସବୁ ଆଳାପ ବନ୍ଦ ହୋଇଯାଏ, ଛାତ୍ରଜଣକର ବିକଳ ବିଳାପରେ ! କାରଣ ଅନୁସନ୍ଧାନ କରି ଜଣାପଡ଼େ—ସହାଧ୍ୟାୟୀ ବନ୍ଧୁଙ୍କର ଗୋଟିଏ ଚାରି ପାଞ୍ଚ ବର୍ଷର କନ୍ୟା ମହାମାରୀ ବ୍ୟାଧିରେ ମହାପ୍ରୟାଣ କରିଛି ।

ସେତେବେଳେ ଆମେ ପଢୁଥାଉଁ ବି.ଏ. କ୍ଲାସରେ ।

ଆଇ.ଏ.ପରୀକ୍ଷା ପରେ ଅନୁଷ୍ଠିତ ହୁଏ ମୋର ଦୂର୍ବାକ୍ଷତ ଆଶୀର୍ବାଦ କର୍ମ । ଦୁଇଟିବର୍ଷ ଆଇ.ଏ.ପଢ଼ି ପରୀକ୍ଷା ରେଜଲ୍ଟ ବାହାରିବା ଆଗରୁ ବିବାହ ରେଜଲ୍ଟ ମିଳେ ସୁଦୀର୍ଘ ଚାରିବର୍ଷ ପରେ । ବସନ୍ତର ଆଗମନୀ ସଙ୍ଗେ ଦୋଳଉତ୍ସବ । ଜୀବନ ଦୋଳିରେ ମୋର ଆଗମନୀ ଶଙ୍ଖ ବାଜିଉଠେ । ବାଜିଉଠେ ଭବିଷ୍ୟ ଜୀବନର ନବ ନବ କଳ୍ପନା ଜଳ୍ପନାର କେତେ ଯେ ଛନ୍ଦ, ଆକାଶ ପବନରେ ନାଚିଉଠେ, ପୁଣି କେତେ ଯେ ରଙ୍ଗ !

ଗାଁ କହିଲେ ତ ପ୍ରାୟ ଗୋଟିଏ ଘରକୁ ବୁଝାଇଥାଏ । ଅର୍ଥାତ୍ ସବୁ ଜାତି ପାଟକ ଧନୀ ଗରିବ ଊଣା ଅଧିକେ ସବୁରି ଘରକଥା ସମସ୍ତଙ୍କୁ ଜଣା । କାହାଘରେ ସୋରିଷ ଫୁଟିଲେ, ଆର ଘରକୁ ବାସେ । ବାହା ପୁଆଣି ଶୁଦ୍ଧଶ୍ରାଦ୍ଧରେ ସବୁରି ଟିକେ ହେଲେ ସହଯୋଗ ଥାଏ । ଜଣେ ସହରୀ ଝିଅ ଗାଁ ବୋହୂ ହୋଇ ଆସିଚି । ତହୁଁ ଚାଲେ ଆମ ଘରେ ଝିଅ, ବୋହୂ, ପିଲା, ବୁଢ଼ୀଙ୍କର ପ୍ରାୟ ଅନବରତ ଭିଡ଼ । ସେଥିସଙ୍ଗେ କେତେ ଟୀକା ଟିପ୍ପଣୀ ନୂଆବୋହୂର ରୂପଗୁଣ ଘେନି ।

କିଏ କହନ୍ତି, ଖାସା ବୋହୂ ! ଆଉ କାହାର ଟିପ୍ପଣୀ—''ଘର ଭିତରେ ଘରେ ବୋହୂ ! ଅର୍ଥାତ୍- ଭାର ବେଭାର, ଯାନିଯୌତୁକ ଆୟ ଅଳଙ୍କାର ଆହୁରି ମଧ୍ୟ ବୋହୂଙ୍କ ସ୍ୱାସ୍ଥ୍ୟରୂପରେ ଘରଟା ପୂରିଉଠିଛି, ଜଣେ କୁଟୁମ୍ବଙ୍କ ମୁହଁରୁ ଆହୁରି ମଧ୍ୟ ଶୁଣେଁ—ତାଙ୍କ ଘର ବୋହୂଝିଅମାନେ ଆମ ଘର ନୂଆ ବୋହୂଙ୍କ ରୂପ ଦେଖି ଟିପ୍ପଣୀ କଲେ—ସବୁ ହେଲା, ତେବେ ଏ ବୋହୂକୁ ସେ ପୁଅ ହେଲାନି—ଅର୍ଥାତ୍ ମାଙ୍କଡ଼ ହାତରେ ଶାଳଗ୍ରାମ ।

କୁଟୁମ୍ବଙ୍କ କଥା ଶୁଣି ମନ ମୋର ତିକ୍ତ ହୋଇଉଠେ ଆତ୍ମଗ୍ଲାନିରେ; ଯେହେତୁ ଆତ୍ମନିରୀକ୍ଷଣର ଅବକାଶ ନଥାଏ ମୋହ ପକ୍ଷରେ । ମାତ୍ର ଏଭଳି ହୀନମନ୍ୟତା କାହାର ପକ୍ଷେ ଯେ ଅସହ୍ୟ ! ପତ୍ନୀଙ୍କୁ ମୋର ଶାଳଗ୍ରାମ କହିବାରେ ଆପତ୍ତି ନ ଥାଏ; କିନ୍ତୁ ମୋତେ ଏକାବେଳେ ମଣିଷ ସୃଷ୍ଟିର ଆଦିମତମ ଅବସ୍ଥାରେ ନେଇ ଥୋଇବା ଯେ ଅସହ୍ୟ ! ପୁଣି ଏଇ ଓଡ଼ିଆ ଢଗଟିର ଆର ପଦଟି ମିଶାଇଦେଲେ ହେବ—

ମାଙ୍କଡ଼ ହାତରେ ଶାଳଗ୍ରାମ ।
ନଚାଇ ନଚାଇ ନେଲା ପ୍ରାଣ ॥

ସେଦିନ ଆମ ଗାଁର ଯେଉଁ ଭାଇଜଣକ ଏଇ ଟିପ୍‌ପଣୀ କରିଥିଲେ, ସେ ଆଜି ସ୍ୱର୍ଗରେ । ବଞ୍ଚିଥିଲେ ତାଙ୍କ କଥାର ସତ୍ୟତା ସ୍ୱୀକାର କରି କ୍ଷମା ମାଗିଥାନ୍ତି । ଆଉ ସେମିତି କୌଣସି ବିଶ୍ୱାସୀ ଜ୍ୟୋତିର୍ବିତ୍‌ଙ୍କୁ ଭେଟିଲେ ପଚାରନ୍ତି, ସେତେବେଳେ ରାତିଗୁଡ଼ାକ ଏତେ ସାନ ଆଉ ଦିନଗୁଡ଼ାକ ଏମିତି ଅସହ୍ୟ ଭାବରେ ବଡ଼ ହୋଇଯାଏ କାହିଁକି ! ଫଗୁଣ ମାସରେ ଏପରି ଘଟିବା ତ ପ୍ରାୟ ଜଣା ନାହିଁ କି ଶୁଣା ନାହିଁ ।

ତା'ପରେ—

ଫଗୁଣ ପରେ ଚୈତ୍ର ଆସେ କି କ'ଣ ? ଦିନେ ହଠାତ୍ ପହଞ୍ଚନ୍ତି ଆସି ପତ୍ନୀଙ୍କ ଭ୍ରାତା ! ମୁଖରେ ତାଙ୍କର ବିଷାଦର ଛାୟା—ଘୋର ଦୁଃସମ୍ବାଦ—ଜନନୀ ତାଙ୍କର ମୃତ୍ୟୁଶଯ୍ୟାରେ—ଶେଷ ନିଃଶ୍ୱାସ ତ୍ୟାଗ କରିବା ପୂର୍ବରୁ ସେ କନ୍ୟାମୁଖ ଦର୍ଶନ-ଲାଳସୀ ହୋଇଛନ୍ତି ! ସଙ୍ଗେ ସଙ୍ଗେ ନ ବାହାରିଲେ ମୋହ ପତ୍ନୀଙ୍କର ମାତୃମୁଖ ଦର୍ଶନ କରିବା ଚାନ୍‌ସ ଆଉ ନାହିଁ । ନବବଧୂଙ୍କର ଗୃହପ୍ରବେଶ ପରେ ନିକଟତମ ଆତ୍ମୀୟା ମାଉସୀ ପ୍ରଭୃତି ଏ ପର୍ଯ୍ୟନ୍ତ ଆମ ଭଉଣୀଘର ଗହଳି କରି ହସ ଖୁସିରେ ଦିନ ଅଣ୍ଟୁ ନଥିଲା; ଏ ସମ୍ବାଦଟା ସବୁରି ପକ୍ଷରେ ଯେମିତି ଏକ ବିନା ମେଘରେ ବଜ୍ରପାତ । ଏଥିରେ ଆଉ ନାହିଁ କରିବା ଉପାୟ ଅଛି ବା କାହାର !

ମୋହ ପକ୍ଷରେ ମିଳନ ପରେ ଏଇ ବିଚ୍ଛେଦର ବ୍ୟବଧାନଟା ବୋଧହେଲା ଆଖିପିଛୁଳା ଭଳି । 'ଲାବଣ୍ୟବତୀ' ବା 'ରୋମିଓ ଜୁଲିୟେଟ୍‌ଙ୍କ' ମିଳନ-ବିଚ୍ଛେଦ ବର୍ଣ୍ଣନାଠାରୁ ଆଉ ବେଶି ବର୍ଣ୍ଣିବାର ଅବକାଶ ଅବା କାହିଁ ମୋହ ପକ୍ଷରେ ? ଏହା ପୁଣି ଏକାନ୍ତ ବ୍ୟକ୍ତିଗତ !

ଆଲୁଅ-ଅନ୍ଧାରଭଳି ଏମିତି ଆଖିପିଛୁଡ଼ାକେ ମିଳନ-ବିରହର ବିବର୍ତ୍ତନ ଜ୍ଞାତି ବନ୍ଧୁମାନଙ୍କଠାରେ ଲକ୍ଷ୍ୟ କରି ମୁଁ ଅଧିକ ଆହତ ହୁଏଁ । ପତ୍ନୀଙ୍କ ବିଦାୟ ପଛେ ପଛେ ସେମାନେ ମଧ ଚାହୁଁ ଚାହୁଁ ଅନ୍ତର୍ଦ୍ଧାନ ହୋଇଗଲେ ଜଣକପରେ ଆଉ ଜଣେ ବିଷାଦ ବଦନରେ । ଆଉ ମୁଁ ? ନବବସନ୍ତର ଆଗମନୀ ଅକସ୍ମାତ୍ ''ଏ ଭରା ଭାଦର ମାହଭାଦର ଶୂନ୍ୟ ମନ୍ଦିର ମୋର !'' ହୋଇ ପାଲଟି ଯାଏ ।

ପରେ ଏଇ ଦୁର୍ଘଟଣାର ଅନୁସନ୍ଧାନ କରି ବାପା ବୁଝିଲେ ଯେ, ତାହା ଆରମ୍ଭରୁ ଶେଷଯାକେ ସମ୍ପୂର୍ଣ୍ଣରୂପେ କପୋଳକଳ୍ପିତ । ଶେଷରେ ପୁଣି ଏଇ କରୁଣ ରସ ଏପରି ଏକ ହାସ୍ୟରସରେ ପରିଣତ ହେବ ବୋଲି ମୋର କଳ୍ପନାର ଅତୀତ ଥିଲା । କେତେକ ବର୍ଷ ପରେ ମୋର ଶାଶୁଙ୍କ ଶାରୀରିକ ଅବସ୍ଥା ପ୍ରକୃତ ସଙ୍କଟାପନ୍ନ ହେଲାବେଳେ ଆମ୍ଭେମାନେ ବାରିପଦାରେ ରହିଥାଉଁ । ସେତେବେଳେ ଶାଳକଙ୍କର ପତ୍ର ପାଇ ମଧ ଘଟଣାକୁ ସେଇଭଳି ଲଘୁଜ୍ଞାନ କରି କେହି ଯାଇ ଉପସ୍ଥିତ ହୋଇପାରିଲୁଁ ନାହିଁ । ବାପା ମୋତେ ଯିବାଲାଗି ପରାମର୍ଶ ଦେଲେ; କିନ୍ତୁ ଗଉଡ଼ପିଲା ମିଛରେ ତାକୁ ବାଘ ଧରିଛି ବୋଲି ଡକା ପକେଇ ଗାଁ ଲୋକଙ୍କୁ

ଠକିଥିବାରୁ ଶେଷରେ ସତରେ ବାଘ ଧରିବାରୁ ଦଶା ତା'ର ଯାହାହେଲା, ଏ କ୍ଷେତ୍ରରେ ମଧ୍ୟ ସେଇ ପରିଣାମ ।

ବୈବାହିକ ଜୀବନର ଆଶୀର୍ବାଦ ଉତ୍ସବ ପରେ ମଧ୍ୟ ମିଳନଠାରୁ ବିରହର ବ୍ୟବଧାନ ଅହରହ ଅଧିକ ହୋଇପଡ଼େ । ପୁଣି ଆଶୀର୍ବାଦ ଉତ୍ସବ ମୋର ଶିକ୍ଷା ଜୀବନରେ ଆଶୀର୍ବାଦ ଢାଳିପାରେ ନାହିଁ । ଆଇ.ଏ.ପାସ୍ କରେଁ ମୁଁ ତୃତୀୟ ଶ୍ରେଣୀରେ—ଆଉ ବି.ଏ.ରେ ହରାଇ ବସେଁ ଇଂରାଜୀରେ ଅନର୍ସ । ସେତେବେଳେ ମନେପଡ଼େ ମ୍ୟାଟ୍ରିକ୍ କ୍ଲାସରେ ପଣ୍ଡିତ ମହାଶୟଙ୍କ କଥା—''ବିଭାଯାକେ ପାଠ ।''

ନବାଗତା ସହଧର୍ମିଣୀଙ୍କର ଅବଶ୍ୟ ମୋର ପାଠ ପ୍ରତି ଭ୍ରୂକ୍ଷେପ ନ ଥାଏ; ବରଂ ସେ ରେଭେନ୍‌ସା କଲେଜ ହଷ୍ଟେଲ୍‌କୁ ମୋର ସହଯାତ୍ରିଣୀ ହେବା ଲାଗି ପ୍ରଥମେ ଇଚ୍ଛା ପ୍ରକାଶ କରି ପରେ ପୂରାପୂରି ଜିଦ୍‌ଧରି ବସନ୍ତି । ତାଙ୍କର ବୋଧହୁଏ ମନ ଭିତରେ ଗୋଟାଏ ଧାରଣା ଜନ୍ମିଥିଲା ଯେ ରାମବନବାସରେ ମଧ୍ୟ ସୀତାଠାକୁରାଣୀ ଅଯୋଧ୍ୟାପୁରୀ ଛାଡ଼ି ଚଉଦ ବର୍ଷକାଳ ସ୍ୱାମୀଙ୍କର ସହଗାମିନୀ ହୋଇଥିଲେ । ମାତ୍ର ରେଭେନ୍‌ସା କଲେଜ ହଷ୍ଟେଲ୍ ଯେ ଚିତ୍ରକୂଟ ପର୍ବତ କିମ୍ବା ଦଣ୍ଡକାରଣ୍ୟ କଦାପି ନୁହେଁ; ଯେଉଁଠାକୁ ମୁଁ ପିତୃସତ୍ୟ ପାଳନ ଲାଗି ବନବାସୀ ହୋଇ ରାକ୍ଷସମାନଙ୍କୁ ନିପାତ କରିବାକୁ ଯାଉ ନାହିଁ, ତାହା ବୁଝାଇବା ମୋହପକ୍ଷରେ ଅସମ୍ଭବ ହୋଇପଡ଼େ ଏହି ତେରବର୍ଷ ବୟସ୍କା ବାଳିକା ବଧୂକୁ ।

ଆହୁରି ଅସମ୍ଭବ ହୋଇଉଠେ ତାଙ୍କୁ ବୁଝାଇବା ପାଇଁ ଯେ, କଲେଜ ହଷ୍ଟେଲ୍‌ରେ ରହୁଥିବା ଛାତ୍ରମାନଙ୍କ ସକାଶେ ଫ୍ୟାମିଲି କ୍ୱାର୍ଟରର ବ୍ୟବସ୍ଥା ନାହିଁ କେଉଁଠି ହେଲେ; କିନ୍ତୁ ବାଲ୍ୟବିବାହ ସହିତ କଲେଜଛାତ୍ରମାନଙ୍କ ଲାଗି ଫ୍ୟାମିଲି କ୍ୱାର୍ଟ୍‌ର ବ୍ୟବସ୍ଥା କରାଉଥିଲେ ଆଜି କାଲି ଭଳି ଛାତ୍ର-ଅଶାନ୍ତି, ଷ୍ଟ୍ରାଇକ୍ ଗୋଳମାଳର ବୋଧହୁଏ ତାହା ପ୍ରଧାନ ପ୍ରତିଷେଧକର କାମ କରନ୍ତା ପରା ! ପୁଣି ବିଚ୍ଛେଦକାଳୀନ ଯୋଗାଯୋଗ ରକ୍ଷା କରିବା ସୂତ୍ର କାହିଁ ଥିଲା ସେତେବେଳେ ? ଚିଠି ? ସେଥିଲାଗି ଯେ ଦୁଆତ, କଲମ, କାଗଜ ପୁଣି ନିଭୃତ ସ୍ଥାନ ଓ ସମୟ ଦରକାର ! ତା'ପରେ କାହା ହାତରେ ପୁଣି ଡାକଘରକୁ ପଠାଇବାକୁ ହେବ ? ହାୟରେ ବିଂଶ ଶତାବ୍ଦୀ ! ତୁ ମଧ୍ୟଯୁଗୀୟ କବି ଉପେନ୍ଦ୍ର ଭଞ୍ଜଙ୍କଠାରୁ ବି ଆହୁରି ପଛରେ ! ବିଂଶ ଶତାବ୍ଦୀର ଏତେ ଯେ ନିର୍ମଳ ଚନ୍ଦ୍ରମଣ୍ଡଳ—ଖାଲି ସିନା ଅକାରଣ !



# ରେଭେନ୍‌ସା କଲେଜ
## ପୂର୍ବ ଛାତ୍ରାବାସ

ରେଭେନ୍‌ସା କଲେଜ ପୂର୍ବ ଛାତ୍ରାବାସ ବହୁ ବିଚିତ୍ର ସ୍ମୃତିରେ ରଞ୍ଜିତ । ସ୍ୱଦେଶ ବିଦେଶର ସମୁଦାୟ ସାହିତ୍ୟ ସଂସ୍କୃତି ଅବା ଝଲସିଉଠେ ପ୍ରାଚୀଦିଗନ୍ତର ଅରୁଣ ଆଭା ଲଭି ଏହି ଛାତ୍ରାବାସରେ ।

ମହାତ୍ମାଗାନ୍ଧୀ, ଶ୍ରୀଅରବିନ୍ଦ, ପୁଣି ରବୀନ୍ଦ୍ରନାଥଙ୍କ ପରି ଜୀବିତ ମନୀଷୀମାନଙ୍କ ଜୀବନୀ ବିଶ୍ଳେଷଣ ସହିତ ବିଶ୍ୱ ସାହିତ୍ୟର ମୃତ ଓ ଜୀବିତ ଟଲ୍‌ଷ୍ଟୟ, ଇବ୍‌ସେନ୍, ରୋମାଁରୋଲାଁ, ବର୍ଣ୍ଣାଡ଼୍‌ଶ ପ୍ରମୁଖ ମନୀଷୀ ଲେଖକମାନଙ୍କ ସମ୍ପର୍କରେ କେତେ ଆଲୋଚନା, ତର୍କ ବିତର୍କ ।

ପୂର୍ବ ପଶ୍ଚିମ ଉଭୟ ପାର୍ଶ୍ୱରେ ଦୁଇ ବିରାଟ ଛାତ୍ରାବାସ ମଝିରେ ପ୍ରଶସ୍ତ ପ୍ରାଙ୍ଗଣ—ଗୋଟିଏ ଛାତ୍ରାବାସର ପିଲାମାନଙ୍କୁ ଅନ୍ୟ ଛାତ୍ରାବାସ ପିଣ୍ଡାରେ ଠିଆହୋଇ ଚିହ୍ନିବା ଇଚ୍ଛା ହେଲେ ବି ଉପାୟ ନାହିଁ । ମଧ୍ୟସ୍ଥଳରେ କନିକା ଲାଇବ୍ରେରୀର ଗୋଲ୍ କୋଠା । କୋଠାଟି ଥାଏ ଜାତୀୟ, ଆନ୍ତର୍ଜାତୀୟ ସବୁ ଶ୍ରେଷ୍ଠ ସାହିତ୍ୟର ଗନ୍ତାଘର, ବିଶ୍ରାମ ଘଣ୍ଟାରେ ସେଇଠି କଟେ ସମୟ ଆମର; ଲାଇବ୍ରେରୀରୁ ଅତି ପ୍ରାଚୀନ ପୁଣି ଅତି ଆଧୁନିକ ବହି ଆଣିବା, ପଢ଼ିସାରି ପରସ୍ପର ମଧ୍ୟରେ ଲେଖା ଓ ଚରିତ୍ର ଚିତ୍ରଣ ସମ୍ପର୍କରେ ଆଲୋଚନା କରିବା ଥିଲା ସେତେବେଳେ ଏକ ଶ୍ରେଷ୍ଠ ବିଳାସ ।

ସହପାଠୀମାନଙ୍କ ଭିତରୁ ଅନ୍ନଦାଶଙ୍କର, ଶରତ୍‌ଚନ୍ଦ୍ର ଓ ବୈକୁଣ୍ଠନାଥ ରହୁଥାନ୍ତି ସହରଭିତରେ, ଅଥଚ କଲେଜ ଛୁଟିପରେ ସୁଦ୍ଧା ଯା'ଆସ କରନ୍ତି ସେମାନେ ହଷ୍ଟେଲ୍‌କୁ, ସେଇଠୁଁ ସମସ୍ତେ ସାଥୀ ହୋଇ ଯାଉଁ ଜୋବ୍ରା ଆନିକଟ୍ କିମ୍ବା ମହାନଦୀ ରେଳପୋଲ ପର୍ଯ୍ୟନ୍ତ—ଆଉ କେବେ ଏକାବେଳେ କେନାଲ୍ ପାରିହୋଇ କାଠଯୋଡ଼ି ପୋଲପର୍ଯ୍ୟନ୍ତ । ମଝିରେ ମଝିରେ ସାଥିହୁଅନ୍ତି ଆମର ଶିକ୍ଷାବିଭାଗର ବର୍ତ୍ତମାନ ଅବସରପ୍ରାପ୍ତ ଜଏଣ୍ଟ-ଡାଇରେକ୍ଟର ଶ୍ରୀ ହରିହର ମିଶ୍ର; ଆଉ କେବେ ସ୍ୱର୍ଗତ ପ୍ରାଣକୃଷ୍ଣ ନନ୍ଦ କିମ୍ବା ଶିଳ୍ପୀ ସାହିତ୍ୟିକ ଗୋପାଳଚନ୍ଦ୍ର କାନୁନ୍‌ଗୋ ।

ପୂର୍ବ ଛାତ୍ରବାସର ଅନ୍ୟତମ ବନ୍ଧୁ ଶ୍ରୀ ହରିଶ୍ ଚନ୍ଦ୍ର ବଡ଼ାଳ ଓ ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡାଙ୍କ ସହିତ ମଧ୍ୟ ପରିଚୟ ହୁଏ । ସୁପରିଣ୍ଟେଣ୍ଡେଣ୍ଟ ସ୍ୱର୍ଗତ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ପ୍ରାଚୀନ ସାହିତ୍ୟର ଗବେଷଣା ଆରମ୍ଭ କରିଥାନ୍ତି ।

ସୁପରିଣ୍ଟେଣ୍ଡେଣ୍ଟ୍ କ୍ୱାର୍ଟର ପ୍ରଶସ୍ତ ବାରଣ୍ଡା ଉପରେ ବିଛା ହୋଇଥାଏ, କେତେ ଖଣ୍ଡ ସପମସିଣା ଆଉ ଗଦା ହୋଇଥାଏ ତାହାରି ଉପରେ ବଡ଼ ବଡ଼ ତାଳପତ୍ର ଖେଦାମାଳ ଡୋରି ଫିଟାହୋଇ ଚାରିପଟେ ।

ତାହାରି ଭିତରେ ଯେପରି ଅବା ଆର୍ତ୍ତବଲ୍ଲଭ ନିଜକୁ ହଜାଇ ଦେଇଥାନ୍ତି । ପିଲାଦିନୁଁ ଆମ ଘରେ ଜମା ହୋଇଥିବା ପୋଥିଖଟୁଲିକୁ ଦେଖି ଏଇ ସବୁ ପୋଥି ପ୍ରତି ମୋର ଅବଶ୍ୟ ବିଶେଷ କୌତୂହଳ ଜନ୍ମେ ନାହିଁ । କୌତୂହଳ ଜନ୍ମେ କେବଳ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କର ଏଇ ପୋଥିଗଦାଟି ଭିତରେ ନିବିଷ୍ଟ ହୋଇ ନିଜକୁ ହଜାଇ ଦେବାର ଲକ୍ଷ୍ୟ କରି ।

ଉତ୍କଳ-ସାହିତ୍ୟ-ସମାଜ ପକ୍ଷରୁ ପ୍ରତିବର୍ଷ ଘୋଷିତ ହୁଏ ସାହିତ୍ୟ ପୁରସ୍କାରମାନ ତାଳଚେର ଆଠମଲ୍ଲିକ ପ୍ରମୁଖ ରାଜା ମହାରାଜାମାନଙ୍କର ବଦାନ୍ୟତା ଫଳରେ; ବର୍ଷରେ ଥରେ ଏହି ପୁରସ୍କାରଗୁଡ଼ିକ ଦିଆଯାଏ ଗୋଟିଏ ସୀମିତ ସାହିତ୍ୟିକ ପରବେଶ ଭିତରେ ।

ସେ ବର୍ଷ ଉତ୍କଳସାହିତ୍ୟ ସମାଜ ପକ୍ଷରୁ ପୁରସ୍କାର ପାଇଁ ଘୋଷିତ ହୁଏ, 'ମଥୁରା ମଙ୍ଗଳ'ର ସମାଲୋଚନା, ପୁରସ୍କାର ମୂଲ୍ୟ ଚାଳିଶ ଟଙ୍କା । ଅଧ୍ୟାପକ ଆର୍ତ୍ତବାବୁଙ୍କ ନିର୍ଦ୍ଦେଶରେ ମୁଁ ସେଇ ପ୍ରବନ୍ଧ ଲେଖେଁ ଓ ତାଙ୍କଠାରୁ ପ୍ରଶଂସା ଲାଭକରେଁ । ସେଇ ଚାଳିଶଟି ଟଙ୍କା ହେଲା ସେତେବେଳେ ମୋର ସାହିତ୍ୟ-ସାଧନାଭିତରେ ସର୍ବପ୍ରଥମ ଆର୍ଥିକ ପୁରସ୍କାର ।

ପୁରସ୍କାର ଅପେକ୍ଷା ଅବଶ୍ୟ ଅଧିକ ମୂଲ୍ୟବାନ୍ ହୁଏ ମୋହ ପକ୍ଷରେ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ଉତ୍ସାହବାଣୀ ଓ ପ୍ରଶଂସା । ତାଙ୍କଭଳି କଠୋର ସମାଲୋଚକଙ୍କଠାରୁ ପ୍ରଶଂସା ଶୁଣିବା ଅଳ୍ପ ସୌଭାଗ୍ୟର ତ ବିଷୟ ନୁହେଁ ! ଶ୍ରୀ ଜଗଦାନନ୍ଦ ମହାନ୍ତି ସେତେବେଳେ ଆର୍ତ୍ତବାବୁଙ୍କର ପ୍ରିୟ ଛାତ୍ରରୂପେ ତାଙ୍କ ଗବେଷଣା କ୍ଷେତ୍ରରେ ସାହାଯ୍ୟ କରୁଥାନ୍ତି ଓ ସ୍ୱର୍ଗତ ବିଚ୍ଛନ୍ଦଚରଣ ପଟ୍ଟନାୟକ ମଧ୍ୟ ତାଙ୍କର ଅନ୍ୟତମ ପ୍ରିୟ ଶିଷ୍ୟ ଭାବରେ ଚିହ୍ନିତ ହୋଇଥାନ୍ତି । ସାହିତ୍ୟ ସମାଜରୁ ପୁରସ୍କାର ଲାଭ ସହିତ ସହାଧ୍ୟାୟୀ ବନ୍ଧୁମାନଙ୍କ ଦୃଷ୍ଟି ମଧ୍ୟ ମୁଁ ଆକର୍ଷଣ କରିଥିବା ସ୍ୱାଭାବିକ । ଆଧୁନିକ ସାହିତ୍ୟର ଜଣେ ସେବକ ହୋଇ ପ୍ରାଚୀନ ସାହିତ୍ୟ ଉପରେ ମୋର ନିବନ୍ଧ ଯେ ସମାଦୃତ ହୁଏ—ତାହା ବନ୍ଧୁମାନଙ୍କ ମଧ୍ୟରେ ପୁଣି ମୋ ନିଜ ଭିତରେ ସୃଷ୍ଟି କରେ ଏକ ପ୍ରତ୍ୟୟ—ଯାହା ଫଳରେ ସାହିତ୍ୟିକ ପ୍ରାଚୀନ ଓ ଆଧୁନିକ ଭାବଧାରା ଭିତରେ ଏକ ନିରବଚ୍ଛିନ୍ନ ଯୋଗସୂତ୍ର ପ୍ରତିଷ୍ଠିତ ବୋଲି ମୁଁ ଅନୁଭବ କରେଁ ।

ଆଧୁନିକ ସାହିତ୍ୟର ଶ୍ରେଷ୍ଠ ମୁଖପତ୍ର 'ଉତ୍କଳ-ସାହିତ୍ୟ' ପତ୍ରିକା ତ ସବୁବେଳେ ଥାଏ ମୋର ଅନ୍ୟତମ ଲକ୍ଷ୍ୟସ୍ଥଳ । ପୁରୀଜିଲ୍ଲା ସ୍କୁଲର ଛାତ୍ରଥିବା ସମୟରେ ଗୋଟିଏ ମାତ୍ର କ୍ଷୁଦ୍ରଗଳ୍ପ ଏହି ପତ୍ରିକାରେ ପ୍ରକାଶ ପାଇ ଯେପରି ମୋର ଲେଖକ ମହଲରେ ପ୍ରାରମ୍ଭିକ ପରିଚୟ ଆଣିଦିଏ, ତାହା ପରଠାରୁ କିନ୍ତୁ ଏକାଧିକ ଉଦ୍ୟମର ପରିଣତି ଘଟେ ବ୍ୟର୍ଥତା ଭିତରେ ।

ପ୍ରତି ମାସରେ 'ଉତ୍କଳ ସାହିତ୍ୟ' ପ୍ରକାଶିତ ହେବା ସଙ୍ଗେ ସଙ୍ଗେ ରେଭେନ୍‌ସା କଲେଜ ଇଷ୍ଟହଷ୍ଟେଲ୍‌କୁ ଆସେ ଉତ୍କଳ ସାହିତ୍ୟ ପ୍ରେସ୍‌ର ସୁପରିଚିତ ଚପରାସୀ ଲଛମନ୍ ସିଂ, ତାହାର ପାତଳାମୁହଁରେ ବହଳିଆ ମୋଟା ନିଶ ଭିତରୁ ପାନଖିଆ କସରାଦାନ୍ତ ଦେଖାଇ ସେ ଭାରି ମଜାରେ ହସେ ।

'ଉତ୍କଳ ସାହିତ୍ୟ'ର ବିଡ଼ା ଫିଟାଇଲାବେଳେ ଲଛମନ୍ ସିଂ କେତେ ଯେ କୌତୂହଳ ପୁଣି କେତେ ଯେ ଉଦ୍ଦୀପନା ସୃଷ୍ଟିକରେ ସେହି ପୂର୍ବ ଛାତ୍ରାବାସର ସୁପ୍ରଶସ୍ତ ବାରଣ୍ଡାରେ !

ପ୍ରତି ମାସରେଁ ତା'ରି ହାତରୁ 'ଉତ୍କଳ ସାହିତ୍ୟ'ର ଗ୍ରାହକ ରୂପେ ନିଜ କାଗଜ ଖଣ୍ଡି ନିଏଁ । ପ୍ରତି ମାସରେ ଲେଖା ପଠାଏଁ—କବିତା, ଗଳ୍ପ ଇତ୍ୟାଦି; ମାତ୍ର ହତାଶ ହୁଏଁ ଶେଷରେ । ସେହି ଗୋଟିଏ ମାତ୍ର ଗଳ୍ପ ସ୍କୁଲରେ ପଢୁଥିଲା ବେଳର ରହିଯାଏ ମୋର, କାଣୀ ଆଖିରେ କଜଳଗାର ହୋଇ ।

ସ୍କୁଲରୁ ଆସି କଲେଜପର୍ଯ୍ୟନ୍ତ, ତା'ପରେ ଯେତେ ଲେଖା ପଠାଏଁ—ପ୍ରାୟ ପ୍ରତି ମାସରେ—ତାହା ଫେରିଆସିବା ତ ଦୂରର କଥା; ସମ୍ପାଦକ ମହାଶୟଙ୍କ ହସ୍ତଗତ ହେଲା କି ନାହିଁ, ଜାଣିବାକୁ ମଧ ଉପାୟ ନଥାଏ ।



# ରାଧାନାଥ, ମଧୁସୂଦନ ଓ ବିଶ୍ୱନାଥ

'ମଥୁରା-ମଙ୍ଗଳ' ସମାଲୋଚନାରେ ପୁରସ୍କୃତ ହେବା ଆଗରୁ 'ଉତ୍କଳ ସାହିତ୍ୟ' ପାଇଁ ଆଧୁନିକ ପବିତାର ଏକ ମୂଲ୍ୟାୟନ କରେଁ । ତାହା ହେଲା—କବିବର ରାଧାନାଥ ଓ ଭକ୍ତକବି ମଧୁସୂଦନଙ୍କ ସାହିତ୍ୟ ପ୍ରତିଭା ସମ୍ପର୍କରେ ଏକ ତୁଳନାତ୍ମକ ବିଚାର-ବିଶ୍ଳେଷଣ; କିନ୍ତୁ ଦିନ ପରେ ଦିନ ଗଡ଼ିଚାଲେ । ଗଳ୍ପ କବିତା ଭଳି ନିବନ୍ଧଟି ମଧ ମୋର ସମଦଶା ଲାଭ କରିବ ବୋଲି ମୁଁ ପ୍ରାୟ ନିଶ୍ଚିନ୍ତ ଥାଏଁ । ତଥାପି ପ୍ରତି ମାସ 'ଉତ୍କଳ-ସାହିତ୍ୟ'ର ପୃଷ୍ଠା ଓଲଟାଇ ଖୋଜେଁ, ଲେଖକ ଲେଖିକାଙ୍କର ନାମ ତାଲିକା ।

ଦିନେ ହଠାତ୍ ବିସ୍ମୟରେ ଅଭିଭୂତ ହୋଇପଡ଼େଁ, ଲଛମନ୍ ସିଂ ହାତରୁ ଖଣ୍ଡିଏ ଚିଠି ପାଇ । ଚିଠି ଖଣ୍ଡି ଲେଖିଥାନ୍ତି 'ଉତ୍କଳ ସାହିତ୍ୟ'ର ସ୍ୱନାମଧନ୍ୟ ସମ୍ପାଦକ ସ୍ୱୟଂ ଶ୍ରୀ ବିଶ୍ୱନାଥ କର ! ଚିଠି ଖଣ୍ଡିରେ ଲେଖାଥାଏ ଯେ, ମୋର ନିବନ୍ଧ ସେ ପାଇଛନ୍ତି । ସେଇ ସମ୍ପର୍କରେ କିଞ୍ଚିତ୍ ଆଲୋଚନା କରିବାକୁ ମୋତେ ତାଙ୍କର ଡାକରା !

ବାଲୁବଜାର ମଝିରେ ସେତେବେଳେ ଅବସ୍ଥିତ ଥାଏ ଉତ୍କଳ ସାହିତ୍ୟ ପ୍ରେସ୍ । ଉଜ୍ଜ୍ୱଳ ଶୁଭ୍ର ଧୋତି ପଞ୍ଜାବି ପିନ୍ଧି ବିଶ୍ୱନାଥବାବୁ ରାସ୍ତାପାଖ ଝରକା ନିକଟରେ ବସିଥାନ୍ତି—କେତେବେଳେ ଏକ ଧ୍ୟାନରେ ପଢୁଥିବା କିମ୍ବା ପ୍ରୁଫ୍ ସଂଶୋଧନ କରୁଥିବା ଅବସ୍ଥାରେ—ଆଉ କେବେ କାହା ସାଥିରେ ଆଲୋଚନା କରୁଥିବାବେଳେ ।

ଶୁଭ୍ର ଶ୍ମଶ୍ରୁମଣ୍ଡିତ ମୁଖ—ସୁନା ଚଷମା ଭିତରୁ ସୁତୀବ୍ର ଦୃଷ୍ଟିର ଚିତ୍ର—ଆଜି ମଧ ମନରେ ମୋର ସଂଭ୍ରମ ଜନ୍ମାଏ । ସେଇ ବାଟେ କେତେଥର ଯା'ଆସ କରୁଁ ଆମେ । ଲକ୍ଷ୍ୟ କରୁଁ ତାଙ୍କର ସାଧନାଦୀପ୍ତ ମୁଖମଣ୍ଡଳ । କେବେହେଲେ କିନ୍ତୁ କାହାରି ସାହସ ହୁଏନି ବିଶ୍ୱନାଥ ବାବୁଙ୍କ ନିକଟବର୍ତ୍ତୀ ହେବାକୁ, ବାଘ ମୁହଁକୁ ଛେଳି ଗଲା ଭଳି !

ଲଛମନ ସିଂଠାରୁ ବିଶ୍ୱନାଥବାବୁଙ୍କ ପତ୍ର ଖଣ୍ଡି ପାଇ ମୁଁ ଆହ୍ଲାଦରେ ବିଭୋର ହୋଇପଡ଼େଁ । ମନେହୁଏ ଯେପରି ମୋର ସାହିତ୍ୟସାଧନାର ଚରମ ସାଫଲ୍ୟର ବାର୍ତ୍ତା ବହନ କରି ଆସିଛି ଏଇ ଚିଠିଖଣ୍ଡି ।

ଯଥା ସମୟରେ ଯାଇ ପହଞ୍ଚିଲି ବିଶ୍ୱନାଥବାବୁଙ୍କ ସମକ୍ଷରେ । ମୋତେ ଡାକି ସେ ସସ୍ନେହରେ ବସିବାକୁ କହିଲେ; ଆଉ ମୋର ଲେଖାଟି ଉତ୍କଳ ସାହିତ୍ୟରେ ପ୍ରକାଶ କରିବାପାଇଁ ସେ ପାଇଛନ୍ତି ବୋଲି ଜଣାଇଲେ । ତହୁଁ ସେ ଯାହା ପଚାରିଲେ ତାହାର ଭାଷା ଆଜି ମୁଁ ସ୍ମୃତି ଓ କଳ୍ପନା ମଧ୍ୟରୁ ଉଦ୍ଧାର କରୁଛି ।

"ତୁମ ପ୍ରବନ୍ଧଟି ମୁଁ ପାଇଛି, ଭଲ ହୋଇଛି ପ୍ରବନ୍ଧଟି; କିନ୍ତୁ ତୁମେ ରାଧାନାଥ ଓ ମଧୁସୂଦନଙ୍କ ଭିତରେ ଯେଉଁ ତୁଳନାତ୍ମକ ଆଲୋଚନା କରିଛ, ସେଥି ସହିତ ମୁଁ ଏକମତ ନୁହେଁ ।"—କେଉଁ ବିଷୟରେ ସେ ଏକମତ ନୁହନ୍ତି ! ଶୁଣିବାକୁ କିଞ୍ଚିତ୍ ବିଷାଦ ହତାଶା ମିଶ୍ରିତ ଉତ୍କଣ୍ଠା ଘେନି ମୁଁ ଅପେକ୍ଷା କଲି—ସଂଶୟ ଓ ସଂଭ୍ରମରେ ପଚାରିଲି, "କାହିଁକି, କ'ଣ ହେଲା କି ?"

"ତୁମେ ରାଧାନାଥଙ୍କୁ ଯେପରି ଉଚ୍ଚ ସ୍ଥାନ ଦେଇ ମଧୁସୂଦନଙ୍କୁ ନ୍ୟୂନ କରିଛ, ସେଥିରେ ମୁଁ ଏକମତ ନୁହେଁ ।"

"କିନ୍ତୁ କବି ରୂପେ ରାଧାନାଥ କ'ଣ ମଧୁସୂଦନଙ୍କଠାରୁ ଉଚ୍ଚତର ଆସନର ଅଧିକାରୀ ନୁହନ୍ତି କି ?"

ମୋର ଏଇ ପ୍ରଶ୍ନରେ ବିଶ୍ୱନାଥବାବୁ ଟିକିଏ ବିବ୍ରତ ବା ଉତ୍ତେଜିତ ପରି ବୋଧହେଲେ । ତାଙ୍କ ମୁଖମଣ୍ଡଳ ଯେପରି ଅବା ଅଧିକ ଦୀପ୍ତିମନ୍ତ ହୋଇଉଠେ, ଆଉ ସେହି ଉଜ୍ଜ୍ୱଳ ସୁନା ଚଷମା ଭିତରେ ଚକ୍ଷୁର ତାରକା ତୀବ୍ରତର ହୋଇ ଅବା ବିନ୍ଧକଲା ମୋତେ ।

"ମୁଁ ତୁମ ସହିତ ଆଦୌ ଏକମତ ନୁହେଁ । ଉଭୟ କବି ପରସ୍ପର ପ୍ରତିଭା ବିକାଶରେ କେହି କାହାରିଠାରୁ ଊଣା ନୁହନ୍ତି ବୋଲି ମୋର ମତ ।"

ତାଙ୍କର ସେହି ସୁତୀବ୍ର କଟାକ୍ଷପାତ ସହିତ ବାକ୍ୟାଘାତରେ ମୁଁ ବିବ୍ରତ ହୋଇପଡ଼େ । ତଥାପି ସାହସ ବାନ୍ଧି ପଚାରେଁ ମୁଁ "ଇଂରେଜ କବି ସେଲିଙ୍କ (Shelley) ସହ ରାଧାନାଥଙ୍କୁ ତୁଳନା କରିପାରେଁ ।"

ତତ୍କ୍ଷଣାତ୍ ବିଶ୍ୱନାଥବାବୁଙ୍କଠାରୁ ଜବାବ୍ ମିଳେ—"ତାହା ବୋଲି ତ ୱାର୍ଡ଼ସୱାର୍ଥ (Wordsworth) କଦାପି ସେଲିଙ୍କଠାରୁ ନ୍ୟୂନ ହୋଇ ନ ପାରନ୍ତି ।"

କଂସା ପିଟିଲେ ତହିଁରୁ ଯେପରି ଶବ୍ଦ ବାହାରେ, ସେହିପରି ତାଙ୍କର ବାକ୍ୟ ତୀବ୍ର ଭାବରେ ବାଜିଯାଏ ମୋ କାନରେ । ତା'ପରେ ଶୁଣେଁ, "ଯାହାହେଉ, ତୁମ ପ୍ରବନ୍ଧଟିକି ମୁଁ 'ଉତ୍କଳ ସାହିତ୍ୟ'ରେ ପ୍ରକାଶ କରୁଛି, ପ୍ରବନ୍ଧଟି ଭଲ ହୋଇଛି ।"

ବିଶ୍ୱନାଥବାବୁଙ୍କ ସହିତ ମୋର ଏହି ପ୍ରଥମ ସାକ୍ଷାତ୍ ସାହିତ୍ୟ ସାଧନାରେ ଯେଉଁ ପ୍ରେରଣା, ଯେଉଁ ଉତ୍ସାହ ଆଣି ଦେଇଥିଲା, ତାହା ଆଜି ପ୍ରାୟ ପଚାଶ ବର୍ଷ ପରେ ପୂର୍ଣ୍ଣ ରୂପେ ପ୍ରକାଶ କରିବା ସମ୍ଭବପର ନୁହେଁ । ପ୍ରେରଣାଟା ବହୁଗୁଣିତ ହୋଇପଡ଼େ ଯେତେବେଳେ ସେହି ମାସର ଉତ୍କଳ ସାହିତ୍ୟ ବିଡ଼ାଟି ଘେନି ହଷ୍ଟେଲ ବାରଣ୍ଡାରେ ଆସି ବସିପଡ଼େ ଲଛମନ୍ ସିଂ ।

ବନ୍ଧୁ ଅନ୍ନଦାଶଙ୍କର ଓ ଅନ୍ୟ ବନ୍ଧୁମାନେ ମୋତେ ଉଲ୍ଲସିତ ଅଭିନନ୍ଦନ ଜଣାନ୍ତି ଯେ, 'ଉତ୍କଳ ସାହିତ୍ୟ'ରେ ସ୍ଥାନ ପାଇଛି ରଚନା ମୋର; କିନ୍ତୁ ସୁବିଜ୍ଞ ସମ୍ପାଦକ ସ୍ୱର୍ଗତ ବିଶ୍ୱନାଥ ବାବୁ ପ୍ରବନ୍ଧଟି ପ୍ରକାଶ କରିବା ସଙ୍ଗେ ସଙ୍ଗେ ତାଙ୍କ ନିଜ ମତାମତ ମଧ ଉଲ୍ଲେଖ କରିଥାନ୍ତି ସମ୍ପାଦକୀୟରେ । ତାହା ମୋର ସମାଲୋଚନା ହେଲେ ସୁଦ୍ଧା ପ୍ରବନ୍ଧର ମୂଲ୍ୟକୁ କରି ପକାଇଛି ବହୁଗୁଣିତ ।

ସମ୍ପାଦକ ରୂପେ ବିଶ୍ୱନାଥବାବୁଙ୍କର ଏହି ମହାନ୍ ଉଦାରତା ଆଜି ମୋର ଅନତିକ୍ରମ୍ୟ ଆଦର୍ଶ ହୋଇ ରହିଛି । 'ଉତ୍କଳ ସାହିତ୍ୟ' ପରେ 'ନବଭାରତ' ପ୍ରକାଶ ପାଏ ନୀଳକଣ୍ଠଙ୍କ ସମ୍ପାଦନାରେ ଅନ୍ୟାନ୍ୟ ସାହିତ୍ୟ ପତ୍ରିକା ସମେତ । ପ୍ରାୟ ସବୁ ପତ୍ରିକାରେ ମୋ ରଚନା ସ୍ଥାନ ପାଏ ଅଳ୍ପ ବହୁତେ; କିନ୍ତୁ ଲେଖା ପଠାଇବା ପାଇଁ ବିଶ୍ୱନାଥବାବୁଙ୍କ ସ୍ୱହସ୍ତାଙ୍କିତ କାର୍ଡ଼ ଯେପରି ପ୍ରାୟ ପ୍ରତି ମାସରେ ଆସି ପହଞ୍ଚୁଥିଲା, ତାହା ଆଜି ସ୍ୱପ୍ନ । କେତେ କ୍ଷେତ୍ରରେ ପୁଣି ସ୍ୱୟଂ ସଂପାଦକଙ୍କର ସମୟାଭାବରୁ କି କ'ଣ, ସମ୍ପାଦନାରେ କାର୍ଯ୍ୟ କରୁଥିବା ଅନ୍ୟମାନଙ୍କଠାରୁ ପତ୍ର ଆସେ । ସ୍ୱୟଂ କୌଣସି ପତ୍ରିକା ସମ୍ପାଦକ ଲେଖା ଲୋଡ଼ିଲାବେଳକୁ ମୋର ମଧ ସମୟାଭାବ ।

ବିଶ୍ୱନାଥବାବୁଙ୍କ ସମ୍ପାଦନା ସମ୍ପର୍କରେ ସ୍ୱର୍ଗତ କବି ପଦ୍ମଚରଣ ପଟ୍ଟନାୟକଙ୍କଠାରୁ ଶୁଣିଛି, ପୁଣି ନିଜ ଅଭିଜ୍ଞତାରୁ ବୁଝିଛି ମଧ ଆଉ ଗୋଟିଏ କଥା । ପ୍ରତି ରଚନାକୁ ସେ ସ୍ୱୟଂ ତନ୍ନ ତନ୍ନ କରି ଦେଖନ୍ତି—ତହୁଁ ଯେଉଁ ଲେଖା ତାଙ୍କର ମନୋନୀତ ହୁଏ, ତହିଁର ଭାଷାରେ ମଧ ନିଜେ ସଂଶୋଧନ କରନ୍ତି । କବି ପଦ୍ମଚରଣଙ୍କ କବିତାରେ ଏପରି ସଂଶୋଧନକୁ ରଚୟିତା ସ୍ୱାଗତ କରି ବିଶ୍ୱନାଥବାବୁଙ୍କ ସମ୍ପାଦନାର ପ୍ରଶଂସାମୁଖର ହୋଇପଡ଼ି କହନ୍ତି—କବି ନ ହେଲେ ବି କବିତା ସଂଶୋଧନରୁ ତାଙ୍କ କବିତ୍ୱର ପରିଚୟ ମିଳିଥାଏ ।



# ସବୁ ସବୁଜ

ରେଭେନ୍‌ସା କଲେଜ ପୂର୍ବ ଛାତ୍ରାବାସରେ ଅନ୍ତେବାସୀ ଥିବାବେଳେ ଯେଉଁ ବନ୍ଧୁମାନେ ସହଜେ ଏକାଠି ହେଉଁ, ତାଙ୍କରି ସମବେତ ସାହିତ୍ୟ ପ୍ରଚେଷ୍ଟା ଭବିଷ୍ୟତରେ ରୂପରେଖ ଘେନି ପରିଚିତ ହୁଏ 'ସବୁଜ ସାହିତ୍ୟ ସମିତି' ନାମରେ । ଛାତ୍ରାବାସ ଭିତରେ ଆବଦ୍ଧ ରହିଥିଲେ ବି ମନ ମୋର ଉଡ଼ିବୁଲେ ମୁକ୍ତ ବିହଙ୍ଗ ଭଳି ।

ସ୍କୁଲରେ ପଢ଼ିବା ସମୟରୁ ମୁଁ ଯେଉଁ ଦିନଲିପି ଲେଖିବା ଅଭ୍ୟାସ କରେଁ; କଲେଜକୁ ଆସି ମଧ୍ୟ କେତେ ବର୍ଷ ପାଇଁ ତାହା ଅକ୍ଷୁଣ୍ଣ ରହେ । ସେତେବେଳେ ଦେଶର ପରିସ୍ଥିତି ମନ ଭିତରେ ମୋର ଯେଉଁ ଦାଗ କାଟିଥିଲା, ତାହାରି ସୂଚନା ତା ୧୯/୧୨/୧୯୨୧ ମସିହା ସୋମବାର ଦିନଲିପିରେ କିଞ୍ଚିତ୍ ମିଳେ—

''ଭାରତ ଆଜି ହୁଲ୍‌ସ୍ଥୁଲ କମ୍ପୁଛି । ଆଲିଭାଇଙ୍କ ପରେ ଲାଲାଜୀ, ନେହରୁ, ଚିତ୍ତରଞ୍ଜନ, ଜିତେନ୍ଦ୍ରନାଥ ଓ ଅନ୍ୟାନ୍ୟ ନେତାମାନେ ଜେଲ୍‌ଗଲେ । ତାଙ୍କ ପଛେ ପ୍ରତି ଦିନ ଶତଶତ ସ୍ୱରାଜ ଶାନ୍ତିସେନା ଜେଲଖାନାର ଜନସଂଖ୍ୟା ବୃଦ୍ଧି କରୁଛନ୍ତି । କଲିକତା ନଗରୀ ଉଠୁଚି ପଡୁଚି । ୨୪ ତାରିଖ ରାଜକୁମାର (Prince of Wales) ସେ ନଗରୀରେ ପଦାର୍ପଣ କରିବେ ବୋଲି ପୂର୍ଣ୍ଣ ହରତାଳ ହେବାର ତୁମୂଳ ଆୟୋଜନ ଚାଲିଚି । ମହାତ୍ମା ୨୩ ତାରିଖ କଲିକତା ପହୁଞ୍ଚିବେ ବୋଲି ଶୁଣାଯାଉଛି ।

କଲିକତାର ସବୁ କଲେଜ ଖାଲି । ପହିଲାଠାରୁ ପ୍ରକୃତ ଶାନ୍ତିଯୁଦ୍ଧର ଆରମ୍ଭ ଚାଲିଲା । ମହାତ୍ମାଙ୍କ କାର୍ଯ୍ୟର ଗତି ପ୍ରଖର ଭାବରେ ଗତି କରିବାକୁ ଆରମ୍ଭ କଲା । ସେଇ ହାଓଆ ଉତ୍କଳକୁ ଶୀତଳ ସମୀରଣ ହୋଇ ବହି ଆସୁଛି । ଝଡ଼ବତାସ ଗତିରେ ଆସିନାହିଁ, କଲେଜ ପିଲାମାନେ ଉତ୍କଳମାତାଙ୍କର ଅଭିଶପ୍ତ ସନ୍ତାନ । ଅନେକେ ସବୁ ଦେଖୁଛନ୍ତି, ବୁଝୁଛନ୍ତି କିନ୍ତୁ ଛାତି ପତାଉ ନାହିଁ କାହାର । ଆହୁରି ଦୁଃଖର କଥା, କେତେକେ ଏ ଖବରଟା ଏ ପର୍ଯ୍ୟନ୍ତ ଜାଣିବାକୁ ଚାହାନ୍ତି ନାହିଁ । ଆହ୍ୱାନ ଆସିଛି, ଡାକ ଶୁଭୁଛି । ଅନେକେ ସାହସହୀନ ଶୁଣିକରି ମଧ୍ୟ, ଅନ୍ୟମାନେ ଶୁଣି ନାହାନ୍ତି ଏ ପର୍ଯ୍ୟନ୍ତ । ଶୁଣିବାକୁ ମଧ୍ୟ ଚାହାନ୍ତି ନାହିଁ । ଯେପରିକି ସେମାନେ ମନେ କରନ୍ତି ଏଇଟା ଚନ୍ଦ୍ରଗୁପ୍ତ ଅମଳ । ବାହାରକୁ ଦ୍ୱାର ବନ୍ଦ କରିଦେଇ ପୁସ୍ତକକୀଟ ହୋଇ ରହିବାରେ ଏମାନଙ୍କର ସୁଖ । ବର୍ତ୍ତମାନ ସମୟ ସଙ୍ଗେ ଯେପରି କୌଣସି ସମ୍ପର୍କ ନାହିଁ । କଲିକତା ଓ ଗୁଜୁରାଟ କଥା ତ ଅଛି । ଚାଉଳିଆଗଞ୍ଜ ପୋଷ୍ଟ ଅଫିସ ପାଖେ କି ବିଶେଷ ଘଟଣା ଘଟୁଛି, ଏମାନଙ୍କୁ ତାହା ଜଣାନାହିଁ । ମନୁଷ୍ୟ ହୋଇ ଏପରି ଅଭିଶପ୍ତ, ଦୟା ଓ କ୍ଷମାର ପାତ୍ର, ଏପରି ପୁଣି ଥାନ୍ତି ! ଏଇମାନଙ୍କ ମଧ୍ୟରୁ ମୁଁ ଜଣେ । ଏ ଚିନ୍ତା ମନରେ ଭୀଷଣ ଆତ୍ମଗ୍ଲାନି ଜନ୍ମାଏ । ହୃଦୟସ୍ଥିତ ଦେବତା ଅପମାନିତ ହୁଅନ୍ତି । ସ୍ୱରାଜ୍ୟ ମିଳିଲେ ନିର୍ଲଜ୍ଜ ମୁଖରେ କଲେଜ ହତାରୁ ବାହାରି ସ୍ୱାର୍ଥତ୍ୟାଗୀ ଭାଇମାନଙ୍କ ନିକଟରେ କଥା କହିବାକୁ ହସ୍ତପଦ ଅବଶ ହୋଇ ପଡ଼ିବ ନାହିଁକି ?

''ମୋତେ ଭଗବାନ୍ ଗୋଟାଏ କନ୍‌ସେସନ୍ ଦେଇଛନ୍ତି ।''

''ସ୍ୱରାଜ୍ୟ ଲାଗି କର୍ମକରିବା ସୁଖରୁ ବଞ୍ଚିତ ହେଲେ ମଧ୍ୟ ଖବର ଦି'ଟା ଗୋଟେ ଜାଣି ଯଥେଷ୍ଟ ସୁଖ ଆଦାୟ କରିନିଏଁ । କିଏ ଜାଣେ, କାର୍ଯ୍ୟ କରିବାରେ ବେଶି ସୁଖ ନା ଜାଣି ରଖିବାରେ ବେଶି ସୁଖ ! ମହାତ୍ମାଗାନ୍ଧୀଙ୍କଠାରେ ସକଳବୃତ୍ତିର ସାମଞ୍ଜସ୍ୟ ଘଟିଛି । ବିଶେଷତଃ ଜ୍ଞାନ ଓ କର୍ମର ଯେ ସାମଞ୍ଜସ୍ୟ—ଯାହା ଦେବଚରିତ୍ର ଛଡ଼ା ଅନ୍ୟଠାରେ ସମ୍ଭବେ ନାହିଁ,—ତାଙ୍କ ନିକଟ ପୂର୍ଣ୍ଣତା ଲଭିଛି । ଜ୍ଞାନ ଓ କର୍ମର ଯୋଗରେ ଏବଂ ସମାନ ତଉଲରେ ମହାତ୍ମାଙ୍କର ମାହାତ୍ମ୍ୟ । ତ୍ୟାଗ ଓ ସଂଯମ ସଂଯୋଗରେ ତାଙ୍କର ପୁଣ୍ୟମୟ ଚରିତ୍ର ତାଙ୍କୁ ମହୀୟାନ୍ କରି ଗଢ଼ିଛି । ସମସ୍ତ ବିପରୀତର ଏକତ୍ୱ ବିଧାନ ଓ ଜୀବନରେ ସତ୍ୟର ପ୍ରବଳ ଅନୁସନ୍ଧିତ୍ସା ଦ୍ୱାରା ସେ ଜଗତରେ ଶ୍ରେଷ୍ଠ ମାନବ ।''

ଦିନ ପରେ ଦିନ ଏହିପରି ଦିନଲିପି ପୁଣି କବିତା, ଗଳ୍ପ ପ୍ରବନ୍ଧର ପ୍ରସ୍ତୁତି । ସେତେବେଳେ ଦିନ ଆସେ ଦିନଯାଏ, ରାତି ଆସି ରାତିପାହେ । ତା ୧୩/୨/୧୯୨୨ ମସିହା ରାତି ବାରଟା ସମୟରେ ବସି ଲେଖେଁ କବିତା—

**''ଲୋଟଣୀ ପାରା''**

ପ୍ରଭାତର ଶୀତଳ ସେନେହ
ଭାସିଯାଏ ଆକାଶ ବକ୍ଷରେ
ପ୍ରସ୍ଫୁଟିତ ପଦ୍ମ ଜିଣି ଶୁଭ୍ର
କିଏ ଧାଉଁ ଅନନ୍ତ ଲକ୍ଷ୍ୟରେ ?
ସ୍ନିଗ୍ଧ ଧବଳ ବିନ୍ଦୁ ହୋଇ
ଶୁଦ୍ଧ ନୀଳିମାରେ ଯାଉ ମିଶି
କି ବତାସେ ଥରି ଉଠେ ହିଆ
ପୁଲକେ ନିରେଖ ଦଶଦିଶି ?
ସ୍ୱରଗର ଅମୃତ କରୁଣା
ପୃଥିବୀ କଳୁଷ ନାହିଁ ତହିଁ
ଅରୁଣ-ରଞ୍ଜିତ ନିଦ୍ରାଦେଶେ
ଊର୍ଦ୍ଧ୍ୱେ ଊର୍ଦ୍ଧ୍ୱେ ଉଠୁ ରହି ରହି ।

ସଂସାରର ମୋହ ଆବରଣ
ଭେଦି ଊର୍ଦ୍ଧ୍ୱେ କି ଭାବୁ ଲୋ ବସି
ଆହା କିଏ ଦିଏ ଓଲଟାଇ
ବିଦ୍ୟୁତ୍ ଗତିରେ ପଡୁଖସି !
ପୁଣି ଉଠୁ ପୁଣି ସେଇ ଦଶା
ହତମାନେ ଫେରୁଲୋ ସନ୍ତତ
କିଏ ସେ ନିଷ୍ଠୁର ସ୍ୱର୍ଗଦ୍ୱାରୁ
ଠେଲିଦିଏ ଲଗି ଅର୍ଦ୍ଧପଥ !

ମୋ ଆଶା ମୋ ଅନ୍ତର ପିପାସା
ଖସେ ଉଠେ ସିନା ଏହିପରି
ଶୂନ୍ୟେ ଆହା ପ୍ରାଣର ସର୍ବସ୍ୱ
କିପାଁ ଲୋଟେ କେଉଁ ଦମ୍ଭଧରି ।

କବିତାଟି ହେଲା କଳ୍ପନା-ବିଳାସୀ ଯୌବନର ଆଶାନିରାଶାମୟ ସ୍ୱପ୍ନିଳ ଜୀବନର ଗୋଟିଏ ଚିତ୍ର । ପତ୍ରିକାରେ ପ୍ରକାଶିତ ହୋଇ କେତେକ ବନ୍ଧୁଙ୍କ ପ୍ରଶଂସା ଅର୍ଜନ କରେ ସେତେବେଳେ ସିନା, ଏବେ ଅବଶ୍ୟ ନୁହେଁ ।

ରେଭେନ୍‌ସା କଲେଜରୁ ରାଣୀହାଟ ଯିବାକୁ କେନାଲ ପୋଲ ପାରିହୋଇ ଗଲେ ଡାହାଣ ହାତି ପଡ଼େ ପଶୁଡାକ୍ତରଖାନା, ବୈକୁଣ୍ଠନାଥ ରହନ୍ତି ସେଇଠି ତାଙ୍କର ବନ୍ଧୁ ପଶୁଡାକ୍ତରଙ୍କ ଘରେ । ସେଇ ଘରେ ଆମେ ସହାଧ୍ୟାୟୀ ବନ୍ଧୁମାନେ ଯାଉଁ ଛୁଟି କଲେଜ ଛୁଟିପରେ । ତହୁଁ ଚାଲେ ଭବିଷ୍ୟତ ସାହିତ୍ୟିକ ଜୀବନର ବହୁ କଳ୍ପନା ଜଳ୍ପନା, ବିଚାର ଆଲୋଚନା । ଅନ୍ନଦାଶଙ୍କର ରହସ୍ୟରେ କହନ୍ତି, ଯିଶୁଖ୍ରୀଷ୍ଟଙ୍କର ଯେପରି ଜନ୍ମ ହୋଇଥିଲା, ଗୋଟିଏ ଘୋଡ଼ାଶାଳରେ, ସବୁଜ ସାହିତ୍ୟର ଜନ୍ମ ସେହିଭଳି ଏକ ପଶୁଡାକ୍ତରଖାନାରେ !

ପ୍ରଥମେ ସ୍ଥିରକରୁଁ ଆମର ଗୋଟିଏ ସାହିତ୍ୟିକ ଗୋଷ୍ଠୀ ରହିବ, ଯାହାର ନାମ 'ନନ୍‌ସେନ୍‌ସ କ୍ଲବ' (Nonsense Club) ଅର୍ଥାତ୍ 'ଅନର୍ଥ ଆଡ୍‌ଡ଼ା' । 'ନନ୍‌ସେନ୍‌ସ' ଅବଶ୍ୟ ଗୋଟାଏ ଗାଳିକୁ ବୁଝାଏ । ଆମେ ଏଇ ନାମଟିକୁ ପାଇଥାଉଁ ଇଂରେଜ କବି କୁପର (Willium Cowper)ଙ୍କର ପତ୍ରାବଳୀରୁ । ବହି ଖଣ୍ଡି ଆମର ପାଠ୍ୟ ଥାଏ ବୋଧହୁଏ । ଲେଖକମାନେ ଯେ ସଂସାର କ୍ଷେତ୍ରରେ ନିରର୍ଥକ ବା ସବୁ ଅନର୍ଥର ମୂଳ—ଅର୍ଥାତ୍ ଦୋରସ୍ତ ସଂସାରୀ ଯାହାକୁ ବୁଝାଏ, ତାହା ହେବାପାଇଁ ଅସମର୍ଥ—ପୁଣି ବନ୍ଧୁତା ପାତିବା ଯେ ଚତୁର ବୁଦ୍ଧିମାନର କାମ ନୁହେଁ, ଆଉ ଶତ୍ରୁତା ଶଠତା ହେଲା ବୁଦ୍ଧିମାନ୍‌ର ବିଚାର—କବି କୁପରଙ୍କ ଏଇ ନାମକରଣରୁ ତାହାହିଁ ବୋଧହୁଏ ସୂଚିତ ହୁଏ । ଏହି ଗୋଷ୍ଠୀ ପକ୍ଷରୁ ଆମେ ଗୋଟିଏ ହାତଲେଖା ପତ୍ରିକା ମଧ୍ୟ ବାହାର କରୁଁ । ତାହାର ନାମ— (Nonsense Club Magazine) ନନ୍‌ସେନସ୍ କ୍ଲବ୍ ମାଗାଜିନ । ପତ୍ରିକାର ସମ୍ପାଦନା ଦାୟିତ୍ୱପଡ଼େ ମୋରି ଉପରେ । ହରିହର ଇଂରେଜୀ ନାମଟିକୁ ବଦଳାଇ ଓଡ଼ିଆ ନାମଟିଏ ରଖନ୍ତି— 'ଅବକାଶ' । ଏହି ନାମର ଚାରିଟି ଅକ୍ଷରରେ ଅନ୍ନଦା, ବୈକୁଣ୍ଠ କାଳିନ୍ଦୀ ଓ ଶରତ୍ ନାମ ଚାରିଟିର ପ୍ରଥମ ଅକ୍ଷର ରହିଲା ସିନା, ହରିହରଙ୍କ ନାମ ନ ରହିବାରୁ ପରେ ତାହାକୁ ବଦଳାଇ ଆମେ ରଖୁଁ 'ଶକ୍ତିସାଧନା' ।

ପତ୍ରିକାଟି ଲେଖା ହେଉଥିଲା, ତିନିଟି ଭାଷାରେ—ଓଡ଼ିଆ, ବଙ୍ଗଳା ଓ ଇଂରାଜୀ । ଏହି ପତ୍ରିକାର ଲେଖକମାନେ ପରେ ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁଙ୍କ ସମ୍ପାଦିତ 'ସହକାର' ମାସିକ ପତ୍ରରେ ପୁଣି ଶେଷରେ ସ୍ୱର୍ଗତ ବିଶ୍ୱନାଥ କରଙ୍କ 'ଉତ୍କଳ ସାହିତ୍ୟ' ମାସିକରେ ଲେଖନ୍ତି ନିୟମିତ ଭାବରେ । ବନ୍ଧୁତା ପ୍ରତିଷ୍ଠାରେ ଧୁରନ୍ଧର ବୟୋଜ୍ୟେଷ୍ଠ ଲକ୍ଷ୍ମୀନାରାୟଣ ମଧ୍ୟ ସ୍ୱଭାବସୁଲଭ ଗୁଣରେ ଆମ ସମସ୍ତଙ୍କର ନିକଟତର ହୋଇପଡ଼ନ୍ତି ।

ସବୁଜବନ୍ଧୁମାନଙ୍କ ଉଦ୍ୟମରେ ହିଁ 'ଉତ୍କଳ ସାହିତ୍ୟ' ମାସିକରେ ଧାରାବାହିକ ପ୍ରକାଶ ପାଏ ନଅଜଣ ଲେଖକ-ଲେଖିକାଙ୍କଦ୍ୱାରା ଲିଖିତ 'ବାସନ୍ତୀ' ଉପନ୍ୟାସ' । କଲେଜ ଛାଡ଼ି ବିଭିନ୍ନ କାର୍ଯ୍ୟ କ୍ଷେତ୍ରରେ ସେମାନେ ପ୍ରବେଶ କରିବା ପରେ 'ସବୁଜ ସାହିତ୍ୟ' ସମିତି ପ୍ରକାଶ ସଂସ୍ଥାର ପ୍ରତିଷ୍ଠା କରାଯାଏ, ପୁଣି ତାହାର ମୁଖପତ୍ର ହୁଏ ମାସିକ 'ଯୁଗବୀଣା'; ଯାହା ଯୁବକ ମହଲରେ କେବଳ ନୁହେଁ, ଓଡ଼ିଆ ସାହିତ୍ୟରେ ସୃଷ୍ଟିକରେ ଏକ ସ୍ମରଣୀୟ ଆଲୋଡ଼ନ ।

୧୯୩୧ ଖ୍ରୀଷ୍ଟାବ୍ଦରେ ସବୁଜ ସାହିତ୍ୟ ସମିତିର ପ୍ରତିଷ୍ଠାତା ପାଞ୍ଚଜଣ ସଭ୍ୟଙ୍କ ରଚିତ କବିତା ସଙ୍କଳନ ପ୍ରକାଶିତ ହୁଏ 'ସବୁଜ କବିତା' ନାମ ଘେନି । ତାହାର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରନ୍ତି ନିଉ ଷ୍ଟୁଡେଣ୍ଟସ ଷ୍ଟୋର । ସେହିଭଳି ସମ୍ମିଳିତ ପ୍ରଚେଷ୍ଟାରେ ନଅଜଣ ଲେଖକ ଲେଖିକାଙ୍କଦ୍ୱାରା ଲିଖିତ 'ବାସନ୍ତୀ' ଉପନ୍ୟାସର ମଧ୍ୟ ପ୍ରକାଶ । ସେଥିସହିତ ଓଡ଼ିଶାର ପ୍ରଖ୍ୟାତ କବି ସର୍ଗତ ଚିନ୍ତାମଣି ମହାନ୍ତିଙ୍କ 'ଶନିସପ୍ତା' ଉପନ୍ୟାସ, ସ୍ୱର୍ଗତ ଦିବ୍ୟସିଂହ ପାଣିଗ୍ରାହୀଙ୍କ 'ତୁ ମୋ ମା' ଉପନ୍ୟାସ, କବିଶ୍ରୀ ମାୟାଧର ମାନସିଂଙ୍କ 'ପୂଜାରିଣୀ, କବିଶ୍ରୀ ସଚ୍ଚିଦାନନ୍ଦ ରାଉତରାୟଙ୍କ 'ପାଥେୟ', ଶ୍ରୀହରିଶ୍ଚନ୍ଦ୍ର ବଡ଼ାଲଙ୍କ ନାଟକ 'ଦେଶର ଡାକ', ଶ୍ରୀ ଅନନ୍ତପ୍ରସାଦ ପଣ୍ଡାଙ୍କ ଗଳ୍ପସଂଗ୍ରହ 'ତୃଣଗୁଚ୍ଛ', ଶ୍ରୀ କମଳାକାନ୍ତ ଦାଶଙ୍କ ଉପନ୍ୟାସ 'ବୋଉ', ଶ୍ରୀମତୀ ଶାନ୍ତି ମୁଖାର୍ଜିଙ୍କ 'ଚିରନ୍ତନୀ', ଶ୍ରୀ ହରିହର ମିଶ୍ରଙ୍କ 'ଆଶୀର୍ବାଦ', ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକଙ୍କ ନାଟକ 'ମୁକ୍ତିପଥେ' ଆଦି ବିଭିନ୍ନ ଲେଖକଙ୍କର ଗ୍ରନ୍ଥ ସହିତ ଶ୍ରୀ ନଗେନ୍ଦ୍ରନାଥ ଦତ୍ତଙ୍କ 'ରୂପର ଅଭିଶାପ' ଓ ଶ୍ରୀମତୀ ବିନୋଦିନୀ ଷଡ଼ଙ୍ଗୀଙ୍କ ସମେତ ବର୍ତ୍ତମାନ ଲେଖକଙ୍କର ମଧ୍ୟ କେତେକ ଉପନ୍ୟାସ, ଗଳ୍ପ, କବିତା ଆଦି ପ୍ରକାଶିତ ହୁଏ ।

'ଯୁଗବୀଣା' ମାସିକ ପତ୍ରରେ ସ୍ୱର୍ଗତ ପଣ୍ଡିତ ଗୋପବନ୍ଧୁ ଦାଶଙ୍କର ଅପ୍ରକାଶିତ କବିତା ସହିତ ସର୍ବ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ଭଗବତୀଚରଣ ପାଣିଗ୍ରାହୀ, କୁମାରୀ ନିର୍ମଳ ନଳିନୀ ସାମନ୍ତରା, ଶ୍ରୀ ଉପେନ୍ଦ୍ର ପ୍ରସାଦ ମହାନ୍ତି, ଶ୍ରୀମତୀ ସୁପ୍ରଭାଦେବୀ, ଡାକ୍ତର ରାଧାଚରଣ ପଣ୍ଡା, ସ୍ୱର୍ଗତ କବି ଶ୍ରୀ ପଦ୍ମଚରଣ ପଟ୍ଟନାୟକ, ସ୍ୱର୍ଗତ ଶ୍ରୀ କାଳୀପ୍ରସନ୍ନ ଜବି, ସ୍ୱର୍ଗତ ଗୋବିନ୍ଦ ତ୍ରିପାଠୀ, ଶ୍ରୀମତୀ ସରଳା ଦେବୀ ଓ ଶ୍ରୀମତୀ ଦେବହୁତୀ ଦେଈ ପ୍ରମୁଖ କବି ଲେଖକ ଓ ଲେଖିକାମାନଙ୍କ ରଚନାବଳୀରେ ମଣ୍ଡିତ ହୁଏ 'ଯୁଗବୀଣା' ମାସିକ ପତ୍ରର ପ୍ରତ୍ୟେକ ସଂଖ୍ୟା ନବ ନବ ସାହିତ୍ୟ ସମ୍ଭାର ବହନ କରି । ଯେଉଁମାନଙ୍କ ନାମ ଏଠାରେ ଉଲ୍ଲେଖ କରିପାରିଲି ନାହିଁ ଅସାବଧାନତା କିମ୍ୱା ସ୍ଥାନାଭାବ ହେତୁ, ତାଙ୍କ ନିକଟରେ ମୁଁ କ୍ଷମାପ୍ରାର୍ଥୀ । ମୋର ଜୀବନସ୍ମୃତିରେ କିନ୍ତୁ ସେମାନଙ୍କ ସ୍ଥାନ ଅମୂଲ୍ୟହୋଇ ରହିଥିବ । କେଉଁଠି ସରିବ ତାଙ୍କ ନାମ ତାଲିକା ? ପୁଣି ଗୋଟିଏ ନାଁ ଯେ କେତେଖଣ୍ଡ ପୋଥି ! ଗୋଟିଏ ଗୋଟିଏ ନାଁ ପଛରେ ଯେ କେତେ ବଡ଼ବଡ଼ ଜୀବନୀ—''ବହୁନି ମେ ବ୍ୟତୀତାନି ଜନ୍ମାନି ତବ ଚାର୍ଜୁନ !''



# ଅର୍ଥ ମନର୍ଥମ୍ ଭାବୟ ନିତ୍ୟମ୍

ଇଂରାଜୀ ସାହିତ୍ୟରେ 'ନନ୍‌ସେନ୍‌ସ' ରଚନାର ଏକ ବିଭାଗୀକରଣ ଲକ୍ଷିତ ହୁଏ । ଏଇ ଶ୍ରେଣୀୟ ରଚନାକୁ ଅସଙ୍ଗତ ସାହିତ୍ୟଭାବରେ ବିଚାର କରାହୁଏ । ଏଥିରେ ଛନ୍ଦର ମାଧୁର୍ଯ୍ୟ ଅଛି, ଭାଷାର ଲୀଳା ଅଛି । ହସ, କାନ୍ଦ, ବ୍ୟଙ୍ଗ, ବିଦ୍ରୂପର ରସମାଧୁରୀ ଅଛି, ସେଥି ସଙ୍ଗେ ରହିଛି, ଅଯୌକ୍ତିକ ଅର୍ଥହୀନତା ମଧ 'ଧୋ ରେ ବାୟା ଧୋ' ଭଳି ।

ଅଥଚ ସେଇ ଗୀତ ଶୁଣି କାନ୍ଦୁରା ପିଲାଟା ଶୋଇପଡ଼େ, କ୍ରୁଦ୍ଧ ମଣିଷ ବି ହସିପକାଏ । ସେଇ ଗପ ପଢ଼ି ଆନନ୍ଦ ମିଳେ, ରସୋପଲବ୍‌ଧି ହୁଏ । ଅଥଚ ଶିଖିବାପାଇଁ ତହିଁରେ କିଛି ହେଲେ ନ ଥାଏ ଉପାଦାନ ! ଏମିତି ବହୁତ କଥା, ବହୁତ ଗୀତ ପୃଥିବୀର ସବୁ ସାହିତ୍ୟରେ ମିଳେ । ତାହା କିନ୍ତୁ ସାହିତ୍ୟ ସ୍ତରରେ ଗଣତି ହୁଏ ନାହିଁ ଯଦି ବା ତାର ହୃତ୍‌ପିଣ୍ଡ ।

ଶିଶୁ ଅବସ୍ଥାରୁ କିନ୍ତୁ ତାହା ସାହିତ୍ୟ-ପ୍ରେରଣା ଯୋଗାଏ । ସେଇଭଳି ରଚନାର ନମୁନା ପଲ୍ଲୀକବି ନନ୍ଦକିଶୋରଙ୍କ ସୃଷ୍ଟିରେ ମଧ ମିଳିଥାଏ । ସାହିତ୍ୟ ରସିକ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଗଦ୍ୟରେ ବ୍ୟଙ୍ଗ ଓ ହାସ୍ୟରସ ସୃଷ୍ଟି ମାଧମରେ ତାହାରି ଆଭାସ ସୁସ୍ପଷ୍ଟ ।

ଉଭୟ ଅବଶ୍ୟ ଜୀବିତ ଥାନ୍ତି ସେତେବେଳେ । ରାଜନୀତିର ତୁମୂଳ ଝଡ଼—ଅହିଂସା ଅସହଯୋଗ ଆନ୍ଦୋଳନ ସାଙ୍ଗକୁ ଓଡ଼ିଆ ସାହିତ୍ୟର ବହୁମୁଖୀ ଅଭ୍ୟୁଦୟ । ସମାନ୍ତରାଳ ଗତିରେ ଯେମିତି ଦୁଇଟା ଯାକର ଦିଗ୍‌ନିର୍ଣ୍ଣୟ ।

ନନ୍‌ସେନ୍‌ସ କ୍ଲବ୍‌ର ସବୁ ସଭ୍ୟ ଉଦ୍‌ବୁଦ୍ଧ ସେତେବେଳର ପ୍ରବଳ ରାଜନୀତିକ ଆହ୍ୱାନରେ । ଆମ ଭିତରେ ତେଣୁ ଦୈନିକ ବହୁ ସମୟର ଆଲୋଚନା ବସ୍ତୁ ହୋଇଥାଏ ରାଜନୀତି ଓ ସାହିତ୍ୟ । ଆଉ ସେଇ ଆଲୋଚନାର ସକ୍ରିୟପନ୍ଥା ଖୋଜିପାଇଁ 'ନନ୍‌ସେନ୍‌ସ କ୍ଲବ୍' ଗଢ଼ିବାରେ । ସାଧାରଣ ଇଂରାଜୀ ଭାଷାରେ ପ୍ରକାଶିତ ସାହିତ୍ୟର ବିଶ୍ୱକୋଷ (Cassell's Encyclopaedia of Literature) ଗ୍ରନ୍ଥର ପ୍ରଥମ ଖଣ୍ଡରେ ମୁଖସ୍ଥ ଅବସ୍ଥାରୁ ଅର୍ଥାତ୍ ପରମ୍ପରାଗତ କିମ୍ବଦନ୍ତୀ ରୂପଭିତରୁ ସାହିତ୍ୟ କିଭଳି ରୂପରେଖ ନିଏ, ତାହାରି ବର୍ଣ୍ଣନା ଉଦ୍ୟମ କରାଯାଇଛି । ନନ୍‌ସେନ୍‌ସ ସାହିତ୍ୟ ବିଷୟକ ଏଇ ଆଲୋଚନାର ଆରମ୍ଭ ।

"The area of nonsense is not easy to define. Just as the word in conversational use denotes the disagreement of the speaker with any thing that he regards as illogical, unpractical or untrue, so it has been attached to various kinds of compositions, greatly differing in their range and meaning, or their want of it. A failure in logic may be justly said to make nonsense and so may a geometrical impossibility, but a

disbelief in a story, a creed or a scheme of administration is presumably a matter of opinion. Nonsense in the arts, pictorial, musical or written invites a similar discrimination. If we are looking for what we like, to call 'nonsense, pure and simple, the best way to describe it is to say that it must be made with no ulterior purpose but to amuse by absurdlity."

ଅର୍ଥାତ୍— "ଅସଙ୍ଗତିର (Nonsense) ପରିସର ନିର୍ଣ୍ଣୟ କରିବା ସହଜ ନୁହେଁ; କଥୋପକଥନରେ ଏଇ ଶବ୍ଦଟିର ବ୍ୟବହାର ଠିକ୍ ଯାହା ବୁଝାଏ—ଶବ୍ଦଟିକି ଉଚ୍ଚାରଣ କରୁଥିବା ବ୍ୟକ୍ତି ତଦ୍ଦ୍ୱାରା ଅସଙ୍ଗତ, ଅଯୌକ୍ତିକ ଓ ଅସତ୍ୟ କଥା ବାଢ଼ନ୍ତି । ତେଣୁ ତାହା ବିବିଧ କିସମ ରଚନା ସହ ଜଡ଼ିତ—ସେଗୁଡ଼ିକର ପରିସର ଓ ତାତ୍ପର୍ଯ୍ୟ ଭିତରେ ଅନେକ ଫରକ ଅଥବା ସେସବୁର ଅଭାବ ତହିଁରେ ନିବଦ୍ଧ ।

ଯୁକ୍ତିର ଅଭାବହିଁ ଯଥାର୍ଥରେ ଅସଙ୍ଗତି ସୃଷ୍ଟି କରେ ବୋଲି କୁହାଯାଇପାରେ, ସେଇପରି କରିଥାଏ ଜ୍ୟାମିତିକ ଅସମ୍ଭବତା; କିନ୍ତୁ ଗପ ମତବାଦ ଅଥବା ଶାସନ ଯୋଜନାରେ ଅବିଶ୍ୱାସ ସୃଷ୍ଟି ବୋଧହୁଏ ବିଭିନ୍ନ ମତାମତ ଉପରେହିଁ ନିର୍ଭରକରେ ବା କଳା, ଚିତ୍ର, ସଙ୍ଗୀତ କିମ୍ବା ଲିଖିତ ରଚନାରେ ଅସଙ୍ଗତିର ପ୍ରୟୋଗ ସେହିଭଳି ବିଚାର ବିଶ୍ଳେଷଣ ଲୋଡ଼ିଥାଏ । ଆମେ ଯାହାକୁ ନିର୍ମଳ ଓ ସରଳ ଭାବରେ ନିରର୍ଥକ ବା ଅସଙ୍ଗତ ବୋଲି ବୁଝାଇବା ପାଇଁ ଲୋଡ଼ୁଁ, ତେବେ ତାହା ବର୍ଣ୍ଣନା କରିବାର ପ୍ରକୃଷ୍ଟ ପନ୍ଥା ହେଲା—ଏହାର କୌଣସି ନିଗୂଢ଼ ଉଦ୍ଦେଶ୍ୟ ନଥାଇ କେବଳ ଅମୂଳକ ଅସଙ୍ଗତିଦ୍ୱାରା ଆନନ୍ଦ ସୃଷ୍ଟି କରିବା । ଏହା ପରସ୍ପର ବିରୋଧୀ ଦ୍ୱନ୍ଦ୍ୱ, ବିକଳ୍ପଦ୍ୱାରା ପୁଣି ଅବାନ୍ତର ଓ ଅପ୍ରାସଙ୍ଗିକ ଶବ୍ଦ ପ୍ରୟୋଗ ଦ୍ୱାରା କେବଳ ଶ୍ରୁତିମଧୁର ଭାଷାରେ ଆନନ୍ଦ ସୃଷ୍ଟି କରିଥାଏ ।" ଏହା 'absurd' ବା 'ଉଦ୍ଭଟ' ଶବ୍ଦର ନାମାନ୍ତର ।

'ନାନାବାଇଆ ଗୀତ'ଠାରୁ ଆରମ୍ଭକରି ଅନେକ କୌତୁକ ଗଳ୍ପ ଶୈଶବରୁ ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ମଣିଷ ମନକୁ ଯେଉଁ କଥିତ ସାହିତ୍ୟରେ ରସାଣିତ କରେ, ତାହାରି ଅବଲମ୍ବନରେ ଲିଖିତ ସାହିତ୍ୟର ସୃଷ୍ଟି ଏଇ ଶ୍ରେଣୀର ଅନ୍ତର୍ଭୁକ୍ତ । 'ନନ୍‌ସେନ୍‌ସ୍ କ୍ଲବ୍'ର ନାମକରଣ ଏହିଠାରୁ ଉଦ୍ଭବ ହେଲେ ମଧ୍ୟ ବାସ୍ତବ କ୍ଷେତ୍ରରେ ନବ ନବ ବୈଚିତ୍ର୍ୟ ଓ ସ୍ପନ୍ଦନ ସୃଷ୍ଟିକରି ସାହିତ୍ୟର ରୂପ, ରସ, ଛନ୍ଦ ଭିତରେ ନୂତନତ୍ୱ ଆଣିଦେବା ହେଲା, ଏହାର ପ୍ରଧାନ ଆଭିମୁଖ୍ୟ ।

ସେତେବେଳେ ବିହାର-ଓଡ଼ିଶା ଗୋଟିଏ ପ୍ରଦେଶ ଓ ଏକମାତ୍ର ପାଟଣା ବିଶ୍ୱବିଦ୍ୟାଳୟ ଅଧୀନରେ ଉଭୟ ପ୍ରଦେଶର ଶିକ୍ଷାନୁଷ୍ଠାନଗୁଡ଼ିକ ପରିଚାଳିତ ।

ରେଭେନ୍‌ସା କଲେଜରୁ ଏହି ସାହିତ୍ୟିକ ଉଦ୍ୟମରେ ଯେଉଁ ବନ୍ଧୁମାନେ ସହଯୋଗ କରନ୍ତି, ତାଙ୍କ ଭିତରୁ ଶ୍ରୀ ଅନ୍ନଦାଶଙ୍କର ରାୟ ଆଇ.ଏ. ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି ପାଟନା କଲେଜରେ ପଢ଼ିବାକୁ ଯାଆନ୍ତି । 'ସବୁଜ କବିତା' ସଂକଳନରେ ପୁଣି 'ବାସନ୍ତୀ' ଉପନ୍ୟାସ ଯୋଜନାରେ ଅନ୍ନଦାଶଙ୍କର ନେତୃତ୍ୱ ଘେନିଥିଲେ ହେଁ ପାଟନା ଯିବା ପରେ କିମ୍ବା ତାହା ପୂର୍ବରୁ ଓଡ଼ିଆ ଭାଷା ଛାଡ଼ି ବଙ୍ଗଳାରେ ଲେଖିବା ପାଇଁ ମନ ବଳାନ୍ତି ।

ବଙ୍ଗଳା ପ୍ରତି ତାଙ୍କର ଝୁଙ୍କ ଅବଶ୍ୟ ମୁଁ ଏଥି ପୂର୍ବରୁ ଲକ୍ଷ୍ୟ କରିଥାଏଁ, ତଥାପି ଓଡ଼ିଆ ଭାଷାକୁ ନ ଛାଡ଼ିବା ପାଇଁ ତାଙ୍କୁ ପ୍ରବର୍ତ୍ତାଏଁ । ଉଭୟଙ୍କ ମଧ୍ୟରେ ଏହି ବିଷୟରେ ବହୁ ଆଲୋଚନା ହୋଇଛି, ପୁଣି ପତ୍ର ବିନିମୟ ମଧ୍ୟ । ବି.ଏ. ପରୀକ୍ଷାରେ ଅନ୍ନଦାଶଙ୍କର ସେଇଭଳି ପ୍ରଥମ ସ୍ଥାନ ଅଧିକାର'କରି ଉତ୍ତୀର୍ଣ୍ଣ ହୁଅନ୍ତି । ସେତେବେଳେ ଆଇ.ସି.ଏସ୍. ପରୀକ୍ଷା ଥାଏ ଭାରତବର୍ଷର ଛାତ୍ରମହଲରେ ସବୁଠାରୁ ବଡ଼ ଉଚ୍ଚାକାଂକ୍ଷା । ସେଇ ଆକାଂକ୍ଷାକୁ ଅନ୍ନଦାଶଙ୍କର ବନ୍ଧୁମାନଙ୍କ ମହଲରେ ମଧ୍ୟେ ମଧ୍ୟେ ପ୍ରକାଶ କରନ୍ତି । ତାଙ୍କର ପ୍ରବଳ ଆତ୍ମବିଶ୍ୱାସ ଏଥିଲାଗି ତାଙ୍କୁ ପ୍ରସ୍ତୁତି କରେ । ପାଟନାରୁ ଲିଖିତ ଏହି ପତ୍ରଖଣ୍ଡିକରୁ କିଞ୍ଚିତ୍ ଆଭାସ ମିଳେ ତାଙ୍କ ମତାମତର ।



## ସବୁଜ ବନ୍ଧୁଙ୍କ ପତ୍ର ବିନିମୟ

ଭାଇ କାଳିନ୍ଦୀ— ପାଟନା ୧୨/୦୨/୬୨

ତମର ସାନ ଚିଠି ଖଣ୍ଡିଏ ଆଜି ପାଇଲି । ମୋତେ ଖୁବ୍ ଗାଳି ଦେଇଛ ଏକା । ଆଶା କରେଁ କୈଫିୟତ୍‌ଟାଏ ଦେବାର ଅଧିକାର ତମ ବନ୍ଧୁର ଅଛି । ମୁଁ ଗୋଟାଏ ଦୀର୍ଘ କୈଫିୟତ୍ ଦେବାକୁ ବସିଛି—ଲେଖୁଁ ଲେଖୁଁ ଯାହା ଲେଖିଯାଇପାରେଁ ତାହାହିଁ ମୋର କୈଫିୟତ୍ ।

ଏହି କେତୋଟି ଲାଇନ୍ ଲେଖିବାକୁ ଅନେକ ସମୟ ଲାଗିଲା । କେତେ ବାର ମନେହେଲା ଠିକ୍ ଓଡ଼ିଆ ଲେଖିଲି, ନା' ଭୁଲ ଓଡ଼ିଆ । ଏହିଥିରୁ ବୁଝୁଥିବ ଓଡ଼ିଆ ମୁଁ କାହିଁକି ଲେଖୁନାହିଁ ।

ତୁମେ ଜାଣ ମୋ ଜନ୍ମ ଓଡ଼ିଶାରେ, ମୋ ପୂର୍ବପୁରୁଷମାନେ ୮/୧୦ ପୁରୁଷ ହେଲା ଓଡ଼ିଶାକୁ ଆସିଲେଣି; ଓଡ଼ିଶାର ଗୋଟାଏ ଛୋଟ ସହରରେ ମୁଁ ଜୀବନର ପ୍ରଥମ ୧୭ବର୍ଷ କଟେଇଛି । ତା'ପରେ କଲିକତା, କଟକ, ପାଟନା ପ୍ରଭୃତିରେ ରହିଲି; ପୂର୍ବୋକ୍ତ ୧୭ ବର୍ଷ ମଧ୍ୟରେ ୬ମାସ ପୁରୀରେ ଥିଲି ।

ଅତଏବ ଲୋକେ naturally ଅନୁମାନ କରିବେ, ମୁଁ ଓଡ଼ିଆ ଭଲ ଜାଣେ, କହିପାରେଁ, ଲେଖିପାରେଁ । ମୁଁ ମଧ୍ୟ ସ୍କୁଲରେ ଓଡ଼ିଆରେ first ହୋଇ ଆସିଛି । କଲେଜରେ ବଙ୍ଗଳା ନେଇଥିଲି ଖିଆଲରେ,—Excel କରିପାରୁଛି କି ନାହିଁ, ଜାଣିବା ପାଇଁ । କଲେଜରେ ବଙ୍ଗଳା ଦୁଇ ବର୍ଷ ପଢ଼ିସୁଦ୍ଧା ଓଡ଼ିଆ ଭୁଲି ନଥିଲି । ପ୍ରମାଣ, ସେହି ଓଡ଼ିଆ ପ୍ରବନ୍ଧ ପ୍ରତିଯୋଗିତା (କଲେଜ)ରେ—ପ୍ରଥମ ପୁରସ୍କାର ପାଇବା ।

କିନ୍ତୁ ସେଇ ଥର ବୁଝିଲି, ଓଡ଼ିଆ ଲେଖିବା କେତେ ପ୍ରୟାସ-ସାପେକ୍ଷ । ପରେ 'ବସନ୍ତ ଗାଥା'ର ସମାଲୋଚନା 3rd year ରେ ଲେଖିଲାବେଳେ ଜାଣିଲି । ଓଡ଼ିଆ ଭାଷାର

ଲୀଳା-ଅଂଶ ମୁଁ ଭୁଲିଯାଇଛି କିମ୍ବା ମୂଳରୁ ଶିଖି ନାହିଁ । ବଡ଼ ଜୋର୍ ଗୋଟାଏ Journalist ମୁଁ ଓଡ଼ିଆ ଭାଷାରେ ହୋଇପାରେଁ; କିନ୍ତୁ ହେବା ମୋ ପକ୍ଷରେ କଠିନ; କିନ୍ତୁ 4th year 'ବାସନ୍ତୀ' ବାହାର କରାଗଲା । ତମେ ମୋତେ ସମସ୍ତଙ୍କ ସାମନାକୁ ଠେଲିଦେଲ; କିନ୍ତୁ କେବଳ ମୋର ପ୍ରରୋଚନାରୁ ନୁହଁ—ଅନ୍ୟ ଗୋଟିଏ ବିଶେଷ କାରଣରୁ ମୁଁ ଓଡ଼ିଆରେ କବିତା ଲେଖିଛି । ଏହି ସ୍ଥଳରେ ଟିକିଏ ଅତୀତ ଆଡ଼କୁ ଦୃଷ୍ଟି ଦିଏଁ ।

ପିଲାଦିନରୁ ମୁଁ ଓଡ଼ିଆ ଶିଖିଛି । ବଙ୍ଗଳା ଶିଖିବା ସଙ୍ଗେ ସଙ୍ଗେ ଇସ୍କୁଲର ତଳକ୍ଲାସରୁ ଓଡ଼ିଆ ମାତୃଭାଷା ରୂପେ ପଢ଼ିଛି । ଘରେ ମଧ୍ୟ ବାପା-କାକାମାନେ ବଙ୍ଗଳା ସାହିତ୍ୟ ତୁଳନାରେ ଓଡ଼ିଆ ସାହିତ୍ୟ ଢେର ଭଲ ଜାଣିଥିଲେ ଓ ଚର୍ଚ୍ଚା କରୁଥିଲେ ବୋଲି ଓଡ଼ିଆ ପ୍ରତି ମୋର ମମତା ଥିଲା । 6th ଓ 5th classରେ ପଢ଼ିଲାବେଳେ ମୁଁ ଓଡ଼ିଆରେ ପଦ୍ୟ ଲେଖେଁ । ସାହିତ୍ୟର ଲୀଳା ଅଂଶ ସହିତ ମୋର ପ୍ରଥମ ପରିଚୟ ଏହି ସମୟରେ ହେଲା 5th class ରେ । ମୁଁ ଓଡ଼ିଆରେ ଗୋଟାଏ ମାସିକ ପତ୍ର ନିୟମିତ ରୂପେ ବର୍ଷେକାଳ ଚଳେଇଛି । ଏହି ମାସିକ ପତ୍ରଟିରେ ଆମର ଓ ଆମ ପ୍ରତିବେଶି ଉତ୍କଳୀୟ ବଙ୍ଗାଳୀ ପରିବାରର ପିଲାମାନେ ଲେଖୁଥିଲେ, ଛବି ଆଙ୍କୁଥିଲେ, ବିଜ୍ଞାପନ ଦେଉଥିଲେ । କାଗଜଟି ଛପେଇବାର ଚିନ୍ତା ମଧ୍ୟ ସମୟ ସମୟରେ ଉଠୁଥିଲା ।

ପୁରୁଣା ସଂଖ୍ୟା ଦୁଇଚାରିଖଣ୍ଡ preserved ଅଛି । ଦେଖିବ, ଲେଖା ନିତାନ୍ତ କଞ୍ଚା ଥିଲା; କିନ୍ତୁ variety ଅନେକ, ସମ୍ପାଦକୀୟ ମୁଁ ନିଜେ ଲେଖୁଥିଲି— ଅଧିକାଂଶ ପଦ୍ୟ, ପ୍ରବନ୍ଧ ଓ ଚିତ୍ର ମୋହରି ।

4th classରୁ ମୁଁ ଭଲ Student ହେଲି, କ୍ରମେ କ୍ରମେ ମୋର Position ଉଚ୍ଚତର ହେଲା । ଏହି ସମୟରେ ଆମର ପାରିବାରିକ ଅବସ୍ଥା ବିଶେଷ ଅସଚ୍ଛଳ ହୋଇପଡ଼ିଥିଲା । ସୁତରାଂ ପଢ଼ାଶୁଣା ଭଲକରିବା ଆଡ଼େ ସ୍ୱାଭାବିକ ଇଚ୍ଛା ଜନ୍ମିଥିଲା ।

ସୁତରାଂ ମୋର 'ପ୍ରଭା' ପତ୍ରିକା ବନ୍ଦ ହୋଇଗଲା । ମୁଁ ସମୟ ସମୟରେ କଦାଚ ଗୋଟିଏ ଅଧେ ପଦ୍ୟ ଲେଖି ଉତ୍କଳ ସାହିତ୍ୟକୁ ପଠେଇ ଦେଉଥିଲି । କହିବା ବାହୁଲ୍ୟ, ତାହା ଯଥା ସମୟରେ ଫେରି ଆସୁଥିଲା ।

2nd classରେ ମୋହ ସହିତ ତମର ପରିଚୟ, 3rd classରେ ବୈକୁଣ୍ଠ ସହ ବନ୍ଧୁତ୍ୱ ଆରମ୍ଭ ହୋଇଥିଲା । ପୁରୀରୁ ଫେରିଆସି ସେ ଓ ମୁଁ ଘନିଷ୍ଠ ହୋଇ ପଡ଼ିଲୁଁ ।

ତା'ପରେ କଲେଜ । କଲେଜରେ ଶରତ ଆସି ଆମ ତ୍ରିବେଣୀରେ ଯୋଗଦେଲା ଏବଂ Nonsense clubର ଚତୁଷ୍କ କ୍ରମଶଃ ବର୍ଦ୍ଧିତ ହେଲା; କିନ୍ତୁ ସାମୟିକ ଆମଦାନୀମାନଙ୍କୁ ବାଦ୍‌ଦେଲେ ବାକି ରହିବେ—ପାଞ୍ଚଜଣ, (Including ହରିହର ମହାପାତ୍ର) । ବର୍ତ୍ତମାନ ପଞ୍ଚଙ୍କ ମଧ୍ୟରୁ ଜଣେ Deputy, ଜଣେ Co-operative Banker, ଜଣେ M.A.Law Student— ଭବିଷ୍ୟତ ନେତା, ଲେଖକ ଇତ୍ୟାଦି; ଜଣେ କବି ପାଗଳ । ବାକିଜଣକ ମୁଁ ।

ମୁଁ କ'ଣ ? ମୁଁ I.C.S. ହୋଇପାରେଁ, ହୋଇ ନ ପାରେଁ ମଧ୍ୟ । ମୁଁ କବି ନୁହଁ, ଅଥଚ କବି-ପ୍ରାଣ, ମୁଁ Artist କି Journalist କ'ଣ ହେବି ତା' ଜାଣେ ନାହିଁ । ସମ୍ଭବତଃ

ଆର୍ଟକୁ ମୋର ଯାହା ଦେବାର ଅଛି, ତାହା ଦେଇଯିବା ପୂର୍ବରୁ ମରିବି । ମୁଁ କିଛି ନୁହେଁ—ମୁଁ ଅନ୍ନଦା ରାୟ– ମୁଁ, ମୁଁ । ଯଦି ଗୋଟାଏ କିଛି Lable ନ ମାରିଲେ ମଣିଷର ଯଥାର୍ଥ ପରିଚୟ ଦିଆଯାଇ ନ ପାରେ, ତେବେ ମୋତେ କହିପାର Lover —ଏହି ଗୋଟିକ କଥାରେ ମୋର ଠିକ୍ ପରିଚୟ—ମୋ ଜୀବନର ଠିକ୍ Meaning ମିଳିପାରେ; କିନ୍ତୁ ଏ ବିଷୟରେ ଆଜି ନୁହଁ, ପରେ କୌଣସି ଦିନ ।

ବର୍ତ୍ତମାନ ଯାହା କହୁଥିଲି, ସେହି କଥାକୁଫେରି ଆସେଁ । କହୁଥିଲି 4th yearରେ କବିତାର ପ୍ରତ୍ୟାବର୍ତ୍ତନ କଥା । ମୁଁ ୮/୯ବର୍ଷ ପରେ ପୁଣି କବିତା ଲେଖିଲି କାହିଁକି ଏବଂ ସେ କବିତା ଓଡ଼ିଆରେ ଲେଖିଲି କାହିଁକି ? ଜୀବନରେ କବିତା ଜାଗିଲେ ଅକବି କବି ହେବାକୁ ଚେଷ୍ଟା କରିଥାଏ । ମୁଁ ସେହି ଚେଷ୍ଟା କରିଥିଲି—(ଯଦିଓ) ମୋର ଧାରଣା, ମୁଁ ଅକବି ନୁହେଁ ।

ଓଡ଼ିଆରେ ଲେଖିଥିଲି ଗୋଟାଏ ବ୍ୟକ୍ତିଗତ କାରଣରୁ, ଯେଉଁ ଭାଷାରେ କଥା କହିଲେ କୌଣସି ଜଣେ ବ୍ୟକ୍ତିକୁ ଭଲ ଲାଗିବ, ସେ ସ୍ପଷ୍ଟ ବୁଝିବ । ସେହି ଭାଷା ସେତେବେଳେ ମୋ ପକ୍ଷରେ ଥିଲା ଓଡ଼ିଆ ଭାଷା । ଓଡ଼ିଆ ଭାଷାର ଉନ୍ନତି ପ୍ରଭୃତି ମହତୀ ଇଚ୍ଛା ମୋର ପିଲାଦିନୁ ଅଛି; କିନ୍ତୁ ସେ ଉନ୍ନତି ମୋ ଦ୍ୱାରା ବେଶି କିଛି ହେବ, ଏପରି ଧାରଣା ମୋର ପୂର୍ବେ ନଥିଲା, ବର୍ତ୍ତମାନ ନାହିଁ । ସାହିତ୍ୟର ଯଥାର୍ଥ ଉନ୍ନତି mere wish ବା determination ଦ୍ୱାରା ହୁଏ ନାହିଁ; ଏଥିପାଇଁ ପ୍ରତିଭା ପ୍ରୟୋଜନ । ଅବଶ୍ୟ ବାହ୍ୟ ଉନ୍ନତି ଚେଷ୍ଟାକଲେ ସମସ୍ତେ କରିପାରନ୍ତି କିନ୍ତୁ ସାହିତ୍ୟ ରାଜ୍ୟର କୁଲି ବା Artisan ହେବାକୁ ମୁଁ ଚାହେଁ ନାହିଁ । ମୁଁ Personal କାରଣରୁ କବିତା ଲେଖୁଥିଲି–ଓଡ଼ିଆରେ ଲେଖୁଥିଲି, Personal କାରଣରୁ କବିତା ଛାଡ଼ିଲି—ଓଡ଼ିଆ ଛାଡ଼ିଲି ।

କବିତା ଛାଡ଼ିଲି କହି ଟିକିଏ ମିଛ କହି ପକାଇଲି । କବିତାର ଅନୁକୂଳ ଜୀବନ ଛାଡ଼ିଲି—ଏହିଟାହିଁ ସତ କଥା । ଏହି ଅକବି ଜୀବନରେ ଯଦି କେଉଁ ସମୟ ସୁଯୋଗ-ପ୍ରବୃତ୍ତି-ପ୍ରେରଣା ହୁଏ, ତେବେ ଗୋଟିଏ ଅଧେ କବିତା ଲେଖିବି; କିନ୍ତୁ ଓଡ଼ିଆରେ ନୁହେଁ, ପ୍ରଥମ କାରଣ ମୋ ଓଡ଼ିଆ effortless ଓଡ଼ିଆ ନୁହେଁ; ଅନ୍ତତଃ ତିନିଟା ଭାଷା ଅହରହ ଚର୍ଚ୍ଚାକରି କରି ସବୁଗୁଡ଼ାକରେ confusion ହୋଇଯାଉଛି, ତହିଁ ଉପରେ ହିନ୍ଦୀ ଅଛି । ଭବିଷ୍ୟତରେ ହିନ୍ଦୀ ଚର୍ଚ୍ଚା କରିବାକୁ ହିଁ ହେବ, Official କାରଣରୁ, ଦ୍ୱିତୀୟତଃ, ଓଡ଼ିଆରେ ପ୍ରାଣର କଥା Directly ବାହାରୁ ନାହିଁ । ଅନୁବାଦ କରିବାକୁ ହେଉଛି । ଏହାର କାରଣ ପିଲାଦିନୁ ଘରେ ଶିଖା— ବଙ୍ଗଳା କହି ଆସିଛି, ବାହାରେ ଖାଣ୍ଟି ବଙ୍ଗଳା କହିବାକୁ ବାଧ ହୋଇଛି ଏବଂ ସବୁବେଳେ ଭଲ ଭଲ ବଙ୍ଗଳା ବହି ଓ ପତ୍ରିକାର ସାନ୍ନିଧ ପାଇ ଆସିଛି ।

ତୃତୀୟତଃ ଯାହାପାଇଁ ଓଡ଼ିଆରେ ଲେଖୁଥିଲି, ସେ ମୋତେ ବଙ୍ଗଳା ଲେଖିବାକୁ ଅନୁମତି ଦେଇଛି । କାରଣ ସେ ଦେଖିଲା, ବଙ୍ଗଳା ମୋ ଦ୍ୱାରା ଯେତେ ଭଲହୁଏ, ଓଡ଼ିଆ ସେତେ ଭଲ ହେଉନାହିଁ, ବର୍ତ୍ତମାନ ସେ ମୋତେ ଓଡ଼ିଆ କିମ୍ବା ବଙ୍ଗଳାରେ ଲେଖେ ।

ମୁଁ ତାକୁ ବଙ୍ଗଳାରେ ହିଁ ଲେଖେଁ (ତା'ର ବିଶେଷ ଅନୁରୋଧ ଓ ଅନୁମତିରୁ), ତା'ର ଆଦେଶ—ଯଦି ଓଡ଼ିଆରେ ଲେଖିବାକୁ କଷ୍ଟ ହୁଏ, ତେବେ ଇଂରେଜୀରେ ଲେଖିବି । ତଥାପି ଯାହା ମୋଦ୍ୱାରା ଭଲ ହେବ ନାହିଁ, ସେଥିରେ ହାତଦେଇ ଶକ୍ତି ନଷ୍ଟ କରିବି କାହିଁକି ? ଅବଶ୍ୟ ଇଂରାଜୀ ଅପେକ୍ଷା ବଙ୍ଗଳାରେ ସହଜରେ ମନକଥା ପରିଷ୍କାର କରିହୁଏ; ସୁତରାଂ ଇଂରେଜୀକୁ ସସମ୍ମାନରେ ଦୂରେ ଦୂରେ ରଖିଛି ।

ଓଡ଼ିଆ ସହିତ ମୋର ଅନ୍ତରର ଯୋଗ ଅକ୍ଷୁଣ୍ଣ ଅଛି ଓ ଥିବା ମୋର କୈଶୋର ଓ ପ୍ରଥମ ଜୀବନର ବନ୍ଧୁମାନଙ୍କୁ ମୁଁ ଭୁଲିପାରିବି ନାହିଁ । ଯଦି କେବେ ଅବା ଭୁଲେଁ, ତଥାପି ଦୁଇ ଜଣ ବନ୍ଧୁ-ଅପେକ୍ଷାକୃତ ନିକଟତର ବ୍ୟକ୍ତିଙ୍କୁ ଭୁଲିବା ମୋ ପକ୍ଷରେ ଅସମ୍ଭବ ହେବ ଏବଂ ସେମାନଙ୍କ ମଧ୍ୟରୁ ଜଣକୁ ଭୁଲିବା Nothing short of a Miracle, ଏହି ଜଣକ ସହିତ ଆମରଣ ଓଡ଼ିଆ କହିବାକୁ ହେବ । ଚିଠିରେ ନୁହଁ, ମୁହଁରେ; ସୁତରାଂ ମୁଁ ଯେତେ ବଡ଼ ସାହେବ ହୁଏଁ, ଓଡ଼ିଆ ମୁଁ ଭୁଲିବି ନାହିଁ—rest assured—ତେବେ ଏହି ଜଣକ ଯଦି କେଉଁ ଓଡ଼ିଆ ଭୁଲିଯାଏ କିମ୍ବା ସ୍ୱେଚ୍ଛାରେ ଛାଡ଼େ, ତେବେ କେଜାଣି ଓଡ଼ିଆ ଚର୍ଚ୍ଚା ମୋତେ ମଧ ଛାଡ଼ିଦେବାକୁ ହେବ; କିନ୍ତୁ ଏହା ମଧ ଅସମ୍ଭବ ଲାଗୁଛି, × × କୃତିତ୍ୱ ପୂର୍ବରୁ ଚର୍ଚ୍ଚା ଦରକାର, ଅହରହ ଚର୍ଚ୍ଚା ନକଲେ, ଗୋଟାଏ ଭାଷାରେ ଶ୍ରେଷ୍ଠ ରଚନା-ନୈପୁଣ୍ୟ ଦେଖାଇ ପାରିବା ସହଜ ନୁହଁ × × × ଭାରି ଅଦ୍ଭୁତ—ନା ? ମୁଁ କଳ୍ପନା କରି ହସୁଛି, ତମେ ହସୁଥିବ ।

ଓଡ଼ିଆରେ ଏ ଚିଠି ଲେଖିବାକୁ ବଡ଼ କଷ୍ଟ ହେଉଛି, କହିବାକୁ ସେତେ କଷ୍ଟ ହୁଏ ନାହିଁ । ଇଂରେଜୀ ଓ ବଙ୍ଗଳା ମିଶେଇ କହେଁ, ତଥାପି ମନକଥା ଫିଟେଇ କହିପାରେ ନାହିଁ ।

ମତେ ସହାନୁଭୂତି ଦେଇ ବୁଝିବାକୁ ଚେଷ୍ଟା କରିବ, ବାହାର ଲୋକେ କେତେ କଥା ମନେକରିବେ, ଭୁଲ୍ ବୁଝିବେ—ସେମାନଙ୍କର ତାହା ସଭାବ; କିନ୍ତୁ ବନ୍ଧୁମାନେ ଯଦି ମୋ ଉପରେ ଅବିଚାର କରନ୍ତି, ତେବେ ମୁଁ କାହା ପାଖରେ ବିଚାର ଖୋଜିବି, କହ ?

× × ×

I.C.S. strain ଛାଡ଼ି ନାହିଁ, ବଙ୍ଗଳାରେ ମଧ କିଛି ଲେଖି ନାହିଁ, ଲେଖି ପାରୁ ନାହିଁ । ବୋଧହୁଏ ଆଉ କିଛି ଲେଖି ପାରିବି ନାହିଁ କୌଣସି ଭାଷାରେ— ନିତାନ୍ତ ବାଧହୋଇ ଇଂରେଜୀରେ ବାଜେ ଜିନିଷ report ଆଦି ଲେଖିବା ଛଡ଼ା ।

ମୋର ସ୍ନେହ ଜାଣିବ । ତମ ସହିତ ଗୋଟାଏ ଦୀର୍ଘକାଳର unconcious ବିଚ୍ଛେଦ ଘଟିଯାଇଛି, ସମୟ ପାଇଲେ ଖୁବ୍ ଦୀର୍ଘ ଚିଠି ଖଣ୍ଡେ ଲେଖି ମୋର ଗତ ଦୁଇ ବର୍ଷର ଇତିହାସ ଓ ଭାବୀ-ଜୀବନର Forecast ଜଣାଇବାର ଇଚ୍ଛା ଅଛି, ବଙ୍ଗଳାରେ ଲେଖିବି ?

ତମର
ଅନ୍ନଦା

ଅନ୍ନଦାଶଙ୍କରଙ୍କର ୪୬ ବର୍ଷ ପୂର୍ବର ଏହି ଚିଠିର କି ଉତ୍ତର ମୁଁ ଦେଇଥିଲି ତାହା ବର୍ତ୍ତମାନ ସ୍ମରଣକରିବା ଅସମ୍ଭବ; କିନ୍ତୁ ସେ ଯେ ମୋତେ କେବେହେଲେ ବଙ୍ଗଳାରେ ଚିଠି

ଲେଖିବେ ବୋଲି ଯାହା ପଚାରିଛନ୍ତି ସେଥିରେ ବୋଧହୁଏ କଦାପି ରାଜିହୋଇ ନ ଥିଲି । କାରଣ ହାତଲେଖା ବଙ୍ଗଳାପଢ଼ିବା ମୋହପକ୍ଷରେ କଷ୍ଟକର । ତହୁଁ ଆଜି ସୁଦ୍ଧା ସେ ମୋତେ ଓଡ଼ିଆରେ ହିଁ ଚିଠି ଦିଅନ୍ତି, ସେହିପରି ଓଡ଼ିଆରେ ମଧ୍ୟ ଆମ ଭିତରେ କଥାବାର୍ତ୍ତା ।

୧୯୭୨ ମାର୍ଚ୍ଚ ମାସରେ କଟକ ରେଭେନ୍‌ସା କଲେଜର ଅଧ୍ୟକ୍ଷ ମହାଶୟଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ସେ ଆସିଥିଲେ ପୂର୍ବ ଛାତ୍ରାବାସର ଜୟନ୍ତୀ ଉତ୍ସବରେ ଯୋଗଦେବାକୁ । ସେଠାରେ ଓଡ଼ିଆଭାଷାରେ ଭାଷଣ ମଧ୍ୟ ସେ ଦିଅନ୍ତି । ଅବଶ୍ୟ ସେଥିଲାଗି ତାଙ୍କୁ କଷ୍ଟ ସ୍ୱୀକାର କରିବାକୁ ପଡ଼ିଥିଲା । ଯଥାର୍ଥରେ ଓଡ଼ିଶାରେ ଶୈଶବ ଓ ଯୌବନର ବହୁ ବର୍ଷ ଅତିବାହିତ କରିଥିଲେ ମଧ୍ୟ ବହୁଳାଂଶରେ ବଙ୍ଗଳା ସାହିତ୍ୟ ଓ ଇଂରାଜୀ ସାହିତ୍ୟ ଚର୍ଚ୍ଚା ଫଳରେ ଓଡ଼ିଆରେ କହିବା ତାଙ୍କ ପକ୍ଷରେ କଷ୍ଟକର ହୁଏ ମଧ୍ୟ । ଏଥିଲାଗି କାହାରି କାହାରି ଅଭିମାନ ମୁଁ ଶୁଣେଁ ଅନ୍ନଦାଶଙ୍କରଙ୍କ ବିରୋଧରେ; କିନ୍ତୁ ଉତ୍କଳ ଗୌରବ ମଧୁସୂଦନ ଯେ ଓଡ଼ିଆଙ୍କ ସଙ୍ଗେ ମଧ୍ୟ ବଙ୍ଗଳାରେ କଥାଭାଷା ହୁଅନ୍ତି ଅନେକ ସମୟରେ—ଏହା ସେମାନଙ୍କ ପକ୍ଷରେ ସ୍ମରଣୀୟ ।

ମୁଁ ବୋଧହୁଏ ଏକାଦିନକେ ଅନ୍ନଦା ଓ ହରିହରଙ୍କୁ ପତ୍ରଲେଖେଁ ଓ ତାଙ୍କର ଉତ୍ତର ମଧ୍ୟ ପାଏଁ ଗୋଟିଏ ତାରିଖରେ ଲିଖିତ ଚିଠିଦ୍ୱାରା !

ହରିହରଙ୍କ ସୁଦୀର୍ଘ ଚିଠିର ଅବିକଳ ନକଲ ମଧ୍ୟ ଏଠାରେ ପ୍ରଣିଧାନଯୋଗ୍ୟ—

ମିଣ୍ଟୋ

ତା ୧୨/୦୨/୨୬

କାଳିନ୍ଦୀ, ଭାଇଟି ମୋର,

ତମ ଚିଠି ଭଲେ ପାଇଲି । ଆଜି ମନଟା ଡୁବ୍ ଡୁବ୍ ହେଉଥିଲା; ସକାଳୁ ସୁରେନ୍ଦ୍ର ବାନାର୍ଜୀଙ୍କ A Nation in the Making ପଢ଼ି ମନରେ ଖିଆଲ ଓ କଳ୍ପନାର ସୀମା ନାହିଁ । ବହିଟା ମୋତେ ଭାରି ଭଲଲାଗୁଛି । ଅଦ୍ଭୁତ ଶକ୍ତି ଲୋକଟାର ! କେତେ ଦୁଃଖ, ଶୋକ, ଲଜ୍ଜା ଅପମାନ ଭିତରେ ସେ ପୂର୍ଣ୍ଣ କରି ଜୀବନଟାକୁ ଚଳାଇନେଲେ । ମୋପରି Oversensitive ଲୋକର ବହୁତ ଶିଖିବାର ଅଛି ସେଥିରୁ । Circus ଏଠାକୁ ଆସିଛି । ସେଥିରେ Amusement ପାଇଁ ବହୁତ ଉପକରଣ ରହିଛି । ଲୋକେ ପଲ ପଲ ହୋଇ ଯାଉଛନ୍ତି । ତାହାର ଗୋଟିଏ Itemରେ ଜଣେ ସ୍ତ୍ରୀଲୋକ Amuse କରିବାକୁ ଯାଇ ତଳକୁ ଖସି ଆସିଲାବେଳେ ଶେମିଜ୍ ଲୁଗା ଟିକିଏ ବିସ୍ତ୍ରସ୍ତ ହୋଇଗଲା । ଏଥିରେ ସମସ୍ତେ ତାଳିମାରି ହୁ ହୁ କରି ଉଠିଲେ । କି ଅପମାନ ଦେଖୁଛ ? ଏଇ କଥାରେ ମୁଁ ବିରକ୍ତି ଓ ଆପତ୍ତି ପ୍ରକାଶ କରିବାରୁ ଅନ୍ନଦା ପ୍ରଭୃତି ମୋତେ କାଲି Oversensitive, too earnest ବୋଲି ଚିଡ଼ାଉଛନ୍ତି । ସୁରେନ୍ଦ୍ରଙ୍କ ଜୀବନରୁ ମୋର କେତେ ଶିଖିବାକୁ ଅଛି, ଏଥିରୁ ବୁଝିପାରିବ ।

ତମେ ଯେପରି ପାଗଳ, ବିଶ୍ୱନାଥବାବୁ ସେହିପରି ଉଦାର । ସାହିତ୍ୟପାଇଁ ମୁଁ କ'ଣ ଲାଗିପଡ଼ିଛି ମ ? ମୋ ଦିହାକେ ସେ ସବୁ ହେଲାପରି ଲାଗୁନି । ଏପରି ଅଳସୁଆଟାଏ ମୁଁ—

କିଛି କାମ ହେବନି ମୋ ଦେହାତି । ତେବେ ଏତିକି, ସାହିତ୍ୟରେ ସୁପ୍ତ ଆନନ୍ଦ ମୋର ଜାଗି ଉଠିଛି । 'ଯୁଗବୀଣା' ପାଇଁ ତମର କଡ଼ା ଆଦେଶ ପାଇଥିଲି । ଯେ ଯୁଆଡ଼େ ଅଲଗା ହୋଇକରି ମୋ ଉପରେ ଖୋଜି ବାହାର କରିବା ଭାର ଦେଇ ଦେଇଛ । ଭଗବାନୀଙ୍କ ଚିନ୍ତାଧାରାରୁ କେତୋଟି ଏଥରପାଇଁ ପଠାଇଥିଲି । 'ବେଳ ଓ ବଳ' ଅଭାବରୁ ଏଥର 'ଯୁଗବୀଣା' ପ୍ରଭୃତିରେ ଦେଇପାରି ନାହାନ୍ତି ବିଶ୍ୱନାଥବାବୁ ମାର୍ଗଶିର ସଂଖ୍ୟାର ଚିଠି ଖଣ୍ଡିକ ପଢ଼ି ଶରତ, ସରଳା ଓ ବୈକୁଣ୍ଠ ପ୍ରଭୃତି ମୋତେ ଉତ୍ସାହ ଦେଇ ପଠାଇଥିଲେ ପ୍ରଶଂସାକରି । ସେମାନେ କିପରି ଜାଣିଲେ କେଜାଣି ମୁଁ ଲେଖିଛି ବୋଲି । ମନ ହେଉଛି ଲେଖାଲେଖି କରିବାକୁ (ହେଳାବଶତଃ Partly ଓ ଅଳସୁଆବଶତଃ Partly ସମୟାଭାବବଶତଃ Partly) ଆଶାନୁରୂପ କିଛି କରିପାରୁ ନାହିଁ । ଭିତରେ ଏତେ ଇଚ୍ଛା ହେଉଛି ତ ଲେଖାଲେଖିରେ ଏତିକି ଆନନ୍ଦ ପାଉଛି ଯେ ସେଥିରୁ ନିଜକୁ ବଞ୍ଚିତ କରିବା ସଙ୍ଗେ ଦୁଃଖ ଓ ବେଦନା କମ୍ ପାଉ ନାହିଁ । ଦେଖ ଯାଉ କେବେ ଦୂର ହେଉଛି । ବଡ଼ ଗଣ୍ଡଗୋଳରେ ପଡ଼ିଛି ଭଲେ । ଆର୍ଥିକ ଓ ମାନସିକ । ଜୀବନର ରାସ୍ତା କିଛି ଠିକ୍ କରି ପାରୁ ନାହିଁ । Soul କୁ Satisfy କରିବାର ପନ୍ଥା ସ୍ଥିରକରି ପାରୁନି । କାଳିନ୍ଦୀ ! ହସିବ ନାହିଁ— ବଡ଼ ବ୍ୟାକୁଳ ବୋଧ କରୁଛି Phylosophy ପଢ଼ିବାକୁ । କଟକ ପରି ଏଠାରେ Public କାର୍ଯ୍ୟରେ ବିଶେଷ ଯୋଗ ଦେଉ ନାହିଁ । ଉପରୋଧରେ debating clubକୁ ସମୟ ସମୟରେ ଯାଏ ନି । ଚୁପ୍‌ଚାପ୍ ରହିଛି ଏଠାରେ, Council ଦେଖିବାକୁ ୨ ଦିନଯାଇ ଲଜାରେ ଫେରି ଆସିଛି । ଓଡ଼ିଶା Lobby gloriously silent and dumb—ଅନ୍ୟ Lobbyରେ ପିଲାମାନଙ୍କପରି ଫୁଟର ଫାଟର ହେଉଛନ୍ତି । ଏଥିରେ କି ସରକାରଙ୍କ ନିଦଭାଙ୍ଗେ ! ଶରତ ତ ଗଲା ଡେପୁଟି ହେବାପାଇଁ । ମୁଁ ସେହିପରି ଅବା ଗୋଟେ ଛୋଟ ବା ବଡ଼ ଚାକିରି ଧରିବି । ଅନ୍ନଦା ବି । ତମେ ତା ଆଗରୁ ପ୍ରବୃତ୍ତିକୁ ବରିନେଇଛ କବିତା ପାଇଁ । ବୈକୁଣ୍ଠଦ୍ୱାରା ସେସବୁ କାମ ହେବ ନାହିଁ । ଆମ ଦଳଟା ଦେଶର Public lifeରୁ ଚିର ବିଦାୟ ନେଲାପରା ! ଅନ୍ୟ ଦିଗରେ ତମେମାନେ ତମମାନଙ୍କର ଦେଇଯାଅ । ମୁଁ ନିଜକୁ ନ ଭୁଲିଗଲେ ରକ୍ଷା । ଭବିଷ୍ୟତ ପାଇଁ ବଡ଼ ଛଟପଟ ଲାଗୁଛି । ସାଧନା ନ ଥାଇ କାମରେ ପଶିଲେ ବିଶେଷ କିଛି ହୁଏ ନାହିଁ । ଓଡ଼ିଶାରେ ସେଇଟାର ଅଭାବ ଅଛି ।

ନେତା ସମସ୍ତେ କିନ୍ତୁ ସାଧନା ଅଛି କେତେଜଣଙ୍କର ? ଗୋଖଲେଙ୍କ ପରି ଜ୍ଞାନ, ସୁରେନ୍ଦ୍ରଙ୍କ ପରି ଗବେଷଣା, ମାଳବ୍ୟଙ୍କ ପରି ଧୀରଚିନ୍ତା, ତିଳକଙ୍କ ପରି ନିଷ୍ଠା କେତେଜଣଙ୍କର ଅଛି ? ମୁଁ ଆଉ flutter କରିବି ନାହିଁ ଯେତେଦିନ ଯାଏ ନିଜକୁ ନ ଗଢ଼ିବି । ବେଳେ ବେଳେ ଭାବୁଛି—ଘରେ ରହି Politics, Economics & Literature ଧରି ବସିବି—ଆଉ Lawଟା କେବଳ ରଖିବି; କିନ୍ତୁ ସତ କହିବାକୁ ଗଲେ, ମନରେ ଯେତେ ସାଧୁଚିନ୍ତା ଓ ଶୁଭ ଇଚ୍ଛା, ହୃଦୟରେ ସେତେ ସାହସ ଥିଲାପରି ମତେ ଲାଗୁନି । ତେଇଁ ପଡ଼ିବାକୁ ବଳ ପାଉନି ମମତା ମୁଁ କାଟିପାରିବି । ଅସମ୍ଭବ ପ୍ରାୟ ।

'ବାରୁଣୀ' ବାହାରିଛି । ଦେଖିଛୁଁ ମଧ, ଉଦ୍ୟମ ଅତି ପ୍ରଶଂସନୀୟ । ରଖିପାରିଲେ ହେଲା । କବିତା ଆଦୌ ନାହିଁ କହିଲେ ହୁଏ । ପ୍ରବନ୍ଧ କେତେଟା ଅଛି । ଜୀତାନନ୍ଦ, ପତି

ପ୍ରଭୃତିଙ୍କର ଗଳ୍ପ ୨ ।୩ଟା ବି ଅଛି । ଶେଷ ବିଭାଗଟା ଲୋକପ୍ରିୟ ହେଲେ ବେଶ୍ ଉପକାର ହେବ । ମୋଟ ଉପରେ ବେଶ୍ ହୋଇଛି । ତମେ ଲେଖିବ ସେଥିପାଇଁ ଅବସର ବେଳେ । ଯଥାସାଧ୍ୟ ସଦନୁଷ୍ଠାନ ପାଇଁ ସାହାଯ୍ୟ କରିବା ଆମର ଗୋଟାଏ Moral obligation । 'ସାହିତ୍ୟଟା'କୁ 'ବାରୁଣୀ' ଆଗରେ ହୀନ ପ୍ରଭାବ କଲେ ଚଳିବ ନାହିଁ । ସେଥିପାଇଁ ଅଣ୍ଟାଭିଡ଼ି ବାହାର ତମେ ସବୁ ।

କିପରି ଅଛ ? ଶ୍ରୀମତୀ କିପରି ଅଛନ୍ତି ? ବହୁତ ବହୁତ କହି ପକାଇବ । ହଇହୋ ! reality ଭିତରକୁ ନ ଆସିବ ବୋଲି ତମେ ତାଙ୍କ ପ୍ରତି ହେଳା ଦେଖାଇଲେ ମୁଁ କଦାପି କ୍ଷମା ଦେବି ନାହିଁ ତମକୁ । ଏ କେଉଁ ଗାଁ ପାଠ ? ସେ ଯେ dreamର ଗୋଟାଏ ଅତି ଉପାଦେୟ ଉପକରଣ । ତମର Artର creationରେ ତାଙ୍କର ସଂଯୋଗ ରହିବା ଅସମ୍ଭବ ନୁହେଁ ।

ସେଥିପାଇଁ ground prepare କରିବାକୁ ହେବ ତମକୁ । Dreamର ଛଳନା ଆଳସ୍ୟ—ସହଜ ସ୍ୱଭାବରେ ନିଶ୍ଚିନ୍ତ ରହିଲେ କିଏ ତମକୁ ଛାଡ଼ିବ ? ତମର ଆନନ୍ଦରେ ତାଙ୍କର ଅଂଶ ରହିଛି । Creationରେ ଆନନ୍ଦ ତମେ କେବଳ ଏକଚାଟିଆ କଲେ, Truth ତରଫରୁ ତମର ଗୌରବ ରହିପାରେ; ମାତ୍ର, Beauty ତରଫରୁ ସେଥିରେ କର୍ବଟା ଘଟିବ ନିଶ୍ଚୟ । ମୁହଁ ଖୋଲି ପାରୁଥିବାଯାଏ ମୁଁ ତମକୁ ଏ ହେଳାରୁ ନିବର୍ତ୍ତାଉଥିବି । ଏକା ତମକୁ ନୁହେଁ—ସମସ୍ତଙ୍କୁ ମୋ ପାରୁପର୍ଯ୍ୟନ୍ତ ।

ଗାନ୍ଧୀ ତାଙ୍କର 'Experiments with Truth' ବୋଲି ଲେଖା ଆରମ୍ଭ କରିଛନ୍ତି । ପଢ଼ିବାକୁ ପାଉଛ କି ? Young Indiaରେ ବାହାରୁଛି । Star of Utkalରେ ମଧ୍ୟ ବାହାରୁଛି, ଦେଖିବ ।

ରହୁଛି—କାଲି ଜାଗର ଗଲା । ସ୍ନେହର ଜାଗର ଦୀପଟି ହୃଦୟରେ ଜାଳି କେତେ କଥା କାଲି ବସି ଭାବୁଥିଲି । ତାହାର ସ୍ପନ୍ଦନ କିଛି ତମ ହୃଦୟରେ ନିଶ୍ଚୟ ବାଜିଥିବ ।

ସ୍ନେହର
ହରି (Harry)

ହରିହରଙ୍କର ଇଂରାଜୀ ଭାଷଣରେ ଦକ୍ଷତାଗୁଣରୁ ଆମେ ସବୁ ପରିହାସରେ ତାଙ୍କୁ 'ହ୍ୟାରି' ବୋଲି ମଝିରେ ମଝିରେ ଡାକୁଁ । ତାହାରି ସଂକେତ ସେ ନିଜ ଚିଠିରେ ଦେଇଛନ୍ତି । ସେଥିସହିତ ତାଙ୍କ ସ୍ନେହାତିଶଯ୍ୟ— ଯେଉଁ ଗୁଣଟା ସବୁଜ ବନ୍ଧୁମାନଙ୍କ ମଧ୍ୟରେ ସାଧାରଣ ଲକ୍ଷଣ ହୋଇ ରହିଆସିଛି ଆଜିଯାକେ ।

ପୁରୀ ଜିଲ୍ଲା ସ୍କୁଲରେ ପଢ଼ିବା ସମୟରୁ ହିଁ ସାହିତ୍ୟପାଇଁ ସବୁ ଛାଡ଼ିଦେଇ ନିଜକୁ ନିୟୋଜିତ କରିବି ବୋଲି ମନସ୍ଥ କରିଥାଏଁ । ସେଥିରେ ମୋ'ର ପେଟପୋଷା ହେବ କି ନାହିଁ ସେଥି ପ୍ରତି ତିଳେହେଲେ ଭ୍ରୂକ୍ଷେପ ନ ଥିଲା । କଲେଜକୁ ଆସି ବନ୍ଧୁମାନଙ୍କ ସହିତ ମିଳିତ ହେଲା ପରେ ଭବିଷ୍ୟତ ଜୀବନ କିଭଳି ଆମେ ଗଢ଼ିବୁଁ, ସେହି ବିଷୟରେ ହୁଏ ନାନା

ଆଲୋଚନା । ସେହି ସବୁ ଆଲୋଚନାର ବୃତ୍ତଭିତରେ କିନ୍ତୁ ଆଗୁଆ ମୋତେ ହିଁ କରିବାକୁ ପଡ଼େ ସର୍ବପ୍ରଥମେ ସରସ୍ୱତୀଙ୍କ ସହିତ ଲକ୍ଷ୍ମୀଙ୍କ ଆରାଧନା ସମବାୟ ବିଭାଗରେ ମ୍ୟାନେଜର ରୂପେ କାର୍ଯ୍ୟକରି ।

ବନ୍ଧୁମାନଙ୍କ ସହିତ ଏଇ ସବୁ ପତ୍ର ବିନିମୟ ସେତିକି ବେଳର ସଙ୍କେତ— ସବୁଜସ୍ୱପ୍ନଟା ମୋର ଭାଙ୍ଗିଯାଇ ଯେ ବାସ୍ତବ ଭିତରକୁ ଟାଣି ହୋଇ ଆସେ, ଆଜ୍ଞାହୋଇ ଅର୍ଥୋପାର୍ଜନର ଫମ୍ଫାକରିବା ଫଳରେ— ଏହି ଚିଠି ଦୁଇଖଣ୍ଡିର ଆବିଷ୍କାର ପୁଣି ୪୬ ବର୍ଷ ତଳର କେତେ ସ୍ମୃତି ତାହାରି ଭିତରେ ଜମା ହୋଇ ରହିଛି ।

'ବାରୁଣୀ' ମାସିକ ପତ୍ରିକା ପ୍ରକାଶପାଇବା ସମ୍ପର୍କରେ ହରିହର ଯାହା ଉଲ୍ଲେଖ କରିଛନ୍ତି, ସେତେବେଳେ ଉକ୍ତ ପତ୍ରିକା ଯଥାର୍ଥରେ ଏକ ସ୍ପନ୍ଦନ ସୃଷ୍ଟିକରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ । ସ୍ୱର୍ଗତ ନିକୁଞ୍ଜ କିଶୋର ଦାସଙ୍କ ସମ୍ପାଦନା, ପୁଣି ଶିଳ୍ପୀ ଓ ସାହିତ୍ୟିକ ଉପେନ୍ଦ୍ର କିଶୋର ଦାସଙ୍କ ଚିତ୍ର ଓ ରଚନା ଭିତରେ 'ବାରୁଣୀ' ଆବାହନ କରେ ଏକ ନୂତନ ଯୁଗ । ହରିହରଙ୍କ ସୁପାରିସ୍ ଓ ସମ୍ପାଦକଙ୍କ ଅନୁରୋଧରେ 'ବାରୁଣୀ'ରେ ପ୍ରକାଶଲାଗି ମୁଁ କେଉଁ ଲେଖା ପଠାଉଥିଲି, ଆଜି ତାହା ସ୍ମରଣରେ ନାହିଁ । ମାତ୍ର 'ଉତ୍କଳ ସାହିତ୍ୟ' ପ୍ରତି ଆମର ଯେଉଁ ଆକର୍ଷଣ ଓ ସମ୍ପର୍କ ରହିଆସିଥିଲା, କେବେହେଲେ ତାହା ବିଚ୍ଛିନ୍ନ କିମ୍ବା ମଳିନ ପଡ଼ିଥିବାର ମନେହୁଏ ନାହିଁ ।

ଦୁଇଖଣ୍ଡି ଚିଠି ଭିତରେ ଇଂରାଜୀ ଶବ୍ଦର ପ୍ରୟୋଗ ଯେପରି ସଙ୍ଗତ ହେଲେ ବି ଓଡ଼ିଆ ସାହିତ୍ୟରେ ସେତେବେଳେ ତାହା ଆମ ବନ୍ଧୁମାନଙ୍କ ଭିତରେ କଦାପି ଅଶୋଭନୀୟ ବିବେଚିତ ହେଉ ନଥିଲା । ଏହି ଚିଠିଗୁଡ଼ିକର ଉତ୍ତର ମୁଁ କିଭଳି ଭାଷାରେ ଦେଇଥିଲି, ତାହାର ପ୍ରମାଣ ମଧ୍ୟ ମୋହ ପାଖରେ ଆଜି ନାହିଁ । ତଥାପି ସେତେବେଳେ ଓ ତାହର ଅଳ୍ପ କେତେକ ବର୍ଷ ପୂର୍ବରୁ ହିନ୍ଦୀଶିକ୍ଷା କରିବାକୁ ସ୍କୁଲ କଲେଜମାନଙ୍କରେ ଉତ୍ସାହ ଦିଆଯାଉଥିଲେ ହେଁ ଇଂରେଜୀର ସାର୍ବଭୌମତ୍ୱ ପ୍ରତିଷ୍ଠିତ ଥିଲା । ବୈକୁଣ୍ଠନାଥ, ଶରତଚନ୍ଦ୍ର ଓ ଶ୍ରୀମତୀ ସରଳା ଦେଈଙ୍କ ସହିତ ସେତେବେଳେ ଏକାଧିକ ପତ୍ର ବିନିମୟ ହୁଏ; ଆଜି କିନ୍ତୁ ଦୈବାତ୍ ଏଇ ଚିଠି ଦୁଇଖଣ୍ଡି ବିସ୍ମୟ ସୃଷ୍ଟିକରେ ସେତେବେଳର ଅମୂଲ୍ୟ ସ୍ମୃତି ବହନ କରି ।



# ପ୍ରତ୍ୟେକ ଦାୟୀ ସବୁରି ପାଇଁ—
# ସମସ୍ତେ ଦାୟୀ ପ୍ରତ୍ୟେକ ପାଇଁ

ବି.ଏ ପାସ୍‌ର ଦୁଇବର୍ଷ ପୂର୍ବରୁ ମୋର ସସ୍ତ୍ରୀକ ସଂସାର ଆରମ୍ଭ ହୋଇଥାଏ କିନ୍ତୁ ଗାର୍ହସ୍ଥ୍ୟ ଦାୟିତ୍ୱ ଯାହାକୁ କହନ୍ତି, ସେଥିଲାଗି ଥାଏ ଢେର ବିଳମ୍ବ । ବାପା ବାରମ୍ବାର ଚେତାବନୀ ଦିଅନ୍ତି । ମୋତେ ଜବରଦସ୍ତି ଆଶୁ ଅନ୍ନସଂସ୍ଥାନ ଲାଗି ଯେହେତୁ ସେ ଦିନରେ ମୁଁ ନିସ୍ପୃହ ହୋଇ ପଡ଼େ । ପୁଣି ସହଯୋଗ ସମିତିକୁ କେନ୍ଦ୍ରକରି ଅସହଯୋଗ ଆନ୍ଦୋଳନ ଏକ ସାଙ୍ଗଠନିକ କାର୍ଯ୍ୟ । ଦେଶର ଦରିଦ୍ର ଚାଷୀମାନଙ୍କୁ ଋଣ ଯୋଗାଇ କୃଷିର ଉନ୍ନତି କରିବା ହେଲା କୃଷି ସମବାୟ ସମିତିର ଲକ୍ଷ୍ୟ । ସମାଜରେ ପ୍ରତ୍ୟେକ ବ୍ୟକ୍ତି ସମସ୍ତଙ୍କ ପାଇଁ, ପୁଣି ସମସ୍ତେ ପ୍ରତ୍ୟେକଙ୍କ ପାଇଁ ଦାୟୀ ରହିବା ଏହାର ମୂଳନୀତି । ସାମାଜିକ ପ୍ରତିଷ୍ଠା ଏହାର ଆଦେଶ । ତେଣୁ ଗୋଟିଏ ଢେଲାରେ ଦୁଇଟି ଚଢ଼େଇ ମାରିବା ଭଳି ମୋର ଜାତୀୟତାବାଦ ପକ୍ଷରେ ଜବାବ୍ ଦେବାକୁ ବାଟ ମିଳିବ, ଆହୁରି ମଧ୍ୟ ମ୍ୟାନେଜର ପଦବୀଟାରେ ଆପଣାକୁ ମୁଁ ସମ୍ମାନିତ ଜ୍ଞାନକରେ ।

ସାବୁରରୁ ଦୁଇମାସ ଶିକ୍ଷା କେନ୍ଦ୍ରରେ ଟ୍ରେନିଂ ଶେଷକରି ନିଯୁକ୍ତି ପାଇଲି କୁଜଙ୍ଗ ସେଣ୍ଟର କୋ-ଅପରେଟିଭ୍ ୟୁନିୟନରେ । କଟକରୁ ଲଞ୍ଚ୍‌ରେ ବସି କେନାଲ ଭିତରେ ଯାତ୍ରା କଳ୍ପନାକୁ ମୋର ଯଥେଷ୍ଟ ଖୋରାକ ଯୋଗାଏ । ଯୋଗାଏ ପୁଣି ନୂତନତାର ଅପୂର୍ବ ସ୍ପନ୍ଦନ । ଏହାହିଁ ମୋର ପ୍ରଥମ ଜଳଯାତ୍ରା କେନାଲ ପଥରେ । ବନରାଜି ଲୀଳାୟିତ ଦୁଇ ପାଖର ଦୃଶ୍ୟରେ ମୁଁ ମୁଗ୍ଧ ହୁଏଁ । ମୋହ ଯାତ୍ରାର ସଙ୍ଗୀ ହୋଇଥାନ୍ତି ଶ୍ରେଣୀର ସହପାଠୀ ସ୍ୱର୍ଗତ ପୂର୍ଣ୍ଣାନନ୍ଦ ମହାନ୍ତି । କେନାଲର ପ୍ରତି ଲକ୍‌ରେ ବୋଟ୍ ଅଟକି ପାରିହୁଏ । କଟକରୁ ଏହିରୂପ ବିରିବାଟି, ସଁପୁର, ତାରପୁର, ତିର୍ତ୍ତୋଲ, ରାହାମା ଆଦି ଗୋଟିଏ ଲେଖାଏଁ ଛକରେ ଅଟକି ଯାଏ । ଲଞ୍ଚଟାଲେ ଲୀଳାୟିତ ଗତିରେ କେନାଲ ଜଳସ୍ରୋତରେ ମୃଦୁ-ହିଲ୍ଲୋଳ ଓ କଳଗୁଞ୍ଜନ ସୃଷ୍ଟିକରି ।

ଅନନ୍ତପୁରଠାରେ ପହଞ୍ଚି ମଧ୍ୟ ଅସୁବିଧା କିଛି ନାହିଁ । କୁଜଙ୍ଗ ସେତେବେଳେ ବର୍ଦ୍ଧମାନ ମହାରାଜାଙ୍କର ଜମିଦାରୀ । କେନ୍ଦ୍ର ସମବାୟ ବ୍ୟାଙ୍କ୍‌ର ମ୍ୟାନେଜରଙ୍କ ପାଇଁ ସ୍ୱତନ୍ତ୍ର କ୍ୱାଟର ମଧ୍ୟ ନିର୍ମିତ ହୋଇଛି । ମ୍ୟାନେଜରଙ୍କ ପାଖରେ ଜଣେ ପିଅନ ନିଯୁକ୍ତ । ସବୁ ଜିନିଷ ଶସ୍ତା, କିନ୍ତୁ କୁଜଙ୍ଗର ଗାଁ ଗାଁ ବୁଲିବା କଷ୍ଟକର ରାସ୍ତା ଅଭାବରୁ । ପର ଦିନ ରାଜେନ୍ଦ୍ରବାବୁଙ୍କ ସହିତ ସାକ୍ଷାତ୍ କରେ । ବ୍ୟବହାରରେ ଅତି ଭଦ୍ର । ବ୍ୟାଙ୍କ୍ କର୍ମଚାରୀମାନଙ୍କ ସହିତ ମଧ୍ୟ ସହଜରେ ପରିଚୟ ଓ ବନ୍ଧୁତା ପ୍ରତିଷ୍ଠିତ ହୁଏ । ଅନନ୍ତପୁରରେ ଭେଟ ହୁଏ କୃଷି ବିଭାଗର ଶ୍ରୀ ସୀତାନାଥ ମହାନ୍ତିଙ୍କ ସହିତ । ପୁଣି ସେତେବେଳେ 'ଉତ୍କଳ ସାହିତ୍ୟ ପତ୍ରିକା'ରେ

ଧାରାବାହିକ ଭାବରେ 'ମୋହର ଜ୍ୟୋତିଷ ଚର୍ଚ୍ଚା' ନାମକ ପ୍ରବନ୍ଧ ଲେଖକ ଶ୍ୟାମାଚରଣ ବନ୍ଦୋପାଧ୍ୟାୟଙ୍କ ସହିତ । ଶ୍ୟାମାଚରଣବାବୁ ଥିଲେ ସ୍କୁଲ ସବ୍‌ଇନିସ୍‌ପେକ୍ଟର । କୁଜଙ୍ଗ ଅଞ୍ଚଳର ପ୍ରତ୍ୟେକ ଗ୍ରାମ, ପ୍ରତ୍ୟେକ ନଦୀ, ବିଲ, ପ୍ରାନ୍ତର ପୁଣି ସମୁଦ୍ରତୀର ଥିଲା ମୋର ଅତି ପରିଚିତ ଆତ୍ମୀୟ ଭଳି ।

କୁଜଙ୍ଗ ବ୍ୟାଙ୍କରୁ ଆଡ୍‌ଭାନସ୍ ନେଇ ସେଇଠାରେ କିଣିଲି ଗୋଟିଏ ସାଇକେଲ; କିନ୍ତୁ କେବଳ ଗ୍ରୀଷ୍ମ ଓ ଶୀତ ଛଡ଼ା ଅନ୍ୟ ଋତୁରେ ସାଇକେଲ୍‌ଟି ବ୍ୟବହାରଯୋଗ୍ୟ ହୋଇପାରେ ନାହିଁ । ରାସ୍ତାଘାଟ ପ୍ରାୟ ନ ଥାଏ । ବର୍ଷାକାଳରେ ଗସ୍ତକରିବା ଅସମ୍ଭବ ।

ଗ୍ରୀଷ୍ମକାଳରେ ସବୁ ନଈରେ ଜୁଆର ଆସେ, କାରଣ ନିକଟରେ ସମୁଦ୍ର; ସେତେବେଳେ ବିନା ଡଙ୍ଗାରେ ନଦୀ ପାରହେବା ଅସମ୍ଭବ । ଜୁଆର ଅବଶ୍ୟ ରାତିରେ ହୁଏ । ଦିନେ ସନ୍ଧ୍ୟାରେ ଚିତ୍ରୋତ୍ପଳା ନଦୀ ପାର ହେବାକୁ ଯାଉଛି—ସ୍ୱଚ୍ଛ କ୍ଷୀଣସ୍ରୋତ ନିକଟରେ ଦେଖେଁ ଦୁଇଟି ପକ୍ଷୀ ବସି ରହିଛନ୍ତି ନୀରବରେ । ପଚାରି ବୁଝେଁ ସେ ଦୁଇଟିର ନାମ ଚକ୍ରବାକ୍ । ମୋତେ ଦେଖି ଦୁଇପକ୍ଷୀ ମଧ୍ୟରେ କୌଣସି ଚାଞ୍ଚଲ୍ୟ ସୃଷ୍ଟି ହୁଏ ନାହିଁ । ବସାକୁ ଫେରି ଲେଖିଥିଲି 'ଚକ୍ରବାକ୍' କବିତା—

ସବୁ ଜୀବଗ୍ରାମ
ପଥ ଛାଡ଼ି ଗୃହେ ଏବେ ଲୋଡ଼ଇ ବିଶ୍ରାମ
କ୍ଷୀଣ ସ୍ରୋତେ ଶୁଭ୍ର ବାଲିପରେ
ସୁକୋମଳ ସାନ୍ଧ୍ୟ ଛାୟା ମୃଦୁ ମୃଦୁଝରେ;
ବସି ତହିଁ
ଉଦାସବେଦନା ବହି
ଚକ୍ରବାକ ନିର୍ବାକ ଦମ୍ପତି
ଭାଳେ ହରାଇବ ଅବା କି ସ୍ୱର୍ଗ-ସମ୍ପତ୍ତି !

ଅନନ୍ତପୁରରେ ଥିବା ସମୟରେ ହିଁ ଲେଖିଥିଲି, 'ମାଂସର ବିଳାପ' ଗଳ୍ପ 'ମଧୁବିବାହ' ଓ 'ଚକ୍ରବାକ' କବିତା । ଶ୍ୟାମାଚରଣବାବୁଙ୍କ ଘରେ ସନ୍ଧ୍ୟା ବୈଠକ ବସେ । ମୋର 'ମଧୁବିବାହ' କବିତାକୁ ବାରମ୍ବାର ପାଠ କରି ସେ ବନ୍ଧୁମାନଙ୍କୁ ଶୁଣାନ୍ତି ମୁଗ୍‌ଧହୋଇ । ମ୍ୟାନେଜର ରାଜେନ୍ଦ୍ର ବାବୁଙ୍କଠାରୁ ଶୁଣେ,

'ଶ୍ୱେତଦୀପ ବୀଣାର' କବି ସ୍ୱର୍ଗତ ଅଜୟଚନ୍ଦ୍ର ଦାସ ମୋର 'ଚକ୍ରବାକ' ଶୀର୍ଷକ କବିତା ପଢ଼ି ପ୍ରଶଂସା କରନ୍ତି ରାଜେନ୍ଦ୍ରବାବୁଙ୍କ ସମକ୍ଷରେ ।

ସମବାୟ ଋଣ-ସମିତି, ସମବାୟ ନୀତି ଓ ଆଦର୍ଶ ସମ୍ପର୍କରେ କେତେକ ଲେଖା ମଧ ମୋର ପ୍ରକାଶିତ ହୁଏ ସେହି ସମୟରେ । ସେସବୁ ଲେଖା ଯାହାଙ୍କପାଇଁ ଲିଖିତ ହୁଏ କିମ୍ବା ଯାହାଙ୍କ ବିଷୟ ତହିଁରେ ବର୍ଣ୍ଣିତ ହୁଏ, ତାଙ୍କ ଭିତରେ ସାକ୍ଷରତା ଅବଶ୍ୟ ଅତି କମ୍ । ପୁଣି ସମବାୟର ନୀତି ଅନୁଯାୟୀ ସେଇମାନେ ହିଁ ଋଣଗ୍ରହୀତା ହେବା ସଙ୍ଗେ ସଙ୍ଗେ ବ୍ୟାଙ୍କ୍ ଓ

ସମିତିର ଅଂଶୀଦାର ବା ମାଲିକ ହେବା ବ୍ୟବସ୍ଥା ନିୟମ ଅନୁସାରେ ରହିଥାଏ । ଅଥଚ, ସେଭଳି ମନୋଭାବ ତାଙ୍କ ଭିତରେ ଜାଗ୍ରତ ହେବା ତ ଦୂରର କଥା, ଗାଁ-ମହାଜନମାନଙ୍କର ଅସମ୍ଭବ ଚଢ଼ାଦର ସୁଧରୁ ମୁକ୍ତିପାଇଁ ସେମାନେ ବ୍ୟାଙ୍କବାବୁମାନଙ୍କ ଜରିଆରେ ଋଣ ପାଉଥିବାରୁ ତାହାକୁ ପରମ ଦୟା ଓ ଅନୁଗ୍ରହ ବୋଲି ବିଚାରନ୍ତି । ତାହା ଛଡ଼ା ଋଣ ପରିଶୋଧପାଇଁ ମଧ୍ୟ ଅଧିକାଂଶ ତାଙ୍କ ମଧ୍ୟରୁ ଅକ୍ଷମ ଅଥବା 'ସରକାରକା ମାଲ ଦରିଆମେ ଡାଲ୍' ନୀତିରେ ପରିଶୋଧର ନାଁ ତୁଣ୍ଡରେ ଧରନ୍ତି ନାହିଁ । ଫଳରେ ଋଣଦାତା ମହାଜନ ଭଳି ଅଧିକ କଡ଼ା ବ୍ୟବହାର ବା ଅତ୍ୟାଚାର ବ୍ୟାଙ୍କ୍ ବାବୁମାନଙ୍କୁ କରିବାକୁ ପଡ଼େ ଋଣଗ୍ରହୀତାଙ୍କ ଉପରେ । ମୋର ବିବେକ କିନ୍ତୁ ତାହା ବିରୋଧରେ ବିଦ୍ରୋହ କରି ଉଠେ । ସମୟେ ସମୟେ ତାହାର ପାଶବିକ ରୂପ ଏତେ ବିକଟ ଓ ଅସହ୍ୟ ହୁଏ ଯେ, ବ୍ୟାଙ୍କ୍ ଚାକିରି ଛାଡ଼ିଦେବାକୁ ବି ମୁଁ ମନସ୍ଥ କରେଁ ।

ଥରେ ଏମିତି ଋଣ-ସମିତି ପରିଦର୍ଶନ ଲାଗି ମୁଁ ସାକ୍ଷୀ ଗୋପାଳ ଅଞ୍ଚଳକୁ ଯାଇ ସତ୍ୟବାଦୀ ସ୍କୁଲ ବୋର୍ଡ଼ିଂରେ ରହେ । ଆଲୋଚନା କରେ ମୋର ସୁପରିଚିତ କେତେ ଜଣ ଶିକ୍ଷକ ବନ୍ଧୁଙ୍କ ସଙ୍ଗେ ଏଇ କଥା ସେମାନେ କିନ୍ତୁ ମୋ ସହିତ ଏକମତ ନ ହୋଇ ପରାମର୍ଶ ଦିଅନ୍ତି ଯେ ସମବାୟ ଆନ୍ଦୋଳନର ଯଦି ଉଦ୍ଦେଶ୍ୟ ହୁଏ ଲୋକମତ ଓ ଲୋକଚରିତ୍ରକୁ ସୁଧାରିବା, ତା'ହେଲେ ସେଥିଲାଗି କୌଣସି ପ୍ରକାର ଦଣ୍ଡ ନିନ୍ଦନୀୟ ନୁହେଁ । ଏହା ଅବଶ୍ୟ ଶିକ୍ଷକର ଦୃଷ୍ଟି ଭଙ୍ଗୀ ହେଲେହେଁ ମୁଁ ଏକମତ ହୋଇପାରେ ନାହିଁ ।

ସମବାୟ ଆଦର୍ଶର ଏହି ବିଫଳତା ସେତେବେଳେ ମୋତେ ଆଘାତ କରେ । ଭାଷା ଓ କଳ୍ପନା ଦେଇ ଯେତେ ଯାହାକୁ ମାଜିଲେ ମଧ୍ୟ ଦେଶର ସାଧାରଣ କୃଷକସମାଜ ଯେଉଁ ଅନ୍ଧାକାରରେ, ଅଭାବ ଅଶିକ୍ଷା ଏବଂ ଅଜ୍ଞତା ମଧ୍ୟରେ ଉବୁଟୁବୁ ହେଉଥାନ୍ତି, ସମୁଦ୍ରକୁ ଶଙ୍ଖେ ପଣା ଭଳି ସମବାୟ ସମିତିର ଅର୍ଥ ତାହା ଭିତରେ କାହିଁ ମିଳାଇ ଅଦୃଶ୍ୟ ହୋଇଯାଏ ଋଣ ଓ ସୁଧଟଙ୍କା ସମେତ ।

ସମବାୟ ସମିତିର ଋଣପରିଶୋଧ କରିବାର ସାମର୍ଥ୍ୟ—'ବୁଡ଼ିଗଲା ଲୋକର ଗୋଡ଼ ତଳକୁ' ଭଳି ତାଙ୍କର ଉଦ୍ଧାର ଉପାୟ ନଥାଏ । ଏହି ବିଭାଗରେ କାମ କରି ମୁଁ ପରୋକ୍ଷରେ ଦେଶସେବାରେ ବ୍ରତୀ ହୋଇଛି ବୋଲି ମନେ ମନେ ଯେଉଁ ଆତ୍ମସନ୍ତୋଷ ଲାଭ କରିଥିଲି, ଚାହୁଁ ଚାହୁଁ ତାହା ଦୂର ହୋଇଯାଏ । ବ୍ୟାଙ୍କ ଚାକିରି ଟିକିଏ ଉନ୍ନତଧରଣର ଗୁମାସ୍ତାଗିରି ଛଡ଼ା ଯେ ଆଉ କିଛି ନୁହେଁ, ଏହା ବୁଝି ମୁଁ ବ୍ୟଥିତ ହୁଏଁ । ଆଉ କେଉଁ ଚାକିରି ଯେ ତହୁଁ ବଳି ଅଧିକ ଫଳ ଦିଏ, ତାହା ଖୋଜିପାଇବା ମଧ୍ୟ କଷ୍ଟକର ।



# ସହଯୋଗ ସହ ଅସହଯୋଗ

ସେତେବେଳେ ଅସହଯୋଗ ଆନ୍ଦୋଳନରେ ଯୋଗଦେଇଥିବା କେତେକ ବନ୍ଧୁ ମଧ୍ୟ ସହଯୋଗ ଆନ୍ଦୋଳନ ଭିତରେ ପଶିଥାନ୍ତି । ଦେଶ ସେବା କରିବା ସଙ୍ଗେ ସଙ୍ଗେ ଅର୍ଥ ଉପାର୍ଜନ, ପୁଣି ପରିବାର ପୋଷଣ କରିବାର ଆତ୍ମସନ୍ତୋଷ ଉଭେଇଯାଏ ଚାହୁଁ ଚାହୁଁ । କୁଜଙ୍ଗ ହେଲା କଟକ ଜିଲ୍ଲାର ସମୁଦ୍ରକୂଳବର୍ତ୍ତୀ ପାରାଦ୍ୱୀପ ଅଞ୍ଚଳ ।

ନଦୀବହୁଳ ଗାଁଗୁଡ଼ିକ ବୁଲି ଦେଖିବାର ଅଭିଜ୍ଞତା ସଙ୍ଗେ ଓଡ଼ିଶାର ଗୋଟିଏ ଜମିଦାରି ଇଲାକାର ଅଭିଜ୍ଞତା ମୋର ଜନ୍ମିଯାଏ । କେତେ ଗାଁର ଗୋରୁଗୁହାଳ ଭିତରେ ମଣିଷ ଶୋଇବାପାଇଁ କରାଯାଇଥିବା ପିଣ୍ଡି ଉପରେ ରାତି କଟାଇଛି । କେତେ ଗାଁର ନଈକୂଳକୁ ଯିବା ମାତ୍ରେ ଲୋକଙ୍କଠାରୁ ତାଗଦା ଶୁଣିଛି—କୁମ୍ଭୀରଭୟ !

ସମବାୟସମିତି ହିସାବ ବସ୍ତାନି ଫିଟାଇ ଋଣ ଆଦାୟର ତାଲିକା ଯାଞ୍ଚ କରିଛି । ସମିତିର ଯେଉଁ ସଭ୍ୟମାନେ (ଆଉ ବୋଧହୁଏ ଅଧିକାଂଶ ସଭ୍ୟ ଏକ ତାଲିକାଭୁକ୍ତ ହେବେ) କିସ୍ତିଟଙ୍କା ଦେଇ ନପାରି ଖିଲାପ କରିଥାନ୍ତି ସେମାନଙ୍କୁ ଧମକ-ଚମକ ଦେଇ କିସ୍ତି ପରିଶୋଧଲାଗି ତାଗଦା କରିଛି, ତାଙ୍କରି ଭିତରେ ଦେଖିଛି କେତେ ନୀରସ ନିର୍ବେଦ ମୁହଁ,କେତେ ନିରୁପାୟ ହତାଶାର ନିରୀହ କରୁଣା ଆଖି, କେତେ କଙ୍କାଳର ପିଞ୍ଜରାକାଠି ଗଣିହେଲା ଭଳି ଚେହେରା—ଆଉ କେତେ ଜାଣି ଶୁଣି ଟଙ୍କା ଫାଁକି ଦେବାର କୌଶଳ ମୋର ଭାବପ୍ରବଣତାକୁ କଠୋର ବାସ୍ତବତାଦ୍ୱାରା ଆଘାତ କରି ସେତେବେଳେ ନ୍ୟାୟାନ୍ୟାୟ, କର୍ତ୍ତବ୍ୟାକର୍ତ୍ତବ୍ୟ ବିଚାର ମୋତେ ସବୁ ଉତ୍ସର୍ଗ କରିଦେବାପାଇଁ ବାରମ୍ବାର ଦ୍ୱନ୍ଦ୍ୱ ଭିତରେ ଫିଙ୍ଗିଦେଇଛି ।

କୋଣାର୍କ ତିଆରି ବିଷୟରେ ବୋଉଙ୍କଠାରୁ ଗୋଟିଏ କାହାଣୀ ଶୁଣିଥିଲି—ଶିବେଇ ସାନ୍ତରା ଦୂରଦୂରାନ୍ତରୁ ପଥର ବୋହିଆଣି ସମୁଦ୍ରରେ ପକେଇଦିଏ ଦେଉଳ ତୋଳିବାପାଇଁ, କିନ୍ତୁ ସବୁ ପଥର କୁଆଡ଼େ କାହିଁ ସମୁଦ୍ର-କୁଆରରେ ଉଭେଇଯାଏ । ଶିବେଇ ସାନ୍ତରା ଉପରେ ପଡ଼େ ରାଜାଙ୍କର କୋପଦୃଷ୍ଟି । କାମରୁ ହୁଏ ସେ ଅନ୍ତର; ଭିକମାଗେ ଗାଁ ଗାଁ ବୁଲି । ଏମିତି ଗୋଟିଏ ଗାଁରେ ଯାଇ ସେ ପହଞ୍ଚେ ଜଣେ ବୁଢ଼ୀ ଦୁଆରେ । ବୁଢ଼ୀ ତାହାକୁ ଖାଇବାକୁ ଦିଏ ଜାଉ ଟିକିଏ ରାନ୍ଧି । ଭୋକ ବିକଳରେ ଶିବେଇ ସାନ୍ତରା ହାତପୂରାଇ ଖାଇବାକୁ ଯାଏ ଜାଉ ମଝିରୁ ।

ବୁଢ଼ୀ ପାଟି କରି ଉଠେ, ''କିରେ ପୁଅ, ତୁ କ'ଣ ଶିବେଇ ସାନ୍ତରା ଭଳି, ଜାଉ ଖାଉଛୁ ?''

ଅବାକ୍ ହୋଇ ଛଦ୍ମବେଶି ଶିବେଇ ସାନ୍ତରା ବୁଢ଼ୀ ମୁହଁକୁ ଅନାଏ—

''କ'ଣ କହିଲୁ ?''

ବୁଢ଼ୀ ତାହାର ପାକୁଆପାଟିରେ ଟିକିଏ ହସିଦେଇ କହେ, ''କିରେ ପୁଅ କ'ଣ ବୁଝିପାରିଲୁ ନି ?

ଛଦ୍ମବେଶି ଶିବେଇ ସାନ୍ତରା ଆଶ୍ଚର୍ଯ୍ୟରେ କହେ, ''ନାଇଁଲୋ ମାଉସୀ ।''

ବୁଢ଼ୀ ବୁଝାଇଦିଏ—''ଆରେ ପୁଅ ! ଶିବେଇ ସାନ୍ତରାକୁ ରଜା ପଠାଇଲେ ଚନ୍ଦ୍ରଭାଗା ଦେଉଳ ତୋଳିବାପାଇଁ, ଶିବେଇ ରଜା-ହୁକୁମରେ ଗାଡ଼ି ଗାଡ଼ି ପଥର ବୋହି ଆଣି ସମୁଦ୍ର ଭିତରେ ଗୋଟାକୁ ଗୋଟା ଆଗ ପଥର ପକେଇଲା । ତହୁଁ ସବୁ ପଥର ପାଣି ଭିତରେ ବୁଡ଼ିଗଲା—''

ଛଦ୍ମବେଶି ଶିବେଇ ସାନ୍ତରା ହାତଟା ରହିଗଲା କ୍ଷୀରୀ ଉପରେ; ଆବାକାବା ହୋଇ ବୁଢ଼ୀକୁ ଚାହିଁଲା—''ହଁ ତହିଁରୁ କ'ଣ ହେଲା ଲୋ ମାଉସି !''

''ହବ ଆଉ କ'ଣରେ ପୁଅ ! ସବୁଯାକ ପଥର ସମୁଦ୍ରଭିତରେ ବୁଡ଼ିଗଲା ।''

ବୁଢ଼ୀ ତା'ର ପାକୁଆପାଟିରେ ଟିକିଏ ହସିଦେଇ ପୁଣି କହେ—

''ତୁ କ'ଣ ସମଝି ପାରିଲୁ ନି କିରେ ମରମ କଥା ? ଆଗ ସିନା ଦେଉଳବେଢ଼ା ବୁଲାଇ ସମୁଦ୍ର ପାଣିକୁ ରୋକି ଦେଉଳ ତୋଳନ୍ତା ତୁ ସେମିତି ଜାଉ ମଝିରେ ହାତ ପୂରାଇ ଖାଉଛୁ, ତା'ହେଲେ ସବୁତକ ଜାଉ ପାଣିଫାଟି ଯିବନି ?'' ଶିବେଇ ସାନ୍ତରା ସେଇଠୁ ଫେରେ ଚନ୍ଦ୍ରଭାଗାକୁ, ତୋଳାହୁଏ କୋଣାର୍କ ।

ମୁଁ କିନ୍ତୁ କାହିଁ ଫେରି ପାରିଲି ନି ତ କୁଜଙ୍ଗ ଅଞ୍ଚଳର ସେହି ସବୁ ସାନସାନ ଗାଁରୁ, ବର୍ଷାଦିନେ ଯେଉଁ ଗାଁଗୁଡ଼ିକ ନଈପାଣି ସମୁଦ୍ରପାଣି ମିଶିଯାଇ ଛୋଟ ଛୋଟ ଟାପୁଭଳି ଠିଆ ହୋଇଥାଏ; ଗୋଟିଏ ଗାଁରୁ ଆଉ ଗୋଟିଏ ଗାଁକୁ ଯିବାକୁ ଦରକାର ହୁଏ ଡଙ୍ଗା—ମଝିରେ ଯଦି କୁମ୍ଭୀର ତାହାର ଲାଞ୍ଜ ପିଟି ଡଙ୍ଗା ଓଲଟାଇ ଦିଏ, ତା'ହେଲେ କେଉଁ ଗାଁ ମଣିଷ ଯାଇ ପହଞ୍ଚେ ଆଉ କେଉଁଠି ତାହା ସେ ଜାଣିପାରେ ନାହିଁ !

ଗାଁ ଗାଁ ବୁଲି ଶୁଣେ ଏମିତି-କେତେ ଅଦ୍ଭୁତ କୁମ୍ଭୀର କାହାଣୀ । ନୂଆବୋହୂ ବାରିଗଡ଼ିଆରେ ଗାଧୋଇ ସାରି ଲୁଗା ପାଲଟି କାନିଟାକୁ ପାଣି ଭିତରକୁ ଫିଙ୍ଗିଦେଇ ଧୋଇ ମକଚି ଆଣିବାକୁ ଯାଉଛି, କୁମ୍ଭୀର ଧରିଲାଣି କାନି ଅଗରୁ—ଭୟରେ ଥରହର ହୋଇ ନୂଆବୋହୂ ଦେଖେ, କୁମ୍ଭୀର ତାହାର କାନିକୁ କାମୁଡ଼ି ପାଣିଭିତରକୁ ଟାଣୁଛି ! ଉପାୟ ନ ପାଇ ଭୁଆସୁଣୀ ବୋହୂ ଶାଢ଼ିଗୋଟାକ ଦେହରୁ କାଢ଼ି ପଳାଇ ଆସେ, ଲଙ୍ଗଳାହୋଇ, ପୁଣି ଘରଭିତରକୁ ଏହି ଅବସ୍ଥାରେ ସେ ପଶିବ କେମିତି ! ଚୁଁ ମାରିବା ଛଡ଼ା କଥା କହିବାକୁ ତ ମନା ! ବାରିପଟ କଦଳୀ ବଗିଚା ଭିତରେ ପଶି କଦଳୀପତ୍ର ଟାଣି ଦେହକୁ ଘୋଡ଼ାଏ, ହେଲେ ତାହା ଅବା ଯୁବାଝିଅର ଲଜ୍ଜା ନିବାରଣ କରିବାକୁ କେତେ ସମର୍ଥ ।

ସୂର୍ଯ୍ୟ ଉଠେ ଆକାଶ ମଝିକୁ, ବୋହୂ କାହିଁକି ଘରକୁ ଆସିଲା ନି ଖୋଜାପଡ଼େ; ସାନ ନଣନ୍ଦ ବାରିପଟକୁ ଯାଇ ଦେଖନ୍ତି ବୋହୂଙ୍କ ଅବସ୍ଥା—ଭାଇକୁ କହନ୍ତି ଭାଉଜ ଘରକୁ ନ ଆସିବାର କାରଣ । ଭାଇ ଯାଇ ସ୍ତ୍ରୀକୁ ଏହି ଅବସ୍ଥାରେ ଦେଖି ଆରମ୍ଭ କରିଦିଏ ନିର୍ମମ ପ୍ରହାର ।

ସମବାୟ ବ୍ୟାଙ୍କ୍ ମ୍ୟାନେଜରର କାନରେ ଏମିତି କାହାଣୀ ଶୁଣାଯାଏ । ସୋସାଇଟିର ସଭ୍ୟ ସେଇ ଯୁବକକୁ ତାହାର ଏପରି ଅନ୍ୟାୟ ବ୍ୟବହାର ଲାଗି ପ୍ରଶ୍ନ ପଚରାଯାଏ । ଯୁବକଟି ନିର୍ବିକାର ଭାବରେ ଉତ୍ତର ଦିଏ—

''ସେ ଏମିତି ନିର୍ଲଜ୍ଜୀ ହୋଇ କଦଳୀବାଡ଼ିରେ ନ ଲୁଚି କୁମ୍ଭୀର ମୁହଁରେ ଯାଇଥିଲେ ମୁଁ ଖୁସି ହୋଇଥାନ୍ତି ।''

ଏହି ସମାଜ ଭିତରେ ସମବାୟର ନୀତି ପ୍ରଚାର, କିସ୍ତି ଖିଲାପ, ଋଣ ସୁଧ ଆଦାୟ—ଦେଇ ନ ପାରିଲେ ନାଲିସ୍ କ୍ରୋଖ୍ ନିଲାମ–ଏହାହିଁ ଥିଲା ବ୍ୟାଙ୍କ କର୍ମଚାରୀର କର୍ତ୍ତବ୍ୟ । ସେଇ କର୍ତ୍ତବ୍ୟ ଭିତରେ ଗାଁ ଲୋକଙ୍କୁ ମିଳିମିଶି ଭାଇ ଭାଇ ଭଳି ଚଳିବା, ପୁଣ୍ୟପର୍ବ ଶୁଦ୍ଧ ଶ୍ରାଦ୍ଧରେ ବ୍ୟୟ ସଙ୍କୋଚ ପରାମର୍ଶ ଦେଇ ଗାଁ-ଗହଳରେ ଏକ ସୁସ୍ଥ ବଳିଷ୍ଠ ସାମାଜିକ ବାତାବରଣ ସୃଷ୍ଟି କରିବା ଥିଲା, ସମବାୟ ବିଭାଗର ନୈତିକ ଲକ୍ଷ୍ୟ ।

କୁଜଙ୍ଗ ଅବସ୍ଥାନ କାଳରେ 'ଉତ୍କଳ ସାହିତ୍ୟ'ରେ ମୋର ମଧୁବିବାହ କବିତା, ଯାହାକୁ ବାରମ୍ବାର ପଢ଼ି ଶୁଣାନ୍ତି ବନ୍ଧୁଗହଣରେ ସ୍କୁଲ ସବ୍‌ଇନ୍‌ସପେକ୍ଟର ଶ୍ୟାମାଚରଣବାବୁ ପ୍ରଶଂସାମୁଖର ହୋଇ—

'ବଧୂ ଆସେ ମୋର ଧୀର ସୁଲଳିତ
ତୃତୀୟା ଜୋଛନା ସମ
ବଢ଼ାଏ ମୋ କରେ କମ୍ପିତ କର
ସୁକୁମାର ଅନୁପମ ।
ଲାଜଲାଜ ଗଣ୍ଡେ ନ କହଇ କଥା
ଭାତର ବଉଦେ ଲୁଚାଏ ତା' ମଥା
କି ନିବିଡ଼ ବ୍ୟଥା ଲାଗଇ ପୀରତି—
ପୀଡ଼ିତ ମରମେ ମମ,
ବଧୂ ଆସେ ମୋର ଧୀର ସୁଲଳିତ
ତୃତୀୟା ଜୋଛନା ସମ ।

କିନ୍ତୁ 'ଧୀର ସୁଲଳିତ' ପ୍ରୟୋଗରେ ଯୁକ୍ତାକ୍ଷର ଛନ୍ଦଦୋଷ ଦର୍ଶାଇ ତାହା 'ଧୀର ଲଳିତ' ହେବା ଉଚିତ ବୋଲି ସେ ମତ ଦିଅନ୍ତି; ମୋ କବିତାରେ ଏଇଭଳି କିମ୍ବା ଏହାଠାରୁ ଆହୁରି ଗୁରୁତର ଛନ୍ଦ ଦୋଷକୁ ମୁଁ ସ୍ୱୀକାର କରେ । ନିର୍ଦ୍ଦୋଷ ଯୁକ୍ତାକ୍ଷର ଛନ୍ଦରେ କବିତା ଲେଖୁଥିଲେ ଆମ ଭିତରୁ ବୈକୁଣ୍ଠନାଥ ଓ ଅନ୍ନଦାଶଙ୍କର ।

କେତେକ ମାସ ପରେ କୁଜଙ୍ଗରୁ ବଦଳି ହୋଇ ଆସେଁ ପୁରୀ ବ୍ୟାଙ୍କ୍‌କୁ । ଏଇ ଅବସରରେ ପୁରୀ ଜିଲ୍ଲାର ଗାଁ ଗାଁ ବୁଲିବା ସୁଯୋଗ ମିଳିଯାଏ ମୋତେ । କୁଜଙ୍ଗ ଅପେକ୍ଷା ପୁରୀ ଜିଲ୍ଲା ଲୋକଙ୍କର ଅବସ୍ଥା ଯେ ଅନେକ ଭଲ ତାହାର ବର୍ଣ୍ଣନା ଅନାବଶ୍ୟକ; କିନ୍ତୁ କେବଳ ଆର୍ଥିକ ଅବସ୍ଥା ଭଲ ହେବାହିଁ ତ ଯଥେଷ୍ଟ ନୁହେଁ; ମଣିଷ ପ୍ରକୃତି ଧନୀ ନିର୍ଦ୍ଧନ-ନିର୍ବିଶେଷରେ ସବୁଠାରେ ପ୍ରାୟ ସମାନ ।

ପୁରୀକୁ ଆସି ଏତିକି ଫରକ ଜଣାପଡ଼ିଲା ଯେ ଘରପାଖରୁ ଶହେ ଖୋଜ୍ ଚାଲିଗଲେ କେନ୍ଦ୍ର ସମବାୟ ବ୍ୟାଙ୍କ୍‌ର ଅଫିସ୍, ପୁଣି ଗାଁ-ଗୁଡ଼ିକ ଭିତରୁ ଅନେକ ଗାଁରେ ନିଜର ପରିଚିତ ଅବା ବନ୍ଧୁବାନ୍ଧବ ସମ୍ପର୍କୀୟମାନଙ୍କର ଘର ।

ପୁରୀ ଜିଲ୍ଲାରେ ଗସ୍ତ କରୁଥିବା ସମୟରେ ଡେଲାଙ୍ଗ, ପିପିଲି, ସାକ୍ଷୀ ଗୋପାଳ ଆଦି କେନ୍ଦ୍ରସ୍ଥାନମାନଙ୍କରେ ରହି ସେଇଠୁଁ ବୁଲେ ଗାଁକୁ ଗାଁ । ସାକ୍ଷୀ ଗୋପାଳ ରହଣି ସମୟରେ କେତେ ଥର ସ୍କୁଲ ବୋଡ଼ିଂରେ କଟିଛି । ସାକ୍ଷାତ୍‌କାର ଘଟିଛି ପଣ୍ଡିତ ଗୋପବନ୍ଧୁ, ଆଚାର୍ଯ୍ୟ ହରିହର ଓ ପଣ୍ଡିତ ନୀଳକଣ୍ଠଙ୍କ ସହିତ ।

ବ୍ୟାଙ୍କ୍ ଗୃହର ଉପରତାଲାରେ ଗୋଟିଏ ଛୋଟ ବଖରା । ସେଇଠି କରେଁ ମୁଁ ମୋର ଅଫିସ୍ କାମ ସହିତ ସାହିତ୍ୟ ଚର୍ଚ୍ଚା ଓ ସଙ୍ଗୀତ-ଚର୍ଚ୍ଚା ମଧ୍ୟ । ମୋର ଜ୍ୟେଷ୍ଠ ଶାଳକ ବାଦ୍ୟବିନୋଦ କ୍ଷେତ୍ରମୋହନ କର ମଧ୍ୟେ ମଧ୍ୟେ ସେଠାକୁ ଆସନ୍ତି । ତାଙ୍କ ସହିତ ଆସନ୍ତି ସଙ୍ଗୀତ ଓସ୍ତାଦ ଗୋପାଳ ବୋଷ । ତାଙ୍କଠାରୁ ଶାସ୍ତ୍ରୀୟ ସଙ୍ଗୀତ ଶିଖିବାକୁ ମୁଁ ଆଗ୍ରହୀ ହୁଏଁ ଓ ଅଭ୍ୟାସ କରେଁ ମଧ୍ୟ । ମାସକ ଭିତରେ କୋଡ଼ିଏ ଦିନ ମଫସଲରେ ମ୍ୟାନେଜର ଓ ଇନ୍‌ସପେକ୍ଟିଙ୍ଗ କ୍ଲର୍କମାନଙ୍କର ଗସ୍ତକରିବାର କଥା । ସେଇ କୋଡ଼ିଏ ଦିନ ଭିତରୁ ଯେତେ ଦିନ ଗସ୍ତ କର ପଛେ କାଗଜପତ୍ରରେ କୋଡ଼ିଏ କିମ୍ବା ତହିଁରୁ ଊର୍ଦ୍ଧ୍ୱ ଦେଖାଇବାର ନିୟମ । ସେ ନିୟମର ବ୍ୟତିକ୍ରମ ଘଟିଲେ କୈଫିୟତ୍ ଦେବାକୁ ପଡ଼େ ।

କୈଫିୟତ୍ ଜଞ୍ଜାଳ ଏଡ଼ିବାକୁ ହେଲେ ସହଜରେ କୋଡ଼ିଏ ଦିନର ଗସ୍ତ ବିବରଣ ଲେଖି ଗସ୍ତଖର୍ଚ୍ଚା ନେବାରେ କାହାରି କୌଣସି ଆପତ୍ତି ନାହିଁ; ବରଂ ତାହା ସମବାୟ ବ୍ୟାଙ୍କ କର୍ମଚାରୀଙ୍କ କର୍ମତତ୍ପରତା ଓ କର୍ତ୍ତବ୍ୟପରାୟଣତାର ଚିହ୍ନ ରୂପେ ପରିଗଣିତ ହୁଏ । ଗସ୍ତଖର୍ଚ୍ଚା ପାଇବା ସଙ୍ଗେ ସଙ୍ଗେ ମୋର ସଙ୍ଗୀତ ଚର୍ଚ୍ଚା ମଧ୍ୟ ସମାନ ଗତିରେ ଚାଲେ, ଗାଁରୁ ଅବଶ୍ୟ ଏଇ ଚର୍ଚ୍ଚାର ଆରମ୍ଭ ।

ସମବାୟ ବିଭାଗର ରେଜିଷ୍ଟ୍ରାର ଓ ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର ପ୍ରଭୃତି ପୁରୀକୁ ପ୍ରାୟ ଆସନ୍ତି-ବ୍ୟାଙ୍କ୍ ପରିଦର୍ଶନ ପାଇଁ ଯେତେ ନୁହେଁ—ଜଗନ୍ନାଥ ଦର୍ଶନ କିମ୍ବା ସମୁଦ୍ର ତୀରରେ ଭ୍ରମଣ ଲାଗି । ଏହିରୂପେ ଥରେ ପରିଦର୍ଶକଙ୍କ ମନ୍ତବ୍ୟ ପୁରୀବ୍ୟାଙ୍କ୍ ସମ୍ପର୍କରେ ଲିପିବଦ୍ଧ ହୁଏ ମୋହର କାର୍ଯ୍ୟ ବିରୋଧରେ । ସେଥିଲାଗି ଶାସ୍ତିମିଳେ ପୁରୀରୁ ମୋର କଟକ ବଦଳି । ସେହି ଶାସ୍ତିଟାକୁ ଅବଶ୍ୟ ପୁରସ୍କାର ଭାବରେ ମୁଁ ବିଚାର କରେଁ । ଯେହେତୁ କଟକ ହେଲା ଓଡ଼ିଶାର ସାଂସ୍କୃତିକ ତଥା ରାଜନୈତିକ ପ୍ରାଣକେନ୍ଦ୍ର ।

ପୁରୀରେ ରହିଥିବା ସମୟରେ ମୋର ପାରିବାରିକ ଜୀବନରେ ଦୁଇଟି ବିପର୍ଯ୍ୟୟ ଘଟେ । ପରେ ପରେ ପ୍ରଥମେ ଗୋଟିଏ କନ୍ୟା ଓ ଗୋଟିଏ ପୁତ୍ରର ଶିଶୁ ଅବସ୍ଥାରେ ମୃତ୍ୟୁ । ଏହି ମୃତ୍ୟୁ ଯେଉଁ ପରିମାଣରେ ଅସ୍ୱାଭାବିକ, ସେହି ପରିମାଣରେ ହିଁ ମୁଁ ଏଥିଲାଗି ନିଜେ ଦାୟୀ ବୋଲି ମନ ଭିତରେ ପରାଜୟର ଘୋର ଗ୍ଲାନି ମୋତେ ଗ୍ରାସ କରେ । ନିଜକୁ ମୁଁ ବିଚାର କରେଁ ଜଣେ ଶିଶୁହନ୍ତାଭାବେ । ଶିଶୁଜନ୍ମ ଓ ଶିଶୁଚିକିତ୍ସା ସମ୍ପର୍କରେ ଇଂରାଜୀ ପ୍ରଭୃତି ଭାଷାରେ ଲିଖିତ ପୁସ୍ତକମାନ ପାଠକରେ ।

ଗର୍ଭାବସ୍ଥା ସମୟରୁ ଶିଶୁର ଜନନୀ ଜନକ କିପରି ଯତ୍ନ ନେବା ଆବଶ୍ୟକ ସେ ସମ୍ପର୍କରେ କେତେ ବୈଜ୍ଞାନିକ ଆଲୋଚନା ଅଧ୍ୟୟନ କରେଁ । କଲିକତାର ବିଖ୍ୟାତ ଶିଶୁ ଚିକିତ୍ସକ ଓ ଗର୍ଭବତୀ ଜନନୀ ସମ୍ପର୍କରେ ବହି ଲେଖିଥିବା ଡାକ୍ତର ବାମନଦାସ ଚଟ୍ଟୋପାଧ୍ୟାୟଙ୍କ ପୁସ୍ତକାଦି ମଗାଇ ପଢ଼େଁ ।

ଆହୁରି ମୋ ମନରେ ଗ୍ଲାନି ଜାତ ହୁଏ, ଯେତେବେଳେ ମୁଁ ଶୁଣେ ବନ୍ଧୁ କୁଟୁମ୍ବ ପ୍ରଭୃତିଙ୍କଠାରୁ ଯେ ପ୍ରଥମ ଦୁଇଟି ଶିଶୁଙ୍କର ମୃତ୍ୟୁ ଘଟିଥିବାରୁ ଅନ୍ୟ କୌଣସି ଶିଶୁ ବଞ୍ଚିବାର ଭରସା ନାହିଁ । ତା'ପରେ କେତେ ବନ୍ଧୁ ହିତାକାଙ୍କ୍ଷୀଙ୍କଠାରୁ ବହୁ ପରାମର୍ଶ ମଧ ମିଳେ ମୋତେ ।

ଯନ୍ତ୍ର, ମନ୍ତ୍ର ଗୁଣି ଗାରଡ଼ି ପୂଜା ଧ୍ୱଜା ଆଦି ବହୁ ପରାମର୍ଶ ଆସେ । ଯାହାକୁ ଦିନେ କୁସଂସ୍କାର ଓ ଅନ୍ଧବିଶ୍ୱାସ ବୋଲି ଘୃଣା କରି ଆସିଥିଲି, ନିଜକୁ ନିଃସନ୍ତାନ ଦୋଷରୁ ମୁକ୍ତକରିବାପାଇଁ ତାହାଭିତରୁ କୌଣସି ଗୋଟିକୁ ବାଦ୍ ଦେଲି ନାହିଁ । ବନ୍ଧୁମାନେ ବିସ୍ମିତ ହୁଅନ୍ତି, ଯେତେବେଳେ ମୁଁ ଏହି ତନ୍ତ୍ରମନ୍ତ୍ର ଗୁଣି ଗାରଡ଼ି ଆଦି ସମସ୍ତ ଉପାୟକୁ ଗ୍ରହଣ କଲି ନିଜକୁ ନିଃସନ୍ତାନ ଦୋଷରୁ ଓ ସ୍ୱପତ୍ନୀଙ୍କୁ ମୃତବତ୍ସା ଅପରାଧରୁ ମୁକ୍ତ କରିବାପାଇଁ ।

ବନ୍ଧୁମାନଙ୍କ ସହିତ ସାହିତ୍ୟ କଳା ସମ୍ପର୍କରେ ବହୁ ଆଲୋଚନା ଯେପରି ହୁଏ, ସେଇପରି ବୈବାହିକ ଜୀବନର ସାଫଲ୍ୟ ଯେ ସନ୍ତାନ ଜନ୍ମ ଉପରେ ନିର୍ଭର କରେ, ଏକମତ ହେଉଁ ତହିଁରେ । ସେତେବେଳେ ଲଜ୍ଜା ଓ ଦୁଃଖରେ ମନେ ମନେ ମୁଁ ନିଜକୁ ବ୍ୟର୍ଥ, ଅସମର୍ଥ, ଅଯୋଗ୍ୟ ଜ୍ଞାନ କରେଁ ସାଂସାରିକ ବିଚାରରୁ । ରାମଚଣ୍ଡୀ ସାହିରେ ଆମ ଘର ପାଖରେ ରହୁଥାନ୍ତି ଜଣେ ଆଙ୍ଗ୍ଲୋ-ଇଣ୍ଡିଆନ ନର୍ସ—ମିସ୍ ମେଡ଼ିରା ନାମରେ ।

ବାରମ୍ବାର ତାଙ୍କ ସହ ଯାଇ ପରାମର୍ଶ କରେଁ । ତଥାପି ଦ୍ୱିତୀୟ ସନ୍ତାନଟିକୁ ସବୁ ଚେଷ୍ଟା ସତ୍ତ୍ୱେ ବଞ୍ଚାଇ ନ ପାରି ମୁଁ ସେଇଥିପାଇଁ ଦାୟୀ ବୋଲି ଅନୁତାପରେ ଦଗ୍ଧ ହୁଏ ।

ତୃତୀୟ ସନ୍ତାନ ଗର୍ଭସ୍ଥ ହେବା ମାତ୍ରେ ସ୍ଥାନୀୟ ଡାକ୍ତରି ପରାମର୍ଶ କରିବା ସଙ୍ଗେ ସଙ୍ଗେ ପତ୍ରବିନିମୟ କରେଁ କଲିକତାର ପ୍ରସୂତି ବିଜ୍ଞାନରେ ବିଖ୍ୟାତ ବିଶେଷଜ୍ଞ ଡାକ୍ତର ବାମନ ଦାସ ଚଟ୍ଟୋପାଧ୍ୟାୟଙ୍କ ସହିତ । ପୂଜା ଅନୁଷ୍ଠାନ ପ୍ରଭୃତିରେ ମଧ ତ୍ରୁଟି ଘଟେ ନାହିଁ । ସପ୍ତାହ ଚନ୍ଦ୍ରଭାଗା ସ୍ନାନ, ରାମଚଣ୍ଡୀ ଦର୍ଶନ, ପୁଣି ବ୍ରହ୍ମଗିରିର ଭୀମେଶ୍ୱର କାଳିଶିଙ୍କଠାରୁ ହୁକୁମ ଆଣିବା ପର୍ଯ୍ୟନ୍ତ ଯେ କୌଣସି ପ୍ରସ୍ତାବ ମୋର ଗ୍ରହଣୀୟ ହୁଏ । ଗୁଣି ଗାରଡ଼ି, ମନ୍ତ୍ରତନ୍ତ୍ର ଆଦି ଯାହାକୁ ବିଜ୍ଞାନ-ବିରୋଧୀ କୁସଂସ୍କାର ବୋଲି ପ୍ରକାଶ୍ୟ ସମାଲୋଚନା କରୁଥିଲି, ତାହାରି ପାଖରେ ପରାଜୟର ଗ୍ଲାନିକୁ ସ୍ୱୀକାର କରେଁ ବାଧ ହୋଇ ।

ବୈବାହିକ ଜୀବନର ଏହି ବ୍ୟର୍ଥତା ସେତେବେଳେ ମୋତେ ଯଥାର୍ଥରେ ଅନ୍ଧ ଓ ମୂର୍ଖକରି ପକାଇଥିଲା । ବନ୍ଧୁମାନଙ୍କ ଉପହାସ ପରିହାସକୁ ମୁଁ ଭ୍ରୂକ୍ଷେପ କରେଁ ନାହିଁ, ଏହି ଲଜ୍ଜାରୁ ଉଦ୍ଧାର ପାଇବାପାଇଁ ।



# କଟକ ସମବାୟ ଶିକ୍ଷାକେନ୍ଦ୍ର

ଦୁଇ ତିନି ମାସ ପାଇଁ ଗୋଟିଏ ସମବାୟ ଶିକ୍ଷାକେନ୍ଦ୍ର ପ୍ରତିଷ୍ଠିତ ହୁଏ କଟକ ଚାଉଳିଆଗଞ୍ଜ ପୋଲିସ ବ୍ୟାରାକ୍‌ରେ । ଓଡ଼ିଶାର ନୂଆ ପୁରୁଣା ବ୍ୟାଙ୍କ କର୍ମଚାରୀମାନେ ଜୁଟନ୍ତି ଆସି ଏହି ଅନୁଷ୍ଠାନରେ । ଓଡ଼ିଶା ସମବାୟ ବିଭାଗର ଡେପୁଟି ରେଜିଷ୍ଟ୍ରାର ଥାନ୍ତି ଧର୍ମପ୍ରାଣ ସୁପଣ୍ଡିତ ଏନ୍.କେ.ରାୟ । ମୋତେ ଏଠାରେ ଶିକ୍ଷକତା କରିବାର ଗୌରବ ମିଳେ । ·

ଓଡ଼ିଶାର ବିଭିନ୍ନ ସମବାୟ ବ୍ୟାଙ୍କ୍ ଓ ଅନୁଷ୍ଠାନରୁ ଯେଉଁ ଶିକ୍ଷାର୍ଥୀମାନେ ଆସନ୍ତି, ତାଙ୍କ ସହ ଘନିଷ୍ଠ ପରିଚୟ ପ୍ରତିଷ୍ଠିତ ହୁଏ । ସମବାୟ ନୀତି ଓ ଆଦର୍ଶ ଉପରେ ମଧ୍ୟ କେତେକ ଆଲୋଚନା ମୋର ପ୍ରକାଶିତ ହୁଏ 'ଉତ୍କଳ ସାହିତ୍ୟ' ପ୍ରମୁଖ ବିଭିନ୍ନ ପତ୍ରପତ୍ରିକାରେ । ସମବାୟ ନୀତିର ଆଦର୍ଶ ଯେ ଜାତୀୟ ଜୀବନର ଉଦ୍‌ବୋଧନ ବିକାଶ ପଥରେ ପ୍ରଧାନ ସହାୟକ, ପୁଣି ସ୍ୱାଧୀନତା ଲାଭର ଏକ ସାଂଗଠନିକ ପନ୍ଥା, ତାହାରି ବୟାନ କରେଁ ମୁଁ ମୋର ଏହି ନିବନ୍ଧଗୁଡ଼ିକରେ ।

ସମବାୟ ଆନ୍ଦୋଳନକୁ ସେତେବେଳେ ଭାରତ-ସ୍ୱାଧୀନତା ଆନ୍ଦୋଳନର ଏକ ସାଂଗଠନିକ ଅଙ୍ଗରୂପେ ମଧ୍ୟ ମହାତ୍ମାଗାନ୍ଧୀ ଓ ଜବାହରଲାଲଙ୍କଠାରୁ ଆରମ୍ଭକରି ରବୀନ୍ଦ୍ରନାଥଙ୍କ ପର୍ଯ୍ୟନ୍ତ ଚିନ୍ତାଶୀଳ ନେତୃବୃନ୍ଦ ବିଚାରୁଥାନ୍ତି । ରବୀନ୍ଦ୍ରନାଥଙ୍କ ଶ୍ରୀନିକେତନର କୁଟୀରଶିଳ୍ପ ପ୍ରତିଷ୍ଠିତ ହୁଏ ଏଇ ନୀତି ଉପରେ । ଚରଖା ଆଦି ଗୃହଶିଳ୍ପର ଏହା ଗୋଟିଏ ପ୍ରଧାନ ସାଂଗଠନିକ ପନ୍ଥାରୂପେ ବିବେଚିତ ହୁଏ ।

ଅପରିଚିତ ସହିତ ପରିଚୟ—ଦୂରରେ ଥିବା ବନ୍ଧୁମାନଙ୍କ ସହିତ ଏକତ୍ର ମିଳନ, ସମବାୟ ଭୋଜନାଳୟ ଓ ସମବେତ ସାଂସ୍କୃତିକ ଅନୁଷ୍ଠାନ ଭିତରେ ହସଖୁସିରେ ଚାଲେ ଶିକ୍ଷା କେନ୍ଦ୍ରର କାର୍ଯ୍ୟକ୍ରମ ।

ଏଇଭଳି କେତେକ ପୁରୁଖା କର୍ମଚାରୀଙ୍କୁ ଘେନି ଯୁବକମାନଙ୍କର ହାସ୍ୟପରିହାସର ଜୁଆର ଛୁଟେ ।

ଜଣେ ବୟୋଜ୍ୟେଷ୍ଠ ବ୍ୟାଙ୍କ୍ ମ୍ୟାନେଜରଙ୍କୁ ଘେନି ତାଙ୍କର ପୁତ୍ରୋପମ କେତେକ ଯୁବକ ସରଳତା ଓ ସାଧୁତାର ସୁଯୋଗ ନେଇ ଥଟ୍ଟା ପରିହାସ କରନ୍ତି ।

ଥରେ ଏମିତି ଜଣେ ବୟୋଜ୍ୟେଷ୍ଠ ମାନନୀୟ ବ୍ୟକ୍ତି ଦୁଇ ସପ୍ତାହ ପରେ ନିଜ ଚିରାଚରିତ ଅଭ୍ୟାସ ଅନୁଯାୟୀ କ୍ଷୌରକର୍ମରେ ବସିଥିବା ସମୟରେ ଯୁବକମାନେ ତାଙ୍କ ପାଦତଳେ ପଡ଼ି ଅନୁନୟ କରନ୍ତି, ତାହା ସ୍ଥଗିତ ରଖିବାକୁ । ସେତେବେଳେ ବାରିକ ଅର୍ଦ୍ଧେକ ମାତ୍ର ନିଶ ଦାଢ଼ି କାଟିଥାଏ, ବାକି ଅଧକ ସେଦିନ ଲାଗି ସ୍ଥଗିତ ରଖି ଆହୁରି ସେହି ଅବସ୍ଥାରେ ବୟୋଜ୍ୟେଷ୍ଠ ବ୍ୟାଙ୍କ ମ୍ୟାନେଜରଙ୍କୁ ସମବାୟ ଶିକ୍ଷାନୁଷ୍ଠାନରେ ବୁଲାଇ ସେମାନେ ଏକ ହାସ୍ୟରସମୟ ପ୍ରଦର୍ଶନୀ କରନ୍ତି ।

ନିକଟରେ ଥାଏ ଉକ୍ରଳ ଟ୍ୟାନେରୀ କାରଖାନା । ସେତେବେଳକୁ ଉକ୍ରଳ ଟ୍ୟାନେରିର କାର୍ଯ୍ୟ ମାନ୍ଦା ପଡ଼ିଆସିଲାଣି ଓ ମଉଳି ପଡ଼ିଲାଣି; ଉକ୍ରଳଗୌରବ ମଧୁସୂଦନଙ୍କ ନେତୃତ୍ୱର ଦୀପ୍ତି, ଗାନ୍ଧିଜୀଙ୍କର ଅହିଂସା ଅସହଯୋଗ ଆନ୍ଦୋଳନର ତୀବ୍ରତା ମଧ ଶିଥିଳ ପଡ଼ି ଆସିଲାଣି ।

ବର୍ଷକ ଭିତରେ ସ୍ୱରାଜ୍ୟ ଲାଭ ପ୍ରତିଶ୍ରୁତି କ୍ରମେ ବିସ୍ମୃତ ହେବାକୁ ବସିଲାଣି । ଦେଶର ଭାଗ୍ୟରବି କେଉଁ ପଥରେ ଗତି କରୁଛନ୍ତି, ତାହାର ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସୁସ୍ପଷ୍ଟ ହେବାକୁ ଆହୁରି ଯେପରି ବିଳମ୍ବ ରହିଛି ଅନେକ ।

ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ସେତେବେଳେ ବୋଧହୁଏ ଅବସ୍ଥାନ କରୁଥାନ୍ତି ସପରିବାର କଟକ ଜିଲ୍ଲା ଜଗତ୍‌ସିଂହପୁର ପାଖ ଅଣଖିଆରେ । ଯା'ଆସ କରନ୍ତି ସେ କଟକକୁ ସେହି ବାଟେ । ମଝିରେ ମଝିରେ ତାଙ୍କ ସହିତ ସାକ୍ଷାତର ସୁଯୋଗ ଘଟେ, ସମବାୟକେନ୍ଦ୍ର ଅନୁଷ୍ଠାନଟି କଟକରେ ଏକ ପ୍ରବେଶଦ୍ୱାର ରୂପେ ଅବସ୍ଥିତ ଥିବାରୁ । ଦିନେ ସନ୍ଧ୍ୟାରେ ନବବାବୁଙ୍କ ସହିତ ସେହିଠାରେ ହୁଏ ସାକ୍ଷାତ୍‌କାର ।

ନବବାବୁଙ୍କ ମୁହଁରୁ ଶୁଣେ, ସେଇଦିନ ଉକ୍ରଳମଣି ଗୋପବନ୍ଧୁ ଦାଶଙ୍କ ତିରୋଧାନ ଘଟିଛି ତାଙ୍କର କର୍ମକ୍ଷେତ୍ର ସତ୍ୟବାଦୀଠାରେ । ଖବରଟା ଶୁଣିବା କ୍ଷଣି ପୃଥିବୀ ଓ ଆକାଶ ହଠାତ୍ ଲାଗିଲା ଏକାକାର ହୋଇ ପଡ଼ିଲା ଭଳି, ସୂର୍ଯ୍ୟାସ୍ତ ପୂର୍ବରୁ ଆକାଶ ।



# ମାଟିର ପିତୁଳା ଗଢ଼ି ରଖିଦେଲି

ଘଟଣାଚକ୍ର ଅତି ଅଦ୍ଭୁତ ଭାବରେ ବୁଲିଆସେ । ପୁରୀରୁ ମୋର କଟକ ବଦଳି । ଭଡ଼ାଘର ପାଇବାପାଇଁ ଅସୁବିଧା ମଧ ନାହିଁ । ସମବାୟ ବିଭାଗର ସଂଗଠନ ପ୍ରଚାରକ ଶ୍ରୀ ସୁଧୀନ ନିୟୋଗୀ ମୋହର ଏକାନ୍ତ ବନ୍ଧୁ ଓ ମୋତେ ତାଙ୍କର କନିଷ୍ଠ ଭାଇରୂପେ ବିଚାରନ୍ତି । ସେ ରହୁଥାନ୍ତି ଯାଚକ ଲେନ୍‌ରେ । ସେହି ଘରଟି ମୋହପାଇଁ ଛାଡ଼ିଦେଇ ସେ ଉଠିଆସନ୍ତି ଆଉ ଗୋଟିଏ ଭଡ଼ାଘରକୁ ।

ମୋର ପରିବାର ପକ୍ଷରେ ମଧ ଯାଚକଲେନ୍ ଭଡ଼ାଘରଟି ଥିଲା ବେଶ୍ ପ୍ରଶସ୍ତ । ନିକଟରେ ରହୁଥାନ୍ତି ବନ୍ଧୁ ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକ । ବିବାହ ହୋଇଥାଏ ତାଙ୍କର ପୁରୀରେ ଆମରି ରାମଚଣ୍ଡୀସାହି ପଡ଼ିଶା ସର୍ଗତ ପରମାନନ୍ଦବାବୁଙ୍କ କନ୍ୟା ସହିତ । ବରଯାତ୍ରୀ ମଧ ରହନ୍ତି ସେହି ବ୍ୟାଙ୍କଘରେ ।

ସପରିବାର ମୋର କଟକ ଆସିବା ସ୍ଥିର ହୁଏ ବଦଳି ଆଦେଶ ପାଇବାପରେ । ଭାଇନା ମଧ, ତାଙ୍କ ସପରିବାର ବାପାଙ୍କ ସହିତ ବାରିପଦା ଯାତ୍ରା କରନ୍ତି ସେଠାରେ ଷ୍ଟେଟ୍ ଓକିଲ କାର୍ଯ୍ୟରେ ନିଯୁକ୍ତି ପାଇ ।

ମୁଁ ମୋର ବୋଉସହିତ ସସ୍ତ୍ରୀକ ପୁରୀ ଛାଡ଼ି କଟକ ଆସେଁ । ଏଇଭାବରେ ଆରମ୍ଭରୁ ଏକାଠି ରହି ଆସିଥିବା ଆମ ଦୁଇଭାଇଙ୍କ ପରିବାର ସହିତ ବାପା ବୋଉ ମଧ ଅଲଗା ହୁଅନ୍ତି ପରସ୍ପରଠାରୁ । ବୈକୁଣ୍ଠବାବୁ ସେହି ଯାଚ୍‌କ୍‌ଲେନ୍ ଘରେ ସପରିବାର ରହିବା ପ୍ରସ୍ତାବ କରନ୍ତି ମଧ । ଦୁଇଟି ସାନ ପରିବାର ପାଇଁ ଘରଟି ଅବଶ୍ୟ ପ୍ରଶସ୍ତ ଥିଲା । ତାହାଛଡ଼ା ପୂରା ଘରଟିର ମାସିକଭଡ଼ା ୧୬ଟଙ୍କା ଅଧା ଅଧା ଦେବାକୁ ପଡ଼େ ଆମ ଉଭୟଙ୍କୁ । ମୋହ ସହିତ ଅନୁଜ ଭଗବତୀଚରଣ ମଧ ରେଭେନ୍‌ସା କଲେଜରେ ପଢୁଥିବାରୁ ସେହି ଯାଚକ୍ ଲେନ୍ ଘରେ ଆସି ରହନ୍ତି । ବୈକୁଣ୍ଠବାବୁଙ୍କ ସାନ ଭାଇ ଶ୍ରୀ ବୃନ୍ଦାବନଚନ୍ଦ୍ର ପଟ୍ଟନାୟକ ସେହିଘରେ ରହି କଲେଜରେ ପଢ଼ନ୍ତି । ତେଣୁ ଘରଟି ବେଶ୍ ଗହଳ ଚହଳରେ ସରଗରମ ରହେ ।

ଦୁଆରମୁହଁ ଆଗରେ ରହୁଥାନ୍ତି ପୁଣି ଶ୍ରଦ୍ଧେୟ ଲାଲମୋହନ ପଟ୍ଟନାୟକ । ଆଖପାଖ ପଡ଼ିଶାମାନେ ସମସ୍ତେ ସେଠାରେ ସ୍ଥାୟୀ ଖ୍ରୀଷ୍ଟିୟାନ୍ ବାସିନ୍ଦା । ପରସ୍ପର ଭିତରେ ସୌହାର୍ଦ୍ଦ୍ୟ ବଢ଼ିଉଠେ ଗୋଟିଏ ଗାଁର ମଣିଷ ଭଳି । ଗଳିର ଗୋଟାଏ ପାଖ ବନ୍ଦ, ତେଣୁ ଗାଡ଼ି, ରିକ୍‌ସା ଯା'ଆସ ଖୁବ୍ କମ୍ ।

ସେହି ଘରେ ପୁଣି କିଛି ଦିନପାଇଁ ଅତିଥି ହୁଅନ୍ତି ଆମର ବନ୍ଧୁ ଶ୍ରୀ ହରିହର ମହାପାତ୍ର । ଓକିଲାତି ପରୀକ୍ଷା ଦେବାଲାଗି ବୋଧହୁଏ ସେଠାରେ ତାଙ୍କର ପ୍ରସ୍ତୁତି । ସ୍ୱର୍ଗତ ବାଳକୃଷ୍ଣ କରଙ୍କ ଉଦ୍ୟମରେ ତାଙ୍କ ସାରସ୍ୱତ ପ୍ରେସରୁ 'ଆନନ୍ଦଲହରୀ ଉପନ୍ୟାସ ମାଳା' ପ୍ରକାଶନର ଯୋଜନା ପ୍ରସ୍ତୁତ କରାଯାଇଥାଏ ।

ଏହି ଉଦ୍ୟମଟି ନୂଆ ନୂଆ ଲେଖକମାନଙ୍କ ସହିତ ଅନ୍ୟମାନଙ୍କୁ ମଧ ଆକର୍ଷଣ କରେ । ଆନନ୍ଦଲହରୀ ଉପନ୍ୟାସ ମାଳା ପାଇଁ ଖଣ୍ଡିଏ ଛୋଟ ଉପନ୍ୟାସ ଲେଖିଦେବାକୁ ବାଳକୃଷ୍ଣ ବାବୁଙ୍କର ଆହ୍ୱାନ ଆସେ ମୋ ପ୍ରତି । ସମୟ ମାତ୍ର ଦୁଇଟି ମାସ । ସେଇ ଦୁଇ ମାସ ମଧରେ ଲେଖାହୁଏ ମୋର ପ୍ରଥମ ଉପନ୍ୟାସ—'ମାଟିର ମଣିଷ' ।

ମୂଳ ଗଳ୍ପଟିକୁ ଶୁଣିଥିଲି, ପୁରୀ ଜିଲ୍ଲା ଡେଲାଙ୍ଗ କେନ୍ଦ୍ର ସମବାୟ ଷ୍ଟୋର ସାମ୍ନାରେ ମୁଗବେଙ୍ଗଳା ପକାଉଥିବା ଜଣେ ସମିତିର ସଭ୍ୟଙ୍କ ମୁହଁରୁ ନିଜ କାହାଣୀ ସଙ୍ଗେ ସାନଭାଇର ବ୍ୟବହାର । ସେଇ ଦିନୁ କଥାଟା ମୋର ମନଭିତରେ ଲାଗିରହିଥିଲା । କୁଜଙ୍ଗ, ପୁରୀ ଓ କଟକଜିଲ୍ଲାର ଗାଁ ଗାଁ ବୁଲି ସେଇକଥାଟି ମୁଣ୍ଡ ଭିତରେ ପାକଳ ଧରି ଯାଇଥାଏ । ତାହା ସହିତ ଗାଁ ଜୀବନର କେତେ ବାସ୍ତବ ଚିତ୍ର ଆଖି ଆଗରେ ନାଚୁଥାଏ ।

ସେମିତି କଟକଜିଲ୍ଲାର ଗାଁ ଗାଁ ବୁଲୁଥିଲାବେଳେ ବାଳକୃଷ୍ଣବାବୁଙ୍କ ବରାଦ ମନେପଡ଼େ । ଆଉ ଗଳ୍ପଟି ମୋର ମୁଣ୍ଡଭିତରେ ତାହାର ଛାଞ୍ଚ ବାନ୍ଧେ । ମନେପଡ଼େ ତାରପୁରଠାରୁ ସାଇକଲ ଚଢ଼ି କଟକ ଆସୁଥିବା ବାଟରେ 'ମାଟିର ମଣିଷ' ବହିର ପହିଲି ଦି'ଧାଡ଼ି କବିତା ବୋଲି ବୋଲି ସାଇକେଲ ଚଲାଉଥିଲି ।

''ଦୁନିଆର ହାଟେ କୋଟି ହୀରାନୀଳା
ମଣି ମାଣିକର ତୁଲ,
ମାଟିର ପିତୁଳା ଗଢ଼ି ରଖିଦେଲି
କିଏ ପଚାରିବ ମୂଲ !''

ଗସ୍ତଭିତରେ ରହଣି ଜାଗାରେ ପୁଣି କଟକ ଫେରି ରାତାରାତି ଲେଖି ଶେଷକରେଁ ମୋର ଉପନ୍ୟାସ । ଲେଖାସାରିବା ସଙ୍ଗେ ସଙ୍ଗେ ପଢ଼ିଶୁଣାଏଁ ବୈକୁଣ୍ଠବାବୁ, ଭାଗୁ ଓ ବୃନ୍ଦାବନ ପ୍ରଭୃତିଙ୍କୁ । ବୈକୁଣ୍ଠବାବୁ ପାଣ୍ଡୁଲିପି ଶୁଣିସାରି ଲେଖନ୍ତି ତାଙ୍କର 'ମୂକ ଭଗବାନ୍' କବିତା ଉପନ୍ୟାସର ମୁଖବନ୍ଧ ଭାବରେ ।

ବାଳକୃଷ୍ଣବାବୁଙ୍କ ସାରସ୍ୱତ ପ୍ରେସ୍ ସେତେବେଳେ ନିମଚୌଡ଼ି ଭଡ଼ାଘରେ ଅବସ୍ଥିତ ଥାଏ । ଅଳ୍ପ ଦିନ ଭିତରେ ବହିଖଣ୍ଡି ମୁଦ୍ରିତ ହୋଇ ପ୍ରକାଶ ପାଏ । ମୋହ ସହିତ ପରାମର୍ଶ କରି ପାଣ୍ଡୁଲିପି ଧରି ପ୍ରୁଫ୍ ସଂଶୋଧନ କରନ୍ତି ବସନ୍ତକୋକିଳ ଶ୍ରୀ ଭଗବାନ ପତି । ସେତେବେଳେ ସମବାୟ ବିଭାଗର ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର ସହଯୋଗ ମୁଖପତ୍ରରେ ପ୍ରକାଶ କରନ୍ତି ତା'ର ଆଲୋଚନା—''ଉପଯୁକ୍ତ ମନ୍ଦିରକୁ ଉପଯୁକ୍ତ ମୂର୍କୁଶିଆଳି'' । ପରିହାସପ୍ରିୟ ସ୍କୁଲ ସହାଧାୟୀ ପୂର୍ଣ୍ଣାନନ୍ଦ ମହାନ୍ତି କହନ୍ତି, ମୋହର ଉପନ୍ୟାସ 'ମାଟିର ମଣିଷ' ସହିତ ବୈକୁଣ୍ଠନାଥଙ୍କର କବିତା 'ଗୋବର ଗଣେଶ' ଭଳି ଖାସା ମାନୁଛି ।

ପୂର୍ଣ୍ଣାନନ୍ଦଙ୍କ ମନ୍ତବ୍ୟକୁ ବୈକୁଣ୍ଠବାବୁ ଯଥାର୍ଥ ବୋଲି ସମର୍ଥନ କରନ୍ତି ହସି ହସି । 'ମାଟିର ମଣିଷ' ପଢ଼ିସାରି ଶ୍ରୀ ନବକୃଷ୍ଣ ଚୌଧୁରୀ ଲେଖନ୍ତି ଯେ ଆଖିଲୁହ ପୋଛି ଦେଇଛନ୍ତି । ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁଙ୍କ ପାଖରୁ ଆସେ ଉଚ୍ଛ୍ୱସିତ ପ୍ରଶଂସାପତ୍ର । ସେଇପରି ବାଟରେ ଘାଟରେ ଅନେକ ପରିଚିତ ଓ ଅପରିଚିତ ବନ୍ଧୁଙ୍କଠାରୁ ପ୍ରଶଂସା ବାଣୀ ଶୁଣେଁ । ସେଥିସଙ୍ଗେ ସମାଲୋଚନା ମଧ୍ୟ ଶୁଣେଁ ବନ୍ଧୁମାନଙ୍କର । 'ମାଟିର ମଣିଷ' ଲେଖି ମୁଁ ସେତେବେଳେ ମଧ୍ୟମ ଶ୍ରେଣୀ (Enter-class) ରେଲ୍ ଗାଡ଼ିରେ ଯାତାୟାତ କରେଁ; ଅର୍ଥାତ୍ ଗାନ୍ଧୀଙ୍କ ଭଳି ମୋର ତୃତୀୟ ଶ୍ରେଣୀରେ ଯିବାହିଁ ଉଚିତ । ଶେଷରେ ଏବେ କେହି କେହି ଯୁବ ଲେଖକବନ୍ଧୁ ବୈକୁଣ୍ଠନାଥଙ୍କୁ କହନ୍ତି ଯେ ମୁଁ ପ୍ରକୃତରେ 'ମାଟିର ମଣିଷ' ଲେଖି ନାହିଁ । ଆଉ କାହାରି ମତ—ଲେଖିଛି ତାହା ମୋର ସାନଭାଇ ଭାଗୁ । କାରଣ ସେମିତି ଆଉ ଖଣ୍ଡେ ବହି ତ ମୁଁ ଲେଖି ପାରିନି ! ଶ୍ରୀମତୀ ସରଳା ଦେବୀ ମଧ୍ୟ ମୋତେ ଏଇ ପ୍ରଶ୍ନ କରନ୍ତି । ତାହାର ପ୍ରକାଶ ସ୍ୱତ୍ୱ ମଧ୍ୟ ମୋର ପ୍ରାପ୍ୟ ନୁହେଁ ବୋଲି କେହି କେହି ବନ୍ଧୁ ଜଣାନ୍ତି ମୋତେ ! 'ତିନି ତୁଣ୍ଡରେ ଛେଳି କୁକୁର' ଭଳି ମୋର ମଧ୍ୟ 'ମାଟିର ମଣିଷ' ଲାଭାଂଶ ପ୍ରାପ୍ୟ ନୁହେଁ ବୋଲି ଧାରଣା ଜନ୍ମେ; ମାତ୍ର ପ୍ରକାଶକଙ୍କ ଦୟାରୁ ଯେତିକି ତହିଁରୁ ମିଳେ—ଅର୍ଥମନର୍ଥଂ ଭାବୟ ନିତମ୍—ନାସ୍ତିତତଃ ସୁଖଃ ଲେଶ ସତ୍ୟମ୍'' ପିଲାଦିନୁଁ ମୁଖସ୍ଥ ମୋର ଥିଲେ ବି ତା'ରି ଭାବନାହିଁ ସବୁବେଳେ ତ କ'ଣ ସୁଖପ୍ରଦ ହୋଇ ମୋର ରହିଗଲା !

ଆହୁରି ସେହି ଘରେ ରଚିତ ହୁଏ ମୋର ଗୀତିନାଟ୍ୟ 'ସୌମ୍ୟା' । ଆଇନ୍ ପରୀକ୍ଷାର୍ଥୀ ବନ୍ଧୁ ଶ୍ରୀ ହରିହର ମହାପାତ୍ର ପ୍ରମୁଖଙ୍କ ପ୍ରଶଂସା ଲାଭକରି ଥିଲି ତାଙ୍କ ସମକ୍ଷରେ ରଚନାଟି ପଢ଼ି ।

ବାବାଜି ଯମୁନା ଦାସ ଛଦ୍ମନାମରେ ପୁଣି ରଚିତ ହୁଏ ମୋର କବିତା—'ଗାନ୍ଧାରୀର ଆଶୀର୍ବାଦ' ସେଇ ଘରେ ।

ଜନନୀର ପଦେ ନତ କରି ଶିର
ମାଗେ କୁରୁ ଚୂଡ଼ାମଣି-
ଶତ୍ରୁ-ସଇନ ପଦେ ଦଳିଆସେଁ
ଭିକ୍ଷା ଦିଅ ଜନନୀ

× × ×

ଶତେକ ପୁତ୍ର ଜନନୀ ଭାଷଇ
କୋମଳ ମଧୁର ଗୀର—
''ଅଭିଳାଷ ଯେବେ ରଣ ପ୍ରାଙ୍ଗଣେ
ଅବତାର ଆରେ ବୀର !
କୁରୁମଣି ! ଘେନ ଆଶିଷ ତୋହର
ଜନନୀର ବରାଭୟ
ଅକ୍ଷୟ ହେଉ ପୁଣ୍ୟ ଜଗତେ
ଧର୍ମର ହେଉ ଜୟ ।''

'କାଳିନ୍ଦୀଚରଣ' ନାମଟି 'ଯମୁନା ଦାସ' ଶବ୍ଦରୁ ସୂଚିତ ହେଲେ ମଧ୍ୟ ସେଥିରେ 'ବାବାଜି' ଶବ୍ଦ ଯୋଗ କରି ଦେବାଦ୍ୱାରା ଅଧିକ ଦୁର୍ବୋଧ୍ୟ ହୋଇପଡ଼େ । ସେଥିଲାଗି ମୁଁ ବନ୍ଧୁମାନଙ୍କ ପାଖରେ ନାଚାର ହୁଏଁ । ସେତିକିବେଳେ ସେଲ୍‌ମା ଲେଗର ଲଫ୍‌ଙ୍କର ନୋବେଲ ପୁରସ୍କାରପ୍ରାପ୍ତ 'ଆଉଟ୍ କାଷ୍ଟ' ଉପନ୍ୟାସର ଅନୁବାଦ କରି ଭଗବତୀ (ଭାଗ୍ରୁ) ପଠାନ୍ତି 'ଉତ୍କଳ ସାହିତ୍ୟ'କୁ । ଧାରାବାହିକ ଭାବରେ ତାହା ପ୍ରକାଶିତ ହେଉଥାଏ ଉକ୍ତ ମାସିକ ପତ୍ରରେ ।

ରାଜନୀତି କ୍ଷେତ୍ରରେ ଭଗବତୀଙ୍କର ଉଗ୍ର ମତବାଦ ହେତୁ ବୈକୁଣ୍ଠବାବୁଙ୍କ ସହିତ ବହୁତ ତର୍କବିତର୍କ ହୁଏ । ଭଗବତୀଙ୍କର ଗାନ୍ଧୀବାଦ ସହିତ ଶ୍ରଦ୍ଧେୟ ବିଶ୍ୱନାଥ କରଙ୍କର ରାଜନୀତି ସମ୍ପର୍କୀୟ ବିଚାରଧାରା ମାନ୍ଦା ହୋଇଥିବାରୁ ଉଭୟଙ୍କ ଭିତରେ ତୀବ୍ର ଯୁକ୍ତିତର୍କର ଜୁଆର ଛୁଟେ ।

ଥରେ ଏହି ତର୍କବିତର୍କ ଭିତରେ ବୈକୁଣ୍ଠନାଥ ସୂଚନାଦିଅନ୍ତି—ବିଶ୍ୱନାଥବାବୁ ମାନ୍ଦାଦଳିଆ ସରକାରୀ ସମର୍ଥକ ବୋଲି ତମର ଯଦି ତାଙ୍କ ସହିତ ମତଭେଦ, ତେବେ ତୁମେ 'ଉତ୍କଳସାହିତ୍ୟ' ପତ୍ରିକାରେ ନିଜ ଲେଖା ପ୍ରକାଶ କରୁଛ କିପରି ?

ସେହି ମାତ୍ର ପଦେ କଥାରେ ଭଗବତୀ ପର ଦିନ ସାକ୍ଷାତ୍ କରନ୍ତି ବିଶ୍ୱନାଥବାବୁଙ୍କ ସହିତ ।

ତାଙ୍କୁ ଜଣାଇ ଦିଅନ୍ତି—''ଆପଣଙ୍କ ସହିତ ରାଜନୀତି କ୍ଷେତ୍ରରେ ମୁଁ ଏକମତ ନୁହେଁ । ତେଣୁ ମୋ ଲେଖା ଆଉ ଆପଣଙ୍କ ପତ୍ରିକାରେ ପ୍ରକାଶ କରିବାକୁ ମୁଁ ଚାହେଁ ନାହିଁ ।''

ଭଗବତୀ ଅପ୍ରକାଶିତ ବାକି ପାଣ୍ଡୁଲିପିତକ ତାଙ୍କ ପାଖରୁ ଘେନି ଆସନ୍ତି ଏଇଭଳି ସୁସ୍ପଷ୍ଟ ଭାଷାରେ କହି ।

ଏହିପରି ଅପ୍ରତ୍ୟାଶିତ ବ୍ୟବହାରରେ କେବଳ ବିଶ୍ୱନାଥବାବୁ ବିସ୍ମିତ ହୁଅନ୍ତି ନାହିଁ, ବୈକୁଣ୍ଠବାବୁ ମଧ୍ୟ କେତେ ଥର ମୋ ଆଗରେ ଘଟଣାଟିର ପୁନରାବୃତ୍ତି କରନ୍ତି । ବିଶ୍ୱନାଥ

ବାବୁ ଗାନ୍ଧୀ-ବିରୋଧୀ ଓ ପ୍ରତିକ୍ରିୟାଶୀଳ ମନୋବୃତ୍ତିଦ୍ୱାରା ପରିଚାଳିତ ବୋଲି ତାଙ୍କୁ ମୁହେଁ ମୁହେଁ ଜଣାଇ ଦେବା ଭଳି ଔଦ୍ଧତ୍ୟ କିମ୍ବା ଦୁଃସାହସ ବୈକୁଣ୍ଠବାବୁଙ୍କ ମନରେ ବିସ୍ମୟ ସୃଷ୍ଟି କଲେ ହେଁ ମୁଁ ଭଗବତୀର ସେହି ବ୍ୟବହାର ସହିତ ଅଭ୍ୟସ୍ତ ଥିଲି । ପାଣ୍ଡୁଲିପିଟିକୁ ବିଶ୍ୱନାଥ ବାବୁଙ୍କଠାରୁ ଫେରାଇଆଣି ସେ ଅବାକ୍ ବୈକୁଣ୍ଠବାବୁଙ୍କୁ ମଧ ଦେଖାଏ । ସେହି ଘଟଣାକୁ ବୈକୁଣ୍ଠବାବୁ କଥାଛଳରେ ପୁନରାବୃତ୍ତି କରନ୍ତି । ଯାଚକଲେନ୍‌ର ଘରଟିରେ ଏହି ରୂପେ କେତେକ ଶ୍ରେଷ୍ଠରଚନା ମୋର କେବଳ ଜନ୍ମଲାଭ କରେ ନାହିଁ, ଜନ୍ମଲାଭ କରନ୍ତି କନ୍ୟା ନନ୍ଦିନୀ ଓ ପୁତ୍ର ଶିଶିର ।

ସର୍ବପ୍ରଥମେ ଗୋଟିଏ କନ୍ୟା ଓ ଗୋଟିଏ ପୁତ୍ର ପୁରୀରେ ଜନ୍ମଲାଭ କରି ଯେପରି ନଷ୍ଟହୋଇ ଯାଇଥାନ୍ତି ଏହା ପିତୃତ୍ୱର ଚରମ ବ୍ୟର୍ଥତା ରୂପେ ଅହରହ ମୋତେ ଦଂଶନ କରେ । ଦେହ ମନ ସର୍ବାଙ୍ଗ କ୍ଷୋଭ ଓ ଆତ୍ମଗ୍ଲାନିରେ ଜଳିପୋଡ଼ି ଭସ୍ମସାତ୍ ହୁଏ, ଯେପରି ଅବା ମୋର ସବୁ ଅସ୍ତିତ୍ୱର ଦାମ୍ଭିକତା । ପ୍ରତିକାର ଲାଗି ଲଢ଼ିବାକୁ ଯାଇ ସବୁ ବିଶ୍ୱାସ ବିଚାର ବିନିମୟରେ ଅବା ଅଣ୍ଡାଳି ହୁଏଁ ଅନ୍ଧାରଭିତରେ । ନିଜେ ନିଜକୁ ନିଃସନ୍ତାନ ଅପବାଦରୁ ଉଦ୍ଧାର କରିବାପାଇଁ ଜଳାଞ୍ଜଳି ଦିଏଁ ମୋର ସମସ୍ତ ଯୁକ୍ତି ଓ ବିଶ୍ୱାସକୁ । ଅଯୌକ୍ତିକ କୁସଂସ୍କାର ବୋଲି ଯାହା ଭାବୁଥିଲି—ମନ୍ତ୍ର, ତନ୍ତ୍ର, ଗୁଣି, ଗାରିଡ଼ି—ପୁରୀଠାରେ ଯେପରି ଯେ ଯାହା ବତାଇଲେ ଅନ୍ଧବିଶ୍ୱାସୀ ହୋଇ ସବୁ ଉପଚାର କରେଁ । ତା'ପରେ ପୁରୀରୁ କଟକ ଆସି ମାଟାର୍ନିଟି ୱାର୍ଡ଼କୁ ଯାଇ ଥରକୁ ଥର ପରାମର୍ଶ ମଧ ଲୋଡ଼େଁ । ଯାହା ଫଳରେ ହେଉ ବା ନ ହେଉ, ପ୍ରଥମ ସନ୍ତାନ କନ୍ୟାଟି ଉପରେ ଅଜାଡ଼ିଦେଉଁ ଆମେ ସବୁ ପ୍ରକାର ଯତ୍ନ । ସେଥିଲାଗି ନିୟମିତ ଶିଶୁପାଳନ ଓ ଶିଶୁଚିକିତ୍ସାର ବହି କିଣି ପଢ଼ିବାକୁ ହୁଏ । ଶ୍ରୀମତୀ ମାଳତୀ ଦେବୀ ଓ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କଠାରୁ ମଧ ପ୍ରାମାଣିକ ପୁସ୍ତକମାନ ମିଳେ । ରାଜନୀତିଠାରୁ ଆରମ୍ଭ କରି ଶିଶୁପାଳନ ପର୍ଯ୍ୟନ୍ତ ଏକ ଆଧୁନିକ ଲାଇବ୍ରେରୀ ଥାଏ ନବବାବୁଙ୍କ ଘରେ ।

କନ୍ୟାଜନ୍ମ ପରେ ଅଳ୍ପ କାଳ ମଧରେ ଆମେ ତାହାର ଯତ୍ନନେବା ଦୂରେ ଥାଉ, ସେ ନିଜେ ନିଜର ଯତ୍ନନେବାକୁ ଯେପରି ଆଗଭର । ସତେ ଅବା ତା' ପାଖରେ ଆମେ ବାପ ମା କାକୁସ୍ଥହୋଇ ତାକୁ—''ତୋତେ ହୋ ତୁହି ରକ୍ଷାକର, ମୁଁ ଛାର ମଣିଷମାତର'' ବୋଲି ଗୁହାରି କରୁଁ ! ସେହି ଯାଚକଲେନ୍ ଘରେ ହିଁ ସବୁଜ ସାହିତ୍ୟ ସମିତିର ମୂଳଦୁଆ । ସମବାୟ-ଉପବିଧି ଅନୁଯାୟୀ ପ୍ରସ୍ତୁତ କରାହୁଏ ସବୁଜସାହିତ୍ୟ-ସମିତିର ଏକ ଉପବିଧି । ସମବାୟ ଆଇନ୍ ଅନୁସାରେ ଏହାକୁ ରେଜିଷ୍ଟ୍ରି କରିବାର ପରିକଳ୍ପନା ମଧ ଥାଏ ।

ଶରତଚନ୍ଦ୍ର, ହରିହର, ବୈକୁଣ୍ଠନାଥ ଏବଂ ମୁଁ ଏକାଠି ହୋଇ ସମବାୟ ସମିତି ଢାଞ୍ଚାରେ ସବୁଜ ସାହିତ୍ୟ ସମିତି''ର ନିୟମାବଳୀ ଚିଠା କରାହୁଏ । ସଙ୍ଗେ ସଙ୍ଗେ ଆରମ୍ଭ କରି ଦିଆଯାଏ ଗୋଟିଏ ପରେ ଆଉ ଗୋଟିଏ ପୁସ୍ତକ ପ୍ରକାଶ । ତାହାର ମୁଖ୍ୟଦାୟିତ୍ୱ ଗ୍ରହଣ କରନ୍ତି ଶ୍ରୀ ଶରତ୍‌ଚନ୍ଦ୍ର ମୁଖାର୍ଜୀ ।

ଏହିରୂପେ କଟକ ନେତୃସ୍ଥାନୀୟ ପ୍ରବୀଣ ବ୍ୟକ୍ତିମାନଙ୍କର ଚକ୍ଷୁଃଶୂଳ ହୋଇଉଠେ ଆମର ଯୁବ-ପ୍ରଚେଷ୍ଟା । କାରଣ ଆଉ କିଛି ନୁହେଁ—''ବାରଶହ ବଢ଼େଇରେ ଦାୟ ନା ପୁଅରେ ଦାୟ''—କୋଣାର୍କ ମନ୍ଦିର ମୁଣ୍ଡି ମାରିବାକୁ ବାରଶ ବଢ଼େଇ ପାରିଲେ ନାହିଁ, କିନ୍ତୁ

ପାରିଲା ଜଣେ ବାରବର୍ଷର ବଢ଼େଇପୁଅ—କି ଲଜ୍ଜା, କି ଅପମାନ ବାରଶହ ଦକ୍ଷ କାରିଗରଙ୍କ ପ୍ରତି ! ସେଇ ପିଲାଟାକୁ ନିକାଶ ନ କଲେ ରକ୍ଷା କେଉଁଠି !

'ସବୁଜ ସାହିତ୍ୟ ସମିତି'ର ଯୋଜନା ଦିନକୁ ଦିନ ନୂଆ ନୂଆ ରୂପରେ ବିସ୍ତାର ଲାଭକଲେ । ପ୍ରତି ମାସରେ 'ଯୁଗବୀଣା' ପତ୍ରିକାଖଣ୍ଡିର ପ୍ରକାଶନ ସାଙ୍ଗକୁ ନୂଆ ନୂଆ ଓଡ଼ିଆ ବହିର ବିଜ୍ଞାପନ କଟକରେ ଉତ୍କଳୀୟ ଶିକ୍ଷା-ସଂସ୍କୃତିର ପୁରୋଧା ଓ ସ୍ତମ୍ଭମାନେ ରହୁଥିବା ସ୍ଥଳେ ଆମେ ଜଣକେତେ ଅଳ୍ପ ବୟସ୍କ ଯୁବକ ବାହାରି ସାହିତ୍ୟ ସଂସ୍କୃତି କ୍ଷେତ୍ରରେ ଏତେବଡ଼ ଉଗ୍ର ନେତୃତ୍ୱ ଗ୍ରହଣ କରିବୁଁ—ତାହା କ'ଣ କେବେ ହେଲେ ସହ୍ୟ କରାଯାଇ ପାରେ ? କି ଲଜ୍ଜା ! କି ଅପମାନ !

'ସବୁଜ ସାହିତ୍ୟ ସମିତି'ର ପ୍ରକାଶିତ ପୁସ୍ତକମାନ ଓଡ଼ିଶାର ଚତୁର୍ଦ୍ଦିଗରେ ବ୍ୟାପିବାକୁ ଲାଗେ । ସେଥିସହିତ ପ୍ରତି ଇଂରାଜୀ ମାସର ଶେଷ ସପ୍ତାହରେ ପ୍ରକାଶିତ ହେଉଥିବା 'ଯୁଗବୀଣା' ମାସିକ ପତ୍ରିକାଖଣ୍ଡିକ ମଧ ମାତ୍ର ଦୁଇଅଣାର ଡାକଟିକଟ ଅଗ୍ରିମ ପଠାଇଲେ ଗୋଟିଏ ସଂଖ୍ୟା ନମୁନା ସରୂପ ଦିଆଯାଏ—(୧) ଡି.ପି.ଗୁରୁ—ସମ୍ବାଦପତ୍ର ବିକ୍ରେତା, ସମ୍ବଲପୁର (୨) ବାରିପଦା ବୁକ୍ ଡିପୋ—ବାରିପଦା (୩) ବାଣୀ ସାହିତ୍ୟ ମନ୍ଦିର—ଭଦ୍ରକ (୪) ନୀଳାଚଳ ପୁସ୍ତକାଳୟ—ସିଂହଦ୍ୱାର ପୁରୀ (୫) ଷ୍ଟୁଡେଣ୍ଟସ୍ ଷ୍ଟୋର—ବ୍ରହ୍ମପୁର, ଗଞ୍ଜାମ ଓ କଟକର ପ୍ରାୟ ସବୁ ବହିଦୋକାନରେ ସବୁଜସାହିତ୍ୟ-ସମିତିର ପୁସ୍ତକମାନ ମିଳେ ।

କବିବର ଚିନ୍ତାମଣି ମହାନ୍ତିଙ୍କ ଲିଖିତ 'ଶନିସପ୍ତା', ଦିବ୍ୟସିଂହ ପାଣିଗ୍ରାହୀଙ୍କ ଉପନ୍ୟାସ ''ତୁ ମୋ ମା', ମାୟାଧର ମାନସିଂଙ୍କ 'ପୂଜାରିଣୀ' ସଚ୍ଚିଦାନନ୍ଦ ରାଉତରାୟଙ୍କ କବିତା 'ପାଥେୟ' ଓ 'ପୂର୍ଣ୍ଣିମା', ଶରତ ଚନ୍ଦ୍ର ମୁଖାର୍ଜିଙ୍କ 'ପଞ୍ଚପୁଷ୍ପ', ବୈକୁଣ୍ଠନାଥଙ୍କ ନାଟକ 'ମୁକ୍ତିପଥେ', ହରିଶ୍ଚନ୍ଦ୍ର ବଡ଼ାଲ୍‌ଙ୍କର 'ଦେଶର ଡାକ', ହରିହର ମିଶ୍ରଙ୍କର 'ଆଶୀର୍ବାଦ' ନାଟକ ସମେତ 'ବାସନ୍ତୀ' 'ସବୁଜକବିତା', ପ୍ରଭୃତି ଗ୍ରନ୍ଥର ବିଜ୍ଞାପନ ବହନକରି ବାର୍ଷିକ ଦୁଇଟି ମାତ୍ର ମୁଦ୍ରା ବିନିମୟରେ ବର୍ଷରେ ବାରଖଣ୍ଡି 'ଯୁଗବୀଣା' ମିଳିଥାଏ ।

ଦ୍ରୁତ ଗତିରେ ବିସ୍ତାରଲାଭ କରେ ସବୁଜ ସାହିତ୍ୟ-ସମିତିର ପରିସର ଆଉ ଚହଳ ପକାଇ ଦିଏ ଓଡ଼ିଶାବ୍ୟାପୀ । ତାରୁଣ୍ୟର ଏହି ସୁନିର୍ଦ୍ଦିଷ୍ଟ ଜୟଯାତ୍ରାର ପଦକ୍ଷେପ ସ୍ଥାନୀୟ କେତେକ ପ୍ରବୀଣ ଲେଖକ ପୁଣି ସାହିତ୍ୟିକମାନଙ୍କ ପକ୍ଷରେ ହୁଏ ଦୃଷ୍ଟିକଟୁ ।

କଟକରେ ମୁଁ ସମବାୟ ବ୍ୟାଙ୍କର ମ୍ୟାନେଜର ଆଉ ମୋର ବନ୍ଧୁ ଶ୍ରୀ ଶରତଚନ୍ଦ୍ର ମୁଖାର୍ଜୀ ସେଇ ବିଭାଗର ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର ଥାଇ ମଧ ସବୁଜ ସାହିତ୍ୟ ସମିତି ଭଳି ଏକ ବଳିଷ୍ଠ ସାହିତ୍ୟ-ସଂଗଠନ ଗଢ଼ିଛୁଁ । ପୁଣି ଏହା ବ୍ୟବସାୟମୂଳକ ଏକ ପ୍ରକାଶନ ସଂସ୍ଥା ହୋଇଥିବା ହେତୁ ଶ୍ରୀ ଶରତଚନ୍ଦ୍ର ମୁଖାର୍ଜୀ ସମବାୟ ବିଭାଗର ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର ରୂପେ ପ୍ରତ୍ୟକ୍ଷଭାବେ ଏଥିସହ ସଂପୃକ୍ତ । ଏହା ନିୟମବିରୁଦ୍ଧ । ତାଙ୍କ ସହିତ ମୁଁ ମଧ ସମବାୟ ବ୍ୟାଙ୍କ୍‌ର ମ୍ୟାନେଜର ରହି ସହଯୋଗ କରିଥିବାରୁ ଦୋଷୀ ସାବ୍ୟସ୍ତ ହୁଏଁ ।



# ଯେଉଁ ଡାଳେ ବସେଁ ସେ ଡାଳ ଭାଙ୍ଗେ

କେବଳ ତ ସାହିତ୍ୟରେ ନୁହଁ, ସାମାଜିକ ଜୀବନରେ ମଧ୍ୟ ଆମେ ଥିଲୁଁ ସମ୍ପୂର୍ଣ୍ଣ ଉଦାରପନ୍ଥୀ । ଧର୍ମଭେଦ ପୁଣି ନାରୀମାନଙ୍କ ପର୍ଦାପ୍ରଥା ଆଦି ପୁରୁଣା ରୀତିକୁ ଆମେ କେବଳ ଯେ ବିଶ୍ୱାସ କରୁ ନଥିଲୁଁ, ସେତିକି ନୁହେଁ—ପୂରାପୂରି ଘୃଣା କରୁଥିଲୁଁ । ଅତଏବ ସମାଜର ସ୍ତମ୍ଭରୂପେ ରହିଥିବା ବ୍ୟକ୍ତିମାନଙ୍କ ପକ୍ଷରେ ଏଭଳି ବିପ୍ଳବାତ୍ମକ ସଂସ୍କାରବାଦ ସହ୍ୟ ହୁଅନ୍ତା କେଉଁଭୂମିକା ଘେନି ?

ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ବଙ୍ଗୀୟ ବ୍ରାହ୍ମସମାଜରେ, ଅନ୍ନଦାଶଙ୍କର ଖ୍ରୀଷ୍ଟୀୟ ଆମେରିକା ସମାଜରେ, ଶରତ୍‌ଚନ୍ଦ୍ର ଅବ୍ରାହ୍ମଣରେ ବିବାହ କରନ୍ତି । ହରିହର, ବୈକୁଣ୍ଠନାଥ କିମ୍ବା ମୁଁ ପୂରାପୂରି ସାମାଜିକ ଗଣ୍ଡିଭିତରେ ବିବାହ କରି ସୁଦ୍ଧା ଆମ ପରସ୍ପର ମଧ୍ୟରେ ଅବାଧ ମିଶ୍ରଣ ଓ ପାନାହାର ସଙ୍ଗେ ସମ୍ମିଳିତ ସାହିତ୍ୟିକ ପ୍ରଚେଷ୍ଟା ସ୍ଥିତିଶୀଳମାନଙ୍କର ସେତେବେଳେ ଚକ୍ଷୁଃଶୂଳ ହେବା ସ୍ୱାଭାବିକ । ଯଥାର୍ଥରେ ଆମେ ପର୍ଦାପ୍ରଥାର ଘୋର ବିରୋଧୀ ଥିଲୁଁ । ବିଚାରୁଥିଲୁଁ ତାହାକୁ ଏକ ମଧ୍ୟଯୁଗୀୟ ଅସ୍ୱାଭାବିକ ବ୍ୟବସ୍ଥା ଭାବରେ । ସର୍ବୋପରି ବନ୍ଧୁତା ଆମର ପ୍ରତିଷ୍ଠିତ ଏକ ସୁମାର୍ଜିତ ସମୁଚ୍ଚ ସ୍ତରରେ, ଯାହା ଆଜି ଅର୍ଦ୍ଧଶତାବ୍ଦୀ ଅତିକ୍ରମ କରି ମଧ୍ୟ ଉଜ୍ଜ୍ୱଳତର ହୋଇଛି ସିନା, ମଳିନ ପଡ଼ିଥିବା କେବେ ହେଲେ ସ୍ମରଣକୁ ଆସି ନାହିଁ ।

ସେଥିସହିତ ବନ୍ଧୁ-ପତ୍ନୀମାନଙ୍କ ପରସ୍ପର ମଧ୍ୟରେ ବନ୍ଧୁତା ଅତୁଟ ଓ ଅବିକଳ । ସେଇ ବିଚାରରୁ ସବୁଜ ଯୁଗପ୍ରତିଷ୍ଠାରେ ଦାନ ସାହିତ୍ୟ ତୁଳନାରେ ବନ୍ଧୁତା ହିଁ ଅଧିକ ବୋଲି ଚାକ୍ଷୁଷ ପ୍ରମାଣ ବିଦ୍ୟମାନ । ତାହାହିଁ ବୋଧହୁଏ ସାହିତ୍ୟ ଶବ୍ଦଟିର ଅସଲ ଆକ୍ଷରିକ ଓ ମୌଳିକ ମର୍ମ । ସେଇ ବନ୍ଧୁତାର ପରୀକ୍ଷା ନିରୀକ୍ଷାଲାଗି କ୍ଷେତ୍ର ପ୍ରସ୍ତୁତ ହେବା ମଧ୍ୟ ସ୍ୱାଭାବିକ ।

ଅତଏବ, ଆମ ବିରୋଧରେ ଈର୍ଷାନ୍ୱିତ ହୁଅନ୍ତି କଟକୀ ସମାଜର ବିଶିଷ୍ଟ ସ୍ତମ୍ଭମାନେ, ଯଥା ସର୍ଗତ ରାୟବାହାଦୁର ଲକ୍ଷ୍ମୀଧର ମହାନ୍ତି, ରାୟବାହାଦୁର ଚିନ୍ତାମଣି ଆଚାର୍ଯ୍ୟ, ରାୟବାହାଦୁର ଭିକାରିଚରଣ ପଟ୍ଟନାୟକ, ରାୟବାହାଦୁର ଗୋପାଳଚନ୍ଦ୍ର ପ୍ରହରାଜ ପ୍ରମୁଖ ବ୍ୟକ୍ତିମାନେ । ଏବେ ସୁଦ୍ଧା ବ୍ୟକ୍ତିତ୍ୱ ଓ ବିଶିଷ୍ଟତା ବିଚାରରୁ ସେମାନଙ୍କ ପ୍ରତି ଆମର ବ୍ୟକ୍ତିଗତ ଶ୍ରଦ୍ଧା ସମ୍ମାନ ଅବଶ୍ୟ ଅକ୍ଷୁଣ୍ଣ ରହିଛି । ସେତେବେଳେ ସମବାୟ ବିଭାଗର ରେଜିଷ୍ଟ୍ରାର ଥାନ୍ତି ଗୋରା ଆଇ.ସି.ଏସ୍ ଏନସୋର୍ଜ ସାହେବ; ବଙ୍ଗଳାରୁ ଅଲଗା ହୋଇ ବିହାର ଓଡ଼ିଶା ଶାସିତ ହେଉଥାଏ ଗୋଟିଏ ପ୍ରଦେଶ ଭାବରେ ।

ଏନସୋର୍ଜ ସାହେବଙ୍କ ସହିତ ସାକ୍ଷାତ୍ କରି କଟକ ପ୍ରତିନିଧି ଦଳର ଅଭିଯୋଗ ହେଲା,—ସମବାୟ ବିଭାଗରେ ଶ୍ରୀ ଶରତଚନ୍ଦ୍ର ମୁଖାର୍ଜି ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର ଓ ମୁଁ ବ୍ୟାଙ୍କ ମ୍ୟାନେଜର ରହି ବ୍ୟବସାୟ ଭିତ୍ତିରେ ଏକ ସାଧାରଣ ସାହିତ୍ୟ ସଂଗଠନ କରିଛୁଁ । ପ୍ରଚ୍ଛନ୍ନ ଭାବରେ ଆମର ରହିଛି ମଧ୍ୟ ଏକ ଟାଣୁଆ ରାଜନୀତିକ ଗାନ୍ଧୀବାଦୀ ମେଣ୍ଟ ।

ଇଂରେଜ ଆଇ.ସି.ଏ ସ୍. ଏନ୍‌ସୋର୍ଜ ସାହେବ ପ୍ରତିନିଧିବର୍ଗଙ୍କର ଯୁକ୍ତିକୁ ଖଣ୍ଡନ କରି ପ୍ରକାଶ୍ୟରେ କହିଥିବା ଜଣାପଡ଼େ— ଆମର ସାହିତ୍ୟସଂସ୍ଥା ସଙ୍ଗଠନ ଫଳରେ ସମବାୟ କ୍ଷେତ୍ରରେ ତ କୌଣସି ଅବହେଳାର ଲକ୍ଷଣ ଦେଖାଯାଉ ନାହିଁ । ପୁଣି ରାଜନୀତିକ ସ୍ୱଦେଶୀ ବା ଅସହଯୋଗ ଆନ୍ଦୋଳନରେ ଆମେ ତ କିଛି ସକ୍ରିୟ ଅଂଶ ଗ୍ରହଣ କରିବାର ପ୍ରମାଣ ନାହିଁ । ଅତଏବ ଆମ ବିରୋଧରେ କାର୍ଯ୍ୟପନ୍ଥା ଗ୍ରହଣ କରିବା ସରକାରୀ ବିଭାଗୀୟ ନିୟମଦୃଷ୍ଟିରୁ ଅବିଧେୟ । ଏନ୍‌ସୋର୍ଜ ସାହେବ ଜଣେ ଦକ୍ଷ ସରକାରୀ ପ୍ରତିନିଧି ରୂପେ ବେସରକାରୀ ପ୍ରତିନିଧିଦଳକୁ ଉତ୍ତର ଦେଇଥିଲେ ବୋଲି ସେ ଘଟଣା ଅବଶ୍ୟ ପରେ ପ୍ରକାଶ ପାଏ; କିନ୍ତୁ ଇଂରେଜ ଶାସନ ତ ଭାରତକୁ ଆସେ ବାଣିଜ୍ୟ ମାଧ୍ୟମରେ । ଆଉ ତାଙ୍କ ସଙ୍ଗେ ସଙ୍ଗେ ଲଢ଼େଇ କରି ଗାନ୍ଧୀ ମଧ୍ୟ ନିଜକୁ ଜଣେ 'ଚତୁର ବଣିକ' (I am a Shrewed Bania) ବୋଲି ଅଭିହିତ କରନ୍ତି । ଇଂରେଜ ସିଭିଲିଆନ୍ ଏନ୍‌ସୋର୍ଜ ସେହିପରି ଚତୁରତା ଓ ଦକ୍ଷତାର ସହିତ କାର୍ଯ୍ୟାନୁଷ୍ଠାନ କରିଥିଲେ ମଧ୍ୟ ସଙ୍ଗେ ସଙ୍ଗେ କୌଣସି ଆଦେଶ ମିଳି ନ ଥାଏ । ପୁଣି ବ୍ୟାଙ୍କ୍ ମ୍ୟାନେଜର କାମଟା ମୋର ତ କିଛି ସରକାରୀ ଚାକିରି ନୁହେଁ ! ବ୍ୟାଙ୍କର ସେକ୍ରେଟାରୀ ବୋର୍ଡ଼ ଅଫ୍ ଡାଇରେକ୍ଟର ସଦସ୍ୟମାନେ ସମସ୍ତେ ବେସରକାରୀ ଲୋକ । ସେଇମାନଙ୍କ ମତାମତ ଉପରେ ଚାକିରି ମୋର ନିର୍ଭର କରେ । ଅଥଚ ତାଙ୍କ ଭିତରୁ ତ କେତେକ ମୁଖ୍ୟବ୍ୟକ୍ତି ଯାଇ ଡେପୁଟେସନ୍‌ରେ ଆମ ସବୁଜ-ସାହିତ୍ୟ-ସମିତି ସଂଗଠନ ବିରୋଧରେ ପୁଣି ସେଥିସହିତ ମୁଁ ସମ୍ପୃକ୍ତ ଓ ଗାନ୍ଧୀବାଦୀ ଥିବା କଥା ଅଭିଯୋଗ କରିଥାନ୍ତି ।

ପ୍ରକାଶ୍ୟରେ କୌଣସି ସୂତ୍ରରୁ ମୋର ଚାକିରି ଚାଲିଯିବା ସଙ୍କେତ ମିଳେ ନାହିଁ ମୋତେ । ତଥାପି ମନଟା ଏକ ଦୋଳାୟମାନ ଅବସ୍ଥାରେ—କିନ୍ତୁ ଦମ୍ଭ କେବେହେଲେ ତୁଟି ନାହିଁ । ବରଂ ଆତ୍ମବିଶ୍ୱାସ ମୋର ଦୃଢ଼ରୁ ଦୃଢ଼ତର ହୋଇଉଠେ । ମନେହୁଏ— ସେତେବେଳେ ମୋ ପ୍ରତି ଯେପରି ଏହା ଏକ ଅନ୍ତର୍ନିର୍ଦ୍ଦେଶ—ଜୀବନକୁ ଗଭୀରରୁ ଆହୁରି ଗଭୀରତର ପରୀକ୍ଷା ନିରୀକ୍ଷା କରିବାର ଏକ ପରମ ସୁଯୋଗ ।

ନିଜେ ତ ମୁଁ କାହାରି କେବେ କିଛି କ୍ଷତି କରିବାକୁ ଯାଇ ନାହିଁ । ମାତ୍ର ମୁଁ ଅଳ୍ପ ବୟସରେ ସଂସାରତ୍ୟାଗୀ ସନ୍ନ୍ୟାସୀ ହେବାକୁ ସ୍ଥିର କରିଥିଲି । ଏତେ ସଂସାର କରିସାରିବା ପରେ ସେହି ଡାକରା ଯଦି ଆସେ, ତେବେ ଆଉ ଡରିବି କାହିଁକି ? ବିରାଟ ଏହି ଦୁନିଆଟାରେ ମୋହ ଭଳି ଜଣେ ଲୋକ ଓ ତା'ର ଛୋଟ ପରିବାରଟି ପାଇଁ କ'ଣ ଥାନ ମିଳିବ ନି ଟିକିଏ !

କୋଟି କୋଟି ମଣିଷ ତ ପୁଣି ସଂସାରରେ ଖାଲଢ଼ିପ ଡେଇଁ ଚାଲିଛନ୍ତି—ଖାଲି ମଣିଷ କାହିଁକି, ପଶୁପକ୍ଷୀ କୀଟପତଙ୍ଗ ଅଗଣନ ! ତାଙ୍କରି ଭିତରୁ ମାତ୍ର ଜଣେ ମୁଁ—ଆଉ ମୋ ଉପରେ ନିର୍ଭର କରୁଥିବା ଏକ କ୍ଷୁଦ୍ରପରିବାର । ସବୁଠାରୁ ହାସ୍ୟାସ୍ପଦ ପୁଣି ଅସମ୍ଭବ ବୋଲି ଆଜି ମଧ୍ୟ ମୋର ମନେହୁଏ ଯେ, କେବଳ ସାହିତ୍ୟ ରଚନାରେ ଆତ୍ମବିନିଯୋଗ କରି ଜୀବନ ନିର୍ବାହ ସମ୍ଭବପର ବୋଲି ସେତେବେଳେ ମୁଁ ବିଶ୍ୱାସ କରୁଥିଲି । ଆଉ ସେ ବିଶ୍ୱାସ ମୋହ ଭିତରେ ମଉଳିବା ପରିବର୍ତ୍ତେ ଦୃଢ଼ରୁ ଦୃଢ଼ତର ହୋଇଉଠେ ଏତେ ଧକ୍‌କା ଖାଇବା ସତ୍ତ୍ୱେ ।

ଆପଣା ପରିବାର ଯେତେ କ୍ଷୁଦ୍ର ହେଲେ ମଧ ମୋର ମାତାପିତାଙ୍କ ପ୍ରତି ଯେଉଁ କର୍ତ୍ତବ୍ୟ, ତାହାର ଦାୟିତ୍ୱ ବହନ କରିଥାନ୍ତି ଜ୍ୟେଷ୍ଠ ଦିବ୍ୟସିଂହ । ସେ ଦାୟିତ୍ୱ ତୁଲାଇବାରେ ମୋର ମଧ ନ୍ୟାୟତଃ ଗୋଟାଏ ଅଂଶ ରହିବା ଯେ ଉଚିତ—ପୈତୃକ ସମ୍ପତ୍ତିର ଉତ୍ତରାଧିକାରୀ ଭାବରେ—ସେତେବେଳେ ଏଇ ଯୁକ୍ତିଟା ରହିଯାଇଥିଲା ମୋଠାରୁ ଅନେକ ଦୂରରେ ଯେମିତି ! କାରଣ— ''ନିଜ ରକ୍ଷଣେ ଅସମ୍ଭବ ।

ସେ କାହୁଁ ପରକୁ ରଖିବ !''

କୃଷି-ସଭ୍ୟତା ମଧରେ ଯୌଥପାରିବାରିକ ଜୀବନର ଏଭଳି ଦର୍ଶନ ସାଭାବିକ ବୋଲି ମନେ ହୁଏ ।

ଏମିତି ଗୋଟାଏ ସନ୍ଧିକ୍ଷଣରେ ଚାକିରି ଛାଡ଼ିଦେବାକୁ ଭାଇନାଙ୍କ ପାଖକୁ ମୁଁ ଖଣ୍ଡେ ପତ୍ର ଲେଖେଁ । ଅବଶ୍ୟ ସେତେବେଳେ ସେ ବାରିପଦାରେ ଷ୍ଟେଟ୍ ଓକିଲ ରୂପେ କାର୍ଯ୍ୟକରି ଆମ ଯୌଥ ପରିବାରର ମୁଖ୍ୟଭାବରେ ସମସ୍ତ ଦାୟିତ୍ୱ ନେଇ ସାରିଥାନ୍ତି । ଅନବରତ ବାପା ଓ ଭାଇନାଙ୍କ ସହିତ ପ୍ରତ୍ୟେକ ବିଷୟରେ ପତ୍ର ବିନିମୟ ହେଉଥାଏ । ମୋର କୌଣସି ନିଜ ଚିଠିର ନକଲ ମୋ ପାଖରେ ନାହିଁ; କିନ୍ତୁ ଦୈବାତ୍ ଭାଇନାଙ୍କର ଖଣ୍ଡିଏ ପୋଷ୍ଟକାର୍ଡ଼ ରହିଯାଇଛି; ସେତେବେଳର ମୟୂରଭଞ୍ଜରେ ଷ୍ଟେଟ୍ ଓକିଲ ଥିବା ସମୟରେ ଜ୍ୟେଷ୍ଠ ଦିବ୍ୟସିଂହ ମୋହ ପାଖକୁ ପଠାନ୍ତି ଏଇ କାର୍ଡ଼ ଖଣ୍ଡି—ତା'ରି ଅବିକଳ ନକଲ—

ବାରିପଦା

୨୯।୧୧।୧୯୩୨

ଓଁ

କାଳିନ୍ଦୀ,

ତୋ ଚିଠି ପାଇଲି । ଏଠାର ପିଲାମାନଙ୍କର ସବୁ ଭଲ । କୁନି ଓ ପୁଅଟି କିପରି ଅଛନ୍ତି ! ସୁଦୁରା, ଘାସିଆଠରୁ ଔଷଧ ଅଣାଇ କାଲି ଡାକରେ ପଠାଯାଇଛି । ଔଷଧ ପାଇ ପିଲାଙ୍କଠାରେ ଲଗାଇଦେବ । ମାମୁଙ୍କ ଠାରୁ ଭାଷା ଆସିଥିଲା—ନନ୍ଦଙ୍କ ଘରକୁ ସେ ରୀତିମତ ବେଭାର ଦେଇଛନ୍ତି । ତୋ ଚାକିରି ବିଷୟରେ ଯାହା ଦୈବାତ୍ ହେବ, ସେଥିପାଇଁ ଚିନ୍ତା କରିବାର କିଛି ନାହିଁ । ମୁଁ ତ ଅନେକ ଦିନରୁ ଭାବୁଥିଲି 'ଭାଗୁ' କୌଣସିଠାରେ ସ୍ଥିର ହୋଇ ରହିବା ପରେ ଦୁଇ ତିନିବର୍ଷ ଭିତରେ ତୁ ଚାକିରି ଛାଡ଼ି ବହି ଲେଖଇବାରେ ଲାଗି ପଡ଼ନ୍ତୁ । ପ୍ରଭୁ ଯେବେ ଆଗରୁ ତାହା କରିବାକୁ ଦେବେ, ଚିନ୍ତା କ'ଣ ? ତୋ ନିଜଆଡୁ ଚାକିରି ବର୍ତ୍ତମାନ ଛାଡ଼ିବାପାଇଁ କିଛି କରିବୁ ନାହିଁ— ଯାହା ବଳେ ବଳେ ଘଟିବ, ମୁଣ୍ଡପାତି ଗ୍ରହଣ କରିବା । ଦେଖାଯାଉ, କ'ଣ ହେବ । ଶୀଘ୍ର ଉତ୍ତର ଦେବୁ । ଗାଁରୁ ମାମୁ ଲେଖିଥିଲେ, ଏ ମଧରେ ଗାଣ ଓ ଅନ୍ୟାନ୍ୟ ଜିନିଷ ଦେଇ ପଠାଇବେ ବୋଲି ।

ପଠାଇଲେଣି କି ନା ? ଭାଗୁ ଚିଠି ଦେଇଥିଲା,—ଭଲ ଅଛି । ବଡ଼ଦିନ ବନ୍ଦରେ ପିଲାଙ୍କୁ ନେଇ ଏଠାକୁ ଆସିବୁ । ମୁଁ ଗାଁକୁ ଯିବାର ସ୍ଥିର କରୁଛି । ବହି ବିଷୟରେ ମହାରାଜା

ଆସିଲେ ତାଙ୍କୁ ପଚାରି ରଖିବି । ପରେ ଯାହା ହେବ । ମହାରାଜା ଡିସେମ୍ବର ୧୫ ତାରିଖ ଆଡ଼କୁ ଆସିବାର ଅଛି । ଆଉ ସବୁ ଖବର ଲେଖି ଶୀଘ୍ର ଉତ୍ତର ଦେବୁ । ଇତି ।

ସ୍ନେହର
ଭାଇନା

ଭାଇନାଙ୍କ ଚିଠିରେ ଏହି ଦମ୍ଭ ଓ ସାହସ ମୋ ପ୍ରାଣରେ ଯେଉଁ ଶକ୍ତି ସଞ୍ଚାର କରେ, ସହଜରେ ତାହା ଅନୁମେୟ । ଘର ଭିତରେ ତାଙ୍କ ପ୍ରତି ସଂଭ୍ରମ କେବଳ ତ ଆମ କନିଷ୍ଠମାନଙ୍କର ନ ଥିଲା, ବାପା ବୋଉଙ୍କର ମଧ 'ଆଗ, ସୁନା ପାଗ' ଭାବରେ ତାଙ୍କଠାରେ ଆସ୍ଥା ରହିଥାଏ ସର୍ବାଧିକ । ପୋଷ୍ଟ କାର୍ଡ଼ରେ 'କୁନି' ଅର୍ଥାତ୍ ନନ୍ଦିନୀକୁ ସେତେବେଳେ (୧୯୩୨) ବୟସ ମାତ୍ର ଦୁଇବର୍ଷ ଓ ପୁଅ ଶିଶିରକୁ ମାତ୍ର କେତେ ମାସ । 'ଭାଗୁ' (ଭଗବତୀ ଚରଣ) ପଢୁଥାଏ ପାଟଣାରେ ଏମ୍.ଏ ।

ବୈଷୟିକ ବିଚାରରୁ କିନ୍ତୁ ମୋର ପ୍ରପିତାମହ ଶ୍ରୀନିବାସ ଯେପରି ଯାହା କମେଇଲେ, ଗାଆଁରେ ଦିଅଁ ଦେଉଳ ତୋଳାଇ ନିଜ ଚାରିଭାଇଙ୍କ ଭିତରେ ସବୁ ସମାନ ଭାଗବଣ୍ଟରା କରିଗଲେ—ଅଳ୍ପ ବହୁତେ ରହିଯାଏ ସେଇ ଢଙ୍ଗଟା ବୋଧହୁଏ ଆମ ସମସ୍ତଙ୍କ ଭିତରେ । ଜନ୍ମସ୍ଥାନ ନିଜ ଗାଁ ଛାଡ଼ି ସହରରେ ଘରତୋଳି ରହିବା ଆରମ୍ଭ ହୁଏ କେବଳ ଭାଇନାଙ୍କ ସମୟରୁ । ତହୁଁ ସେ ବାରିପଦା ଓ ମୁଁ ସପରିବାର କଟକ ଆସିବା ପରେ ମଧ ପାରିବାରିକ ଯୋଗାଯୋଗ ଅକ୍ଷୁଣ୍ଣ ରହିଥାଏ ଆମ ଭିତରେ ।

ସମବାୟ ବିଭାଗରେ ଶରତ୍ ଓ ମୋହ ଭିତରେ ଯେଉଁ ନୈକଟ୍ୟ କଟକରେ ସଂଘଟିତ ହୁଏ ତାହା ବିଚ୍ଛିନ୍ନ ହୋଇପଡ଼େ; କିନ୍ତୁ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ପକ୍ଷରେ ଅସହ୍ୟ ହେବାରୁ । କିଛିକାଳ ପରେ ଓଡ଼ିଶା ଛାଡ଼ି ଶ୍ରୀ ଶରତ୍ଚନ୍ଦ୍ରଙ୍କର ବିହାରକୁ ବଦଳି ଆଦେଶ ଆସେ । କଟକ ସମବାୟ ବ୍ୟାଙ୍କର ଡାଇରେକ୍ଟରମାନେ ମଧ ତାଙ୍କର ଆର୍ଥିକ ଅବସ୍ଥା ଦୃଷ୍ଟିରୁ ଦୁଇ ଜଣ ମ୍ୟାନେଜର ରଖିବା ସମ୍ଭବପର ନୁହେଁ ବୋଲି ଦର୍ଶାଇ ମୋତେ ବିଦାୟ ଦିଅନ୍ତି କର୍ମକ୍ଷେତ୍ରରୁ ।

ସମବାୟ ବିଭାଗରେ ଗାଁ ଗାଁ ବୁଲି ସମବାୟ ଋଣ ସମିତିଗୁଡ଼ିକର ହିସାବପତ୍ର ତନଖିବା ଓ ବକେୟା ସୁଧମୂଳ ଅସୁଲ କରିବା କାମ ମୋତେ ଯେ ଖୁବ୍ ସୁଖ ଲାଗୁଥିଲା, ତାହା ନୁହେଁ; ମାତ୍ର ନୂଆ ନୂଆ ଗାଁକୁ ଯିବା ଓ ସେଠାର ଲୋକଙ୍କ ସହ ପରିଚିତ ହେବାର ଯେଉଁ ଆକର୍ଷଣ ମୋର ରହିଥିଲା, ତାହା ଛିନ୍ନ ହୋଇଗଲା, ମନେ ହେଲା ଯେପରି ମହର୍ଗରୁ ଆସି ମୁଁ କାନ୍ତାରରେ ପଡ଼ିଛି ।—

''ହେ ସାରଥି ! ଏ କି ଚଉପାଶେ ତୋର ବ୍ୟୂହ
ଅଚଳ ତୁରଗ ନ ପାରଇ ରଥ ବାହି;
ଯେଉଁଦିଗେ ମୁଖ ଫେରୁ ଶୁଭଇ ବାଣୀ
ପଥ କାହିଁ, ପଥ କାହିଁ;

'ମହାଭାରତ'ର ଅଭିମନ୍ୟୁ ଭଳି ଚାରିପଟେ ସପ୍ତରଥୀଙ୍କ ବ୍ୟୂହ ଭିତରେ ପଡ଼ି ମୁଁ ବାହାରିବାକୁ ତାହା ଭିତରୁ ବାଟଖୋଜି କାହିଁ ପାଏଁ ନାହିଁ । ପାଏଁ ଖାଲି ମୋର ଏଇଁ ପଥ କାହିଁ ?'' କବିତା ଭିତରେ !

ସେତେବେଳେ ସବୁଜସାହିତ୍ୟ ପାଇଁ ସାଂଗଠନିକ ଉଦ୍ୟମ କରିବାକୁ ମୋର ଇଚ୍ଛାଥାଏ, କିନ୍ତୁ ଆତ୍ମପ୍ରତ୍ୟୟ ଓ ଦୃଢ଼ତା ନ ଥାଏ ବୋଧହୁଏ । ପୁଣି ଶରତଚନ୍ଦ୍ରଙ୍କର ଜଣେ ପରିଚିତ ବନ୍ଧୁ ଆସି ଆଗରୁ ତାହାର ପରିଚାଳନା ଭାର ଗ୍ରହଣ କରିବାରୁ ସେ ଦିଗଟି ମଧ ମୋ ପାଇଁ ବନ୍ଦ ହୋଇଗଲା । ଶରତଚନ୍ଦ୍ରଙ୍କ ବନ୍ଧୁ ଗୋପାଳବାବୁ ଆସି ମୋର ରହିଥିବା ଘରର ଅପର ଅଂଶରେ ରହନ୍ତି ସସ୍ତ୍ରୀକ ! ବୈକୁଣ୍ଠବାବୁ ସେତେବେଳକୁ ଆଉ ଏକ ଘର ଭଡ଼ା ନେଇ ଆଗରୁ ଯାଚକ ଲେନ୍ ଛାଡ଼ି ଅନ୍ୟତ୍ର ବାହାରି ଗଲେଣି; ଚାଲେ ପୁଣି ଏକ ନୂଆ ପୁରୁଣାର ଅଦଳବଦଳ ପ୍ରତି ମୁହୂର୍ତ୍ତର ବିଚିତ୍ରତା ଘେନି,—ବେଶ୍ ସହଜ ସ୍ୱାଭାବିକ ରୀତି ଏଇ ଦୁନିଆର—ଅଥଚ କି ବିଚିତ୍ର, କି ଅଦ୍ଭୁତ !

ଦୈନନ୍ଦିନ ଜୀବନର, କେତେ ଯେ ବିସ୍ମୟ ଅଭିଭୂତ କରେ ପ୍ରତି ମୁହୂର୍ତ୍ତକୁ ! କିଏ ଗଣେ ସେଇ ମୁହୂର୍ତ୍ତକୁ; କିଏ କରେ ତା'ର ମୂଲ୍ୟାୟନ !

ସେହି ସମୟରେ ଅଯାଚିତ ଅକଳ୍ପିତ ଏକ ନିଯୁକ୍ତିପତ୍ର ମୋହ ନିକଟକୁ ଆସେ । ଜାମସେଦପୁର ମ୍ୟାଜିଷ୍ଟ୍ରେଟ୍ ଶ୍ରୀ ପ୍ରସନ୍ନକୁମାର ଆଚାର୍ଯ୍ୟଙ୍କ ଦସ୍ତଖତରେ କୋ-ଅପରେଟିଭ୍ ସୋସାଇଟି ସେକ୍ରେଟାରୀ ରୂପେ କାର୍ଯ୍ୟ କରିବାପାଇଁ । ପୁଣି ମୟୂରଭଞ୍ଜରେ ରାଜ୍ୟ ସରକାରଙ୍କ ଆନୁକୂଲ୍ୟରେ ପ୍ରକାଶିତ 'ମୟୂରଭଞ୍ଜ ଗେଜେଟ୍'ର ସମ୍ପାଦନା ଲାଗି ମଧ ଏକ ନିଯୁକ୍ତିପତ୍ର ମିଳିଥାଏ । ତାହା ଅବଶ୍ୟ ବିଜ୍ଞାପିତ ହୁଏ । ଆଉ ମୁଁ ଦରଖାସ୍ତ କରିଥାଏଁ, ଜ୍ୟୋଷ୍ଠ ଦିବ୍ୟସିଂହଙ୍କ ସ୍ୱୀକୃତି ଲାଭ କରି । ପୁଣି କେନ୍ଦ୍ରାପଡ଼ା ସମବାୟ ବ୍ୟାଙ୍କର ମ୍ୟାନେଜର ହେବାକୁ ମଧ ଡାକରା ଆସେ ମୋତେ ।

ଯାଚକ ଲେନ୍ ପାଖରେ ବକ୍ସିବଜାର ବଢ଼େଇସାହି । ଆନନ୍ଦ ମହାରଣା ଆସି କେତେବେଳେ ବେଲେଣା ପେଡ଼ି ଆଉ କେତେବେଳେ କାଠ ଖେଳଣା ଆଣି ଯୋଗାଇ ଦିଅନ୍ତି । ସେଇ ଆନନ୍ଦ ମହାରଣା ସହିତ ପୁଣି ଭେଟହୁଏ ବାରିପଦା ଚାକିରି ଛାଡ଼ି କଟକକୁ ଫେରିଆସିବା ପରେ । ତାଙ୍କରି ହାତତିଆରି ଟେବୁଲ୍ ଚଉକି ଆଜି ମୁଁ ବ୍ୟବହାର କରୁଛି ।

ବଢ଼େଇସାହିର ଯେ କେହି କାରିଗର ସଙ୍ଗେ ଆଜି ଭେଟହେଲେ ଆନନ୍ଦ ମହାରଣା କଥା ପଚାରେଁ; ସହଜ-ସରଳ ଛୋଟ ଚେହେରାଟି ତା'ର ଆଜି ମଧ ନାଚିଯାଏ ଆଖି ଆଗରେ ମୋର, କାରଣ ସେ ଯେଉଁଠି ରହିଥିଲା ସେଇଠି, ମୁହିଁ କେବଳ ଚତୁର୍ଦ୍ଦିଗ ଭ୍ରମଣ କରି ସାରି ଯେମିତି ଲେଉଟି ଆସେଁ ତା'ରି ପାଖକୁ ।

କଟକ ବାହାରେ ଏମିତି ଚାକିରି ଦୁଆର ସବୁ ଫିଟାହୋଇ ରହିଥିଲେ ବି କେଉଁ ଥାନଟିକି ବାଛିବି, ସେଥିପାଇଁ ସିଦ୍ଧାନ୍ତରେ ପହଞ୍ଚିବାକୁ ମତେ ଟିକିଏ ସମୟ ଲାଗେ । ପାରିବାରିକ ବିଚାରରୁ ବାରିପଦାର ଆକର୍ଷଣ ଅବଶ୍ୟ ଅଧିକ ହୋଇପଡ଼େ ଇଂରେଜୀ ପ୍ରଚଳନ ଉକ୍ତି ଅନୁଯାୟୀ— Blood is thicker than water—ପାଣିଠାରୁ ରକ୍ତଟା ବେଶି ବହଳ ।



# ଇଚ୍ଛାପୁର ନିଖିଳ-ଉତ୍କଳ-କବିସମ୍ମିଳନୀ ୧୯୩୨

ମୋର ଏମିତି ତ୍ରିଶଙ୍କୁ ଅବସ୍ଥାରେ—କଟକରୁ ମୟୂରଭଞ୍ଜ, କେନ୍ଦ୍ରାପଡ଼ା, ଜାମସେଦ୍‌ପୁର କେଉଁଠିକି ଯିବି, ସ୍ଥିର କରିପାରୁନଥିବା ସମୟରେ ନିମନ୍ତ୍ରଣ ଆସେ, ଇଚ୍ଛାପୁରରେ ଅନୁଷ୍ଠିତ ହେଉଥିବା ନିଖିଳ ଉତ୍କଳ-କବି-ସମ୍ମିଳନୀରେ ପ୍ରଧାନ ଅତିଥିରୂପେ ଯୋଗଦେବାକୁ; ସେତେବେଳେ ଦକ୍ଷିଣ ଓଡ଼ିଶା ଥାଏ ମାଦ୍ରାଜ ସରକାରଙ୍କ ଅଧୀନରେ, ଖୋର୍ଦ୍ଧା ଜଂକ୍‌ସନ୍‌ରୁ ମାଡ୍ରାସ୍‌ମେଲ୍ ଲାଇନ୍‌ରେ ଯିବା ସୁଯୋଗ ଜୁଟି ନଥାଏ ମୋର ଆଉ କେବେ; ବାଟରେ ପୁଣି ଚିଲିକା ଦର୍ଶନର ଆକର୍ଷଣ ! ତାହା ୧୯୩୨ର ଘଟଣା ।

କଟକ ସମବାୟ ବ୍ୟାଙ୍କ୍‌ରୁ ଚାକିରି ଚାଲିଯିବା ଦୁଃଖ ଅପନୋଦନ ଲାଗି ଏହି ନିମନ୍ତ୍ରଣଟା ଆସିଲା ଅବା ! ସଙ୍ଗେ ସଙ୍ଗେ ସମ୍ମତିଜଣାଇ ନିମନ୍ତ୍ରଣ ରକ୍ଷା କରେଁ ।

ଆଧୁନିକ ଓଡ଼ିଆ ସାହିତ୍ୟ ଉପରେ ଭାଷଣ ମୋର ଆଧାରିତ ହେବାକୁ ସଙ୍କେତ ମିଳିଥାଏ । ଲେଖିବାକୁ ଆରମ୍ଭ କରିଦିଏଁ ନିବନ୍ଧ । ଆଧୁନିକ ଶୈଳୀରେ ନିବନ୍ଧଟି ଲେଖି ଆତ୍ମସନ୍ତୋଷ ଲାଭକରେଁ । ନିର୍ଦ୍ଦିଷ୍ଟ ଦିନ ଯାତ୍ରାରମ୍ଭ କବି ସମ୍ମିଳନୀକୁ । କଟକ ଷ୍ଟେସନ୍‌ରେ ଭେଟହୁଏ ମୋର ସହଯାତ୍ରୀ ହେବାକୁ ଶ୍ରଦ୍ଧେୟ ସ୍ୱର୍ଗତ ବାଳକୃଷ୍ଣ କରଙ୍କ ସହିତ । ଶ୍ରଦ୍ଧେୟ ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ ଆସି ଷ୍ଟେସନ୍‌ଠାରେ ମୋର ପ୍ରବନ୍ଧ ପାଠ କରନ୍ତି ଓୟେଟିଂରୁମ୍‌ରେ ବସି ଗାଡ଼ିଲାଗିବା ପୂର୍ବରୁ । ପୂଜ୍ୟ ଅଧାପକ ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତି ମଧ ନିଜେ ସମ୍ମିଳନୀରେ ଯୋଗଦେବାକୁ ଯାଇପାରୁ ନ ଥିବାରୁ କଟକ ଷ୍ଟେସନକୁ ଆସି ମୋତେ ଜଣାନ୍ତି ତାଙ୍କ ଅସାମର୍ଥ୍ୟକୁ ।

ଦକ୍ଷିଣ ଓଡ଼ିଶା ଅଭିମୁଖରେ ମୋର ଏଇ ପ୍ରଥମ ସାହିତ୍ୟିକ ଅଭିଯାନ ହିଁ ବ୍ୟାଙ୍କ ଚାକିରିଟି ଚାଲିଯିବାର ସବୁ ଦୁଶ୍ଚିନ୍ତାକୁ ସତେ ଅବା ପାଣିଫୋଟକା ଭଳି କାହିଁ କୁଆଡ଼େ ଉଡ଼ାଇ ନେଲା, ଉତ୍ସାହ ଓ ଆବେଗରେ ଯାତ୍ରା ମୋର ଆରମ୍ଭ ହୁଏ ଇଚ୍ଛାପୁର ଅଭିମୁଖେ ।

''ଉତ୍କଳ କମଳା-ବିଳାସଦୀର୍ଘିକା ।''

ମରାଳମାଳିନୀ 'ନୀଳାମ୍ବୁ ଚିଲିକା'ର ଅପୂର୍ବ ଦୃଶ୍ୟ ! ରେଳଉପରୁ ନିର୍ନିମେଷ ଆଖିରେ ଚାହିଁରହେଁ—ମନ ମୋର ଆବେଗ ଔତ୍ସୁକ୍ୟରେ ଚଳନ୍ତା ରେଳଗାଡ଼ିରୁ ଡେଇଁ ପଡ଼ି ଯେମିତି ଅବା ପହଁରି ଚାଲେ ଶୈଶବର ଅତି ପରିଚିତ ମହାସାଗର ଅଭିମୁଖରେ । ଚିଲିକା ଉପରେ ପୁଣି ତଟ ଦେଶରେ କାଳିଜାଇ, ସୋଲରି, ଭାଲେରି, ମାମୁ-ଭଣଜା ପର୍ବତ ମୁଣ୍ଡିଆଗୁଡ଼ିକ ଅବା ଜଳର ବିସ୍ତୃତି ଆଉ ଗଭୀରତା ମଧରେ ନିଜ ଛାୟା ବିସ୍ତାର କରି ମୁଣ୍ଡ ଟେକିଛି ଆକାଶ ଊର୍ଦ୍ଧ୍ୱକୁ ।

ରେଳ ପଥରେ ଖଲିକୋଟ, ବ୍ରହ୍ମପୁର ଆଦି କେତେକ ଷ୍ଟେସନରୁ ସହଯାତ୍ରୀ ହୁଅନ୍ତି ମୋର ଲେଖକ ବନ୍ଧୁମାନେ । ଇଚ୍ଛାପୁର କବି ସମ୍ମିଳନୀର ଅଭ୍ୟର୍ଥନା ସଭାର ସଭାପତି ହୋଇଥାନ୍ତି ସୁରଙ୍ଗୀର ରାଜାସାହେବ । ସଭାପତି ଆସନ ଅଳଂକୃତ କରନ୍ତି ଚିକିଟିର

ସ୍ୱନାମଧନ୍ୟ ନାଟ୍ୟକାର ରାଜା ରାଧାମୋହନ ରାଜେନ୍ଦ୍ର ଦେବ । ଦକ୍ଷିଣ ଓଡ଼ିଶାର ବହୁ ବିଖ୍ୟାତ ସାହିତ୍ୟିକ ଓ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ସମାଗମ । 'ଆଶା' ଓ 'ନିଉଓଡ଼ିଶା'ର ସନାମଧନ୍ୟ ସମ୍ପାଦକ ଶ୍ରୀ ଶଶିଭୂଷଣ ରଥ, ସୁଲେଖକ ଶ୍ରୀ ରାମଚନ୍ଦ୍ର ମିଶ୍ର, ପ୍ରସିଦ୍ଧ ପ୍ରତ୍ନତାତ୍ତ୍ୱିକ ଓ ଗବେଷକ ଶ୍ରୀ ସତ୍ୟନାରାୟଣ ରାଜଗୁରୁ, ସାହିତ୍ୟିକ ପଣ୍ଡିତ ଶ୍ରୀ ଅନନ୍ତ ତ୍ରିପାଠୀ ଶର୍ମାଙ୍କ ସମେତ ଦକ୍ଷିଣ ଓଡ଼ିଶାର ବହୁ ବିଦ୍ୱାନ୍ ବିଜ୍ଞବ୍ୟକ୍ତିଙ୍କ ଉପସ୍ଥିତିରେ ସୁରଙ୍ଗୀର ବାତାବରଣ ଉତ୍‌ଫୁଲ୍ଲ ହୋଇ ଉଠିଥାଏ ।

ଅଭ୍ୟର୍ଥନା ସଭାର ସଭାପତି ସୁରଙ୍ଗୀ ରାଜାସାହେବଙ୍କ ରାଜୋଚିତ ଅଭ୍ୟର୍ଥନାରେ ଅତିଥିମାନେ ମୁଗ୍‌ଧ । ମାତ୍ର ଅତିଥିଚର୍ଚ୍ଚାରେ ଆତିଶଯ୍ୟ ଅସହ୍ୟ ହୋଇପଡ଼େ ମୋହ ପକ୍ଷରେ । ଦୈନିକ ଦୁଇ ଓଳି ଘୃତ ମାଂସର ବ୍ୟବସ୍ଥା ସହିତ ଲଙ୍କାମରିଚର ପ୍ରାଚୁର୍ଯ୍ୟ ଆମ ଉତ୍ତର ଓଡ଼ିଶା ପ୍ରତିନିଧିମାନଙ୍କ ପକ୍ଷରେ ସହ୍ୟ ହୁଏ ନାହିଁ ।

ଲଙ୍କାମରିଚ, ଲଙ୍କାଆମ୍ବ ଆଦି ରାମାୟଣର ସତ୍ୟଯୁଗରୁ ଲଙ୍କାପୋଡ଼ାମାନେ ଭାରତବର୍ଷର ପେଟ ପୋଡ଼ିବାକୁ ଆଣିଥିଲେ କି ନାହିଁ କେ ଜାଣି !—ମାତ୍ର ସୁରଙ୍ଗୀ ପାକଶାଳାରେ ବାରମ୍ବାର ପାଚକମାନଙ୍କୁ ଲଙ୍କା ପ୍ରୟୋଗରୁ ବିରତ ହେବା ପାଇଁ କାକୁତି ମିନତି ଓ ଶେଷରେ ଅଭିମାନ ତାଗିଦ୍ କରାଗଲେ ହେଁ ପୁଣି ସେମାନେ ଅତି ନମ୍ରଭାବରେ ସେହି ନିର୍ଦ୍ଦେଶକୁ ଗ୍ରହଣ କଲେ ହେଁ, କାର୍ଯ୍ୟକ୍ଷେତ୍ରରେ କୌଣସି ଉନ୍ନତି ଲକ୍ଷିତ ହେବାର ସୂଚନା ମିଳେ ନାହିଁ । ଅବଶେଷରେ ଉତ୍ତର ଓଡ଼ିଶାରୁ ଯାଇଥିବା ଆମେ ପ୍ରତିନିଧିମାନେ ଏକସ୍ୱରରେ ପ୍ରତିବାଦ କରୁଁ ଯେ, ଆମର ବାରମ୍ବାର ସ୍ମରଣ କରାଇ ଦେବା ସତ୍ତ୍ୱେ ପାଚକମାନେ ଲଙ୍କା ପ୍ରୟୋଗରୁ ବିରତ ହେଉନାହାନ୍ତି । ଶେଷରେ ତାଙ୍କ ପ୍ରତିନିଧିରୂପେ ପ୍ରଧାନ ପାଚକ ଆସି ଆମକୁ ସବିନୟ ନିବେଦନ କରନ୍ତି—ସେଇଦିନଠାରୁ ସେମାନେ ଆଦୌ ଲଙ୍କା ନିକ୍ଷେପ କରିବେ ନାହିଁ । ଅଥଚ ଦେଖୁଁ, କାର୍ଯ୍ୟକ୍ଷେତ୍ରରେ ଅବିକଳ ବିପରୀତ ! ନିର୍ଜଳା ଉପବାସ କରିବାକୁ ବାଟ ଅବା କାହିଁ ରାଜ-ଅତିଥି ହୋଇ ?

ପ୍ରଧାନ ପାଚକଙ୍କୁ ଏହା ଚେତାଇ ଦେବାରୁ ସେ ଅତି ବିନୟ ସହିତ କରଯୋଡ଼ି ଜଣାଇଲେ—"ଆଜ୍ଞା, ଆପଣମାନଙ୍କ କଟକୀ ରାନ୍ଧଣାରେ ଲଙ୍କା ତ ଦିଆଯାଉ ନାହିଁ ଆଦୌ ।"

ସମସ୍ୱରରେ ଆମେ ପ୍ରତିବାଦ ଜଣାଉଁ—କିନ୍ତୁ ପଲାଓ ସୁଦ୍ଧା ଯେ ଲଙ୍କା କବଳରୁ ମୁକ୍ତି ପାଉ ନାହିଁ !—ଫଳରେ କେବଳ ଆମର ଜିହ୍ୱା କି ଉଦର ମଧ ଅଗ୍ନିଦାହ ଅନୁଭବ କରୁ ନାହିଁ, ଆମ ଚକ୍ଷୁନାସା ମଧ ଅବିରତ ଲୋତକପୂର୍ଣ୍ଣ ସଜଳ ! ପ୍ରଧାନ ପାଚକ ସମେତ ଅନ୍ୟମାନେ ଆସି ପୁଣି ବିନୀତ ଭାବରେ କରଯୋଡ଼ି ଜଣାନ୍ତି—ଆଜ୍ଞା ! ସାମାନ୍ୟ ମାତ୍ର ଛୁଙ୍କ ଦେବା ପାଇଁ ତ ଟିକିଏ ହେଲେ ଲଙ୍କା ଲୋଡ଼ା । ତହିଁରୁ ଆଉ କମ୍ କରିବାକୁ ଆମ ହାତ ଯାଉନାହିଁ । ଅଥଚ ଆମେ ଯେ ଅତିଥି ! ଆମର ଦଶ ଦ୍ୱାରରେ ଅଗ୍ନି ପ୍ରବାହ । ଏହାର ଉପଶମ ତେବେ ଅସମ୍ଭବ ? ଅତଏବ ସ୍ଥିର କରୁଁ—"ଯଃ ପଳାୟତି ସ ଜୀବତି—ଏଥୁଁ ଅଧିକ ଫଳ, ଅପବାଦ କେବଳ ଚାଲ ସଙ୍ଗିନୀ ଯିବାରେ !"

ଇଚ୍ଛାପୁର କବି-ସମ୍ମିଳନୀରେ ପ୍ରବନ୍ଧ ମୋର ଉଚ୍ଚ ପ୍ରଶଂସିତ ହୁଏ । ସଭାପତି ଚିକିଟିର ରାଜାସାହେବ, ଆଶା ଓ ନିଉ ଓଡ଼ିଶା ପତ୍ରିକା ଦୁଇଟିର ସମ୍ପାଦକ ଶ୍ରଦ୍ଧେୟ ଶଶିଭୂଷଣ ରଥ, ଶ୍ରୀ ସତ୍ୟନାରାୟଣ ରାଜଗୁରୁ, ଶ୍ରୀ ଅନନ୍ତ ତ୍ରିପାଠୀ ଶର୍ମାପ୍ରମୁଖ ବହୁ ବିଶିଷ୍ଟ ସାହିତ୍ୟିକ ବ୍ୟକ୍ତିଗତ ଭାବରେ ଓ ସଭାସ୍ଥଳରେ ଜଣାନ୍ତି ମୋତେ ହାର୍ଦ୍ଦିକ ଅଭିନନ୍ଦନ । ମନ୍ଦୁରୀର ଯୁବରାଜ 'ନବୀନ' ପତ୍ରିକାର ସମ୍ପାଦକ ସ୍ୱର୍ଗତ କୃପାସିନ୍ଧୁ ନରେନ୍ଦ୍ର ଦେବ ମୋତେ ନିମନ୍ତ୍ରଣ କରନ୍ତି ଇଚ୍ଛାପୁରରୁ ଆସି ତାହାଙ୍କ ଆତିଥ୍ୟ ଗ୍ରହଣ କରିବାଲାଗି ବ୍ରହ୍ମପୁର ବାସଭବନରେ ।

ପ୍ରବନ୍ଧଟିରେ ମୋର 'ଆଧୁନିକ ସାହିତ୍ୟର ଯାଥାର୍ଥ୍ୟ', 'ପ୍ରାଚୀନ ଓ ଆଧୁନିକ', 'ପ୍ରାଚ୍ୟ ଓ ପ୍ରତିଚ୍ୟ ସାହିତ୍ୟରେ ଦର୍ଶନ', 'ବସ୍ତୁବାଦୀ ରଚନା' ପୁଣି ବିଭିନ୍ନ ବିଭାଗରେ କ୍ଷୁଦ୍ରଗଳ୍ପ, କବିତା, ନାଟକ ଉପନ୍ୟାସ ଆଦି କ୍ଷେତ୍ରରେ ଏକ ବିହଙ୍ଗମ ଦୃଷ୍ଟିର ଆଭାସ ମୁଁ ଦେଇଥାଏଁ ।

'ଆଧୁନିକ ସାହିତ୍ୟର ଯଥାର୍ଥ୍ୟରେ' ମୁଁ ପ୍ରତିପାଦନ କରିଥାଏଁ—ସାରକଥା ବା ତତ୍ତ୍ୱ ଆବିଷ୍କାର ସାହିତ୍ୟର ଉଦ୍ଦେଶ୍ୟ ନୁହେଁ ସାହିତ୍ୟ ଯାହା ଦାନକରେ ତାହା କେବଳ ସାର ନୁହେଁ, ରସ—ଯେଉଁ ରସ ସମସ୍ତ ସୃଷ୍ଟିର ପ୍ରାଣବସ୍ତୁ ।

ଆଧୁନିକ ଜୀବନ ସହିତ ସାହିତ୍ୟିକ ସମ୍ପର୍କ ଦର୍ଶାଇ ନିବନ୍ଧରେ ମୋର ପ୍ରତିପାଦନ କରାଯାଇଥିଲା 'ସାହିତ୍ୟର ଅନ୍ୟଗୁଣ ହେଲା, ତାହା ସାର୍ବଜନୀନ ସମ୍ପତ୍ତି । ପାରିବାରିକ ଓ ସାମାଜିକ ଜୀବନ ସଙ୍ଗେ ଆମ୍ଭମାନଙ୍କ ରାଷ୍ଟ୍ରୀୟ ଜୀବନର ମଧ୍ୟ ଡ଼ୁମୂଳ ପରିବର୍ତ୍ତନ ଘଟିଅଛି । ପୂର୍ବେ ପ୍ରାଧାନ୍ୟ ଥିଲା ରାଜାଙ୍କର—ବର୍ତ୍ତମାନ ପ୍ରଜାର ଯୁଗ; ଅର୍ଥାତ୍ ଜଣକ ସ୍ଥାନକୁ ଅଧିକାର କରିଛି ଗଣ । ସେଥିପାଇଁ ଗଣେଶଙ୍କର ଉପାସକ ଆଜି ଯାହା ରଚନା କରେ ତାହା ଆଉ ପୂର୍ବକାଳର ରାଜକୁଳର ମହିମା ଚିତ୍ରଣ ନୁହେଁ । ସାହିତ୍ୟ ଆଜି ଏକରୁ ମୁକ୍ତି ଲାଭକରି ବହୁମଧ୍ୟରେ ବିସ୍ତୃତ ହୋଇପଡ଼ିଅଛି । ମୁଷ୍ଟିମେୟ ଲୋକଙ୍କ ମଧ୍ୟରେ ଆବଦ୍ଧ ନରହି ଜନସମାଜକୁ ଆନନ୍ଦ ଦାନ କରିବାରେ ଏହା ବ୍ରତୀ ।'

ତ୍ରିଂଶଦଶକରେ ଏକ ସାହିତ୍ୟିକ ରାଜଦରବାରରେ ଏଇଭଳି ମନ୍ତବ୍ୟ ମୋର ଅବଶ୍ୟ ଯଥେଷ୍ଟ ସାହସିକ ଅପ୍ରିୟସତ୍ୟ ପ୍ରକାଶର ପ୍ରମାଣ ଦିଏ; ତଥାପି ଏହାର ଆଦର ସେତେବେଳେ ସାହିତ୍ୟିକ ଶ୍ରୋତୃବୃନ୍ଦଙ୍କ ସୁବିଚାର ଓ ଉଦାର ରସ ଗ୍ରାହକତାର ଏକ ସୁସ୍ପଷ୍ଟ ପ୍ରମାଣ ରୂପେ ମୋର ସ୍ମରଣୀୟ ହୋଇ ରହିଛି ।

ଆଧୁନିକ ରୁଚି ସମ୍ପର୍କରେ ଓ ଯୁଗୋପଯୋଗୀ ସାହିତ୍ୟ ସୃଷ୍ଟି ବିଷୟରେ ମୋର ମନ୍ତବ୍ୟ ଥିଲା—''ଅବଶ୍ୟ ଯୁଗ ପ୍ରବାହରେ ଭାରତୀୟ ରୁଚିର ଯାହା ପରିବର୍ତ୍ତନ ଘଟିଛି, ତାହା ଅତି ସାମାନ୍ୟ । ଆଧୁନିକ ରୁଚିକୁ ଏ ଦେଶରେ ଯେ ଅନେକ ଅରୁଚି ଜ୍ଞାନ କରନ୍ତି, ଆମ୍ଭମାନଙ୍କର ଆଦିମ ଜଡ଼ତା ଓ ସ୍ଥିତିଶୀଳତା ଏଥିପାଇଁ ବିଶେଷତଃ ଦାୟୀ । ସୁତରାଂ ଆଧୁନିକ ସଭ୍ୟତା ଓ ସାହିତ୍ୟର କଥା ଉଠିଲେ ଆମ୍ଭମାନଙ୍କର ଅଧଃପତନ ହିଁ ବୃହତ୍ ଆକାରରେ ଦୃଷ୍ଟିପଥରେ ପଡ଼େ ।''

ଆଧୁନିକ ନାଟକ ସମ୍ପର୍କରେ ମଧ୍ୟ ମୁଁ ଆଲୋଚନା ଆରମ୍ଭ କରେଁ ଏହିରୂପେ— ''ଆମ୍ଭମାନଙ୍କର ଉପନ୍ୟାସ ଯେପରି କେବଳ ଭାଷାବିନ୍ୟାସ ଏବଂ ଅଘଟନ ଘଟନାର ପରିପୂର୍ଣ୍ଣ, ନାଟକ ମଧ୍ୟ ସେଇପରି ନର୍ତ୍ତକଦଳ ମଧ୍ୟରେ ଆବଦ୍ଧ । ଉପନ୍ୟାସକୁ ଜୀବନ୍ୟାସ ଦେବାକୁ ହେଲେ ଏହା ମଧ୍ୟରେ ଯେପରି ବାସ୍ତବ ଜୀବନରେ ଚିତ୍ର ପ୍ରତିଫଳନ କରିବାକୁ ହେବ, ନାଟକୁ ମଧ୍ୟ ସେଇପରି ଜୀବନର ନିକଟତର କରିବା ଆବଶ୍ୟକ ।''

ବ୍ରହ୍ମପୁରକୁ ଫେରି ସାକ୍ଷାତ୍କାର ଘଟେ ଷ୍ଟୁଡେଣ୍ଟସ୍ ଷ୍ଟୋରର ପ୍ରତିଷ୍ଠାତା ପଣ୍ଡିତ ଦାମୋଦର ରଥଙ୍କ ସହିତ । ସେତେବେଳେ ମୋର 'ଭକ୍ତକବି ମଧୁସୂଦନ' ବହିଖଣ୍ଡି ପାଠ୍ୟପୁସ୍ତକ ରୂପେ ପ୍ରଚଳିତ ହେଉଥାଏ ଦକ୍ଷିଣ ଓଡ଼ିଶାରେ । ମହୁରି ଯୁବରାଜଙ୍କ ଅମାୟିକ ଆତିଥେୟତା ଓ ବ୍ରହ୍ମପୁରରେ ସର୍ବତ୍ର ଆଦର ଅଭ୍ୟର୍ଥନା ଏବେ ମଧ୍ୟ ସ୍ମୃତିପଟରେ ଏକ ବିଶିଷ୍ଟ ଶ୍ରଦ୍ଧାର ଆସନ ଅଧିକାର କରି ରହିଛି ।

ସବୁଜ ସାହିତ୍ୟ ସମିତିଦ୍ୱାରା ପ୍ରକାଶିତ ମୋର ପ୍ରଥମ ପ୍ରବନ୍ଧ-ସଙ୍କଳନ 'ସାହିତ୍ୟିକ'ରେ (୧୯୩୩) ଏଇ ଭାଷଣଟି ପୂର୍ଣ୍ଣରୂପେ ସନ୍ନିବେଶିତ ହୁଏ ।



## ''ପାସୋରି ଦେଲିରେ ଶିମୁଳିପାଳ''

ନ-ଯଯୌ ନ-ତସ୍ଥୌ ଅବସ୍ଥାଟା ମୋର ଚାହୁଁ ଚାହୁଁ ଉଭେଇଯାଏ । ମୟୂରଭଞ୍ଜରେ ରାଜସରକାରଙ୍କ ଆନୁକୂଲ୍ୟରେ ପ୍ରକାଶିତ 'ମୟୂରଭଞ୍ଜ ଗେଜେଟ୍'ର ସମ୍ପାଦନାଲାଗି ନିଯୁକ୍ତି ପତ୍ରଟାହିଁ ମୋହପକ୍ଷରେ ଗ୍ରହଣୀୟ ହୁଏ ।

ମୟୂରଭଞ୍ଜର ସ୍ୱର୍ଗୀୟ ସ୍ୱନାମଧନ୍ୟ ଶ୍ରୀ ରାମଚନ୍ଦ୍ରଙ୍କ ଦାୟାଦ ପ୍ରତାପଚନ୍ଦ୍ରଙ୍କ ସହିତ ପ୍ରଥମେ ଯେଉଁଦିନ ସାକ୍ଷାତ୍ କରେଁ, ତାହାଙ୍କ ମଧୁର ଅମାୟିକ ବ୍ୟବହାର ସହିତ ସୁନ୍ଦର ଚେହେରାଟି ଦେଖି ମୁଗ୍ଧ ହୋଇଯାଏଁ—ମନେକରେଁ, ତାହା ଉତ୍କଳୀୟ କୌଳିନ୍ୟର ଏକ ଶ୍ରେଷ୍ଠ ପ୍ରତୀକ ।

ଓଡ଼ିଶାର ଗାଁଗଣ୍ଡା ବିଲ ହିଡ଼-ପାଣିକାଦୁଅ-କଣ୍ଟାବଣଘେରା ନିପଟ ମଫସଲ ଅଞ୍ଚଳ ବୁଲି ବୁଲି କିସ୍ତିଖିଲାପ ସୁଧରଣ ଅସୁଲ କଳାପରେ—ଏହା ଯେପରି କେଉଁ ପାତାଳପୁରୀରୁ ଆସି ସ୍ୱର୍ଗପୁରୀରେ ପହଞ୍ଚିଲା ଭଳି ଲାଗିଲା ମୋତେ । ଗୋପବନ୍ଧୁଙ୍କ 'ସମାଜ' ପତ୍ରିକା ଏଇ ବିଦ୍ୟୁତ୍ ଆଲୋକ ଉଦ୍‌ଭାସିତ ଦେଶୀୟ ରାଜ୍ୟଗୁଡ଼ିକୁ କାହିଁକି ଯେ 'ଅନ୍ଧାରିମୁଲକ' ନାମକରଣ କରିଥିଲା, ତାହା ଆଦୌ ବୁଝିପାରେଁ ନାହିଁ ହଠାତ୍ । ସେଥିସଙ୍ଗେ ପୁଣି ମୋର ଚିରବାଞ୍ଛିତ, ଚିର ଆକାଂକ୍ଷିତ ସାହିତ୍ୟଚର୍ଚ୍ଚା ଲାଗି ଏହା ଏକ ଚମତ୍କୃତ ପରିବେଶ । ସେଠାରେ ଜ୍ୟେଷ୍ଠ ଦିବ୍ୟସିଂହଙ୍କ ଲୋକପ୍ରିୟତା ସଙ୍ଗେ ଲେଖକ ରୂପେ ମୋର ପ୍ରତିଷ୍ଠା । ଫେରିଆସିଲା ଯେପରି

ଆହୁରି ଥରେ ଆମରି ସେଇ ପୂର୍ବପାରିବାରିକ ବନ୍ଧନର ପରିବେଶ—ମଝିରେ ଯାହାମାତ୍ର ଚାରି ପାଞ୍ଚବର୍ଷ ପାଇଁ ତୁଟିଯାଏ ମୋର କଟକ ଆସିବା ଫଳରେ ।

ଗଳ୍ପଟିଏ ପଢ଼ିଥିଲି । ଭଗବାନ୍ ଯାହା କରନ୍ତି ମଙ୍ଗଳପାଇଁ । ମଣିଷର ସବୁ ଅବସ୍ଥାରେ ସେ ଯଦି ଏପରି ଏକ କଲ୍ୟାଣମୟ ଉଦ୍ଦେଶ୍ୟ ଲକ୍ଷ୍ୟ କରିପାରେ, ତା'ହେଲେ ବୋଧହୁଏ ବ୍ୟସ୍ତବିବ୍ରତ ହେବାର ପରିସ୍ଥିତି କଦାପି ଉପୁଜନ୍ତା ନାହିଁ । ଜୀବନର ସବୁପ୍ରକାର ଅଭାବ ଅସୁବିଧାକୁ ସହଜରେ ଅତିକ୍ରମ କରିଯିବା ତାହା ପକ୍ଷରେ ଅସମ୍ଭବ ବୋଧ ହୁଅନ୍ତା ନାହିଁ ।

ଯୁଗେ ଯୁଗେ ସାହିତ୍ୟ ହିଁ ଯୋଗାଇ ଆସିଛି ମଣିଷକୁ ଆଶା, ଭରସା, ଦମ୍ଭ ଓ ସାହସ । ଜୀବନ ପଥର ସବୁ ଗଡ଼ାଣି ଉଠାଣି ରାସ୍ତା ଭିତରେ ସେଇ ଦମ୍ଭ ଓ ସାହସ ହିଁ ତାକୁ ଆଗଭେ ନିଏ ।

ମୟୂରଭଞ୍ଜ-ଅବସ୍ଥିତି ମୋର କିନ୍ତୁ ପ୍ରାରମ୍ଭରେ ଯେତିକି ସୁଖକର ଆଶା, ଆନନ୍ଦ ଓ ଉତ୍ସାହର କାରଣ ହୋଇଥିଲା, ତାହାର ଶେଷଭାଗଟା ସେତିକି କରୁଣ ଦୁଃଖଦ ପୁଣି ଅନ୍ଧକାରମୟ ହୋଇପଡ଼େ, ଅବିକଳ ମିଳନାନ୍ତକ ଓ ବିୟୋଗାନ୍ତକ ନାଟକ ଭଳି । ମିଳନ-ବିଚ୍ଛେଦକୁ ସମସ୍ତରରେ ଅନୁଭୂତିହିଁ ଯେ ସାହିତ୍ୟ । ବାରିପଦାରେ କନିଷ୍ଠ ଭଗବତୀଙ୍କର ପୁନର୍ବିବାହ ଓ ଦୁଇଟି ସନ୍ତାନ ଜନ୍ମ । ସେଇଠାରେ ହିଁ ବାପ ମା, ଭାଇଭଉଣୀ, ଝିଆରୀପୁତୁରାଙ୍କ ମିଳନ କୋଳାହଳ ସଙ୍ଗେ ବିଚ୍ଛେଦ ଦୁଃଖର ଅଭିନୟ । ଜୀବନବ୍ୟାପୀ ଏଇ ଆଲୁଅ—ଛାଇର ଖେଳ ଭିତରେ ଯେପରି ଅବା ମୁଁ ଗତି କରି ଆସିଛି; ଆଜି ତାହା ପ୍ରତି ସିଂହାବଲୋକନ କଲାବେଳେ, ସେହି ପରିମାଣରେ କି ଚହୁଁ ବଳି ବିହ୍ୱଳ ବିସ୍ମୟରେ ଅଭିଭୂତ ହୁଏଁ ।

ବାରିପଦାରେ ଶିମୁଳିପାଳ ପର୍ବତମାଳାକୁ ଦୂରରୁ ଚାହିଁ କବିତା ଲେଖେଁ 'ପାସୋରି ଦେଲିରେ ଶିମୁଳିପାଳ'— (୧୪.୧୧.୧୯୩୬)

କି ଗୀତ ତୋ ଆଗେ ଗାଇବି କହରେ
ଶିମୁଳିପାଳ ।
ରକତ ମୋହର ବରଫ, ହାଡ଼ ଯେ
ହୋଇଛି ପାଣି
କଣ୍ଠେ ଶୁଖିଛି ରସନା ବାସନା
ନ ଆସେ କଥା
କ୍ଷୁଧିତ ମାନବ କାକୁତି କରଇ
ପତାଇ ଥାଳ ।
ପଥପରେ ଶତ ମାନବର ଶିଶୁ
ଦେଖାଏ କାନି
ଅକାଳେ ଝାଉଁଳିପଡ଼ଇ କେତେରେ
ଜୀବନଲତା !

ସବୁ ପ୍ରିୟ ସ୍ମୃତି ଅନୁଭୂତିମୟ
ଅତୀତ କାଳ
ତୋତେ ଚାହିଁ ଆଜି ପାସୋରି ଦେଲିରେ
ଶିମୁଳିପାଳ !
ସାନ୍ତାଳ ଝିଅ ଛଳନା ବିହୀନ
ବଦନଶୋଭା
ବିକାର-ବିହୀନ ହାସ୍ୟ ତାହାର
ବିମଳ ଚିର
ସାଥିମେଳେ ହାତ ହଲାଇ ଚଳଇ
ସହଜ ଗତି
ମଧୁମାଳତୀର ମଞ୍ଜରୀ ଘେନି
ମୋହୁଛି ଗଭା !
ଦୂରବନକୋଳୁଁ ଭାସିଆସେ ତା'ର
ମଧୁର ଗୀତ
ରହି ରହି ମୋର ମରମେ ବାଜେ ତା'
ବିଧୁର ଯଦି
ବନର ବିହଗୀ ପରାଏ ତାହାର
ବିତଇ କାଳ
ତୋତେ ଚାହିଁ ସବୁ ପାସୋରି ଦିଏଁରେ
ଶିମୁଳିପାଳ !

ଯାହା କିଛି ପାସୋରି ଦେବାକୁ ଭାବିଛି, ତାହା ତ କାହିଁ ପାସୋର ଯାଏ ନାହିଁ । ଜୀବନରେ ଯାହା ହଜିଗଲା ବୋଲି ବିଚାରେଁ, ସେଇ ତ ପୁଣି ଲେଉଟି ଆସି ମୋର ବାଟ ଓଗାଳି ଜଗିବସେ !

ବାରିପଦାରେ ଆମ ଯୌଥ ପାରିବାରିକ ଜୀବନର ଯେପରି ପୁନରୁତ୍‌ଥାନ ହେଲା, ସେହିପରି ଶେଷରେ ପୁଣି ଭୁଶୁଡ଼ି ପଡ଼ିଲା ଗୋଟାଏ ତାସ୍‌ଘର ଭଳି । ସେହିଠାରେ ହିଁ ପରିବାରର ଶ୍ରେଷ୍ଠ ବନ୍ଧନ ପିତୃବିୟୋଗ ଘଟେ । ତାହାପରେ ଚିର ଦିନପାଇଁ ବିଦାୟ ନିଅନ୍ତି ମୋର ଜ୍ୟେଷ୍ଠ ଭ୍ରାତୃଜାୟା । ମାତୃସ୍ଥାନୀୟା ଭାଉଜ ମଧ ଭାଇନାଙ୍କ ଭଳି ଯୌଥ ପରିବାର ଭିତରେ ସମସ୍ତଙ୍କ ପ୍ରତି ସମାନ ବ୍ୟବହାର ପ୍ରଦର୍ଶନ କରି ଆଦର୍ଶ ଗୃହିଣୀର ପରିଚୟ ଦିଅନ୍ତି । ସେ ସମସ୍ତ ପରିଶୋଧ କରିବା ସୁଯୋଗ କିମ୍ବା ସାମର୍ଥ୍ୟ ମୋର ଘଟେ ନାହିଁ । ସବୁ ରହିଯାଏ ଜୀବନବ୍ୟାପୀ ଅସରନ୍ତି ବାକି ଖାତାରେ କେବଳ ।

ବାପାଙ୍କ ବିୟୋଗ ତା ୨୮ ।୭ ।୧୯୩୫ରେ । ତାହାର ବର୍ଷେ ଦୁଇବର୍ଷ ପୂର୍ବରୁ ସେ ସ୍ୱରଚିତ 'ଆତ୍ମଦର୍ଶନରେ ବିଶ୍ୱଚିତ୍ର-କଳ୍ପନା' ଗ୍ରନ୍ଥରଚନା ସମ୍ପୂର୍ଣ୍ଣ କରନ୍ତି । ମୁଁ ବାରମ୍ବାର ତାଙ୍କୁ

ସେଥିଲାଗି ସ୍ମରଣ କରାଇଦିଏଁ; କିନ୍ତୁ ସେ ଗ୍ରନ୍ଥଟି ଲେଖି ସାରିବା ପରେ ତାହାର ପ୍ରକାଶନ ଦିଗରେ ନିଜ କର୍ତ୍ତବ୍ୟରେ ମୋର ଅକ୍ଷମଣୀୟ ତ୍ରୁଟି ରହିଗଲା । ସାମାନ୍ୟ ଉଦ୍ୟମ କରିଥିଲେ, ଗ୍ରନ୍ଥଟିକୁ ମୁଁ ମହାରାଜାଙ୍କ ରାଜ୍ୟସରକାର ସାହଚର୍ଯ୍ୟରେ ବାରିପଦା ଛାପାଖାନାରେ ହିଁ ମୁଦ୍ରଣ କରାଇ ପାରିଥାନ୍ତି । ବାପାଙ୍କ ଜୀବିତାବସ୍ଥାରେ ତାଙ୍କପ୍ରତି ପୁତ୍ରର ଯଥାର୍ଥ କର୍ତ୍ତବ୍ୟ କରିଥିଲେ ଜ୍ୟେଷ୍ଠ ଦିବ୍ୟସିଂହ—ଭରଣପୋଷଣର ସମସ୍ତ ଦାୟିତ୍ୱ ବହନ କରିଥିଲେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ । ଭାଇନାଙ୍କ ଜୀବନାବସାନ ସମୟରେ ପୁଣି କନିଷ୍ଠ ଭଗବତୀର ଶେଷ ମୁହୂର୍ତ୍ତରେ ମଧ୍ୟ ଉପସ୍ଥିତ ରହି ନ ପାରି ଅନୁତପ୍ତ ହୋଇଛି ।

ମୋର ପିତୃଋଣ ପରିଶୋଧ ଦିଗରେ ଓଡ଼ିଶା ସରକାରଙ୍କ ତତ୍କାଳୀନ ସାଂସ୍କୃତିକ ବିଭାଗ ଉକ୍ତ ମୁଦ୍ରଣ ବ୍ୟୟ ବହନକରି କୃତଜ୍ଞତାଭାଜନ ହୋଇଛନ୍ତି । ପୁଣି ମୁଦ୍ରଣର ଦାୟିତ୍ୱ ଗ୍ରହଣ କରିଛନ୍ତି ସୁବିଖ୍ୟାତ ସାହିତ୍ୟିକ ବନ୍ଧୁ ଶ୍ରୀ ରାମକୃଷ୍ଣ ନନ୍ଦ, ବାରିପଦା ରହଣିବେଳେ କବି ଶ୍ରୀ ଲକ୍ଷ୍ମୀଧର ନାୟକଙ୍କ ସମ୍ପାଦନାରେ ଜାମସେଦପୁରର 'ବିଚ୍ଛିନ୍ନା' ପତ୍ରିକା ପ୍ରକାଶ ପାଏ ଓ ମୋର 'ସିଂହଭୂମରେ ଶୃଗାଳ' ଶୀର୍ଷକ ଲେଖା ସ୍ଥାନପାଏ, ତା'ର ପ୍ରଥମ ସଂଖ୍ୟା ପ୍ରଥମ ପୃଷ୍ଠାରେ ଆହୁରି କେତେ ବନ୍ଧୁଙ୍କର ଅମୂଲ୍ୟ ସ୍ମୃତି ବହୁ କ୍ଷେତ୍ରରେ ଉଲ୍ଲେଖ କରିବାକୁ ଅସମର୍ଥ ହୋଇ ମୁଁ ଅପରାଧୀ ରହିଗଲି ।

ମୋହ ପରିବାର ସହିତ ଭାଗ୍ୟର ପରିବାର ବୃଦ୍ଧି ଘଟେ ସେହି ବାରିପଦାରେ ବାପାଙ୍କ ତିରୋଧାନ ପରେ । ସେତେବେଳେ କୁନି (ନନ୍ଦିନୀ) ସାନପିଲା; ଅଥଚ ପିଲାଦିନୁଁ ଭଲ ଖାଇବା କି ଭଲ ପିନ୍ଧିବା ପ୍ରତି ତା'ର ଅନାଗ୍ରହ ଦେଖି ଆମେ ଆଚମ୍ବିତ ହେଉଁ । ପୁଣ୍ୟ ପର୍ବରେ ଲୁଗା ଜାମା କିଣାହୋଇ ଆସିଲେ ଆଗ ଅନ୍ୟମାନେ ଯେଝା ପସନ୍ଦ ଅନୁସାରେ ବାଛି ନିଅନ୍ତି । ସେଥିଲାଗି ସମସ୍ତଙ୍କୁ ସେ ସାହାଯ୍ୟ କରେ ବରଂ ଆପଣାବେଳକୁ ସବୁଠାରୁ କମ୍ ଦାମିକା ଲୁଗା ଜାମା ନେଇ ସମାନଭାବରେ ଖୁସିହୁଏ । ଖାଇବାରେ ମଧ୍ୟ ଠିକ୍ ସେମିତି ।

ଏଇ ପ୍ରକୃତିଟା ତା'ର ପିଲାଦିନୁଁ ମୁଁ ଯେତେ ଲକ୍ଷ୍ୟ କରି ନଥିଲି, କରନ୍ତି ତା'ର ଜନ୍ମଦାତ୍ରୀ । ଖାଇବା ପିନ୍ଧିବାରେ ପିଲାଙ୍କ ଭିତରେ ଯେମିତି ବାଦବୁଦିଆ ଲାଗେ, ସେଇ ସାଧାରଣ ରୀତିରୁ ଅବା ସେ ତା'ର ଜନ୍ମରୁ ଅଲଗା । କେବେହେଲେ ଆମ ଯୌଥ ପରିବାର ଭିତରେ କାହାରି ସାଥିରେ ତା'ର ପ୍ରତିଯୋଗିତା କେବଳ ଯେମିତି ସବୁଠାରୁ କମ୍ ନେବାରେ ସିନା, ବେଶି ନୁହେଁ କଦାପି । ଶିଶୁ ମନସ୍ତତ୍ତ୍ୱ-ବିଶ୍ଳେଷଣରେ ମୋର ଅପାରଗତା ସ୍ୱୀକାର କରିବାକୁ ହୁଏ, ମୋତେ ଅବଶ୍ୟ ମନେ ମନେ ଏଇ ପରିସ୍ଥିତିରେ ।

ବାପ ମା' ତିନି ପୁଅ, ତିନି ବୋହୂସମେତ ତାଙ୍କର ପୁତ୍ର କନ୍ୟା ଓ ମୋର ବିଧବା ଭଉଣୀ ନିଃସନ୍ତାନା କମଳାନାନୀ । ଘରଟାରେ ଗହଳ ଚହଳ ଲାଗିରହେ ଦିନରାତି । ମାସ ଶେଷରେ ମୋର ଦରମା ଟଙ୍କାତକ ଧରିଦିଏଁ ଭାଇନାଙ୍କ ହାତରେ । ବାପା ତାଙ୍କ ଆଇନ୍ ବ୍ୟବସାୟ ପୁରୀଠାରୁ ଛାଡ଼ିବା ଦିନୁଁ କେବେହେଲେ ଆଉ ପଇସା ଛୁଅନ୍ତି ନାହିଁ । ଭାଇନାଙ୍କ ଉପରେ ତାଙ୍କର ଅଖଣ୍ଡ ବିଶ୍ୱାସ ।

ତାଙ୍କ ଦେଖାଦେଖି ମୁଁ ମଧ୍ୟ ପୁରୀରେ ସମସ୍ତେ ଏକାଠି ଥିବା ସମୟରେ ଯେମିତି, ବାରିପଦା ଆସିଛି ସେମିତି ମୋ ଦରମା ଟଙ୍କାରୁ ହାତ ଖର୍ଚ୍ଚପାଇଁ କିଛି ପ୍ରାୟ ରଖୁ ନଥିଲି । ସାୟାଦିକତାରୁ ଯାହା ମୋତେ ମିଳେ, ସେତିକି ମୋର ଯଥେଷ୍ଟ ହୁଏ ନିଜ ହାତ ଖର୍ଚ୍ଚ ସକାଶେ । ପୁରୀରେ ସେମିତି ଗସ୍ତଖର୍ଚ୍ଚାରୁ ଯେତିକି ଲବ୍ଧ ହୁଏ ସେତକ ମୋର ।

ଜୀବ-ଜଗତରେ ତଗତିର ବହୁ ତାରତମ୍ୟ । ଜିଆନାଡ଼ ଭଳି କିଏ ନିଜ ପଶ୍ଚାତ୍ ଭାଗକୁ ଆଗ ଗୋଟାଇ ଆଣି ତହୁଁ କରନ୍ତି ଅଗ୍ରଗତି । ଝିଣ୍ଟିକା ଆଦି ପତଙ୍ଗମାନେ ଗୋଟିଏ ଥାନରୁ ଅନ୍ୟ ଥାନକୁ ଲମ୍ଫଦେଇ ସେଠାରେ ପଡ଼ନ୍ତି । ପୁଣି ସେଠାରୁ ଡିଅନ୍ତି ଆଉ ଗୋଟାଏ ଥାନକୁ । ଚଢ଼େଇମାନେ ପୃଥିବୀକୁ ଛାଣି ଡେଣା ମେଲି ଛାଏଁ ଉଡ଼ନ୍ତି ଆକାଶରେ । ମଣିଷ ଆଜି ଯନ୍ତ୍ର ଯୁଗରେ ଜଳ, ସ୍ଥଳ, ଆକାଶ ଭ୍ରମଣ କଲାଣି ।

ମୋର ଚାକିରି ଜୀବନଟା ଏମିତି ପତଙ୍ଗ ଭଳି ଅଥବା ଆକାଶ ଭ୍ରମଣ ଭଳି ଗୋଟିଏ ଥାନରୁ ଆଉ ଗୋଟିଏ ଥାନକୁ ଚାଲିଥାଏ ଡେଇଁ ଡେଇଁକା । କୌଣସି ଥାନରେ ସ୍ଥାୟୀ ହୋଇ ମୁଁ ରହିପାରି ନାହିଁ ।

ଟିକି ଚଢ଼େଇ ତା' ମା'କୁ କହିଲା ଭଳି ମନକୁ ଖାଲି ସାନ୍ତ୍ୱନା ଦେବା କଥା ଯେ— ''ମାଆ ଲୋ ମା, ମୁଁ ଯେଉଁ ଡାଳରେ ବସୁଛି ସେ ଡାଳଟା ଭାଙ୍ଗି ପଡୁଛି ।'' ଅଥଚ ଚଢ଼େଇଟିର ଟାଙ୍କ ଲାଞ୍ଜକୁ ଉଲୁଖା ଦେଇ ମା ତା'ର ପରିହାସ କରେ—ସେ ଏକ ନମ୍ବର ବାହାପିଆ ।

ପ୍ରଥମେ ସମବାୟ ବିଭାଗଟା ଯେମିତି ମୋର ଆଶା ଭରସାର ସୌଭାଗ୍ୟ ହୋଇସାରି ଶେଷରେ ଦୁର୍ଭାଗ୍ୟର କାରଣରୂପେ ଦୂରେଇ ଯାଏ, ସେମିତି ଅବସାନ ଘଟେ ବାରିପଦାରେ ସୁଖମୟ ଯୌଥ ପାରିବାରିକ ଜୀବନର । ସେହି ବାରିପଦାରେ ଗଢ଼ାହୁଏ ମୋହରି ଅଧ୍ୟକ୍ଷତାରେ ବାରିପଦା ସାହିତ୍ୟସମାଜ । ସେହିଠାରେ ଥିବା ସମୟରେ ହିଁ କଟକ ଆସି ଶ୍ରୀରାମଚନ୍ଦ୍ର ଭବନରେ ଅନୁଷ୍ଠିତ ସପ୍ତାହବ୍ୟାପୀ 'ନବଯୁଗ-ସାହିତ୍ୟ-ସଂସଦ'ର ମୁଁ ଉଦ୍‌ଘାଟନ କରେଁ ।



# ନବଯୁଗ ସାହିତ୍ୟ ସଂସଦ – ୧୯୩୫

ଉଦ୍‌ଘାଟନ ଭାଷଣ ମୋର ଆରମ୍ଭ ହୁଏ –

''ସହଯାତ୍ରୀବର୍ଗ ! ନବଯୁଗ-ସାହିତ୍ୟ-ସଂସଦର ପ୍ରଥମ ଉତ୍ସବ ସପ୍ତାହରେ ପ୍ରଧାନ ସଭାପତିର ଆସନ ଅଧିକାର ପାଇ ମୋହର ଆସନ ବ୍ରିଟିଶ୍ ପାର୍ଲାମେଣ୍ଟର (Speaker) ବା ବାଚସ୍ପତି ସଙ୍ଗେ ସମାନ । ଫରକ ଭିତରେ ଏତିକି, ପାର୍ଲାମେଣ୍ଟର ସେ ସ୍ଥାନଟି ଯାହାକୁ ମିଳେ, ସେ କେବଳ ବାଚସ୍ପତିର ନାମଟି ପାଇଥାନ୍ତି; କିନ୍ତୁ କାମରେ ତାଙ୍କୁ ପ୍ରଗାଢ଼ ମୌନବ୍ରତ ପାଳି ଅନ୍ୟମାନଙ୍କର ବକ୍ତୃତା ଶୁଣିବାକୁ ହିଁ ହୁଏ– ଏପରିକି ନିଜେ ସେ ଯାହା କହନ୍ତି, ସେଥିରେ ତାଙ୍କୁ ବାଚସ୍ପତି ନ କହି ମୂକ କହିବା ହିଁ ଅଧିକ ସଂଗତ ।''

ଭାଷଣଟିରେ ସମାଜରେ ଶୈଶବରୁ କିପରି ଧର୍ମ-ଦାସତ୍ୱ ଶିକ୍ଷାଦିଆଯାଏ, ବର୍ତ୍ତମାନ ଶିକ୍ଷାପଦ୍ଧତିରେ ତ୍ରୁଟି, ଯୌବନ-ବିବାହରେ ବିଭିନ୍ନ ରୀତି ଓ ତାହାର ଅସାରତା-ତରୁଣର ଅର୍ଥ ସମସ୍ୟା - ଯୁବକର ହେତୁହୀନ ଭୀରୁତା - ଚରିତ୍ର ଓ ଚିନ୍ତାର ଆଧୁନିକ ବ୍ୟାଖ୍ୟା ପୁଣି ଗତିଧାରା-ଭାରତର ସ୍ୱଦେଶିକତା- ନୂଆ ଓଡ଼ିଶା ପ୍ରଦେଶ ଓ ପୃଥିବୀର ରାଜନୀତିରେ ଯୁବକର ସମ୍ଭାବନା ପୁଣି ଏ ଦେଶରେ ନାରୀର ସ୍ଥାନବିଷୟକ ବିଚିତ୍ର ଚିନ୍ତାଧାରାର ବିଶ୍ଳେଷଣ କରାଯାଏ ।

ଆଧୁନିକ ଜୀବନ ସମ୍ପର୍କରେ ମୋର ଭାଷଣର ପ୍ରଭାବ ସେତେବେଳେ ଏକ ତୁମୁଳ ଆଲୋଡ଼ନ ସୃଷ୍ଟି କରେ ଯୁବଗୋଷ୍ଠୀରେ ।

ଶ୍ରଦ୍ଧେୟା ମାଳତୀ ଚୌଧୁରୀ, ଶ୍ରଦ୍ଧେୟ ନବକୃଷ୍ଣ ଚୌଧୁରୀ, ସ୍ୱର୍ଗତ ପଣ୍ଡିତ ଲିଙ୍ଗରାଜ ମିଶ୍ର ପ୍ରମୁଖ ବହୁ ବନ୍ଧୁଙ୍କଠାରୁ ଯେପରି ପ୍ରଶଂସା ପାଏଁ ସେଇ ଭଳି ସ୍ୱର୍ଗତ ଚିନ୍ତାମଣି ଆଚାର୍ଯ୍ୟଙ୍କ ଭଳି ସ୍ଥିତିଶୀଳ ବ୍ୟକ୍ତିମାନେ ସମାଲୋଚନା-ମୁଖର ହୁଅନ୍ତି। ପଣ୍ଡିତ ନୀଳକଣ୍ଠଙ୍କ ସମ୍ପାଦିତ ମାସିକ 'ନବ ଭାରତ' ପତ୍ରିକାର ଏକ ବିଶେଷ ସଂଖ୍ୟାରେ ନବଯୁଗ-ସାହିତ୍ୟସଂସଦର ବିଭିନ୍ନ ଭାଷଣ ଓ ଲେଖାବଳୀ ପ୍ରକାଶିତ ହୁଏ । କିଛି ଦିନ ପରେ କଟକରୁ ଆତ୍ମପ୍ରକାଶ କରେ ଏହି ଅନୁଷ୍ଠାନ ପକ୍ଷରୁ 'ଆଧୁନିକ' ମାସିକପତ୍ର, ନୂତନ ଚିନ୍ତାଧାରାର ବାହକ ହୋଇ । ଏହି ପତ୍ରିକାରେ ମୋର 'ସବୁଠାରେ ସମ୍ଭବ' ସାମାଜିକ ନାଟକ ଧାରାବାହିକ ଅଂଶିକ ରୂପେ ପ୍ରକାଶ ପାଏ ।

ନବଯୁଗ-ସାହିତ୍ୟ-ସଂସଦର ବିଭିନ୍ନ ଦିବସରେ ଯେଉଁମାନେ ପ୍ରବନ୍ଧ ପାଠ କରନ୍ତି, ସେମାନଙ୍କ ମଧ୍ୟରେ ବିଚାରପତି ଶ୍ରୀ ହରିହର ମହାପାତ୍ର, କବିଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକ, ଡକ୍ଟର ସଦାଶିବ ମିଶ୍ର, ଡକ୍ଟର ହରିବନ୍ଧୁ ମହାନ୍ତି, ଶ୍ରୀ ଅନନ୍ତ ପଟ୍ଟନାୟକ, ଶ୍ରୀ ଭଗବତୀଚରଣ ପାଣିଗ୍ରାହୀ, ଶ୍ରୀ ବିଶ୍ୱନାଥ ପଶାୟତ, ଶ୍ରୀ ଗୁରୁଚରଣ ପଟ୍ଟନାୟକ, ଶ୍ରୀ ଗୋପୀନାଥ ମହାନ୍ତି, ଶ୍ରୀ ସଚ୍ଚି ରାଉତରାୟ ପ୍ରମୁଖ । 'ଆଧୁନିକ' ମାସିକପତ୍ର ମଧ୍ୟ କିଛି କାଳପାଇଁ ପ୍ରକାଶିତ ହୁଏ, ପ୍ରତି ମାସର ମଲାଟ ଉପରେ ତା'ର ପଣ୍ଡିତ ଜବାହରଲାଲଙ୍କ ଚିତ୍ର ବହନ କରି ।

ସେତେବେଳେ ତ୍ରିଂଶ ଦଶକର ମଧ ଭାଗରେ ଆଧୁନିକ ଯେଉଁ ପ୍ରଗତିଶୀଳ ସାହିତ୍ୟର ବାର୍ତ୍ତା ପ୍ରଚାର କରେ, ତାହାର ସ୍ଥାୟିତ୍ୱ ସୁଦୀର୍ଘ ନ ହେଲେ ହେଁ, ପ୍ରଭାବ ଚିର ଅମଳିନ । ନବଯୁଗ-ସାହିତ୍ୟ-ସଂସଦ-ସ୍ୱାଧୀନ ଚିନ୍ତାର ବାହକ ରୂପେ ସେତେବେଳେ ଯେଉଁ ଆଲୋଡ଼ନ ସୃଷ୍ଟି କରେ, ତାହାର ଅନ୍ୟତମ ପ୍ରମାଣ ସ୍ୱର୍ଗତ ଦର୍ଶନ ଅଧାପକ ଓ ବ୍ୟାସକବି ଫକୀର ମୋହନଙ୍କ ପୁତ୍ର ମୋହିନୀମୋହନ ସେନାପତିଙ୍କର ନିମ୍ନୋକ୍ତ ଭାଷଣରୁ ସୂଚିତ ହୁଏ ।

୧୯୩୫ ମସିହା, ଡିସେମ୍ବର ୧ ତାରିଖରେ ଧର୍ମ ସମ୍ବନ୍ଧରେ ସେ ଏହିପରି ମତବ୍ୟକ୍ତ କରନ୍ତି, ନବଯୁଗ-ସାହିତ୍ୟ-ସଂସଦର ବୈଠକରେ–

''କେତେକ ଧାର୍ମିକ ଅଛନ୍ତି, ଯେଉଁମାନେ କହନ୍ତିଯେ ସେମାନେ ଭଗବାନ୍‌ଙ୍କୁ ଦେଖିଅଛନ୍ତି । ଯାହାଙ୍କର ଅସ୍ତିତ୍ୱ ନାହିଁ, ଲୋକେ ତାହାଙ୍କୁ ଦେଖନ୍ତି କିପରି ? ପ୍ରାଚୀନକାଳରେ ଆର୍ଯ୍ୟଋଷିମାନେ ଭଗବାନ୍‌ଙ୍କୁ ଦେଖିବାପାଇଁ ସୋମରସ ପାନ କରୁଥିଲେ, ଆଜିକାଲି ମଧ ଅନେକ ସନ୍ନ୍ୟାସୀ ସେହି ଉଦ୍ଦେଶ୍ୟରେ ଗଞ୍ଜା ସେବନ କରିଥାନ୍ତି । ଯେ ପର୍ଯ୍ୟନ୍ତ ମସ୍ତିଷ୍କ ପ୍ରକୃତିସ୍ଥ ଥାଏ ସେ ପର୍ଯ୍ୟନ୍ତ ସେ ଅଳୀକ ବସ୍ତୁଦର୍ଶନ କରିପାରେ ନାହିଁ । ଏଥିପାଇଁ ଧାର୍ମିକମାନେ ପ୍ରକୃତିସ୍ଥ ନ ହୋଇ ଅପ୍ରକୃତିସ୍ଥ ହେବା ଅଧିକ ବାଞ୍ଛନୀୟ ମନେ କରନ୍ତି । ଧାର୍ମିକ ଓ ପାଗଳ ଏକ-ଶ୍ରେଣୀଭୁକ୍ତ । ସଭ୍ୟଯୁଗରେ ଧାର୍ମିକମାନେ ଗଞ୍ଜା ଓ ସୋମରସ ପରିତ୍ୟାଗ କରିଅଛନ୍ତି ସତ୍ୟ, ସେମାନେ ବାତୁଳତାର ଅନ୍ୟଗୋଟିଏ ପନ୍ଥା ଅବଲମ୍ବନ କରନ୍ତି । ଯୋଗଦ୍ୱାରା ଆମ୍ଭେମାନେ କୌଣସି ଗୋଟିଏ ବିଷୟରେ ଅଧିକ କାଳ ମନଃସଂଯୋଗ କଲେ ତାହା ପ୍ରତ୍ୟକ୍ଷ-ଜ୍ଞାନ ବୋଲି ପ୍ରତୀତ ହୁଏ । ଏହି ଚିତ୍ତଭ୍ରାନ୍ତି (hallucination) ଯୋଗରେ ଅବଶ୍ୟମ୍ଭାବୀ ଫଳ । ଏତଦ୍ୱାରା ଭଗବାନ୍, ମୃତ ଲୋକ ଏବଂ ନାନାରୂପ ଅଳୀକ ବସ୍ତୁ ପ୍ରତ୍ୟକ୍ଷୀଭୂତ ହୋଇଥାଏ । ଆଜି କାଲି ଭଗବାନ୍‌ଙ୍କୁ ଦର୍ଶନ କରିବାର ଏହା ଗୋଟିଏ ପ୍ରଶସ୍ତ ପନ୍ଥା । ଧାର୍ମିକମାନେ ଉପବାସ ପ୍ରଭୃତି ଯେତେ ପ୍ରକାର କୃଚ୍ଛ୍ର ସାଧନା କରିଥାଆନ୍ତି, ତଦ୍ୱାରା ମସ୍ତିଷ୍କ ଅବଶ ହୋଇଯାଏ । ସେ ଅବସ୍ଥାରେ ଅସତ୍ୟ ସତ୍ୟ ରୂପେ ପ୍ରତ୍ୟକ୍ଷୀଭୂତ ହୁଏ । ଅନେକ ବିଶ୍ୱାସ କରନ୍ତି ଯେ, ଭଗବାନ୍‌ଙ୍କୁ ଦର୍ଶନକଲେ ସ୍ୱର୍ଗପ୍ରାପ୍ତି ହୁଏ । ପ୍ରକୃତିସ୍ଥ ଥିବା ପର୍ଯ୍ୟନ୍ତ ମାନବ ଭଗବାନ୍‌ଙ୍କୁ ଦର୍ଶନ କରେ ନାହିଁ । ସେଥିପାଇଁ ଅପ୍ରକୃତିସ୍ଥ ହେବା ଧାର୍ମିକମାନଙ୍କର ଈପ୍‌ସିତ ଅଟେ ।

''ଆଉ ଗୋଟିଏ କାରଣରୁ ଧର୍ମପ୍ରତି ଲୋକମାନଙ୍କର ଆସକ୍ତି ଜାତ ହୋଇଥାଏ । ଧର୍ମମନ୍ଦିରରେ, ଗିର୍ଜା ଓ ମସ୍‌ଜିଦ୍‌ରେ ଆମ୍ଭେମାନେ ଆମ୍ଭମାନଙ୍କର ସଙ୍ଗୀମାନଙ୍କ ସହିତ ମିଳିତ ହେଉ । ସେଠାରେ ପୁଷ୍ପର ସୌରଭ ଓ ସଙ୍ଗୀତର ମଧୁରଧ୍ୱନି ଉପଭୋଗ କରୁଁ । ଏହିସବୁ ଆନୁଷଙ୍ଗିକ ବ୍ୟାପାରଯୋଗୁଁ ଆମ୍ଭମାନଙ୍କର ଧର୍ମପ୍ରତି ଅନୁରାଗ ଜାତ ହୁଏ । ନାସ୍ତିକ ସମାଜର ସୌଧ ଶିଖର ଯଦି ପୁରୀମନ୍ଦିର ପରି ଗଗନ ଭେଦ କରେ, ପ୍ରକୃତିର ବିରାଟ ଓ ରମ୍ୟ ଦୃଶ୍ୟ ସମ୍ମୁଖରେ ଯଦି ନାସ୍ତିକ-ସୌଧ ସ୍ଥାପିତ ହୁଏ, ଯଦି ପୁଷ୍ପ ଏବଂ ସୁଗନ୍ଧ ଦ୍ରବ୍ୟଦ୍ୱାରା ନାସ୍ତିକ ଅଟ୍ଟାଳିକା ଆମୋଦିତ କରାହୁଏ ଏବଂ ସଙ୍ଗୀତ ଓ ବାଦ୍ୟର ମଧୁର ଧ୍ୱନିଦ୍ୱାରା ନାସ୍ତିକ-ମନ୍ଦିର ଝଙ୍କୃତ ହୁଏ, ତେବେ ପୃଥିବୀର ଯାବତୀୟ ତୀର୍ଥଯାତ୍ରୀମାନେ ଆମ୍ଭମାନଙ୍କର ନାସ୍ତିକ ମନ୍ଦିରରେ ପଦାର୍ପଣ କରି କହିବେ– ନାସ୍ତିକ ଧର୍ମ କି ଉଦାର କି ମହତ୍ ! ଧର୍ମର ମହତ୍ତ୍ୱ ଧର୍ମରେ ନାହିଁ । ତାହା ତାହାର ଆନୁଷଙ୍ଗିକ ବ୍ୟାପାରରେ ବର୍ତ୍ତମାନ ଅଛି ।''

ଏହି ସମୟରେ ବୋଧହୁଏ ମୋର ନିକଟତର ପରିଚୟରେ ଆସିବା ସୁଯୋଗ ଘଟେ ସାହିତ୍ୟଭୂଷଣ, ଶଶିଭୂଷଣ ରାୟଙ୍କ ସହିତ । ତନୁଜଙ୍କୁ କବିବର ରାଧାନାଥ ସ୍ନେହରେ ଡାକୁଥିଲେ 'ମଧୁ' ବୋଲି– ତାଙ୍କ ପ୍ରିୟ ଶିଷ୍ୟ ଭକ୍ତକବି ମଧୁସୂଦନଙ୍କ ନାମ ଧରି ! ସ୍ନେହାଦର୍ଶର କି ଉଜ୍ଜ୍ୱଳ ମହିମା !

ଶଶିଭୂଷଣ ସର୍ବଦା ଗେରୁଆ ଲୁଗା ପିନ୍ଧନ୍ତି, ମୋ ବାପାଙ୍କ ପରି । ଶଶିଭୂଷଣଙ୍କ ଲୁଗା କେବଳ ଗେରୁଆ ନୁହେଁ-ଜାମା ପୁଣି ଛତା ପର୍ଯ୍ୟନ୍ତ ସବୁ । 'ନବଯୁଗ-ସାହିତ୍ୟ-ସଂସଦ'ର ପ୍ରଥମ ଅଧିବେଶନ ପରେ ସେ ନିଜେ ଆସି ମୋତେ ସଙ୍ଖୋଳିଯାନ୍ତି ।

ଦୀର୍ଘ କାଳ ଉତ୍କଳ ସାହିତ୍ୟ ସମାଜର ସମ୍ପାଦକ ରୂପେ କାର୍ଯ୍ୟ କରିଥିବା ହେତୁ ଅନେକ ସମୟରେ ଭେଟହୁଏ ତାଙ୍କ ସହିତ ! ସଦାଶୟତାର ଏକ ମୂର୍ତ୍ତିମନ୍ତ ବିଗ୍ରହ ଥିଲେ ଶଶିବାବୁ । ଉତ୍କଳ-ପ୍ରକୃତିର ବର୍ଣ୍ଣନାରେ ଯେପରି ଓଡ଼ିଆ ଗଦ୍ୟ ତାଙ୍କର ଜନକଙ୍କ ଅତୁଳନୀୟ ପଦ୍ୟର ପଦାଙ୍କ ଅନୁସରଣ କରିଛି ଅବା !

ମୟୂରଭଞ୍ଜ, ଆଠମଲ୍ଲିକ, ବୌଦ୍ଧ, ଦଶପଲ୍ଲା ଆଦି ରାଜ୍ୟମାନଙ୍କରେ ଭ୍ରମଣ କରିବା ଥିଲା ତାଙ୍କର ଅଭ୍ୟାସଗତ । ମୋ ଘରକୁ ଆସି ମଧ ସେ ପଦଧୂଳି ଦେଇ ଯାଇଛନ୍ତି କେତେ ଥର । ପିତୃ ଦତ୍ତ ଶ୍ରଦ୍ଧା ନାମ 'ମଧୁ' ଅନୁଯାୟୀ ମଧୁର ଥିଲା ସବୁବେଳେ ଶଶିଭୂଷଣଙ୍କ ବ୍ୟବହାର ।

'ନବଯୁଗ-ସାହିତ୍ୟ-ସଂସଦ'ର ବିଭିନ୍ନ ଅଧିବେଶନରେ ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶଙ୍କ ଭଳି ପ୍ରବୀଣ ସାହିତ୍ୟିକମାନଙ୍କୁ ବାଦ୍ ଦିଆଯିବା ଘଟଣା ସେତେବେଳେ ଚିହ୍ନିତ ହୋଇପଡ଼େ । ତଥାପି ନୀଳକଣ୍ଠଙ୍କ 'ନବଭାରତ' ମାସିକ ପତ୍ରର ଗୋଟିଏ ସଂଖ୍ୟା ସେଥିଲାଗି ଉତ୍ସୃଷ୍ଟ ହୁଏ ଭାଷଣଗୁଡ଼ିକୁ ବିବରଣ ସହ ଏକତ୍ର ପ୍ରକାଶ କରି ।

ନୀଳକଣ୍ଠ ଓ ଗୋଦାବରୀଶ ଉଭୟ ସେତେବେଳେ କଂଗ୍ରେସ ସରକାରକୁ ସମାଲୋଚନା କରନ୍ତି । କୌଣସି କୌଣସି କଂଗ୍ରେସ ନେତାଙ୍କ 'ଦେଶସେବା' କୁ ପବିତ୍ର ମହାପ୍ରସାଦ ସେବା ସହିତ ତୁଳନା କରି ଆଙ୍ଗୁଠିରେ ଲାଗିଥିବା ପ୍ରସାଦକୁ ଜିହ୍ୱାରେ ଲେହନ ଓ ମସ୍ତକରେ ସ୍ପର୍ଶ କରିବା ଅଭିନୟ ଦେଖାଇ ଟାଉନ୍‌ହଲ ସଭାର ଶ୍ରୋତାମାନଙ୍କ ହାସ୍ୟ ଉଦ୍ରେକ କରନ୍ତି ନୀଳକଣ୍ଠ । ସେଇଭଳି ଶ୍ରୀରାମଚନ୍ଦ୍ର ଭବନର ଗୋଟିଏ ସଭାରେ ପଣ୍ଡିତ ଗୋଦାବରୀଶ କଂଗ୍ରେସ ମନ୍ତ୍ରୀମାନଙ୍କୁ ତାଙ୍କ ସେକ୍ରେଟାରୀମାନେ ମଧ ସ୍କୁଲ ମାଷ୍ଟର ଛାତ୍ରଙ୍କ କାନ ଧରି ତାଙ୍କୁ ବସଉଠ କଲା ଭଳି ବ୍ୟବହାର କରନ୍ତି, ତାହାର ଗୋଟିଏ ଚିତ୍ର ମଧ ଦେଇଥିଲେ ।

**ଜବାହାରଲାଲ୍‌ଙ୍କୁ ସମ୍ବର୍ଦ୍ଧନା**

ନବଯୁଗ ସାହିତ୍ୟ-ସଂସଦ ପକ୍ଷରୁ ପଣ୍ଡିତ ଜବାହରଲାଲ୍ ନେହେରୁଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯାଏ ୧୯୩୬ ଖ୍ରୀଷ୍ଟାବ୍ଦରେ । ମୁଖପାତ୍ର 'ଆଧୁନିକ'ରେ ପ୍ରକାଶିତ ଏହି ଅଭିନନ୍ଦନର ଉତ୍ତରରେ ନେହେରୁଙ୍କ ଭାଷଣର ଅନୁବାଦ ଏଠାରେ ଉଲ୍ଲେଖଯୋଗ୍ୟ–



# 'ଆଧୁନିକ' ପ୍ରଥମ ବର୍ଷ

''ଯାହା ଆସୁ ପଛେ ପଛଘୁଞ୍ଚା ଦିଅ ନାହିଁ''— ୧୯୩୬ ଅକ୍ଟୋବର– ଷଷ୍ଠ ସଂଖ୍ୟା (ରାଷ୍ଟ୍ରପତି ପଣ୍ଡିତ ଜବାହରଲାଲ ନେହେରୁ ଉତ୍କଳକୁ ଆସିଥିଲାବେଳେ କଟକରେ ଗୋଟିଏ ସତନ୍ତ ଆହୂତ ସଭାରେ ତାଙ୍କୁ ନବଯୁଗ-ସାହିତ୍ୟ-ସଂସଦ ତରଫରୁ ଅଭିନନ୍ଦନ ଦିଆଯାଇଥିଲା । ସେ ଅଭିନନ୍ଦନର ଉତ୍ତରରେ ନବଯୁଗ-ସାହିତ୍ୟ-ସଂସଦର ସଭ୍ୟମାନଙ୍କୁ, ନା ପ୍ରକୃତରେ ଓଡ଼ିଶାର ଯୁବକ-ଯୁବତୀଙ୍କୁ ଉଦ୍‌ବୋଧନ କରି ଯେ, କେତୋଟି କଥା କହିଥିଲେ, ତା'ର ଅନୁଲିପି ତଳେ ଦିଆଗଲା । ଅଭିନନ୍ଦନ ପତ୍ରର ଓଡ଼ିଆ ଅନୁବାଦ ମଧ ତାହା ପରେ ଦିଆଯାଇଛି ।

—ସମ୍ପାଦକ)

''ପୃଥିବୀ ଆଗରେ ଆଜି ବହୁ ସମସ୍ୟା ଶିରୋତ୍ତୋଳନ କରିଛି । ଦେଶର ଯୁବକମାନଙ୍କର କର୍ତ୍ତବ୍ୟ ହେଉଛି– ସେଗୁଡ଼ିକର ସନ୍ଧାନ ନେବା, ତାକୁ ବିଶ୍ଳେଷଣ କରି ଦେଖି ମନୁଷ୍ୟ ପରି ତା'ର ସମ୍ମୁଖୀନ ହେବା । ଖାଲି ତୁଣ୍ଡଗୋଳ, ବା ସ୍ଲୋଗାନ୍ (slogan) ରେ କିଛି ଲାଭ ହେବ ନାହିଁ । ଜଗତ୍ ଉପରେ ଏକ୍ଷରି ବିପ୍ଳବାତ୍ମକ ପରିବର୍ତ୍ତନର ସ୍ରୋତ ବହି ଯାଉଛି । ଏହି ବିକ୍ଷୋଭମୂଳକ ଆନ୍ଦୋଳନ ସମ୍ଭବ ହୋଇଛି ସୁଗଭୀର ସ୍ୱତଃସ୍ଫୂର୍ତ୍ତ ପ୍ରାକୃତିକ କାରଣ ଯୋଗୁଁ; – ଏଣୁ ତୁମକୁ ଆଜି ଅନୁଧ୍ୟାନ କରିବାକୁ ହେବ– ଏ ପୃଥିବୀ ଥିଲା କଅଣ ଓ ଅଛି କେଉଁ ଅବସ୍ଥାରେ । ଊନବିଂଶ ଶତାବ୍ଦୀରୁ ଆସି ବିଂଶ ଶତାବ୍ଦୀରେ ଆଜି ବିଶ୍ୱଜଗତ ବେଗବାନ୍ ହୋଇ ଉଠିଛି କି ନା । ତମକୁ ଆଜି ପରିବର୍ତ୍ତନର ସ୍ପନ୍ଦନବୋଧ କରିବାକୁ ହେବ । ମନେରଖ, ଏହି ବିପ୍ଳବରେ, ଏହି ଭୂମିକମ୍ପରେ ଏଇ ମାନବିକ ଅଭ୍ୟୁତ୍‌ଥାନରେ ବ୍ୟକ୍ତିବିଶେଷର ପ୍ରଶ୍ନ ଉଠେ ନାହିଁ,– ବ୍ୟଷ୍ଟିର କେହି ଗଣନା ରଖେ ନାହିଁ ।

''କିନ୍ତୁ ବ୍ୟକ୍ତିତ୍ୱ ବା ପ୍ରତିଭା ଚରିତ୍ର ବଳରେ– ଦୂରଦୃଷ୍ଟି ଓ ଅନ୍ତର୍ଦୃଷ୍ଟି ବଳରେ– ଏଇ ଗର୍ଜନଶୀଳ ପ୍ରବାହ ଉପରେ ଠିଆହୋଇଯାଏ । ଯୁବକର ଆଜି ଭୟକାତର ଦର୍ଶକ ହୋଇ ରହିବା ଉଚିତ ନୁହେଁ । ତାକୁ ଆଜି ପ୍ରବାହ ଉପରେ ଠିଆ ହେବାକୁ ହେବ, ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିବ । ଏ ଭୂମିକମ୍ପରୁ କାହାରହେଲେ ତ୍ରାହି ନାହିଁ । ଯଦି କିଏ ଏଥିରୁ ଖସିଯିବାପାଇଁ ଭୟାର୍ତ୍ତ ଚେଷ୍ଟା କରି ବସେ, ଏହା ତାକୁ ଶେଷରେ ପେଷି ଦେବ । ବିରୁଦ୍ଧାତ୍ମକ ଶକ୍ତିଭିତରେ ଦ୍ୱନ୍ଦ୍ୱ, ପ୍ରଗତି ଆଉ ପ୍ରତିକ୍ରିୟାଶୀଳତା ଭିତରେ ସଂଘର୍ଷ-ସମ୍ପଦ ଓ ଦାରିଦ୍ର୍ୟ, ଇଉରୋପରେ ଫାସିଜିମ୍ ଓ ଫାସିଜିମ୍-ବିରୋଧୀ ନୀତି, ଭାରତରେ ସାମ୍ରାଜ୍ୟବାଦ ଓ ଜାତୀୟତାବାଦ ମଧ୍ୟରେ ଭୟଙ୍କର ବୈସାଦୃଶ୍ୟପୂର୍ଣ୍ଣ ତୁଳନା । ଏ ସବୁ ହେଉଛି ଗୋଟିଏ ଗୋଟିଏ ବଡ଼ ବିପ୍ଳବ । ଏ ବିପ୍ଳବର ଧାରାପ୍ରତି ଲକ୍ଷ୍ୟ ନ ରଖିଲେ କୋଉଦିନ ଯେ କେତେବେଳେ କୋଉ ଭାଷା ବାଲିରେ ବା କାଦୁଅ ପଙ୍କରେ ଗଳି ପଡ଼ିବାକୁ ହେବ, କିଏ କହିବ ?

''ପୃଥିବୀ ଗୋଟାଏ ଅଭିନ୍ନ ବସ୍ତୁ । ଏହା ଭିତରେ ଅଲଗା ଅଲଗା ହୋଇ ରହିବା ଅସମ୍ଭବ । ଗଲା ପାଞ୍ଚବର୍ଷ ଧରି ଯୋଉ ଆର୍ଥନୀତିକ ବିପରି ପଡ଼ିଅଛି, ଯୋଉ ବାଣିଜ୍ୟ ବ୍ୟବସାୟ ମାନ୍ଦା ହୋଇ ଯାଇଛି, ତାହାର କାରଣ ପୃଥିବୀରେ କାର୍ଯ୍ୟ କରୁଥିବା ଶକ୍ତିଗୁଡ଼ିକ । ଏଇ ଶକ୍ତିଗୁଡ଼ିକୁ ଦେଖି ଆମକୁ ରାଜନୀତି, ଇତିହାସ, ବିଜ୍ଞାନ ଓ ଅର୍ଥନୀତି ବୁଝିବାକୁ ହେବ ।''

''ଆମେ ଆଜି ସାମ୍ରାଜ୍ୟବାଦ କବଳରେ ପଡ଼ିଥାଇଁ । ଖାଲି ଗୋଟାଏ ଦେଶ ଅନ୍ୟ ଗୋଟାଏ ଦେଶକୁ ପଦାନତ କରି ରଖିଲେ ସାମ୍ରାଜ୍ୟବାଦ ହୁଏ ନାହିଁ । ଆଜିକାର ବୈଜ୍ଞାନିକ ସାମ୍ରାଜ୍ୟବାଦ ବଜାର ଓ ଉପନିବେଶ ଉପରେ ନିର୍ଭର କରି ତିଷ୍ଠି ରହିଛି । ଏ ସାମ୍ରାଜ୍ୟବାଦକୁ ଆମକୁ ଧ୍ୱଂସ କରିବାକୁ ହେବ ।''

''ଇଉରୋପର ଅବସ୍ଥା, ପାଲେଷ୍ଟାଇନ ଓ ସ୍ପେନ୍‌ର ବର୍ତ୍ତମାନ ଅବସ୍ଥା ଏଇ ଅଭ୍ୟୁତ୍‌ଥାନ, ଏଇ ବିପ୍ଳବର ଜାଗରଣ ଯୋଗୁଁ ସମ୍ଭବ ହୋଇଛି । ମନେ ରଖ, ଗୋଟାଏ ବଡ଼ ସମସ୍ୟା ବୁଝିବାଲାଗି ନିଜକୁ ବଡ଼ କରିବାକୁ ହେବ; କିନ୍ତୁ ଦୁଃଖ ଓ କ୍ଷୋଭର କଥା– ଅନେକେ ଅତି ଛୋଟ ଅତି ତୁଚ୍ଛ ନଗଣ୍ୟ କଥାରେ ଏତେ ମରିଛନ୍ତି ଯେ, ବଡ଼କୁ ଅବହେଳା କରୁଛନ୍ତି । ବୁଝିପାରୁ ନାହାନ୍ତି ଯେ ସେମାନେ କେବଳ ବିପଦ ବରଣ କରୁଛନ୍ତି ।''

''ବୃଦ୍ଧ ଓ ବୟସ୍କଙ୍କ ପାଖରେ କଷ୍ଟକର ହେଉଛି ବିରାଟର କଳ୍ପନା କରିବା । ସଂକୀର୍ଣ୍ଣ ପରିସରରୁ ଚାଲି ଆସିବା, ଆଗର ଚିନ୍ତାଧାରା ଓ ଭାବ, ଆଚାର-ବିଚାର ଓ ମତକୁ ଦୂର କରିଦେବା । ଏଣୁ ଆଜି ଯୁବକ ଯୁବତୀଙ୍କୁ ଛୋଟ ସମସ୍ୟାଗୁଡ଼ିକରୁ ବାହାରି ଆସି ଉଚ୍ଚଭାବରେ ଚିନ୍ତା କରିବାକୁ ହେବ ଓ ବଡ଼ ବଡ଼ ସମସ୍ୟାର ସମ୍ମୁଖୀନ ହେବାକୁ ହେବ ।''

''ମନେରଖ, ଆମେ ଆଜି ବିପ୍ଳବର ଦ୍ୱାରଦେଶରେ ଉଭାହେଲୁଣି । ସମ୍ମୁଖ ଚକ୍ରବାଳରେ ବଡ଼ ବଡ଼ ସମସ୍ୟାମାନ ଭାତି ଉଠୁଛି । ଦମ୍ଭ ଓ ସାହସରେ ମନୁଷ୍ୟଭଳି ଆଜି ଆମକୁ ସେମାନଙ୍କର ସମ୍ମୁଖୀନ ହେବାକୁ ହେବ । ପରେ ଅବଶ୍ୟ ସମୟ ଜଣେଇ ଦେବ ଆମେ ଆମ କର୍ତ୍ତବ୍ୟ କରୁଛୁ କି ନାହିଁ । ନିଜକୁ ବଡ଼ ଏବଂ ଉଚ୍ଚ ଭାବିବା ଭଲ, କିନ୍ତୁ ବଡ଼ ଭାବ ଛୋଟକଥାରେ ବା ମତୋ ଘୋଷି ବସିଲେ ଜନ୍ମେ ନାହିଁ । ବିପଦରେ ତା'ର ପ୍ରକୃତ ପରୀକ୍ଷିତ ରୂପର ପରିଚୟ ମିଳେ । ଯୁବକକୁ ଏଥିପାଇଁ ପ୍ରସ୍ତୁତ ହେବାକୁ ହେବ । ମନେରଖ, ''ଯାହା ଆସୁ ପଛେ, ପଛଘୁଞ୍ଚା ଦିଅ ନାହିଁ ।''

## ପଣ୍ଡିତ ଜବାହରଲାଲ୍ ନେହେରୁଙ୍କୁ ଅଭିନନ୍ଦନ

ଜବାହରଲାଲ୍ ନେହେରୁ !

''ହେ ଏ ଦେଶର ବିପ୍ଳବୀ ଯୁବଶକ୍ତିର ଶକ୍ତିଶାଳୀ ଜନପ୍ରିୟ ଜନନାୟକ ! ନବଯୁଗ-ସାହିତ୍ୟ-ସଂସଦର ସଭ୍ୟଗଣ ଆମେ ଆଜି ତୁମକୁ ଅଭିନନ୍ଦନ ଜଣାଉଛୁ । ନବଯୁଗର ସାହିତ୍ୟ ଓ ସଂସ୍କୃତିର ଅନୁଶୀଳନକୁ ଲକ୍ଷ୍ୟ ରଖି-ନବଯୁଗ-ସାହିତ୍ୟ-ସଂସଦ,– ଏଇ ସଂଘ ଗଠିତ ହୋଇଛି । ଆମର ବିରାଟ ଓ ଉଜ୍ଜ୍ୱଳ ଅତୀତ ଥାଇ ସୁଦ୍ଧା ଆମେ ବୋଧ କରୁଛୁଁ, ଆମେ ଭାରତର ଲୋକେ ଆଜି ଜଗତରେ ଜୀବନଯାତ୍ରାରେ ବହୁ ପଛରେ । ପ୍ରବଳ ରାଜନୀତିକ ଓ ଆର୍ଥନୀତିକ ଶକ୍ତି ସବୁ ଆମକୁ ଦୁର୍ବଳ ଓ ମୁହ୍ୟମାନ କରିଯାଇଛି । ଅତୀତର ସଂସ୍କୃତି ଓ ଐତିହ୍ୟ ପ୍ରତି ଥିବା ଆମର ଗୋଟେ ଭାବପ୍ରବଣତାପୂର୍ଣ୍ଣ ଅନୁରାଗରେ ଆଘାତ ଲାଗିଲେ ସୁଦ୍ଧା

ଆମେ ଆଜି ବୁଝିପାରୁଛୁଁ ଯେ, ଭାରତ ପକ୍ଷରୁ ସେଇ ପୁରାତନ ଆଦିମଯୁଗକୁ ଫେରିଯିବା ଓ ସେଇ ପୁରାତନ ପ୍ରଣାଳୀରେ ଜୀବନଯାତ୍ରା ନିର୍ବାହ କରିବା ଏଣିକି ଆଉ ଆଦୌ ସମ୍ଭବପର ନୁହେଁ । ଆଧୁନିକ ଉତ୍ପାଦନ ପ୍ରଣାଳୀ ପୁରାତନ ଉତ୍ପାଦନ ପ୍ରଣାଳୀ ପରିବର୍ତ୍ତରେ ଆତ୍ମପ୍ରକାଶ କଲା ଭଳି ଆଧୁନିକ ଚିନ୍ତାଧାରା ପ୍ରାଚୀନ ଚିନ୍ତାଧାରାକୁ ନିଶ୍ଚିତ ରୂପେ ଅପସାରିତ କ[illegible] । ଏଇ ଭାବ ଉପରେ ନବଯୁଗ-ସାହିତ୍ୟ-ସଂସଦର କ୍ରିୟାକର୍ମ ସନ୍ନିବିଷ୍ଟ । ଆମ ଦେଶରେ ନବୀନ ଚିନ୍ତାଧାରାର ହେ ଜୀବନ୍ତ ପ୍ରତୀକ ! ଏଣୁ ଆମେ ଆଜି ଆନନ୍ଦରେ ତମକୁ ସ୍ୱାଗତ ଜଣାଉଛୁଁ ।

''ଆଜି ଏଇ ସନ୍ଧ୍ୟାରେ ତମର ସେଇ ଶ୍ରେଷ୍ଠ ରଚନା 'ଆତ୍ମଚରିତ' କଥା ଉଲ୍ଲେଖ ନ କରି ରହିପାରୁନୁ । ଏହା ଭାବ ଓ ଭାଷାର ଗଭୀର ସ୍ୱଚ୍ଛ ବ୍ୟଞ୍ଜନାରେ, ଆଧୁନିକ ସମାଜରେ କ୍ରିୟାଶୀଳ ଶକ୍ତିଚୟର ନିର୍ଭୀକ ଓ ପାଣ୍ଡିତ୍ୟପୂର୍ଣ୍ଣ ବିଶ୍ଳେଷଣରେ, ଏ ଦେଶର ଓ ଏ ଦେଶ ବାହାରେ ପ୍ରତ୍ୟେକ ଚିନ୍ତାଶୀଳ ନରନାରୀଙ୍କୁ ମୁଗ୍ଧ କରିଛି ଓ ଜାତୀୟ କାର୍ଯ୍ୟକ୍ଷେତ୍ରରେ କର୍ମରତ ଆମର କମ୍ରେଡ଼ଙ୍କର ଚିନ୍ତାଧାରାରେ ସୁସ୍ପଷ୍ଟ ପରିବର୍ତ୍ତନ ଆଣିବାରେ ଅଶେଷ ସାହାଯ୍ୟ କରିଛି ।

''ଆମ ଚତୁର୍ଦ୍ଦିଗରେ ପୃଥିବୀରେ ଆଜି ଘଟିଥିବା ଘଟନାଗୁଡ଼ିକ ସ୍ପଷ୍ଟ ଜଣାଇଦେଉଛି– ଆଜି ଆମେ ଗୋଟାଏ ଝଡ଼ଝଞ୍ଜାର ଯୁଗରେ ବାସ କରୁଛୁଁ । ଅବସ୍ଥା ଚାହୁଁଛି, ଆମେ ଯେପରି ସବୁବେଳେ ସତର୍କ ଓ ଜାଗତିଆର ରହୁଁ । ଏ ସନ୍ଧିକ୍ଷଣରେ ସୁଖର କଥା, ଜାତିର ଲଗାମ ଆଜି ତୁମ ହାତରେ । ତୁମଠାରେ ଆଜି ଆମେ ଆମର ସକଳ ବିଶ୍ୱାସ ନ୍ୟସ୍ତ କରିଛୁଁ । ବିଶ୍ୱାସ ନ୍ୟସ୍ତ କରିଚୁଁ–ତୁମେ ଭାରତର ସ୍ୱାଧୀନତା ସଂଗ୍ରାମରେ ସାହସୀ ଓ ପରାକ୍ରମଶାଳୀ ସେନାପତି ବୋଲି ନୁହେଁ, ତୁମେ କେବଳ ମାନବଜାତିର ଭାଗ୍ୟ ନିୟନ୍ତ୍ରଣ କରୁଥିବା ଆଧୁନିକ ସମାଜର ପ୍ରଗତି[illegible]ଳ ଓ ବିପ୍ଳବାତ୍ମକ ଶକ୍ତି ସପକ୍ଷରେ ପୂର୍ଣ୍ଣଭାବରେ ଓ ପ୍ରକାଶ୍ୟରେ ରହିଛ ବୋଲି ।

ପୁନରାୟ ତୁମକୁ ଆମେ ସ୍ୱାଗତ ଜଣାଉଛୁଁ ଓ ଏ ପ୍ରଦେଶରେ ଯୁବକ ଯୁବତୀଙ୍କୁ ତୁମର ବାଣୀ ଶୁଣାଇବାଲାଗି ଅନୁରୋଧ କରୁଛୁଁ ।

ତମର
ହେ ପ୍ରିୟ କମ୍ରେଡ୍
ନବଯୁଗର କାର୍ଯ୍ୟରେ ସହକର୍ମୀ
ନବଯୁଗ ସାହିତ୍ୟ ସଂସଦର ସଭ୍ୟଗଣ ।

(ନବଯୁଗ ସାହିତ୍ୟ ସଂସଦର ମୁଖପତ୍ର 'ଆଧୁନିକ'ରୁ ଉଦ୍ଧୃତ)

ସ୍ୱାଧୀନତା ପୂର୍ବେ ସାହିତ୍ୟର ଚିନ୍ତାଧାରା ଓ ଆଭିମୁଖ୍ୟ ଯେପରି ଥିଲା ପରବର୍ତ୍ତୀ ସାହିତ୍ୟରେ ତାହା ଅବଶ୍ୟ ପ୍ରଣିଧାନଯୋଗ୍ୟ । ସାହିତ୍ୟର ଚିରନ୍ତନ ଧର୍ମ ହେଲା ନବ ନବ ପ୍ରକାଶ ଭଙ୍ଗୀର ବୈଚିତ୍ର୍ୟ— କବିତା, ଉପନ୍ୟାସ, ଗଳ୍ପ କିମ୍ବା ନାଟକର ଭାଷାଭଙ୍ଗୀ ଓ ଚରିତ୍ର ଚିତ୍ରଣ ସଙ୍ଗେ ସ୍ୱାଧୀନ ଯୁଗର ଆଶାଆକାଂକ୍ଷାର ପ୍ରତିଫଳନ । ସେଦିଗରେ ପରୀକ୍ଷା ନିରୀକ୍ଷା ପରିସ୍ଫୁଟ ହୋଇଥାଏ ଆଜି, ମାତ୍ର ସମାଜକୁ ଅଗ୍ରଗାମୀ ରୂପଦେବା ଲାଗି ନବଯୁଗ ସାହିତ୍ୟ-ସଂସଦର ଆଭିମୁଖ୍ୟ ଆଜି ମଧ୍ୟ ଅନତିକ୍ରମ୍ୟ ହୋଇ ରହିଛି ।



## ‘ସାଳନ୍ଦୀ କୂଳରେ କାଳିନ୍ଦୀ’

ମୟୂରଭଞ୍ଜ ରାଜ୍ୟର କେତେକ ଗ୍ରାମାଞ୍ଚଳ ବୁଲି ଦେଖିବାର ମଧ ସୁଯୋଗ ଘଟେ ମୋର– ଚରମ ଦାରିଦ୍ର୍ୟ ଓ ପରମ ଐଶ୍ୱର୍ଯ୍ୟର ସହାବସ୍ଥାନ ମଧରେ ପ୍ରଭେଦ ଲକ୍ଷ୍ୟକରିବାର ରାଜଦରବାରରେ ମହାରାଜ ଏବଂ ଦେବାନ୍‌ଙ୍କ ସମେତ ବିଭିନ୍ନ ରାଜକର୍ମଚାରୀମାନଙ୍କ ସହିତ ସୁସମ୍ପର୍କ ସ୍ଥାପନ । ପ୍ରଜାକୁଳର ଦାରିଦ୍ର୍ୟ ରହିଯାଏ ଅବା ଅନ୍ତରାଳରେ ।

ବାରିପଦାର ଜୁବୁଲି ଲାଇବ୍ରେରୀଟି ଥାଏ ଗୋଟିଏ ଉତ୍କୃଷ୍ଟ ଗ୍ରନ୍ଥାଗାର । ସର୍ବାଧୁନିକ ଆନ୍ତର୍ଜାତିକ ସାହିତ୍ୟ ସହିତ ସଂଯୋଗ ଘଟିବାର ସବୁ ସୁବିଧାହିଁ ମିଳେ ସେହିଠାରେ ।

‘ମୟୂରଭଞ୍ଜ ଗେଜେଟ୍’ର ଓଡ଼ିଆ ନାମକରଣ ମୁଁ କରିଥାଏଁ ମହାରାଜଙ୍କ ଜ୍ୟେଷ୍ଠପୁତ୍ରଙ୍କ ନାମାନୁସାରେ ‘ଭଞ୍ଜ ପ୍ରଦୀପ’ । ଇଂରାଜୀ ପତ୍ରିକାରେ ସାର୍ ଦେବପ୍ରସାଦ ସର୍ବାଧିକାରୀ ଓ ସେଣ୍ଟ୍‌ନିହାଲ ସିଂ ତଥା ପାରଳାଖେମୁଣ୍ଡି ମହାରାଜ ଗଜପତି କୃଷ୍ଣଚନ୍ଦ୍ର ପ୍ରମୁଖଙ୍କ ଇଂରାଜୀ ରଚନା ଯେପରି ପ୍ରକାଶକରେଁ, ସେହିପରି ‘ଭଞ୍ଜ ପ୍ରଦୀପରେ’ ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶ ତଥା କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ଲେଖାସହିତ ବହୁ ଆଧୁନିକ ରଚନା ମଧ ପ୍ରକାଶିତ ହୁଏ । ସ୍ୱର୍ଗତ ବିଦ୍ୟାଧର ବର୍ମା ଓ ଗୋପାଳ କାନୁନ୍‌ଗୋଙ୍କର ଅଙ୍କିତ ଚିତ୍ର ମଧ ତହିଁରେ ସ୍ଥାନ ପାଏ ।

ଇଂରାଜୀ ଲେଖକମାନଙ୍କୁ ପାରିତୋଷିକ ଦିଆଯାଉଥିବାସ୍ଥଳେ ଓଡ଼ିଆ ଲେଖକ ଓ ଶିଳ୍ପୀଙ୍କୁ ତହିଁରୁ ବଞ୍ଚିତ କରାଯାଉଥିବା ଯୋଗୁଁ ସେମାନଙ୍କୁ ମଧ ପାରିତୋଷିକ ଦେବାପାଇଁ ମୁଁ ପ୍ରସ୍ତାବ ଦଲି । ପ୍ରସ୍ତାବଟି ଅବଶ୍ୟ ଗୃହୀତ ହୁଏ । ସେତେବେଳେ ଏହା ଓଡ଼ିଆ ଲେଖକ ଶିଳ୍ପୀମାନଙ୍କର ଆଶାତୀତ ଥିବାରୁ ପାରିତୋଷିକ ଲାଭ କରି ସେମାନେ ଆନନ୍ଦ ବିହ୍ୱଳ ହୋଇ ପତ୍ର ଲେଖନ୍ତି । ସେତେବେଳର ଦେଓ୍ୱାନ୍ ଶ୍ରୀ କ୍ଷିତୀଶଚନ୍ଦ୍ର ନିୟୋଗୀ ଏହି ପତ୍ର ସବୁ ଦେଖି ମୁଁ ରାଜକୋଷରୁ ଅଯଥା ଅପବ୍ୟୟ କରୁଥିବା ଅଭିଯୋଗ କରନ୍ତି । ଅଥଚ କି କୈଫିୟତ୍ ଦିଅନ୍ତି, ତାଙ୍କୁ ମୁଁ ? କେବଳ ଏଇ ଧାରଣା ମୋର ଦୃଢ଼ତର ହୁଏ ଯେ କବି-ଶିଳ୍ପୀମାନେ ଯେ କୌଣସି ପାରିତୋଷିକ ଲାଗି ଅଯୋଗ୍ୟ–ସେଇମାନଙ୍କ ପାରିତୋଷିକ କେବଳ ତାଙ୍କରି ସୃଷ୍ଟି ।

ମୟୂରଭଞ୍ଜ ଅବସ୍ଥାନ କାଳରେ ବାରିପଦା ସାହିତ୍ୟ ସମାଜ ସଂଗଠନ କରି ତାହାର ଅଧିବେଶନମାନଙ୍କରେ ନିମନ୍ତ୍ରଣ କରେଁ ସାହିତ୍ୟିକ ସ୍ୱର୍ଗତ ଜଳନ୍ଧର ଦେବ ଓ କବି ପଦ୍ମଚରଣ ପଟ୍ଟନାୟକଙ୍କୁ ପୁରୋଧା ରୂପେ । ପୁଣି ସେହି ସମାଜର ବିଭିନ୍ନ ଅଧିବେଶନରେ କାନ୍ତକବି ଲକ୍ଷ୍ମୀକାନ୍ତ ଓ ସାହିତ୍ୟଭୂଷଣ ଶଶିଭୂଷଣ ମଧ ନିମନ୍ତ୍ରିତ ହୋଇ ଭାଷଣ ଦିଅନ୍ତି ।

ବୟୋଜ୍ୟେଷ୍ଠ ଏହି ସାହିତ୍ୟିକମାନଙ୍କ ସହିତ ମୋର ବନ୍ଧୁତା ଦୀର୍ଘକାଳ ସ୍ଥାୟୀ । ସେମାନଙ୍କର ସ୍ନେହାଶୀର୍ବାଦର ପୁଣ୍ୟ ସ୍ମୃତି ଆଜି ବି ପ୍ରାଣକୁ ସ୍ପନ୍ଦିତ କରେ । ଆଜି ବି ତାଙ୍କର ଚିତ୍ର ଫୁଟିଉଠେ ମନଗହନର କେଉଁ ଅତଳରେ । କାନ୍ତକବି ଲକ୍ଷ୍ମୀକାନ୍ତଙ୍କର ସ୍ୱତଃ

ପ୍ରେରଣାବଳରେ ତାଙ୍କ ସହିତ ପତ୍ରବିନିମୟରେ ସୌଭାଗ୍ୟ ମଧ ଘଟେ ମୋର । ଆହୁରି ସୌଭାଗ୍ୟ ଘଟେ ତାଙ୍କର ପ୍ରରୋଚନାରେ ତାଙ୍କୁ 'ଭାଇ' ବୋଲି ସମ୍ବୋଧନ କରିବାକୁ ।

କଟକ ପିଠାପୁରରେ ମୋର ଅବସ୍ଥାନ କାଳରେ ଲକ୍ଷ୍ମୀକାନ୍ତ ମଧ ପଡ଼ୋଶୀ ହୁଅନ୍ତି ପିଠାପୁରରେ ଅବସ୍ଥିତ ଡଗରପ୍ରେସରେ ଅବସ୍ଥାନ କରି । ଏଥିପୂର୍ବରୁ ମୋର କଟକ ମହାନଦୀକୂଳରୁ ଯାତ୍ରା କରି ବାଲେଶ୍ବର ସମୀପସ୍ଥ ବାରିପଦା ଅବସ୍ଥାନ ଘଟଣାକୁ ସେ ତାଙ୍କ ନବପ୍ରକାଶିତ 'ଡଗର' ପତ୍ରିକାରେ 'ସାଳନ୍ଦୀ କୂଳରେ କାଳିନ୍ଦୀ' ଶୀର୍ଷକ ଗୋଟିଏ କୌତୁକ ଟିପ୍‌ପଣୀ କରିଥାନ୍ତି ନିଜ ଲେଖନୀର ରସାଳ ରୀତିରେ ।

ଭଦ୍ରକରେ ସେ ରହୁଥିବା ସମୟରେ ସୁଯୋଗ ମୋର ଘଟେ ଭଦ୍ରକ ବିଦ୍ୟାଳୟରେ ଥରେ ଭାଷଣ ଦେବାପାଇଁ । ସେତେବେଳେ ସ୍ୱର୍ଗତ କବି ଗଗନବିହାରୀ ରହିଥାନ୍ତି ସେଠାରେ ଶିକ୍ଷକ ହୋଇ । ବର୍ତ୍ତମାନ ଅଧାପକ ଡକ୍ଟର କୃଷ୍ଣଚରଣ ବେହେରାଙ୍କ ବ୍ୟକ୍ତିଗତ ନିମନ୍ତ୍ରଣ ଲାଭକରେଁ ଭଦ୍ରକ ଯିବାପାଇଁ ।

ଭଦ୍ରକରେ ପହଞ୍ଚି ସାକ୍ଷାତ୍‌କାର ହୁଏ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ସହିତ ତାହାଙ୍କ ବାସଗୃହରେ । ରୋଗବ୍ୟାଧିରେ ବିକଳାଙ୍ଗ ହେଲେ ମଧ କବି ଲକ୍ଷ୍ମୀକାନ୍ତଙ୍କର ସୃଷ୍ଟି କଦାଚ ବିକଳାଙ୍ଗ ହୋଇ ନାହିଁ– ସେଥିସଙ୍ଗେ ତାଙ୍କର ସଦା ପରିହାସପ୍ରିୟ ବ୍ୟବହାର । ଲାଳିକା ରଚନାରେ ମଧ ଓଡ଼ିଆ ସାହିତ୍ୟରେ ସେ ଅଦ୍ୱିତୀୟ, ସଙ୍ଗୀତ ରଚନାରେ ଯେପରି ।

ବାରିପଦା କ୍ଲବୁଲି ଲାଇବ୍ରେରୀ ଗୃହରେ ସାହିତ୍ୟ ସମାଜପକ୍ଷରୁ ତାଙ୍କୁ ସମ୍ବର୍ଦ୍ଧନା କରାଯାଏ । ବାରିପଦାରେ ସେ ଅବସ୍ଥାନ କରୁଥାନ୍ତି ସ୍ୱୀୟ ଭଗ୍ନୀପତି ମୟୂରଭଞ୍ଜ ହାଇସ୍କୁଲର ହେଡ୍‌ମାଷ୍ଟର ସୁକବି ସୁଲେଖକ ଶଚୀନ୍ଦ୍ରନାଥ ଦାଶଙ୍କ ଗୃହରେ । ଶଚୀବାବୁଙ୍କର ସ୍ନେହ, ମମତା ଓ ମଧୁର ବ୍ୟବହାର ଜୀବନସ୍ମୃତିରେ ମୋର ଅନ୍ୟତମ ଅମୂଲ୍ୟ ସମ୍ପଦ ହୋଇ ରହିଛି ।

'ଲକ୍ଷ୍ମୀଭାଇ' (ଏହା ଅବଶ୍ୟ ମୋହ ପ୍ରତି ତାଙ୍କୁ ସମ୍ବୋଧନ କରିବାର ସ୍ପଷ୍ଟ ନିର୍ଦ୍ଦେଶ) ସେଥର ସନ୍ଧ୍ୟାରେ ଭଦ୍ରକ ସାହିତ୍ୟ ସମ୍ମିଳନୀର ସଭାପତିରୂପେ ଯେଉଁ କୌତୁକପୂର୍ଣ୍ଣ ଭାଷଣଟି ଦିଅନ୍ତି ତାହା ଭିତରେ ଗୋଟିଏ ଶବ୍ଦ ବ୍ୟବହାର କରନ୍ତି ଆଜିଯାକେ ଯାହା ମନରେ ମୋର ଲାଖି ରହିଛି ।

ଭଦ୍ରକ ସାହିତ୍ୟସମାଜ ପକ୍ଷରୁ ସମ୍ବର୍ଦ୍ଧନା ଜଣାଇ ସେ ଅଞ୍ଚଳ ଲୋକମାନଙ୍କର ପରିଚୟ ସାଧାରଣ ଭାଷାରେ ସେ ଉଲ୍ଲେଖ କରନ୍ତି — ''ଆମର ଏହି ସ୍ଥାନଟିକୁ କେହି କେହି 'ଭଦ୍ରକ' ଆଉ କେହି 'ଭଦ୍ରଖ' ବୋଲି କହନ୍ତି । 'ଭଦ୍ରକ' ଶବ୍ଦଟି ନିପାତନେ– ସିଦ୍ଧି ନିୟମରେ 'ଭଦ୍ରଲୋକ' ଶବ୍ଦରୁ ଆସିଛି ବୋଲି ଶୁଣାଯାଏ, ଅର୍ଥାତ୍ ଏ ସ୍ଥାନରେ ଭଦ୍ରଲୋକମାନେ ରହନ୍ତି । 'ଭଦ୍ରଖ' ଶବ୍ଦଟିରୁ କିନ୍ତୁ ଏ ସ୍ଥାନର ଲୋକେ 'ଭଦ୍ରଖିଆ' ବୋଲି ସାଧାରଣରେ ପରିଚିତ; ଭଦ୍ରଖିଆ ଅର୍ଥାତ୍ ଯେଉଁମାନେ ଭଦ୍ରଭାବରେ ଖାଆନ୍ତି– ଶବ୍ଦଟିର ଅସଲ ତାତ୍ପର୍ଯ୍ୟ ହେଉଛି– ଏପରି ସେମାନେ ଲୁଚି ଛପି ଖାଇ ପାରନ୍ତି ଯେ ବାହାର ଲୋକ ପକ୍ଷରେ ତାହା ଜାଣିବାରେ ଉପାୟ ନଥାଏ– ଜାଣିଲେ ବୁଝାଯାଏ ସେପରି ଖାଇବାଟା ଭଦ୍ରଲୋକର ଚରିତ୍ର । ଦେଖେଇ ଖାଇବାଟା ଅଭଦ୍ରତା ।''

କଥାଟି ଭିତରେ ଯେପରି କୌତୁକ ସହିତ ଶ୍ଳେଷ ନିହିତ ଥିଲା, ପୁଣି ତାହା ତାଙ୍କ ମୁଖରୁ ଉଚ୍ଚାରିତ ହେବା ଭଙ୍ଗୀଟି ଏଡ଼େ ସହଜ ସରଳ ସ୍ୱଚ୍ଛ ଯେ, ସଙ୍ଗେ ସଙ୍ଗେ ସଭାଗୃହ ଯେପରି ଉଲ୍ଲସିତ ହାସ୍ୟରୋଳରେ ମୁଖରିତ ହୋଇ ଉଠିଥିଲା, ଆଜି ବି ତାହା କାନରେ ମୋର ପ୍ରତିଧ୍ୱନିତ ହୁଏ । 'ଲାଳିକା' ରଚୟିତାଙ୍କର ଗୋଟିଏ ସ୍ମରଣୀୟ ଚିତ୍ର ତାହା ।

ଅସହଯୋଗ ଆନ୍ଦୋଳନ ଦେଶରେ ବ୍ୟାପିଥିବା ସମୟରେ ସେହି 'ଲକ୍ଷ୍ମୀକାନ୍ତ' ଉତ୍କଳ ସାହିତ୍ୟ ପତ୍ରିକାରେ ଛଦ୍ମ ନାମରେ 'ଅସହଯୋଗୀର ଆତ୍ମକଥା' ଧାରାବାହିକଭାବରେ ପ୍ରକାଶ କରି ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରନ୍ତି । ସେତେବେଳେ ଅସହଯୋଗ ଆନ୍ଦୋଳନରେ ଆନ୍ଦୋଳିତ ଅନ୍ତର ମୋର ଲକ୍ଷ୍ମୀକାନ୍ତଙ୍କ ସମାଲୋଚନା ପ୍ରତି ବିତୃଷ୍ଣ ହୋଇ ଉଠେ ।

ଯଥାର୍ଥ କବି ହିଁ ରସିକ ହୋଇଥାନ୍ତି; ଲକ୍ଷ୍ମୀକାନ୍ତଙ୍କ ସମାଲୋଚନାରେ ରସିକତା କେତେବେଳେ ବିଦ୍ରୂପ ଆଉ କେତେବେଳେ ଲାଳିକା ସୃଷ୍ଟିରେ ଅଦ୍ୱିତୀୟ ସାର୍ଥକତା ଲାଭ କରିଛି ।



# ପୂର୍ବ-ପଶ୍ଚିମ-ଉତ୍ତର-ଦକ୍ଷିଣ

ବାରିପଦା ଅବସ୍ଥାନ କାଳରେ ହିଁ ମୁଁ ନିଯୁକ୍ତି ପାଏଁ ସାମ୍ବାଦିକ ଭାବରେ ଦୁଇଟି ବିଶିଷ୍ଟ ସଂସ୍ଥାରେ— ଗୋଟିଏ ହେଲା କଲିକତା, ଷ୍ଟେଟସ୍‌ମ୍ୟାନ କାଗଜ (Statesman) ଓ ଅନ୍ୟଟି ଆସୋସିଏଟେଡ୍ ପ୍ରେସ୍ ଅଫ୍ ଇଣ୍ଡିଆ (Associated Press of India) ର ପ୍ରତିନିଧିତ୍ୱ । ଦୁଇଟିଯାକ ସଂସ୍ଥାରୁ ମାସିକ ମୋହର ସମ୍ବାଦ ପରିବେଷଣର ଆକାର ପ୍ରକାର ଅନୁଯାୟୀ ନିୟମିତ ଦକ୍ଷିଣା ମିଳେ ।

ସାମ୍ବାଦିକତା ସମ୍ପର୍କରେ ମୁଁ ଅଧ୍ୟୟନ ଓ ଅନୁଶୀଳନ ଆରମ୍ଭ କରିଦିଏଁ, ଏକାବେଳେ ବେଶ୍ ଜୋର୍‌ସୋର୍‌ରେ । ଦୈନିକ କିଛି ହେଲେ ସମ୍ବାଦ ପଠାଇବା ମୋର ସାମ୍ବାଦିକତାର ପ୍ରଧାନ କର୍ତ୍ତବ୍ୟ ବୋଲି ଜ୍ଞାନକରେଁ । ମୟୂରଭଞ୍ଜ ଭଳି ଗୋଟିଏ ଦେଶୀୟ ରାଜ୍ୟ । ଓଡ଼ିଶାର ଅନ୍ୟାନ୍ୟ ସାର୍ବଭୌମ କ୍ଷମତାସମ୍ପନ୍ନ ରାଜ୍ୟମାନଙ୍କ ଭିତରେ ସବୁଠାରୁ ବଡ଼, କେବଳ ଲୋକସଂଖ୍ୟାଦୃଷ୍ଟିରୁ ନୁହେଁ, ଶିକ୍ଷାଦୀକ୍ଷା ବିଚାରରୁ ଭାରତର ସମୁନ୍ନତ ରାଜ୍ୟମାନଙ୍କ ଭିତରେ ଏହାର ସ୍ଥାନ ନିର୍ଦ୍ଦିଷ୍ଟ ଥାଏ ।

ମହାରାଜ କୃଷ୍ଣଚନ୍ଦ୍ର ଭଞ୍ଜଦେଓ କଟକ ରେଭେନ୍‌ସା କଲେଜ ପ୍ରତିଷ୍ଠା ଲାଗି ଯେଉଁ ଆର୍ଥିକ ସାହାଯ୍ୟ ଦିଅନ୍ତି, ଓଡ଼ିଶାର ଶିକ୍ଷାକ୍ଷେତ୍ରରେ ତାହା ଅବଶ୍ୟ ଉଲ୍ଲେଖଯୋଗ୍ୟ । ତାଙ୍କରି ଦାୟାଦ ଶ୍ରୀରାମଚନ୍ଦ୍ର, ଜଣେ ସର୍ବାଧୁନିକ ଶାସକ ଭାବରେ ପରିଚିତ । ସେତେବେଳେ

ଭାରତରେ ନୂତନ ସଭ୍ୟତାର ଆଲୋକ ପ୍ରବେଶ କରେ ହିନ୍ଦୁଧର୍ମର କୁସଂସ୍କାର ବିରୋଧରେ ଅଭିଯାନ ଆରମ୍ଭ କରି । ବଙ୍ଗଳାରେ ରାଜା ରାମମୋହନ ରାୟଙ୍କର ଅନ୍ୟତମ ପ୍ରଧାନ ଅନୁଗାମୀ ବ୍ରହ୍ମାନନ୍ଦ କେଶବ ଚନ୍ଦ୍ର ସେନ୍ ବହୁ ଜାତିଭେଦ-ଜଡ଼ିତ ଅସଂଖ୍ୟ ପିତୁଳାପୂଜାରେ ନିବଦ୍ଧ ହିନ୍ଦୁଧର୍ମକୁ ନୂତନ ରୂପସଜାରେ ସଜ୍ଜିତ କରିବାକୁ ତତ୍ପର ହୁଅନ୍ତି ।

ମୟୂରଭଞ୍ଜର ମହାରାଜ ଶ୍ରୀ ରାମଚନ୍ଦ୍ରଙ୍କର ବୈବାହିକ ସମ୍ପର୍କ ଅନୁଷ୍ଠିତ ହୁଏ ବ୍ରହ୍ମବାଦୀ କେଶବଚନ୍ଦ୍ରଙ୍କ କନ୍ୟା ଶ୍ରୀମତୀ ସୁଚରିତା ଦେବୀଙ୍କ ସହିତ । ଫଳରେ ରାଜ୍ୟବ୍ୟାପୀ ସୃଷ୍ଟି ହୁଏ ତୁମୂଳ ଆଲୋଡ଼ନ; ଶ୍ରୀରାମଚନ୍ଦ୍ରଙ୍କର ପୁଣି ବିବାହ ଅନୁଷ୍ଠିତ ହୁଏ ରାଜବଂଶରେ ଓ ପ୍ରାଣହାନି ଘଟେ ଶିକାରସ୍ଥଳୀରେ ଏକ ଦୁର୍ଘଟଣା ଫଳରେ ।

ସମସ୍ତ ପ୍ରତିରୋଧ ସତ୍ତ୍ୱେ ଶ୍ରୀ ରାମଚନ୍ଦ୍ରଙ୍କର ସେତେବେଳର ସାମାଜିକ ସଂସ୍କାରପାଇଁ ବଳିଷ୍ଠ ଉଦ୍ୟମର ସୂତ୍ରପାତ ହୁଏ । ରାଜଧାନୀ ବାରିପଦାରେ ଜଗନ୍ନାଥ ମନ୍ଦିର, ମୁସଲ୍‌ମାନଙ୍କ ମସ୍‌ଜିଦ୍, ଖ୍ରୀଷ୍ଟିୟାନ୍ ଗିର୍ଜା ପୁଣି ବ୍ରାହ୍ମମନ୍ଦିର ମଧ୍ୟ ପ୍ରତିଷ୍ଠିତ ହୁଏ ସର୍ବଧର୍ମସମନ୍ୱୟ ଆଦର୍ଶରେ । ଭାରତର ଦେଶୀୟ ରାଜ୍ୟମାନଙ୍କ ଭିତରେ ମୟୂରଭଞ୍ଜ ଏକ ପ୍ରଗତିଶୀଳ ରାଜ୍ୟରୂପେ ଚିହ୍ନିତ । ଶାସକ ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ଦୂରଦୃଷ୍ଟି ପ୍ରଭାବରୁ । ପୁଣି ବୋଧହୁଏ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ (୧୯୩୬) ହେବା ପୂର୍ବରୁ ମୟୂରଭଞ୍ଜରେ ପ୍ରଥମେ ପ୍ରତିଷ୍ଠିତ ହୁଏ ବିମାନଘାଟୀ ।

ସାମ୍ବାଦିକ ଭାବରେ ସେତେବେଳେ ମୁଁ ଦୈନନ୍ଦିନ ପ୍ରତି ଘଟଣାର ସଚିତ୍ର ସମ୍ବାଦ ପଠାଇବାପାଇଁ ଏକ ମୂଲ୍ୟବାନ୍ କୋଡ଼ାକ୍ କ୍ୟାମେରା ମଧ୍ୟ କିଣିଥାଏଁ, ଅବଶ୍ୟ ରାଜ୍ୟସରକାରଙ୍କ ସୁପାରିସ୍ ଓ ମଞ୍ଜୁରି ଫଳରେ । ଭାରତବର୍ଷକୁ ଦେଶବିଦେଶର କ୍ରୀଡ଼ା-ପ୍ରତିଯୋଗିତା ପାଇଁ ଯେଉଁ ସବୁ ଖେଳାଳି ଟିମ୍ ଆସେ, ବାରିପଦା କ୍ରୀଡ଼ା-ପ୍ରତିଯୋଗିତାରେ ସେମାନଙ୍କର ଯୋଗଦେବା ପ୍ରାୟ ବାଧ୍ୟତାମୂଳକ ହୋଇ ପଡ଼ିଥାଏ ।

ଫୁଟ୍‌ବଲ୍ କ୍ରିକେଟ୍ ଆଦି ପ୍ରତିଯୋଗିତାଗୁଡ଼ିକର ଫଟୋ ଉତ୍ତୋଳନ ସହିତ ପୃଥିବୀବିଖ୍ୟାତ ଛଉ ନାଚର ସଚିତ୍ର ବିବରଣ ଆଦି ଷ୍ଟେଟସ୍‌ମ୍ୟାନ ପ୍ରମୁଖ ବଡ଼ ବଡ଼ ଇଂରାଜୀ କାଗଜଗୁଡ଼ିକୁ ନିୟମିତଭାବରେ ପଠାଇବା ଥିଲା ମୋହର ସାମ୍ବାଦିକ ଜୀବନର ଅନ୍ୟତମ କର୍ତ୍ତବ୍ୟ । ଏହି କର୍ତ୍ତବ୍ୟ ପାଳନରେ କୌଣସି ତ୍ରୁଟିବିଚ୍ୟୁତି ଘଟିଲେ ଯେପରି ମୋତେ ସାବଧାନ କରି ଦିଆଯାଏ, ନାମଜାଦା ସମ୍ବାଦପତ୍ରରେ ମୟୂରଭଞ୍ଜର ସାଂସ୍କୃତିକ ବିଭିନ୍ନ ଅନୁଷ୍ଠାନର ସୁନ୍ଦର ସଚିତ୍ର ସମ୍ବାଦ ପ୍ରକାଶ ପାଇଲେ ମଧ୍ୟ କୌଣସି ସାଧୁବାଦ କିମ୍ବା ପାରିତୋଷିକ ପାଇବାର ଆଶା ନ ଥାଏ । କାରଣ ସାମ୍ବାଦିକ ହେବାଟା ମୋ କର୍ତ୍ତବ୍ୟର ଏକ ଅଙ୍ଗବୋଲି କର୍ତ୍ତୃପକ୍ଷ ବିଚାରନ୍ତି ।

ସାମ୍ବାଦିକତା ଲାଗି ଅବଶ୍ୟ ପ୍ରତିଷ୍ଠିତ ସମ୍ବାଦସଂସ୍ଥା ଏସୋସିଏଟେଡ୍ ପ୍ରେସ୍ (Associated Press) ଓ ଷ୍ଟେଟ୍‌ସମ୍ୟାନ୍ ପ୍ରମୁଖ ପତ୍ରିକାମାନଙ୍କଠାରୁ ସ୍ୱତନ୍ତ୍ର ପାରିତୋଷିକ

ଲାଭ କରେ । ଥରେ ଏମିତି ବାରିପଦା ରଥଯାତ୍ରା ସମୟରେ କଲେରା ଲାଗିବା ସମ୍ବାଦଟି ଶୁଣି ପ୍ରକାଶପାଇଁ ମୁଁ ପଠାଏଁ; ତାହା ଫଳରେ ଯେ ମୟୂରଭଞ୍ଜ ରାଜଧାନୀରେ ଆତଙ୍କ ସୃଷ୍ଟି ହୋଇଛି-ସମ୍ବାଦଟିକୁ ଅବଶ୍ୟ ପ୍ରକାଶଯୋଗ୍ୟ ବିଚାରରୁ ଅଧିକ ଗୁରୁତ୍ୱ ଦେବାପାଇଁ ଏହା ଉଲ୍ଲେଖ କରେଁ ।

ଖେଳଖବରଠାରୁ ଆରମ୍ଭ କରି ନୃତ୍ୟ ଗୀତ, ଆମୋଦ ପ୍ରମୋଦ, ଜନ୍ମ ମୃତ୍ୟୁ ଆଦି ସମ୍ବାଦର ଅନ୍ତର୍ଭୁକ୍ତ ହେଲେହେଁ ସାମ୍ବାଦିକତାର ପ୍ରକୃତ ଆକର୍ଷଣୀୟ କୌଶଳ ହେଲା– ସମ୍ବାଦ ପରିବେଷଣର ରୀତି ଓ ଭାଷାଗତ ସଂଯମ ଓ ବୈଚିତ୍ର୍ୟ । ତାହା ନ ଥିଲେ ସାଧାରଣ ସମ୍ବାଦ ପ୍ରାୟ ଗୃହୀତ ହୁଏ ନାହିଁ ।

ଇଂରାଜୀରେ ସମ୍ବାଦ ରଚନାର ଏହି କୌଶଳର ନାମକରଣ ହେଲା ସମ୍ବାଦ ସଜ୍ଜୀକରଣ (News dressing) । ଥରେ କଲେରା ଲାଗିଥିବା ସମ୍ବାଦ ଏକ ଶୁଣି ମୁଁ ଲେଖି ପଠାଇଥାଏଁ ଯେ ତାହା ରାଜଧାନୀ ବାରିପଦା ସହରରେ ଆତଙ୍କ (Panic) ସୃଷ୍ଟି କରିଛି ।

ସମ୍ବାଦଟି ତୁରନ୍ତ ଷ୍ଟେଟ୍‌ସମ୍ୟାନ୍ କାଗଜରେ ପ୍ରକାଶିତ ହୁଏ । ତହୁଁ ଇଞ୍ଚ ମାପ ଅନୁସାରେ ସେଥିଲାଗି ମୋତେ କିଛି ପାରିତୋଷିକ ଲବ୍‌ଧ ହେବ ବୋଲି ମୁଁ ଖୁସିହୁଏଁ, ଅଥଚ ଫଳହେଲା ବିପରୀତ । ଘଟଣାଟା ସେ ସ୍ୱାସ୍ଥ୍ୟ ବିଭାଗ (Sanitary Department) ପକ୍ଷରେ କୈଫିୟତ୍ ତଲବ କଲା ଭଳି କୁଫଳର କାରଣ ହୋଇପାରେ, ତାହା କଦାପି ମୁଁ କଳ୍ପନା କରି ନ ଥିଲି ।

ବାରିପଦା ମ୍ୟୁନିସିପାଲିଟିର ଚେୟାରମ୍ୟାନ୍ ଥାନ୍ତି ଚିଫ୍ ଇଞ୍ଜିନିୟର ଗୋରାସାହେବ । ସେ ମୋତେ ଡାକି ଏ ସମ୍ବାଦ ସମ୍ପର୍କରେ ମୁଁ ନିଜେ ଅନୁସନ୍ଧାନ କରିଛି କି ନାହିଁ ପଚାରନ୍ତେ ମୋତେ ନୀରବ ରହିବା ଛଡ଼ା କିଛି କହିବାକୁ ନ ଥିଲା ।

ପୃଥିବୀପୃଷ୍ଠରେ ସାମ୍ବାଦିକତାର ଉତ୍ପତ୍ତିର ଇତିହାସ ଜନ୍ମଲାଭକରେ ବ୍ୟବସାୟୀମାନଙ୍କ ଜିନିଷପତ୍ର ବିକ୍ରି କରିବାପାଇଁ ବିଜ୍ଞାପନରୁ । ଏହି ବ୍ୟବସାୟର ପ୍ରସାର ଦ୍ୱାରା ହିଁ ପାଶ୍ଚାତ୍ୟ ଦେଶମାନଙ୍କରେ ସାମ୍ରାଜ୍ୟବାଦ ଓ ପୁଞ୍ଜିବାଦର ପ୍ରସାର– ଆଉ ସେହି ବ୍ୟବସାୟରେ ଲାଭର ଲୋଭ ହିଁ ପାଶ୍ଚାତ୍ୟ ଜାତିମାନଙ୍କର ପ୍ରାଚ୍ୟ ଦେଶଗୁଡ଼ିକ ଉପରେ ପ୍ରଭାବ ବିସ୍ତାର । ସେଇ ବ୍ୟବସାୟ ସୂତ୍ରରେ ହିଁ ଆଧୁନିକ ପ୍ରଣାଳୀର ଦେଶଜୟ ପ୍ରଚ୍ଛନ୍ନ ଭାବରେ ପରରାଷ୍ଟ୍ର ଲୁଣ୍ଠନରେ ପରିଣତ ହୋଇ ଆମେରିକାର ଡଲାର-ସାମ୍ରାଜ୍ୟର ଆଧିପତ୍ୟ ବିସ୍ତାର ଆଲୋଚନାର ବିଷୟୀଭୂତ ହୁଏ । ଆମର କ୍ଷୁଦ୍ରାତିକ୍ଷୁଦ୍ର ଓଡ଼ିଶା ରାଜନୀତି ସୁଦ୍ଧା କେନ୍ଦୁପତ୍ର ବ୍ୟବସାୟ ଦ୍ୱାରା କେତେ ପରିମାଣରେ ନିୟନ୍ତ୍ରିତ ବୋଲି କୁହାଯାଏ ।

ସେହି ବିଚାରରୁ ସାମ୍ବାଦିକତା ମଧ ଚତୁର୍ଥ ବ୍ୟବସ୍ଥାପକ ସଭାରୂପେ (Fourth Estate) ବର୍ଣ୍ଣିତ । ଶାସନକ୍ଷେତ୍ରରେ ସର୍ବୋତ୍ତମ ଶକ୍ତି ହେଲେ ସ୍ୱୟଂ ସମ୍ରାଟ୍ ବା ରାଜା; ତାଙ୍କପରେ ଦ୍ୱିତୀୟ ସ୍ଥାନ ଅଧିକାର କରନ୍ତି ମନ୍ତ୍ରିମଣ୍ଡଳ ଓ ତୃତୀୟସ୍ଥାନ ମନ୍ତ୍ରିମଣ୍ଡଳକୁ ସମର୍ଥନ

କରିଥିବା ପାର୍ଲାମେଣ୍ଟ ବା ବ୍ୟବସ୍ଥାପକ ସଭା-ଶେଷରେ ଚତୁର୍ଥସ୍ଥାନର ଅଧିକାରୀ ସମ୍ବାଦପତ୍ର କିମ୍ବା ସମ୍ବାଦ ସରବରାହ ସଂସ୍ଥା ।

ସାମ୍ରାଜ୍ୟବାଦ ବା ରାଜତନ୍ତ୍ର ଶାସନଯୁଗରୁ ସମ୍ବାଦପତ୍ରର ସ୍ଥାନ ଏହିଭାବରେ ନିରୂପିତ ହୁଏ; କିନ୍ତୁ ସାମ୍ରାଜ୍ୟବାଦ ଅଥବା ବ୍ୟବସାୟ ପ୍ରସାର ସୂତ୍ରରେ ଆର୍ଥନୀତିକ ଆଧିପତ୍ୟକୁ ନୂତନ ଯୁଗ ଅସ୍ୱୀକାର କରେ । ଶ୍ରମିକ, ସର୍ବହରା (proletariat) ମେହେନତୀ ମାନବିକତା ପ୍ରତି ହିଁ ତାହା ସର୍ବୋଚ୍ଚ ସ୍ଥାନ ନିରୂପଣ କରେ, ଯେଉଁ ସ୍ଥାନକୁ ସୃଷ୍ଟିର ପ୍ରାରମ୍ଭରୁ ହିଁ ଐତିହାସିକ ସତ୍ୟ ସ୍ୱୀକାର କରି ଆସିଛି ।

ମଣିଷ ଇତିହାସର ଏହି ସତ୍ୟ ହିଁ ଆଜି ମଧ୍ୟଯୁଗୀୟ ଚିନ୍ତାଧାରା ଭିତରେ ଆଣି ଦେଇଛି ତୂମୂଳ ବିପ୍ଳବ । ମନୁଷ୍ୟର ଶ୍ରମ, ଘର୍ମ ଓ କର୍ମ ହିଁ ଗଢ଼ି ଆସିଛି ଯୁଗଯୁଗବ୍ୟାପୀ ତାହାର ବିରାଟ ଇତିହାସ । ସେ ଇତିହାସ କେବଳ ଗ୍ରନ୍ଥରେ ଲିପିବଦ୍ଧ ନୁହେଁ; ଅଥବା କଳା ସ୍ଥାପତ୍ୟରେ କୀର୍ତ୍ତି ତାହାର ଖୋଦିତ ହୋଇ ରହି ନାହିଁ । 'ତତ୍ତ୍ୱମସି' ମନ୍ତ୍ରଭଳି ତାହା ସ୍ୱୟଂସିଦ୍ଧ । ତାହା ନିକଟରେ ରାଜତନ୍ତ୍ର, ଗଣତନ୍ତ୍ର ଓ ସାମ୍ପ୍ରଦାୟିକ ବା ରାଜନୀତିକ ସ୍ୱାର୍ଥ କାର୍ଯ୍ୟାଦିର ସ୍ଥାନ ନାହିଁ । ବିଶ୍ୱ ସୃଷ୍ଟିର ଆରମ୍ଭରୁ ହିଁ ସେଇ ଐତିହାସିକ ସତ୍ୟ ଚିର ଭାସ୍ୱର ହୋଇ ରହିଛି । ସେଇ ସତ୍ୟ ଉପରେ ରାଷ୍ଟ୍ରର ସ୍ୱାଭାବିକ ପ୍ରତିଷ୍ଠା ନ ହେବାଯାକେ ସାମ୍ପ୍ରଦାୟିକତା ଭିତରେ ବିଭିନ୍ନ ସ୍ୱାର୍ଥସଂଘର୍ଷ ଓ ପ୍ରକୃତ ସତ୍ୟର ଅପଳାପ ଅବଶ୍ୟମ୍ଭାବୀ ।

ମୋର ବାରିପଦା ଅବସ୍ଥାନ କାଳରେ ହିଁ ଗଠିତ ହୁଏ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ୧୯୩୬ ଖ୍ରୀଷ୍ଟାବ୍ଦରେ, ମାତ୍ର ସେଥି ସଙ୍ଗେ ଦେଶୀୟ ରାଜ୍ୟଗୁଡ଼ିକରେ କୌଣସି ସ୍ପନ୍ଦନ ସୃଷ୍ଟି ହୁଏ ନାହିଁ । କେବଳ ଉପକୂଳବର୍ତ୍ତୀ ଗଞ୍ଜାମ ଓ କୋରାପୁଟ ଅଞ୍ଚଳ ମିଶି ଏଇ ରାଜ୍ୟଟିର ଯେପରି କଳେବର ବୃଦ୍ଧିପାଏ, ସେଥିପାଇଁ ଖୁବ୍ ଖୁସିହେବା ଉପାଦାନ ବାରିପଦାରେ ପାଇବା ସମ୍ଭବପର ନ ଥିଲା ବରଂ ମୟୂରଭଞ୍ଜର ଅର୍ଥନୈତିକ, ରାଜନୈତିକ ଓ ସାଂସ୍କୃତିକ ସ୍ୱାତନ୍ତ୍ର୍ୟ ହିଁ ଇଂରେଜ ଶାସିତ ଓଡ଼ିଶାର ସ୍ୱାତନ୍ତ୍ର୍ୟ ଅପେକ୍ଷା ଅଧିକ ଅନୁଭୂତ ହେଉଥାଏ ।



# କଂଗ୍ରେସ ସରକାର ଓ ରବୀନ୍ଦ୍ର ସାକ୍ଷାତ୍‌କାର

ଓଡ଼ିଶା ସମେତ ଭାରତର ଅଳ୍ପ କେତେକ ପ୍ରଦେଶରେ ଗଢ଼ାହୁଏ ୧୯୩୯ ରେ ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ । ଓଡ଼ିଶାର ପ୍ରଧାନମନ୍ତ୍ରୀ ରୂପେ ମହାତ୍ମାଗାନ୍ଧୀଙ୍କଦ୍ୱାରା ମନୋନୀତ ହୁଅନ୍ତି ଶ୍ରୀ ବିଶ୍ୱନାଥ ଦାସ । କଟକ ସମବାୟ ବ୍ୟାଙ୍କରେ କାର୍ଯ୍ୟ କରୁଥିଲାବେଳେ ଯାଚକ ଲେନ୍‌ରେ ନିକଟତମ ପଡ଼ୋଶୀଭାବରେ ଲାଲମୋହନବାବୁଙ୍କ ସହ ଜନ୍ମିଥାଏ ମୋର ନିବିଡ଼ ଘନିଷ୍ଠତା ଅନେକ ଆଗରୁ ।

ଲାଲ୍‌ମୋହନବାବୁ ଥିଲେ ଜଣେ ଧର୍ମପ୍ରାଣ, ସଚ୍ଚରିତ୍ର ଶ୍ରେଷ୍ଠ କଂଗ୍ରେସ ନେତା । ବାରିପଦାରେ ପତ୍ରିକା ସମ୍ପାଦନପାଇଁ ନିଯୁକ୍ତି ମୋତେ ମିଳିଥିଲେ ହେଁ ଲାଲ୍‌ମୋହନବାବୁଙ୍କ ସହିତ ଯୋଗାଯୋଗ ରହିଥାଏ ଅକ୍ଷୁଣ୍ଣ ।

ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ ଅଧୀନରେ କଟକ ସରକାରୀ ଛାପାଖାନାରେ ଖାଲିପଡ଼େ ଗୋଟିଏ ଚାକିରି । ପଦବୀଟା ହେଲା 'ହେଡ୍ ରିଡ଼ର'; କିନ୍ତୁ କାମ ହେଲା ସରକାରୀ ଗେଜେଟ୍‌ସମେତ ସବୁ ଆଦେଶ ନିୟମାବଳୀ ପୁଣି ବିଧାନସଭା ବିବରଣୀରେ ପ୍ରୁଫ୍ ସଂଶୋଧନ କରିବା ।

ବନ୍ଧୁମାନେ ଉପହାସ କରନ୍ତି, ଧାନକିଆରିରୁ ଘାସ ବାଲୁଙ୍ଗା ବାଛିବା ଯାହା, – ସରକାରୀ ଛାପାଖାନାରେ ହେଡ୍‌ରିଡ଼ର ପଦବୀଟା ସେଇଭଳି କାମ । ମନ୍ତବ୍ୟଟା ମୋତେ ସୁଖ ନ ଲାଗିଲେ ମଧ ଏହାର ଯଥାର୍ଥ୍ୟ ମୁଁ ଅନୁଭବ କରେଁ ପଦେ ପଦେ; ମାତ୍ର ''ବୁଭୁକ୍ଷିତଃ କିମ୍ ନ କରୋତି ପାପମ୍ ?'' ସେ ପାପରୁ ମୁକ୍ତ ହେଲା ଭଳି ସାମର୍ଥ୍ୟ ଖାଲି ବାଲ୍ମୀକି ମହର୍ଷିଙ୍କର ରହିପାରେ ସିନା !

ବାରିପଦାରେ ପିତୃହୀନ ହେବା ଓ ଭ୍ରାତୃଜାୟାଙ୍କର ଅକାଳ ବିୟୋଗ ପରେ ଦର୍ଖାସ୍ତକରି ନିଯୁକ୍ତି ପାଏଁ କଟକ ସରକାରୀ ଛାପାଖାନାରେ । ସେତେବେଳେ ମୟୂରଭଞ୍ଜ ମହାରାଜା ମୋହର ସେଠାରୁ ବିଦାୟନେଇ ଆସିବାକୁ ପସନ୍ଦ କରି ନଥିଲେ । କଟକ ସରକାରୀ ଛାପାଖାନାକୁ ଆସି ଭେଟ ହୁଏ ମୋର ସହକର୍ମୀ ରୂପେ କେତେକ ପୂର୍ବପରିଚିତ ବନ୍ଧୁଙ୍କ ସଙ୍ଗେ; କିନ୍ତୁ ନିଜକୁ ଛାପାଖାନାର କାମ ସହିତ କେବଳ ପ୍ରୁଫ୍ ସଂଶୋଧନ କରିବା କିମ୍ବା ସେଥିସଙ୍ଗେ ସହକର୍ମୀମାନଙ୍କ ଭିତରେ ନିଜକୁ ଖାପଖୁଆଇ ଚଳିବାକୁ ମୁଁ ଅକ୍ଷମ ହୋଇପଡେଁ । ବୋଧହୁଏ ଯେମିତି ଅବା ସରକାରୀ ଛାପାଖାନାଟା ହିଁ ମୋହର ପୂର୍ବପରିଚିତ ବନ୍ଧୁମାନଙ୍କୁ ଏଠାରେ ହଠାତ୍ ପରକରି ପକାଇଛି ! ଏଠାରେ ଯେମିତି ଅନଧିକାର ଚର୍ଚ୍ଚା କରିବାକୁ ଆସିଛି ମୁଁ, ଅଥବା ସରକାରୀ ଛାପାଖାନାର ସବୁ କର୍ମଚାରୀଙ୍କର ମୋହ ପ୍ରତି ବୈମାତୃକ ମନୋଭାବ ଏପରି ହୁଅନ୍ତା କାହିଁକି ?

ଭୋରରୁ ଉଠି ଆଠଟା ନଅଟା ଭିତରେ ଯାଇ ଛାପାଖାନାରେ ହାଜରାଦେବାକୁ ପଡ଼େ । ତା' ନ ହେଲେ ଫାଟକପାଖରେ ବସିଥିବା ଜଗୁଆଳି ଲେଟ୍‌ମାର୍କ କରିଦିଏ । ଏହିଭଳି

କେତେଟା ଲେଟ୍‌ମାର୍କ ମିଶିଗଲେ ହିସାବହୋଇ କଟିଯାଏ ଗୋଟେଦିନର ଦରମା । ସରକାରୀ ଛାପାଖାନାରୁ ଘରକୁ ଫେରିବାକୁ ରାତି ପ୍ରାୟ ନଅଟା ଦଶଟା । କାରଣ ଓଭରଟାଇମ୍ କାମ କରିବାକୁ ହୁଏ ଅଧିକାଂଶ ଦିନ ।

ବିଧାନସଭାର ବିବରଣୀ ଅଥବା ସେହିଭଳି କାମ ରାତାରାତି ଖତମ କରିବା ଲୋଡ଼ା ! ଓଭରଟାଇମ୍ କାମପାଇଁ ଅବଶ୍ୟ ଦରମା ଅନୁପାତରେ ଘଣ୍ଟା ହିସାବ କରାଯାଇ ମାସ ଶେଷକୁ କିମ୍ବା ଦୁଇ ତିନି ମାସ ପରେ ହାତକୁ କିଛି ବଳକା ପାଇସା ଆସେ । ଚାକିରିରୁ ବିଦାୟନେବା ପରେ ଏମିତି କେତେ ମାସର ଓଭରଟାଇମ୍ ପ୍ରାପ୍ୟ ମୁଁ ଆଉ ହିସାବ କରି ଆଣି ପାରିଲି ନାହିଁ ନିଜ ଅକ୍ଷମତା ଦୋଷରୁ ।

ଛାପାଖାନାରୁ ଲେଉଟି ଘରେ ଶୁଣେଁ, ରାତି ଦଶଟା ପରେ ଖାଇସାରି ଶୋଇବାକୁ ଗଲାବେଳେ ତୁନ୍‌ତାନ୍ ପରିବେଶ ଭିତରେ ପିଲାମାନେ ପଚରାପଚରି ହେଉଛନ୍ତି— ବାପା କ'ଣ କଟକରେ ନାହାନ୍ତି କି ? ମୁଁ ନିଜେ ମଧ ଅନୁଭବ କରିପାରେ ନାହିଁ, କଟକରେ କିମ୍ବା ପୃଥିବୀରେ କୌଣସି ଅଂଶରେ ମୋର ଅବସ୍ଥିତି ।

ସରକାରୀ ଛାପାଖାନାରେ କାର୍ଯ୍ୟ କରୁଥିବା ସମୟରେ ଓଡ଼ିଶାକୁ କବି ରବୀନ୍ଦ୍ରନାଥଙ୍କ ଆଗମନ । ପୁରୀ ସର୍କିଟ୍ ହାଉସ୍‌ରେ ଆସି ସେ ରହନ୍ତି । ସେଥିଲାଗି ନିର୍ଦ୍ଦେଶ ମୋତେ ମିଳେ କବିଙ୍କୁ ଭେଟି ତାଙ୍କ ଜନ୍ମଦିବସରେ ପଢ଼ିବାକୁ ହେବ ମୋର ସ୍ୱରଚିତ ରଚନା । ଓଡ଼ିଶା ଛାପାଖାନାରେ ସ୍ୱୟଂ ସୁପରିଣ୍ଟେଣ୍ଡେଣ୍ଟ କିମ୍ବା ସର୍ବୋଚ୍ଚକର୍ତ୍ତା ଚିଫ୍ ସେକ୍ରେଟାରୀ ମ୍ୟାନ୍‌ସ୍ ଫିଲଡ୍‌କୁ ସୁଦ୍ଧା ଏଥିପାଇଁ ନିମନ୍ତ୍ରଣ ନାଇଁ; ଅଥଚ ଜଣେ ସାମାନ୍ୟ ପ୍ରେସ୍ କର୍ମଚାରୀ ହୋଇ ମୋତେ ଯିବାପାଇଁ ନିମନ୍ତ୍ରଣ ! ଘଟଣାଟା ମୋର ଉପରିସ୍ଥ କର୍ମଚାରୀଙ୍କ ପକ୍ଷରେ ଯେ ଅସହ୍ୟ ହୋଇଥିବ ସେତେବେଳେ, ତାହା ମୋର ଅବଧାରଣାରେ ନ ଥିଲା ।

୧୯୩୯ ମସିହା ମଇ ମାସ ନଅ ତାରିଖ, ପୁରୀଠାରେ ଅନୁଷ୍ଠିତ ହୁଏ କବିଙ୍କର ଜନ୍ମୋତ୍ସବ । ଓଡ଼ିଶାର ସର୍ବପ୍ରଥମ କଂଗ୍ରେସ ସରକାରଙ୍କ ଅତିଥି ରୂପେ ମହାକବି ରବୀନ୍ଦ୍ରନାଥଙ୍କ ଅଭ୍ୟର୍ଥନା ପୁରୀ ପୋଷ୍ଟଅଫିସ୍ ପାଖ ଝାଉଁ ବଗିଚାରେ ।

ଶ୍ରଦ୍ଧେୟା ଶ୍ରୀମତୀ ମାଳତୀ ଚୌଧୁରୀ କବିଙ୍କ ନିକଟରେ ଉପସ୍ଥିତ ଥାନ୍ତି । ରବୀନ୍ଦ୍ରନାଥଙ୍କୁ ପ୍ରଣିପାତ କରି ମୋହର ସ୍ୱରଚିତ କବିତା ମୁଁ ପାଠକରେଁ ସେ ଦିନ ସକାଳେ ସର୍କିଟ୍ ହାଉସ୍‌ରେ—

''ଚାଳିଶ କୋଟି ❖ ଭିତରୁ ଆଜି କୋଟିଏ ଲୋକ ଯେ ଭାଷା କହେ
ସେ ଭାଷା କବି ଜଣାଏ ତା'ର ଅନ୍ତରର ବନ୍ଦନ ହେ !
ସେ ଭାଷା ଆଜି ଅରପେ ପୂଜା ଜନ୍ମଦିନେ କବି ହେ ତବ
ଚାଳିଶ କୋଟି ଭିତରୁ ସେ ଯେ କୋଟିଏ ଲୋକ କଥାର ରବ ।

× × ×

ଚାଳିଶ କୋଟି ମଣିଷଭରା ବିଶାଳ ଏଇ ରାଜ୍ୟରେ
ସେ ଭାଷା ଆଜି ତୋଳିଛି ତା'ର ଅର୍ଘ୍ୟ ଘେନ ଆର୍ଯ୍ୟ ହେ !ଇତ୍ୟାଦି ।

---

❖ ୧୯୩୯ରେ ଭାରତ ଓ ଓଡ଼ିଶାର ଜନସଂଖ୍ୟା ।

କବିତାଟି ଶୁଣିସାରି ରବୀନ୍ଦ୍ରନାଥ ମନ୍ତବ୍ୟ ଦିଅନ୍ତି ଯେ, ଏହାର ଛନ୍ଦ ଓ ଭାଷା ବୁଝିବା ପାଇଁ କୌଣସିଠାରେ ତାଙ୍କୁ ଅସୁବିଧା ବୋଧ ହେଲା ନାହିଁ । ତହୁଁ ସେ ପଚାରନ୍ତି– ଓଡ଼ିଶାରେ ଓଡ଼ିଆ ସାହିତ୍ୟର ଓ ସାହିତ୍ୟିକମାନଙ୍କର ପରିସ୍ଥିତି ସମ୍ପର୍କରେ । ପୁଣି ଲେଖକମାନଙ୍କ ସୁବିଧା ଅସୁବିଧା ବିଷୟରେ । ସାହିତ୍ୟିକମାନଙ୍କ ଭିତରେ ସଂଗଠନ କିପରି ରହିଛି, ତାହା ମଧ ସେ ଜାଣିବାକୁ ଲୋଡ଼ିଥିଲେ । ଆହୁରି ସେ ମତଦେଇଥିଲେ ଯେ ସାହିତ୍ୟର ଉନ୍ନତି ଲାଗି ସରକାରଙ୍କର ଯଥେଷ୍ଟ କର୍ତ୍ତବ୍ୟ ରହିଛି । ଯେଉଁ କର୍ତ୍ତବ୍ୟ ପାଳନରେ କୌଣସି ପ୍ରକାର ଅବହେଳା ଆଦୌ ଶୋଭନୀୟ ନୁହେଁ ।

କବିଙ୍କର ସେଇ ଧ୍ୟାନମଗ୍ନ ରୂପ ନିକଟରେ ବସି ଓ ଧୀର ମଧୁର ବାକ୍ୟାଳାପ ଶୁଣି ମୋର ବହୁ କାଳର ଆକାଂକ୍ଷା ଯେପରି ଅବା ଚରିତାର୍ଥ ହୁଏ । କଥୋପକଥନ ସମୟରେ କେହି ଜଣେ ଆସି ତାଙ୍କୁ ଜଣାନ୍ତି, 'ଷ୍ଟେଟସ୍‌ମ୍ୟାନ' କାଗଜ ଓ ଆସୋସିଏଟେଡ୍ ପ୍ରେସ୍‌ର ପ୍ରତିନିଧି କବିଙ୍କ ସହିତ ସାକ୍ଷାତ୍ କରିବାକୁ ଅପେକ୍ଷା କରିଛନ୍ତି ।

ବିସ୍ମିତ ହୋଇପଡେଁ– ସେ କଥାରେ କବି ଅକସ୍ମାତ୍ ବିରକ୍ତ ହୋଇ କହନ୍ତି, 'ତାଙ୍କର ପୁଣି ମୋ ପାଖରେ କି କାମ ? କହିଦିଅ ମୁଁ ସାକ୍ଷାତ୍ ଦେଇ ପାରିବି ନାହିଁ ।'

ସାମ୍ବାଦିକଙ୍କୁ ସାକ୍ଷାତ୍ ଦେଇ ସମ୍ବାଦପତ୍ରରେ ନିଜନାମ ପ୍ରଚାର କରିବା ସପକ୍ଷରେ କବିଙ୍କର ମତାମତ ସହିତ ସେହି ଦିନ ମୁଁ ଚାକ୍ଷୁଷ ପ୍ରମାଣପାଏଁ । ତାହାଙ୍କ ପାଠ୍ୟ କାର୍ଯ୍ୟକ୍ରମରେ ସମ୍ବାଦପତ୍ର ଯେ ଏକ ଗୌଣ ସ୍ଥାନ ଲାଭ କରିଥିଲା, ଏହାର ପ୍ରମାଣ ଆଉ ଥରେ ପାଇଥିଲି କବିଙ୍କ ଆମେରିକା ଯାତ୍ରା ସମୟରେ— ବମ୍ବେଠାରେ ସେ ଜଣେ ସାମ୍ବାଦିକଙ୍କୁ କହିଥିବା ପ୍ରକାଶ ଯେ, ସମ୍ବାଦପତ୍ର ତାହାଙ୍କ ପ୍ରାତ୍ୟହିକ ପାଠ୍ୟକ୍ରମରେ ନଥାଏ ।

ଶଙ୍ଖମହୁରି ଆଦି ମଙ୍ଗଳଧ୍ୱନି ମଧରେ ଅନୁଷ୍ଠିତ ହୁଏ କବି ରବୀନ୍ଦ୍ରନାଥଙ୍କର ଜନ୍ମୋତ୍ସବ ମହାସମାରୋହରେ । ତାହାଙ୍କ ରଚନାବଳୀ ସହିତ ଭାଷଣଭଙ୍ଗୀ ବ୍ୟବହାର ଓ ରୂପର ସାମଞ୍ଜସ୍ୟ ଅନୁଭବ କରିବାର ତାହାହିଁ ମୋର ପ୍ରଥମ ଓ ଶେଷ ସୁଯୋଗ ।

ରବୀନ୍ଦ୍ରନାଥଙ୍କ ଜନ୍ମଉତ୍ସବ ଉପଲକ୍ଷରେ ରଚିତ ମୋର କବିତା ପ୍ରକାଶିତ ହୁଏ କେତେକ ପତ୍ରପତ୍ରିକାରେ । ସେହି ସମୟରେ ପାର୍ଲାମେଣ୍ଟ ସଦସ୍ୟ ସ୍ୱର୍ଗତ ଶ୍ରୀ ଭୁବନାନନ୍ଦ ଦାସଙ୍କ ଘରକୁ ମୁଁ ମଧେ ମଧେ ଯା'ଆସ କରେଁ । ନବଯୁଗ-ସାହିତ୍ୟ-ସଂସଦର ଅଧିବେଶନରେ ମୋର ଭାଷଣ ଦେବା ସମୟରୁ ତାହାଙ୍କ ଦୃଷ୍ଟି ମୁଁ ଆକର୍ଷଣ କରିଥାଏଁ ଓ ତାଙ୍କ ଯାଆଁଳା ଭାଇ ଅମାୟିକ ବନ୍ଧୁତାର ଶ୍ରେଷ୍ଠ ନିଦର୍ଶନ ସ୍ୱାମୀ ବିଚିତ୍ରାନନ୍ଦ ମୋହର ଜ୍ୟେଷ୍ଠଭ୍ରାତାଙ୍କର ସମବୟସ୍କ ହେଲେ ମଧ ସ୍ୱୟଂ ମୋ ଘରକୁ ଯାତାୟାତ କରୁଥିଲେ ଓ ମୋତେ ଜଣେ ସମବୟସ୍କ ବନ୍ଧୁଭାବରେ ବ୍ୟବହାର କରୁଥିଲେ ।

ସ୍ୱାମିଜିଙ୍କର ଏହା ଏକ ଦୁର୍ଲଭଗୁଣ । ମୋହର 'ରବୀନ୍ଦ୍ର ବନ୍ଦନା' କବିତା 'ଉତ୍କଳ ସାହିତ୍ୟ' ପତ୍ରିକାରେ ପାଠକରି ଭୁବନାନନ୍ଦବାବୁ କିନ୍ତୁ ଠିକ୍ ପସନ୍ଦ କଲେ ନାହିଁ । ତାଙ୍କ ମତରେ କବିତାର ଛନ୍ଦ ଓ ପ୍ରକାଶ ଭଙ୍ଗୀରେ ବଙ୍ଗଳା ଛାଞ୍ଚ ରହିଗଲା । ମୁଁ ତାହାଙ୍କୁ ଜବାବ୍ ଦେଇଥିଲି କି ନାହିଁ ମନେ ପଡୁନି– ବଙ୍ଗଳା ଛାଞ୍ଚ ବୋଲି ଯାହାକୁ ଆମେ କହୁଁ, ତାହା

ଯଥାର୍ଥରେ ବଙ୍ଗଳା କିମ୍ବା ଭାରତର ଅନ୍ୟ କୌଣସି ଭାଷାର ଛାଞ୍ଚ ନୁହେ । ସେଟା ହେଲା ପୂରାପୂରି ଆଧୁନିକଛନ୍ଦର ଛାଞ୍ଚ; ଅର୍ଥାତ୍ ଆନ୍ତର୍ଜାତୀୟ ଛାଞ୍ଚ-ପୃଥିବୀର ସବୁ ଭାଷାରେ ଅନୂଦିତ ହେଲାଭଳି । ଯେଉଁ ଛାଞ୍ଚଟା ଅବଶ୍ୟ ଆମର ପ୍ରାଚୀନ ସଙ୍ଗୀତମୟ 'ରସକଲ୍ଲୋଳ' କି 'ଆଷାଢ଼ ଶୁକ୍ଳବାଣୀ' ଆଦି ଓଡ଼ିଆ କବିତାର ଛାଞ୍ଚ ସହିତ ଖାପ ଖାଇପାରେ ନାହିଁ । ଠିକ୍ ଯେମିତି ଭୁବନାନନ୍ଦବାବୁ ସେତେବେଳେ ପରାଧୀନ ଭାରତ ପାର୍ଲାମେଣ୍ଟ ସଦସ୍ୟ ଥିଲେ, ତାହାର ଛାଞ୍ଚକୁ ଭାରତୀୟ କୁହାଯାଇ ନ ପାରେ; ବରଂ ଆନ୍ତର୍ଜାତୀୟ କହିବା ଯଥାର୍ଥ ।

ଓଡ଼ିଆରେ ଗଳ୍ପ, ଉପନ୍ୟାସ, ନାଟକ ଆଦି ଆଧୁନିକ ରୂପର ଯେତେ ନମୁନା ଆମ ସାମ୍ନାରେ ରୋଜ ଦେଖାଦିଏ– ପ୍ରାଚୀନ ଓଡ଼ିଆ ସାହିତ୍ୟର ଢଙ୍ଗ, ଭଙ୍ଗୀ ବା ଛାଞ୍ଚ ସହିତ ତାହାର ତୁଳନା ଅବା କେଉଁଠି ? ତେବେ 'ଆଧୁନିକ' କବିତାର ପରିଚୟ ଯେ କିଛି ମାତ୍ରା ହୁଏ ନାହିଁ ।

ଭୁବନାନନ୍ଦବାବୁଙ୍କୁ ଏସବୁ କଥା ବୁଝାଇବାପାଇଁ ମୋର ଅବଶ୍ୟ ସୁଯୋଗ କିମ୍ବା ଅବକାଶ ନ ଥାଏ । ବୟୋଜ୍ୟେଷ୍ଠମାନଙ୍କର ଏଇଭଳି ବହୁ ମତାମତକୁ ନୀରବରେ ମୋତେ ଶୁଣିବାକୁ ହୁଏ; ମାତ୍ର ସେ ସବୁକୁ ହଜମ କରି ହୁଏ ନାହିଁ ।

ଏଇ ଭଳି ପ୍ରତିକ୍ରିୟାର ରୂପ ସେତେବେଳେ ପ୍ରକଟିତ ହୁଏ, ସ୍ୱର୍ଗତବନ୍ଧୁ ଶ୍ରୀ ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କ ନେତୃତ୍ୱରେ ଅନୁଷ୍ଠିତ 'ଭଞ୍ଜଜୟନ୍ତୀ' ପାଳନ ମାଧ୍ୟମରେ । କବିବର ରାଧାନାଥ ଓ ଭକ୍ତିକବି ମଧୁସୂଦନଙ୍କ ସମୟରେ ଆଧୁନିକ ଓ ପ୍ରାଚୀନପନ୍ଥୀ ସାହିତ୍ୟଗୋଷ୍ଠୀର ସୃଷ୍ଟି ହୋଇ 'ବିଜୁଳି' ପୁଣି 'ଇନ୍ଦ୍ରଧନୁ' ଦୁଇଟି ପତ୍ରିକା ପ୍ରକାଶିତ ହୁଏ । ତଥାପି ଆଧୁନିକ ରୀତି ଓ ଛନ୍ଦ ତାହାଦ୍ୱାରା ବାଧାପ୍ରାପ୍ତ ହୋଇ ନ ଥିଲା । ବିଚ୍ଛନ୍ଦଚରଣଙ୍କ ସହିତ ମତପାର୍ଥକ୍ୟ ଥିଲେହେଁ ମୋର ବନ୍ଧୁତା ରହିଥିଲା ଅକ୍ଷୁଣ୍ଣ ।

ନବ ନବ ଛନ୍ଦ, ଧାରା କବିତାରେ ପ୍ରକଟିତ ହେବାହିଁ ଯୁଗୋପଯୋଗୀ ଧର୍ମ । ପୁଣି ପ୍ରାଚୀନ କବିତାର ବାହୁଲ୍ୟ ସ୍ଥାନରେ ବର୍ତ୍ତମାନ ଗଦ୍ୟ ଧର୍ମୀ ସାହିତ୍ୟର ପ୍ରାଚୁର୍ଯ୍ୟ ଅନସ୍ୱୀକାର୍ଯ୍ୟ । ସେଥିସହିତ ଯାନ୍ତ୍ରିକ ମୁଦ୍ରଣାଳୟର ପ୍ରସାର ମଧ୍ୟ ବିଚାର୍ଯ୍ୟ ।

୧୯୩୯ ରେ ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ ଓଡ଼ିଶାରେ ଗଢ଼ାହେବା ସମ୍ପର୍କରେ ଗୋଟିଏ କୌତୁକ ଘଟଣା ଶୁଣିଥିଲେ 'ଭାଗୁ' ଠାରୁ । ସେତେବେଳେ ପଣ୍ଡିତ ନୀଳକଂଠ ହିଁ କଂଗ୍ରେସର ବୟୋଜ୍ୟେଷ୍ଠ ନେତା ଭାବରେ ଓଡ଼ିଶାରେ ସୁପରିଚିତ । ପଣ୍ଡିତ ଗୋଦାବରୀଶ କଂଗ୍ରେସରୁ ଅଲଗା ହୋଇଯାଇଥାନ୍ତି, ଦ୍ୱିତୀୟ ସ୍ଥାନ ଥିଲା ଶ୍ରୀ ବିଶ୍ୱନାଥ ଦାସଙ୍କର । ଗାନ୍ଧିଜୀଙ୍କ ଆହ୍ୱାନରେ ପ୍ରଥମେ ନୀଳକଣ୍ଠ ଯାଇ ସାକ୍ଷାତ୍ କରନ୍ତି ।'' 'ଚତୁର ବଣିଆ' ଗାନ୍ଧିଜୀ ତାଙ୍କୁ ଡାକି କଥା ପ୍ରସଙ୍ଗରେ ଶ୍ରୀ ବିଶ୍ୱନାଥ ଦାସଙ୍କ ବିଷୟ ପଚାରିବାରୁ ନୀଳକଣ୍ଠ ତାଙ୍କୁ ନ୍ୟୂନ ପ୍ରତିପନ୍ନ କରନ୍ତି, ମାତ୍ର ତାଙ୍କ ପରେ ବିଶ୍ୱନାଥବାବୁଙ୍କୁ ଡାକି ନୀଳକଣ୍ଠଙ୍କ ବିଷୟ ପଚାରନ୍ତେ ସେ ପ୍ରଶଂସାମୁଖର ହୋଇପଡ଼ନ୍ତି । ଫଳରେ ଶ୍ରୀ ବିଶ୍ୱନାଥ ଦାସ ହିଁ ସେତେବେଳେ ଓଡ଼ିଶାରେ ପ୍ରଧାନମନ୍ତ୍ରୀ ରୂପେ ମନୋନୀତ ହେଲେ ।



# ଲହୁ ଢାଳି ଏବେ ହତିଆର ତୋର ପଜା

ଦ୍ୱିତୀୟ ପୃଥିବୀ ମହାସମର ଘୋଷିତ ହେବା ସଙ୍ଗେ ସଙ୍ଗେ ଭାରତୀୟ ରାଜନୀତିରେ ଦେଖାଦିଏ ଘୋର ବିପର୍ଯ୍ୟୟ ! ଯେଉଁ ଅଳ୍ପ କେତେଗୋଟି ରାଜ୍ୟରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ାହୁଏ, ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ଇସ୍ତଫା ଦିଅନ୍ତି ସେଗୁଡ଼ିକ । ସେତେବେଳେ କଟକ କାଠଗଡ଼ାସାହି 'ଶିବକୁଟିରଂ' ଏକ ରାଜନୈତିକ କେନ୍ଦ୍ରରେ ପରିଣତ ହୋଇଥାଏ ।

ଅନୁଜ ଭଗବତୀଙ୍କ ନେତୃତ୍ୱରେ ଅହରହ ଚାଲିଥାଏ ଯୁବଗୋଷ୍ଠୀର ଆଲୋଚନା— ଓଡ଼ିଶା କମ୍ୟୁନିଷ୍ଟ୍ ପାର୍ଟିର ଅୟମାରମ୍ଭ । ପୋଲିସ୍ ଗୁଇନ୍ଦାମାନଙ୍କର ଗତାଗତ । ଅବଶ୍ୟ ଘରବାହାରେ । ବନ୍ଧୁ ଶ୍ରୀ ଶରତଚନ୍ଦ୍ର ମୁଖାର୍ଜୀଙ୍କ 'ଶିବକୁଟୀରଂ' ସାମ୍ନାରେ ଶ୍ରଦ୍ଧେୟ ସ୍ୱର୍ଗତ ବିପିନ୍ ମିତ୍ର କୋଠା । ଦୋତାଲା ଘରେ ବସି ସେତେବେଳେ ରେଭେନ୍‌ସା କଲେଜର ଛାତ୍ର ଓ ତା'ପରେ ରାଜନୀତିକ ନେତା ପୁଣି କିଛି କାଳ ପାଇଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିବା ଶ୍ରୀ ବୀରେନ୍ ମିତ୍ର ବିଦ୍ୟାଭ୍ୟାସ କରୁଥାନ୍ତି ପରୀକ୍ଷା ଦେବାପାଇଁ । ଅର୍ଥନୀତିର ଛାତ୍ର ସେ । ରାଜନୀତିରେ ମଧ୍ୟ ଛାତ୍ର ଆନ୍ଦୋଳନ କରିବା ଦିଗରେ ତାଙ୍କ ତତ୍ପରତା ଦେଖା ଦେଇଥାଏ ।

ଥରେ ଜଣେ ରାଜନୀତିକ ନେତାଙ୍କ ଭାଷଣ ଉପରେ ମତାମତ ପ୍ରକାଶ କରି ସେ କହନ୍ତି— "He makes a beautifully vague speech" ଅର୍ଥାତ୍ ଚମତ୍କାର ଅସ୍ପଷ୍ଟ ଭାଷଣ ଦିଅନ୍ତି । ତାଙ୍କ ନିଜ ଭାଷଣର ସ୍ପଷ୍ଟତା ମୁଁ କେବେହେଲେ ଅନୁଭବ କରିନାହିଁ ଅବଶ୍ୟ ।

'ଶିବ କୁଟିରଂ' ମଧ୍ୟରେ ଭଗବତୀଙ୍କ ନେତୃତ୍ୱରେ ବସେ ଯୁବକମାନଙ୍କର ଆଲୋଚନା ଚକ୍ର । ଢେଙ୍କାନାଳର ଯୁବନେତା ଶ୍ରୀ ବୈଷ୍ଣବ ପଟ୍ଟନାୟକଙ୍କୁ ଧରିବା ପାଇଁ ପୁରସ୍କାର ଘୋଷଣା କରିଥାନ୍ତି ଢେଙ୍କାନାଳ ରାଜ୍ୟ ସରକାର, ଅଥଚ ସେହି ଶ୍ରୀ ବୈଷ୍ଣବ ପଟ୍ଟନାୟକ ଯେ ଶିବକୁଟିରଂ କୋଠା ଛାତରେ କିଛି ଦିନ ପାଇଁ ଆତ୍ମଗୋପନ କରି ରହିଥିଲେ, ତାହାର ଖବର ଛାତତଳେ ଘର ଭିତରେ ରହୁଥିବା ମୋତେ ସେତେବେଳେ ଜଣା ନ ଥିଲା । ସ୍ୱାଧୀନତା ରଜତଜୟନ୍ତୀ ଉତ୍ସବରେ ଭାରତ ସରକାରଙ୍କଠାରୁ ସନନ୍ଦ ଲାଭ କରିଥିବା ସ୍ୱାଧୀନତା ସଂଗ୍ରାମୀ ଶ୍ରୀଫନି ପାଲ୍ ମଧ୍ୟ ଶିବକୁଟିରଂ କୋଠାଛାତ ଉପରେ ବସୁଥିବା ରାଜନୀତିକ ବୈଠକରେ ଯୋଗ ଦିଅନ୍ତି । ଭୋର ଆଠଟାରୁ ଖିଆପିଆ ସାରି ମୁଁ ବକ୍‌ସିବଜାର ଛକରେ ଅବସ୍ଥିତ ସରକାରୀ ପ୍ରେସ୍‌କୁ ଯାଏଁ ହେଡ୍ ରିଡର କାମ ତୁଲାଇବାକୁ । ସେଠାରେ ଆଠ ଘଣ୍ଟା କାମ କରିସାରି ଦୈନିକ ପ୍ରାୟ ଆଉ ଚାରି ଘଣ୍ଟା ବାଧ୍ୟତାମୂଳକ ଓଭର ଟାଇମ୍ କାମ କରିବାରେ ଲିପ୍ତ ରହେ । ତହୁଁ ଘରେ ପିଲାମାନେ ପଚାରୁଥିବାରୁ ମୁଁ ଶୁଣେ ତାଙ୍କ ମାଆଙ୍କଠାରୁ– "ସରକାରୀ ଛାପାଖାନାରୁ ଲେଉଟି ଆସି ବାପା କଟକରେ ଅଛନ୍ତି କି ଆଉ କୁଆଡ଼େ ଗଲେ ?"

ଆହୁରି ମଧ ନିର୍ବୋଧ ପିଲାଗୁଡ଼ାକ ଜାଣନ୍ତି ନାହିଁ ଯେ, ବାପା ତାଙ୍କର ସରକାରୀ ଛାପାଖାନାରେ ଓଡ଼ିଶା ଗେଜେଟ୍‌ର ପ୍ରୁଫ୍ ସଂଶୋଧନ କରୁଥିଲାବେଳେ ସେଇ ଘର 'ଶିବକୁଟୀରଂ' ଭିତରେ ଷଡ୍‌ଯନ୍ତ୍ର ଚାଲିଥାଏ ଇଂରେଜ ସରକାରଙ୍କୁ ନିପାତ କରିବାକୁ !

ସେଇ ସମୟରେ ମୋର କନିଷ୍ଠ ଭଗବତୀଚରଣ ପାଣିଗ୍ରାହୀଙ୍କ ସମ୍ପାଦନାରେ ପ୍ରକାଶ ପାଉଥାଏ ସାପ୍ତାହିକ ପତ୍ରିକା 'କୃଷକ' । ଚହଳ ପକାଇଥାଏ, ଢେଙ୍କାନାଳ ଗୁଳିକାଣ୍ଡରେ ବାଜିରାଉତ ସମେତ ଅନ୍ୟ ସହିଦମାନଙ୍କର ନୃଶଂସ ହତ୍ୟା ଘଟଣା । କୃଷକ ପତ୍ରିକାରେ ମୋର ଛଦ୍ମନାମ 'ବନ୍ଦୀ ସୈନିକ' ରଖିଥିବା ଅନୁଜ ଭଗବତୀ ପ୍ରକାଶ କରନ୍ତି ବାଜିରାଉତ ଓ ଅନ୍ୟ ସହିଦ୍‌ମାନଙ୍କ ସମ୍ବନ୍ଧରେ ଲିଖିତ ସେଇ ପ୍ରଥମ କବିତା,—

ଝାଳ ଦେଇ ତୁ ରେ ଗଢ଼ିଲୁ ରାଇଜ ରଜା
ଲହୁ ଢାଳି ଆଜି ହତିଆର ତୋର ପଜା
ବେଳ ଏହି ବେଳ ଏହି
ଗଢ଼ିଥିଲୁ ଯାକୁ ତାଡ଼ିବୁ ତାହାକୁ ନ ଶୁଅରେ ଆଉ ଚେଇଁ ।

କୋଣାରକଠାରୁ ଗଢ଼ିଲୁ ଦେଉଳ ବଡ଼
ନ ମାନିଲୁ ରାଜା ଗୁଳି ବନ୍ଧୁକ ଝଡ଼
ଏତେ ଅବିନୀତ ଟୋକା
ଢେଙ୍କାନାଳର କଙ୍କାଳ ଟାଣି ବଜାଇଲୁ ଜୟଢକା ।

ବଜାଇଲୁ ତୁ ତ ଦୁନିଆ ଉପରେ ବାଜା
ଛାତିକି ଫୁଲାଇ, ''ନାହିଁ ରାଜା ! ନାହିଁ ରାଜା !''
କାହୁଁ ଶିଖିଲୁ ଏ କଥା
କହ କହ ବାଜି କାହା ଲାଗି ଆଜି ବଳିଦେଲୁ ନିଜ ମଥା ।

ଗାନ୍ଧିଜୀଙ୍କ ଆଶ୍ରମର ବିଦେଶିନୀ ଶିଷ୍ୟା ମିସ୍ ଆଗାଥା ହ୍ୟାରିସନ୍ ଢେଙ୍କାନାଳ ଗୁଳିଫାଏର ଘଟଣା ପରେ କଟକ ଆସିଥାନ୍ତି ବ୍ୟକ୍ତିଗତ ଭାବରେ ତନଖିକରି । ତାଙ୍କ ସମକ୍ଷରେ ଏହି କବିତାର ଇଂରାଜୀ ଅନୁବାଦ ପାଠ କରାଯାଏ–

''ଲହୁ ଦେଇ ତୋର ହତିଆର ତହିଁ ପଜା'' ବାକ୍ୟଟି ଯେ ହିଂସାତ୍ମକ ଓ ଗାନ୍ଧିଜୀଙ୍କ ଅହିଂସା ପନ୍ଥାର ପ୍ରତିକୂଳ ଆଚରଣ କରିଛି, ତାହା ତାଙ୍କୁ ବୁଝାଇ ଦିଆଯାଏ । ମୋହର କିନ୍ତୁ ସରକାରୀ ଛାପାଖାନାରୁ ଚାକିରି ଚାଲି ଯାଇଥିବା ହେତୁ ଆଉ କୌଣସି ଦଣ୍ଡବିଧାନ ପାଇଁ ଅବକାଶ ରହି ନ ଥାଏ ।

ଢେଙ୍କାନାଳର ଗୁଳି ଫାଏର ଘଟଣା ସାଙ୍ଗକୁ ରଣପୁରଠାରେ ପଲିଟିକାଲ୍ ଏଜେଣ୍ଟ୍ ବଜେଲ୍‌ଗେଟ୍‌ଙ୍କର ନିର୍ମମ ହତ୍ୟାକାଣ୍ଡ । ସେଥି ସହିତ ପୁଣି ଗୋଟା ତାଳଚେର ରାଜ୍ୟକୁ ଛାଡ଼ି ସବୁ ତାଳଚେର ବାସୀ ରୁଣ୍ଡହୁଅନ୍ତି ଆସି ଅନୁଗୁଳ ଭିତରେ ।

'ଅନ୍ଧାରି ମୁଲକ' ଭିତରେ ଯେମିତି ଅବା ଚଟ୍‌କରି ଜଳିଉଠିଲା ଗୋଟାଏ ଉଜ୍ଜ୍ୱଳ ଆଲୁଅ–ଯେଉଁ ଆଲୁଅ ଖାଲଖମା ଢିପ ବଣ ପାହାଡ଼ ଜଙ୍ଗଲ ଅନ୍ଦିକନ୍ଦିରେ ପଶି ଦେଖାଇ ଦେଲା ପଦାକୁ ସବୁ । ଏଇ ଅବସ୍ଥାର ଅନୁସନ୍ଧାନ କରିବା ଥିଲା ମିସ୍ ଆଗାଥା ହ୍ୟାରିସନ୍‌ଙ୍କର କାମ । ଗାନ୍ଧିଜୀ ତାଙ୍କୁ ପଠାଇଥାନ୍ତି ଚାକ୍ଷୁଷ ତଦନ୍ତ କରି ସତ୍ୟ ଘଟଣା ଜଣାଇବା ପାଇଁ ।

ସରକାରୀ ପକ୍ଷରୁ ବୋଧହୁଏ ତାଙ୍କର ତଦନ୍ତ ସମୟରେ ମୋହ ରଚିତ 'ବନ୍ଦୀ ସୈନିକ' ଏଇ କବିତାଟିର ସମ୍ପୂର୍ଣ୍ଣ ଇଂରାଜୀ ଅନୁବାଦ କରାଯାଇ ତାଙ୍କ ସମକ୍ଷରେ ଶୁଣାଇ ଦିଆଯାଏ । ଖବରଟା ମୁଁ ଶୁଣେ ଭାଗୁଠାରୁ, ପୁଣି ତାହାର ସହକର୍ମୀ ଅନ୍ୟ ବନ୍ଧୁମାନଙ୍କଠାରୁ ।

ଅତଏବ, ଏଇ କବିତାଦ୍ୱାରା ଦୃଢ଼ ଭାବରେ ପ୍ରତିକୂଳ ଆଚରଣ କରାଯାଇଛି ଗାନ୍ଧିଜୀଙ୍କ ଚିର ଘୋଷିତ ଅହିଂସା ପନ୍ଥାର ।

ସେତେବେଳେ ମୋ'ର ମନେ ହେଲାଯେ, କବିତାଟିର ଏହି ପଦଟିକୁ ସ୍ପଷ୍ଟୀକରଣ ଲାଗି ମିସ୍ ଆଗାଥା ହ୍ୟାରିସନ୍‌ଙ୍କ ପାଖରେ ଯଥାର୍ଥ ଉଦ୍ୟମ କରାଗଲା ନାହିଁ । ଅହିଂସା ଲଢ଼େଇରେ ମଧ ମହଣ ମହଣ ଲହୁ ଯେ ଢଳା ହେଉଥାଏ, ପୁଣି ସୁଦୂର ଅତୀତରେ ସେହି ପରି ଏକ ଅହିଂସା ଲଢ଼େଇ ଯେ ଲାଗିଥିଲା, ତାହା ଏ ଯୁଗରେ ଅହିଂସାର ଅବତାର ମହାତ୍ମାଗାନ୍ଧୀଙ୍କର ବିଦେଶିନୀ ପଟ୍ଟଶିଷ୍ୟା ହ୍ୟାରିସନ୍‌କୁ ବୁଝାଇଦେବାକୁ କାହାରିକୁ ହେଲେ ପଇଟିଲା ନାହିଁ ବୁଦ୍ଧି ।

ମହାତ୍ମାଗାନ୍ଧୀ ସ୍ୱୟଂ ପ୍ରତ୍ୟହ ଗୀତାପାଠ କରନ୍ତି, ପୁଣି ଯେ କୌଣସି ସମୟରେ– ଏମିତି କି କମୋଡ୍‌ରେ ବସିଥିଲାବେଳେ ମଧ 'ଶ୍ରୀମଦ୍ ଭଗବତ୍‌ଗୀତା' ତାଙ୍କ ସମୟ କ୍ଷେପଣର ଏକ ମାତ୍ର ଶ୍ରେଷ୍ଠ ସହାୟକ ଥିଲା– ଯେଉଁ ଗୀତା ଗାନ୍ଧିଜୀଙ୍କଠାରୁ ଆରମ୍ଭ କରି ବିନୋବାଙ୍କ ପର୍ଯ୍ୟନ୍ତ ଶତସହସ୍ର ଶିଷ୍ୟଙ୍କୁ ମହାଭାରତର ସ୍ୱାଧୀନତା ସମରରେ ଅହିଂସା ସୈନିକ ସାଜିବାକୁ ଶ୍ରେଷ୍ଠ ପ୍ରେରଣା ଯୋଗାଇଥିଲା– ସେହି 'ଗୀତା' ଯେ ମହାଭାରତ ଯୁଦ୍ଧ ଭଳି ରକ୍ତନଦୀ ବୁହାଇ ଥିଲା– ଏକ ବିରାଟ ସଂଘର୍ଷ କେବଳ ଅହିଂସାର ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇ !

ବିହାରରେ କାର୍ଯ୍ୟ କରୁଥିବା ସବୁଜବନ୍ଧୁ ଶ୍ରୀ ଶରତଚନ୍ଦ୍ର ମୁଖାର୍ଜୀଙ୍କଠାରୁ ଏକ ପତ୍ର ପାଏଁ ଯେ, ତାଙ୍କ କୁଟୁମ୍ବମାନେ କଟକ ଆସିବେ । ଅତଏବ ସେମାନଙ୍କ ପାଇଁ ମୋତେ ଯେପରି ଘରଟି ତାଙ୍କର ଛାଡ଼ି ଅନ୍ୟ ଭଡ଼ାଘରକୁ ଯିବାକୁ ହେବ । ବୋଝ ଉପରେ ନଳିତା ବିଡ଼ା ! ପୁଣି ଚାଲେ ମୋର ଘର ଖୋଜା– ବଣି ଚଢ଼େଇ ପୁଣି ଆଉ କାହା ଘର ପାଣିରେ ଭସାଇବ ବୋଲି ପଚାରିଲା ଭଳି–

ରାମ ବୋଉ ଲୋ ରାମ ବୋଉ !
ଠାଆ ଟିକିଏ ଦେଇନା'ରୁ ।

ଖୋଜି ଖୋଜି ପୁଣି ସବୁଠାରେ 'ଦୂର୍‌ପଲା, ଦୂର୍‌ପଲା' ଶୁଣି ଶେଷରେ ଭିକ୍ଟୋରିଆ ସ୍କୁଲ କାଳିବଜାର ଚମାର ସାହି ଗଳିରେ ଗୋଟିଏ ଭଡ଼ାଘର ପାଏଁ । ଘରଟିର ମାଲିକ 'ମନୁ ମା'' । ବୃଦ୍ଧାଙ୍କର ବୟସ ଅନୁମାନ କରିବା ସମ୍ଭବ ନୁହେ କିନ୍ତୁ ତାଙ୍କ ଇତିହାସ ସେ ନିଜେ କହନ୍ତି ।

ପୁରୀ ନିକଟ କୌଣସି ରାହଙ୍ଗ ଶାସନର ବାଳବିଧବା ବ୍ରାହ୍ମଣ କନ୍ୟା ସେ । ତା'ପରେ ଜୀବନର ବିଚିତ୍ର ଗତିପଥରେ ସେ ପୁରୀର କୌଣସି ମଠରେ ଆଶ୍ରୟ ନିଅନ୍ତି; ସେଠାରୁ ପୁଣି କଟକର ଜଣେ ଡାକ୍ତରଙ୍କ ସହିତ ଚାଲିଆସି ରହନ୍ତି ବାଖରାବାଦ୍‌ରେ ଅବସ୍ଥିତ ଡାକ୍ତରବାବୁଙ୍କ ଏକ କୋଠାଘରେ ।

ଡାକ୍ତରବାବୁଙ୍କଦ୍ୱାରା ନିର୍ମିତ ଚମାର ସାହିସ୍ଥିତ କୋଠାଘରେ ତାଙ୍କର ଅବସ୍ଥାନ । ସେହି ଘରେ ମୁଁ ସପରିବାର ରହି ସାରିବା ପରେ ଶୁଣିପାରେଁ, ମନୁମା'ଙ୍କର ବିଚିତ୍ର ଇତିହାସର କାହାଣୀ; ମାତ୍ର ମୋର ବିପଦ ସମୟରେ ସେ ମୋତେ ଆଶ୍ରୟ ଦେଇ ଯେଉଁ ଉପକାର କରିଥିଲେ, ତାହା ଆଜି ବି ଅବିସ୍ମରଣୀୟ ।

କାଜିବଜାର-ଚମାର-ସାହିରେ ରହିଥିବା ସମୟରେ ହିଁ ଷ୍ଟୁଡ଼େଣ୍ଟସ୍ ଷ୍ଟୋର ପାଇଁ ପାଠ୍ୟପୁସ୍ତକ ଲେଖିବା କାମ ମୋର ଚାଲିଥାଏ । ଆହୁରି ଆସି ଜୁଟିଯାଏ, ଉତ୍କଳ-ସାହିତ୍ୟ-ସମାଜର ସମ୍ପାଦକ ରୂପେ କାର୍ଯ୍ୟ କରିବାର ଗୌରବ । ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁଙ୍କଠାରୁ ମୋ'ର ଏଇ କାର୍ଯ୍ୟଭାର ଗ୍ରହଣକୁ ସ୍ୱର୍ଗତ ନୀଳକଣ୍ଠ ଓ ଚିନ୍ତାମଣି ଆଚାର୍ଯ୍ୟ ପ୍ରମୁଖ ସ୍ୱାଗତ କରନ୍ତି । ଆହୁରି ମଧ ମୋର କରମର୍ଦ୍ଦନ କରନ୍ତି ଦେବାନ୍ ବାହାଦୁର ଶ୍ରୀକୃଷ୍ଣ ମହାପାତ୍ର ବିଲାତୀ ଛାଞ୍ଚରେ ।

କାଜିବଜାର ଘରୁ ପୁଣି ମୋର ବଦଳି ହୁଏ ସୂତାହାଟ ଖ୍ରୀଷ୍ଟୀୟାନ୍ ସାହିକୁ । କବି ଶ୍ରୀମତୀ କୁନ୍ତଳାକୁମାରୀ ସାବତଙ୍କ ତିରୋଧାନ ପରେ ତାଙ୍କ ସ୍ୱାମୀ ସ୍ୱର୍ଗତ କୃଷ୍ଣପ୍ରସାଦ ବ୍ରହ୍ମଚାରୀ ଏଇ ସୂତାହାଟ ଦୋତାଲା ଘରଟିକୁ ମୋହପାଇଁ ମାସିକ ୧୫ ଟଙ୍କା ମାତ୍ର ଭଡ଼ାରେ ରହିବାକୁ ବ୍ୟବସ୍ଥା କରି ଦେଇଥାନ୍ତି । ପରେ ଏହାର ଭଡ଼ା ବଢ଼ିଯାଏ ୨୦ ଟଙ୍କାକୁ । ଘରଟିରେ ପ୍ରଥମେ ସେ ରହୁଥିବା ହେତୁ ଦୋତାଲା ଉପରେ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଥାଏ 'ଭାରତୀ ତପୋବନ' ।

ହିନ୍ଦୁ ମହାସଭାର ଜଣେ ବିଶିଷ୍ଟ ପ୍ରଚାରକ ଭାବରେ ସ୍ୱର୍ଗତ କୃଷ୍ଣପ୍ରସାଦ ବ୍ରହ୍ମଚାରୀ ସେତେବେଳେ ସୁପରିଚିତ । ତାଙ୍କରି ଉଦ୍ୟମରେ ହିଁ କୁନ୍ତଳାକୁମାରୀ ଦିଲ୍ଲୀରେ ଅବସ୍ଥାନ କରି କେବଳ ଚିକିତ୍ସକ ମହଲରେ ନୁହେଁ, ହିନ୍ଦୀ ସାହିତ୍ୟ କ୍ଷେତ୍ରରେ ମଧ ଖ୍ୟାତି ଅର୍ଜନ କରନ୍ତି । କୁନ୍ତଳାଙ୍କ ଅସାଧାରଣ ପ୍ରତିଭା ଅତି ଅଳ୍ପ ସମୟ ମଧ୍ୟରେ ତାଙ୍କୁ ହିନ୍ଦୀ ଭାଷାରେ ଜଣେ ସୁଲେଖିକା ଓ ସୁକବି ଭାବରେ ଖ୍ୟାତି ପ୍ରଦାନ କରେ ।

ମୋହର ମୟୂରଭଞ୍ଜ ଅବସ୍ଥାନ କାଳରେ ପତ୍ରବିନିମୟ ଦ୍ୱାରା ତାଙ୍କ ସହିତ ସମ୍ପର୍କ ସ୍ଥାପିତ ହୁଏ । ବାରମ୍ବାର ମୋତେ ସେ ନିମନ୍ତ୍ରଣ କରନ୍ତି ଦିଲ୍ଲୀ ଯିବାଲାଗି; ମାତ୍ର ତାହା ସମ୍ଭବପର ହୋଇପାରେ ନାହିଁ ମୋହ ପକ୍ଷରେ ।

ଶ୍ରୀମତୀ କୁନ୍ତଳାକୁମାରୀ ଉତ୍କଳୀୟ ନାରୀ ସମାଜରେ ଏଇ ଯୁଗର ଜଣେ ଶ୍ରେଷ୍ଠ ପ୍ରତିଭାଶାଳୀ କବି, ବାଗ୍ମୀ ଓ ବିପ୍ଳବିନୀ ରୂପେ ପ୍ରତିଷ୍ଠିତା । ଶ୍ରଦ୍ଧେୟ ବ୍ରହ୍ମଚାରୀଙ୍କ ସାହଚର୍ଯ୍ୟ ଫଳରେ କବି କୁନ୍ତଳାଙ୍କର ନବ ନବ ଉନ୍ମେଷଶାଳିନୀ ପ୍ରତିଭା ଓଡ଼ିଶା ବାହାରେ ପରିବ୍ୟାପ୍ତ ହୁଏ ।

ଆଜି ମଧ ଦିଲ୍ଲୀରେ ପ୍ରଖ୍ୟାତ ହିନ୍ଦୀ ଔପନ୍ୟାସିକ ଜୈନେନ୍ଦ୍ର କୁମାର ପ୍ରମୁଖ ବନ୍ଧୁମାନଙ୍କ ମୁଖରୁ କୁନ୍ତଳାଙ୍କ ପ୍ରଶଂସା ଶୁଣି ଗର୍ବରେ ମୋର ମନ ଫୁଲିଉଠେ, ଆଉ ତାଙ୍କରି ସ୍ମୃତିରେ କଟକରେ ଅବସ୍ଥାପିତ 'ଭାରତୀ ତପୋବନ ସଂଘ' ଗୃହଟିରେ କେତେ ବର୍ଷ ରହିଥିବା ହେତୁ ଆପଣାକୁ ମୁଁ ଧନ୍ୟ ମନେକରେ ।



# ଅନ୍ଧାରେ ଅଦ୍ଭୁତ ଆଲୁଅ (୧୯୩୯)

ଓଡ଼ିଶା ସରକାରଙ୍କ ପ୍ରଚାର ବିଭାଗରୁ ମୋର ଚାକିରି ଚାଲିଯାଏ– ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ଦ୍ୱିତୀୟ ପୃଥିବୀ ମହାସମର ଆରମ୍ଭ ହେବା ସଙ୍ଗେ ସଙ୍ଗେ ଇସ୍ତଫା ଦେବା ପରଠାରୁ; ସେହି ସମୟରେହିଁ ତେଜିଉଠେ ଓଡ଼ିଶାରେ ଦେଶୀୟ ରାଜ୍ୟ ଆନ୍ଦୋଳନ ।

ଢେଙ୍କାନାଳ ଗୁଳିକାଣ୍ଡରେ ବାଳକ ବୀର ବାଜିରାଉତ ସମେତ ଭୁବନଗ୍ରାମର ଅନ୍ୟାନ୍ୟ ପ୍ରଜାଙ୍କର ହତ୍ୟା ବର୍ଣ୍ଣନା ଶୁଣେ । ରଣପୁର ପ୍ରଜାମେଳିରେ ବଜେଲଗେଟଙ୍କୁ କେବଳ ପ୍ରହାର କରି ଅତି ନୃଶଂସଭାବରେ ହତ୍ୟା କରାଯାଏ, ଆଉ ମୃତଦେହକୁ ବସାଇ ଦିଆଯାଏ ଜୀବନ୍ତ ଭଳି ।

ସେତେବେଳେ ମୋର ଅବସ୍ଥା ବାସ୍ତବିକ ଅବର୍ଣ୍ଣନୀୟ । ମୋ’ ବିରୋଧରେ ଯେଉଁ ଅଭିଯୋଗ ଶୁଣେ, ସେଥିରେ ଏକାବେଳେ ତାଟକା ହୋଇପଡ଼େଁ ।

ଅଭିଯୋଗଟି ହେଲା– ମୋର ଚାକିରି ଚାଲିଯିବା ମୂଳରେ ନିହିତ ଏକ ରାଜନୈତିକ କାରଣ । କେହି କେହି ବନ୍ଧୁ କହିଲେ, ମୁଁ ଫାସିଷ୍ଟବାଦ୍‌ର ଜଣେ ଦଲାଲ୍– ଅର୍ଥାତ୍ ସମର୍ଥନ କରେଁ ହିଟ୍‌ଲରଙ୍କୁ !

ଆଉ କେତେକ କଂଗ୍ରେସ ନେତୃସ୍ଥାନୀୟ ବ୍ୟକ୍ତିଙ୍କଠାରୁ ଜଣାପଡ଼େ ଯେ, ମୋର ସାନ ଭାଇ ସ୍ୱର୍ଗତ ଭଗବତୀଚରଣ ପାଣିଗ୍ରାହୀଙ୍କର ଚରମ ରାଜନୈତିକ ମତବାଦ ହେଲା ଏହାର ପ୍ରକୃତ କାରଣ । କଥାଟା ମୋତେ ଇଂରାଜୀ ‘ଏସଫ୍‌ସ୍‌ଫେବ୍‌ଲ୍’ର ଗଧିଆ ଓ ମେଣ୍ଢା କାହାଣୀ ଭଳି ବୋଧହେଲା ।

ଗଧିଆ ମେଣ୍ଢାକୁ ଖାଇବ ବୋଲି ଗୋଟିଏ ଝରଣାରୁ ଦୁହେଁ ପାଣି ପିଉଥିଲାବେଳେ ପରସ୍ପର ମଧ୍ୟରେ ସେହି ବିଚିତ୍ର କଥୋପକଥନ । ଝରଣା ଉପରୁ ଗଧିଆ ପାଣି ପିଉଥିଲେ ହେଁ ସେଇ ଝରଣାତଳୁ ମେଣ୍ଢାଟି ପାଣି ପିଇବାବେଳେ ଦୋଷୀ ସାବ୍ୟସ୍ତ ହୁଏ ପାଣି ଗୋଳିକରିଥିବା ଅପରାଧରେ ।

ତଳତଳିଆ ଗରିବ ମଣିଷ ଯେମିତି ଉପରବାଲା ଧନୀ ସାହୁକାରମାନଙ୍କ ଚରିତ୍ରକୁ ଖରାପ କରି ନ ପାରେ, ଠିକ୍ ସେଇଭଳି ବୋହିଯାଉଥିବା ତଳ ପାଣି ଉପର ପାଣିକୁ କଦାପି ଗୋଳି କରି ନ ପାରେ । ସେଇ କଥା କହି ମେଷ ଶାବକଟି ଯୁକ୍ତିକଲାରୁ ଗଧିଆର ଅଭିଯୋଗ ଶୁଣେ– ସେ ନ କଲେବି ତା’ର ପିତୃପୁରୁଷ ଗୋଳି କରୁଥିଲେ ! ଆଉ ସେଇ କାରଣରୁ ଶେଷରେ ହୁଏ ସେ ଗଧିଆର ଶିକାର-ଅବିକଳ ଯେମିତି ଉଚ୍ଚପାହ୍ୟା ମଣିଷ ଅକାରଣ ତଳପାହ୍ୟା ମଣିଷର ଦୋଷ ଦେଖାଇ ଗାଳିଗୁଲଜ ବେକିତ୍ କରିଥାଏ । କଂଗ୍ରେସର ଅପ୍ରତିଦ୍ୱନ୍ଦ୍ୱୀ

ନେତା ଗାନ୍ଧୀଙ୍କ ନିର୍ଦ୍ଦେଶରେ ଇସ୍ତଫା ଦେଇଥିବା ସେତେବେଳର ଓଡ଼ିଶା ପ୍ରଧାନମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସ ମନ୍ତବ୍ୟ ଦିଅନ୍ତି ହସିହସି, ମୋର ଚାକିରିରୁ ବହିଷ୍କାର ବ୍ୟାପାରରେ–

''ରାବଣ ମଲାବେଳେ ବିଚାରିଥିଲା ସବୁ କ୍ଷମତା ତ ହାତକୁ ତା'ର ଆସିଗଲା– ଜଳ ସ୍ଥଳ ଆକାଶ । ଇନ୍ଦ୍ର, ବରୁଣ, ଅଗ୍ନି ଆଦି ସବୁ ଦେବତା ଆଜ୍ଞାପ୍ରମାଣେ ଆସି ତ ସେବକ ରୂପେ ଖଟିଲେ । ବାକି ରହିଥିଲା ଖାଲି ସ୍ୱର୍ଗକୁ ଗୋଟିଏ ନିଶୁଣି ତିଆରି କରିବା ।

ସେତିକି ହୋଇ ନପାରିବାରୁ ମଲାବେଳେ ତା'ର ଯେଉଁ ଅବସୋସ ହୁଏ, ମୋ ଚାକିରି ଚାଲିଯିବାରେ ସେମିତି ଦୁଃଖ ସେ ଅନୁଭବ କରନ୍ତି । ମୁଁ କିନ୍ତୁ ସ୍ୱର୍ଗକୁ ଚଢ଼ିବା ନିଶୁଣି ବଦଳରେ ପାତାଳକୁ ଓହ୍ଲାଇବା ନିଶୁଣି ଖୋଜି ଲାଗିଲିଣି । ଏଣେ ମୋର ସରକାରୀ ଚାକିରି ଚାଲି ଯିବାକୁ ତେଣେ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମାମଲାରେ ଭାଗୁ (ଭଗବତୀଚରଣ ପାଣିଗ୍ରାହୀ) ସାଥୀମାନଙ୍କ ସହ ଗିରଫ୍ ହୋଇ କଟକ ବନ୍ଦିଶାଳାର ସେଲ୍‌ରେ କେଉଁଦିନୁ ଯାଇ ଅବସ୍ଥାନ କଲାଣି– ସେ ଖବରଟା ରଖିବାକୁ ସୁଦ୍ଧା ମୋର ତର ନଥାଏ ।

କୁଟୁମ୍ବ-ପୋଷଣ ଉପାୟ ଖୋଜି ମୁଁ ଆକାଶକୁ ଚାହେଁ । ଏଇଭଳି ଅସୀମ ହତାଶା ଭିତରେ ମୋହର ଯେପରି ମନେହୁଏ, ଗୋଟାଏ ବିରାଟ ଅନ୍ଧକାର ଗହ୍ୱରକୁ ମୁଁ ନିକ୍ଷିପ୍ତ ହୋଇଛି– ଯେଉଁଠାରେ ନିଃଶ୍ୱାସ ମାରିବାକୁ ସୁଦ୍ଧା ପବନ ନାହିଁ । ସେହି ପରିସ୍ଥିତିରେ ଦିନେ ସକାଳେ ଏକ ବିଚିତ୍ର ଘଟଣା ଘଟେ । ଘଟଣାର ପ୍ରକୃତ ହେତୁ ଆଜି ସୁଦ୍ଧା ବୁଝିବାକୁ ମୁଁ ସମର୍ଥ ହୋଇପାରିଲି ନାହିଁ ।

ନିରାଟ ନାସ୍ତିକ୍ୟ ଓ ବସ୍ତୁବାଦର କଠୋର କୋଠରି ଭିତରେ ରହିଥିଲାବେଳେ ଏଇ ଦୃଶ୍ୟ ମୋ ସମକ୍ଷରେ ଉଭାସିତ ହୋଇଉଠେ– ଉଭାସିତ ହୋଇଉଠେ ଏକ ରକ୍ତାଭ ଆଲୋକ ରଶ୍ମି । ଆକାଶକୁ ଚାହିଁ ଦେଖେଁ ସୁନିର୍ମଳ ସୂର୍ଯ୍ୟକିରଣରେ ତାହା ସମୁଜ୍ଜ୍ୱଳ । କଳିପାରିଲି ନାହିଁ ଏହି ରକ୍ତାଭ ରଶ୍ମିର ହେତୁ ଅଥବା ଉଦ୍ଭବସ୍ଥଳ । ବସ୍ତୁବାଦର ନିଗଡ଼ନିର୍ମମ କୋଠରି ଭିତରେ ହେତୁର ସନ୍ଧାନ କରୁଥିଲାବେଳେ ଏହି ଅହେତୁକ ଅଲୌକିକ ଘଟଣା ମୋତେ ଅଭିଭୂତ କରିପକାଏ । ଆହୁରି ବୋଧହୁଏ ଅନ୍ତର ଲୋକରେ ମୋର ସଞ୍ଚାର କରେ ନୂତନ ପ୍ରେରଣା– ନୂତନ ଆତ୍ମବିଶ୍ୱାସ । ଯେଉଁ ବିଶ୍ୱାସକୁ ଛାଡ଼ି କୌଣସି ହେତୁବାଦୀ କିମ୍ବା ବସ୍ତୁବାଦୀ ପକ୍ଷରେ ପାଦେ ହେଲେ ଅଗ୍ରସର ହେବାର ଉପାୟ ନାହିଁ ।

ସେଇ ବିଶ୍ୱାସହିଁ ମୋହ ଭିତରେ ଆଣେ ଶକ୍ତି,ସାହସ ଆଉ ପ୍ରେରଣା ଜୀବନର ସବୁଗୁଡ଼ିକ ଲକ୍ଷଣ ଓ ସମସ୍ତ ସଂଜ୍ଞାଭିତରେ ହିଁ ସେଇ ବିଶ୍ୱାସର ପ୍ରତିଷ୍ଠା । ସୁନୀଳ ନିର୍ମଳ ଆକାଶର ଚତୁର୍ଦ୍ଦିଗ ନିରୀକ୍ଷଣ କରି ସୁଦ୍ଧା ଏଇ ରକ୍ତରଶ୍ମିର ହେତୁ ଖୋଜିପାଏ ନାହିଁ । ଚାହିଁ ରହେ କେବଳ ମୂଢ଼ବିହ୍ୱଳ ହୋଇ ସେଇ ଅହେତୁକ ଅଦ୍ଭୁତ ଆଲୁଅ ପ୍ରତି । ଆଜି ସୁଦ୍ଧା ମୋର ବାସ୍ତବବାଦୀ-ବିଶ୍ଳେଷଣ ଖୋଜି ପାଇନାହିଁ ସେଇ ଆଲୋକର ହେତୁ । ସେଇ କିବା ମୋର ମନ ଅନ୍ଧାରକୁ ନିର୍ମଳ ସ୍ୱଚ୍ଛ କରିବାର ସଂକେତ-ଜୀବନ ଯାତ୍ରାର ପଥ ପ୍ରଦର୍ଶକ– ''ତମସୋ ମା ଜ୍ୟୋତିର୍ଗମୟ''-ପୁଣି ଜର୍ମାନ୍ କବି ଗ୍ୟେଟେଙ୍କର ''light more light'' – 'ଆଲୋକ, ଅଧିକ ଆଲୋକ' - କବିଙ୍କ ଅନ୍ତିମଶଯ୍ୟାର ଉଚ୍ଚାରଣ ।

ସେଇ ଅବସରରେ ବନ୍ଧୁ ଶ୍ରୀ ଅଶୋକ ରାଓଙ୍କ ସହିତ ମଝେ ମଝେ ସାକ୍ଷାତ୍‌କାର ଘଟେ । ଦିନେ ସେ ପ୍ରସ୍ତାବ କରନ୍ତି, ମୋର ଗୋଟିଏ ଟିଉସନ୍ ନିଯୁକ୍ତି ବିଷୟରେ । ଟିଉସନ୍‌ଟି ତାଙ୍କ ସମ୍ପର୍କୀୟ ଓଡ଼ିଶା ସ୍କୁଲ ବିଭାଗୀୟ ଅଧକ୍ଷ ସ୍ୱର୍ଗତ ଏସ୍.ରାଓଙ୍କ ଘରେ । ତାଙ୍କ ପୁଅ କନ୍‌ଭେଣ୍ଟ ସ୍କୁଲରେ ପଢ଼ିଥିବାରୁ ଓଡ଼ିଆ ଶିଖିପାରି ନଥିଲେ । ମୁଁ କେବଳ ଓଡ଼ିଆ ପଢ଼ାଇବାର ଦାୟିତ୍ୱ ନିଏଁ । ମାସିକ ବେତନ ଟ୧୬ଙ୍କା । ପିଲାଦିନୁଁ ଶିକ୍ଷକ ହେବାକୁ ଯେଉଁ ଅହେତୁକ ବିତୃଷ୍ଣା ରହି ଆସିଥିଲା, ଏବେ ତହିଁରେ 'ବଳାଦିବ ନିୟୋଜିତ' ହୁଏଁ, କୁରୁକ୍ଷେତ୍ରରେ ଅର୍ଜୁନ ଧନୁଶର ତୋଳିଧରିଲା ଭଳି ଅବା ।

ଆଉ ଗୋଟିଏ କାମ ମଧ ଦୈବାତ୍ ଜୁଟିଯାଏ ମୋର । କାମଟି ହେଲା ଦୈନିକ 'ଆଶା' ପତ୍ରିକାର ସମ୍ପାଦକୀୟ ଲେଖିବା । ଆହୂତ ହୋଇ ଦିନେ 'ଆଶା'ର ସମ୍ପାଦକ ସ୍ୱର୍ଗତ ଶ୍ରଦ୍ଧେୟ ଶଶିଭୂଷଣ ରଥଙ୍କ ସହିତ ସାକ୍ଷାତ୍ କରେ ମୁଁ । ଶଶିବାବୁଙ୍କ ସହିତ ମୋର ପରିଚୟ ଘଟିଥିଲା ସର୍ବ ପ୍ରଥମେ ତ୍ରିଂଶ ଦଶକରେ ଅନୁଷ୍ଠିତ ଇଚ୍ଛାପୁର ନିଖିଳ ଉତ୍କଳ କବି ସମ୍ମିଳନୀରେ । ମୋତେ କାହିଁକି ସହାନୁଭୂତିଶୀଳ ହୋଇ ଡାକି ପଠାନ୍ତି, ବୁଝିପାରେ ନାହିଁ । ତାଙ୍କୁତ କଂଗ୍ରେସ-ରାଜନୀତିରୁ ଅଲଗା କରିଦିଆଯାଇଥାଏ । ଆଉ ମୋର ମତବାଦ ସମ୍ପର୍କରେ ନିଶ୍ଚୟ ସେ ଜଣେ ବିଶିଷ୍ଟ ସାମ୍ବାଦିକ ଓ ରାଜନୀତିଜ୍ଞ ଭାବରେ ଅବହିତ ଥିବେ । ସେତେବେଳେ 'ଆଶା' ପ୍ରେସ୍ କଟକରୁ ଉଠିଆସିଥାଏ କାଫଲାଫାଣ୍ଡି ପାଖ ଖଲିକୋଟ୍ କୋଠିକୁ । ଇଂରାଜୀ 'ନିଉଓଡ଼ିଶା' ଏବଂ ଓଡ଼ିଆ 'ଆଶା' ଦୁଇଟି ଦୈନିକ ବାହାରୁ ଥାଏ ସେହିଠାରୁ । ଶ୍ରଦ୍ଧେୟ ଶଶିଭୂଷଣ ରଥ ମୋତେ ସାଦର ଅଭ୍ୟର୍ଥନା ଜଣାଇ ଦୈନିକ 'ଆଶା'ର ସମ୍ପାଦକୀୟ ଲେଖିବାକୁ ନିର୍ଦ୍ଦେଶ ଦିଅନ୍ତି, ମାସିକ ବେତନ ଟ୫୦ଙ୍କା । ସେତେବେଳେ ଟିଉସନ୍ ଦରମା ସମେତ ମାସିକ ଟ୫୬ଙ୍କାରେ କଟକ ବସାଖର୍ଚ୍ଚ ସୁରୁଖୁରୁରେ ଚଳିଗଲା । ମୋହସଙ୍ଗେ ଅଳ୍ପ କଥୋପକଥନ ଭିତରେ– ଶଶିବାବୁଙ୍କ ମହାନୁଭବତା ଓ ମନୁଷ୍ୟତ୍ୱର ଉଦାର ପରିଚୟ କାହାରିଠାରୁ ଆଜି ତ ଉଣାନୁହେ କଦାପି ।

ଅବସ୍ଥାଟା ବୋଧହୁଏ ବେଶିକାଳ ସମାନ ଗତିରେ ଚାଲିପାରିଲା ନାହିଁ । ଟିକିଟଢ଼େଇ ତା'ମାକୁ କହିଲା ଭଳି- ମା,ଲୋ ମା ! ମୁଁ ଯେଉଁ ଡାଳରେ ବସୁଛି ସେ ଡାଳଟା ଭାଙ୍ଗି ପଡୁଛି । ମା ମଧ ତା'ର ଠିକ୍ ଜବାବ ଦେଲା ଭଳି– ହଁରେ ପୁଅ ତୋ ଟାଙ୍କ ଲାଞ୍ଜରୁ ଦିଶୁଛି ।

ଜୀବନବ୍ୟାପୀ ଏଇଭଳି ଅସ୍ଥାୟୀ ଅବସ୍ଥା ଭିତରେ ଗତି କରିବା ମୋର ଯେମିତି ରୀତି । ତେଣୁ ମନରେ ଏକ ପ୍ରକାର ଦମ୍ଭ, ସାହସ ଓ ବିଶ୍ୱାସ କିପରି ଆସିଯାଇଛି, ଯେ ଆଶାବାଦୀ ମଣିଷର ଗତିପଥ ଉତ୍‌ଥାନ ପତନ ଭିତରେହିଁ ସୁନିର୍ଦ୍ଦିଷ୍ଟ । ଆଉ କେବଳ ନୈରାଶ୍ୟବାଦୀ ବୁଡ଼ିମଲା ଲୋକର ଗୋଡ଼ ତଳକୁ ତଳକୁ ଭଳି– 'ଉଦ୍ଧରେଦାତ୍ମନାତ୍ମାନଂ' ନାତ୍ମାନମବସାଦୟେତ୍– ନିଜେହିଁ ନିଜର ଉଦ୍ଧାରକର୍ତ୍ତା ଆଉ କେହି ହୋଇ ନପାରେ । ପ୍ରାଇଭେଟ ଟିଉସନ ଓ 'ଆଶା' ସମ୍ପାଦକୀୟ କାମ ଯେ ଅସ୍ଥାୟୀ, ପୁଣି ଯେ କୌଣସି ମୁହୂର୍ତ୍ତରେ ତାହା ବନ୍ଦହୋଇ ଯାଇପାରେ ସେଥିଲାଗି ବିବ୍ରତ ହେବାକୁ ମୋର ଅବସର ମଧ ନଥିଲା । 'ଢୋକେ ପିଇ ଦଣ୍ଡେ ଜିଇ' ନୀତିହିଁ ଥିଲା ମୋର ଆତ୍ମବିଶ୍ୱାସର ଶ୍ରେଷ୍ଠ ଉପାଦାନ ।



# ସବୁର୍‌କା ଝାଡ୍ ମେ ମେଓ୍ୱା ଫଲ୍‌ତା

ସରକାରୀ ଛାପାଖାନାରୁ ସେତେବେଳର କଂଗ୍ରେସ ସରକାରଙ୍କଦ୍ୱାରା ନିଯୁକ୍ତ ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀଙ୍କ ପ୍ରଚାରକ ନିଯୁକ୍ତ ହେବା ସମ୍ମାନପାଇ ଶେଷରେ ଯେ ଏକାବେଳେ 'ନ ନୀଗଂ ନ ତୀରଂ' ଅବସ୍ଥାରେ ମୁଁ ରସାତଳେ ଯାଇ ପଡ଼େଁ– ମନେହୁଏ ସେହି ଅବସ୍ଥାରୁ କେବେହେଲେ ଯେମିତି ମୋର ଉଦ୍ଧାର ଆଉ ନାହିଁ ।

ସରକାରୀ ଛାପାଖାନା ସମ୍ପର୍କରେ ଯେଉଁ ବେସରକାରୀ ଅନୁସନ୍ଧାନ କମିଟି ନିଯୁକ୍ତ ହୁଏ, ତାହାର ଚେୟାରମ୍ୟାନ୍ ଥିଲେ ଏକଦା 'ମୁକୁର' ପତ୍ରିକାର ସମ୍ପାଦକ ସ୍ୱର୍ଗତ ବ୍ରଜସୁନ୍ଦର ଦାସ । ସ୍କୁଲଛାତ୍ରଥିବା ସମୟରୁ 'ମୁକୁର' ରେ ପ୍ରକାଶଲାଗି ତାଙ୍କ ନିକଟକୁ ପ୍ରହ୍ଲାଦ ଚରିତ୍ର ଉପରେ 'ଭକ୍ତିବଳ' ଶୀର୍ଷକ କବିତା ପଠାଇ ପତ୍ରାଳାପ କରିଥାଏଁ ମାତ୍ର ।

ଏବେ ପୁଣି କଟକ ଅବସ୍ଥାନ ସମୟରେ ଯାଚକ୍‌ଲେନ୍‌ର ପଡ଼ୋଶୀ ତାଙ୍କ ସନ୍ତୁ ଲାଲମୋହନବାବୁଙ୍କ ଜରିଆରେ ପାରିବାରିକ ପରିଚୟ ମଧ୍ୟ ପ୍ରତିଷ୍ଠା ହୋଇଥାଏ । ବେକାର ଅବସ୍ଥାରେ ବର୍ତ୍ତମାନ ଆହୁରି କେତେ ସ୍ଥାନ ଅସ୍ଥାନ ବନ୍ଧୁ, ଅବନ୍ଧୁଙ୍କର ସମ୍ପର୍କରେ ଆସୁଥିଲି କିନ୍ତୁ ବ୍ରଜବାବୁଙ୍କର ଅହେତୁକ ସ୍ନେହ, ସଦାଶୟତା ଓ ମଧୁର ବ୍ୟବହାର ଛାଏଁ ଯେପରି ମୋତେ ତାଙ୍କ ପାଖକୁ ଓଟାରି ନିଏ ।

ବ୍ରଜବାବୁଙ୍କ ସମ୍ପାଦିତ ସୁବିଖ୍ୟାତ 'ମୁକୁର' ପତ୍ରିକାର ପ୍ରକାଶନ ସେତେବେଳକୁ ଅବଶ୍ୟ ବନ୍ଦହୋଇ ଯାଇଥାଏ; କିନ୍ତୁ 'ମୁକୁର' ଛାପାଖାନାର ମୁଦ୍ରଣ କାର୍ଯ୍ୟ କେତେକ ପରିମାଣରେ ଚାଲୁରହିଥାଏ, ବିଶେଷ ଭାବରେ 'ମୁକୁର' ପ୍ରେସ୍‌ର ଟାଇପ୍ ଫାଉଣ୍ଡରୀ ଓଡ଼ିଶାବ୍ୟାପୀ ଯେଉଁ ସୁନାମ ଅର୍ଜନ କରିଥିଲା, ତାହା ରହିଥାଏ ପ୍ରାୟ ଅକ୍ଷୁଣ୍ଣ । ଓଡ଼ିଶାର ମୁଦ୍ରଣ କର୍ମ ଇତିହାସରେ ଲିପିନିର୍ମାଣରେ ବ୍ରଜବାବୁଙ୍କର କଳାନୈପୁଣ୍ୟର ପରିଚୟ ଅବିସ୍ମରଣୀୟ ହୋଇ ରହିବ ।

ସାହିତ୍ୟ ସମ୍ପର୍କରେ ତାଙ୍କର ଆଦର୍ଶ ନିଶ୍ଚୟ ଅତି ଉଚ୍ଚକୋଟୀର ଥିଲା । ଆଜି ମଧ୍ୟ ଇଂରାଜୀ ସାହିତ୍ୟ ଓ କବିତା ଉପରେ ତାଙ୍କର କେତେକ ମତାମତ ମୁଁ ବିସ୍ମୃତ ହୋଇ ପାରି ନାହିଁ– ସେଲି, ବାଇରନ, କିଟ୍‌ସ୍ ଏବଂ ଓ୍ୱାଡ଼ସ୍‌ଓ୍ୱାର୍ଥ ପ୍ରଭୃତି ଇଂରେଜ କବିମାନଙ୍କ ସମ୍ପର୍କରେ ତାଙ୍କ ଆଲୋଚନା ଓ ଗବେଷଣା ଯେତିକି ଗଭୀର, ସେତିକି ପାଣ୍ଡିତ୍ୟପୂର୍ଣ୍ଣ ଥିଲା । ଟେନିସନ୍‌ଙ୍କ ଇଂରାଜୀକୁ ସେ ପରିମାର୍ଜିତ ନିପୁଣ ରଚନାଶୈଳୀ (Chiselled writing) ବୋଲି ବିଚାରୁ ଥିଲେ ।

କୌଣସି ସାହିତ୍ୟ-ଶିଳ୍ପ ବାରମ୍ବାର ସଂଶୋଧନ, ପରିବର୍ତ୍ତନ, ପରିମାର୍ଜନ ବା ସଙ୍କୋଚନ ବିନା ସେ ପୂର୍ଣ୍ଣତା ଲାଭ କରିପାରେ– ତାହା ସେ ବିଶ୍ୱାସ କରୁ ନ ଥିଲେ । ପୁଣି

ଏହି ପ୍ରକ୍ରିୟା ଭିତରେ ଗତିକରି ଯୁଗଯୁଗ ଧରି ଯେଉଁ ସାହିତ୍ୟ ତିଷ୍ଠିରହେ, ତାହାହିଁ ଚିରନ୍ତନ, ଯେକୌଣସି ସାହିତ୍ୟ ସୃଷ୍ଟିକୁ ଜଣେ ମାତ୍ର ସ୍ରଷ୍ଟା କିମ୍ବା ରଚୟିତାଙ୍କର କୃତି ବୋଲି ବିଚାର କରିବା ଏହି କାରଣରୁ ହିଁ ଭ୍ରମପୂର୍ଣ୍ଣ । ଚିରନ୍ତନ ସୃଷ୍ଟି ବୋଲି ଯାହାକୁ ଆମେ କହୁଁ, ତାହାର ପରିମାର୍ଜନ, ପରିବର୍ତ୍ତନ କିମ୍ବା ସଙ୍କୋଚନ, ପ୍ରସାରଣ କର୍ମରେ ଶତସହସ୍ର ପାଠକ ପାଠିକାର ଦାନକୁ ମଧ୍ୟ ଅସ୍ୱୀକାର କରିହେବ ନାହିଁ, ସେହି କାରଣରୁ କଳାସାହିତ୍ୟର ସୃଷ୍ଟିପ୍ରତି ଇଂରାଜୀରେ ଏକ ପ୍ରବଚନ ରହିଛି—

'Art is long and Time is fleeting' — କଳାର ପରିସର ଅସୀମ, ଅଥଚ ସମୟ ବହିଚାଲେ ଦ୍ରୁତବେଗରେ । କୌଣସି ଜୀବନକାଳ ଭିତରେ ପରିକଳ୍ପିତ କଳାସୃଷ୍ଟି ସମ୍ପୂର୍ଣ୍ଣ ହେବା ସମ୍ଭବପର ନୁହେ ।

ବ୍ରଜବାବୁଙ୍କ ସହିତ କଥା ରହସ୍ୟରେ ମୁଁ ପାସୋରି ପକାଏଁ ଜାଣି ଜାଣି ମୋର ଅସଲ ଉଦ୍ଦେଶ୍ୟଟି, ଅଥବା ତାଙ୍କ କଥା ମଝିରେ ସେମିତି କିଛି ଫାଙ୍କ୍ ଖୋଜି ପାଏ ନାହିଁ ନିଜ କଥା କହିବାକୁ । ତଥାପି କେବେ କେଉଁଠି ଟିକିଏ ଫାଙ୍କ ଉଣ୍ଡି ନିଜ କଥା ଉଠାଇବାକୁ ଗଲେ— ସରକାରୀ ଛାପାଖାନାରୁ ମୋର ଚାକିରି ଚାଲିଯିବା ଘଟଣା ଉପରେ ସେ ବିଶେଷ ଗୁରୁତ୍ୱ ଦିଅନ୍ତି ନାହିଁ ।

କଥାବାର୍ତ୍ତା ମଝିରେ କେବେ କେବେ ଆସି ପହଞ୍ଚିଯାନ୍ତି ସ୍ୱର୍ଗତ ଶ୍ରଦ୍ଧେୟ ଲାଲ୍‌ମୋହନ ପଟ୍ଟନାୟକ । ସେ ଥିଲେ ବ୍ରଜବାବୁଙ୍କର ସାନ ସଢୁ; ତେଣୁ ପରିହାସର ପାତ୍ର । ଆହୁରି ମୁଁ ଲକ୍ଷ୍ୟକରେ, ପରିହାସଟା ବ୍ରଜବାବୁଙ୍କର ଲାଲମୋହନବାବୁଙ୍କ ପ୍ରାଣଭିତରେ ଯେମିତି ସିଧାସଳଖ ଆଘାତ ହାଣେ ।

ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିବାରୁ ଲାଲ୍‌ମୋହନବାବୁଙ୍କ ପ୍ରତି ତାଙ୍କ ପରିହାସ ଅନେକ ସମୟରେ ମୋତେ ପ୍ରାୟ ସୁଖଲାଗେ ନାହିଁ । ତେଣୁ ବ୍ରଜବାବୁଙ୍କ ହାସ ପରିହାସ ସହିତ ଯୋଗଦେବାକୁ ସେଠାରେ ଦ୍ୱିତୀୟ ବ୍ୟକ୍ତି କେହି ନଥାନ୍ତି । ଲାଲ୍‌ମୋହନବାବୁଙ୍କ ପ୍ରକୃତି ଏବେ ବେଶି ସରଳ, ଗମ୍ଭୀର ଓ ବାଳସୁଲଭ ସହଜ ତାଙ୍କ ପ୍ରତି ମଧ୍ୟ କୌଣସି ପରିହାସ ଲାଗୁ ହୋଇପାରେ ନାହିଁ, ଏକାବେଳେ ତାହା ହୋଇପଡ଼େ ଅବା ବେଖାପ ।

ମନେହୁଏ ଯେପରି ମୋର, ଲାଲ୍‌ମୋହନବାବୁ ଥିଲେ ଅତି ଗଭୀର ଭାବର ଭାବପ୍ରବଣ ଓ ଖ୍ରୀଷ୍ଟପ୍ରେମୀ ମଣିଷ । ଯେ କୌଣସି କୃଷ୍ଣ ପ୍ରେମରେ ଅଭିଭୂତ ଓ ତନ୍ମୟ ପରମ ବୈଷ୍ଣବଙ୍କ ସହିତ ଲାଲ୍‌ମୋହନବାବୁଙ୍କ ଚରିତ୍ର ତୁଳନାଯୋଗ୍ୟ ବୋଲି ମଝିରେ ମଝିରେ ମୋର ଧାରଣା ଜନ୍ମେ । ସେ ଯେବେ ଆମେରିକାରେ ଜନ୍ମଲାଭ କରିଥାନ୍ତେ, ଆଜି ହୁଏତ ମୁଣ୍ଡିତ ମସ୍ତକହୋଇ ଗେରୁଆ ଲୁଗା ଓ ଖୋଳ କରତାଳରେ ଉନ୍ମତ୍ତହୋଇ ନାଚନ୍ତେ ।

ବ୍ରଜବାବୁଙ୍କର ସବୁ ପରିହାସ ସବୁ ଶ୍ଳେଷ ଓ କଟାକ୍ଷ ବାଣ ଲାଲ୍‌ମୋହନବାବୁଙ୍କର ଟିକିଏ ମାତ୍ର ସରଳ ମଧୁର ମୃଦୁହାସ୍ୟ ପାଖରେ ପାଣିଫୋଟକା ଭଳି ବାଜି ମିଳାଇଯାଏ ।

ପ୍ରାୟ ପାଞ୍ଚଟି ବର୍ଷ କଟକ ଯାଚକ ଲେନ୍‌ରେ ଲାଲ୍‌ମୋହନବାବୁଙ୍କ ଆଗଦୁଆରି ପଡ଼ୋଶୀ ରୂପେ ପାରିବାରିକ ଅତି ନିକଟ ସମ୍ପର୍କରେ ମୁଁ ଆସେ, ଖ୍ରୀଷ୍ଟଧର୍ମକୁ ସେ କୌଣସି ପ୍ରଚାରକ ପ୍ରଭାବରେ ଯେ ଗ୍ରହଣ କରି ନଥିଲେ, ସେଇ କଥା ଉଲ୍ଲେଖକରି ଖଣ୍ଡିଏ ଛୋଟ ଇଂରାଜୀ ବହି ତାଙ୍କର ପ୍ରକାଶିତ ହୁଏ । ସେ ବହିଟିରେ ସ୍ୱୟଂ ଯିଶୁଖ୍ରୀଷ୍ଟ କିପରି ଆସି ତାଙ୍କ ସମକ୍ଷରେ ଉଭା ହୁଅନ୍ତି, ତାହା ଅତି ସ୍ପଷ୍ଟଭାବରେ ବର୍ଣ୍ଣିତ ।

ପ୍ରତ୍ୟହ ପୁଣି ଯେ କୌଣସି ସମୟରେ ଯେ କୌଣସି କାର୍ଯ୍ୟଲାଗି ଏକ ମାତ୍ର ଉପାୟ ଥିଲା ତାଙ୍କର ପ୍ରାର୍ଥନା । ଏହି ପ୍ରାର୍ଥନା ଉପରେ ସେତେବେଳେ ଅବଶ୍ୟ ବିଶ୍ୱାସଟା ମୋର ଏତେ ବେଶି ନ ଥିଲା ବରଂ ସନ୍ଦେହ ଥିଲା ବେଶି । ଯେକୌଣସି ଦୁଃଖ ଦୁର୍ବିପାକ ବିପଦ କେବଳ ଯେ ପ୍ରାର୍ଥନା ଦ୍ୱାରା ଉପଶମ ହୋଇପାରେ, ସେ ଭଳି ଦୃଢ଼ତା କେବଳ ଲାଲ୍‌ମୋହନ ବାବୁଙ୍କ ଭଳି ଏକନିଷ୍ଠ ସାଧକର ରହିପାରେ ।

ମୋ ପରିବାରରେ ଜନ୍ମିଥିବା ବଡ଼ଝିଅଟିର ଯେତେବେଳେ ସ୍ୱାସ୍ଥ୍ୟରେ କିଛି ବ୍ୟତିକ୍ରମ ଘଟେ— ତାହା ପୂର୍ବରୁ ପରେ ପରେ ଦୁଇଟି ନବଜାତ ଶିଶୁଙ୍କର ପ୍ରାଣହାନି ଘଟିଥିବାରୁ ଆମେ ବ୍ୟସ୍ତ ବିବ୍ରତ ବିକଳ ଅଧୀର ହୋଇପଡୁଁ ଏକାଦିକ୍ରମେ ।

ସେତିକିବେଳେ ହିଁ ମିଳିଥାଏ, ଲାଲ୍‌ମୋହନବାବୁଙ୍କଠାରୁ କଲ୍ୟାଣମୟ ସାନ୍ତ୍ୱନାର ଅନାବିଳ ପ୍ରେମସିକ୍ତ ବାଣୀ— 'କୌଣସି ଚିନ୍ତା କରିବେ ନାହିଁ ପ୍ରାର୍ଥନାଦ୍ୱାରାହିଁ ସବୁ ଉପଶମ ହୋଇଯିବ ।'' ପ୍ରାର୍ଥନା ମଧ କରନ୍ତି ସେ— ଏହିପରି ଯେ କୌଣସି ଦୁଃସ୍ଥ ହୃଦୟରେ ସାନ୍ତ୍ୱନା ସଞ୍ଚାର ଲାଗି । ତାହା ମୋତେ ଅଦ୍ଭୁତ ମନେହୁଏ ।

ସରକାରୀ ଛାପାଖାନାର ଚାକିରି ପାଇବାରେ ଯେପରି ତାଙ୍କର ସହାୟତା ମୁଁ ଲାଭକରେଁ, ସେହିପରି ତାହା ଚାଲିଯିବା ପରେ ମୁଁ ହାହତୋଽସ୍ମି ହୋଇପଡେଁ । କାହିଁ ହେଲେ ଆଉ ଆଶା ଭରସାର ଟିକିଏ ହେଲେ କ୍ଷୀଣ ରଶ୍ମି ଦେଖାଯାଏ ନାହିଁ ମୋତେ । ବିଶ୍ୱାସ ତୁଟିଯାଏ ଲାଲ୍‌ମୋହନ୍‌ବାବୁଙ୍କ ପରାମର୍ଶ ଅନୁଯାୟୀ ସବୁ ପ୍ରକାର ପୂଜା ପ୍ରାର୍ଥନାରୁ ।

ସେତିକିବେଳେ ବ୍ରଜବାବୁଙ୍କଠାରୁ ଗୋଟିଏ ଉପଦେଶ ଶୁଣେଁ— ''କାଳିନ୍ଦୀ, କିଛି ହେଲେ ଚିନ୍ତା କର ନାହିଁ, ସବୁ ଠିକ୍ ହୋଇଯିବ । ଗୋଟାଏ କଥା ସବୁବେଳେ ମନେରଖ—

ସବୁର୍‌କା ଝାଡ୍‌ମେଁ ମେଓ୍ୱା ଫଲ୍‌ତା ।''

ବ୍ରଜବାବୁଙ୍କ ମୁହଁରୁ ଏହି ହିନ୍ଦୀ ପ୍ରବଚନ ଶୁଣି ତାହାର ମର୍ମ ବୁଝିବା ସେତେବେଳେ ସହଜ ହୁଏ ନାହିଁ ମୋହ ପକ୍ଷରେ । କାରଣ କିଛି ବୁଝିବା ଭଳି ମନର ଅବସ୍ଥା ମୋର ପ୍ରାୟ ଲୋପ ପାଇଯାଇଥାଏ ଏକାବେଳେ । ପରେ ଏଇ କଥାଟାକୁ ଅବଶ୍ୟ ବୁଝିପାରେଁ; କାରଣ ପହିଲେ ବାରମ୍ବାର ବ୍ରଜବାବୁଙ୍କ ମୁହଁରୁ ଶୁଣି ମଧ ତାହା ବୁଝିବାକୁ ମୁଁ ଅକ୍ଷମ ହୁଏଁ । ଦିନେ ବୋଧହୁଏ ମୋର ହିନ୍ଦୀ ଭାଷାରେ ଅଜ୍ଞତା ବ୍ରଜବାବୁ ନିଜେ ଅନୁଭବ କରି ପାରିଥିଲେ ।

ସେଥିଲାଗି ପରା ସେ ସରଳ ଭାଷାରେ ମୋତେ ତାହାର ଅର୍ଥ ବୁଝାଇ ଦିଅନ୍ତି— ଧୈର୍ଯ୍ୟଠାରୁ ବଳି ଶକ୍ତିଶାଳୀ ବସ୍ତୁ ଆଉ କିଛି ନାହିଁ, ସେଇ ଧୈର୍ଯ୍ୟର ଗଛଡ଼ାଳରେ ହିଁ ମେଓ୍ୱା ଅର୍ଥାତ୍ ମିଠା ଫଳ ଫଳିଥାଏ ।

ଲାଲ୍‌ମୋହନବାବୁଙ୍କ ସମୂହ ଆତ୍ମସମର୍ପଣ ଓ ପ୍ରାର୍ଥନା ଭିତରେ ମୋର ଯୁକ୍ତିତର୍କରେ ଜଡ଼ିତ ସନ୍ଦେହୀ ମନ ପୂର୍ଣ୍ଣ ରୂପେ ଯେତେବେଳେ ନିଜକୁ ଉତ୍ସର୍ଗ କରିପାରେ ନାହିଁ, ଠିକ୍ ସେତିକିବେଳେ ବୋଧହୁଏ ବ୍ରଜବାବୁଙ୍କର– ''ସବୁର୍‌କା ଝାଡ୍‌ମେ ମେଓ୍ୱା ଫଲ୍‌ତା'' କଥାଟା ମନଭିତରେ ଶକ୍ତି, ସାହସ, ଆଶା, ବିଶ୍ୱାସ ସଂଚାର କରେ । ତାଙ୍କର ସେଇ ହସହସ ମୁହଁ, ପାନଖାଇ ଯାହାର ଉଜ୍ଜ୍ୱଳ ଗୌରବର୍ଣ୍ଣ ଆଭା ରକ୍ତ ବର୍ଣ୍ଣରେ ରଞ୍ଜିତ ହୋଇ ଉଠିଥାଏ– ହଁ, ସେଇ ମୁହଁଟିତ ଆଜି ବି ଅବିକଳ ଭାସିଉଠେ ମୋର ସାମ୍‌ନାରେ ! ଆଉ ସେଇ ମୁହଁର କଥା ପଦକ— ସବୁର୍‌କା ଝାଡ୍‌ମେଁ ମେଓ୍ୱା ଫଲ୍‌ତା !



## ପୂର୍ବାଞ୍ଚଳ ଦେଶୀୟ ରାଜ୍ୟ ପ୍ରଚାରକ

ଥରେ କଟକ ଷ୍ଟୁଡେଣ୍ଟସ୍ ଷ୍ଟୋରର ବାର୍ଷିକ ଉତ୍ସବରେ 'ସମାଜ' ସମ୍ପାଦକ ଶ୍ରୀ ରାଧାନାଥ ରଥ ମୋତେ ଏକାନ୍ତରେ ପଚାରନ୍ତି ଯେ ପୂର୍ବାଞ୍ଚଳ ଦେଶୀୟ ରାଜାମାନଙ୍କର ଏକ ପ୍ରଚାର ସଂଗଠନ କରାଯାଇଛି— Eastern States Publicity Bureau ନାମରେ । ଏହି ସଂଘରେ ବଙ୍ଗଳାର ତ୍ରିପୁରା, କୁଚବିହାର ଆଦି ଦେଶୀୟ ରାଜ୍ୟ ଓ ଉତ୍ତର ପ୍ରଦେଶର ବସ୍ତର ପ୍ରଭୃତି ଦେଶୀୟରାଜ୍ୟ ଓଡ଼ିଶାର ଦେଶୀୟ ରାଜ୍ୟମାନଙ୍କ ସହିତ ଅନ୍ତର୍ଭୁକ୍ତ । ବିହାର ଓ ମଧ୍ୟପ୍ରଦେଶର ରାଜ୍ୟମାନଙ୍କ ପକ୍ଷରୁ 'ହିତବାଦ' ପତ୍ରିକାର ସମ୍ପାଦନାରେ କାର୍ଯ୍ୟକରୁଥିବା ଶ୍ରୀ ଭରଦ୍ୱାଜ, ଓଡ଼ିଶା ରାଜ୍ୟମାନଙ୍କ ପକ୍ଷରୁ ମୁଁ ଓ ବଙ୍ଗଳା ରାଜ୍ୟମାନଙ୍କ ପାଇଁ 'ଅମୃତବଜାର ପତ୍ରିକା'ର ସହ-ସମ୍ପାଦକ ପ୍ରଗତିବାଦୀ ଶ୍ରୀ ମୃଣାଳକାନ୍ତି ବୋଷ ନିଯୁକ୍ତ ହେଉଁ । କଲିକତାରେହିଁ ଅବସ୍ଥିତ ହୁଏ ଏହି ସଂସ୍ଥାର କେନ୍ଦ୍ରକାର୍ଯ୍ୟାଳୟ ସ୍ୱର୍ଗତ ମୃଣାଳବାବୁଙ୍କ ତତ୍ତ୍ୱାବଧାନରେ ।

ରାଧାନାଥବାବୁଙ୍କ ପ୍ରସ୍ତାବରେ ସମ୍ମତ ହୋଇ ମୁଁ ଏହି ଦାୟିତ୍ୱଟିକୁ ଗ୍ରହଣ କରେ । ଓଡ଼ିଶାର ଗାଁଗହଳରେ ସମବାୟ ବିଭାଗରେ କାର୍ଯ୍ୟକରି ଚାଷୀମୂଲିଆଙ୍କ ଜୀବନର ଅତି ନିକଟବର୍ତ୍ତୀ ହେବାର ଯେମିତି ସୁଯୋଗ ପାଇଥିଲି, ସେହିପରି ଉତ୍କଳୀୟ କୌଳିନ୍ୟରେ ଶ୍ରେଷ୍ଠ ପ୍ରତୀକ ରାଜନ୍ୟବର୍ଗ ଓ ସେହିମାନଙ୍କ ଶାସନାଧୀନରେ ରହିଥିବା ପ୍ରଜାକୁଳ ସମ୍ପର୍କରେ କିଞ୍ଚିତ୍ ଆସିବା ସୁଯୋଗ ମୋର ଜୁଟିଯାଏ । ଏହା ଫଳରେ ସମୁଦାୟ ଓଡ଼ିଶାର ବିଭିନ୍ନ ସ୍ତରରେ ଜୀବନ ଯାପନ କରୁଥିବା ଉପର-ତଳ ମଣିଷମାନଙ୍କର ନିକଟବର୍ତ୍ତୀ ମୁଁ ହୋଇପଡ଼େଁ ।

ଦେଶୀୟ ରାଜ୍ୟରେ ମୋର କାର୍ଯ୍ୟ କରିବା ଘଟଣା ଅବଶ୍ୟ ଅନେକ ବନ୍ଧୁଙ୍କୁ ବିସ୍ମିତ କରେ— ଢିଙ୍କିଶାଳରୁ ଢେଙ୍କାନାଳ ପର୍ଯ୍ୟନ୍ତ ଉଲୁଖା ଦିଆଗଲା ଭଳି । ପୁଣି ଦେଶୀୟ ରାଜ୍ୟମାନଙ୍କରେ ଯେଉଁ ରାଜ ମହାରାଜାଙ୍କର ମୁଁ ନିକଟବର୍ତ୍ତୀ ହୁଏ, ସେମାନେ ମଧ ମୋତେ ପୂରାପୂରି ବିଶ୍ୱାସ କରିପାରନ୍ତି ନାହିଁ । ତାଙ୍କ ଅସଲ ଗୋପନୀୟ ଆଲୋଚନାଗୁଡ଼ିକରେ ମୋର ପ୍ରବେଶ ନିଷେଧ ।

ଏହିପରି ଅବିଶ୍ୱାସୀ ମୁଁ ହୋଇ ପଡ଼ିଥିଲି କଟକରେ ସରକାରୀ ପ୍ରେସରେ ହେଡ୍‌ରିଡ଼ର କାମ କରୁଥିବାବେଳେ ଏଥିପୂର୍ବରୁ । ହେଡ୍‌ରିଡ଼ରମାନେ ସାଧାରଣତଃ ସରକାରଙ୍କର ଗୋପନୀୟ (confidential) କାଗଜପତ୍ରର ମୁଦ୍ରଣ ଇତ୍ୟାଦିର ଦାୟିତ୍ୱ ନେଇଥାନ୍ତି । ମୋତେ କିନ୍ତୁ ସେ ଦାୟିତ୍ୱରୁ ମୁକ୍ତ କରାଯାଇଥିଲା । ତାହାର କାରଣ ବୁଝିବାକୁ ମୋ ମନ ଆଦୌ ପ୍ରସ୍ତୁତ ହୁଏ ନାହିଁ ଯଦି ବା ସବୁବେଳେ ମୁଁ ଅସ୍ୱସ୍ତି ବୋଧକରେଁ ।

ଆଠମଲ୍ଲିକ, ଢେଙ୍କାନାଳ, ବାମଣ୍ଡା, ବଡ଼ମ୍ବା, ନରସିଂହପୁର, ହିନ୍ଦୋଳ, ବୌଦ, ଦଶପଲା, ପାଟଣା, ରେଢ଼ାଖୋଲ, କଳାହାଣ୍ଡି, ଷଢ଼େଇକଳା, ଖରସୂଆଁ, ତାଳଚେର, ନୟାଗଡ, ଆଠଗଡ ପ୍ରଭୃତି ପ୍ରତ୍ୟେକ ରାଜ୍ୟରେ ଅକୁଣ୍ଠ ଆତିଥେୟତା ଲାଭକରେଁ, ସଦାଳାପ କରେଁ; ରାଜା ମହାରାଜାମାନଙ୍କ ସହିତ– ଉତ୍କଳର ପ୍ରାଚୀନ ଐତିହ୍ୟର ପ୍ରତୀକ ରୂପେ ପ୍ରତ୍ୟେକ ରାଜା ମହାରାଜାଙ୍କର ଭଦ୍ରତା ଓ ମଧୁର ବ୍ୟବହାରରେ ମୁଗ୍ଧ ହୁଏଁ; ଅଥଚ କି କାରଣରୁ ଯେ ସେମାନଙ୍କର ସମ୍ପୂର୍ଣ୍ଣ ବିଶ୍ୱାସଭାଜନ ହୋଇପାରେ ନାହିଁ ଓ ତାହାଙ୍କ ଗୋପନୀୟ ଆଲୋଚନାରୁ ମୋତେ ଦୂରେଇ ରହିବାକୁ ହୁଏ, ସେଥିଲାଗି ମନଭିତରେ ଅସ୍ୱସ୍ତି ବୋଧକରେଁ ।

ଆହୁରି ଅସ୍ୱସ୍ତି ବୋଧକରେ ବନ୍ଧୁମାନଙ୍କର ବିସ୍ମୟ ହେତୁ । ମୋହ ପକ୍ଷରେ ଗଡ଼ଜାତ ଶାସନ ସହିତ ଜଡ଼ିତ ହୋଇ ଓ ହାତ ମିଳାଇବା ଘଟଣାଟା ବନ୍ଧୁମାନଙ୍କୁ ବିସ୍ମିତ କରିଥାଏ ନିଶ୍ଚୟ । ପ୍ରଥମେ ଯେତେବେଳେ ଆଠମଲ୍ଲିକ ରାଜ୍ୟକୁ ଯାଏଁ, ଆଉ ସେଇଠୁଁ ବୌଦ୍ଧ ରାଜ୍ୟକୁ ଯାଇ ଫେରିଆସେଁ, କଟକ, ସେତେବେଳେ ଅନୁଜ ଭଗବତୀ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମାମଲାରେ ବନ୍ଦୀହୋଇ ରହିଥାନ୍ତି ଅନୁଗୁଳ ଜେଲ୍‌ରେ ।

ଅନୁଗୁଳର ଏସ୍.ଡ଼ି.ଓ. ଶ୍ରୀ ଦାସଙ୍କଠାରୁ ଅନୁମତି ନେଇ ଜେଲଭିତରେ ଭାଗୁ ସହିତ ମୋର ସାକ୍ଷାତ୍‌କାର । ବନ୍ଦୀ ଅବସ୍ଥାରେ ଭାଗୁ ଖୁବ୍ ଫୁର୍ତ୍ତିରେ ଥାଏ । ହସି ହସି ଆସି ନମସ୍କାର କରେ ମୋତେ । ସାଥୀରେ ଯାଇଥିବା ମୋର ସାନଝିଅ 'ଲୁସି'କୁ ଧରି ଝୁଲାଇ ହସାଇ ସେ ଗେଲ କରିଲାଗିଲା । ଆଜି ବି ସେଇ ଚିତ୍ର ଜିଇଁଉଠେ ମୋର ସାମ୍ନାରେ । ଭାଗୁଠାରୁ କିନ୍ତୁ କେବେହେଲେ ତ ଶୁଣିନି ମୋର ଗଡ଼ଜାତ ପ୍ରଚାର କାର୍ଯ୍ୟ ଗ୍ରହଣ ବିରୋଧରେ ସମାଲୋଚନା !

ପୂର୍ବାଞ୍ଚଳ ଦେଶୀୟ ରାଜ୍ୟ ପ୍ରଚାର ସଂସ୍ଥାର (Eastern States Publicity Bureau) ସଭାପତି ଥାନ୍ତି ବୌଦ୍ଧର ରାଜା । ରାୟପୁରଠାରେ ସେଥର ପଲିଟିକାଲ୍ ଏଜେଣ୍ଟ୍

ସାର୍ ମିର୍ଜା ଇସ୍କନ୍ଦରଙ୍କ ନେତୃତ୍ୱରେ ଏକ ସମ୍ମିଳନୀ ବସିଥାଏ । ଏହି ସାର୍ ମିର୍ଜା ଇସ୍କନ୍ଦର ଦେଶବିଭାଗ ପରେ କିଛି କାଳ ଲାଗି ପାକିସ୍ଥାନ ଶାସନକ୍ଷମତାର ନିୟାମକ ହୁଅନ୍ତି ।

ସେଥର ରାୟପୁରଠାରେ ରାଜନ୍ୟବର୍ଗଙ୍କ ସମ୍ମିଳନୀ ଖୁବ୍ ତନାଘନା ସହ ଚାଲିଥାଏ । ସବୁରାଜାଙ୍କର ଏକ ଘ'ଣ୍ଟା ଭୋଜି ଖୁବ୍ ଆନନ୍ଦ ଉଲ୍ଲାସରେ ମୁଖରିତ ହୋଇଉଠିଥାଏ । ସେଇ ଭୋଜିରେ ଢେଙ୍କାନାଳର ରାଜା ଅନ୍ୟାନ୍ୟ ରାଜାମହାରାଜାମାନଙ୍କୁ ମୋର ପରିଚୟ ଦେଇ କହିଲେ, ମୁଁ ଜଣେ କମ୍ୟୁନିଷ୍ଟ । ତହୁଁ ଏକ ହସର ଫୁଆରା ଉଠିଲା ।

ସମ୍ମିଳନୀ ପରେ ବୌଦ୍ଧର ରାଜା ଏକାନ୍ତରେ ଡାକି ମୋତେ କହନ୍ତି ଯେ, ଢେଙ୍କାନାଳଙ୍କର କାଣ୍ଡଜ୍ଞାନ ନାହିଁ । ଢେଙ୍କାନାଳ ମୋତେ କମ୍ୟୁନିଷ୍ଟ ବୋଲି ଅନ୍ୟ ରାଜାମାନଙ୍କୁ ପରିଚୟ ଦେବାଟାରେ 'ବୌଦ୍ଧ' ବଡ଼ ବିବ୍ରତ ଓ ଦୁଃଖିତ ବୋଲି ମୋତେ ଜଣାନ୍ତି । ସେତେବେଳେ ବୌଦ୍ଧରାଜାଙ୍କ ସହାନୁଭୂତି ମୋହ ପକ୍ଷରେ ଅବୋଧ ହୋଇପଡ଼େ । ବରଂ ଢେଙ୍କାନାଳ ମୋର ଏଇଭଳି ପରିଚୟ ଦେବାରେ ହିଁ ମୁଁ ସୁଖୀ ହୁଏଁ ମନେ ମନେ ତାଙ୍କୁ ସାବାସ୍ ଦେଇ ।

କାରଣ ଢେଙ୍କାନାଳ ରାଜାଙ୍କ ସହିତ ପ୍ରଥମ ସାକ୍ଷାତ୍‌କାର ତାଙ୍କ ରାଜବାଟୀରେ ଯେଉଁ ଦିନ ମୋର ଘଟେ, ସେତେବେଳେ ତାଙ୍କୁ ତେଲ ମାଲିସ୍ କରୁଥାନ୍ତି ପରିଚାରକ । ପାଖରେ ଥାନ୍ତି ବୋଧହୁଏ ପୋଲିସ ବିଭାଗର ଉଚ୍ଚ କର୍ମଚାରୀ ଶ୍ରୀ ଗଙ୍ଗାଧର ମିଶ୍ର । ସେହିଠାକୁ ମୋର ମଧ୍ୟାହ୍ନ ଭୋଜନ ବ୍ୟବସ୍ଥା କରାଯାଏ; ସେଇ ଥର କି ଆଉ ଥରେ ଦେଖେଁ— ରାଜାସାହେବଙ୍କ ବାହାର ପ୍ରାଙ୍ଗଣରେ ଜଣେ ଗୌରକାନ୍ତି ଯୁବକ ଠିଆହୋଇ ମୋତେ ପ୍ରଣାମ କରନ୍ତି ହସି ହସି— ଶ୍ରୀ ହରମୋହନ ପଟ୍ଟନାୟକ– ପରେ 'ଭୂଦାନ' କର୍ମୀରୂପେ ସୁପରିଚିତ ।

ରାଜାସାହେବଙ୍କ ସମକ୍ଷରେ ମୋହପାଇଁ ମଧ୍ୟାହ୍ନ ଭୋଜନ ବ୍ୟବସ୍ଥା ସେ ପ୍ରସ୍ତାବ କରିବାକୁ ତାଙ୍କୁ ଜଣାଏଁ— ''ଡାକବଙ୍ଗଳାରେ ତ ବ୍ୟବସ୍ଥା କରାଯାଇଛି'' ! ସହାସ୍ୟ ଉତ୍ତର ମିଳେ— ''ସେଥିଲାଗି ଆପଣଙ୍କର ଭାବିବା ପାଇଁ କ'ଣ ଅଛି ? ତା'ପରେ ରାଜାସାହେବ କହନ୍ତି, ''ଓଡ଼ିଶା ରାଜନୀତିରେ ମୁଁ ତିନି ଜଣ ନେତାଙ୍କୁ ଉଚ୍ଚ ସ୍ଥାନ ଦିଏଁ— ଜଣେ ହେଉଛନ୍ତି ଶ୍ରୀ ନବକୃଷ୍ଣ ଚୌଧୁରୀ, ତା'ପରେ ଶ୍ରୀ ହରେକୃଷ୍ଣ ମହତାବ୍ ଓ ଭଗବତୀଚରଣ ପାଣିଗ୍ରାହୀ ।''

ଜଣେ ବନ୍ଧୁଙ୍କଠାରୁ ଶୁଣିଥିଲି, ''କଥାରେ ଅଛି– ନୃପତି ଭାସିଲେ ଭାସିବ''– ଅର୍ଥାତ୍ ଆଗରୁ ନିଜେ କିଛି କହିବନି, ମନ୍ତବ୍ୟ ଦେବ ନି – ରାଜା କିଛି ପଚାରିଲେ ତା'ପରେ ଯାହା ଜବାବ୍ ଦେବ । ମୋର ଅବଶ୍ୟ ଢେଙ୍କାନାଳ ରାଜାଙ୍କ ସହିତ ଏଇ ପ୍ରଥମ ସାକ୍ଷାତ୍‌ରେ କହିବାକୁ କିଛି ନ ଥିଲା । ମୁଁ ମୋର ଭୋଜନରେ ବ୍ୟାପୃତ ରହି ଶୁଣୁଥାଏଁ ।

ତା'ପରେ ରାଜାସାହେବ ପଚାରନ୍ତି ମୋତେ ତାଙ୍କ ନିଜ ହାତର ପାଞ୍ଚ ଆଙ୍ଗୁଠିକୁ ଦେଖାଇ, ''ଆଚ୍ଛା କହନ୍ତୁ ତ ଦେଖି- ଭଗବାନ୍ ମଣିଷ ହାତରେ ଏ ଯେଉଁ ପାଞ୍ଚଟା ଆଙ୍ଗୁଠି ଦେଇଛନ୍ତି, ତାହା ଭିତରୁ କିଏ କାହା ସଙ୍ଗରେ ସମାନ ! ସମାନ ହୋଇଥିଲେ ଆପଣ ଏଠାରେ ଯେତେ ସହଜରେ ଭୋଜନ କରିପାରୁଛନ୍ତି, ତାହା କ'ଣ ସମ୍ଭବ ହୁଅନ୍ତା ?''

ସତକୁ ସତ ମୁଁ ରାଜାଙ୍କ ପାଖରେ ବସି ପୁଣି ତାଙ୍କ ବଡ଼ ପୋଲିସ୍ ଅଫିସର ଗଙ୍ଗାଧର ବାବୁ ସାକ୍ଷୀ ରହି ରାଜାଙ୍କ ଅନ୍ନ ହିଁ ନିଜ ପାଞ୍ଚ ଆଙ୍ଗୁଠି ସାହାଯ୍ୟରେ ଭୋଜନ କରୁଥିବା ବେଳେ— ଆଉ ମୋର ପାଞ୍ଚଟାଯାକ ଆଙ୍ଗୁଠି କିଏ କାହାରି ସହିତ ସମାନ ନ ଥିବା ସ୍ଥଳେ କୌଣସି ଜବାବ ପଡେନି ନାହିଁ ମୋତେ । ରାଜଅତିଥି ହୋଇ ପୁଣି ଏ ପ୍ରଶ୍ନର ପ୍ରକୃତ ଉତ୍ତର ଯେ ସାମ୍ୟବାଦ ବିରୋଧରେ ଯିବ— ଯେଉଁଥିପାଇଁ ସେ ଇଙ୍ଗିତ କରିଥିଲେ– ତାହା ତାଙ୍କ ଚତୁର ପ୍ରଶ୍ନରୁ ବୁଝିପାରି ମୁଁ ହସିଉଠେ । ମୋ ସହିତ ହସରେ ଯୋଗ ଦିଅନ୍ତି ସ୍ୱର୍ଗତ ଶ୍ରୀ ଶଙ୍କର ପ୍ରତାପ ଦେଓ ପୁଣି ଗଙ୍ଗାଧରବାବୁ । ଭାଗୁ (ଭଗବତୀ) କିଭଳି ତା'ର ପାଞ୍ଚ ଆଙ୍ଗୁଠିକୁ ମୁଠାକରି ଢେଙ୍କାନାଳ ରାଜା ଓ ତାଙ୍କ ଶାସନ ବିରୋଧରେ ଭାଷଣ ଦିଏ, ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟ୍ ଗଙ୍ଗାଧରବାବୁ ସେଠାରେ ତାହା ବର୍ଣ୍ଣନା କରନ୍ତି ମଧ ନିଜ ହାତମୁଠା ଦେଖାଇ ।

ଢେଙ୍କାନାଳ ସମେତ ଓଡ଼ିଶା ଦେଶୀୟ ରାଜ୍ୟର ଅଧିକାଂଶ ରାଜାଙ୍କ ସମ୍ଭ୍ରାନ୍ତ ବ୍ୟବହାର ଓ ସଦାଶୟ ଆତିଥେୟତା ବ୍ୟତୀତ ପ୍ରଜାକୁଳର ପରିସ୍ଥିତି କିମ୍ବା ଅବସ୍ଥା ଦେଖିବା ସୁଯୋଗ ମୋତେ କ୍ୱଚିତ୍ ମିଳିଛି । ଢେଙ୍କାନାଳ ରାଜ୍ୟରେ ଖଡ଼ଗପ୍ରସାଦ ପ୍ରଭୃତି ଯେଉଁ କେତେ ଗ୍ରାମ ବୁଲି ଦେଖିଛି ଓ ଗାଁଗୁଡ଼ିକର ସ୍କୁଲ ଘର ମଧ ମୋ ଆଖିରେ ପଡ଼ିଛି, ପୁରୀ କିମ୍ବା କଟକ ଜିଲ୍ଲାର କୌଣସି ଗାଁଠାରୁ ସେଗୁଡ଼ିକ ଅନୁନ୍ନତ ବୋଲି ମନେହୁଏ ନାହିଁ ।

ସେହିପରି ରାଜା ସୁବଳଦେବଙ୍କର ବାମଣ୍ଡା ରାଜ୍ୟରେ ସେତେବେଳେ ରାଜା ଶ୍ରୀ ଭାନୁଗଙ୍ଗ ତ୍ରିଭୁବନ ଦେବ, ପାଟଣା ରାଜ୍ୟର ଶ୍ରୀ ରାଜେନ୍ଦ୍ରନାରାୟଣ ସିଂହଦେଓ, କଳାହାଣ୍ଡିର ଶ୍ରୀ ପ୍ରତାପକିଶୋର ଦେଓ, ପୁଣି ଦଶପଲା, ରଣପୁର, ନୟାଗଡ଼, ବଡ଼ମ୍ବା, ନରସିଂହପୁର,ଖଣ୍ଡପଡ଼ା, ଆଠମଲ୍ଲିକ, ବୌଦ୍ଧ, ତାଳଚେର, ହିନ୍ଦୋଳ ପ୍ରଭୃତି ରାଜନ୍ୟବର୍ଗଙ୍କ କୌଳିନ୍ୟ-ପୂର୍ଣ୍ଣ ବ୍ୟବହାର ମୋ ଜୀବନ ସ୍ମୃତିରେ ଉତ୍କଳୀୟ ମର୍ଯ୍ୟାଦାର ଐତିହ୍ୟ ସମ୍ପର୍କରେ ଏକ ଉଜ୍ଜ୍ୱଳ ଚିତ୍ର ଆଙ୍କିଦେଇଛି । ସେଥି ସହିତ ସେଇ କୌଳିନ୍ୟର ନିର୍ମାଣ କର୍ମରେ ଯୁଗ-ଯୁଗବ୍ୟାପୀ ରତ ରହିଥିବା ଅସ୍ଥିଚର୍ମସାର କୁଡ଼ କୁଡ଼ କଙ୍କାଳ ଅଦୃଶ୍ୟ ହୋଇ ରହିଯାନ୍ତି ଜଙ୍ଗଲ ପାହାଡ଼ ଅନ୍ତରାଳରେ । ଢେଙ୍କାନାଳରୁ ଫେରି ବୋଧହୁଏ କଟକ ରେଲଷ୍ଟେସନରେ ଭେଟହୁଏ । ମୋର ବଙ୍ଗଳାର ରାଜନୀତିକ ନେତା ଶ୍ରୀ ବିଶ୍ୱନାଥ ମୁଖାର୍ଜୀଙ୍କ ସହିତ । ବିଶ୍ୱନାଥ ବାବୁ ଥିଲେ ଭାଗୁର ଘନିଷ୍ଠ ବନ୍ଧୁ । ସେତେବେଳକୁ ଭାଗୁର ମୃତ୍ୟୁ ଘଟି ଯାଇଥାଏ ।

ମୋର ରାଜୁଡ଼ାଜାମକୁ ନିନ୍ଦା କରି ଶ୍ରୀ ବିଶ୍ୱନାଥ ମୁଖାର୍ଜୀ ସେ ଦିନ କହିଥିଲେ– ଛି, ଛି, କ'ଣ କଲେ ଆପଣ ? ଶେଷରେ ରାଜାମାନଙ୍କପାଇଁ ପ୍ରଚାର ! ତାଙ୍କ ମନ୍ତବ୍ୟ ମୋହ ପକ୍ଷରେ ଆହୁରି ଅବୋଧ ହୋଇପଡ଼େ ।

ଆଜି ଢେଙ୍କାନାଳ ରାଜା ଶଙ୍କରପ୍ରତାପ ଓ ବୌଦର ରାଜା ଜୀବିତ ଥିଲେ ନିଜେ ବୁଝିପାରି ଥାନ୍ତେ ଯେ ଢେଙ୍କାନାଳହିଁ ରାଜୁଡ଼ା ଶାସନର ଅନ୍ତିମ ଭବିଷ୍ୟତ ଦ୍ରଷ୍ଟା ଥିଲେ । ସମାଜବାଦକୁ ତ୍ୱରାନ୍ୱିତ କରିବା ଦିଗରେ ତାଙ୍କର ପ୍ରତିରୋଧୀ ପ୍ରତିକ୍ରିୟା ଯେ ଅଧିକ ଫଳପ୍ରସୂ

ହୋଇଛି, ଏ କଥା ସମାଜବାଦର ବୈଜ୍ଞାନିକ ତତ୍ତ୍ୱବିତ୍‌ମାନେ ସ୍ୱୀକାର କରିବେ ନାହିଁ କି ? ସେଥି ସଙ୍ଗେ ଏଇ ଯୁକ୍ତିକୁ ଅବଶ୍ୟ ପ୍ରତିକ୍ରିୟାଶୀଳ ବୋଲି ବିଚାରିବେ ।

ଆଉ ଗୋଟିଏ କଥା– ଓଡ଼ିଶାର ସବୁ ରାଜ୍ୟ ମୁଁ ବୁଲିଛି ସବୁ ରାଜାଙ୍କର ଆତିଥ୍ୟ ଗ୍ରହଣ କରିଛି । ରାଜଅତିଥି ହେବାର ପ୍ରାଚୁର୍ଯ୍ୟ କୌଣସି ରାଜ୍ୟରେ ଉଣାହେବାର ତ ଦେଖି ନାହିଁ । ମାତ୍ର ଏକମାତ୍ର ଢେଙ୍କାନାଳ ରାଜା ଅନାହୂତ ଭାବରେ ଆସି ମୋର କଟକ ଘରେ ଆତିଥ୍ୟ ଗ୍ରହଣ କରି ଯାଇଛନ୍ତି ।

ଭାରତ ସ୍ୱାଧୀନତା ପରେ ଢେଙ୍କାନାଳର ରାଜା ସ୍ୱର୍ଗତ ଶଙ୍କରପ୍ରତାପ ଦେଓ ମୋତେ ଥରେ ଅନୁରୋଧ କରନ୍ତି, ସେତେବେଳେ ଓଡ଼ିଶାର କଂଗ୍ରେସ ପ୍ରଧାନମନ୍ତ୍ରୀ ଶ୍ରୀ (ସେ 'ଡକ୍ଟର' ହୋଇ ନ ଥାନ୍ତି) ହରେକୃଷ୍ଣ ମହତାବଙ୍କ ସହିତ ତାଙ୍କୁ ପରିଚୟ କରାଇ ଦେବାପାଇଁ । ପ୍ରଧାନମନ୍ତ୍ରୀ ମହତାବ ରହୁଥାନ୍ତି ସେତେବେଳେ କଟକ ତୁଳସୀପୁର ଅବସ୍ଥିତ (ବୋଧହୁଏ 'ନିରାଲା' ନାମକ) ଏକ ଭଡ଼ାଘରେ । ଢେଙ୍କାନାଳ ସହିତ ତାଙ୍କ ନିକଟକୁ ମୁଁ ଯାଏଁ । ଖବର ଦେବା ମାତ୍ରେ ଘରଭିତରୁ ବାହାରି ଆସି ସେ ସାକ୍ଷାତ୍ ଦିଅନ୍ତି ।

କଥାବାର୍ତ୍ତା ଭିତରେ ଶ୍ରୀ ଶଙ୍କରପ୍ରତାପ ଟିକିଏ ପାଣି ମାଗିଲେ । ମହତାବବାବୁ ନିଜେ ଉଠିଯାଇ ପାଣି ଗିଲାସେ ଧରି ବଢ଼ାଇ ଦିଅନ୍ତି ତାଙ୍କ ହାତକୁ । ସେଦିନ ମୋତେ ମହତାବ ବାବୁ ସୂଚାଇ ଥିଲେପରା ପ୍ରଧାନମନ୍ତ୍ରୀ ହେବାପରେ ତାଙ୍କ କାର୍ଯ୍ୟନିର୍ଘଣ୍ଟରୁ କିଅତ୍ । ଓଡ଼ିଶା ପ୍ରଧାନମନ୍ତ୍ରୀର ସମସ୍ତ କାର୍ଯ୍ୟ ତୁଲାଇ ମଧ ସେ ଦୁଇଟି ଘଣ୍ଟା ଦୈନିକ ସାହିତ୍ୟ ଚର୍ଚ୍ଚାରେ ବିନିଯୋଗ କରିବା କଥା ମୁଁ ଶୁଣେଁ ତାଙ୍କରି ମୁହଁରୁ ସେଇଦିନ । ଏହା ପରେ ଯେତେ ଥର ମହତାବବାବୁଙ୍କ ସହିତ ମୋର ସାକ୍ଷାତ୍‌କାର ଘଟେ, ସାହିତ୍ୟ ସଂଗଠନ ବ୍ୟତୀତ ରାଜନୀତି କିମ୍ବା ଆଉ କୌଣସି ବିଷୟରେ ଆଲୋଚନା କରିବା ତାଙ୍କଠାରୁ ମୋର ଶୁଣିଥିବା ସ୍ମରଣ ହୁଏ ନାହିଁ ।

ରାଜନୀତି କିମ୍ବା ସେହି ସମ୍ପର୍କୀୟ କୌଣସି ବିଷୟ ଉତ୍‌ଥାପିତ ହେଲେ ସେଇଠୁଁ ତାଙ୍କଠାରୁ ବିଦାୟ ଘେନିବାକୁ ହୁଏ । ସେ ଦିନ ଢେଙ୍କାନାଳ ସହିତ ଦୁଃଖ ସୁଖ ହେଉଥିଲାବେଳେ ଘର ସାମ୍ନାରେ ଆସି ପହଞ୍ଚେ ଗୋଟିଏ ଜିପ୍‌ଗାଡ଼ି । ଜିପ୍ ଚଲେଇ ପହଞ୍ଚିଥାନ୍ତି ଶ୍ରୀ ବିଜୟାନନ୍ଦ ପଟ୍ଟନାୟକ । ବିଜୁବାବୁଙ୍କୁ ଜିପ୍‌ରୁ ଓହ୍ଲାଇବା ଦେଖି ମହତାବବାବୁ ଆମକୁ ବିଦାୟ ଦିଅନ୍ତି । ଢେଙ୍କାନାଳ ରାଜାଙ୍କ ସହିତ ସାକ୍ଷାତ୍‌କାରର ଶେଷ ପର୍ଯ୍ୟାୟରେ ସେ ମୋତେ ବାରଂବାର 'ସାର୍' ସମ୍ବୋଧନ କରୁଥିଲେ । ସମ୍ବୋଧନଟା ତାଙ୍କ ମୁହଁରୁ ମୋତେ କିନ୍ତୁ ଅଡୁଆ ଆସ୍ୱାଭାବିକ ଶୁଣାଯାଉଥାଏ ।

ଓଡ଼ିଶା ଦେଶୀୟ ରାଜ୍ୟମାନଙ୍କରେ ବୁଲୁଥିଲାବେଳେ ସେଇ ଢେଙ୍କାନାଳ ରାଜ୍ୟକୁ ମୋର ସହଯାତ୍ରୀ ହୁଅନ୍ତି ପୋଲିସ୍ ଗୋଇନ୍ଦା ବିଭାଗୀୟ ଉଚ୍ଚକର୍ମଚାରୀ ଓ ସ୍କୁଲଛାତ୍ର ଥିବା ସମୟରେ ପୁରୀର ପୁରୁଣାବନ୍ଧୁ ସ୍ୱର୍ଗୀୟ ଦାମୋଦର ଦାସ । ଦାସବାବୁଙ୍କ ସହିତ ଏକାଧିକ

ରାଜ୍ୟର ଅତିଥିଭବନରେ ସେତେବେଳେ ମୋତେ ରହିବାକୁ ହୁଏ; ଆଉ ତାଙ୍କଠାରୁ ଶୁଣିପାରେଁ, ସେତେବେଳେ ଦେଶୀୟ ରାଜାମାନଙ୍କ ଶାସନର କେତେକ କୌତୁକ କାହାଣୀ ।

ଗୋଟିଏ ରାଜ୍ୟର ରାଜା କୁଆଡ଼େ ତାଙ୍କ ପ୍ରଧାନ ବିଚାରପତିଙ୍କୁ ନିର୍ଦ୍ଦେଶ ଦିଅନ୍ତି ଯେ, ରଥଯାତ୍ରାରେ ବିଚାରପତି ରଥଉପରେ 'ଡାହୁକ'ର କାର୍ଯ୍ୟ କରିବେ । ସେ ଆଦେଶକୁ ବିଚାରପତି ମଧ ସସମ୍ମାନ ପାଳନ କରନ୍ତି । ଅନ୍ୟ ଏକ ରାଜ୍ୟର ବିଚାରପତିଙ୍କୁ ରାତ୍ରିଭୋଜନ ପରେ କୁଆଡ଼େ ଅନୁରୋଧ କରାଯାଏ, ମର୍କଟ ଭଳି ଟେବୁଲ୍ ଉପରେ ନୃତ୍ୟ କରିବାକୁ । ଏଭଳି କୌତୁକ ସୃଷ୍ଟି କରିବାଦ୍ୱାରା ଯେପରି ଆମୋଦ ପ୍ରମୋଦର ସଞ୍ଚାର ହୁଏ, ସେହିପରି ତାହା କେବଳ ଶାସନକ୍ଷେତ୍ରରେ ଅଧିଷ୍ଠିତ ସର୍ବୋଚ୍ଚ କର୍ତ୍ତାଙ୍କର ମଧ୍ୟଯୁଗୀୟ କ୍ରୀଡ଼ାବିଳାସର ପରିଚୟ ଦିଏ ନାହିଁ । ଆଧୁନିକ ଯୁଗରେ ମଧ ଏହିଭଳି ଆମୋଦପ୍ରମୋଦର ଉଦାହରଣ ବିରଳ ନୁହେଁ ।

ସମ୍ବାଦଟି ସତ କି ମିଛ— ଆଧୁନିକ ରୁଷ୍‌ର ସର୍ବୋଚ୍ଚକର୍ତ୍ତା ଷ୍ଟାଲିନ୍ କୁଆଡ଼େ ଭୋଜନ ମିଳନପରେ ତାହାଙ୍କ ପରବର୍ତ୍ତୀ ସର୍ବୋଚ୍ଚ ଶାସନକର୍ତ୍ତା କ୍ରୁଷ୍ଚେଭଙ୍କୁ ନୃତ୍ୟ କରିବାପାଇଁ ନିର୍ଦ୍ଦେଶ ଦିଅନ୍ତି ଓ ତାଙ୍କ ନିର୍ଦ୍ଦେଶ କ୍ରୁଷ୍ଚେର ପାଳନ କରନ୍ତି ସସମ୍ମାନରେ । ଭାରତୀୟ ଦେଶୀୟରାଜ୍ୟମାନଙ୍କରେ କ୍ରୀଡ଼ାକୌତୁକ ପରିହାସ ସୃଷ୍ଟିର ବହୁ ବିବରଣ ଲିପିବଦ୍ଧ ହୋଇଛି । ମୁଁ ଓଡ଼ିଶା ଦେଶୀୟ ରାଜ୍ୟରେ ମୋ ଅଭିଜ୍ଞତା ଭିତରେ ଆଉ ଗୋଟିଏ କୌତୁକ ସୃଷ୍ଟିର ବିବରଣ ମଧ ଶୁଣିଥିଲି—

ରାଜଦ୍ୱାରରେ ଜଣେ ସନ୍ନ୍ୟାସୀ ଧୁନି ଜାଳି ଧାନ କରୁଥିବା ଦେଖି ରାଜାଙ୍କର ଧାରଣା ଜନ୍ମେ ଯେ, ଏହା ରାଜ୍ୟର ବେକାର ସମସ୍ୟାର ଏକ ଜ୍ୱଳନ୍ତ ସଂକେତ । ତହୁଁ ସନ୍ନ୍ୟାସୀଙ୍କ ପ୍ରତି ଆଦେଶ କରାଯାଏ, ପରୋକ୍ଷ ସୂତ୍ରରେ । ତାହା ଫଳରେ ରାଜଦ୍ୱାରରେ ଆଉ ସେହି ଶ୍ମଶ୍ରୁଳ ଜଟାଜୂଟ କୌପୀନବନ୍ତ ସନ୍ନ୍ୟାସୀଙ୍କର ସାକ୍ଷାତ୍ ମିଳେ ନାହିଁ । ରାଜପ୍ରାସାଦ ସିଂହଦ୍ୱାରରେ ଦେଖାଯାଏ ତାଙ୍କୁ ପୋଲିସ ଜଗୁଆଳି ବେଶରେ– ସ୍କନ୍ଧରେ ବନ୍ଧୁକ ଓ ମସ୍ତକରେ ପୋଲିସ୍ ପଗଡ଼ି ଭିଡ଼ି ସେ ଲେଫ୍‌ଟ ରାଇଟ୍ କରି ସିଂହଦ୍ୱାର ଏପାଖ ସେପାଖ ହେଉଛନ୍ତି !



# ଯାରେ ମନ ଯାରେ– ରୁଷିଆ ଦେଶକୁ ଚାହାଁରେ

ସୂତାହାଟ ଘରେ ପଡ଼ୋଶୀ ମୋର ହେଲେ କଟକର ଖ୍ରୀଷ୍ଟିୟାନ୍ ଓ ମୁସଲମାନଗୋଷ୍ଠୀ । ପରିବେଶ ଶାନ୍ତ ପୁଣି ଭଦ୍ର । ପଡ଼ୋଶୀମାନଙ୍କ ଭିତରେ ଯେଉଁ ଘନିଷ୍ଠତା ବଢ଼ିଉଠେ, ତାହା ସହୃଦୟତାପୂର୍ଣ୍ଣ । ଭାରତୀ ତପୋବନରୁ ହିଁ ପୂର୍ବାଞ୍ଚଳ ଦେଶୀୟ ରାଜ୍ୟ ପରିଦର୍ଶନ ଉଦ୍ଦେଶ୍ୟରେ ପ୍ରଥମେ ଅନୁକୂଳ ମୁଁ କରେଁ ଆଠମଲ୍ଲିକ । ସାଙ୍ଗରେ ଯାଇଥାଏ ମୋର ସାନଝିଅ ଲୁସି । ବୟସ ତାକୁ ସେତେବେଳେ ଛଅ ସାତ ବର୍ଷ ।

ଆଠମଲ୍ଲିକର ସାହିତ୍ୟପ୍ରେମୀ ରାଜାସାହେବ ପ୍ରତି ବର୍ଷ ଉତ୍କଳ ସାହିତ୍ୟ ସମାଜକୁ ପ୍ରବନ୍ଧ ପ୍ରତିଯୋଗିତାପାଇଁ ପୁରସ୍କାର ଘୋଷଣା କରନ୍ତି । କଲେଜରେ ପଢୁଥିଲାବେଳେ ସେହି ପୁରସ୍କାର ମୁଁ ପାଏଁ । ଏଥର ସ୍ୱୟଂ ପୁରସ୍କାର ଦାତାଙ୍କ ସହ ସାକ୍ଷାତ୍‌କାର୍ ।

ତାଳଚେର ଷ୍ଟେସନରୁ ଓହ୍ଲାଇ ଆଠମଲ୍ଲିକ ଯାତ୍ରା ଅନୁଗୁଳ ସହର ବାଟେ । ଆଠମଲ୍ଲିକରୁ ବୌଦ୍ଧ । ବୌଦ୍ଧର ରାଜା କଲିକତାରୁ ଫେରିବା ବାଟରେ ଆସନ୍ତି ଆଠମଲ୍ଲିକ । ସେଇଠୁଁ ତାଙ୍କ ସଙ୍ଗେ ମୋତେ ବୌଦ୍ଧକୁ ତାଙ୍କର ନିମନ୍ତ୍ରଣ । ସାଙ୍ଗରେ ରାଜାସାହେବଙ୍କ ସେକ୍ରେଟାରୀ ଶ୍ରୀ ଗରୁଡ଼ଧ୍ୱଜ ମିଶ୍ର । ମହାନଦୀରେ ବଢ଼ିପାଣି ମହାବେଗରେ ଉଛୁଳୁଥାଏ । ମଝିରେ ମଝିରେ ନଈକୂଳର ଗାଁ ଲୋକମାନେ ରାଜାସାହେବଙ୍କୁ ଅଭିନନ୍ଦନ ଜଣାଇ ହରିବୋଲ ହୁଳହୁଳି ପକାଉଥାନ୍ତି । ପ୍ରତିଧ୍ୱନିତ ହେଉଥାଏ ତାହା ମହାନଦୀର ପ୍ରବଳ ଉଚ୍ଛଳ ସ୍ରୋତରେ । ସୂତାହାଟ ଘରେ ପହଞ୍ଚିବା ମାତ୍ରେ ଶୁଣେ ଏକ ଘୋର ଦୁଃସମ୍ବାଦ । ବାରିପଦାରେ ଭାଇନାଙ୍କ ଅସୁସ୍ଥତା । ବାରିପଦା ରେଳ ଷ୍ଟେସନ୍‌ରେ ପହଞ୍ଚି ଶୁଣେ ଘୋଡ଼ାଗାଡ଼ିର ପରିଚିତ କଚୁଆନ୍‌ଠାରୁ–ଭାଇନା ଆଉ ନାହାନ୍ତି ! ନିର୍ମଳ ମଧ୍ୟାହ୍ନରେ ଚାରିଆଡ଼ ମୋତେ ଅନ୍ଧାର ଦିଶେ । ଘୋଡ଼ାଗାଡି ଆସି ସେଇ ପରିଚିତ କ୍ୱାର୍ଟର ସାମ୍ନାରେ ପହଞ୍ଚେ, ଯେଉଁଠାରେ ସମସ୍ତେ ଆମେ ଏକତ୍ର କଟାଇ ଦେଇଥିଲୁଁ ପାଞ୍ଚୋଟି ବର୍ଷ ।

ସମ୍ବନ୍ଧୀ ଶ୍ରୀ ଲାଲମୋହନ ପତି ଦାଣ୍ଡ ବାରଣ୍ଡାରେ ଏପାଖ ସେପାଖ ବୁଲୁଥାନ୍ତି । ମୋତେ ଦେଖି ସହଜ ଭାବରେ କହିବାକୁ ସେ ଚେଷ୍ଟାକଲେ— ''ସେମାନେ ଶ୍ମଶାନକୁ ଘେନି ଯାଇଛନ୍ତି । ଏଥର ବୋଧହୁଏ ଫେରିବେ ।'' ମୁଁ ଅବା କିଛି ବୁଝି ପାରୁ ନ ଥାଏଁ । ଜଣାପଡୁଥାଏ ସତେ ଯେମିତି ଆକାଶ ! ପୃଥିବୀ ହଠାତ୍ କେଉଁଠି ଏକାଠି ହୋଇଗଲା । ସେଇ ଘରେ ବାପା, ବୋଉ, ଭାଇନା, ଭାଉଜ,ଭାଗୁ ତା'ର ସନ୍ତାନମାନେ, ସବୁ ପିଲାଙ୍କର ଗହଳଚହଳ ଭୋରରୁ ରାତି ଅଧଯାକେ !

ସେଇ ପରିବାରର ଏବେ କିଏ କୁଆଡ଼େ ଛିନିଛତ୍ର ହୋଇ ପଡ଼ିଲେଣି ! ଭାଗୁକୁ ଦେଖି ଆସିଲି ଅନୁଗୁଳ ଜେଲ୍‌ରେ । ଲୁସିକୁ ଧରି ସେ ଜେଲ୍ ଭିତରେ ନାଚି ନାଚି ତାକୁ ଖେଳାଇଲା ।

ସତେ ଅବା ନିଜଘର ଭିତରେ ! ସେଇଠୁ ଫେରି ଭାଇନାଙ୍କୁ ଆଉ ଦେଖିପାରିଲିନି । ବାରିପଦାର ସେଇ ଗହଳ ଚହଳ ଲାଗିଥିବା ଘର ଗୋଟିକ ! ଦେଖିଲି ଯାହା ବୋଉକୁ ମୋର ! ଅସୀମ ଧୈର୍ଯ୍ୟ, ଅସୀମ ସାହସର ପ୍ରତିମୂର୍ତ୍ତି ସେଇ ମୋର ବୋଉ !

ପାଗଳ ଭଳି ସେଇ ସରକାରୀ କ୍ୱାର୍ଟର ଭିତର ସବୁଘର ଖୋଜିଲାଗିଲି, ତନ୍ନ ତନ୍ନ କରି । ଯେଉଁ ବଖରାରେ ବାପା ରହିଥିଲେ, ଆଉ ତାଙ୍କର ଶେଷ ନିଃଶ୍ୱାସ ଛାଡ଼ିଥିଲେ । ତାଙ୍କ ଘରର ପୁଣି ସେହିପାଖ ବଖରାଟି ଯେଉଁଠାରେ ମୁଁ ରହେ ମୋର ପିଲା ଚାରୋଟିଙ୍କୁ ଘେନି । ଶେଷ ବଖରାରେ ସେଇ ଲମ୍ବ ବଡ଼ ବଖରାଟି– ଯେଉଁଠି ଭାଇନା, ଭାଉଜ, ପୁତୁରା, ଝିଆରୀ– ସବୁ ପଡ଼ିଛି ଶୂନ୍‌ଶାନ୍– ସମ୍ଭାଳି ପାରିଲି ନି ନିଜକୁ – ଚିତ୍କାର କରି ଉଠିଲି "ଭାଇନା ଭାଇନା" ଡାକି– 'ମାଟିର ମଣିଷ' ଛକଡ଼ି ଭଳି ଅବିକଳ !

ସବୁଠାରୁ ବଡ଼ ଧୈର୍ଯ୍ୟଶୀଳ ବୋଉ ମୋର– ବାପାଙ୍କ ମୃତ୍ୟୁରେ ମଧ୍ୟ ଯେ ପିଲାଏ କାନ୍ଦିବେ ବୋଲି ଲୁଚି ଲୁଚି ଏକାନ୍ତରେ କାନ୍ଦିଥିଲେ– ସମସ୍ତଙ୍କୁ ହରାଇ ମଧ୍ୟ ମୋତେ ଧରି ସେଦିନ ସେ କାନ୍ଦି ଉଠିଲେ । ସେହିଠାରେ ଚିରଦିନପାଇଁ ଦୀର୍ଘ ପୂର୍ଣ୍ଣଚ୍ଛେଦ ପଡ଼ିଗଲା ଆମ ବାରିପଦା ରହଣି ଇତିହାସରେ ।

ମହାରାଜା ପ୍ରତାପଚନ୍ଦ୍ର ଭଞ୍ଜଦେଓଙ୍କୁ ସାକ୍ଷାତ୍ କରେଁ ଯାଇଁ । ସେ ମଧ୍ୟ ଆମ ଦୁଃଖରେ ସମଦୁଃଖୀ । ମୋ ଅନୁରୋଧରେ ବ୍ୟବସ୍ଥା କରି ଦିଅନ୍ତି ଆମ ସମସ୍ତଙ୍କୁ ଗାଡ଼ିରେ ନେଇ ରୂପ୍‌ସା ରେଳ ଷ୍ଟେସନରେ ଛାଡ଼ିଦେବାକୁ ।

ଅନୁଗୁଳ ଜେଲ୍‌ରୁ ଚିଠି ଲେଖେ ଭାଗୁ– ଜେଲ୍ ପାଚେରି ଅର୍ଗଳ ଭିତରେ ଅକର୍ତ୍ତବ୍ୟ ହୋଇ ଲୁହ ଢାଳିଥିଲା ସେ । ଚିଠିରେ ତା'ର ଘୋଟି ରହିଥିଲା ଭାଇନାଙ୍କ ବିୟୋଗରେ ହାହାକାର । ଅନୁଗୁଳ ଜେଲରୁ ମୁକୁଳି ଭାଗୁ ଫେରିଆସେ କଟକ ।

ମୋ ଅଜାଣତରେ କୁନି କରିଥାଏ ଘରଭିତରେ ତା' ପାଇଁ ଏକ ସମ୍ବର୍ଦ୍ଧନାର ଆୟୋଜନ– ଘରଟାକୁ ଫୁଲ ଆଉ ରଙ୍ଗିନ କାଗଜରେ ସଜାଇ ପୁଣି ତା' ପାଇଁ ଫୁଲମାଳ ଗୁନ୍ଥି । ଆହୁରି ଏକ ବିଚିତ୍ର ବ୍ୟାପାର କୁନି ସେହି ସାଜସଜ୍ଜା ଭିତରେ ପରିକଳ୍ପନା କରିଥାଏ । ଘର ଦୁଆର ବନ୍ଧର ଠିକ୍ ଉପରେ ଟାଙ୍ଗିଥାଏ ଗୋଟିଏ ସୁନ୍ଦର ଫୁଲମାଳ, ଆଉ ତା'ର ସୂତାଧରି ଦୁଆର ମୁହଁର କରପଟେ ଠିଆ ହୋଇଥାଏ ସେ । ଭାଗୁ ଦୁଆରବନ୍ଧ ଡେଇଁ ଘର ଭିତରକୁ ପାଦ ପକାଇବାମାତ୍ରେ ଟାଣିଦିଏ ସେଇ ସୂତାଟିକୁ । ଫୁଲମାଳଟା ଦୁଆରବନ୍ଧ ଉପରୁ ଖସି ଭାଗୁ ବେକରେ ଲମ୍ବାଇ ହୋଇ ପଡ଼ିଯାଏ । ଆଜିଯାକେ ସେଇ ଫୁଲମାଳଟା ଯେମିତି ଅବା ସତେଜ ହୋଇ ତା' ବେକରେ ପଡ଼ିଛି, ଗୋଟିଏ ହେଲେ ପାଖୁଡ଼ା ତାହାର ମଉଳି ନାହିଁ– ସେଇ ନାଲିଧଳା ହଳଦିଆ ରଙ୍ଗର ଫୁଲମାଳଟା !

'ଭାରତୀ ତପୋବନ'ରେ ପୁଣି ଥରେ ଉଚ୍ଛୁଳିଉଠେ କିଛି ଦିନ ପାଇଁ ଗହଳ ଚହଳ । ମୁଁ ଚାଲେଁ ଓଡ଼ିଶା ଦେଶୀୟ ରାଜ୍ୟ ପରିଭ୍ରମଣରେ । ଆଉ ଭାଗୁ ଚାନ୍ଦିନିଚୌକ କମ୍ୟୁନିଷ୍ଟପାର୍ଟି ଅଫିସ୍‌କୁ । ଏଣେ ପୃଥିବୀ ଉପରେ ଦ୍ୱିତୀୟ ମହାଯୁଦ୍ଧର ଘନଘଟା । ଇଂରେଜ ପ୍ରତିନିଧି ସାର୍

ଷ୍ଟାଫୋର୍ଡ କ୍ରିପ୍ସ୍ (Sir Stafford Cripps) ଙ୍କ ନେତୃତ୍ୱରେ ଗାନ୍ଧୀ ଏବଂ ଜିନାଙ୍କ ସହିତ ସାଲିସ୍ ପ୍ରସ୍ତାବ ।

କ୍ରିପସ୍ ମିଶନ୍‌ର ବିଫଳତାକୁ ଭାଗୁ ସେତେବେଳେ ଭାରତ ରାଜନୀତିକ ବିଚକ୍ଷଣତାରେ ତ୍ରୁଟି ବୋଲି ବିଶ୍ୱାସ କରେ, ଆଉ ଯାହା ସେ ବିଶ୍ୱାସ କରେ, ତାହା ପ୍ରକାଶ କରେ ମଧ ସ୍ପଷ୍ଟଭାବରେ । ନିଜ ବିଶ୍ୱାସକୁ କୌଣସି ପ୍ରକାର ସାଲିସର ଆବରଣରେ ଘୋଡ଼ାଇ ରଖିବା ଅପଚେଷ୍ଟା କେବେ ହେଲେ ମୁଁ ତା' ଠାରେ ଲକ୍ଷ୍ୟ କରି ନାହିଁ– ବ୍ୟକ୍ତିଗତ ହେଉ, ପାରିବାରିକ ହେଉ କିମ୍ବା ସାମାଜିକ ଅବା ରାଜନୀତିକ ହେଉ । ବିନା ସାଲିସ୍‌ରେ ବଞ୍ଚିବା ଯେ ଦୁନିଆ ଭିତରେ ଅସମ୍ଭବ, ଏଇ କଥାଟାକୁ କେବେହେଲେ କୌଣସି ମୁହୂର୍ତ୍ତରେ ସେ ସ୍ୱୀକାର କରିପାରେ ନାହିଁ । ଏହିପରି ସେ ମୃତ୍ୟୁ ସହିତ ବି ଶେଷ ପର୍ଯ୍ୟନ୍ତ ସାଲିସ୍ କରି ନଥିଲା । ଥରେ ଆସି ସେ ମୋହପାଖରେ ପ୍ରସ୍ତାବ କରେ– ପୈତୃକ ଜମିବାଡ଼ି ଘରଦ୍ୱାର ଯାହା କିଛି ଅଛି, ସେସବୁ ସେ ବିକ୍ରିକରି ଦେବାକୁ ଚାହେଁ; ତା'ର ପ୍ରାଇଭେଟ୍ ପ୍ରପର୍ଟି ବା ବ୍ୟକ୍ତିଗତ ସମ୍ପତ୍ତି ଉପରେ ମାଲିକାନାକୁ ସେ ଅସ୍ୱୀକାର କରେ ।

ତହୁଁ ମୁଁ ଯୁକ୍ତିକରେ, ''ପୈତୃକ ସମ୍ପତ୍ତି ଉପରେ ଯଦି ତୋର ବିଶ୍ୱାସ ନାହିଁ, ତେବେ ତାହାକୁ ବିକ୍ରିକରି ବିକ୍ରିଲବ୍ଧ ଧନ ନେବାର ଯୁକ୍ତି କେଉଁଠାରେ ?'' ତହୁଁ ସେ ଉତ୍ତର ଦିଏ— ''ତା'ହେଲେ ମୋର ସମସ୍ତ ଅଂଶ ତୁମକୁ ମୁଁ ଛାଡ଼ିଦେଲି ।''

''କିନ୍ତୁ ତୋର ସନ୍ତାନମାନଙ୍କୁ ସେଥିରୁ ବଞ୍ଚିତ କରିବାର ଅଧିକାର ତୋର ଆସିଲା କେଉଁଠୁ ?'' ପ୍ରଶ୍ନକରେ ମୁଁ; ସେ ପ୍ରଶ୍ନର ଉତ୍ତର ଅବଶ୍ୟ ସେ ଦେଇପାରେ ନାହିଁ । କେବଳ କହେ ''ତୁମେ ଗାନ୍ଧୀନୀତିର ସମର୍ଥକ । ଲେନିନ୍ ସମର୍ଥକ ହୋଇଥିଲେ ଏଭଳି ଯୁକ୍ତି କରନ୍ତ ନାହିଁ ।''

ଲେନିନ୍‌କୁ ସେ ବିଶ୍ୱ ଇତିହାସର ଏକକ ଓ ଅନନ୍ୟ ପୁରୁଷରୂପେ ବିଚାର କରେ । ପୁଣି ଲେନିନ୍ ନୀତିହିଁ ନୂତନ ଦୁନିଆର ଏକମାତ୍ର ସମାଧାନ ବୋଲି ତାହାର ଧାରଣା ।

୧୯୪୨ ଖ୍ରୀଷ୍ଟାବ୍ଦର ଦ୍ୱିତୀୟ ମହାଯୁଦ୍ଧର ଘନଘଟା ଆକାଶକୁ ଆଚ୍ଛନ୍ନ କରିଥାଏ । ଭାଗୁ ସଂଗଠନ କରିଥାଏ ଓଡ଼ିଶାରେ ଏକ ଫାସିଷ୍ଟ ବିରୋଧୀ ସମ୍ମିଳନୀ (Anti-Fascist Conference) । କଟକଠାରେ ଅନୁଷ୍ଠିତ ହେବାକୁ ସ୍ଥିର ହୋଇଥିବା ଏହି ସମ୍ମିଳନୀର ଅଭ୍ୟର୍ଥନା ସଭାର ସଭାପତିଭାବରେ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁଙ୍କୁ ଡାକିବାରୁ ସେ ଗୋଟିଏ ସର୍ତ୍ତ ଦେଇଥାନ୍ତି ଯେ, ମୁଁ ସେଥିରେ ଯୋଗଦେଲେ ସେ ରାଜିହେବେ ।

ଅଥଚ ମୁଁ ତେଣେ ଓଡ଼ିଶାର ପୂର୍ବାଞ୍ଚଳ ଦେଶୀୟରାଜ୍ୟ ପ୍ରଚାର ସଂଘରେ ରହି ଅର୍ଥାତ୍ ଫାସିଷ୍ଟ ରାଜାରାଜୁଡ଼ାମାନଙ୍କ ସଂଗଠନ ଭିତରେ ଥାଇ ଫାସିଷ୍ଟ ବିରୋଧୀ ସମ୍ମିଳନୀରେ ଯୋଗ ଦେବାଟା ସମୀଚୀନ ନୁହେଁ ବୋଲି ଇତସ୍ତତଃ କରୁଥିଲି; କିନ୍ତୁ ଭାଗୁ କଥାକୁ ଏଡ଼ିଦେବାର ଶକ୍ତି ମୋର କେବେହେଲେ ଜୁଟି ନ ଥିଲା ।

ଦୈବାତ୍ ବମ୍ବେରେ ଅନୁଷ୍ଠିତ ନିଖିଳ ଭାରତ କଂଗ୍ରେସ ଅଧିବେଶନରେ 'ଭାରତଛାଡ଼' ପ୍ରସ୍ତାବ ଗୃହୀତ ହେବା ସଙ୍ଗେ ସଙ୍ଗେ ଗାନ୍ଧୀ ଜବାହରଲାଲ ପ୍ରମୁଖ ନେତୃବୃନ୍ଦ ଗିରଫ ହୋଇଯିବାରୁ କଟକର ପ୍ରସ୍ତାବିତ ଫାସିଷ୍ଟ ବିରୋଧୀ ସମ୍ମିଳନୀ ମଧ୍ୟ ବନ୍ଦ ହୋଇଯାଏ ।

ଭଗବତୀଦ୍ୱାରା ସମ୍ପାଦିତ 'ମୁକ୍ତିଯୁଦ୍ଧ' ସାପ୍ତାହିକ ପତ୍ରିକା ସେତେବେଳେ ନିୟମିତ ପ୍ରକାଶ ପାଉଥାଏ ଓ ଦ୍ୱିତୀୟ ମହାଯୁଦ୍ଧକୁ 'ଜନଯୁଦ୍ଧ' ରୂପେ ତହିଁରେ ବର୍ଣ୍ଣନା କରାଯାଉଥାଏ ରୁଷ୍ ବିରୋଧରେ ହିଟ୍‌ଲର୍‌ଙ୍କ ଯୁଦ୍ଧଘୋଷଣା ପରଠାରୁ । ଏହା ଯେ ସାମନ୍ତଶ୍ରେଣୀ ଫାସିଷ୍ଟ୍ ବାଦର ସର୍ବହରାଶ୍ରେଣୀ ଜନତା ଉପରେ ଆକ୍ରମଣ– ଏହାହିଁ ଥିଲା 'ମୁକ୍ତିଯୁଦ୍ଧର' ପ୍ରତିପାଦ୍ୟ ବିଚାରଧାରା । ଏହି ଆକ୍ରମଣକୁ ପ୍ରତିହତ କରିବାପାଇଁ ରୁଷ୍‌ଦେଶର ଆବାଳବୃଦ୍ଧବନିତା ଯେଉଁ ପ୍ରାଣମୂର୍ଚ୍ଛା ଉଦ୍ୟମ ଚଳାଇଥିଲେ, 'ମୁକ୍ତିଯୁଦ୍ଧ'ର ପ୍ରତି ସଂଖ୍ୟାରେ ତାହାରି ଲୋମହର୍ଷଣକାରୀ ବର୍ଣ୍ଣନା ।

'ମୁକ୍ତିଯୁଦ୍ଧ'ରେ ଲେଖିବାପାଇଁ ସେତେବେଳେ 'କୁନି'କୁ ମଧ୍ୟ ହାତବାରିସି କରିଥିଲା ଭାଗୁ । ଦଶ ଏଗାର ବର୍ଷର ଝିଅ କୁନି ସେତିକିବେଳୁ ଲେଖିବାକୁ ଆରମ୍ଭ କରେ ହିଟ୍‌ଲରୀ ଫାସିଷ୍ଟ ଆକ୍ରମଣ ବିରୋଧରେ ରୁଷ୍ ଜନଯୁଦ୍ଧର ଆବାଳବୃଦ୍ଧବନିତାଙ୍କର ପ୍ରାଣମୂର୍ଚ୍ଛା ପ୍ରତିରୋଧର ଦୁଃସାହସିକ କାହାଣୀ ।

ତାହାରିଠାରୁ ଟିକିଏ ବଡ଼ ରୁଷ୍‌ର ବୀରା ବାଳିକା ଜୋୟା– ଜଙ୍ଗଲ ପାହାଡ଼ରେ ଛପି ରହି କିପରି ଗୋଟିକ ପରେ ଆଉ ଗୋଟିଏ ହିଟ୍‌ଲରୀ ସୈନ୍ୟଙ୍କୁ ହତ୍ୟା କରିଥିଲା ଗୁଳିମାରି । ଆହୁରି କିଭଳି ମାଆ କୋଳରୁ ଛଡ଼ାଇନେଇ ଫାସିଷ୍ଟ୍ ସୈନ୍ୟ କାଟୁଥିଲେ କେତେ ନିରୀହ ନିର୍ବୋଧ ଶିଶୁର ମଥା ! 'ମୁକ୍ତିଯୁଦ୍ଧ'ର ପ୍ରଥମ ପୃଷ୍ଠାରେ ବାହାରେ ଭାଗୁର ହୃତ୍‌କମ୍ପକାରୀ କବିତା—

''ଯା'ରେ ମନ ଯା'ରେ !
ରୁଷିଆ ଦେଶକୁ ଚାହାଁରେ
ରୁଷିଆ ଦେଶରେ ବସିଛି ଲେନିନ୍
ଟେକି ଦେଇଅଛି ବାହାରେ ।''

ସେଦିନ ଭାଗୁର ଏ କବିତା ପଢ଼ି ମନେ ପଡ଼ିଯାଇଥିଲା ମୋର ବାପାଙ୍କ କଥା– ମୋର 'ପୁରୀ ମନ୍ଦିର' କବିତାରେ—

''କାଷ୍ଠ ପାଷାଣ ଗଠିତ ହେ ନିର୍ଜୀବ ଦେବତା ମୂରତି !
ଏ ଦେଶ ଶୋଣିତେ ଆଜି ଜାଗ୍ରତ ଯେ ବିଶ୍ୱର କୀରତି ।''

କବିତାଟି ପଢ଼ିସାରି ମୋହପ୍ରତି ବାପାଙ୍କର ଅନୁଯୋଗ– ଜଗନ୍ନାଥଙ୍କୁ ମୁଁ କାଷ୍ଠପାଷାଣ ଗଠିତ ନିର୍ଜୀବ ବୋଲି ଉଲ୍ଲେଖ କରିଥିବାହେତୁ । ସେଇ ଜଗନ୍ନାଥଙ୍କ ସହିତ ପୁଣି ଭାଗୁର ମଧ୍ୟ ରୁଷ୍ ଦେଶର ଲେନିନ୍‌ଙ୍କ ସହିତ ତୁଳନା ! ବାପା ଜୀବିତ ଥିଲେ ଭାଗୁକୁ ଯେ ଆହୁରି

ତୀବ୍ର ସମାଲୋଚନାର ସମ୍ମୁଖୀନ ହେବାକୁ ପଡ଼ିଥାନ୍ତା ! କାରଣ ସ୍ୱୟଂ ଜଗନ୍ନାଥଙ୍କ ସହିତ ସେ ଲେନିନ୍‌ଙ୍କୁ ନେଇ ବସାଇଥିଲା ।

ଭଗବତୀର ମୃତ୍ୟୁ ପରେ ମୁଁ ମୋର ପୂର୍ବାଞ୍ଚଳ ଦେଶୀୟ ରାଜ୍ୟ ପ୍ରଚାର ସଂସ୍ଥା କାର୍ଯ୍ୟରେ ଯାଏଁ ମୟୂରଭଞ୍ଜ । ଭେଟହୁଏ ବାରିପଦା ଅତିଥିଭବନରେ ସ୍ୱର୍ଗତ ବ୍ରଜେନ୍ଦ୍ରନାଥ ପାଲ୍‌ଙ୍କ ସହିତ— ଜାତୀୟ ସମ୍ମାନରେ ବର୍ତ୍ତମାନ ସମ୍ମାନିତ ଶ୍ରୀ ଫନିପାଲ୍‌ଙ୍କ ବଡ଼ଭାଇ ସେ । ବଙ୍ଗଳାର ନଦୀୟାଜିଲ୍ଲା କେଚୁଆଡଙ୍ଗା ଗ୍ରାମରୁ ଆସି ବ୍ରଜେନ୍ଦ୍ରବାବୁ ରହୁଥାନ୍ତି– ମୟୂରଭଞ୍ଜର କୃଷ୍ଣଚନ୍ଦ୍ରପୁର ରେଳ ଷ୍ଟେସନରେ କାଠଗୋଦାମର ବ୍ୟବସାୟୀ ରୂପେ । ଆମର ବାରିପଦା ଅବସ୍ଥାନରେ ଭାଗୁ ତାଙ୍କ ପାଖକୁ ଯା' ଆସ କରେ ଗୋପନରେ । ବ୍ରଜେନ୍ଦ୍ରବାବୁ କାର୍ଲ ମାର୍କସଙ୍କର 'ଦାଶ କାପିଟା' (Das Capita) ପୁଣି ପୁଞ୍ଜିବାଦୀ ଓ ବସ୍ତୁବାଦୀ ତର୍କଶାସ୍ତ୍ର (Dielectical Materialism) ରେ ସୁପଣ୍ଡିତ ।

ଭାଗୁର ମୃତ୍ୟୁପରେ ବ୍ରଜେନ୍‌ବାବୁଙ୍କ ସଙ୍ଗେ ମୋର ଶେଷ ସାକ୍ଷାତ୍‌କାର, ସୂତାହାଟ 'ଭାରତୀ ତପୋବନ' ବସାଘରେ । ବ୍ରଜେନ୍‌ବାବୁ କୌତୂହଳ ପ୍ରକାଶ କରନ୍ତି କୁନି (ନନ୍ଦିନୀ)କୁ ଦେଖିବାପାଇଁ ବୋଧ ହୁଏ ତାହାର ଲେଖା 'ମୁକ୍ତି ଯୁଦ୍ଧରେ' ପଢ଼ି ।

କୁନିକୁ ଡାକିଲେ । ସେ ଆସି ତା'ର ଝାମ୍ପୁଡ଼ା ମୁଣ୍ଡରେ ଠିଆହେଲା ମୋ ପାଖରେ– ବ୍ରଜେନ୍‌ବାବୁଙ୍କୁ ଚିହ୍ନାଇଦେଲି । ନମସ୍କାର କଲା ସେ, ଗମ୍ଭୀରଭାବରେ ବ୍ରଜେନ୍‌ବାବୁ କିଛି ସମୟ ତା' ମୁହଁକୁ ଚାହିଁଲେ । ତା'ପରେ କହିବାକୁ ଆରମ୍ଭ କଲେ ଗଦ୍‌ଗଦହୋଇ ଅପୂର୍ବ ବଙ୍ଗଳା ଭାଷାରେ—

''ତୁ ଦୁର୍ଗା; ତୁ ବିଶ୍ୱଜନନୀ, ତୁ ମହାମାୟୀ– ମୁଁ ତୋ'ର ସନ୍ତାନ, ତୁହି ଏକମାତ୍ର ତ୍ରାଣକର୍ତ୍ତ୍ରୀ ସବୁ ଦୁର୍ଗତିର ଇତ୍ୟାଦି ଇତ୍ୟାଦି'' ଏକ ସୁଦୀର୍ଘ ସ୍ତୋତ୍ର ।

ତାଙ୍କ କଥା ଶୁଣି ମୁଁ ଅବାକ୍ ଓ ସ୍ତମ୍ଭିତ ହୋଇଗଲି । ବ୍ରଜେନ୍‌ବାବୁ ଯେ କଦାପି ପରିହାସ କରିପାରନ୍ତି, ଏହା ତ ଏକାବେଳେ ମୋ କଳ୍ପନାର ବାହାରେ । ଭାବିଲି, ସେ ନିଶ୍ଚୟ ପାଗଳ– ଅଥଚ ଭାଗୁ ତାଙ୍କୁ ଏତେ ଗଭୀର ଶ୍ରଦ୍ଧାକରେ । କିପରି ସେ ତାଙ୍କୁ ମାର୍କସ୍‌ବାଦ ଓ ସର୍ବହରା ବିପ୍ଲବ– ବିଜ୍ଞାନର ଜଣେ ଶ୍ରେଷ୍ଠ ସାଧକ – ବ୍ୟାଖ୍ୟାକାର ପୁଣି ପରମଜ୍ଞାନୀ ପଣ୍ଡିତଭାବରେ ଓ ନିରୀଶ୍ୱର ବିଚାରକରୂପେ ଧରିନିଏ କିପରି । ବ୍ରଜେନ୍‌ବାବୁ ଆହୁରି ଗୋଟାଏ କଥା କହି ମଧ୍ୟ ମୋତେ ବିହ୍ୱଳ ଓ ଆଚମ୍ବିତ କରିପକାନ୍ତି ସେଦିନ । ଭଗବତୀ କୁଆଡ଼େ ତାଙ୍କୁ ଏକାନ୍ତରେ କେତେଥର କହିଛି ଯେ, ମୁହିଁ ଥିଲି ତା'ର 'Political Guru' ରାଜନୀତିର ଗୁରୁ ! ଅଥଚ ମୋ ସହିତ ରାଜନୀତିକ ଯୁକ୍ତି-ତର୍କରେ କେତେ ଯେ ଆକାଶ-ପାତାଳ ଫରକ୍ ତାର ବୁଝିପାରେ ନାହିଁ; କାହିଁକି ସେ ମୋତେ ଏତେ ବଡ଼ ସ୍ଥାନ ଦେଇଥିଲା, ଆତ୍ମଧିକ୍‌କାରରେ ଆଜି ବି ସେଥିଲାଗି ଅନ୍ତର ମୋର ଜଳିଉଠେ । କୁନି ସମ୍ପର୍କରେ ସେତେବେଳେ ଅବଶ୍ୟ ବ୍ରଜେନ୍‌ବାବୁଙ୍କ କଥାଗୁଡ଼ିକୁ ମୁଁ ଖୁବ୍ ହାଲୁକାଭାବରେ ଧରି ନେଇଥିଲି । ଭାଗୁ ମଧ୍ୟ କହିବାର ଶୁଣେଁ– ତାଙ୍କ ଦଳର ବନ୍ଧୁମାନେ 'ମୁକ୍ତିଯୁଦ୍ଧ'ରେ କୁନିର ଲେଖା ଦେଖି ଆମ ଘରେ ସମସ୍ତେ ଗୋଟାଏ ପଥର ପଥିକବୋଲି କୁହାକୁହି ହୁଅନ୍ତି ।

ଜନ୍ମାବଧି ସ୍ନେହ ତା'ର କୁନି ଉପରେ । ଆମେ ଖାଲି ଅପତ୍ୟାଣୀ ଝିଅ ବୋଲି ଯେମିତି ସବୁ ସ୍ନେହ ଅଜାଡ଼ି ଦେଇଥିଲୁଁ ସେମିତି ମୁଁ ଲକ୍ଷ୍ୟ କରେଁ ଆଜି– ସେ ବରାବର ମୋର ପୁଣି ଆମଘର ବେଷ୍ଟନୀକୁ ଯେମିତି ସବୁବେଳେ ଭାଙ୍ଗିରୁଜି ଛିଟିକି ପଡ଼ିଛି ପଦାକୁ ।

ନିଃସନ୍ତାନ ହେବାର ଲଜ୍ଜାରୁ ରକ୍ଷା ପାଇବାପାଇଁ ତାକୁ ବଞ୍ଚାଇବାକୁ ଯେତିକି ଯତ୍ନ ସ୍ନେହ ଆଦରଭିତରେ ବାନ୍ଧି ରଖିବାକୁ ଯାଇଛୁଁ ଆମେ ତାକୁ– ସେତିକି ଯେମିତି ସେ ସବୁ ବନ୍ଧନକୁ ଫଟାଇ ଦେଇ ଛିଟିକି ପଡ଼ିଛି, ବାପ-ମା'ଙ୍କ ସ୍ନେହର ଅବା ପାରିବାରିକ ସବୁ ବନ୍ଧନ-ବେଷ୍ଟନୀରୁ ମୁକୁଳିଯାଇ ।

ଅତି ପିଲାଦିନୁ ତା'ର ସେହି ଯାଚକଲେନ୍ ଭିତରେ ରହିଥିଲାବେଳେ ନାନା ଉତ୍ପାତର ଆରମ୍ଭ ହୋଇଯାଏ । ଘରଭିତରେ ମୋର ଯେତେ ଯାହା ପ୍ରିୟ ଜିନିଷ ସେ ସମସ୍ତ ଫିଙ୍ଗି ଫୋପାଡ଼ି ଭାଙ୍ଗିରୁଜି ଦେବା ଯେମିତି ତା'ର ସବୁବେଳେ ଥିଲା ବଡ଼ବିଳାସ । ଅଗଣାମଝିରେ ରୋଷେଇଘରପାଖେ କୂଅଟିଏ । ଘରକରଣା କେତେ ଜିନିଷର ସେହି କୂଅଭିତରେ ଯେ ହୋଇଛି ଜଳସମାଧି ।

ଆମେ ସମସ୍ତେ ଚାହୁଁ ଚାହୁଁ ଏପରିକି ସେଇ ଛୋଟିଆ ଦୋତାଲା ଘର ଉପରୁ କେତେ ଜିନିଷ ସିଧାଆସି ଜଳମଗ୍ନ ହୁଏ କୂଅଭିତରେ, ଦିନେ ଏମିତି ସେତେବେଳର ଖୁବ୍ ଦାମିକା ମୋର Westend ରିଷ୍ଟ ୱାଚଟା ଦୋତଲା ଝରକାବାଟେ ଆସି ଏକାବେଳେ କୂଅଭିତରେ ।

କାଚ-ଶଙ୍ଖ ବାସନ ବା କାଚଗ୍ଲାସ କିଣିବା କିମ୍ବା ରଖିବା ଏକାବେଳେ ବନ୍ଦ କରିଦେଲି । ଭାଗୁ ମଧ ତା'ର ଚଷମାକୁ ଆଖିରୁ କାଢ଼ି ବାହାରେ ଥୋଇବାକୁ ବିପଦ ଜ୍ଞାନକଲେ । ଥରେ ଏମିତି ବନ୍ଧୁଶ୍ରୀ ନବକୃଷ୍ଣ ଚୌଧୁରୀ ଆମ ଘରକୁ ଯାଇଥାନ୍ତି । ହସ ଖୁସି ଗପ ଚାଲିଛି, ଭାଗୁ ତ ସେମିତି ଗପ କହିବାରେ ଓସ୍ତାଦ୍ । ଏମିତି ଗୋଟାଏ କ'ଣ ଗପ କହୁଥିଲା ସେ ଗୁଲିଖଟି ବିଷୟରେ ।

ଗୁଲିଖଟିରେ ଜଣେ ଗପୁଥାଏ ତା' ସାଙ୍ଗ ଆଗରେ ନିଜର ଅଭିଜ୍ଞତା– ଆଜିକାଲି ଡାକ୍ତରମାନେ ଯେପରି ଅସ୍ତ୍ରଚିକିତ୍ସା କରୁଛନ୍ତି ତାହାର ଖୁବ୍ ତାରିଫ୍‌କରି । ଗାଞ୍ଜିକର ଜଣେ ସାଙ୍ଗର କୁଆଡ଼େ ଅଣ୍ଟା ଧରିଲା ଯେ, ସେ ମାସ ମାସ ବିଛଣାରେ ପଡ଼ିରହି ଉଠିବସି ପାରିଲାନି, ଡାକ୍ତର ଆସି ଅଣ୍ଟାକୁ ତା'ର କାଟିଦେଲା । ଆଉ ଗୋଟାଏ ଗାଈ ସେଠାରେ ଚରୁଥାଏ, ସେ ଗାଈର ପଛପଟୁ କାଟି ଆଣି ସାଙ୍ଗ ଅଣ୍ଟାରେ ଯୋଡ଼ିଦେଲା । ଏବେ ସାଙ୍ଗ ତା'ର ଖୁସିରେ ବଜାର ହାଟ କରି ହଳପାଳ କାମ କରୁଛି, ଆଉ ସନ୍ଧ୍ୟାରେ ଘରକୁ ଫେରିଲେ ତାହାରିଠାରୁ ଦିନକୁ ଦେଢ଼ସେର ଗାଈଦୁଧ ଦୁହାଁହେଉଛି ।

କଥାଟା ଶୁଣି ନବବାବୁଙ୍କ ସମେତ ସମସ୍ତେ ଆମେ ହସୁଥାଉଁ; ସେତିକିବେଳେ କୁନି କେଉଁଠି ଥିଲା ଘରଭିତରୁ ଛୁଟି ଆସେ । ଭାଗୁ ହାଁ ହାଁ କରୁଥିବା ଭିତରେ ଚଟ୍ କରି ଟେବୁଲ ଲ୍ୟାମ୍ପର ସୁନ୍ଦର ଶଙ୍ଖ ଦଳା ଡୁମ୍‌ଟା ଉଠାଇ ସାଙ୍ଗେ ସାଙ୍ଗେ ତଳେ କଚାଡ଼ି ତାହାକୁ ଚୂନା କରିଦିଏ । ସେତେବେଳେ ମୋର ଦୁଃଖ, ବିରକ୍ତି, କ୍ରୋଧ ସହିତ ଭାଗୁର ହସ ସୃଷ୍ଟି କରେ

ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ ଏମିତି ଗୋଟିଏ ଦୁର୍ଘଟଣା । ତଥାପି ସବୁ ଉତ୍ପାତକୁ କୁନିର ଆମେ ବରଦାସ୍ତ କରୁଥାଉଁ, କାରଣ ଯୋଡ଼ିଏ ଶିଶୁ ମରିଯିବା ପରେ ସେଇ ଗୋଟିକ ବଞ୍ଚି ରହିଥିବାରୁ ଅକସ୍ମାତ୍ ।

କ୍ରମେ ତା'ର ସେଇ ପ୍ରକୃତି ଘର ଭିତରେ ପୂରାପୂରି ମୁରବିପଣିଆରେ ପରିଣତ ହୋଇପଡ଼େ । ମୋ ବୋଉଙ୍କଠାରୁ ଆରମ୍ଭ କରି ସାନ ପୁଅ ପର୍ଯ୍ୟନ୍ତ ଆମ ଯୌଥ ପରିବାରଟିରେ ଯାହାର ଯେବେ ଅସୁସ୍ଥ ଅବସ୍ଥାରେ ସେବା, ଶୁଶ୍ରୂଷା କରିବା ଥିଲା ତା'ର କର୍ତ୍ତବ୍ୟ ।

ବୋଉ ମଧ୍ୟ ତାକୁ ଏତେ ବେଶି ଭଲ ପାଉଥିଲେ ଯେ, ଗାଁରେ ଥିବା ସମୟରେ କୁନି ଥରେ ଅସୁସ୍ଥ ହୋଇ ପଡ଼ିବାରୁ ସେ ଜାଣିଲା ପରି ସେଇ କଥା କହି ଗାଁରେ ଅସ୍ଥିର ବିକଳ ହୁଅନ୍ତି । ଏତେ କମ୍ ବୟସରୁ ପାରିବାରିକ ଦାୟିତ୍ୱ ତୁଲାଇବାରେ ମଧ୍ୟ ତାହାର ସାହାଯ୍ୟ ଯେତିକି ମୁଁ ଭୁଲିପାରୁ ନାହିଁ, ସେତିକି ସେ ମୋର ହାତଛଡ଼ା ହୋଇ ବହୁ ଉଦ୍‌ବେଗ ଉତ୍କଣ୍ଠାର କାରଣ ହୋଇଛି । କବୀଶ୍ୱର ବ୍ୟାସତନୟ ଶୁକ ମହାମୁନି ମାତୃଗର୍ଭରୁ ଜନ୍ମନେବା ପୂର୍ବରୁ ମାଗିଥିଲେ ଖଣ୍ଡିଏ କୌପୀନ । ତା'ପରେ କୌପୀନ ପିନ୍ଧି ଜନ୍ମ ନିଅନ୍ତେ ସଙ୍ଗେ ସଙ୍ଗେ ତାଙ୍କର ଗୃହତ୍ୟାଗ-ସନ୍ନ୍ୟାସୀ ।

ଜନ୍ମ ମାତ୍ରେ ପୁତ୍ରର ସନ୍ନ୍ୟାସ ବ୍ରତ ଗ୍ରହଣରେ ବିବ୍ରତ ହୋଇପଡ଼ନ୍ତି କବୀଶ୍ୱର, ଅନୁଗମନ କରନ୍ତି ପୁତ୍ରଙ୍କୁ ଲେଉଟାଇ ଆଣିବା ପାଇଁ; ମାତ୍ର ଆଜନ୍ମ ସନ୍ନ୍ୟାସୀ ମହାମୁନି ଶୁକଦେବ, ବିଶ୍ୱସ୍ରଷ୍ଟା ଈଶ୍ୱରଙ୍କ ମୁଖରୁ ଶୁକପକ୍ଷୀ ଜନ୍ମରେ ଭାଗବତ ଶୁଣି ବ୍ୟାସପତ୍ନୀଙ୍କ ଗର୍ଭରେ ପ୍ରବେଶ କରିଥାନ୍ତି ଦେବ ଦେବ ମହାଦେବଙ୍କ ତାଡ଼ନାରେ । ଈଶ୍ୱର ପାର୍ବତୀଙ୍କ ସମକ୍ଷରେ ଭାଗବତ ପାଠ କରୁଥିବା ସମୟରେ ପାର୍ବତୀ ନିଦ୍ରାଭିଭୂତା ହୁଅନ୍ତି । ଶୁକପକ୍ଷୀଟି ବୃକ୍ଷଡାଳରେ ବସି ଭାଗବତ ଶୁଣୁଥାଏ । ଶିବ ତାହା ଜାଣି ପକ୍ଷୀଟିକୁ ତାଡ଼ନା କରିବାରୁ ସେ ଉଡ଼ି ଉଡ଼ି ଯାଇ ବ୍ୟାସପତ୍ନୀଙ୍କ ଗର୍ଭରେ ପ୍ରବେଶ କରେ ।

କୁନିକୁ ଘରଭିତରେ ବନ୍ଦୀକରି ରଖିବା ସେଇଭଳି ଅସମ୍ଭବ ହୋଇପଡ଼େ । ଯେଉଁସବୁ ଉପାୟକୁ ଦିନେ କୁସଂସ୍କାର ବୋଲି ବିଚାର କରି ମଧ୍ୟ ନିଜ ବିବେକକୁ ଜଳାଞ୍ଜଳି ଦେଇ ତାହାରି ଆଶ୍ରୟ ନିଏଁ, ଏବେ ସେଇ କୁନି ପିଲାଦିନୁଁ ଆମପାଖରୁ ଦୂରେଇ ଯିବା ବଡ଼ କଷ୍ଟଦାୟକ ହୁଏ । ମାତ୍ର ନିରୂପାୟ ହୋଇ ରହିବାକୁ ପଡ଼େ । କବିସୂର୍ଯ୍ୟଙ୍କ ଭାଷାରେ ଜଣାଇବାକୁ ମନ ଧାଏଁ– ଦେଲ ଯାହା ନେଲ ତାହା, ଏଥକୁ କିପାଇଁ ମହା ଦାତା ପଣେ ପତାକା ବାନ୍ଧିଛ ହେ ମହାପ୍ରଭୋ !



# ଡଗରପଡ଼ାର ଡଗର ଗଲାରେ କାହିଁ

ଏଇ ଦ୍ୱିତୀୟ ମହାଯୁଦ୍ଧ ସମୟରେ ହିଁ ଆମ ପରିବାର ଭିତରେ ଯେପରି ଅବା ଗୋଟିକ ପରେ ଆଉ ଗୋଟିଏ ବିଚ୍ଛେଦର ଘନଘଟା ଘୋଟିଆସେ । ସେଦିନ ସନ୍ଧ୍ୟାରେ ଭାରତ-ସେବକ-ସମାଜର ସଦସ୍ୟ ଓ ଭଗବତୀର ସହପାଠୀ ବନ୍ଧୁ ଶ୍ରୀ ଶ୍ୟାମସୁନ୍ଦର ମିଶ୍ର ମୋ ଘରକୁ ଆସି ଜଣାନ୍ତି– ଭାଗୁ ଗଞ୍ଜାମ ଜିଲ୍ଲା ଗସ୍ତରୁ ଫେରି ଅକସ୍ମାତ୍ ଅସୁସ୍ଥ ହୋଇପଡ଼ିଛି । ତହୁଁ ତାକୁ ଆମ୍ବୁଲାନସ୍‌ରେ ଡାକ୍ତରଖାନାକୁ ପଠାଇ ଦିଆହୁଏ ।

ଖବରଟା ଶୁଣି ତଟସ୍ଥ ହୋଇଯାଏଁ ଅବା, ଭାଗୁ ଯେ କେବେ ଅସୁସ୍ଥ ଅବସ୍ଥାରେ ଶଯ୍ୟାଶାୟୀ ହୋଇ ରହିଥିଲା ତା'ର ପିଲାଦିନୁଁ ସେ ପର୍ଯ୍ୟନ୍ତ କୌଣସି ଘଟଣା ମୋର ମନେ ପଡ଼େ ନାହିଁ । ଅଗତ୍ୟା ଯାଏଁ ଡାକ୍ତରଖାନା । ରଖାହୋଇଛି ତାକୁ କଲେରା ୱାର୍ଡ଼ରେ, ଦିଆଯାଉଛି ସାଲାଇନ୍ । ଡୋଳାଯୋଡ଼ିକ କୋଟରଗତ, ଦୂରରୁ ମୋତେ ଦେଖି ହାତଠାରି ମନା କଲା, ପାଖକୁ ତା'ର ନ ଯିବା ପାଇଁ; ମାତ୍ର ମନା ତା'ର ମାନନ୍ତା କିଏ ?

ତା'ର ଚିକିତ୍ସକ ଡାକ୍ତର ପାଖକୁ ଆସନ୍ତି । ଭାଗୁ ତାଙ୍କୁ ଇଂରାଜୀରେ ପଚାରେ– "Well doctor – What do you find ? – କ'ଣ ଦେଖୁଛନ୍ତି ଡାକ୍ତର ?"

ଡାକ୍ତରଙ୍କ ଜବାବ୍‌ଟା ମଧ୍ୟ ମୋର ମନେରହିଛି । ସେ ଯେମିତି ଅବା ହାଲୁକା ସ୍ୱରରେ କହିଲେ— Men may come and men may go, but I go on forever – ଇଂରେଜ କବି ଟେନିସନ୍‌ଙ୍କ 'ଜୀବନ ନଦୀ' (River or life) କବିତା । ସୀମିତ ପରମାୟୁ ଭିତରେ ମହାଜୀବନର ଚିରନ୍ତନ ଗତିକୁ ଲକ୍ଷ୍ୟ କରାଯାଇଛି ।

ପରିଚିତ ଅପରିଚିତ ଡାକ୍ତରମାନଙ୍କ ସହିତ ପରାମର୍ଶ କରେଁ– ଭାଗୁର ଇଚ୍ଛା–ସେ କଲେରା ୱାର୍ଡ଼ରେ ନ ରହି ଅନ୍ୟ କେଉଁଠିକି ଯାଆନ୍ତା; ମାତ୍ର ଡାକ୍ତରଖାନାରେ ତ ସେ ବ୍ୟବସ୍ଥା ନାହିଁ । ଉପାୟ ଖୋଜି ମିଳେ ନାହିଁ । କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼େ ମୁଁ । ପ୍ରତି ମୁହୂର୍ତ୍ତ ଗୋଟାଏ ଗୋଟାଏ ଦିନଭଳି ପୁଣି ଗୋଟାଏ ଦିନ ଯୁଗ ଭଳି ଲାଗେ ମୋତେ । କାହିଁହେଲେ ବୁଦ୍ଧିବାଟ ଦିଶେ ନାହିଁ ।

ସେତେବେଳେ ଦେଶବ୍ୟାପୀ ଘୋର ଦୁର୍ଦ୍ଦିନ । ବମ୍ବେ କଂଗ୍ରେସ 'ଭାରତଛାଡ଼' ପ୍ରସ୍ତାବ ଗ୍ରହଣ କରିଥିବା ହେତୁ ଚାରିଆଡ଼େ ଧରପଗଡ଼ି ଚାଲିଥାଏ । ମହାତ୍ମାଗାନ୍ଧୀ, ପଣ୍ଡିତ ଜବାହରଲାଲ, ସର୍ଦ୍ଦାର ପଟେଲ ପ୍ରମୁଖ ତୁଙ୍ଗନେତାମାନଙ୍କୁ ଅଜ୍ଞାତ ସ୍ଥାନରେ ବନ୍ଦୀ କରାଯାଏ । ତାହା ପୁଣି ଜ୍ଞାତହୁଏ ଆଗାଖାଁ ପ୍ୟାଲେସ୍ ନାମରେ ସେମାନେ ମୁକ୍ତ ହେବା ପରେ ।

ଦେଶଭକ୍ତମାନେ ହିଁ ସେତେବେଳେ ବିଚାର୍ଯ୍ୟ ହୁଅନ୍ତି ଦେଶଦ୍ରୋହୀ ଭାବରେ । ଅବଶ୍ୟ ବିଚାର କରିବାର ଅବକାଶ ନ ଥାଏ । ଅନିର୍ଦ୍ଦିଷ୍ଟ କାଳପାଇଁ ବନ୍ଦୀ ସେମାନେ । ସାରା ଭାରତବର୍ଷରେ ଯେପରି ଅବା ଘୋଟିଯାଏ ଏକ ନିବିଡ଼ ଅନ୍ଧକାର ।

ଡାକ୍ତରଖାନାରେ ଭଗବତୀ ଜିଦ୍ ଧରନ୍ତି, ଘରକୁ ଫେରିଆସିବା ପାଇଁ । ମୁଁ ପ୍ରସ୍ତାବକରେ ସୂତାହାଟରେ ମୋ ଭଡ଼ାଘରକୁ ଆଣିବା ଲାଗି ତାଙ୍କୁ; କିନ୍ତୁ ଭାଗୁର ଏକାନ୍ତ ଇଚ୍ଛା, ଡଗରପଡ଼ାରେ ସେ ସ୍ୱତନ୍ତ୍ର ଭଡ଼ାନେଇଥିବା ଘରକୁ ଯିବାପାଇଁ । ପ୍ରଥମେ ଡାକ୍ତରଖାନାରେ ସାଲାଇନ୍ ନେଉଥିବାବେଳେ ମୁଁ ଯେଉଁ ଅବସ୍ଥାରେ ତାକୁ ଦେଖିଥିଲି, ସେ ଅବସ୍ଥାରେ କୌଣସି ଉନ୍ନତି ବୋଧକଲି ନାହିଁ । ତେଣୁ ଡାକ୍ତରଙ୍କ ପରାମର୍ଶ ନିଏଁ । ତାହାର ଚିକିତ୍ସକ ମଧ୍ୟ ଘରକୁ ନେବାପାଇଁ ପରାମର୍ଶ ଦିଅନ୍ତି । କିନ୍ତୁ ଘରକୁ ଆସି ମଧ୍ୟ ଅବସ୍ଥାର କିଛି ପରିବର୍ତ୍ତନ ଘଟେ ନାହିଁ । ଅକ୍ଟୋବର ୨୩ ତାରିଖ ୧୯୪୩ ମସିହା ରାତିଅଧରେ ଖବର ପାଏଁ ଅବସ୍ଥା ସଙ୍କଟାପନ୍ନ । ସାଇକେଲରେ ଚଢ଼ି ଗୋଡ଼ ଦି'ଟା ମୋର ଅବା ପେଡ଼ଲ କରିପାରେ ନାହିଁ । ଛାତି ଭିତରୁ ବାହାରି ଆସେ ଗୋଟିଏ ନିଆଁହୁଳା ଯେମିତି । ଆଜିବି ସେ ହୁଳାଟା ନିଭିଲା ନାହିଁ ଆଜିକି ପ୍ରାୟ ତିରିଶବର୍ଷ ପରେ ମଧ୍ୟ । ଛାତିଭିତରୁ ଗୋଟାଏ ହାହାକାର ଉଠେ ଆଜି ବି ମଝିରେ ମଝିରେ ।

ପହଞ୍ଚି ଦେଖେଁ– ଅବସ୍ଥା ସଙ୍କଟାପନ୍ନ । ସଙ୍ଗେ ସଙ୍ଗେ ଡାକ୍ତର ଶ୍ରୀ ସନାତନ ମୁଖାର୍ଜୀଙ୍କୁ ଡାକେଁ, ମାତ୍ର କାହିଁରେ କିଛି ହୁଏ ନାହିଁ । ଭାଗୁପାଖରେ ଯାଇ ଠିଆ ହୁଏଁ ପାଟିରେ ତା'ର ପାଣି ଟିକିଏ ଟିକିଏ ଦେଉଥାନ୍ତି ମୋ ପରମ ବନ୍ଧୁ ଆଡ଼ଭୋକେଟ ଶ୍ରୀ ଜଗତ୍‌ବନ୍ଧୁ କର । ଭାଗୁ ମୁହଁରେ ଶୁଣିଲା ଭଳି ମୋତେ ବୋଧହେଲା— 'ମୋ କଥା ବୁଝ' ସେତିକି ଶୁଣି ଚତୁର୍ଦ୍ଦିଗ ମୋତେ ଅନ୍ଧାର ଦେଖାଗଲା । ସଙ୍ଗେ ସଙ୍ଗେ ଯାଏ ବନ୍ଧୁ ହରିହର ମହାପାତ୍ରଙ୍କ ଘରକୁ । ସେଇଠୁଁ ଫେରି ଦେଖେଁ ସବୁ ଶେଷ ।

ଦୁନିଆ ଭିତରେ କେହି ଯେ କାହାକୁ ବଞ୍ଚାଇ ପାରେନି, ପୁଣି ଭାଗୁର ଶେଷ ଅନୁରୋଧ ମୁଁ ଯେ ରଖି ପାରିଲିନି– ଜୀବନର ଏଇ ଚରମ ବ୍ୟର୍ଥତା ପଦେ ପଦେ ମୋତେ ସେହି ଦିନୁଁ ଅନୁସରଣ କରେ ଅବା ! ଯୁଆଡ଼େ ଯାଏଁ, ଯେଉଁଠି ରହେଁ–ସବୁଠାରେ ଯେମିତି ମୃତ୍ୟୁ ଶଯ୍ୟାରେ ତା'ର ସେଇ କାତର ଆକୁତି– 'ମୋ କଥା ବୁଝ' ! ହାଇରେ ମରଣମୁଖୀ ଦୁନିଆ ! ଯୁଆଡ଼େ ମୁହଁ ଫେରାଇଲେ ଯେ ଖାଲି ସେଇ ଗୋଟାଏ ଆକୁତି– ''ମୋ କଥା ବୁଝ'' ! ''ମୋତେ ବଞ୍ଚାଅ !'' ଅଥଚ କିଏ ଯେ କାହାକୁ ବଞ୍ଚାଏ ଗୋଟା ଦୁନିଆ ଭିତରେ କେଉଁଠି ? ଗାଁରେ ମୋର ବୋଉ ଭଉଣୀ ପୁତୁରା (ନୀହାର) ପୁଣି ମୋର ବଡ଼ଝିଅ କୁନି (ନନ୍ଦିନୀ) ଥାନ୍ତି । ଭାଗୁ ଅସୁସ୍ଥ ହୋଇ ଡାକ୍ତରଖାନା ଯିବାବେଳୁ ମନାକରି ଦେଇ ଥାଏ ସେ, ବୋଉକୁ ଖବର ନଦେବା ପାଇଁ । ବୋଉ ସେଥିପାଇଁ ପରେ ମୋତେ ଅବଶ୍ୟ ଶାସନ କରି କହନ୍ତି, ସେ ଆସିଥିଲେ ଭାଗୁକୁ ଯମ କଦାପି ନେଇପାରି ନଥାନ୍ତା ! ଅଥଚ ତାଙ୍କରି ଆଗରୁ ତ ବଡ଼ପୁଅକୁ ମଧ୍ୟ ତାଙ୍କର ନେଇଗଲା !

ତଥାପି ଲୁଚି ରହେ ନାହିଁ ଖବର । ମାମୁପୁଅ ଭାଇ କବିରାଜ ଶିନୁଭାଇନା ଦୌଡ଼ିଆସନ୍ତି ବିକଳହୋଇ ଗାଁରୁ । ନାଡ଼ୀଦେଖି ସେ ଜକର୍ଥନ ହୋଇ କାନ୍ଦିପକାନ୍ତି ବୋଲି ଭାଗୁଠାରୁ ଶୁଣେଁ । ବନ୍ଧୁ ହରିହର ମହାପାତ୍ର, ଡାକ୍ତର ବନିବହାରୀ ପଟ୍ଟନାୟକ ପ୍ରମୁଖ ଆସନ୍ତି ମୃତ୍ୟୁଖବର ପାଇ । ଅଭିଯୋଗ ହୁଏ ଡାକ୍ତରଖାନାରେ ଅବହେଳା ପୁଣି ଚିକିତ୍ସା ଅଭାବରୁ

ଏଇ ଦୁର୍ଘଟଣା ଘଟେ- ଚୋର ପଳେଇଲେ ବୁଦ୍ଧି ଦିଶେ । ସତାଚଉରାରେ ଶେଷକ୍ରିୟା । କମ୍ରେଡ୍‌ମାନେ ଡାକନ୍ତି ମୋତେ ଶ୍ମଶାନକୁ । ଗଲି ନାହିଁ, ଯେହେତୁ ଆଜି ସୁଦ୍ଧା ମୁଁ ବିଶ୍ୱାସ କରିବାକୁ ଚାହେଁନି, ମୋହ ଶବ ଶ୍ମଶାନକୁ ଯିବା ଆଗରୁ ଭାଗୁ ଶବ ଯିବ ବୋଲି । ବୋଧହୁଏ ମୋ ବିଶ୍ୱାସଟା ପୂରାପୂରି ଠିକ୍ ! ସ୍ୱାମୀ ବିଚିତ୍ରାନନ୍ଦ ଦାସ ପ୍ରମୁଖ ପରାମର୍ଶ ଦିଅନ୍ତି ମୋତେ ଶୁଦ୍ଧିକ୍ରିୟା ନିରାଡ଼ମ୍ବର ଭାବରେ କରିବାକୁ ।

ସପରିବାର ଯାଏଁ ପୁଣି ସେଇ ଆମର ଜନ୍ମସ୍ଥାନ ଗାଁ ମାଟିକୁ । ବୋଉକୁ ବୁଝାଇବା ଚେଷ୍ଟାରେ ମୁଁ କହେଁ– ତୋ'ର ଏକା ସେ ତ ପୁଅ ନୁହେଁ । ଦେଶର ଗୋଟିଏ ପୁଅ ଚାଲିଯାଇଛି– ହାହାକାର କରୁଛନ୍ତି ଦେଶବାସୀ ।

ବୋଉ ଚିତ୍କାର କରି ଉଠନ୍ତି– ତୁ ମୋତେ କି କଥା କହି ବୁଝାଇବାକୁ ଯାଉଛୁରେ । କଥାଟା ଶୁଣି ତାଙ୍କର ଏଡ଼େଟିକିଏ ହୋଇପଡ଼େ ମୁଁ ।

କ୍ଷୋଭ ଓ ଗ୍ଳାନିରେ ଜଳିଉଠେ ଛାତିଭିତରଟା ମୋର । ସତେ ମୁଁ କେଉଁ ଭାଷାରେ କେଉଁ ମୁହଁରେ ସାନ୍ତ୍ୱନା ଦେବାକୁ ଯାଉଛି ପୁତ୍ରହୀନା ମାତୃପ୍ରାଣରେ !

ଆମର ଯୌଥ ପରିବାର ଭିତରେ ଭାଗୁର ମୃତ୍ୟୁ ଯେପରି ଅବା ସବୁଠାରୁ ଗୋଟାଏ ବଡ଼ ଫାଙ୍କ୍ ସୃଷ୍ଟି କରିଦେଲା– ଯାହା ଆଉ ପୂରଣ ହେବାର ସମ୍ଭବ ନୁହେଁ ।

ଗାଁରୁ ଫେରିଆସୁଁ ସମସ୍ତେ କଟକର ସେଇ ସୂତାହାଟ 'ଭାରତୀ ତପୋବନ'କୁ । ସେଇଠୁ ପୁଣି ମୋର ଚାଲେ ଦେଶୀୟରାଜ୍ୟ ଭ୍ରମଣ ନିର୍ଘଣ୍ଟ । ପାଠ୍ୟପୁସ୍ତକ ରଚନାପାଇଁ ମଧ ବିଧିବଦ୍ଧ ଯୋଜନା ପୂର୍ବ ଗତିରେ ଚାଲିଥାଏ । ଆହୁରି ଜୁଟିଯାଏ ଆସି ଗୋଟିଏ କାମ – ଜୀବନବୀମା କମ୍ପାନୀର ସଙ୍ଗଠକ– ସେଇଭଳି ଅଯାଚିତ ଭାବରେ ।

ଦେଶୀୟ ରାଜ୍ୟ ଭ୍ରମଣରେ ମୋହଦ୍ୱାରା ଜୀବନବୀମା କାର୍ଯ୍ୟ ପ୍ରସାର ଘଟିବା ଆଶା କରି ହିନ୍ଦୁସ୍ତାନ କୋ-ଅପରେଟିଭ୍ ସୋସାଇଟିର ସ୍ଥାନୀୟ କର୍ମକର୍ତ୍ତାମାନେ ଏହି ଦିଗରେ ମୋତେ ପ୍ରବର୍ତ୍ତାନ୍ତି ।

ମୃତ୍ୟୁପରେ ଚାଲେ ଯଥାରୀତି ଶୋକସଭା ଓ ପତ୍ରପତ୍ରିକାରେ ଶୋକ ପ୍ରକାଶ । ବମ୍ବେ କଂଗ୍ରେସ କମିଟି ବୈଠକରେ 'ଭାରତ ଛାଡ଼' ପ୍ରସ୍ତାବ ଗୃହୀତ ହେବା ସଙ୍ଗେ ସଙ୍ଗେ ନେତାମାନଙ୍କୁ ଗିରଫ୍ କରି ଆଗାଖାଁ ପ୍ରାସାଦରେ ଅଜ୍ଞାତବାସ । ସେଠାରୁ ଶୋକବାର୍ତ୍ତା ଲେଖି ପଠାଇଥାନ୍ତି ଶ୍ରୀ ହରେକୃଷ୍ଣ ମହତାବ । ଶୋକବାର୍ତ୍ତାଟି ମୋର ହସ୍ତଗତ ହୁଏ ତାଙ୍କ ସାନଭାଇ ଶ୍ରୀ ଗୋପୀନାଥବାବୁଙ୍କ ଜରିଆରେ ।

ସେଥିସହିତ ଏକାଧିକ ବନ୍ଧୁଙ୍କ ଶୋକବାର୍ତ୍ତା ପାଇ ସେଗୁଡ଼ିକର ଉତ୍ତର ଦେବା ସୁଦ୍ଧା ମୋହ ପକ୍ଷରେ ସମ୍ଭବପର ହୁଏ ନାହିଁ । ଆହୁରି କେତେ ବନ୍ଧୁ ନିଜେ ଆସି ମୋତେ ସମବେଦନା ଜଣାନ୍ତି । ମନେ ପଡ଼େ, ଶ୍ରୀ ନବକୃଷ୍ଣ ଚୌଧୁରୀ ଲେଖିଥିଲେ– ଭଗବତୀର ମୃତ୍ୟୁ ଖବର ପାଇ ମୋର ମନେହୁଏ, ତାହା ବଦଳରେ ମୁଁ ହେଲେ ମରିଯାଇଥାନ୍ତି ।' 'ସମାଜ' ସମ୍ପାଦକ ରାଧାନାଥବାବୁ ମଧ ସେଇ କଥା କହନ୍ତି, ଶୋକସଭାରେ ତା'ର ସଭାପତିତ୍ୱ କରି କଟକ ଟାଉନ ହଲ୍‌ରେ । ମୋ ବୋଉ ବି ସେମିତି କାନ୍ଦନ୍ତି, ଯମ ତାଙ୍କୁ ନ

ନେଇ ତାଙ୍କ ପୁଅକୁ ଆଗ ନେବାର ଅନ୍ୟାୟ କରିଥିବା ଯୋଗୁଁ ମୋର ବି ସେମିତି ଭାବସଂକ୍ରମଣ ଜାତ ହୁଏ– ମୁଁ ତା'ର ବଡ଼ଭାଇ ହୋଇ ଆଗରୁ ନ ଯାଇ ପଛରେ ପଡ଼ିଯାଇଥିବା ହେତୁ । କିନ୍ତୁ—

''ଯମ ତ ନ ଜାଣଇ ବାଳୁତ ଯୁବା
ଜୀଇଁବୁ ବୋଲି ସଦା ପାଞ୍ଚୁଛୁ ଅବା''

ଆହୁରି ଯୁକ୍ତି– ମୁଁ ଆଗରୁ ଯାଇଥିଲେ ଭାଗୁ ବିଷୟରେ ଏତେ କଥା ଲେଖନ୍ତା କିଏ ? ପ୍ରଶ୍ନ ମଧ ଉଠେ– କାହାରି ବିଷୟରେ କିଛି ଲେଖା ନ ହେଲେ ବି ଦୁନିଆର ଯାଏ ଆସେ କ'ଣ ଅବା ! ତାହା ଭିତରେ କେଉଁ କଥା ଅବା ନ୍ୟାୟାନ୍ୟାୟ, ଉଚିତ ଅନୁଚିତ, ସେତିକି ଖୋଜିବାହିଁ ବୋଧହୁଏ ସାରକଥା– ସେଇ ଅନ୍ଧାରରୁ ଆଲୁଅକୁ ଯିବା– ତମସୋଽମାଂ ଜ୍ୟୋତିର୍ଗମୟ– ଆହୁରି ଆହୁରି ଆଲୁଅ ! ଯାହାର ତୀବ୍ରତା ଅନ୍ଧ କରିଛି !!!



# ଅଠା କାଠି ପଞ୍ଜୁରିରେ

ବାରଦୁଆର ଶୁଣ୍ଢିପିଣ୍ଡା ହୋଇ ଶେଷରେ ପୁଣି କଟକ ସହରରେ ଘରଟିଏ କରିବି କି ନାହିଁ, ସେଥିଲାଗି ମୋତେ କେତେ ଯେ ଭାବିବାକୁ ପଡ଼େ ! ବାପା ତ ତାଙ୍କ ଦିହକଟା ପୁରୀରେ କଟେଇ ଦିଅନ୍ତି । ବୋଉଙ୍କଠାରୁ ପିଲାଦିନେ ଶୁଣେ ବାପା ପୁରୀରେ ଆଇନ୍ ବ୍ୟବସାୟ କଲାବେଳେ ଲୋକେ ମାଗଣାରେ ଯାଚିଲେ ବି ସେଠାରେ ସେ ଘର କଲେ ନାହିଁ । ତାଙ୍କ ଯୁକ୍ତି ଥିଲା– ଗାଁରେ ତ ଘର ଅଛି, ଆଉ ପୁଣି ଘର ହେବ କଣ ? ଆମ ଯୁକ୍ତି ସହର ହେଲା ସଭ୍ୟତାର କେନ୍ଦ୍ର । ସ୍କୁଲ, କଲେଜ, କଚେରି ଓ ଅଫିସ ସବୁତ ସହରରେ ।

ଭାଇନା ପ୍ରଥମେ ପୁରୀ ଓ ଶେଷରେ ଭୁବନେଶ୍ୱରରେ ଘର କଲେ । ମୋ ପରିବାର ପୁରୀରେ ରହିବାରୁ ସେ ଘରଟା ନଅଣ୍ଟ ହୁଏ । ତେଣୁ ମୋ ରୋଜଗାରରୁ ମଧ ପୁରୀ ଘରକୁ ଲାଗି ଆଉ ବଖରାଏ ଡିହ କିଣା ହୋଇ ତହିଁରେ ଘର ତୋଳାଯାଏ ।

କଟକରେ ଘର କରିବାକୁ ବେଶି ଆଗ୍ରହୀ ଓ ଅଗ୍ରଣୀ ହୁଅନ୍ତି ମୋର ଗୃହିଣୀ– ମହୁଫେଣାର ରାଣୀ ମାଛି ଭଳି ବା ଉଇହୁଙ୍କାର ରାଣୀ ପିମ୍ପୁଡ଼ି ପରି । ପୁରୀ ସହରରେ ତାଙ୍କର ତ ଜନ୍ମ, ଆଉ ଚଳନି । ପୁଣି ଅପାଣାର ବୋଲି ଘରଖଣ୍ଡେ ନଥାଇ 'ଘରଣୀ' ବୋଲାନ୍ତେ କେମ୍‌ତି ସେ ? କାଠଗଡ଼ା ସାହିରେ ଶିବକୁଟୀରଂ ନିକଟରେ ଗୋଟିଏ ଖାଲଜମି ବିକ୍ରି ହେଉଥାଏ । ଜମିର ମାଲିକ ପ୍ରବର୍ତାଉଥାନ୍ତି ଖାଲଟାକୁ ପୋତିଦେଲେ ଉଲଜାଗା ବାହାରିବ ଘର କରିବାପାଇଁ ।

କଟକରେ ଏମିତି ତ କେତେ ଖାଲ ପୋତାହୋଇ ଘରତିଆରି ହେଲାଣି । ସେତେବେଳେ ଖାଲ ପୋତି ଘର ତୋଳିବା ପ୍ରଥା କିମ୍ବା ଉପାଦାନ ଏମିତି ବ୍ୟାପକ ନଥିଲା । ତହୁଁ ମୁଁ ପରାମର୍ଶ କରେଁ ଭାଗୁ ସହିତ । ସେ ତ ଗାଁ କ'ଣ, ସହର କ'ଣ ଜେଉଁଠି ହେଲେ ଘରକଥା କିଛି ବିଚାରେ ନାହିଁ ଭୁଲରେ ସୁଦ୍ଧା । ଘରଦ୍ୱାର ସଂସାର ପରିବାର ସମସ୍ତ ତା' ପକ୍ଷରେ ସହଜ ବ୍ୟାପାର । ସେମିତି ସହଜ ଭାବରେ କଥା ପ୍ରସଙ୍ଗରେ ମୋ ପ୍ରସ୍ତାବଟାକୁ ସେ ଜଣାଇ ଦିଏ ନବବାବୁଙ୍କୁ (ଶ୍ରୀ ନବକୃଷ୍ଣ ଚୌଧୁରୀ) । ତହୁଁ ତାଙ୍କ ମତାମତ ଆସି ମୋତେ ପୁଣି ସେ ଜଣାଏ ହସି ହସି – ନବବାବୁ କୁଆଡ଼େ ତାକୁ କହିଲେ, "ହଁ ସେଇ ଜାଗାଟି ସେ କିଣନ୍ତୁ, ଖୁବ୍ ଭଲ ହେବ । ଆଜିକାଲି ଇଂରେଜ ସରକାର ତ ମାଛଚାଷ ସକାଶେ ଖୁବ୍ ଉତ୍ସାହ ହେଉଛନ୍ତି । ସେ ଦିଗରୁ କିଛି ରୋଜଗାର ମଧ ତାଙ୍କର ବଢ଼ିଯିବ ଯେ ! ମୁଁ ଯେ ଟିକିଏ ମୁଣ୍ଡ ଗୁଞ୍ଜିବାପାଇଁ ଘରଖଣ୍ଡିଏ କରିବାକୁ ଲୋଡୁଥିଲି– ମାଛଚାଷ କରିବାକୁ ନୁହେଁ– ସେ ଦୁଃଖଟା କିନ୍ତୁ ନବବାବୁ କିମ୍ବା ଭାଗୁ କେହିହେଲେ ବୁଝିଲେ ନାହିଁ ।

ଇଂରେଜ ସରକାରଙ୍କ ଅମଳର ଶେଷ ପର୍ଯ୍ୟାୟରେ ସମବାୟ, କୁଟୀରଶିଳ୍ପ, ମାଛଚାଷ ଆଦି ଗ୍ରାମୋନ୍ନତି ଯୋଜନାଗୁଡ଼ିକ ଉପରେ ଖୁବ୍ ଜୋର୍ ଦିଆଯାଉଥାଏ । ସତେ ଅବା ତାହାରି ବଳରେ ଇଂରେଜ ସରକାର ଆଉ କିଛି କାଳ ଭାରତରେ ତାଙ୍କ ରାଜୁତି କରି ଥାକିଯିବେ ବୋଲି ଲୋକପ୍ରିୟ ହେବାକୁ ଏଇ ସବୁ ଉପାୟ କରୁଥାନ୍ତି !

ଘର କରିବାକୁ ଜାଗା କିଣି ତହିଁରେ ମାଛଚାଷଦ୍ୱାରା ମୋର ଆୟ ବଢ଼ାଇବାକୁ ଅବଶ୍ୟ ଲୋଡ଼ା ହୁଏ ନାହିଁ । କେତୁଟା ବର୍ଷ ଟିଉସନରେ ମାସିକ ୧୬ ଟଙ୍କା ଓ 'ଆଶା' ପତ୍ରିକା ସମ୍ପାଦନା କରି ମାସିକ ୪୦ ଟଙ୍କା ଆୟ ଭିତରେ ଚଳିଯାଏ ମୋର ସଂସାର । ସେତେବେଳେ ବାର ଚଉଦ ଟଙ୍କାରେ ତେଲ ଘିଅ ଅଟା ଚିନି ମଇଦା ମସଲା କିଣିଦେଲେ ସୁରୁଖୁରୁରେ ଗୋଟିଏ ପରିବାରର ମାସିକ ଖର୍ଚ୍ଚ ପାଇଁ ଯଥେଷ୍ଟ ।

ତହୁଁ ଆସେ ଅତି ଅପ୍ରତ୍ୟାଶିତ ଭାବରେ ଗୋଟାଏ ଭଲ ସମୟ । ଯାହାକୁ ଇଂରାଜୀରେ କହନ୍ତି ଜୀବନର Boom Period ଅର୍ଥାତ୍— 'ସ୍ଫୀତିର ଯୁଗ' । ପ୍ରତି ମଣିଷର ଜୀବନରେ ଏଇଭଳି ଗୋଟାଏ ସମୟ ଆସେ, ଯାହାକୁ ହୁଏତ ସେ କେବେହେଲେ ଆଶାକରି ନଥାଏ । କେବଳ ଧୈର୍ଯ୍ୟ-ଅସୀମ ଧୈର୍ଯ୍ୟ ବଳରେ ଏହାପାଇଁ ଅପେକ୍ଷା କରିବାକୁ ହୁଏ । ଏହି ଅବସ୍ଥା ପୂର୍ବରୁ ଜୀବନର ଘୋର ସଂକଟମୟ ପରୀକ୍ଷା ଭିତରେ ଗତି କରିବାକୁ ହୁଏ ତାକୁ । ସେ ପରୀକ୍ଷାରେ ହତାଶ ହୋଇ ଯେ ଭାଙ୍ଗିପଡ଼େ, ଜୀବନଯୁଦ୍ଧରେ ହାରିଯାଏ ସେ । ପ୍ରତ୍ୟେକ ବ୍ୟବସାୟୀ, ବୁଦ୍ଧିଜୀବୀ ଏମିତି କି ପ୍ରତି ମଣିଷ ହିଁ ଜୀବନ-ଯୁଦ୍ଧର ଏହି ବିଜୟପାଇଁ ପ୍ରସ୍ତୁତ ହେବା ଲୋଡ଼ା ବୋଲି ମୋର ବିଶ୍ୱାସ ଜନ୍ମିଛି ନିଜ ଅଙ୍ଗେନିଭା ଘଟଣାବଳୀରୁ । ସେହି କାରଣରୁ ହିଁ ନୈରାଶ୍ୟବାଦର ସ୍ଥାୟିତ୍ୱ କେବଳ ସାମୟିକ ବୋଲି ମୋର ଦୃଢ଼ ବିଶ୍ୱାସ । ମୋ ଜୀବନପାଇଁ ଏଇ ସନ୍ଧିସମୟଟା ବଢ଼ି ଯିବାପରେ ହିଁ ଫିଟିଯାଏ ପୁଣି ଅପ୍ରତ୍ୟାଶିତ ଭାବରେ ତିନିଟା ବଡ଼ ରାସ୍ତା ଅର୍ଥାଗମ କ୍ଷେତ୍ରରେ– ପାଠ୍ୟପୁସ୍ତକ ରଚନା, ପୂର୍ବାଞ୍ଚଳ ଦେଶୀୟ ରାଜ୍ୟ ପ୍ରଚାର ସଂସ୍ଥା ଓ ସେଥିସଙ୍ଗେ ଜୀବନବୀମା ବ୍ୟବସାୟ । କେବଳ ଧୈର୍ଯ୍ୟ ଧରିବାଦ୍ୱାରା ହିଁ

ଆପେ ଆପେ ଲକ୍ଷ୍ମୀ ଯେପରି ମୋହ ପ୍ରତି ପ୍ରସନ୍ନା ହୋଇ ଉଠନ୍ତି । କେଉଁ ଅଦୃଶ୍ୟ ଅଚିନ୍ତନୀୟ ଲୋକରୁ ।

ନିଜେ କେବେହେଲେ ମୁଁ ତାହା ତ ଖୋଜି ଲୋଡ଼ି ଯାଇ ନାହିଁ; ଅଥଚ ଖୋଜିଲୋଡ଼ି ଗଲାବେଳେ କେବଳ ହତାଶା ଛଡ଼ା ଆଉ ମୋର କୌଣସି ପ୍ରାପ୍ୟ ସମ୍ବଳ ନଥିଲା । ଏହି ତିନି ଗୋଟି ସଂସ୍ଥାର କର୍ମକର୍ତ୍ତାମାନେ କିନ୍ତୁ ଛାଏଁ ଆସି ବାରମ୍ବାର ମୋତେ ଅନୁରୋଧ ତୋଷାମଦ କରି ଡାକନ୍ତି ଅବା ତାଙ୍କୁ ମୁଁ ଅନୁଗୃହୀତ କରିବାପାଇଁ ! ଆଉ ସେଇ ଅନୁଗ୍ରହର ଅର୍ଥ କେବଳ ଅର୍ଥଉପାର୍ଜନ– ଶହେ କି, ଦୁଇ ଶହ ନୁହେ, ହଜାର ହଜାର !

ପାଠ୍ୟପୁସ୍ତକ ପ୍ରକାଶକମାନେ ଘରକୁ ଆସି ଯାଚିଦେଇ ଯା'ନ୍ତି ଅର୍ଥ । ସେଥିଲାଗି ପୁଣି କେତେ ଯେ ଅନୁରୋଧ ଅନୁନୟ –

''ଘୋଡ଼ା ନେ, ହାତୀ ନେ
ମୋ ପେଁକାଳି ବଜାଇ ଦେ !''

ହିନ୍ଦୁସ୍ଥାନ ଜୀବନବୀମା କମ୍ପାନୀରେ ମୋର ସହକର୍ମୀମାନେ ବିସ୍ମିତ ହୁଅନ୍ତି– ସେ କ୍ଷେତ୍ରରେ ମୋର ଆଶାତୀତ ସାଫଲ୍ୟ ଲକ୍ଷ୍ୟ କରି । କଟକରେ ହିନ୍ଦୁସ୍ଥାନ କୋ-ଅପରେଟିଭ ଇନ୍‌ସ୍ୟୁରାନ୍‌ସ କମ୍ପାନୀ ପ୍ରତିଷ୍ଠା କାଳରୁ ଏହା ଉଲ୍ଲେଖଯୋଗ୍ୟ ହୋଇ ରହେ । କେବଳ କଳାହାଣ୍ଡି ମହାରାଜ ଶ୍ରୀ ପ୍ରତାପକିଶୋରୀ ଦେଓଙ୍କ ଜୀବନବୀମା ଦୁଇ ଲକ୍ଷ ଟଙ୍କାରୁ ସଙ୍ଗେ ସଙ୍ଗେ ଏଜେଣ୍ଟ କମିଶନ ମୁଁ ପାଏଁ ଚାରିହଜାର । ତହୁଁ କଟକରେ ସ୍ଥାୟୀଭାବେ ବସବାସ କରି ରହିବା କଳ୍ପନା ମୋର ବାସ୍ତବ ରୂପରେଖ ଘେନିବାକୁ ଯାଏ ।

ଜ୍ୟେଷ୍ଠ ଦିବ୍ୟସିଂହ ଓ କନିଷ୍ଠ ଭଗବତୀଙ୍କ ଜୀବିତାବସ୍ଥାରେ ହିଁ ପିଠାପୁରରେ ଖରିଦ୍ କରିଥାଏଁ ଖଣ୍ଡିଏ ଜାଗା । ତାହା ଅବଶ୍ୟ ସ୍ୱପତ୍ନୀଙ୍କ କଷ୍ଟସଞ୍ଚିତ ଅର୍ଥରେ । ସେହି ଜାଗାଟି ମୋର ଦୁଇଭାଇ ମଧ୍ୟ ବୁଲିଦେଖି ଯାଇଛନ୍ତି କିନ୍ତୁ ସେଠାରେ ଘରକରିବାର ପ୍ରାରମ୍ଭ ପର୍ଯ୍ୟନ୍ତ ଦୁହିଁଙ୍କମଧ୍ୟରୁ କେହିହେଲେ ଜୀବିତ ରହି ପାରିଲେନି, କେବଳ ମୋର ବୋଉ ଓ ଭଉଣୀଙ୍କ ବ୍ୟତୀତ । ବୋଉହିଁ ଅବଶେଷରେ ରହିଯାନ୍ତି ତିନୋଟି ପରିବାରର ପ୍ରଧାନ ଯୋଗସୂତ୍ର ହୋଇ । ପିଠାପୁରରେ ଘରତୋଳାଇ ସୂତାହାଟ ଭଡ଼ାଘରୁ ବିଦାୟ ନିଏଁ ୧୯୪୬ ଖ୍ରୀଷ୍ଟାବ୍ଦ ଶେଷଭାଗରେ । ମନଭିତରେ ସବୁଠାରୁ ବେଶି ସନ୍ତୋଷ ଓ ଉତ୍ସାହ ମିଳେ– ମୋ ବୋଉଙ୍କର ମାନସିକ ତୃପ୍ତିରେ । ସ୍ୱାମୀ, ଦୁଇ ପୁତ୍ର ଓ ଦୁଇ କନ୍ୟାଙ୍କୁ ହରାଇ ବୋଉଙ୍କ ମନ ଯେମିତି ଭାଙ୍ଗି ପଡ଼ିଥିଲା, ମୋ ଘରଟା ଅବା ସେ ମନକୁ ଟିକିଏ ଦମ୍ଭ ଆଣିଦେଲା ଭଳି ସହାୟକ ହୁଏ । ଯେଉଁ ବୋଉକୁ ମୋର ପିଲାଦିନୁ ଦଣ୍ଡେ ପାଖଛଡ଼ା କରୁ ନଥିଲି, ତାଙ୍କ ତୃପ୍ତିରେ ଆଶ୍ୱାସନା ପାଏଁ କଟକରେ ଘରଖଣ୍ଡିଏ କରି । ତାହାହିଁ ବୋଧହୁଏ ମୋ ଜୀବନର ଏକ ପ୍ରଧାନ ସାର୍ଥକତା ଭଳି ।

ମୋ ମନରେ କିନ୍ତୁ କାହିଁକି କେଜାଣି ଅଳ୍ପ ବହୁତ ସେଇ ଘରଛଡ଼ା ପ୍ରକୃତିଟା ବରାବର ବେଷା ବାନ୍ଧି ରହିଗଲା ଓଡ଼ିଆ 'ଶରୀରଭେଦ ଭଜନ'ର ପୁରୁଣା ପଦଟା ପିଲାଦିନୁଁ ଶୁଣି କି ବ'ଣ !—

''ଓଲଟ ବୃକ୍ଷେ ଖେଳୁଛି ଲୋଟଣୀ ପାରା,
ଅଠାକାଠି ପିଞ୍ଜରାରେ ନ ଦିଏ ଧରା ।''

'ପଞ୍ଜରା', ପିଞ୍ଜରା' ବା 'ପଞ୍ଜୁରୀ' ଶବ୍ଦର ପ୍ରୟୋଗ ନାନା ରୂପେ ଦେଖୁଁ ଆମ ସାହିତ୍ୟରେ– ଯେମିତି 'ମନବୋଧ ଚଉତିଶା'ରେ କବି ଭକ୍ତଚରଣଙ୍କର

''ଖଣ୍ଡି ଯେ ଖଣ୍ଡି ତୋ'ର ପଞ୍ଜରା କାଠି
ଖାଉଣଥିବେ ଶ୍ୱାନ ଶୃଗାଳ ବାଣ୍ଟି ।''

ଆହୁରି ସ୍ୱୟଂ ଜଗନ୍ନାଥ ଦାସଙ୍କ ଭାଗବତ ଦଶମ ସ୍କନ୍ଧରେ ମଧ–

''ଅସ୍ଥି ପଞ୍ଜରା ଚାରିପାଶେ ।
ଛାଉଣି ନଖ ଲୋମ କେଶେ ॥''

'ଶରୀରଭେଦ ଭଜନ', 'ମନବୋଧ ଚଉତିଶା' ଆଦି କେଉଁ କାଳରୁ ଯେ ଆମ ଦେହ ପୁଣି ମନକୁ ଭେଦକରି ବୁଝାଇ ଶୁଝାଇ ଆତ୍ମା ପର୍ଯ୍ୟନ୍ତ ଆମକୁ ଝିଙ୍କିନେବା ଉଦ୍ୟମ କରି ଆସିଛନ୍ତି, କିଏ କଳିବ ତାହା ପ୍ରକୃତରେ ? ଯୁଗ ଯୁଗ ଧରି ଆମର ଅସ୍ଥିମଜ୍ଜାଗତ ଏଇ ବୈରାଗ୍ୟକୁ ଏଡ଼ିଦେଇ ଆଧୁନିକ ବାସ୍ତବବାଦୀ କରି ମନଟାକୁ ଗଢ଼ିବା କ'ଣ ସହଜ ବ୍ୟାପାର ? ମୋର ପୁଣି ସ୍କୁଲଛାତ୍ର ଥିବା ସମୟରୁ ଯେ ବୈରାଗ୍ୟ ବ୍ୟାଧିର ଉପୁରି !

ଭାରତବର୍ଷର ମନସ୍ତତ୍ତ୍ୱ ଭିତରେ ଏଇ ବୈରାଗ୍ୟହିଁ ତାହାକୁ ଯୁଗଯୁଗବ୍ୟାପୀ ବାହାର ଶତ୍ରୁ ଆକ୍ରମଣଦ୍ୱାରା ପରାଧୀନ ରଖି ଆସିଥିଲେ ମଧ ସ୍ୱାମୀ ବିବେକାନନ୍ଦନଙ୍କଠାରୁ ଆରମ୍ଭ କରି ଯୋଗୀ ଅରବିନ୍ଦ ଓ ମହାତ୍ମାଗାନ୍ଧୀଙ୍କ ପର୍ଯ୍ୟନ୍ତ ସେଇ ବୈରାଗ୍ୟ ବଳରେହିଁ ଯେମିତି ଅବା ହୃତ ଗୌରବ ସ୍ୱାଧୀନତାକୁ ଫେରାଇ ଆଣିଲେ । ଏହା ଯେପରି ଭାରତର ଏକ ଆଶ୍ଚର୍ଯ୍ୟ ମ୍ୟାଜିକ୍ ସାରା ଦୁନିଆର ଇତିହାସରେ ।

'ଶରୀରଭେଦ ଭଜନ'ର ମର୍ମ ହେଲା– ଦେହ ଓ ମନକୁ ଭେଦକରି ଦେହାତୀତ ଆତ୍ମଦର୍ଶନ । ଓଡ଼ିଆ ଭଜନ ଯେଉଁମାନେ ରଚନା କରିଛନ୍ତି, ସେମାନଙ୍କ ସାହିତ୍ୟ ସାଧନାର କି ଅପୂର୍ବ ବିକାଶ ! ସେଥି ସହିତ ଆଧୁନିକ ସାହିତ୍ୟର ଚିନ୍ତାଧାରା ଓ ପରିପ୍ରକାଶ ତୁଳନା କଲେ ମୁଣ୍ଡ ଯେପରି ଛାଏଁ ତଳକୁ ନଇଁପଡ଼େ, ମନ ଯେପରି ସିଂହାବଲୋକନ କରେ ଓଡ଼ିଆ ସାହିତ୍ୟର ମୂଳଦୁଆ ଭିତରକୁ । ମହାନ୍ ଭାରତୀୟ ଉପନିଷଦର ବାଣୀ ଓ ବିଚାରଧାରାର ତାହା କି ଅପୂର୍ବ ସହଜ ସରଳ ପ୍ରକାଶ ! କେଉଁ କବି, କେଉଁ ଭାବକୁ ଆଜି ଆପଣାକୁ ଆଧୁନିକ ବୋଲି ତାଙ୍କ ପାଖରେ ବାହାସ୍ଫୋଟ ମାରିବାକୁ ସାହସୀ ହେବ ସତେ ?

ଭାରତୀୟ ଦର୍ଶନର ଚରମ ସୃଷ୍ଟି ଉପନିଷଦ-ରୂପ ଗାଭୀକୁ ଦୋହନ କରି ଗୋପାଳନନ୍ଦନ ଶ୍ରୀକୃଷ୍ଣ 'ଶ୍ରୀମଦ୍ ଭଗବତ୍ ଗୀତା'ର ପଞ୍ଚଦଶ ଅଧ୍ୟାୟ ଆରମ୍ଭରେ ଯାହା ଉଚ୍ଚାରଣ କରିଛନ୍ତି– ଅତି ସହଜ ସରଳ ଭାଷାରେ ଓଡ଼ିଆ ଭଜନକାରଙ୍କର ସେଇ ଉକ୍ତି ଯେମିତି ଝରିପଡ଼ିଛି ଏହି 'ଓଲଟବୃକ୍ଷ' ଭଜନରେ–

''ଊର୍ଦ୍ଧ୍ୱ ମୂଳମଧଃଶାଖମଶ୍ୱତ୍ଥଂ ପ୍ରାହୁରବ୍ୟୟମ୍ ।
ଛନ୍ଦାଂସି ଯସ୍ୟ ପର୍ଣାନି ଯସ୍ତଂ-ବେଦ ସ ବେଦବିତ୍ ॥''

ଅଶ୍ୱତ୍‌ଥ ବୃକ୍ଷର ଏଇ ବର୍ଣ୍ଣନା ଯେପରି ଅବା ଛଣାହୋଇ ଆସି ଅଖ୍ୟାତନାମା ଓଡ଼ିଆ ଭଜନକାରଙ୍କ 'ଓଲଟବୃକ୍ଷେ' ଭଜନଟିରେ ପ୍ରକଟିତ । ଗୀତାରେ ଏହି ଅଶ୍ୱତ୍‌ଥ ବିଶ୍ୱସୃଷ୍ଟିରୂପ ବୃକ୍ଷର ମୂଳକୁ ଊର୍ଦ୍ଧ୍ୱରେ ଏବଂ ଶାଖାଗୁଡ଼ିକୁ ନିମ୍ନରେ କଳ୍ପନା କରାଯାଇ 'ଓଲଟବୃକ୍ଷ' ରୂପେ ଏକ ଅବ୍ୟୟ ଅକ୍ଷୟ ଚିତ୍ର ଅଙ୍କିତ ହୋଇଛି–ସେଇ ଅଶ୍ୱତ୍‌ଥ ବୃକ୍ଷର ପତ୍ରଗୁଡ଼ିକ ଜ୍ଞାନ ଅର୍ଥାତ୍ ବେଦରୂପେ ବର୍ଣ୍ଣିତ । ପୁଣି ଉକ୍ତ ଜ୍ଞାନରୂପୀ ବୃକ୍ଷର ନିମ୍ନରେ ଅବସ୍ଥିତ ସେଇ ବେଦ ବା ବୁଦ୍ଧି ସାହାଯ୍ୟରେ ଊର୍ଦ୍ଧ୍ୱଗାମୀ ହେଲେ ସୃଷ୍ଟିର ମୌଳିକ ତତ୍ତ୍ୱରେ ପହଞ୍ଚିବାକୁ ହୁଏ । ସ୍ୱରାଜ୍ୟକୁ ଜନ୍ମଗତ ଅଧିକାର ଭାବରେ (Swaraj is my birthright) ପ୍ରଥମ ଘୋଷଣା କରିଥିବା ଲୋକମାନ୍ୟ ବାଳଗଙ୍ଗାଧର ତିଳକଙ୍କର ପ୍ରଖ୍ୟାତ 'ଗୀତା ରହସ୍ୟ'ରେ ସାଂଖ୍ୟ ଦର୍ଶନର ଦୃଶ୍ୟମାନ ବିଶ୍ୱପ୍ରକୃତି ରୂପେ ଓ ବେଦାନ୍ତ ଦର୍ଶନରେ ମାୟାବାଦର ବ୍ୟାଖ୍ୟା ରୂପେ ବର୍ଣ୍ଣନାଟି ଅବା ଅତି ଅଦ୍ଭୁତ ଭାବରେ ସହଜ ସରଳ ଓଡ଼ିଆ ଭାଷାରେ ଭଜନକାରଙ୍କ ଛନ୍ଦୋମୟ ରଚନାରେ ଅପୂର୍ବ ଭଙ୍ଗୀରେ ପରିସ୍ଫୁଟ ବିଶ୍ୱସୃଷ୍ଟିକୁ 'ଓଲଟ ବୃକ୍ଷ' ଓ ଆତ୍ମାକୁ 'ଲୋଟଣି ପାରା' କରି, ଆଉ ସେଇ ଭାବରୁ କାଣିଚାଏ ହୁଏତ ଅଜ୍ଞାତରେ ମୋର କଲେଜ ଛାତ୍ର ଅବସ୍ଥାରେ 'ଲୋଟଣୀ ପାରା' କବିତାରେ କିଞ୍ଚିତ୍ ଛାଞ୍ଚ ଢାଳିଛି ଛିଟିକି ପଡ଼ି !

ସେଥିଲାଗି ପିଠାପୁରରେ ଘରଟା ତୋଳିବା ଆଗରୁ ଯେମିତି ମୁଁ ଛଟପଟ ହେଉଥିଲି, ତୋଳିସାରି ତାହା ଭିତରେ ଆପଣାକୁ ବନ୍ଦୀକରି ରଖିବାରୁ ହେଲି ତହୁଁ ବଳି ଛଟପଟ । ତହୁଁ ବଳି ଯେମିତି ନିଜକୁ ପୁଣି ଦୁନିଆକୁ ବୁଝିବା ହେଲା ମୋହ ପକ୍ଷରେ ବେଶି କଷ୍ଟକର । ବେଶି କଷ୍ଟକର ହେଲା ବୁଝିବାକୁ 'ଆତ୍ମାନମ୍ ବିଦ୍ଧି' ଅଥବା 'ଆତ୍ମବତ୍ ମନ୍ୟତେ ଜଗତ୍' କଥାଗୁଡ଼ିକୁ, ଯାହା ବୁଝିବାକୁ ଲୋକେ ଘରସଂସାର ଛାଡ଼ି ବନବାସୀ ହୁଅନ୍ତି, ଅତୀତରେ— ଯେଉଁ ଭାବକୁ ଆଧୁନିକ ମଣିଷ ପୁରୁଣାକାଳିଆ ବୋଲି ବିଚାର କରେ । ଅଥଚ ଯାହାଠୁଁ ବଳି ଓଜନଦାର କଥା ଜୀବନରେ ଆଉ କିଛି ନାହିଁ ।

ନୂଆ ପୁରୁଣାର ସେଇ ଦ୍ୱନ୍ଦ୍ୱ– ପୁଣି ମନକୁ ମୋର ଲଟେରି ଟିକଟ ସବୁ ଚାରିଆଡୁ ଆସି ଗୋଟାଏ ଥାନରେ ଘାଣ୍ଟି ହେଲାଭଳି ବୋଧହୁଏ ଘାଣ୍ଟିପକାଏ ବେଶି ବେଗରେ— ଯେତେବେଳେ ଘରତୋଳା ସଙ୍ଗେ ସଙ୍ଗେ ପାଏଁ ଇନ୍‌କମ୍ ଟାକ୍‌ସ ନୋଟିସ୍ ! ଅର୍ଥାତ୍ ସରକାରୀ ଦପ୍ତରରେ ମୋର ଆୟ ବ୍ୟୟ ଦାଖଲ କରିବାକୁ ପଡ଼ିବ ! ସେତିକିବେଳେ ମନେପଡ଼େ ଛାତ୍ର ଅବସ୍ଥାରେ ପଣ୍ଡିତ ଗୋପବନ୍ଧୁଙ୍କ ପରାମର୍ଶ– ଦୈନିକ ଜମାଖର୍ଚ୍ଚର ହିସାବ ଟିପିବା ପାଇଁ । ତାଙ୍କ ପରାମର୍ଶରେ ଅବଶ୍ୟ ଇନ୍‌କମ୍ ଟିକସର ପରିକଳ୍ପନା ନଥିଲା କିମ୍ବା ନଥିଲା ଆୟକର ଅଫିସକୁ ଧାଁ ଧପଡ଼ କରିବା ଭଳି ଲଜ୍ଜାକର ଘଟଣା । କାରଣ ସେତେବେଳେ ଅଧିକ ଆୟ କରିବାଟା ମୋତେ ବୋଧହୁଏ ଚୋରି ଡକେଇତି କଲା ଭଳି ଅବିକଳ ! ଆଜି ପୁଣି ଦେଖୁଛି, ସେଇ ଆୟକର ଫାଙ୍କି ଦେବାଟା ଭାରତୀୟ ଅବା ଓଡ଼ିଶା ନେତୃତ୍ୱକୁ ଅଧିକ ପରିସ୍ଫୁଟ କରିବାର ପ୍ରଧାନ ଲକ୍ଷଣ ପରା !

ଭାରତ ସ୍ୱାଧୀନତାର ପୂର୍ବବର୍ତ୍ତୀ ଯୁଗ ଇଂରେଜ ସରକାର ଅମଳରେ କୌଣସି ଭଡ଼ାଘରେ ମୁଁ ରହିଥିବା ସମୟରେ ଘର ଖାନ୍‌ତଲାସି ହୋଇ ନଥିଲା । ପିଠାପୁର ଘର

ତୋଳାହେବା ପରେ ଶ୍ରୀମତୀ ସରଳାଦେବୀ ତାହାର ନାମକରଣ କରିଥିଲେ 'ସ୍ୱପ୍ନପୁରୀ' ମୋର ପିତାଙ୍କ ନାମାନୁଯାୟୀ । ସେହି 'ସ୍ୱପ୍ନପୁରୀ'ରେ ସ୍ୱପ୍ନ ମୋର ଭାଙ୍ଗିଦେବାକୁ ବୋଧହୁଏ ସେତେବେଳର ନୂଆ କଂଗ୍ରେସ ସରକାର ଘେରାଉ ଖାନ୍‌ତଲାସି ଆଦେଶ ଦିଅନ୍ତି ।

ବୁଝିପାରେ ନାହିଁ ହଠାତ୍ ମୋହ ପ୍ରତି କଂଗ୍ରେସ ସରକାରଙ୍କର ସ୍ୱାଧୀନ ଭାରତରେ ଏଭଳି ଆକସ୍ମିକ ସମ୍ମାନ ପ୍ରଦର୍ଶନର ଉଦ୍ଦେଶ୍ୟ; ଯେଉଁ କଂଗ୍ରେସ ଓ ଗାନ୍ଧୀଙ୍କର ମୁଁ ପିଲାଦିନୁଁ ଜଣେ ସ୍ତାବକ । ସ୍ୱାଧୀନତା ପରେ ଅବଶ୍ୟ ଯେଉଭଳି ଜାତୀୟ ସରକାର ଗଢ଼ାଗଲା, ମୁଁ ତାହାର କେତେକ କଡ଼ା ସମାଲୋଚନା କରେଁ ସମାଜବିରୋଧୀ ନୂଆ କଂଗ୍ରେସ ସରକାରଙ୍କ କ୍ରିୟା କଳାପରେ ପ୍ରତିକ୍ରିୟାଶୀଳ କର୍ମପନ୍ଥା ବିରୋଧରେ– ସ୍ୱାଧୀନ ଭାରତର ଓଡ଼ିଶା ରାଜ୍ୟ ସହିତ ଇଂରେଜ ସାମ୍ରାଜ୍ୟର ଦେଶୀୟ ରାଜ୍ୟଗୁଡ଼ିକ ମିଶିଲା ନାହିଁ ଯେ ଓଡ଼ିଶା ତମାମ ଗଡ଼ଜାତ ଶାସନ ବ୍ୟାପିଗଲା ସେଇଭଳି ଆଭିମୁଖ୍ୟ ଘେନି । ଫଳରେ ପୋଲିସ ଘେରଭିତରେ ଘରଟିର ଭିତର ବାହାର ଖୋଜାହୋଇ ଶେଷରେ ମୋର ବିଡ଼ାଏ ପାଣ୍ଡୁଲିପିଧରି ସେମାନେ ହୁଅନ୍ତି ବିଦାୟ । ଅସଲ ଅଭିପ୍ରାୟଟା ସରକାରଙ୍କର ବୋଧହୁଏ ସେତେବେଳେ କଂଗ୍ରେସର ମଧ୍ୟଯୁଗୀୟ ଆଭିମୁଖ୍ୟ ବିରୋଧୀ ସମାଲୋଚନା ପ୍ରତି ମୋର ପ୍ରକାଶ୍ୟ ସମର୍ଥନ ।

ପାଣ୍ଡୁଲିପିଟି ଯେ ମୋର କେବଳ ଓଡ଼ିଆଭାଷାରେ ଲିଖିତ ଉପନ୍ୟାସ 'ଲୁହାର ମଣିଷ'– ତାହା ବୁଝାଇବାପାଇଁ ସେତେବେଳେ ମୋତେ ଯିବାକୁ ହୁଏ କଟକ ପୋଲିସ୍ ଅଫିସ୍‌କୁ । ସେହିଠାରେ ଭେଟ ହୁଏ ଅନ୍ୟତମ ପୋଲିସ କର୍ମଚାରୀ ସାହିତ୍ୟିକ ଶ୍ରୀ ଲକ୍ଷ୍ମୀନାରାୟଣ ମହାନ୍ତିଙ୍କ ସହିତ । ଲକ୍ଷ୍ମୀନାରାୟଣବାବୁ ମୋହ ପ୍ରତି ଅନୁକମ୍ପା ପ୍ରଦର୍ଶନ କରି ଫେରସ୍ତ ଦିଅନ୍ତି ପାଣ୍ଡୁଲିପିଟିକୁ । 'ସ୍ୱପ୍ନପୁରୀ'କୁ ଥରେ ସାଥୀ ଶ୍ରୀ ଶରତ୍ ପଟ୍ଟନାୟକ ଓ ଗୁରୁଚରଣ ପଟ୍ଟନାୟକ ଆସ ମୋତେ ପଚାରନ୍ତି ''ଘରଟିର ନାମ 'ସ୍ୱପ୍ନପୁରୀ' କାହିଁକି ?'' ଉତ୍ତର ଦିଏଁ, ତାହାର ଇଂରାଜୀ ନାମାନ୍ତର— "Fool's Paradise" (ମୂର୍ଖର ସ୍ୱର୍ଗ) ଦୁହିଁଙ୍କ ହାସ୍ୟରୋଳ ଉଦ୍ରେକକରି । ଅନେକ ସମୟରେ ଭାବେ, ମୋହ ଭଳି ଜଣେ ନିରୀହ ନିର୍ଦ୍ଦୋଷ ଲେଖକ ଉପରେ ସମ୍ପୂର୍ଣ୍ଣ ସ୍ୱାଧୀନ ଭାରତରେ ଓଡ଼ିଶା ସରକାରଙ୍କର ସବୁବେଳେ ଏମିତି କଡ଼ା ନଜର କାହିଁକି ? ମୋତେ ସନ୍ଦେହ କରିବାର ଯଥେଷ୍ଟ କାରଣ ଅବଶ୍ୟ ରହିଥାଏ । ସେତେବେଳେ ତମାମ୍ ଭାରତବର୍ଷରେ କମ୍ୟୁନିଷ୍ଟମାନଙ୍କ ହିଂସାତ୍ମକ ବୈପ୍ଳବିକ ପନ୍ଥାର ଅବସାନ ଘଟିବା ପରିବର୍ତ୍ତେ ତାହା ଯେପରି ଆହୁରି ତେଜି ଉଠିଥାଏ । ହୁଏତ କମ୍ୟୁନିଷ୍ଟମାନଙ୍କର ବିଜ୍ଞାନରେ ସେହି ମଉକାରେ ଦେଶକୁ ପୂରାପୂରି ରୁଷ୍ କିମ୍ବା ଚୀନ ଭଳି କରିଦେବା ବିଶ୍ୱାସ ଦୃଢ଼ତର ହୋଇଉଠେ । ଆହୁରି ଦୃଢ଼ତର ହୁଏ–ଚୀନର ଅଚାନକ ମାର୍କସବାଦୀ ସରକାର ଗଠନ ବ୍ୟାପାରରେ ।

ଆମ ଯୌଥ ପରିବାରଟିର ପୂରାଦାୟିତ୍ୱ ମୋ ଉପରେ ପଡ଼ିଥିଲେ ସୁଦ୍ଧା ଝୁଙ୍କଟା ଥାଏ ମୋର ପ୍ରଗତିଶୀଳ ମନୋଭାବ ପ୍ରତି ଅନୁକୂଳ । କନିଷ୍ଠ ଭାଇର ଅକାଳ ବିୟୋଗ ଯେମିତି ସେଇ ଝୁଙ୍କକୁ ତେଜି ଦେଇଥାଏ ଆହୁରି ବେଶି ପରିମାଣରେ । ସେତେବେଳର ଅନେକ ଲେଖା ମଧ୍ୟ ମୋହର ଚରମବାଦୀ ଆଭିମୁଖ୍ୟ ଘେନିଥାଏ । ବହୁ ପୂର୍ବରୁ 'ପୁରୀମନ୍ଦିର'

କବିତା, ପରେ ପୁଣି 'ନବଯୁଗ-ସାହିତ୍ୟ-ସଂସଦ'ର ଉଦ୍‌ଘାଟନ ଭାଷଣ ଆଦି ରଚନା ଓ ଗଳ୍ପ କବିତା ପ୍ରବନ୍ଧାଦିରେ ସୂଚିତ ହୁଏ ମୋର ପ୍ରଗତିଶୀଳ ଭାବଧାରା ।

ଘର ଭିତରେ କମ୍ୟୁନିଷ୍ଟ ବନ୍ଧୁମାନଙ୍କର ଯାତାୟାତ ସଙ୍ଗେ 'ଭାଗୁ' ବଞ୍ଚିଥିବା ସମୟରୁ ସେହି ଦିଗରେ 'କୁନି'ର ଝୁଙ୍କଟା ଦୁନିଆ ଆଖିକୁ ପୁଣି ଅତି ନିକଟରେ ଓଡ଼ିଶାର କଂଗ୍ରେସ ସରକାର ଆଖିକୁ ମଧ୍ୟ ଏଡ଼ି ରହନ୍ତା କିପରି ?

ଆମ ଯୌଥ ପରିବାର ଭିତରେ ବାରିପଦାଠାରୁ ଆରମ୍ଭ କରି କଟକ ପର୍ଯ୍ୟନ୍ତ ଯେଉଁ ମରଣ ରୋଶଣି ପଛକୁ ପଛ ଲାଗିରହି ଚାଲେ– ବାରିପଦାରେ ପ୍ରଥମେ ବାପା ଓ ତାଙ୍କ ପରେ ଭାଉଜ ଭାଇନା ପୁଣି ସେଠାରୁ କଟକ ଆସି ଭାଗୁର ମଧ୍ୟ ମୃତ୍ୟୁ–ତାହା ଫଳରେ ମୋହ ସମେତ ତିନୋଟି ପରିବାରଙ୍କ ଦାୟିତ୍ୱ ମଝିରେ ରାଜନୀତିର ବିପ୍ଳବାତ୍ମକ ତାଣ୍ଡବ ଲୀଳା । ସେହି ଅବସ୍ଥାରେ ମଧ୍ୟ କୁନି ଦିନେ ଆସି ପଚାରେ— 'ବାପା ! କମ୍ୟୁନିଷ୍ଟମାନେ ମୋତେ ଡାକୁଛନ୍ତି, ପାର୍ଟିରେ ତାଙ୍କର କାମ କରିବାକୁ ଯିବି ?'

ଏ ପ୍ରଶ୍ନରେ ତା'ର ଆପତ୍ତି କରିବାକୁ ତ ମୋର କିଛି ନଥିଲା । ଭାଗୁର ବିୟୋଗ ପରେ ଘର ଭିତରେ ମୋର ଡାହାଣ ହାତଟା ଛିଣ୍ଡିଗଲା ଭଳି ଲାଗୁଥାଏ । କୁନି ତ 'ମୁକ୍ତିଯୁଦ୍ଧ'ରେ ଲେଖିବା ସମୟରୁ ଜଣାପଡ଼ିଥାଏ, ଭାଗୁ ତାଲିମରେ ତା'ର ଉଗ୍ର ରାଜନୈତିକ ମତବାଦ ।

ସେ ଦିନ ଏଇ ପ୍ରଶ୍ନ ତା'ଠାରୁ ଶୁଣି କି ଉତ୍ତର ଦେବି ଠିକ୍ କରି ପାରିନଥିଲି । କଲେଜରେ ସେ ଆଇ.ଏସ୍‌ସି ପଢୁଛି– ପଚାରିଥିଲି ହୁଏତ— ''ତୋ ପଢ଼ାରେ କିଛି ବାଧା ହେବନି ତ ?''

''ନା— କିଛି ଅସୁବିଧା ହେବନି ।'' ମୋର ମଧ୍ୟ ସେଇ ବିଶ୍ୱାସ ଦୃଢ଼ ରହିଥିଲା ।

ତହୁଁ ଆଗ ପଛକୁ ଆଦୌ ନ ବିଚାରି 'ହଁ' କରିଦେଲି ତା' କଥାକୁ ।

ଜାଣି ତ ନଥିଲି ମୋର ସେଇ 'ହଁ' ଟା ପରିଣାମରେ ମୋତେ ଏତେ ଭୀଷଣ ବିପଦର ସମ୍ମୁଖୀନ କରି ପକାଇବ ବୋଲି ! ଘରେ ସବୁ କଠିନ କାମ ତୁଲାଇବାରେ ଆଉ ମୋର ପାଠ୍ୟପୁସ୍ତକ ଲେଖାରେ ସବୁବେଳେ ସାହାଯ୍ୟ କରିବାରେ 'କୁନିର'ତ କିଛି ତ୍ରୁଟି ନ ଥାଏ– କି ରାଜନୀତି ଅବା କରିବ ସେ ଏତେ କମ୍ ବୟସରେ ! ପୁଣି କଲେଜ ଛାତ୍ର ଅବସ୍ଥାରେ ରହି ମଧ୍ୟ ! କ'ଣ କରୁଛି କରୁ । ରାଜନୀତିକୁ ଏମିତି ହାଲୁକା ବିଚାର କୁନିକୁ ସିନା 'ହଁ'ଟା ମାରିଦେଲି ମୋ ଧାରଣାଟା ତା' ବିଷୟରେ ପୂରାପୂରି କିନ୍ତୁ ଭୁଲ୍ ବୋଲି ପ୍ରମାଣିତ ହୋଇଯାଏ । ସବୁକାମ ତୁଲାଇ ମଧ୍ୟ ସେ ମନ ପ୍ରାଣ ଢାଳିଦିଏ ରାଜନୀତିରେ । କଲେଜ ଛାତ୍ର ଆନ୍ଦୋଳନରେ ଆଗୁଆ ହୋଇ ତା'ର ସାଙ୍ଗସାଥୀଙ୍କ ଉତ୍ପାତରେ ଘରଟାରେ ଗହଳ ଚହଳ ଲାଗିରହେ । ସେଇଠୁ ଆସି ଘରକାମ, ମୋ କାମ, ତା'ପରେ ପାର୍ଟି ଅଫିସରେ କାମ । ଘରକୁ ଫେରିଲାବେଳକୁ ରାତି ହୋଇଯାଏ । କେତେ ଥର ମନାକରେ ମୁଁ ଅବଶ୍ୟ କିନ୍ତୁ ମନା ମୋର ଶୁଣୁଛି କିଏ ? ସେତେବେଳେ ବୁଝିଲି, ମୋର ଲେଡ଼ି ଗୁଡ଼ କହୁଣିକୁ ବୋହି ଗଲାଣି, ଆଉ ଫେରିବାର ଉପାୟ ନାହିଁ । ବୋଉଙ୍କ ମଧୁର କଣ୍ଠରେ ସେଇ ପୁରୁଣା ଗୀତ ପଦଟା ସେତେବେଳର—

‘କେଡ଼େ ବିଚିତ୍ର ମଣେ ନନ୍ଦ ରାଜାର ଟିକି ପିଲାଟି
ଟିକିପିଲା ବୋଲି କିଏ କହେ ତାକୁ ଚିରି ପକାଇଲା ବକାର ପାଟି’’ !

ଆଜି କଲେଜ ଷ୍ଟ୍ରାଇକ୍, କାଲି ଛାତ୍ରସଭା, ତା’ପର ଦିନ ପ୍ରୋସେସନ୍ ଚାଲେ, ଏମିତି ଦିନ ପରେ ଦିନ । କେତେବେଳେ କୁନି ଘରକୁ ଫେରେ, ଠିକ୍ ନଥାଏ କିଛି । ଛାତି ଭିତରେ ଛନକା ପଶେ ମା ବାପାଙ୍କର– ମାତ୍ର ନିରୁପାୟ– ଲେଡ଼ି ଗୁଡ଼ ଯେ କହୁଣିକୁ ବୋହି ଗଲାଣି !

ଶେଷରେ ‘ସ୍ୱପ୍ନପୁରୀ’ର ସ୍ୱପ୍ନଭାଙ୍ଗେ । କେତେ ଯେ ବିନିଦ୍ର ସୁଦୀର୍ଘ ରାତ୍ରି ତାକୁ ଚାହିଁ ଅପେକ୍ଷା କରି ରହିବାକୁ ହୁଏ ହିସାବ ତା’ର କାହିଁ । ଆଜି ଦିନେ ଏମିତି ରାତି ଅଧରେ ଫେରୁଛି ସେ । ଝାଞ୍ଜିରମଙ୍ଗଳା ନିକଟରେ ତା’ ଉପରେ ହୁଏ ଅଚାନକ ଆକ୍ରମଣ । ବିଜୁଳି ଆଲୁଅ ଲାଗି ନଥାଏ । ଚାରିଆଡ଼ ନିଛାଟିଆ, କିଟି କିଟି ଅନ୍ଧାର । ସେଇ ଅନ୍ଧାରରୁ ଦି’ ଜଣ ଲୋକ ଠେଙ୍ଗା ହାତରେ ବାହାରି ଆସନ୍ତି । ପ୍ରଥମ ପ୍ରହାରରେ କୁନି ଚିତ୍କାରକରି ବସି ପଡ଼େ । ଦ୍ୱିତୀୟ ପ୍ରହାର ବସିବା ପୂର୍ବରୁ କୁନିର ଚିତ୍କାର ଶୁଣିବା ମାତ୍ରେ ସାଙ୍ଗେ ସାଙ୍ଗେ ଝାଞ୍ଜିରମଙ୍ଗଳାର ସ୍ତ୍ରୀ ପୁରୁଷ କେତେ ଜଣ ଲୋକ ବାହାରିପଡ଼ନ୍ତି ଠେଙ୍ଗାବାଡ଼ି ପନିକି କଟୁରି ଧରି । ଆକ୍ରମଣକାରୀମାନେ ତାହା ଦେଖି ଅଦୃଶ୍ୟ ହୋଇ ପଳାନ୍ତି ଅନ୍ଧକାର ଭିତରେ ।

ପ୍ରହାରରୁ ଉଦ୍ଧାର କରି ତାକୁ ସାଙ୍ଗରେ ଆସି ଛାଡ଼ିଦେଇ ଯାଆନ୍ତି ଘରେ ଆଣି ତା’ର ଉଦ୍ଧାରକର୍ତ୍ତାମାନେ । ପ୍ରହାରରେ କୁନିର କିଛି କ୍ଷତି ନ ହେଲେ ବି ସର୍ବାଙ୍ଗ ଥରୁଥାଏ ବରଡ଼ାପତ୍ର ଭଳି । କୁନି ସାଥିରେ ରହିଥାନ୍ତି ଡାକ୍ତର ଶ୍ରୀମତୀ ନିରୁପମା ରଥଙ୍କ ସାନ ଭାଇ ଶ୍ରୀ ଶଚି ମହାନ୍ତି, ବର୍ତ୍ତମାନ କେନ୍ଦ୍ରାପଡ଼ାରେ ଓକିଲ ।

ରାଜନୀତିକୁ ସାଙ୍ଗସାଥୀ ମେଳରେ ଘର ଭିତରେ ଅବା ସଭା ସମିତିରେ ହାଲୁକା ଆଲୋଚନା କରିବା ଥିଲା ଅବଶ୍ୟ ମୋର ସାମୟିକ ବିଳାସ, ସେଇ ମୌକାରେ ସେ ମୋର ଘର ଭିତରେ ପ୍ରବେଶ କରେ ସାନଭାଇ ‘ଭାଗୁ’ର ଜୀବିତାବସ୍ଥାରେ, ମାତ୍ର ଏକାବେଳେ ଏତେ ସାମ୍‌ନା ସାମ୍‌ନି ସେ ମୋର ହୋଇ ପଡ଼ିବ ବୋଲି ତ କଦାପି କଳ୍ପନା କରି ନ ଥିଲି !

‘‘କହିଲେ କୁଳକୁଟୁମ୍ବଙ୍କୁ ଲାଜ, ନ କହିଲେ କୁଳ ଭାସିଯାଉଛି’’ ଅବସ୍ଥା ଉପୁଜେ ମୋର; ଅଥଚ ରାଜନୀତିକୁ ନିଷ୍କ୍ରିୟ କରି କେବଳ ମନ ଭିତରେ ଚପେଇ ରଖନ୍ତି କେତେ କାଳ ? ମୋ ଲେଖାରେ ଆଚରଣ ପୁଣି କଥାବାର୍ତ୍ତାରେ ଯାହା ପ୍ରକଟିତ, ତହିଁରୁ ପୁଣି କୁନିକୁ ନିବର୍ତ୍ତାଇବି କେଉଁ ଯୁକ୍ତିରେ ? ନେଡ଼ିଗୁଡ଼ କହୁଣିକୁ ବୋହିଯିବା ପରେ ହାତରୁ ଖସିଲେ ଅଣଆୟତ୍ତ ହୁଏ ସିନା !



# ଯୋ କୁଛ୍ ହୈ ସବ୍ ଫେକ୍ ଦୋ

ଏବେ ପୁଣି ସେଇ କୁନି ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇ ଆସିବାର ମାସ ଚାରିଟା ନ ପୂରୁଣୁ ଦୈନିକ 'ପ୍ରଜାତନ୍ତ୍ର'ର ତା ୨୯/୯/୧୯୭୨ ରିଖ ଶୁକ୍ରବାର ସଂଖ୍ୟାରେ ଏକ ଦୃଷ୍ଟି ଆକର୍ଷଣକାରୀ (ବକ୍ସ) ସମ୍ବାଦ ପ୍ରକାଶ ପାଏ 'ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀଙ୍କୁ ହତ୍ୟା ଧମକ' ଶିରୋନାମାରେ । କଟକ ସହର ନିର୍ବାଚନ ମଣ୍ଡଳୀରୁ ସେ ଓଡ଼ିଶା ବିଧାନସଭାକୁ ଉପନିର୍ବାଚନରେ ପ୍ରାର୍ଥୀ ହେଉଥିବା ସମ୍ବାଦଟି ପ୍ରକାଶିତ ହେବା ପରେ ସଂଶିତ ସମ୍ବାଦଟିର ସ୍ୱରୂପ ଏଇଭଳି—

(ନିଜ ପ୍ରତିନିଧିଙ୍କଠାରୁ)

''କଟକ, ତା ୨୮/୯/୧୯୭୨ । ମୁଖ୍ୟମନ୍ତ୍ରୀ ଶ୍ରମତୀ ନନ୍ଦିନୀ ଶତପଥୀଙ୍କୁ ହତ୍ୟା କରିବାର ଧମକ ଦେଇ କେହି ଜଣେ ଏକ ପତ୍ର ତାଙ୍କୁ ଲେଖିଥିବାର ନିର୍ଭରଯୋଗ୍ୟ ସୂତ୍ରରୁ ଜଣାପଡ଼ିଛି । ଉକ୍ତ ପତ୍ରରେ ତାଙ୍କୁ ଅକ୍ଟୋବର ପହିଲା ଦିନ ବା ଖୁବ୍ ବେଶିହେଲେ ଅକ୍ଟୋବର ମାସ ମଧରେ ଜୀବନରୁ ମାରି ଦିଆଯିବ ବୋଲି ଉଲ୍ଲେଖ କରାଯାଇଛି ।''

''ଏହି ପତ୍ର ପାଇଲା ପରେ ଶ୍ରୀମତୀ ଶତପଥୀ ବିଚଳିତ ହୋଇ ନାହାନ୍ତି ବରଂ ସେ ତାଙ୍କ କାର୍ଯ୍ୟ ଓ ନୀତିରେ ଦୃଢ଼ ରହିଛନ୍ତି ବୋଲି ଶ୍ରୀମତୀ ଶତପଥୀ ତାଙ୍କର କେତେ ଜଣ ନିକଟତମ ବନ୍ଧୁଙ୍କ ନିକଟରେ ପ୍ରକାଶ କରିଥିବାର ଖବର ମିଳିଛି ।''

ଖବରଟି ପଢ଼ି କୁନି ତା'ର ପିଲାବେଳୁଁ ସ୍ପିରିଟ୍ ନିଜେ ପିଇ 'ବନା' ମୁଣ୍ଡରେ ଦୋଷ ଢାଳିବା, ଝାଞ୍ଜିରମଙ୍ଗଳାରେ ରାତିରେ କୌଣସି ଗୁଣ୍ଡାର ପ୍ରହାର ଖାଇବା, ପୁଣି ନିଜ ଇଚ୍ଛାରେ ରେଭେନ୍‌ସା କଲେଜ ହତାରେ ହୋସ୍‌ପାଇପ୍ ଇତ୍ୟାଦିର ସମ୍ମୁଖୀନ ହେବା ଦୁର୍ଘଟଣାମାନ ମୋର ସ୍ମରଣକୁ ଆସେ । ଆହୁରି ଜୀବନ୍ତ ସ୍ମୃତି ରୂପେ ରହି ଆସିଛି ମଧ କେତେ ଜଣ ବିଶ୍ୱବିଦିତ ଜନନେତାଙ୍କର ଅନ୍ତିମ ହତ୍ୟାର କଳଙ୍କ— ଲେନିନ୍, ଟ୍ରଟ୍‌ସ୍କି, ଗାନ୍ଧୀ, କେନେଡ଼ି, ମାର୍ଟିନ୍ ଲୁଥର କିଙ୍ଗ୍ ପ୍ରଭୃତି । ସେଥି ସଙ୍ଗେ ପୁଣି ମନକୁ ଆସେ ଦୂର ଅତୀତର ଏକ କାହାଣୀ ଓଡ଼ିଶାର ଘରେ ଘରେ ଯାହା ସୁପରିଚିତ– ''ପୁଅରେ ଦାଏ ନା ବାରଣ ବଢ଼େଇରେ ଦାଏ'' ।

ପ୍ରାଣିଜଗତରେ କେତେକ କୀଟପତଙ୍ଗ ବା ଜୀବଜନ୍ତୁ ସନ୍ତାନ ଜନ୍ମ କରିବା ପରେ ଆମେ ମରିଯାନ୍ତି; କିନ୍ତୁ ମଣିଷ ତା'ର ସନ୍ତାନ ଜନ୍ମ କରିସାରି ମଧ ବଞ୍ଚିରହେ ନିଜ ବଂଶବୃଦ୍ଧି ଦେଖିବା ପାଇଁ, ପୁଣି ଶୁଣିବାପାଇଁ ଅନ୍ୟମାନଙ୍କଠାରୁ ନିଜ ସୌଭାଗ୍ୟର ସମ୍ବାଦ । ଆହୁରି ଭାଗ୍ୟବାନ୍ ବୋଲାଇବା ପାଇଁ ନିଜ ନାତି, ଅଣନାତି, ପଣନାତି ପର୍ଯ୍ୟନ୍ତ ଦେଖିପାରିଲେ ହୁଏ ତ !

କୋଣାର୍କ କାରିଗର ବିଶୁ ମହାରଣା କିନ୍ତୁ ଷୋଳଶ ବଢ଼େଇଙ୍କ ମୁଣ୍ଡ ରଖିବାକୁ ଆପଣା ପୁଅକୁ ବଳିଦିଏ ସେ ଦେଉଳଟିର ମୁଣ୍ଡି ମାରିଥିବା ଯୋଗୁଁ । ଘଟଣାଗୁଡ଼ିକର ନିରପେକ୍ଷ

ବିଶ୍ଳେଷଣ କଲେ ଠିକ୍ ଭୁଲ୍ କେଉଁଠି ରହେ ବୁଝିବା କାଠିକର ପାଠ । ଗାନ୍ଧୀ ଓ କେନେଡ଼ିଙ୍କୁ ହତ୍ୟା କରିବାପାଇଁ ଆଗରୁ ଏମିତି କେତେ ଧମକ ଦିଆଯାଏ । ସବୁ ଧମକାଣକୁ ଏଡ଼ିଦେଇ ସେମାନେ ଜାଣିଲାପରି ଅନ୍ତିମ ଦଶା ଭୋଗନ୍ତି । ଅବଶ୍ୟ ବିଶ୍ରୁ ମହାରଣା ଭଳି ଗାନ୍ଧୀଙ୍କ ବାପା ବଞ୍ଚି ନଥିଲେ ପୁଅର ଅନ୍ତିମ ଦଶାରେ ସମ୍ମତି ଦେବାକୁ ।

ରାତି ଅଧରେ ଝାଞ୍ଜିରମଙ୍ଗଳାର ଲୋକମାନେ ତାକୁ ଆଣି ଆମ ଘରେ ଛାଡ଼ିଲା ପରେ କୁନିକୁ ପଚାରିଲେ ମୁହଁରୁ ତା'ର କିଛି କଥା ବାହାରୁନି । ଦୁଇଟି ପିଲା ମରିଯିବା ପରେ କେତେ ଯତ୍ନ କେତେ ଆଦର ଢାଳି ବଞ୍ଚାଇଥିଲୁଁ ତାକୁ; ଅଥଚ ଶେଷରେ ତାହାର ଏଇ ଦଶା ! କାହାକୁ ଏଥିପାଇଁ ଦୋଷୀ କରିବି ମୁଁ ?

''ଆପଣା ହସ୍ତେ ଜିହ୍ୱା ଛେଦି ।
କେ ତା'ର ଅଛି ପ୍ରତିବାଦୀ ।।''

ନିଜେ ତ ଏଥିପାଇଁ ଦାୟୀ । ହାତରୁ ଖସିଲେ ଏକାବେଳେ ଆସି ଅଣଆୟର ହୋଇ ପଡ଼ିବ ବୋଲି କ'ଣ ଭାବିଥିଲି କେବେହେଲେ !

ଗୋଟିଏ ପଛକୁ ଆଉ ଗୋଟିଏ ଏହି ସବୁ ଘଟଣା ପରେ ମଧ କୁନିକୁ ଆଉ ଘର ଭିତରେ ରଖିବା ସମ୍ଭବପର ହୁଏ ନାହିଁ । ତାକୁ ବିବାହ ଦେବାପାଇଁ ମନସ୍ଥ କରେଁ । କେଜାଣି ଅବା ବିବାହ ବନ୍ଧନରେ ପଡ଼ିଲେ ମନଟା ତା'ର ଘର ଧରିବ ! କେତେ ସ୍ଥାନରୁ ମଧ ବିବାହ ପ୍ରସ୍ତାବ ଆସେ । ପ୍ରସ୍ତାବଗୁଡ଼ିକୁ କେବେ କେବେ ସେ ହସରେ ଉଡ଼େଇଦିଏ, ଆଉ କେବେ ନୀରବ ରହେ ସବୁଦିନ ପରି । ଘର ଭିତରେ ଥିବାବେଳେ ଘର କାମ ପୁଣି ମୋତେ ଲେଖାଲେଖିରେ ସାହାଯ୍ୟ କରିବା କାମ କେବେହେଲେ ତା'ର ବନ୍ଦ ହୁଏନାହିଁ । ପୁଣି ବନ୍ଦ ହୁଏନାହିଁ ଘର ଭିତରେ ମଧ ସ୍ଲୋଗାନ୍ ବୋଲି ଅନ୍ୟ ପିଲାମାନଙ୍କୁ ବୋଲାଇବାର କାମ !

ଦିନେ ଏମିତି ବାହାରୁ ଆସି ମୁଁ ଘର ଭିତରେ ଶୁଣେ ଆଉ ସବୁ ପିଲାଙ୍କୁ ପାଖରେ ବସାଇ ସେ ଗୋଟେ ସ୍ଲୋଗାନ୍ ଶିଖାଉଛି—

''ଏକ୍ ଦୋ
ଯୋ କୁଛ୍ ହେି ସବ୍ ଫେକ୍ ଦୋ ।''

ସବୁପିଲା ଅର୍ଥାତ୍ ମୋର ଓ ଭାଗୁର ପିଲାମାନେ ମଧ ସେଇ ସ୍ଲୋଗାନ୍‌କୁ ପାଳି ଦେଇ ବୋଲି ଲାଗିଥାନ୍ତି । ଖିଆଲ ହୁଏ ମୋର– ଶ୍ରେଷ୍ଠ ଭକ୍ତକବି କବୀରଙ୍କ ଜୀବନ କାହାଣୀ । ଲୁଗା ବୁଣି ଯେ ଗାଇ ଚାଲନ୍ତି ମୁହେଁ ମୁହଁ ତାଙ୍କ ଅମର ଭଜନାବଳୀ । ବସ୍ତ୍ରହୀନ ଗୃହହୀନ ଭିକ୍ଷୁକ ଦଳ ହାତ ପତାଇ ଠିଆ ହୁଅନ୍ତି ଆସି ତନ୍ତୁବାୟ କବି ଗୃହ ସମକ୍ଷରେ । ସେତେବେଳେ ତନ୍ତ ଆଉ ଚାଲେ ନାହିଁ । ଅଟକିଯାଏ ବୁଣାଳିଙ୍କର ହାତ ସେଇ ସବୁ କୋଟରଗତ ଆଖି ଆଉ ନଗ୍ନ ଅବୟବ ସାମ୍ନାରେ ।

ଗୋଟିକ ପରେ ଗୋଟିଏ ଲୁଗା ତହୁଁ ଗଣ୍ଡିଲି ଭିତରୁ ବାହାରି ଆସେ । ଧାଡ଼ି ଦେଇଥିବା ଅର୍ଦ୍ଧନଗ୍ନ ନାରୀ ପୁରୁଷଙ୍କ ହାତ ଉପରେ ଗଣତି ହୋଇ ବଣ୍ଟାଯାଏ ତାହା ଖଣ୍ଡିକ ପରେ ଆଉ ଖଣ୍ଡେ—

ଏକ, ଦୋ, ତିସରା, ଚୌଥାରୁ ଆରମ୍ଭ କରି 'ବାରା' 'ତେରା' ପର୍ଯ୍ୟନ୍ତ । ତା'ପରେ ଘର ଭିତରେ ଖାଲି ତ ଲୁଗା ନୁହେଁ– ଯାହା କିଛି ଥାଏ ସବୁ ହୋଇଯାଏ 'ତେରା' ! ତହୁଁ ଆଉ ଗଣତି କରିବାର ଫୁରସତ୍ ରହେ ନାହିଁ କିମ୍ବା ବାହାରେ ଭିତରେ କିଛିହେଲେ କାହିଁ ରହେନାହିଁ 'ମେରା' ହୋଇ । ସେହି କାରଣରୁ କି କ'ଣ ଇଂରାଜୀରେ ସୁଦ୍ଧା 'ତେର' ସଂଖ୍ୟାଟି ଅଶୁଭ ସଂକେତ ରୂପେ ଚିହ୍ନିତ କି ? ସବୁ ଭଡ଼ାଘରୁ ତଡ଼ାଖାଇ ମୁଣ୍ଡ ଗୁଞ୍ଜିବାକୁ ଏତେ କଷ୍ଟରେ ଘର ଖଣ୍ଡେ କଲି ଯେ ତାକୁ ଯଦି କୁନି ଏମିତି 'ଯୋ କୁଛ୍ ହୈ ସବ୍ ଫେକ୍ ଦୋ' ପୁଣି 'ମେରା' ବୋଲି କିଛି ନ ରଖି ସବୁ ଜିନିଷ ଘର ଭିତରୁ କାଢ଼ି 'ତେରା' କହି ଫିଙ୍ଗିଦିଏ, ତେବେ ଆଉ ଠା ଟିକିଏ ପାଇବି କେଉଁଠି ?—

''ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ
ଘଟ ଛୁଟିଲେ ସର୍ବେ ବୋଲିବେ ଭୂତ''–

ଓଡ଼ିଆ କବି ଭକ୍ତଚରଣଙ୍କ 'ମନବୋଧ ଚଉତିଶା'ରେ ମଗ୍ନ ଥିଲେ ମୁଁ ଘର ତୋଳି ଏତେ ଗାଳି ଫଜତି ହଜମ କରନ୍ତି କାହିଁକି ? ମୋ' ଘଟ ଛୁଟିଲେ 'ଘରଘରଣୀ ଦେହ କିଳାଇବା' ଆଗରୁ ମୁଁ ଯେବେ ଭୂତ ରୂପେ ବିବେଚିତ ହୋଇ ମୋ ପିଲାଙ୍କର ଏମିତି ମତିଗତି ! ସେଥିପାଇଁ ପରା ମାଓସେତୁଙ୍ଗଙ୍କର ନିଜ ହାତକୁ ଶାସନ-କ୍ଷମତା ଆସିଯିବା ପରେ ଚୀନର ସବୁ ପ୍ରାଚୀନ ଗ୍ରନ୍ଥ ଧ୍ୱଂସ କରିବାକୁ ଆଦେଶ !

ସେତିକିବେଳେ ବିଚାରକୁ ମୋର ଆସେ, ମୁଁ କୌଣସି ସରକାରୀ ଚାକିରିରେ ପଶି ପାରିଲେ ବୋଧହୁଏ ସବୁ ଉତ୍ପାତରୁ ରକ୍ଷା ମିଳନ୍ତା; ବୋଉଙ୍କର ମଧ୍ୟ ଆକଟ ମନେପଡ଼େ ବାରମ୍ବାର– ''ତୁ କ'ଣ ଖାଲି ଘର ଭିତରେ କି ଦିନ କି ରାତି ଚଉକି ଉପରେ ବସି ଟେବୁଲ ଉପରେ ଲେଖୁଥିବୁ । ପିଲାଙ୍କ କଥା କିଛି ବୁଝିବୁନି ?'' ଅଥଚ ପିଲାଙ୍କ ରୀତି ତ ଏମିତି, ବୁଝିବି ମୁଁ କ'ଣ ? ସେମାନେ ଯେ ଯେଝା ହାତରେ ସେ ଚଉଦପା । ସ୍ଥିର କରେଁ କୌଣସି ସରକାରୀ ଚାକିରିରେ ପଶିପାରିଲେ ବୋଧହୁଏ ସବୁ ଉତ୍ପାତରୁ ରକ୍ଷା ମିଳନ୍ତା । ସେତେବେଳେ ସ୍ୱାଧୀନ ଓଡ଼ିଶା ସରକାରଙ୍କ ପ୍ରଚାର ବିଭାଗରେ ଦୈବାତ୍ ଗୋଟିଏ ଚାକିରି ପାଇଁ ବିଜ୍ଞାପନ ବାହାରିଥାଏ ।

ଦରଖାସ୍ତ ଦେଇ ଇଣ୍ଟର୍ଭ୍ୟୁ ମଧ୍ୟ କରେଁ— ପବ୍ଲିକ୍ ସର୍ଭିସ୍ କମିଶନ୍ ଆଗରେ । କମିଶନଙ୍କର ପ୍ରଶ୍ନର ସମ୍ମୁଖୀନ ହୁଏଁ । କମିଶନ୍‌ରେ ବସିଥାନ୍ତି ତିନି ଚାରି ଜଣ ସଦସ୍ୟ । ପ୍ରଶ୍ନହେଲା— ମୋତେ ଗୋଟିଏ ସାଧାରଣ ସଭାରେ ଭାଷଣ ଦେବା ପାଇଁ; କିନ୍ତୁ ତିନି ଚାରି ଜଣ ସଦସ୍ୟଙ୍କୁ ଘେନି ଯେଉଁ କମିଶନ୍ ବସିଥାଏ, ତାହା ତ କଦାପି ସାଧାରଣ ସଭା ହୋଇ ନ ପାରେ !

ଜଣେ ଇଂରେଜ ଲେଖକଙ୍କର କୌତୁକ ଉକ୍ତି ମନେପଡ଼େ, ସେ କହିଥିଲେ— ଚାରି ପାଞ୍ଚ ଜଣ ଲୋକ ଉପସ୍ଥିତ ଥିଲେ ତାକୁ ଗୋଟିଏ ସାଧାରଣ ସଭା ବୋଲାଯାଇପାରେ । ସେ ପାଞ୍ଚ ଜଣଙ୍କ ଭିତରୁ ଜଣେ ସଭାପତି, ଜଣେ ବକ୍ତା, ତୃତୀୟ ବ୍ୟକ୍ତି ସରକାରୀ ସି.ଆଇ.ଡି.ଆଉ ଜଣେ ସାମ୍ବାଦିକ ଓ ପଞ୍ଚମ ଜଣକ ଫଟୋଗ୍ରାଫର ହେଲେ ଯଥେଷ୍ଟ । ପବ୍ଲିକ୍ ସର୍ଭିସ୍ କମିଶନର

ସଦସ୍ୟମାନଙ୍କୁ ସେହିପରି ଏକ ସାଧାରଣ ସଭା ଭାବରେ ଗ୍ରହଣ କରିବା ମୋହ ପକ୍ଷରେ ସମ୍ଭବପର ହୋଇପାରେ ନାହିଁ । ଅତଏବ ତାଙ୍କ ପ୍ରଶ୍ନର ଉତ୍ତର ପାଇବାରୁ ସେମାନେ ବଞ୍ଚିତ ହୁଅନ୍ତି । ମୁଁ ମଧ୍ୟ ବଞ୍ଚିତ ହୁଏଁ ଚାକିରି ପାଇବାରୁ ।

ମୋ ପିଲାମାନଙ୍କ ଭିତରୁ କୁନି କମ୍ୟୁନିଷ୍ଟ ପାର୍ଟି ଅଫିସ୍‌କୁ ଯା ଆସ କରେ, ପୁଣି ଶୋଭାଯାତ୍ରାରେ ଆଗୁଆ ହୋଇ ସ୍ଲୋଗାନ୍ ଝାଡ଼େ— "ଏ ଆଜାଦୀ, ଝୁଟା ହେ, ଭୁଲୋ ମତ୍ ଭୁଲୋ ମତ୍" । ମୋ ନୂଆ ଘର ଫାଟକ ଖୁଣ୍ଟରେ ବାଲି ସିମେଣ୍ଟରେ ତିଆରି ହୁଏ ଦା' ହାତୁଡ଼ିର ଚିତ୍ର । ସେତେବେଳେ ଶଙ୍କରପୁର ହୋଇଥାଏ କମ୍ୟୁନିଷ୍ଟମାନଙ୍କ ପେଣ୍ଠ, ଆଉ ପିଠାପୁର ଲୋକ ତାଙ୍କୁ ପରିହାସ କରନ୍ତି– "ଆଳୁ ବାଇଗଣ ପିଆଜ ଷଣ୍ଢା–ଲାଲ ଝଣ୍ଡା । ରାଜନୀତିରେ ତ ମୁଁ କୌଣସି କାଳେ ସକ୍ରିୟ ସହଯୋଗ କରି ନାହିଁ । ହେଲେ ହୋଇପାରେ, ସାନଭାଇ ମୋର ଏକ କାଳରେ ଉଗ୍ରଜାତୀୟବାଦୀ ଅଥବା ଓଡ଼ିଶା କମ୍ୟୁନିଷ୍ଟ ପାର୍ଟିର ପ୍ରତିଷ୍ଠାତା ଥିଲେ । ଆହୁରି ତାଙ୍କରି ଦେଖାଶିଖା ରାଜୀନତିରେ କୁନି ତା'ର ଦଶ ଏଗାର ବର୍ଷ ବୟସରୁ ଦ୍ୱିତୀୟ ମହାଯୁଦ୍ଧ ବେଳେ କମ୍ୟୁନିଷ୍ଟ ପ୍ରଚାରପତ୍ରଗୁଡ଼ିକର ଅନୁବାଦ କରେ । ସୂତାହାଟ ଘରେ ଥିଲାବେଳେ ସେହି ସବୁ ଅନୁବାଦ ତାହାର ଛାପାହୁଏ ଭଗବତୀଙ୍କ ସମ୍ପାଦିତ କମ୍ୟୁନିଷ୍ଟ କାଗଜ 'ମୁକ୍ତିଯୁଦ୍ଧ'ରେ । ମାତ୍ର ସେ ଅବା ଏମିତି କି ଅପରାଧ ଯେ ସ୍ୱାଧୀନ ଭାରତବର୍ଷରେ ସୁଦ୍ଧା ମୋହ ପ୍ରତି ଏଇଭଳି ସନ୍ଦେହ ପୁଣି ଦଣ୍ଡାଦେଶ ! ମୁଁ ଆସାମୀ ହୋଇ ଆପଣା ବିଚାରକ ହେବା ପୁଣି ତ ବିଡ଼ମ୍ବନା ।

ମଝିରେ ମଝିରେ ମନେହୁଏ ମୋର ସିଧା ସଳଖ ରାଜନୀତିରେ ମୁଁ ଯୋଗ ନ ଦେବାରୁ ଏଇ ସବୁ ଦଣ୍ଡର ଶିକାର ହୁଏଁ ପରା ! କାରଣ ରାଜନୀତିକୁ ମୋତେ ଏଥି ପୂର୍ବରୁ ବାରମ୍ବାର ଡାକରା ଆସେ ପ୍ରତ୍ୟେକ ଦଳ ପକ୍ଷରୁ— କଂଗ୍ରେସ ପକ୍ଷରୁ ପଣ୍ଡିତ ପ୍ରାଣକୃଷ୍ଣ ପ୍ରତିହାରୀ, ପ୍ରଜା ସମାଜବାଦୀଙ୍କ ପକ୍ଷରୁ ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ, ପୁଣି ସ୍ୱତନ୍ତ୍ର ଦଳ ପକ୍ଷରୁ ଶ୍ରୀ ପ୍ରତାପ କିଶୋର ଦେଓ ପ୍ରମୁଖ ବ୍ୟକ୍ତିଗତ ଭାବରେ ସଂକେତ ଦିଅନ୍ତି ମୋତେ । ଓଡ଼ିଶାରେ ସ୍ୱତନ୍ତ୍ରଦଳ ସମ୍ପୂର୍ଣ୍ଣ ରୂପରେଖ ଘେନିବା ଆଗରୁ ସ୍ୱର୍ଗୀୟ ବାଳକୃଷ୍ଣ କରଙ୍କ ଦରଘାବଜାର ସାରସ୍ୱତ ପ୍ରେସ୍ ଉପରେ ଏକ ବୈଠକ ବସେ । ତହିଁରେ ଯୋଗଦେଇ ଥାନ୍ତି ସ୍ୱର୍ଗତ ପଣ୍ଡିତ ଗୋଦାବରୀଶ ମିଶ୍ର ପ୍ରମୁଖ କଟକର କେତେକ ନେତୃସ୍ଥାନୀୟ ବ୍ୟକ୍ତି । ସେତେବେଳେ ବୋଉ ମୋର ମୃତ୍ୟୁ ଶଯ୍ୟାରେ । ସ୍ୱତନ୍ତ୍ର କିମ୍ବା ସେହିଭଳି ଏକ ବିରୋଧୀ ଦଳ ସଙ୍ଗଠନ ଲାଗି ମସୁଧା କରିବା ବୈଠକର ଉଦ୍ଦେଶ୍ୟ ଥାଏ କି କ'ଣ । ଆଲୋଚନା ଆରମ୍ଭ ଆଗରୁ କିନ୍ତୁ ମୁଁ ବିଦାୟ ନିଏଁ ।

ସବୁ ଆହ୍ୱାନକୁ ଏଡ଼ିଦିଏଁ ମୁଁ ବିନୀତ ଭାବରେ । କାହିଁକି କେଜାଣି, ତାହା କହି ପାରିବି ନି ଆଜି । ବୋଧହୁଏ ମନଭିତରେ ମୋର ନାନା ଦ୍ୱନ୍ଦ୍ୱ ଜାତ ହୁଏ– ନାନା ପ୍ରଶ୍ନ ପୁଣି ସମସ୍ୟାର ସମ୍ମୁଖୀନ ମୁଁ ହୁଏଁ– ଯାହାକୁ ଏଡ଼ିଦେବା ସମ୍ଭବପର ହୋଇପାରେ ନାହିଁ, ଆହୁରି ହୁଏତ ମୋର ଅବଚେତନ ମନଭିତରେ କନିଷ୍ଠ ଭାଗୁର ମୃତ୍ୟୁଶଯ୍ୟାରେ ସେଇ ଶେଷ କଥାଟା ଛାତିଭିତରେ କୁହୁଳି ଉଠେ— "ମୋ ଦେହ କଥା ବୁଝ" । ତାକୁ ଯଦି ବଞ୍ଚାଇ ପାରିଲି ନାହିଁ, ତେବେ କେଉଁ ରାଜନୀତିର ଦାୟିତ୍ୱ ତୁଲାଇବାରେ ସମର୍ଥ ହେବି କିପରି ? ନିମନ୍ତ୍ରଣ ଆସେ ମୋତେ

ରୁଷ୍ ଯାତ୍ରା କରିବା ପାଇଁ । କମ୍ୟୁନିଷ୍ଟ ପାର୍ଟି ବନ୍ଧୁମାନଙ୍କ ସମାଗମ ହୁଏ । ମୋ ଯାତ୍ରାର ଶୁଭକାମନା କରି ଚିଠିପତ୍ର ମଧ୍ୟ ପହଞ୍ଚେ ଆସି ଅଭିନନ୍ଦନ ଜଣାଇ; ମାତ୍ର ଶେଷରେ ଯିବା ମୋର ବନ୍ଦ ହୋଇଯାଏ । ସବୁ କ୍ଷେତ୍ରରେ ଯେମିତି ଅବା ମୋର ଅବଚେତନ ଅବସ୍ଥାରେ ଭଗବତୀର ସେହି ଅନ୍ତିମ ଡାକରା ଛାତିରେ ବାଜେ– ମୋ କଥା ବୁଝ । ରୋଜ ଗୀତା ପଢ଼ି ସୁଦ୍ଧା ''ଗତାଶୂନ ଗତାଶୁଂଷ୍ଚ ନାନୁଶୋଚନ୍ତି ପଣ୍ଡିତାଃ''ଙ୍କ ଭିତରୁ ଜଣେ ହେବାକୁ ତ କ୍ଷମ ହେଲିନି ଟିକିଏ ।

ପିଠାପୁର ଏକତାଲା ଘରକୁ ଦୋତାଲା କରିବାକୁ ହୁଏ— ଯେହେତୁ ଆମ ତିନି ଭାଇଙ୍କ ପରିବାର ରହିବା ଲାଗି ତାହା ଯଥେଷ୍ଟ ହୋଇପାରେ ନାହିଁ । କୁନିର ବିଭାଘର ପରେ ସେଇ ଘରକୁ ବଢ଼ାଇବା ପୁଣି ଜରୁରୀ ହୋଇପଡ଼େ ।



# ମଙ୍ଗଳମ୍ ସର୍ବମଙ୍ଗଳମ୍

ବୋଉ ବରାବର ମୋତେ ଆକଟ କରି କହନ୍ତି — କୁନିର ବିଭାଘର କଥା ବୁଝୁନୁ କାହିଁକି ? ମୁଁ ମରିବା ଆଗରୁ କ'ଣ ତା'ର ବିଭାଘର ଦେଖି ଯିବିନି ? ଉତ୍ତର ଦିଏଁ ''ଟଙ୍କା ? ଝିଅ ବିଭାଘରକୁ ଟଙ୍କା ପାଇବି କେଉଁଠୁ— ଚାରି ଦଉଡ଼ିକଟା ହୋଇ ଢୋକେ ପିଇ ଦଣ୍ଡେ ଜୀଇ ଅବସ୍ଥାରେ ?'' ବୋଉର ସେଇ ସବୁଦିନିଆ ରୋକଠୋକ୍ କଥା– ''ତୁ ବରଘର ଠିକ୍‌କଲେ ଟଙ୍କା ଛାଏଁ ଆସିଯିବ ।'' ଆଶ୍ଚର୍ଯ୍ୟ ଏଇ ଦୁଇଟି ପୁଅ, ଦୁଇଟି ଝିଅଙ୍କୁ ହରାଇଥିବା, ପୁଣି ସ୍ୱାମୀହୀନା ମୋର ଜନନୀଙ୍କ ଧୈର୍ଯ୍ୟ, ସାହସ ଓ ବିଶ୍ୱାସ ! ଉତ୍ତର ଦିଏଁ,— ''ମୁଁ ଯେଉଁଠାରେ ଠିକ୍ କଲି କୁନି ତ ସେଠାରେ ମଙ୍ଗୁ ନାହିଁ । ନିଜେ ସେ ତା ହେଲେ ସ୍ଥିର କରୁ ।''

ସତକୁ ସତ ସେ ସ୍ଥିର କରେ ତା'ର ବିବାହ ପ୍ରସ୍ତାବ । କମ୍ୟୁନିଷ୍ଟ ପାର୍ଟି ଅଫିସ୍‌ରେ ତା'ର ସହିତ କାମ କରୁଥିବା ଶ୍ରୀମାନ୍ ଦେବେନ୍ଦ୍ର ଶତପଥୀଙ୍କ ସହିତ ।

ମୁଁ କିନ୍ତୁ ତାଙ୍କର ଘର, ଗ୍ରାମ, ବାପା, ମାଆ, ଶିକ୍ଷା, ଦୀକ୍ଷା କିଛି ହେଲେ ଜାଣେ ନାହିଁ ! ସେ ସବୁ ପ୍ରଶ୍ନ ଉଠାଇବାର ମଧ୍ୟ ଅବକାଶ ନଥାଏ ମୋର– ପୁଣି ବୋଉ ଆଗରେ । କାରଣ କିଛି ହେଲେ ନ ବୁଝି ସେଇ ପ୍ରସ୍ତାବରେ ହିଁ ସେ ଭାରି ଖୁସି । ଦେବେନ୍ଦ୍ରଙ୍କ ବାପା ଶ୍ରୀ ବିଶ୍ୱନାଥ ଶତପଥୀଙ୍କ ସହିତ କଥାବାର୍ତ୍ତା ହୁଏଁ । ତାଙ୍କର ମଧ୍ୟ କୌଣସି ଆପତ୍ତି ନାହିଁ । ''ମୋ ଦାନା ପାଣି କାହାଘରେ, ମୁଁ ଯାଉଥିଲି ବାହାଘରେ'' ମୋ ଅବସ୍ଥା ସେତେବେଳେ ଏହିପରି ।

ପ୍ରଜାତନ୍ତ୍ର ଅଫିସରେ ବିଷୁବ ମିଳନର ଆରମ୍ଭ ବୋଧହୁଏ ସେହି ସମୟରେ । ପ୍ରଥମ ବୈଠକକୁ ମୋତେ ନିମନ୍ତ୍ରଣ । ବହୁ ସାହିତ୍ୟିକଙ୍କ ସହିତ ସେହି ସନ୍ଧ୍ୟାରେ ମିଳନ । ସେତିକିବେଳେ ଖବର ପାଏଁ– କୁନି ମୋର ଘରୁ ଗିରଫ ହୋଇ ଥାନା ହାଜତକୁ ଆସିଲାଣି ।

ସଭାରେ ମୋତେ ପୌରୋହିତ୍ୟ କରିବାକୁ ନିମନ୍ତ୍ରଣ ଆସେ; ମାତ୍ର ଥାନା ହାଜତରେ ପୌରୋହିତ୍ୟ କରିବା ଆହ୍ୱାନ ପାଇ ସେ ନିମନ୍ତ୍ରଣର ପ୍ରଲୋଭନ ପ୍ରତ୍ୟାଖ୍ୟାନ କରିବାକୁ ବାଧ ହୁଏଁ । ସେଥର କୁନିକୁ ଅବଶ୍ୟ ବେଶିଦିନ ହାଜତ୍ କିମ୍ବା ଜେଲ୍‌ରେ ରହିବାକୁ ପଡ଼େ ନାହିଁ; ଘରକୁ ଫେରିବା ପରେ ଆୟୋଜନ କରାଯାଏ ତା'ର ବିଭାଘର । ଦିନ ଆଠଟି ଭିତରେ ସବୁ ଆୟୋଜନ ସମ୍ପୂର୍ଣ୍ଣ ହୁଏ । କେଉଁଠିକି ନିମନ୍ତ୍ରଣ ପତ୍ର ଗଲା, କିଏ ପାଇଲେ ଅବା ନ ପାଇଲେ ତା'ର ହିସାବ ନେବାକୁ ସୁଦ୍ଧା ଘରେ କାହାରି ଫୁର୍‌ସତ୍‌ର ଅଭାବ । ମୋର ଜନ୍ମସ୍ଥାନ ଆମ ଗାଁରୁ ଅବଶ୍ୟ ଅନେକ ଆସି ପହଞ୍ଚିଲେ ବନ୍ଧୁ କୁଟୁମ୍ବ ସମେତ ।

ଏହି ଅଳ୍ପ ସମୟ ଭିତରେ ଆହୁରି ଦୂରବନ୍ଧୁମାନଙ୍କୁ ନିମନ୍ତ୍ରଣ କରିବା କିମ୍ବା ସେମାନେ ସମସ୍ତେ ଆସି ଯୋଗଦେବା ସମ୍ଭବପର ହୁଏନାହିଁ; ତଥାପି ଅନେକ ଆସି ଯୁଟନ୍ତି, ମାତ୍ର ନିମନ୍ତ୍ରଣ ପାଇ ନଥିବା ଅନେକ ଭଦ୍ରମହିଳା, ଭଦ୍ରବ୍ୟକ୍ତି ଓ କୁନିର ସହପାଠୀ, ସହକର୍ମୀ, ବନ୍ଧୁ ବାନ୍ଧବୀ ପଦଧୂଳି ଦେଇଯାନ୍ତି ମୋର ଘର ଗହଳ କରି ।

କୁନିକୁ ବିବାହ ଦେଇ ମୁଁ ଯେ କେବେହେଲେ ତାକୁ ଛାଡ଼ି ରହି ପାରିବି, ତାହା କଳ୍ପନା କରି ନଥିଲି । ତହୁଁ ତା'ର ବିବାହ ପୂର୍ବରୁ ତାକୁ ପଚାରେଁ– ''ତୁ ବିଭା ହୋଇଗଲେ ଏଠା ଘରକଥା କ'ଣ କରାଯିବ କହିଲୁ ?''

''ମୁଁ କ'ଣ ଘର ଛାଡ଼ି କୁଆଡ଼େ ଯିବି କି ?'' ସତକୁ ସତ ସେ ତା'ର ଶ୍ୱଶୁରଘର ଢେଙ୍କାନାଳ ଜିଲ୍ଲା ଧଳପୁରକୁ କଟକରେ ବିଭାଘର ପରେ ଯାହା ମାତ୍ର ସପ୍ତମଙ୍ଗଳା ପାଇଁ ଯାଇଥିଲା ଥରଟିଏ । ଲେଉଟି ଆସେ ପୁଣି 'ସ୍ୱପ୍ନପୁରୀ'କୁ ।

ବିବାହରେ ତା'ର ବନ୍ଧୁ କୁଟୁମ୍ବ ସମସ୍ତେ ଖୁବ୍ ଖୁସିରେ ମାତିଥିଲେ ବି ମନଟା ମୋର ଚିନ୍ତାଗ୍ରସ୍ତ ହୋଇ ପଡ଼ିଥାଏ ।

ଜୀବନର ସବୁ ଦାଗ ଭିତରେ ଭାଗୁର ଅକାଳ ବିୟୋଗ ଦାଗଟା ସବୁଠାରୁ ବେଶି ଦାଉ ଦାଉ ହୋଇ ଜଳୁଥିବାବେଳେ କୁନିର ଏମିତି ଗତିବିଧି ! ସେଥିଲାଗି ମୂଳରୁ ମୁଁ ନିଜେ ଦାୟୀ ହେଲେ ବି ଘୋର ଅନ୍ଧାର ଦିଶେ– ତାହାର ଭବିଷ୍ୟତ ଯେ କ'ଣ ହେବ ! ମୋ ବୋଉକୁ କିନ୍ତୁ ଦେଖିଲି କୁନି ବିଭାଘରେ ସବୁଠାରୁ ବେଶି ଖୁସି ହୋଇଥିଲା କେବଳ ସେଇ । ଶିବ ପାର୍ବତୀଙ୍କର ବିବାହ ଗୀତ ତା'ର ମୁଖସ୍ଥ । କୁନି-ବୋଉର ମଧ ସେ ଗୀତଟି ମୂଳରୁ ଶେଷଯାକେ ମନେ ରହିଛି । ବୋଉ ସେଇ ଗୀତଟି ବୋଲି କୁନିର ହସ୍ତଗ୍ରନ୍ଥି ପଡ଼ିବା ସମୟରେ ବେଦୀ ଚାରିପଟେ ତାଳିମାରି ବୁଲୁଥିବା ଚିତ୍ର ଆଜି ମଧ ଆଖି ଆଗରେ ମୋର ନାଚିଯାଏ ଅବିକଳ—

କଷା କଉପୁନୀ ମୁଣ୍ଡରେ ଜଟା,
ବୃଷଭ ବାହନ ଅତ୍ୟନ୍ତ ଛଟା ।
ଭାଙ୍ଗ ପାଇଲେ ଖାଅ ତିନି ବେଳ
ନୋହିଲେ ଘେନି ବୁଲୁଥାଅ ଥାଳ ।
ଏମନ୍ତ ଲୋକର ଘରକି ହେବ
ଦିବସ ଜଳରେ ବୁଡ଼ି ରହିବ ।

ଶୁଣି ସଦାଶିବ କହନ୍ତି ହସି
ଏ ବର କିପାଁ ବରୁଥିଲ ବାଛି ।
ତପ କରୁଥିଲ ନିଗମ ବନ
ଏବେ ପାସୋରିଲ ସେକଥାମାନ ।
ବକଳ ବସନ ପୁଷ୍ପ ଆହାର
ରାତ୍ର ଦିବସେ ପୂଜୁଥିଲ ହର ।

ବିବାହ ପରେ ଦେବ କୁନି ଉଭୟେ କେବଳ ଯେ ଘରେ ମୋର ରହନ୍ତି, ସେତିକି ନୁହେଁ— ଏହି ଘରେହିଁ କମ୍ରେଡ୍‌ମାନଙ୍କର ପୁଣି ମେଳା ବସେ, ଆଲୋଚନା ହୁଏ । ଘର ଚାରିପଟେ ଦିନରାତି ପୋଲିସ୍ ଜଗୁଆଳ ଅଥବା ଗୋଇନ୍ଦାମାନଙ୍କର ଆତଯାତ । ମୋହର ଜ୍ୟେଷ୍ଠ ଦିବ୍ୟସିଂହଙ୍କ ପୁତ୍ର ଶ୍ରୀମାନ୍ ନୀହାର ବିଭାଘର ମଧ ମେଦିନୀପୁର ଡାକ୍ତର ୰ ମହେଶ୍ୱର ପତିଙ୍କ କନ୍ୟା ସହିତ ଅନୁଷ୍ଠିତ ହୁଏ ଅଳ୍ପ ସମୟ ବ୍ୟବଧାନ ଭିତରେ ।

ମିଳନ ଆନନ୍ଦର ପର୍ବ ପରେ ଆସେ ଠିକ୍ ପୁଣି ବିଷାଦ ବିଚ୍ଛେଦର ପର୍ବ । 'ସ୍ୱପ୍ନପୁରୀ'ର ଦୁଃସ୍ୱପ୍ନ । କଠିନ ରୋଗରେ ପୀଡ଼ିତା ହୁଏ ମୋର ସାନଝିଅ ଲୁସି । ଆମ ଗାଁରେ ଅନୁଷ୍ଠିତ ନୀହାର ବିଭାଘରେ ଯୋଗ ଦେଇ ତା'ପରେ କଟକ ଆସି ହୁଏ ସେ ଶଯ୍ୟାଗତା । ପୁରୀରେ ବୋଉ ମଧ ପୀଡ଼ିତା ହୁଅନ୍ତି । ପୁରୀ ଯାଇଁ ବୋଉଙ୍କୁ ଘେନିଆସେ କଟକ ।

ଲୁସିର ଚିକିତ୍ସା, ପରିଚର୍ଯ୍ୟା, ଔଷଧ, ପଥ୍ୟାପଥ୍ୟ ପରାମର୍ଶ ମଧ ମିଳେ କୁନିଠାରୁ ସେହିପରି । ସେ ଘରେ ବୋଉ ଶେଷ ଶଯ୍ୟାରେ ଶଯ୍ୟାଶାୟିନୀ । ଏପାଖେ ମୋ ଶୋଇବା ଘରେ ସେମିତି ସାନଝିଅ ଲୁସି । କୁନିକୁ ତାଙ୍କ ଜନ୍ମଦାତ୍ରୀ ଭଳି ବୋଉ ଅଳି, ଅଝଟ, ଗାଳି, ଫଜିତ ମଝିରେ ପୁଣି ସ୍ନେହ ବି କରନ୍ତି ସେମିତି ଦଣ୍ଡେ ନ ଦେଖିଲେ । ଡାକ୍ତରଙ୍କଠାରୁ ସଙ୍କେତ ପାଇ ସୁଦ୍ଧା ମୁଁ ବିଶ୍ୱାସ କରିପାରୁ ନ ଥାଏଁ– କଦାପି ମାତୃହୀନ ହେବି ବୋଲି । ଭାଣିଜୀ ଚେମିଣୀ କହେ ହସିହସି ମାମୁଙ୍କ ଇଚ୍ଛା, ''ଆଈ ଯେମିତି ସବୁଦିନେ ବଞ୍ଚିଥିବେ'' । ସତେ ଅବା ମୋ ପିଲାଦିନ ସେ ଦେଖିଛି । ବୋଉଙ୍କଠାରୁ ଶୁଣିଥିବ ସେ ନିଶ୍ଚୟ ମୋ ପିଲାଦିନ କଥା ଦଣ୍ଡେ କିପରି ମୁଁ ପାଖଛଡ଼ା କରେ ନାହିଁ ବୋଉକୁ ମୋ'ଠାରୁ । ଏବେ କିନ୍ତୁ କରିବାକୁ ହୁଏ । ଯମର ଜବରଦସ୍ତି— ''ଯମ ତ ନ ଜାଣଇ ବାଳୁତ ଯୁବା–ଜୀଇଁବୁ ବୋଲି ସଦା ପାଞ୍ଚୁଛୁ ଅବା !''

ଡାକ୍ତର ଶ୍ରଦ୍ଧେୟ ଭଗବତୀ ପ୍ରସାଦ ଆଚାର୍ଯ୍ୟ ସନ୍ଦେହ କରନ୍ତି ଲୁସିର ଯକ୍ଷ୍ମାରୋଗ ବୋଲି । ସେତେବେଳେ କୁନିର ସେବା ସାହାଯ୍ୟ ଅବା ବଞ୍ଚାଇ ରଖେ ଆମ ସମସ୍ତଙ୍କୁ । ବୋଉ ମୋର କୁନିକୁ ତା'ର ଜନ୍ମାବଧି କଟକ ଯାଚକଲେନ୍‌ରେ ଯେମିତି ପାଳିଥିଲେ ମୃତ୍ୟୁ ଶଯ୍ୟାରେ ସେମିତି ତା'ଠାରୁ ଅବା ସେବା ଶୁଶ୍ରୂଷା ପାଇଲେ ସେ ।



# ସୁଖେ ଦୁଃଖେ ସମେ କୃତ୍ୱା

ଯଥାର୍ଥରେ ଦୁଃଖ ସୁଖର ଫରକ୍‌ଟା ସେତେବେଳେ ଆପେ ଆପେ କୁଆଡ଼େ ଉଭେଇଯାଏ ମୋହ ପକ୍ଷରେ । ଜନ୍ମମୃତ୍ୟୁ ଦୁଇଟା ଭିତରେ କିଛି ହେଲେ ଯେ ଫାଙ୍କ୍ ନାହିଁ, ତାହାର ଚରମ ଅନୁଭୂତି ଓ ଅଭିଜ୍ଞତାର ଅତି ନିର୍ମମ ବାସ୍ତବ ସନ୍ଧିକ୍ଷଣ ସେଇ ଅବା ମୋର । ବୋଉଙ୍କ ଶ୍ରାଦ୍ଧକର୍ମ ଆଦି ଗାଁକୁ ଯାଇ ପାରିବାରିକ ଚିରାଚରିତ ପ୍ରଥା ଅନୁଯାୟୀ କରିବାକୁ ହୁଏ ମୋତେ । ଗାଁରେ ଆମର ନିକଟତମ ପଡ଼ିଶାଘରର ବାଇ ସାହାଣୀ ବୁଢ଼ୀ ଆସି କହନ୍ତି, ସତେ ଅବା ମୋ ମନକଥା ଜାଣିଲା ଭଳି—

''ଏମିତି କ'ଣ ସବୁ କଥା ଏକା ସମୟରେ ଘଟେ ? ଆଉ ଦିନାକେତେ ସତାର କରି ଯାଇଥିଲେ ଗୁଡ଼ଘର କ'ଣ ପିମ୍ପୁଡ଼ି ଖାଇ ଯାଉଥିଲେ କି ? ମାସ ଦି' ଚାରିଟା ମଝିରେ ଫାଙ୍କ୍ ପଡ଼ିଥିଲେ କ'ଣ ହୁଅନ୍ତା ନାହିଁ ? ଏତେ କାଳ ତ ତକେଇଲେ ବୁଢ଼ୀ ସା'ନ୍ତାଣୀ । ଆଉ କେତୁଟା ଦିନ ବଞ୍ଚି ଯାଇଥିଲେ କ'ଣ ମାରାଟା ହୁଅନ୍ତା ଭଲା ?'' ସାହାଣୀଙ୍କ ନିଜ ଭେଣ୍ଡାପୁଅ ତିନି ଜଣ ତାଙ୍କର ଆଗରେ ମରି ଯାଇଥାନ୍ତି— ଧର୍ମାନନ୍ଦ, ପରମାନନ୍ଦ ପୁଣି ଭଜନାନନ୍ଦ । ତଥାପି ମୁଁ ମାତୃହୀନ ହେଲି ବୋଲି ଆପଣା ଦୁଃଖ ପାସୋରି ମୋହପାଇଁ ଏତେ ଦରଦ ! ପରମାନନ୍ଦ ଥିଲେ ମୋର ଅନ୍ୟତମ ସାଥୀ ମ୍ୟାଜିକ୍ ଖେଳରେ - ବାଳକ ବୟସରେ । ମୋ ମନକଥା ପଡ଼ିଶାଘରର ସାହାଣୀଙ୍କ ମୁହଁରେ ଯେମିତି ପ୍ରତିଧ୍ୱନିତ ହୁଏ ମ୍ୟାଜିକ୍ ଭଳି । ସତକୁ ସତ ବାପା-ଭାଉଜ-ଭାଇନା-ଭାଗ୍ନୁ-ବୋଉ-ଆଗ ପଛ ହୋଇ ଚାଲେ ଆମ ଘରେ ମରଣ ରୋଶଣି । ମଝି ଫାଙ୍କ୍‌ଟା ଖୁବ୍ ସଂକୀର୍ଣ୍ଣ ହୋଇ ଏବେ ଜଣାପଡ଼େ, ଦୁର୍ଘଟଣାଗୁଡ଼ିକ ମଝିରେ ଥିବା ସମୟର ସବୁ ଫରକ ଏକାବେଳେ ଘୁଞ୍ଚି ଯାଇ ମାଳଗୁନ୍ଥା ହେଲାଭଳି ଲଗାଲଗି ହୋଇ ପଡ଼ିଲାଣି ପରା !

ଗାଁରୁ ଫେରି 'ସ୍ୱପ୍ନପୁରୀ' ଦୁଆର ମୁହଁରେ ଗୋଡ଼ ଦେଇଛି କି ନାହିଁ, ଲୁସିର ଡାକ୍ତରଖାନାରେ ଅସୁସ୍ଥତା ଆହୁରି ବଢ଼ିଥିବା ଖବର ପାଏଁ 'ଘରେ ନ ପଶୁଣୁ ଚାଳ ବାଜିଲା'' ଭଳି । ସଙ୍ଗେ ସଙ୍ଗେ ଚାଲେଁ ଡାକ୍ତରଖାନା । ବୋଉଙ୍କ ଦଶାହ କର୍ମ ଲାଗି ଗାଁକୁ ମୋର ଯାଇଥିବା ସମୟ ଭିତରେହିଁ ଲୁସି ଦେହ ବେଶି ଖରାପ ହୋଇପଡ଼େ । ତେଣୁ ଡାକ୍ତରଖାନା ଘେନିଯାନ୍ତି କୁନିର ପରାମର୍ଶ ଅନୁସାରେ ।

ଦୁଆରୀ ନାମରେ ଢେଙ୍କାନାଳର ଗୋଟିଏ ଲୋକ ସେତେବେଳେ ଘରେ ରହି ମୋର କାମ କରୁଥାଏ । ସେହି ମୋତେ ଆଗ ଖବରଟା ଯୋଗାଇ ଦିଏ ନିଜେ କାନ୍ଦିପକାଇ । ଅତି ସରଳଦରଦୀ ମଣିଷଟିଏ ଥିଲା ଦୁଆରୀ । ବାଡ଼ିରେ ମୋର ପଣସଗଛଟି ପୋତି କହି ଯାଇଥିଲା, ''ବାବୁ, ପଣସ ଖାଇଲାବେଳେ ଦୁାରୀକୁ ମନେ ପକେଇବେ'' ଏବେ ସେ ଗଛରେ ପଣସ ଫଳେ । ଦୁାରୀ କିନ୍ତୁ ନାହିଁ ଆଉ ଏ ପୃଥିବୀରେ । ପୁଅଠାରୁ ତା'ର ସେ ଖବର ମିଳେ । ପୁଅଟି ସହିତଁ ବି ଆଉ ଭେଟ ନାହିଁ ସେଇ ଦିନୁଁ ।

ଡାକ୍ତରଖାନା କନିକା କଟେଜ୍‌ରେ ଲୁସି ଶୋଇଛି । ବୋଉ ତା'ର ଜଗି ବସିଛନ୍ତି ଦିନରାତି । କନିକା କଟେଜ୍ ଦୁଆରେ ମୁଁ ପହଞ୍ଚିବା ମାତ୍ରେ ଆଗ ଆମେ ସ୍ତ୍ରୀ ପୁରୁଷ ଚିହ୍ନି ପାରିଲୁନି କେହି କାହାକୁ ଉଭୟ । ଘଟଣାଟା ମନସ୍ତାତ୍ତ୍ୱିକମାନଙ୍କର ଗବେଷଣାର ବିଷୟୀଭୂତ ହୋଇ ପଡ଼େ ନିଶ୍ଚୟ । ଆଜିକି ଠିକ୍ ପଚାଶ ବର୍ଷ ହେଲା ସ୍ୱାମୀ-ସ୍ତ୍ରୀ ହୋଇ ରହି ଆସିଥିବା ସମୟ ଭିତରେ ପରସ୍ପରକୁ ଚିହ୍ନି ନ ପାରି ମୁଁ ଭୁଲ୍‌ରେ ଡାକ୍ତରଖାନାର କେଉଁ ଘରେ ପହଞ୍ଚି ଯାଇଥିବା ଓ ମୋ ସ୍ତ୍ରୀ ଆଉ କେହି ପୁରୁଷ ଲୋକ ସେଠାକୁ ଆସିଥିବା ଅଚିହ୍ନା ମଣିଷ ଭଳି ଚାହୁଁ ପରସ୍ପରକୁ । ମୁଁ ଅବଶ୍ୟ ବୋଉଙ୍କ ଶୁଦ୍ଧିକ୍ରିୟାରେ ମୁଣ୍ଡ କ୍ଷୌର ହୋଇଥାଏଁ; କିନ୍ତୁ ରତ୍ନମଣିଙ୍କ ଚେହେରାଟା ତାଙ୍କର ନୁହେଁ ବୋଲି ବିଶ୍ୱାସ କରିବାର କିଛି ମାତ୍ର କାରଣ ମୁଁ ଖୋଜି ପାଇଲି ନାହିଁ ତ ! ବିଷୟଟା ନିଶ୍ଚୟ ମନସ୍ତାତ୍ତ୍ୱିକ । ଲୁସିର ଅବସ୍ଥା ଅବଶ୍ୟ ସଙ୍କଟାପନ୍ନ । ପୁଣି ଡାକ୍ତରମାନେ ଯକ୍ଷ୍ମାରୋଗ ବୋଲି ତା'ର ଅନୁମାନ କରିଛନ୍ତି । ମୋର ସାନଭାଇ ଭାଗୁର ମୃତ୍ୟୁ ସମୟରୁ ବନ୍ଧୁ ବିପଦର ସାଥି ଶ୍ରଦ୍ଧେୟ ଡାକ୍ତର ଶ୍ରୀ ଭଗବତୀ ପ୍ରସାଦ ଆଚାର୍ଯ୍ୟଙ୍କଠାରୁ ତାହା ଶୁଣେ । ଲୁସିକୁ ବଞ୍ଚାଇବାପାଇଁ ଲାଗିପଡୁ ସମସ୍ତେ ଆମେ ପ୍ରାଣପଣେ । ଭୟ ହୁଏ ମୋର, ଜନ୍ମରୁ ଥିଲା ଭାରି କାହୁରୀ । ସତେ ଅବା ତା'ରି ଜନ୍ମ ପରଠାରୁ ବାପା, ଶାଶୁ ଶ୍ୱଶୁର, ଭାଉଜ, ଭାଇନା, ଭାଗୁ ଆଦି ଜଣକ ପରେ ଜଣେ ସଂସାରରୁ ବିଦାୟ ନିଅନ୍ତି; ଜଣକପାଇଁ ଆମ ଲୁହ ଶୁଖିବା ଆଗରୁ ଆଉ ଜଣେ । ବୋଉଙ୍କ ତିରୋଧାନ ପରେ ମୋର ବାରମ୍ବାର ମନେପଡ଼େ–

ଅହନ୍ୟହନି ଭୂତାନି ଗଚ୍ଛନ୍ତି ଯମ ମନ୍ଦିରମ୍ ।
ଶେଷାସ୍ତୁ ସ୍ଥିରମିଚ୍ଛନ୍ତି କିମାଶ୍ଚର୍ଯ୍ୟମତଃ ପରମ୍ ॥

ଶେଷରେ ତ ମୁଁ କାହିଁକି ଆପଣାକୁ ସ୍ଥିର ମଣିପାରେ ନାହିଁ ସେତେବେଳେ । ସବୁ ମୋର ଅସ୍ଥିର ହୋଇ ପଡ଼େ–ଦେହ ମନ–ଅତୀତ ବର୍ତ୍ତମାନ ଏକାକାର– ଶୂନ୍ୟ ଶୂନ୍ୟ ମହାଶୂନ୍ୟ । ପାଦ ରଖିବାକୁ ଥାନ ମିଳେ ନି କାହିଁ ହେଲେ ଅବା !

କେହି ରହି ନାହିଁ ରହିବେ ନାହିଁଟି
ଭବରଙ୍ଗ ଭୂମିତଳେ
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳବଳେ ।

ତେବେ ଅଭିନୟଟା ଯଦି ବାଳକ ବାଳିକା ବୟସରୁ ସରିଯାଏ, ତା'ହେଲେ ନିଶ୍ଚୟ ଅସ୍ୱାଭାବିକ ଅନୁଶୋଚନାର ବିଷୟ ନୁହେଁ କି ? ସେହି ସମୟରେ ପୁଣି କୁନିକୁ ଆସି ରହିବାକୁ ହୁଏ ମଧ ଡାକ୍ତରଖାନା ପ୍ରସୂତି ଭବନରେ । ସେଥିଲାଗି ଏମ୍.ଏ. କ୍ଲାସରୁ ତାକୁ ଛୁଟି ନେବାକୁ ହୋଇଥାଏ । ରେଭେନ୍‌ସା କଲେଜ୍ ଷ୍ଟ୍ରାଇକ୍ ଠିକ୍ ସେତିକିବେଳେ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ କାର୍ଯ୍ୟକାଳ । କୁନିକୁ ଏଇ ପରିସ୍ଥିତିରେ କେବଳ କଟକ ମେଡ଼ିକାଲ କଲେଜ୍ ହସ୍‌ପିଟାଲର ପ୍ରସୂତି ଭବନର ନିବିଡ଼ ଘେର ଭିତରଟା କାହିଁକି, ପୃଥିବୀର କେଉଁଠି କିଏ ରୋକି ପାରନ୍ତା ଅବା ! ଏଣେ ଡାକ୍ତରଖାନାରେ ଲୁସିର ଜୀବନ ମରଣ ସମସ୍ୟା, ତେଣେ ଆସନ୍ନପ୍ରସବା କୁନିକୁ ଡାକ୍ତରଖାନାରେ ଅଟକାଇ ରଖିବା ଉତ୍କଣ୍ଠା । ଡାକ୍ତରଖାନାରୁ ସେ ବାହାରି

ଯିବା ପରେ ପ୍ରସୂତି ଭବନର ଜଣେ ନର୍ସ ମୋତେ ଆସି ଖବରଟା ଦିଅନ୍ତି କନିକା କଟେଜ୍‌ରେ ।

ଲୁସିକୁ ମରଣାପନ୍ନ ଅବସ୍ଥାରେ ଆମେ ବାପା ମା ଦିନରାତି ଜଗି ରହି ଛଟପଟ ହେଉଛୁଁ ପ୍ରାଣ ବିକଳରେ । କଟକ ସହର ସାରା ଯେମିତି ହୁଲ୍‌ସ୍ଥୁଲ୍ । ବନ୍ଧୁକଧାରୀ ମିଲଟାରୀ ଫୋର୍ସ ଯାଇ ଜଗି ରହିଲେଣି କଲେଜ୍ ଚାରିପଟେ । କୁନି ଗଲା କୁଆଡ଼େ ଏମିତି ପୁଣି ତା'ର ଶାରୀରିକ ଅବସ୍ଥାର !

ଘଟଣାଚକ୍ର ମଝିରେ ମଝିରେ ଏମିତି ଜୋରରେ ବୁଲିବାକୁ ଆରମ୍ଭ କରେ, ସେଥିରେ ମଣିଷ କାହିଁ ପାଦ ରଖି ସ୍ଥିର ହେବାପାଇଁ ରହାଟିକିଏ ପାଏ ନାହିଁ । ସେଠାରେ ତାକୁ କିଏ ଯେ ସମ୍ଭାଳି ନିଏ, ତାହା ବୁଝିବା କେବଳ ଅସମ୍ଭବ ଛଡ଼ାତ ଆଉ କିଛି ହୋଇ ପାରେ ନାହିଁ । ତଥାପି ମଣିଷ ଥୟ ଧରି ରହେ କିପରି ? କିଏ ସେ ତା'ର ସହାୟ ? ଭଗବାନ୍ ? ନାହିଁ ତ । କୌଣସି ଅଦୃଶ୍ୟ ଅଜ୍ଞାତ ଶକ୍ତି ଉପରେ ବିଶ୍ୱାସ କରିବା ସମୟ ମୋର ତ ନୁହେ ସେ ! ଏତେ ବଡ଼ ଦୁର୍ବଳତାକୁ ସ୍ୱୀକାର କରିଯିବା କଣ ଜଣେ ହେତୁବାଦୀ ପକ୍ଷରେ ସମ୍ଭବପର ! ମାତ୍ର ଜୀବନ ସ୍ରୋତରେ କେତେ ଅହେତୁକ ଘଟଣା ଏମିତି ଘଟିଯାଏ–ପରେ ଯାହାର କାରଣ ଉଦ୍ଭାବନ ଲାଗି ଉଦ୍ୟମ କଲେ............. ବିସ୍ମୟ ! ବିସ୍ମୟ !

ସବୁଠାରୁ ମୋର ବଡ଼ ପ୍ରଶ୍ନ ସେତେବେଳେ— "କୁନି ଗଲା କୁଆଡ଼େ ?"



# ମୃତ୍ୟୋର୍ମାଽମୃତମ୍ ଗମୟ

ମାସ ମାସ ବର୍ଷ ବର୍ଷ ବିତିଗଲା । ଦିନ ନାହିଁ ରାତି ନାହିଁ ଏହି ପ୍ରଶ୍ନଟା ହିଁ ଆମ ଭିତରେ ସବୁଠାରୁ ବଡ଼ ଭୟ ସୃଷ୍ଟି କରିଥାଏ । ପୁଣି ଭୟଟା ଆଜି ଯେ ତାହାର ବାସ୍ତବ ରୂପ ଘେନି ସାମ୍ନାରେ ଆସି ଅଟ୍ଟହାସ୍ୟ କଲାଣି । ଲୁସିକୁ ଛାଡ଼ି ଦଣ୍ଡେ ହେଲେ ତ କୁଆଡ଼ିକି ଯିବା ଉପାୟ ନାହିଁ— ପୁଣି କଲେଜ୍‌ଛକର ହଜାର ହଜାର ଲୋକଗହଳି ଭିତରେ କୁନିକୁ ଅବା ଖୋଜି ପାଇବ କିଏ ! ଘର ସଂସାର ସବୁ ଆଶା ଛାଡ଼ିଦେଇ ଆମେ ବାପ ମା ଚୁପ୍‌ଚାପ୍ ବସି ରହିଛୁଁ । ଏତିକି ବେଳେ ପହଞ୍ଚିଯାଏ ଆସି ପୁତୁରା ନୀହାର ।

ଭାଗୁ ସଂସାରରୁ ବିଦାୟ ଘେନି ଯିବା ପରେ ନୀହାର ଉପରେ ଆମ ଯୌଥ ପରିବାରର ଅନେକ ଦାୟିତ୍ୱ ପଡ଼ିଥାଏ ତା'ର ଅଳ୍ପ ବୟସରେ ଅବଶ୍ୟ । ଆଜି କଟକ ଡାକ୍ତରଖାନା କନିକା କଟେଜ୍‌ରେ ନୀହାରକୁ ଦେଖି ମନ ଭିତରେ ଟିକିଏ ଆଶ୍ୱାସନା, ଦମ୍ଭ ଓ ସାହସ ଆସେ । କୁନି ପ୍ରସୂତି ଭବନରୁ କାହାରିକି କିଛି ନ କହି ବାହାରି ଯାଇଛି ବୋଲି ମୁଁ ଜଣାଏ ନୀହାରକୁ ।

ସଙ୍ଗେ ସଙ୍ଗେ ସେ ତା'ର ମଟର ଧରି ଚାଲେ କଲେଜ ଛକକୁ । ନୀହାର ବାହାରିଯିବା ଅଳ୍ପ ସମୟ ପରେ କଲେଜଛକରୁ ଡାକ୍ତରଖାନା ଲୋକେ ଦୌଡ଼ି ଆସି କହିଲେ, ସେଠାରେ ଗୁଳି ଚାଲିଲାଣି— ଜମା ହୋଇଥିବା ହଜାର ହଜାର ଲୋକ କିଏ କୁଆଡ଼େ ପଳାଇଛନ୍ତି । ତା' ହେଲେ କୁନି ? ମିଲିଟାରୀ ପୋଲିସ୍ ଯେ ଗୁଳି ଚଳାଇଲାଣି !

ଆମ ବାପ ମା'ଙ୍କ ଛାତିରେ ମଧ ସେଇ ଗୁଳି ଯେମିତି ଆସି ବିଦ୍ଧ ହୁଏ ଅକସ୍ମାତ୍ । ଲୁସି ସେତେବେଳେ କନିକା କଟେଜ୍‌ରେ ରୋଗୀ ଶଯ୍ୟାରେ ପଡ଼ି ରହିଥାଏ ଜ୍ଞାନଶୂନ୍ୟା ହୋଇ । ଜ୍ଞାନ ଆସିଲେ ବାଉଳି ଚାଉଳି ହୋଇ କହେ— ''ଯାହାକୁ ମାରିବେ ଅନନ୍ତ, ତାକୁ କି ରଖିପାରେ ବଳବନ୍ତ ?'' ପୁଣି, ''ଯାହାକୁ ରଖିବେ ଅନନ୍ତ, ତାକୁ କି ମାରିପାରେ ବଳବନ୍ତ ?''

ଆମ ଯୌଥ-ପରିବାର ଭିତରେ ବାରିପଦାରୁ ଆରମ୍ଭ କରି ପ୍ରାୟ ଏକାଦିକ୍ରମେ ଲାଗି ରହିଲାଣି ମରଣ ରୋଶଣି । ସେଇ ରୋଶଣିର ଶେଷ ପର୍ଯ୍ୟାୟ କେଉଁଠି ତା' ହେଲେ ? କେଉଁଠି ? ଚାରିଆଡୁ ଘୋଟିଆସେ ଯେମିତି ମରଣ ଛାୟା । ସେଇ ଛାଇରୁ ବର୍ତ୍ତିବାକୁ ଆଜି ଉପାୟ ନାହିଁ । ଚାରିଆଡ଼ ଘୋଟିଯାଇ ବନ୍ଦ କରିଦିଏ ସେ ଜୀବନର ସବୁ ବାଟ, ସବୁ ଫାଙ୍କ ।

ପ୍ରବଳ ଉଦ୍‌ବେଗ ଭିତରେ ନୀହାର ତା'ର ଗାଡ଼ି ଘେନି ଆସି କନିକା କଟେଜ୍ ସାମ୍ନାରେ ପହଞ୍ଚେ । ଗାଡ଼ି ଭିତରେ ବସିଛି କୁନି ! ମୁଣ୍ଡରୁ ଗୋଡ଼ଯାକେ ପାଣି ସରସର, ହୋସ୍ ପାଇପ୍ ମାଡ଼ରେ । ସେହି ମାଡ଼ ସହିତ ନୀହାରଠାରୁ ଯେଉଁ ଚପେଟାଘାତ ସେ ପାଇଥିଲା, ତାହା ମଧ ପରେ ଆମକୁ ଜଣାଏ— ଜୀବନରେ ତା'ର ଏଭଳି ଆଘାତ କେବେ ହେଲେ ପାଇ ନଥିଲା ସେ; କିନ୍ତୁ ସେଇ ଆଘାତ ଯେ ତାକୁ ଜୀବନ୍ତରେ ଫେରାଇ ଆଣିଲା ଆମ ପାଖକୁ, ସେଥିଲାଗି ନୀହାରକୁ ଆମେ ନିକଟତର କରିପାରୁଁ ।

ଖବରକାଗଜରେ ବାହାରେ, କୁନି ହିଁ ଥିଲା ସେ ଦିନ କଲେଜ୍ ଷ୍ଟ୍ରାଇକ୍‌ର ପ୍ରଧାନ ନେତ୍ରୀ । ସେଇ ବାହାରିପଡ଼େ ପହିଲେ ଆଗୁଆ ହୋଇ ହଜାର ହଜାର ଛାତ୍ରଛାତ୍ରୀଙ୍କ ଭିତରୁ ମିଲିଟାରୀ ପୋଲିସ୍‌ର ବନ୍ଧୁକକୁ ସାମ୍‌ନା କରି । ବନ୍ଧୁକ ଫାଏର୍ ହେବା ଆଗରୁ ଅବଶ୍ୟ ହୋସ୍ ପାଇପ୍ ପ୍ରୟୋଗ ।

ଘଟଣାଟିର ଅଳ୍ପ ଦିନ ପରେ ପ୍ରସୂତି ଭବନରେ ତା'ର ବଡ଼ପୁଅର ଜନ୍ମ । ସେତେବେଳେ ତା'ର ରାଜନୀତି କ୍ଷେତ୍ରରେ ବନ୍ଧୁ ଓ ସହକର୍ମୀ ଡାକ୍ତର ଶ୍ରୀମତୀ ନିରୁପମା ରଥ ଡାକ୍ତରଖାନାରେ ହାଉସ୍ ସର୍ଜନ (ଚିକିତ୍ସକ) କିମ୍ବା ଛାତ୍ରୀ ।

ପୁଅଟିକୁ ଧରି 'ସ୍ୱପ୍ନପୁରୀ'କୁ ଆସିବା ଆଗରୁ କୁନି କନିକା କଟେଜ୍‌ରେ ପହଞ୍ଚେ ଆମ ପାଖରେ । ସେତେବେଳେ ସେ ଭାବିଥିଲା, ହୁଏ ତ ନୂଆ ପୁଅଟିକୁ ଚାହିଁ ତା'ର ସବୁ ତ୍ରୁଟିକୁ ମୁଁ କ୍ଷମା କରିଦେବି । ମାତ୍ର ମନଟା ମୋର କେବଳ ଗୋଟାଏ ଘୋର ଅନ୍ଧକାରମୟ ମରଣ ରୋଶଣି ଭିତରେ ଉବୁଟୁବୁ ଖାଉଥାଏ । ସାମ୍ନାରେ ଅବା ନାଚି ଯାଉଥାଏ ଇଂରେଜ କବି ସେକ୍ସପିଅର୍‌ଙ୍କ ଓଥେଲୋ ନାଟକର ହତ୍ୟା ବିଭୀଷିକାର ଚିତ୍ର । ବିକ୍ଷୋଭ ହୋଇଉଠେ ବିରକ୍ତିରେ ତା' ଉପରେ ମୋର ଅନ୍ତରମୟ । ସେଇ ଦୁଃଖ ବିଭୀଷିକାର ଉପଶମ' ପାଇଁ

ଯେମିତି ଅବା ସେ କୋଳରେ ଧରି ଆସିଥିଲା ନୂଆ ପୁଅଟିକୁ କନିକା କଟେଜ୍‌କୁ । ପୁଅଟିକୁ ଚାହିଁ ମନ ମୋର ପୂରି ଉଠିଥିଲା ନିଶ୍ଚୟ; କିନ୍ତୁ କୁନି ଆଗରୁ ଆନନ୍ଦ ଆବେଗକୁ ଲୁଚାଇବାକୁ ପଡ଼େ ମୋତେ ବୋଧହୁଏ । 'ଏଠିକି କାହିଁକି ଆସିଲୁ ?' ବୋଲି କ୍ରୋଧ ବିରକ୍ତିରେ ପଚାରେଁ ତାକୁ ।

ମୋ ବିରକ୍ତିରେ ମୁହଁରୁ ତା'ର କଥା ବାହାରେନି; କେବଳ ଡୋଳା ଯୋଡ଼ିକରୁ ଝରଝର ହୋଇ ବୋହିପଡ଼େ ଯେମତି ଅସରନ୍ତି ଲୁହର ଧାର । ଆଉ ସେହି ଲୁହଧାର ଅବା ଜଣାଇଦିଏ ମୋତେ ଯେ, ଯାହା ସବୁ ଘଟି ଯାଇଛି ସେଥିଲାଗି କୁନି କେବଳ ଏକା ଦାୟୀ ନୁହେଁ । ନିଜେ କ'ଣ ମୁଁ ଦାୟୀ ନୁହେଁ କି ? ସରକାର ବିରୋଧୀ ପ୍ରଚାର ଲାଗି ନିଜେ ବି କ'ଣ ମୁଁ କମ୍ ଦାୟୀ କି ? କୁନି ଭିତରୁ ଯେପରି କେଉଁ ଅଜଣା ଶକ୍ତି ତାକୁ ଓଟାରି ନିଏ ଏଇ ବିପଦ ଆଗକୁ ମୁହାଁଇ ଯିବାପାଇଁ । ପଛେଇବାକୁ ଅବା ବାଟ ନ ଥାଏ ତା'ର । ଅନ୍ୟ ବାଟେ ଯିବା ମଧ ତା' ପକ୍ଷରେ ଅସମ୍ଭବ ଏକାବେଳେକେ ଯେମିତି । ''ଯଥା ନିଯୁକ୍ତୋଽସି ତଥା କରୋମି'' ।

ନୂଆ ପୁଅଟିର ଜନ୍ମ ମାତ୍ରେ ଦେଖାଗଲା ଗର୍ଭରୁ ତା'ର ଗୋଟିଏ ଦାନ୍ତ ଉଠିଛି । କିଏ କହିଲେ ଏହା ଶୁଭ ଲକ୍ଷଣ, ଆଉ କିଏ ଅଶୁଭ । କିନ୍ତୁ କବି ଶ୍ରୀ ରାଧାମୋହନ ଗଡ଼ନାୟକଙ୍କଠାରୁ ଶୁଣି ଆଶ୍ୱାସନା ମିଳେ ଯେ କୌଟିଲ୍ୟ-ଅର୍ଥଶାସ୍ତ୍ରର ପ୍ରଣେତା ପୁଣି ନନ୍ଦବଂଶଧ୍ୱଂସକାରୀ ଚାଣକ୍ୟ ମହର୍ଷିଙ୍କର ମାତୃଗର୍ଭରୁ ଦଶନ ଉଦ୍‌ଗମ ହୁଏ । ପୁଅଟିର ଏକୋଇଶିଆ ପୂଜାରେ ମୁଁ ତାହାର ନାମକରଣ କରେ ଯମଜୟୀ 'ନଚିକେତା' ।

ମୁହୁର୍ମୁହୁଃ ଏଇ ଛାଇ-ଆଲୁଅ, ହସ କାନ୍ଦ ଭିତରେ ଶୁଣେ କିମ୍ବା ଦେଖେଁ ଆଜି କୁନି ହେଲାଣି ଓଡ଼ିଶାର ମୁଖ୍ୟମନ୍ତ୍ରୀ । ତା' ଆଗରୁ ପରା କେତେ ମୁଖ୍ୟମନ୍ତ୍ରୀ କାହୁଁ ଆସି କାହିଁ ପୁଣି ଗଲେଣି । କିଏ ଆସିଗଲେ, କାହାର କି କଲେ କେଜାଣି । ତେବେ କୁନି ଆପଣା ବାପ ମାଆ ଦୁଇଟା ମଣିଷଙ୍କ ଆଖି ପାଣି ତା' ଜନ୍ମରୁ ଆଜିଯାକେ କାହିଁ ଶୁଖାଇ ତ ପାରି ନାହିଁ ! ଆଉ ସେ ଦୁଇକୋଟି ଓଡ଼ିଶାବାସୀଙ୍କ ଆଖି ଲୁହ ପୋଛିବ ସତେ ! ଉତ୍କଳମଣି ଗୋପବନ୍ଧୁଙ୍କ ସମୟରୁ ସେ ଆଖିଲୁହ ତ ଶୁଖିଲାନି କାହିଁ ?

ସାନ ଝିଅ ଲୁସିର ବିଭାଘର ସ୍ଥିର କରି ପୁଣି ନିମନ୍ତ୍ରଣ ବାଣ୍ଟିସାରି ଶେଷରେ ମୁଁ ଶଯ୍ୟାଶାୟୀ ହୁଏ । ବିବାହ ସ୍ଥିର କରିବା ଦାୟିତ୍ୱ ଅବଶ୍ୟ ନେଇଥାନ୍ତି ମୋର ବଡ଼ଜୋଇଁ ଶ୍ରୀମାନ୍ ଦେବେନ୍ଦ୍ର । ରଣପୁର ରାଜନୀତି ଆନ୍ଦୋଳନରେ ସମ୍ପୃକ୍ତ ରହିବା ପରେ ରେଭେନ୍‌ସା କଲେଜରେ ଅଧାପକ ହୋଇଥିବା ଶ୍ରୀମାନ୍ ଗୋପାଳଚନ୍ଦ୍ର ମିଶ୍ରଙ୍କ ସହିତ ବିବାହ ସମ୍ପନ୍ନ ହୁଏ । ସେତେବେଳେ ନିମନ୍ତ୍ରିତ ବନ୍ଧୁମାନଙ୍କୁ ସ୍ୱବା ଅଭ୍ୟର୍ଥନା କରିବା ସାମର୍ଥ୍ୟ ନ ଥାଏ ମୋର, ପୁଣି ଓଡ଼ିଶାର ରାଜ୍ୟପାଳ ଶ୍ରୀ କୁମରସ୍ୱାମୀ ରାଜାଙ୍କୁ ମଧ ମୁଁ ଯାଇ ନିମନ୍ତ୍ରଣ କରି ଆସିଥାଏଁ ପୂର୍ବରୁ । ମୋର ବର୍ତ୍ତମାନ ଆକସ୍ମିକ ଅସୁସ୍ଥତା କାରଣରୁ ତାଙ୍କ ଅଭ୍ୟର୍ଥନା କରିପାରିବି ନାହିଁ ବୋଲି ଜଣାଇବାକୁ ହୁଏ ଦୁଃଖର ସହିତ ।

ସ୍ୱାଧୀନତା ପରେ ଓଡ଼ିଶା ରାଜ୍ୟପାଳ ସ୍ୱର୍ଗତ ଅଯୋଧ୍ୟାନାଥ କାଟ୍‌ଜୁ, ଓ ଶ୍ରୀ ଅସଫ ଅଲ୍ଲି ପ୍ରଭୃତିଙ୍କ ସହିତ ଯେପରି ସହୃଦୟତା-ସୂତ୍ରରେ ମୁଁ ଆବଦ୍ଧ ହୁଏଁ, ସେଇଭଳି ଶ୍ରୀ କୁମାରସ୍ୱାମୀ ରାଜାଙ୍କ ସହିତ ମଧ୍ୟ । ଚଣାହଟା ଜନବିଦ୍ୟାଳୟ ପରିଚାଳନା କମିଟୀର ମୁଁ ସଭାପତି ଥିବା ସମୟରେ ରାଜ୍ୟପାଳ କାଟ୍‌ଜୁଙ୍କୁ ମୋର ଜନ୍ମସ୍ଥାନ ବିଶ୍ୱନାଥପୁର ହରିଜନ ବସ୍ତିରେ ଏକ ସଭାକୁ ଡାକି ସମ୍ବର୍ଦ୍ଧନା କରିଥିଲି, ସେଇପରି ଓଡ଼ିଶାର ପ୍ରଥମ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାଶଙ୍କଠାରୁ ଆରମ୍ଭ କରି ପୁଣି ଶ୍ରୀ ହରେକୃଷ୍ଣ ମହତାବ୍‌ଙ୍କ ସଂସ୍ପର୍ଶରେ ଆସିବା ସୁଯୋଗ ମୋର ସାଧାରଣ କ୍ଷେତ୍ରରେ ଘଟେ । କାରଣ ନିଜେ ଅସାଧାରଣ କ୍ଷେତ୍ର ପ୍ରସ୍ତୁତ କରି ପାରିବାର ଯୋଗ୍ୟତା କେବେ ମୁଁ ହାସଲ କରିପାରି ନ ଥିଲି, ବନ୍ଧୁମାନଙ୍କୁ ସୁଦ୍ଧା ଅଭ୍ୟର୍ଥନା କରିବାର ସାମର୍ଥ୍ୟ ନ ଥାଏ ମୋର । କୌଣସି ପ୍ରକାର ଉଦ୍‌ବେଗ ମନରେ ମୋର ନ ରଖିବା ପାଇଁ ଡାକ୍ତର ଭଗବତୀପ୍ରସାଦ ଆଚାର୍ଯ୍ୟଙ୍କର ଥାଏ କଡ଼ା ନିର୍ଦ୍ଦେଶ, ମନଟା ମୋର ସେଇ ନିର୍ଦ୍ଦେଶକୁ କେତେ ଦୂର ଗ୍ରହଣ କରି ପାରିଥିଲା, ସ୍ମରଣ କରିବାକୁ ମୁଁ ଅସମର୍ଥ ।

ଦେହଟା କିନ୍ତୁ ଡାକ୍ତରି ନିର୍ଦ୍ଦେଶକୁ ମାନି ପଡ଼ିରହେ ଅନବରତ ଶଯ୍ୟାଶାୟୀ ହୋଇ । ଡାକ୍ତର ଭଗବତୀ ଆଚାର୍ଯ୍ୟଙ୍କର ମୁଁ ଜଣେ ଆଦର୍ଶ ସ୍ଥାନୀୟ ରୋଗୀ ବୋଲି ପ୍ରଶଂସା ଶୁଣେ ଅନ୍ୟମାନଙ୍କ ମୁହଁରୁ; ମାତ୍ର ମୂଳରୁ ରୋଗୀ ହେବାଟା ଯେ ଆଦୌ ପ୍ରଶଂସାର କଥା ନୁହେଁ– ବରଂ ମୋର ଅସାବଧାନତା ଓ ନିୟମହୀନତା ହିଁ ସେଥିଲାଗି ଯେ ଅବଶ୍ୟ ଦାୟୀ— ତାହା ସଦାଶୟ ଚିକିତ୍ସକ ଡାକ୍ତର ଭଗବତୀ ବାବୁ କେବେହେଲେ ଉଲ୍ଲେଖ କରନ୍ତି ନାହିଁ ।

ଇଂରାଜୀରେ ଗୋଟିଏ କଥା ଅଛି— ବିଜ୍ଞଲୋକ ଘର ଖରିଦ୍ କରନ୍ତି; କିନ୍ତୁ ତାହା ତିଆରି କରନ୍ତି ବୋକାଯାକ (Wise men purchase a house while fools build it। ଘରଟା ତିଆରି କରି ସାରିବା ପରେ କଥାଟିକି ଥରେ ମନେ ପକାଇ ଦିଅନ୍ତି ବୋଧହୁଏ ମୋର ପୁସ୍ତକ ପ୍ରକାଶକ ଶ୍ରୀ ଶ୍ରୀଧର ମହାପାତ୍ର । ସେତେବେଳେ ଅବଶ୍ୟ ନିଜେ ନିଜ ଘର ତୋଳିବା ଆରମ୍ଭ କରି ନଥିଲେ ସେ; ମୋର ଅନ୍ୟତମ ପ୍ରକାଶକ ଶ୍ରୀ ଅନନ୍ତ ମିଶ୍ର ଓ ଆଉ କେତେ ସମସାମୟିକ ପ୍ରକାଶକ ଓ ଲେଖକ ମୋର ବୋକାମିର ପଦାଙ୍କ ଅନୁସରଣ କରନ୍ତି । ବ୍ୟସ୍ତ ବିବ୍ରତ ଅତୀତର କବି ଓ ଭାବୁକମାନେ ବୋଧହୁଏ ସେଇ କାରଣରୁ ନୈମିଷାରଣ୍ୟ କିମ୍ବା ବାଲ୍ମୀକି ଆଶ୍ରମରେ ଶ୍ରେଷ୍ଠ ରଚନାର ସୃଷ୍ଟି କରନ୍ତି ।

ଘରଟା କରିବା ପରେ ଆଉ ଏକ ମହାବିପଦ ମଧ୍ୟ ଇନ୍‌କମ୍ ଟିକସ — ସେଥିପାଇଁ ଜମା, ଖର୍ଚ୍ଚ, ଲାଭ, ଲୋକସାନ୍ ହିସାବ ଦାଖଲ କରିବାକୁ ତାଗଦା ! ସେତେବେଳେ ଇଚ୍ଛା ହୁଏ, ଘରଦ୍ୱାର ଭାଙ୍ଗିଭୁଙ୍ଗି ଏକାବେଳେ କ୍ଷତିବ୍ରତ ଗ୍ରହଣ ପାଇଁ, କାରଣ ସେଥିଲାଗି ଲୋକ ନମଦ କରି ମୋତେ ହିସାବ ପ୍ରସ୍ତୁତ କରିବାକୁ ହୁ, ରୀତିମତ ଓ ବେଡ଼ି ଉପରେ କୋରଡ଼ାଭଳି ସେତେବେଳେ କଟକର ଦୁଇଟି ଗୋଟିଏ ପତ୍ରପତ୍ରିକା ମୋର ଘୋର ସମାଲୋଚନା କରନ୍ତି ଘର ତୋଳିବା ଘଟଣାରେ, ସ୍ୱର୍ଗତ ଗୋଦାବରୀଶ ମହାପାତ୍ରଙ୍କ ସମ୍ପାଦନାରେ ପ୍ରକାଶିତ 'ନିଆଁ ଖୁଣ୍ଟା' ପତ୍ରିକାରେ ବାହାରେ— ମୁଁ 'ମାଟିର ମଣିଷ' ବହି ଲେଖି ଶେଷକୁ କଟକ ସହରରେ

ଇଟାପୁର୍କିରେ କୋଠାଘର କଲି । ଆଉରି ଶ୍ରୀ ହରେକୃଷ୍ଣ ମହତାବଙ୍କ 'ପ୍ରଜାତନ୍ତ୍ର' ପତ୍ରିକାରେ ମଧ ପ୍ରକାଶ ପାଏ ଯେ, ମୁଁ ଗଡ଼ଜାତରେ ଚାକିରି କରି ରାଜାମାନଙ୍କ ଟଙ୍କାରେ ଘର ତୋଳେଁ; ଅଚ୍ଛ କିଛି କାଳ ପରେ ଦେଖାଯାଏ ଉଭୟ କାଗଜର ମାଲିକମାନେ ପୁଣି ତାଙ୍କ କର୍ମଚାରୀମାନଙ୍କ ସମେତ ଏକାଧିକ କୋଠା ତୋଳି ସାରିଲେଣି— ଅବଶ୍ୟ ରାଜା କି ପ୍ରଜା କାହା ଟଙ୍କାରେ, ତାହା ତାଙ୍କୁ ହିଁ ଗୋଚର ।

ତଥାପି ଗୋଟିଏ ଦିଗରେ ମୋହ ବିରୁଦ୍ଧରେ ସମାଲୋଚନା ତାଙ୍କର ଅକାଟ୍ୟ— ତାହାଁ ହେଲା ମୋହ ଛଡ଼ା ସେ ଦୁଇ କାଗଜର ମାଲିକ ଦୁହେଁ ସାଫ୍‌ସାଫ୍ ସାଲିସ୍ କରିଛନ୍ତି ଗଡ଼ଜାତ ରାଜାଙ୍କ ସହିତ— କେତେବେଳେ ସିଧାସଳଖ ରାଜନୈତିକ ସାଲିସ୍‌ସ୍ତରରେ ଅବା ଅନ୍ୟବେଳେ ପରୋକ୍ଷରେ ।



# ଦିଲ୍ଲୀ-ଜୟପୁରରେ ଲେଖକ-ସମ୍ମିଳନୀ

ଏଇ ସବୁ ଦୁଶ୍ଚିନ୍ତାରେ ସୁଦୀର୍ଘ ଛ'ଟି ମାସ କିମ୍ବା ତଦୂର୍ଦ୍ଧ୍ୱ ମୋତେ ଶଯ୍ୟାଶାୟୀ ହେବାକୁ ପଡ଼େ । ସେଇ ଅବସ୍ଥାରେ ମୁଁ ଶ୍ରୁତଲିଖନ ସାହାଯ୍ୟରେ ମଧ କେତେକ ପାଠ୍ୟପୁସ୍ତକ ଓ ପତ୍ରପତ୍ରିକା ଲାଗି ପ୍ରବନ୍ଧ ରଚନା କରେଁ ।

ରୁଷ୍ ଭ୍ରମଣ ଲାଗି ଯେଉଁ ବ୍ୟବସ୍ଥା କରୁଥିଲି, ତାହାକୁ ସୁଦ୍ଧା ବାତିଲ୍ କରିଦେବାକୁ ହୁଏ ମୋତେ । ଅନ୍ୟ ଏକ ନିମନ୍ତ୍ରଣ ଆସେ ଦିଲ୍ଲୀ ସଙ୍ଗୀତ-ନାଟକ-ଏକାଡେମୀ ପକ୍ଷରୁ । ଭାରତୀୟ ବିଭିନ୍ନ ଭାଷାରେ ରଙ୍ଗମଞ୍ଚ ଓ ନାଟକ ରଚନାର ଅଗ୍ରଗତି ସମ୍ପର୍କରେ ଆଲୋଚନା । ପ୍ରତ୍ୟେକ ଭାଷାଭାଷୀ ଅଞ୍ଚଳରୁ ପ୍ରତିନିଧିମାନେ ଯୋଗ ଦେଉଛନ୍ତି । ମୁଖ୍ୟ ଆବାହକ ସ୍ୱର୍ଗତ ନାଟ୍ୟକାର ଶ୍ରୀ ସଚିନ୍ ସେନ୍‌ଗୁପ୍ତ—ପ୍ରସିଦ୍ଧ ନାଟକ 'ସିରାଜୌଦଲ୍ଲା'ର ରଚୟିତା ।

ମୋର ଅସୁସ୍ଥ ଅବସ୍ଥା ଦୃଷ୍ଟିରୁ ସାଥିରେ ଜଣକୁ ନେବାପାଇଁ ମଧ ଏହି ସଂସ୍ଥା ଖର୍ଚ୍ଚ ବହନ କରିବାକୁ ରାଜି ହୁଅନ୍ତି, ତେଣୁ ମୋର ସହଗାମୀ ହୁଅନ୍ତି ଜ୍ୟେଷ୍ଠ ଜାମାତା ଶ୍ରୀମାନ୍ ଦେବେନ୍ଦ୍ରନାଥ ଶତପଥୀ ।

ସପ୍ତାହବ୍ୟାପୀ ଏହି ଆଲୋଚନାରେ ଓଡ଼ିଆ ନାଟକ ଓ ରଙ୍ଗମଞ୍ଚ ସମ୍ପର୍କରେ ମୁଁ ନିବନ୍ଧ ଲେଖି ପାଠକରେଁ ।

ଓଡ଼ିଶାରେ ରଙ୍ଗମଞ୍ଚର ପ୍ରସାର ଓ ସେତେବେଳେ ପ୍ରାୟ ଦୁଇ ତିନଟି ରଙ୍ଗମଞ୍ଚରେ ପ୍ରତି ଦିନ ନାଟକାଭିନୟର ବର୍ଣ୍ଣନା ଶୁଣି ଆଲୋଚନାଚକ୍ରକୁ ନିମନ୍ତ୍ରିତ ହୋଇ ଆସିଥିବା ଭାରତର ସବୁ ଅଞ୍ଚଳର ପ୍ରତିନଧିମାନେ ବିସ୍ମିତ ଓ ଆହ୍ଲାଦିତ ହୁଅନ୍ତି । ମୋହ ସହିତ ଓଡ଼ିଶାରୁ ଯାଇଥାନ୍ତି ଡକ୍ଟର ମାୟାଧର ମାନସିଂହ । ତାଙ୍କ ନିବନ୍ଧରେ ମଧ ଏହି କଥା ସେ ଉଲ୍ଲେଖ

କରନ୍ତି । ଭାରତର ଅନ୍ୟାନ୍ୟ ସକଳ ରାଜ୍ୟ ତୁଳନାରେ ରଙ୍ଗମଞ୍ଚ କ୍ଷେତ୍ରରେ ଓଡ଼ିଶା ଯେ ଅଗ୍ରଗାମୀ, ଏହି ଧାରଣା ଶ୍ରୋତାମାନଙ୍କ ମଧ୍ୟରେ ଜନ୍ମିଥାଏ ! ବନ୍ଧୁ ଶ୍ରୀ ଅନ୍ନଦାଶଙ୍କର ରାୟ ମଧ୍ୟ ସେଠାରେ ମୋତେ ସମର୍ଥନ ଜଣାନ୍ତି ।

ଗୁଜୁରାଟ ପଶ୍ଚିମବଙ୍ଗ ପ୍ରଭୃତି କେତେକ ଅଞ୍ଚଳରୁ ଆସିଥିବା ପ୍ରତିନିଧିମାନେ ତହୁଁ ପ୍ରଶ୍ନ କରନ୍ତି— ଓଡ଼ିଆ ଚଳଚ୍ଚିତ୍ରର ସଂଖ୍ୟା କି ପରିମାଣରେ ଅଗ୍ରଗତି କରିଛି ? ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଓଡ଼ିଆ ଚଳଚ୍ଚିତ୍ରର ସଂଖ୍ୟା ଯେ ଅତି ନଗଣ୍ୟ ତାହାହିଁ ରଙ୍ଗମଞ୍ଚ ପ୍ରାଧାନ୍ୟର କାରଣ ବୋଲି ସେଠାରେ ଧାରଣା ଜନ୍ମେ । ଆଜି କିନ୍ତୁ ଆଞ୍ଚଳିକ ଭାଷା ତୁଳନାରେ ହିନ୍ଦୀ ଚିତ୍ରର ବାହୁଲ୍ୟହିଁ ଲକ୍ଷିତ ହୁଏ ସର୍ବତ୍ର । ସେଥିସହିତ ନାଟକ ରଚନା ଓ ଅଭିନୟର ସଂଖ୍ୟା ମଧ୍ୟ ଊଣା ପଡ଼ିଗଲାଣି ।

ମରାଠୀ ନାଟ୍ୟକାର ସ୍ୱର୍ଗତ ମାମା ୱାରେରକାର, ହିନ୍ଦୀ ଔପନ୍ୟାସିକ ଶ୍ରୀ ଜୈନେନ୍ଦ୍ରକୁମାର ଓ ମୋହ ସମେତ କେତେକ ସାହିତ୍ୟିକଙ୍କୁ ଡକ୍ଟର ମୁଲକ୍‌ରାଜ-ଆନନ୍ଦ ପ୍ରସ୍ତାବ କରନ୍ତି ପ୍ରଧାନମନ୍ତ୍ରୀ ପଣ୍ଡିତ ନେହରୁଙ୍କ ସହିତ ସାକ୍ଷାତ୍ କରିବାପାଇଁ ଏହିଭଳି ଏକ ଅବସରରେ । ଏଥିପୂର୍ବରୁ ଅବଶ୍ୟ ୧୯୪୫ରେ ରାଜସ୍ଥାନ ଜୟପୁରଠାରେ ନିଖିଳ ଭାରତ ପି.ଇ.ଏନ୍.ଲେଖକ ସମ୍ମିଳନୀରେ ପଣ୍ଡିତ ନେହରୁ ଓ ଶ୍ରୀମତୀ ଇନ୍ଦିରାଙ୍କୁ ଦେଖି ସୁଯୋଗ ମୋତେ ମିଳିଥାଏ । ନେହରୁ ସେତେବେଳେ ପ୍ରଧାନମନ୍ତ୍ରୀ ହୋଇ ନ ଥାନ୍ତି; କିନ୍ତୁ ନେହରୁ-ନେତୃତ୍ୱର ପ୍ରଭାବ ଅନୁଭୂତ ହୋଇଥାଏ ବିସ୍ତୃତ ଭାବରେ ଦେଶବ୍ୟାପୀ ।

ଇଂରାଜୀ PEN ଶବ୍ଦଟିର ଅର୍ଥ କଲମ ବା ଲେଖନୀ- P ଅକ୍ଷରଟିର ସଙ୍କେତ ହେଲା Poets playwrights (କବି ଓ ନାଟ୍ୟକାର) E ଅର୍ଥାତ୍ Essayist (ପ୍ରାବନ୍ଧିକ) ପୁଣି N ବା Novelist ବା (ଔପନ୍ୟାସିକ)ଙ୍କୁ ବୁଝାଇଥାଏ ।

ଜୟପୁର ପି.ଇ.ଏନ୍ କନ୍‌ଫରେନ୍‌ସକୁ ଭାରତର ସବୁ ଅଞ୍ଚଳର ପ୍ରତିନିଧିମାନେ ଆସିଥାନ୍ତି । ପଣ୍ଡିତ ନେହରୁ ଆସିବେ ବୋଲି ଏକ ବିରାଟ ସାଧାରଣ ସଭାର ଆୟୋଜନ ମଧ୍ୟ ହୋଇଥାଏ । ପି.ଇ.ଏନ୍‌ର ସଦସ୍ୟମାନଙ୍କ ପାଇଁ ଅବଶ୍ୟ ରାଜଦରବାରର ପକ୍ଷରୁ ବିପୁଳ ଆୟୋଜନ । ରେଳ ଷ୍ଟେସନରେ ପହଞ୍ଚିବା ମାତ୍ରେ ଗାଡ଼ିଭିତରୁ ଅତିଥିମାନଙ୍କର ବ୍ୟାଗ୍ ବିଛଣା ନେବାପାଇଁ ସୁଦ୍ଧା ବ୍ୟବସ୍ଥା କରାଯାଇଥାଏ । ଯେଉଁ ହୋଟେଲରେ ମୋହ୍‌ପାଇଁ ସ୍ଥାନ ନିର୍ଦ୍ଦିଷ୍ଟ ଥିଲା, ତାର ଗୋଟିଏ ବଖରାରେ ମୋହ ସହିତ ରହିଥାନ୍ତି ବଙ୍ଗଳାର ପ୍ରସିଦ୍ଧ ଐତିହାସିକ ଡକ୍ଟର ରାଧାକୁମୁଦ ମୁଖାର୍ଜୀ ।

ରାଜସ୍ଥାନର ଦେଶୀୟ ରାଜ୍ୟ ଜୟପୁର ସର୍ବତ୍ର ଖ୍ୟାତି ଅର୍ଜନ କରିଥାଏ ଆନ୍ତର୍ଜାତିକ କ୍ରୀଡ଼ା କ୍ଷେତ୍ରରେ । ଜୟପୁର ମହାରାଜା ସ୍ୱୟଂ ଜଣେ ପୃଥିବୀବିଖ୍ୟାତ ପୋଲୋ ଖେଳାଳିଭାବେ ମଧ୍ୟ ସୁପରିଚିତ । ରାଜଧାନୀ ଜୟପୁର ସହର ସେତେବେଳେ ଭାରତବର୍ଷର ଶ୍ରେଷ୍ଠ ଲେଖକ ଲେଖିକାମାନଙ୍କ ଉପସ୍ଥିତିରେ ସରଗରମ ହୋଇ ଉଠିଥାଏ ।

ରାଜନଗର ମଧ୍ୟରେ ନିଖିଳଭାରତ ପି.ଇ.ଏନ୍ ସାହିତ୍ୟ ସମ୍ମିଳନୀପାଇଁ ବିପୁଳ ଆୟୋଜନ । ପ୍ରକାଣ୍ଡ ପାଚେରିଘେରା ପ୍ରବେଶ ଦ୍ୱାରର ଦୁଇପାର୍ଶ୍ୱରେ ଦଣ୍ଡାୟମାନ ଦୁଇଟି

କଳା ଘୋଡ଼ା ଉପରେ ଦୁଇ ଜଣ ସୁସଜ୍ଜିତ ସୈନିକ ପତାକା ଉତ୍ତୋଳନ କରି ସତେ ଅବା ସେହି ପ୍ରାଚୀରରେ ଖୋଦାଇ ହୋଇ ରହିଛନ୍ତି ! ମୂର୍ତ୍ତିଭଳି ସୁଶୋଭିତ ମଞ୍ଚ ଉପରେ ପି.ଇ.ଏନ୍‌ର ସଭାପତି ଡକ୍ଟର ରାଧାକୃଷ୍ଣନ୍ ଓ ଶ୍ରୀମତୀ ସରୋଜିନୀ ନାଇଡୁ ପ୍ରମୁଖ ଉପସ୍ଥିତ ଥିଲେ । ପୂର୍ବରାତ୍ରିର ହୋଟେଲରେ ଶୋଇଥିବା ସମୟରେ 'ଜବାହରଲାଲ ଜୀ କି ଜୟ', 'ପଣ୍ଡିତ ନେହ୍ରୁଜୀ ଜୟ' ଶବ୍ଦରେ ନିଦ ମୋର ଭାଙ୍ଗିଯାଏ । ଦିଲ୍ଲୀରୁ ଜୟପୁର ରେଳଗାଡ଼ିରେ ଜବାହରଲାଲ ଆସି ଷ୍ଟେସନରେ ପହଞ୍ଚିବାର ସଙ୍କେତ ଏହା । ଲେଖକମାନଙ୍କ ସମ୍ମିଳନୀରେ ପଣ୍ଡିତ ନେହରୁ କେତେବେଳେ ହଲ୍‌ର ପଛପଟୁ ଆସି ଡାଏସ୍ ଉପରେ ବସନ୍ତି ବେଶ୍ ଚୁପ୍‌ଚାପ୍ ଭାବରେ । ତଥାପି ସାହିତ୍ୟ-ସମ୍ମିଳନୀର ଏହି ପ୍ରକାଣ୍ଡ ଗୃହଟି ତାଙ୍କ ଉପସ୍ଥିତିରେ ହୋଇଉଠେ ସରଗରମ । ଆହୁରି ବୋଧହୁଏ ଡାଏସ୍ ଉପରେ ସବୁରି ଦୃଷ୍ଟି ଆକୃଷ୍ଟ ହୁଏ ତାଙ୍କର ଛୋଟ ଚେହେରାଟି ପ୍ରତି ।

ଶ୍ରୀମତୀ ସରୋଜିନୀ ଓ ଡକ୍ଟର ରାଧାକୃଷ୍ଣନ୍‌ଙ୍କ ସମେତ ମଣ୍ଡପ ଉପରେ ଆପଣାକୁ ଅଦୃଶ୍ୟ କଲା ଭଳି ଅତି ନୀରବ ନମ୍ରଭାବରେ ବସିଥାନ୍ତି ପ୍ରସିଦ୍ଧ ଇଂରେଜ ଔପନ୍ୟାସିକ ଇ.ଏମ୍.ଫରଷ୍ଟର । ଜୟପୁରର ମହାରାଜା ସଓଆଜୀ ରାଓ ସଭାରେ ଉପସ୍ଥିତ ନ ହୋଇ ପଠାଇଥାନ୍ତି ତାଙ୍କ ପ୍ରଧାନମନ୍ତ୍ରୀ ସାର୍ ମୀର୍ଜା ଇସ୍‌ମାଇଲ୍‌ଙ୍କ ହାତରେ ଅଭିନନ୍ଦନ ବାର୍ତ୍ତା । ସେହି ଅଭିନନ୍ଦନ ପାଠ କରାଗଲାବେଳେ ଡାଏସ୍ ଉପରେ ବସିଥିବା ବିଶିଷ୍ଟ ଅତିଥିମାନେ ଓ ତାଙ୍କ ପରେ ସଭାଗୃହରେ ଉପସ୍ଥିତ ସମସ୍ତ ସଭ୍ୟ ଦଣ୍ଡାୟମାନ ହୁଅନ୍ତି– ଅନୁପସ୍ଥିତ ଅତିଥିସତ୍କାରକ ମହାରାଜାଙ୍କ ପ୍ରତି ଅବା ହୁଏ ତ ତାଙ୍କ ବାର୍ତ୍ତା ପ୍ରତି ସମ୍ମାନ ପ୍ରଦର୍ଶନ କରି । ସେତେବେଳେ ଆଖି ମୋର ନିବଦ୍ଧ ଥାଏ ପଣ୍ଡିତ ନେହରୁଙ୍କ ଉପରେ, ଡାୟାସ ଉପରେ ଓ ସଭାଗୃହରେ ଦଣ୍ଡାୟମାନ ସବୁ ସାହିତ୍ୟିକଙ୍କ ପ୍ରତି ବିସ୍ମୟ କୌତୂହଳ ଦୃଷ୍ଟି ନିକ୍ଷେପ କରିସାରି ସବୁରି ଶେଷରେ ଠିଆ ହୁଅନ୍ତି ପଣ୍ଡିତ ନେହରୁ ।

ଆରମ୍ଭ କରାଯାଏ ସଭାକାର୍ଯ୍ୟ । ପଣ୍ଡିତ ନେହେରୁ ଭାଷଣ ଦେବାକୁ ଗଲାବେଳେ ଆଗେ ନିଜ ପକେଟ୍ ଅଣ୍ଡାଳି ତହିଁରୁ ଖୋଜୁଥିଲେ କି କ'ଣ ରୁମାଲ କାଢ଼ି ମୁହଁ ପୋଛିବାକୁ; କିନ୍ତୁ ବାହାରିଲା ସେଥିରୁ ବିଡ଼ାଏ ହାତକଟା ଖଦଡ଼ ସୂତା । ତର ତର ହୋଇ ସେଇ ସୂତାବିଡ଼ାକୁ ବିବ୍ରତ ଅବସ୍ଥାରେ ଅବା ନାଚାର ହେଲାଭଳି ସବୁରି ଆଗରେ ଟିକିଏ ଦେଖାଇ ଦେଇ ତୁମୂଳ ହାସ୍ୟରୋଳଭିତରେ ପୁଣି ତାହାକୁ ଅପ୍ରତିଭ ହୋଇପଡ଼ି ଅବା ସେ ପକେଟସ୍ଥ କରନ୍ତି । ବକ୍ତୃତା ଆରମ୍ଭରେ ନେହରୁ ମନ୍ତବ୍ୟ ଦିଅନ୍ତି— ସାହିତ୍ୟ ସଭାରେ ଜୟପୁର ମହାରାଜାଙ୍କ ଶୁଭେଚ୍ଛାବାର୍ତ୍ତା ପାଠ ସମୟରେ ସବୁ ସଭ୍ୟ କାହିଁକି ଦଣ୍ଡାୟମାନ ହେଲେ, ତାହା ବୁଝିବାକୁ ସେ ଅକ୍ଷମ ହୋଇ ପଡ଼ିଥିଲେ । ତାହା ପରେ ସାହିତ୍ୟିକ ସ୍ୱାଧୀନ ଚିନ୍ତାଧାରା ସମ୍ପର୍କରେ ଦିଅନ୍ତି ସେ କେତେକ ମନ୍ତବ୍ୟ । ଜୟପୁର ସମ୍ମିଳନୀରେ ଶ୍ରୀମତୀ ସରୋଜିନୀ ନାଇଡୁ ଭାଷଣ ଦେବାକୁ ଉଠି ଭାରତର ଏଇ ବିଦ୍‌ଜ୍ଜନମଣ୍ଡଳୀ ସାମନାରେ କିଛି କହିବାକୁ ନାଡ଼ି ତାଙ୍କର ଦୁର୍ବଳ (nervous) ହୋଇପଡ଼ିଥିବା କଥା ଉଲ୍ଲେଖ କରନ୍ତି । ଆହୁରି ଉଲ୍ଲେଖ କରନ୍ତି, ଜବାହରଲାଲଙ୍କ ଭଳି ଶକ୍ତିମନ୍ତ ବ୍ୟକ୍ତି ତାଙ୍କ ପାଖରେ ବସିଥିବାରୁ ତାଙ୍କୁ ଟିକିଏ ସାହସ ଓ ହୋବ ମିଳୁଛି ।

ଓଡ଼ିଆ ସାହିତ୍ୟ ଉପରେ ମୋର ଲିଖିତ ଭାଷଣ ଉତ୍ତମ ରୂପେ ଗୃହୀତ ହୋଇଥିଲା ବୋଲି ବହୁ ବନ୍ଧୁଙ୍କର ମନ୍ତବ୍ୟ ଶୁଣେ; ମାତ୍ର ଓଡ଼ିଶାର ଅନ୍ୟତମ ପ୍ରତିନିଧି ଶ୍ରୀ ନବକିଶୋର ଦାସ ମନ୍ତବ୍ୟ ଦିଅନ୍ତି ଯେ, ଓଡ଼ିଆ ସାହିତ୍ୟ ଜନ୍ମକାଳକୁ ମାତ୍ର ପାଞ୍ଚଶହ ବର୍ଷ ମଧ୍ୟରେ ଆବଦ୍ଧ କରିବାଦ୍ୱାରା ମୁଁ ଭୁଲ୍ କରିଛି । ଅଥଚ ଆମ ଆଦିକବି ସାରଳାଦାସଙ୍କୁ ମଧ୍ୟ ଐତିହାସିକମାନେ ତ ଏହି ସମୟର ସୀମାକୁ ଅତିକ୍ରମ କରିଥିବା ପ୍ରମାଣ ଦର୍ଶାଇ ନାହାନ୍ତି । ଆହୁରି ପଛକୁ ଟାଣି ଓଟାରି ତାକୁ ଅଧିକ ପ୍ରାଚୀନ ବୋଲି ପ୍ରମାଣ କରିବା ଫନ୍ଦିର ତାତ୍ପର୍ଯ୍ୟ ବୁଝିବାକୁ ମୁଁ ଅକ୍ଷମ ହୁଏଁ ।

ଅକ୍ଷମ ହୁଏଁ ସତ୍ୟର ଅପଳାପଦ୍ୱାରା ନିଜ ସାହିତ୍ୟର ଆଦିମତା ପ୍ରମାଣ କରିବାକୁ । ଆମ ସାରଳାଦାସ ଯେ ସେକସ୍‌ପିଅରଙ୍କର ପ୍ରାୟ ସମସାମୟିକ । ଯେଉଁ ହୋଟେଲରେ ମୁଁ ରହୁଥିଲି, ତହିଁରେ ଭାରତର ବିଭିନ୍ନ ଅଞ୍ଚଳର ବିଶିଷ୍ଟ ଲେଖକ ଅତିଥିମାନେ ମଧ୍ୟ ରହନ୍ତି । ଉତ୍ତର ଭାରତର ପ୍ରତିନିଧିମାନେ ଜିଦ୍ କରୁଥାନ୍ତି ଇଂରାଜୀ ଛାଡ଼ି ହିନ୍ଦୀରେ କଥାବାର୍ତ୍ତା କରିବାପାଇଁ । କେତେକ ଦକ୍ଷିଣଭାରତୀୟ ପ୍ରତିନିଧି ମଧ୍ୟ ବେଶ୍ ହିନ୍ଦୀ ପଢ଼ିପାରନ୍ତି । ଅଥଚ ମୋହ ପକ୍ଷରେ ବୁଝିବା ଯେତେ ସହଜ, କହିବା ସେତେ ହୋଇ ପାରେ ନାହିଁ । ତହୁଁ ଇଂରାଜୀରେ କହିବାପାଇଁ ପସନ୍ଦକରେଁ । ଅଥଚ ବନ୍ଧୁମାନଙ୍କର ଜିଦ୍ ଯେ ମୁଁ ବରାବର ହିନ୍ଦୀ କହେଁ ।

ମୋର ହିନ୍ଦୀ ସେ ପଦେ ପଦେ ଭୁଲ୍ ଓ ହାସ୍ୟାସ୍ପଦ ହେବ ସେକଥା ମଧ୍ୟ ବନ୍ଧୁଙ୍କୁ ସୂଚାଇ ଦିଏଁ; ମାତ୍ର ଉତ୍ତର ଶୁଣେ— ଠିକ୍ ଇଂରାଜୀ ଅପେକ୍ଷା ବରଂ ଭୁଲ୍ ହିନ୍ଦୀ ସେମାନଙ୍କ ପକ୍ଷରେ ସଦା ସ୍ୱାଗତ୍ୟ ।

ରାଜସ୍ଥାନ ଜୟପୁରଠାରେ ହିଁ ବର୍ତ୍ତମାନ ଭାରତର ରାଷ୍ଟ୍ରପତି ଶ୍ରୀ ବରାହଗିରି ଭେଙ୍କଟଗିରିଙ୍କ ସମ୍ପର୍କୀୟ ଓ ମୋର 'ରେଙ୍ଗୁନ୍ ଯାତ୍ରୀ' ଶୀର୍ଷକ କ୍ଷୁଦ୍ର ଗଳ୍ପରୁ ଇଂରାଜୀ ଅନୁବାଦକ ଓ ସମ୍ପାଦିକ ଶ୍ରୀ ପ୍ରସାଦଙ୍କ ସହିତ ପ୍ରଥମ ସାକ୍ଷାତ୍କାର ଘଟେ । ଏଇ ଗଳ୍ପଟି ସର୍ବ ପ୍ରଥମେ ମୋର ଅଜାଣତରେ ମାନ୍ଦ୍ରାଜରୁ ପ୍ରକାଶିତ 'ତ୍ରିବେଣୀ' ଇଂରାଜି ପତ୍ରିକାରେ ଦେଖି ମୁଁ ବିସ୍ମିତ ହୁଏଁ ।

ସେଇପରି ବିସ୍ମିତ ହୁଏଁ— କେତେକ ବର୍ଷ ପରେ 'ତ୍ରିବେଣୀ'ର ସୁବିଖ୍ୟାତ ସମ୍ପାଦକ ସ୍ୱର୍ଗତ ସ୍ୱର୍ଗ ଶ୍ରୀ ରାମକୋଟୀଶ୍ୱର ରାଓଙ୍କ ସହିତ ଅଚାନକ ଭାବରେ ଭେଟହୋଇ ଯିବାଦ୍ୱାରା କଟକରେ। ଓଡ଼ିଶାର ସୁବିଦିତ ସାମ୍ବାଦିକ୍ ଶ୍ରୀ ଏନ୍,ଆର, ସ୍ୱାମୀଙ୍କ ସଙ୍ଗେ ସେ କଟକ ରେଭେନ୍‌ସା କଲେଜ ଛକବାଟେ ଆସୁଥାନ୍ତି । ସେଇଠି ତାଙ୍କୁ ମୋତେ ଚିହ୍ନାଇ ଦିଅନ୍ତି ଶ୍ରୀ ଏନ୍.ଆର୍, ସ୍ୱାମୀ ।

ସନ୍ଧ୍ୟାରେ ସେ ଦିନ ପୁଣି ତାଙ୍କ ସହିତ ସାକ୍ଷାତ୍କାର ଭାରତ ସେବକ ସମାଜ ଅଫିସ୍ ଛାତ ଉପରେ ଅନୁଷ୍ଠିତ ଶ୍ରୀ ଶ୍ୟାମସୁନ୍ଦର ମିଶ୍ରଙ୍କଦ୍ୱାରା ଆହୂତ ଏକ ସାହିତ୍ୟିକ ଓ ସାମ୍ବାଦିକ ବନ୍ଧୁମିଳନରେ । ପଣ୍ଡିତ ଗୋଦାବରୀଶ ମିଶ୍ର ମଧ୍ୟ ଉକ୍ତ ସଭାରେ ଯୋଗ ଦିଅନ୍ତି । ତାଙ୍କ ସହିତ ପ୍ରଥମେ ମିଳିତ ହୋଇ ଶ୍ରୀ ରାମକୋଟୀଶ୍ୱର ରାଓ ହସି ହସି କହନ୍ତି— "You were once a minister of Orissa" — "ଆପଣ ତ ଓଡ଼ିଶାର ଏକଦା ମନ୍ତ୍ରୀ ଥିଲେ" ।

ତତ୍‌କ୍ଷଣାତ୍ ଗୋଦାବରୀଶ ବାବୁଙ୍କର ଜବାବ୍ "Well I have completely forgotten all about it" — ହଁ ମୋର ତାହା ପୂରାପୂରି ପାସୋରି ହୋଇଗଲାଣି ।

ତାଙ୍କ କଥାରେ ଶ୍ରୀ ରାମକୋଟୀଶ୍ୱର ରାଓଙ୍କ ସମେତ ହସିଉଠନ୍ତି ସମସ୍ତେ; କିନ୍ତୁ ଗୋଦାବରୀଶ ବାବୁଙ୍କ ମନ୍ତବ୍ୟ ସମାପ୍ତ ହୋଇ ନଥିବାଭଳି ସେ ମୋତେ ଆଙ୍ଗୁଠି ଦେଖାଇ କହି ପକାଇଲେ— "But here is the best of Oriya writers"

ସଙ୍ଗେ ସଙ୍ଗେ ଶ୍ରୀରାମକୋଟୀଶ୍ୱର ରାଓଙ୍କ ଯବାବ "I also think so" — "ମୋର ମଧ ସେଇ ମତ ।"

ମୁଁ ରାଜନୀତିଜ୍ଞ କିମ୍ୱା ଓକିଲ ହୋଇଥିଲେ ରାମକୋଟୀଶ୍ୱର ରାଓଙ୍କୁ ଶ୍ରେଷ୍ଠ ସାମ୍ବାଦିକ କିମ୍ବା ଗୋଦାବରୀଶ ବାବୁଙ୍କୁ ଶ୍ରେଷ୍ଠ ବାଗ୍ମୀ, କବି ଓ ରାଜନୀତିଜ୍ଞ ବୋଲି ଓଲଟି କହିପାରିଥାନ୍ତି; କିନ୍ତୁ କେବେହେଲେ ମୁଁ ପ୍ରତ୍ୟୁତ୍ପନ୍ନମତି ହୋଇଥିବା ପରିଚୟ ଦେଲାଭଳି ମନେ ପଡ଼ିନି । ନିଜ ନିନ୍ଦା ବା ପ୍ରଶଂସା ଶୁଣି କେବଳ ନୀରବ ରହିଯାଏଁ । ଦୀର୍ଘସୂତ୍ରୀ ଭଳି ପଛରେ ମନେ ପଡ଼େ, ଏମ୍ତି କିଛି କହିବା କିମ୍ବା କରିବା ମୋର ଉଚିତ ଥିଲା ପରା ! ଅଥଚ ସେତେବେଳକୁ ଲେଡ଼ିଗୁଡ଼ କହୁଣିକୁ ବୋହି ଗଲାଣି ।

ଶ୍ରୀ ହରେକୃଷ୍ଣ ମହତାବଙ୍କ ସହିତ ମୋର ବୋଧେ ପ୍ରଥମ ସାକ୍ଷାତ୍‌କାର ଘଟେ ଜୟପୁରରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀରେ । ସେତେବେଳେ ପୂର୍ବାଞ୍ଚଳ ଦେଶୀୟ ରାଜ୍ୟ ପ୍ରଚାର ବିଭାଗରେ ମୁଁ କାର୍ଯ୍ୟକରୁଥାଏଁ । କଳାହାଣ୍ଡିରୁ କଟକ ଫେରୁଥାଏଁ ରେଳଯୋଗେ ବିଜୟନଗର ବାଟେ । ଷ୍ଟେସନରେ ଭେଟ ହୁଏ ମୋର ଶ୍ରୀ ହରିହର ମହାପାତ୍ର, ଶ୍ରୀ ରାଧାନାଥ ରଥ ଓ ଅନ୍ୟମାନଙ୍କ ସହିତ । ସେମାନେ କଟକରୁ ଆସିଥାନ୍ତି ଜୟପୁରରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀରେ ଯୋଗ ଦେବା ଲାଗି ।

ବିଜୟନଗରଂ ଷ୍ଟେସନରେ ମୋତେ ଏକ ପ୍ରକାର ବାଧକରନ୍ତି ଶ୍ରୀଯୁକ୍ତ ରାଧାନାଥ ରଥ ଓ ହରିହର ମହାପାତ୍ରପ୍ରମୁଖ ବନ୍ଧୁମାନେ ଜୟପୁର ଉତ୍କଳ ସମ୍ମିଳନୀରେ ଯୋଗଦେବାକୁ । ସେମାନଙ୍କ ଅନୁରୋଧକୁ ମୁଁ ଏଡ଼ିପାରେ ନାହିଁ । ଜୟପୁରଠାରେ ଶ୍ରୀ ରାଧାକୃଷ୍ଣ ବିଶ୍ୱାସ ରାୟଙ୍କ ଘରଠାରେ ଭେଟହୁଏ ମୋର ଶ୍ରଦ୍ଧେୟ ଶ୍ରୀ ହରେକୃଷ୍ଣ ମହତାବଙ୍କ ସହିତ, ତା'ପରେ ସେ କେତେ ଥର କହନ୍ତି, ମୁଁ ସ୍ୱରାଜ ଆଶ୍ରମକୁ ଆସିବାପାଇଁ ।

ଥରେ ସ୍ୱରାଜ-ଆଶ୍ରମକୁ ଯାଇ ଦେଖାହୁଏ ମୋର ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ସଙ୍ଗରେ । ଏଥିପୂର୍ବରୁ ନବବାବୁ ଯୁବନେତା, ଦାର୍ଶନିକ, ସାହିତ୍ୟିକ ଓ ଚିନ୍ତାନାୟକ ଭାବରେ ଜଣାଶୁଣା ହୋଇଥାନ୍ତି । ତାଙ୍କର ଶ୍ରୀମତୀ ମାଳତୀ ଦେବୀଙ୍କ ସହିତ ବିବାହ ପୂର୍ବରୁ ପୁଣି ପରଠାରୁ ମଧ ବାରମ୍ବାର ଦେଖାସାକ୍ଷାତ୍ ହୁଏ; ସେଦିନ ତାଙ୍କୁ ସାକ୍ଷାତ୍ କରିବାକୁ ଯାଇଥିଲି ବୋଧହୁଏ ସ୍ୱରାଜ ଆଶ୍ରମକୁ । ସେତେବେଳେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହୋଇ ନ ଥାଏ; କିନ୍ତୁ ସ୍ୱରାଜ ଆଶ୍ରମରେ ଭାରି ଭିଡ଼ । ନବବାବୁ ସ୍ୱାଭାବିକ ରୀତିରେ ସେହି ଭିଡ଼ ଭିତରକୁ ଓଟାରି ଘେନିଯାନ୍ତି ମୋତେ ।

ଭିଡ଼ଭିତରେ ସମସ୍ତେ ଯେପରି ଏକ ସାଙ୍ଗରେ କଥାବାର୍ତ୍ତା ହେଉଥାନ୍ତି, ସେଠାରେ ମୁଁ ଆପଣାକୁ ଏକାନ୍ତ ଏକକ ଅର୍ଥାତ୍ ଗୋଠଖଣ୍ଡିଆ ବୋଲି ଅନୁଭବ କରେଁ ।

ଅବିକଳ ସେହିଭଳି କିୟା ତହିଁରୁ କେତେକାଂଶରେ କମ୍ ଅନୁଭବ କରେଁ ଚାନ୍ଦିନୀଚୌକ କମ୍ୟୁନିଷ୍ଟ ପାର୍ଟି ଅଫିସ୍‌ରେ । ମୋର ଏହି ଏକକ ଭାବ ଦୂର ହୁଏ ନାହିଁ । ଓଡ଼ିଆବଜାରରେ ଅବସ୍ଥିତ ଯଦୁନାଥ ଭବନ ଭିତରେ ସୋସିଆଲିଷ୍ଟ ପାର୍ଟି କାର୍ଯ୍ୟାଳୟରେ ମଧ । ଆହୁରି ନିମନ୍ତଣ ପାଏଁ କଟକ କନିକା କୋଠିରେ ବସିଥିବା ସ୍ୱତନ୍ତ୍ର ପାର୍ଟିର ପ୍ରାଥମିକ ଆଲୋଚନା ସଭାରେ କଳାହାଣ୍ଡିର ମହାରାଜ ଶ୍ରୀ ପ୍ରତାପ କେଶରୀ ଦେଓଙ୍କ ନିମନ୍ତଣ କ୍ରମେ ।. ସେତେବେଳକୁ କଂଗ୍ରେସ ବ୍ୟତୀତ ଏହି ଦଳଗୁଡ଼ିକ ସମ୍ପୂର୍ଣ୍ଣ ରୂପରେଖ ଘେନି ନଥାଏ । ରୂପରେଖ ଘେନିବା ପରେ ମଧ ନିୟମବଦ୍ଧ ହୋଇ ସଂଗଠିତ ଶକ୍ତିଭାବରେ ନିର୍ବାଚନ ଲଢ଼ିବାକୁ ଆହୁରି ଥାଏ ବାକି କେତେକ ବର୍ଷ ।



## ସକଳ ତୀର୍ଥ ତୋ ଚରଣେ

ଅଖିଳ ଭାରତୀୟ ପି.ଇ.ଏନ ସଂସ୍ଥା-ପକ୍ଷରୁ ସାହିତ୍ୟ ସମ୍ମିଳନୀ ଅନୁଷ୍ଠିତ ହୁଏ ପ୍ରତି ଦୁଇ ବର୍ଷରେ ଥରେ ଲେଖାଁ । ଭାରତର ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ ବିଭିନ୍ନ ନଗର ସବୁ ଅଞ୍ଚଳର ଲେଖକ ଲେଖିକାଙ୍କ ଉପସ୍ଥିତିରେ ସରଗରମ ହୋଇ ଉଠେ । ୧୯୪୫ରେ ଜୟପୁର ସମ୍ମିଳନୀର ଦୁଇଟି ବର୍ଷ ପରେ ୧୯୪୭ରେ ବନାରସ ସମ୍ମିଳନୀ । ସଭାପତି ଉତ୍ତର ପ୍ରଦେଶ ରାଜ୍ୟପାଳିକା ଶ୍ରୀମତୀ ସରୋଜିନୀ ନାଇଡୁ । ଭାତର ସ୍ୱାଧୀନତାର ଅବ୍ୟବହିତ ପରେହିଁ ବିଦ୍ୟାନଗରୀ ବନାରସରେ ତା'ର ଅନୁଷ୍ଠାନ ।

ମୋର ଆଶା ଥାଏ– ଜୟପୁର ଭଳି ବନାରସକୁ ମଧ ପଣ୍ଡିତ ଜବାହରଲାଲ ଆସିବେ । ମାତ୍ର ଏହା ଭିତରେ ଭାରତବ୍ୟାପୀ ତୁମୁଳ ପରିବର୍ତ୍ତନ ଘଟିଗଲାଣି—ଆକୁମାରୀ ହିମାଳୟ ଏଇ ମହାନ୍ ଉପମହାଦେଶ ଆଜି ସମ୍ପୂର୍ଣ୍ଣ ସ୍ୱାଧୀନ । ବିଶ୍ୱଇତିହାସରେ କେଉଁ ପର୍ଯ୍ୟାୟରେ କେତେ ଶତାବ୍ଦୀ ବା ସହସ୍ରାଧିକ ବର୍ଷ ପରେ—ବିଖଣ୍ଡିତ ଭାରତବର୍ଷକୁ ତାହାର ଯୁଗଯୁଗବ୍ୟାପୀ ନିରବଚ୍ଛିନ୍ନ ସାହିତ୍ୟ ସଂସ୍କୃତି ପୁଣି ଆତ୍ମୋପଲବ୍ଧିର ମହାମିଳନ ପୀଠରେ ଅଧିଷ୍ଠିତ କଲା, କେଉଁ ଐନ୍ଦ୍ରଜାଲିକ ଚରମ ବିସ୍ମୟ ସୃଷ୍ଟି କରି ! ଜବାହରଲାଲ ସେତେବେଳେ ସେଇ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ । ନୂତନ ଗୁରୁଦାୟିତ୍ୱ ବହନ କରି ତାଙ୍କ ପକ୍ଷରେ ବନାରସ ଆସିବା ସମ୍ଭବପର ହୁଏ ନାହିଁ ।

ପରିବାର ଭିତରେ ସ୍ୱାମୀ ଓ ଏକାଧିକ ପୁତ୍ରକନ୍ୟାଙ୍କୁ ହରାଇ ଦୁଃଖିନୀ ଜନନୀଙ୍କୁ ମୋର ଏଇ ଅବସରରେ କାଶୀ, ଗୟା ପ୍ରଭୃତି ବୁଲାଇ ଆଣିବାକୁ ଜଣାଇଲି । ମାତ୍ର ଉତ୍ତରରେ ଶୁଣିଲି ତାଙ୍କଠାରୁ—

ସକଳ ତୀର୍ଥ ତୋ ଚରଣେ ।
ବଦ୍ରିକା ଯିବି କି କାରଣେ ।।

ଶେଷ ଜୀବନରେ ସ୍ୱାମୀ, ଦୁଇଟି ପୁତ୍ର ଓ ଦୁଇଟି କନ୍ୟାଙ୍କୁ ପରିଣତ ବୟସରେ ହରାଇ ସେଇ ବୋଉ ମୋର ! କେଉଁ ତୀର୍ଥ ବୁଲାଇ ପ୍ରାଣରେ ତାଙ୍କର ସାନ୍ତ୍ୱନା ସଞ୍ଚାର କରିବି ମୁଁ ଦୁନିଆ ଉପରେ ? କେଉଁ ସାହିତ୍ୟ, କେଉଁ ପୁରାଣ, କେଉଁ ଧର୍ମବିଶ୍ୱାସ ? କିନ୍ତୁ ଆଶ୍ଚର୍ଯ୍ୟ ବୋଉଙ୍କ ଦାମ୍ଭିକତା ! ଏଇ ବିପୁଳ ଶୋକଛାୟାଭିତରେ ସୁଦ୍ଧା ପରିବାରରେ ନବଜାତ ଶିଶୁ କିମ୍ବା ବୟସ୍କ ନାତି-ନାତୁଣୀମାନଙ୍କୁ ଘେନି ଦିନ ତାଙ୍କର ଅତିବାହିତ ହୋଇଯାଏ ।

ତାହାରି ଭିତରେ ଦାନ, ଧର୍ମ, ପୁରାଣପାଠ, ପୂଜା, ଉପବାସ ! ସବୁ ଚାଲେ ଅବା ସାଧାରଣ ଗତିରେ– ତାହାରି ଭିତରେ ହିଁ ତାଙ୍କ ମୁରବିତ୍ୱର ପ୍ରତିଷ୍ଠା ! ତାଙ୍କ ନିର୍ଦ୍ଦେଶର ଏପାଖ ସେପାଖ ହେବା ଉପାୟ ନାହିଁ କାହାରି— ପଡ଼ିଶା-ଅଡ଼ିଶା ଦୁଃଖୀ, ରଙ୍କୀ, ବନ୍ଧୁ ସ୍ୱଜନ, ସବୁ ନାତି, ନାତୁଣୀ— ଯାହା ପ୍ରତି ଯେମିତି ବ୍ୟବହାର— କାହାକୁ ବେଶି ପୁଣି କାହାକୁ କମ୍, ପର କିଏ, ଆପଣା କିଏ– ଫରକ୍‌ଟା ଯେମତି ତିଳଧାନ ଦେଖାଯାଏ ନି ମୋ ବୋଉଙ୍କ ବିଚାରରେ !

ମାମୁ ଘର ମୋର ପାଞ୍ଚ ସାତ ଘର ଫରକରେ ରହିଥିଲେ ମଧ ତାଙ୍କ ବଂଶପରମ୍ପରାର ରୀତିନୀତିରେ ଯେଉଁ ଫରକ୍ ଲକ୍ଷିତ ହୁଏ, ସେଇଭଳି ଫରକ୍ ଗାଁଟିର ବିଭିନ୍ନ ଜାତି ଓ ପରିବାରଭିତରେ ସର୍ବତ୍ର ବିଦ୍ୟମାନ; କିନ୍ତୁ ଅତି ନକଟରେ ମାମୁ ଘର ଥିବା ହେତୁ ଅଧାଅଧି ଆମେ ସବୁ ଏ ଘର ସେ ଘର ହୋଇ ଫୂର୍ତ୍ତି କରୁଁ । କଥାରେ ତ ରହିଛି– ଭାଇ ତ ଭାଇ ମାମୁପୁଅ ଭାଇ, ନ ହେଲେ ପିଉସୀପୁଅ କି ମାଉସୀପୁଅ ଭାଇ, ପିଲାଦିନେ ପିଉସୀପୁଅ ଭାଇ ଭୋବନିଭାଇନାଙ୍କ ପାଖରେ ବଢ଼ିଛି ମୁଁ, ଶିନୁଭାଇନା ଶୀରୁଭାଇନାଙ୍କ ସଙ୍ଗେ ଦିନ ରାତି ଖେଳିଛି ବୁଲିଛି ସେମିତି ।

ବୋଉ ମଧ ଅଧେ ଆମ ଘରଆଡ଼କୁ ହେଲେ ବାକି ଅଧକ ମାମୁଘର ଆଡ଼କୁ । ଭଲ ମନ୍ଦ ଯାହା କିଛି ଆମ ଘରକୁ ଆସେ ତହିଁରୁ ଅଧାଭାଗ ମାମୁଘରକୁ ଯିବା ସ୍ୱାଭାବିକ । ଝିଅମାନେ ଶାଶୁଘରକୁ ଆସି ବାପଘରପାଇଁ ଝୁରିହେବା ପରିସ୍ଥିତିଟା ବୋଉଙ୍କର ନ ଥିଲା । ବର୍ଷଯାକ ପ୍ରତି ଓଷା ପୁଣ୍ୟପର୍ବ ଯାନିଯାତ୍ରାରେ ତାଙ୍କ ସଙ୍ଗେ ମୁଁ ମୋର ଭାଇଭଉଣୀମାନଙ୍କ ସହଯୋଗ ଦେଇଛି । ମାମୁ ପୁଅ ମାମୁ ଝିଅ ଭାଇ-ଭଉଣୀଙ୍କ ସହ ମାଉସୀ ଘରଗୁଡ଼ିକ ମଧ ଦୁଇ ତିନି କୋଶରୁ ଅଧିକ ବାଟରେ ନ ଥିବାରୁ ମାଉସୀ ପୁଅ-ଝିଅଙ୍କ ସହିତ ଘରଟା ଆମର ପ୍ରାୟ ବର୍ଷ ତମାମ୍ ଗହଳ ଚହଳ ଲାଗି ରହେ । ତାହା ଛଡ଼ା ଗାଁ ଆଖ ପାଖ ଯାନିଯାତ୍ରାରେ ସମସ୍ତେ ସାଥି ହୋଇ ଯୋଗ ଦେଉଁ ।

ରଜପର୍ବରେ ଗାଁ ପାଖ ବୁଧନାଥ ଠାକୁରଙ୍କ ପାଖରେ ଭୋଗ ଦେବାଠାରୁ ଧଉଳି ପାହାଡ଼ ଯାତ୍ରାରେ ଚାଲି ଚାଲି ଯିବାରେ ଯେଉଁ ସୁଖ–ଆଜି କେଉଁ ଦିଲ୍ଲୀ କଲିକତାରେ ବା ସେ ସୁଖ ମିଳେ ରେଳ ମଟର ବା ପ୍ଲେନ୍‌ରେ ଯାତ୍ରା କଲେ ମଧ ? ମାଘ ପାହାନ୍ତା ଶୀତରେ

ଥୁରୁ ଥୁରୁ ହୋଇ ମାଘସ୍ନାନ ସାରି ବିଲରୁ ଗୟସ ଫୁଲ ତୋଳି ମହାଦେବଙ୍କଠାରେ ଲାଗି କରାଇବା ପବିତ୍ରତା ଆଜି ବି ପ୍ରାଣରେ ସଞ୍ଚାରିତ ହୁଏ ।

ସବୁ ଯାନିଯାତ୍ରା ପର୍ବପର୍ବାଣି ଖେଳ କୌତୁକ ହସକାନ୍ଦର କେନ୍ଦ୍ରବିନ୍ଦୁ ହୋଇ ରହିଥିଲେ ଏକା 'ବୋଉ' ମୋର—ସବୁ ଆପଦ-ବିପଦରେ ସାହାଭରସା ଯେମିତି । ଅଜାଣତରେ ଅବା ମୋର 'ମାଟିର ମଣିଷ' ଉପନ୍ୟାସରେ ପ୍ରଧାନ ବୁଢ଼ୀର ଚରିତ୍ର ଚିତ୍ରଣଭିତରେ ବୋଉ ଆସି ପହଞ୍ଚିଯାନ୍ତି ! ଆଜି ଆମ ସବୁଜବନ୍ଧୁମାନଙ୍କ ମଧ୍ୟରେ ଏକମାତ୍ର ଶ୍ରୀ ହରିହର ମହାପାତ୍ର (ଅବସରପ୍ରାପ୍ତ ବିଚାରପତି) ମାଆର ପୁଅ ହୋଇ ରହିଛନ୍ତି । କଥା ଅଛି— ''ବାପ ଥିଲା ପୁଅ ସଭାରେ ହାରେନି ।'' ମାତ୍ର ମୋର ବିଶ୍ୱାସ ମାଆ ଥିଲା ପୁଅର ଘରେ ବାହାରେ ସର୍ବତ୍ର ବିଜୟ ଯାହା ବହୁ ତପସ୍ୟାର ଫଳ ।

ବାପ ମା'ଙ୍କ ପ୍ରତି ଯଥାର୍ଥରେ କୌଣସି କର୍ତ୍ତବ୍ୟ ପାଳନ କରିବା କିମ୍ବା ମୃତ୍ୟୁଶଯ୍ୟାରେ ଯଥୋଚିତ ସେବା ଶୁଶ୍ରୂଷା କରିବା ସୌଭାଗ୍ୟ ମୋର ଘଟି ନାହିଁ । ସାଂସାରିକ ସବୁକ୍ଷେତ୍ରରେ ହିଁ ଅପଦାର୍ଥ ହୋଇ ମୁଁ ରହିଗଲି । ଜ୍ୟେଷ୍ଠ ଗୁରୁଜନଙ୍କ ପ୍ରତି କିମ୍ବା କନିଷ୍ଠ ପୁତ୍ରକନ୍ୟାଙ୍କ ଶିକ୍ଷାଦୀକ୍ଷା କ୍ଷେତ୍ରରେ ମଧ୍ୟ ମୋର ବ୍ୟର୍ଥତା ସେଇଭଳି ପ୍ରମାଣିତ ।

ବୋଉ ତାଙ୍କ ପୁତ୍ରବଧୂଙ୍କୁ ମୋହ ସହିତ କାଶୀ ତୀର୍ଥ ଦର୍ଶନପାଇଁ ପଠାଇ ଦେଇ ନିଶ୍ଚିନ୍ତରେ ନିଜ ନାତିନାତୁଣୀଙ୍କୁ ଘେନି ଘରେ ରହନ୍ତି ।

କଟକ ରେଳ ଷ୍ଟେସନରେ ସହଯାତ୍ରିଣୀ ହୁଅନ୍ତି ଆମର ଶ୍ରୀମତୀ ସରଳା ଦେଈ । ସୁସାହିତ୍ୟିକ ବନ୍ଧୁ ଶ୍ରୀ ଅନନ୍ତପ୍ରସାଦ ପଣ୍ଡାଙ୍କ ସମେତ ବଙ୍ଗର ଶ୍ରୀ ପ୍ରବୋଧକୁମାର ସାନ୍ୟାଲ ଓ ଭାରତର ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ବିଭିନ୍ନ ରାଜ୍ୟରୁ ସମାଗତ ସୁପରିଚିତ ବା ଅପିରିଚିତ ଲେଖକ ଲେଖିକା ବନ୍ଧୁମାନଙ୍କ ମିଳନ । ମୋହରି ଭଳି ଅନ୍ୟାନ୍ୟ ସାହିତ୍ୟିକଙ୍କର ଉତ୍କଣ୍ଠା ମଧ୍ୟ ଲକ୍ଷ୍ୟ କରେଁ ଭାରତ ନୂତନ ପ୍ରଧାନମନ୍ତ୍ରୀ ଭାବୁକ ଲେଖକ ଜବାହରଲାଲଙ୍କୁ ଦେଖିବା ପାଇଁ । ମୋହରି ଭଳି ସେମାନେ ହତାଶ ହୁଅନ୍ତି ।

'ଭାରତୀୟ ସଂସ୍କୃତିକୁ ଓଡ଼ିଶାର ଦାନ' ଶୀର୍ଷକ ପ୍ରବନ୍ଧଟି ମୋର ସମାଦୃତ ହୁଏ ବହୁ ମତରେ । ମହାଭାରତରେ କଳିଙ୍ଗୋତ୍କଳର ବର୍ଣ୍ଣନାଠାରୁ ଆରମ୍ଭ କରି ସମ୍ରାଟ୍ ଅଶୋକଙ୍କର କଳିଙ୍ଗ ବିଜୟ ପରେ ବୌଦ୍ଧ ଧର୍ମ ଗ୍ରହଣ ଘଟଣା ପୁଣି ପୁଷ୍ପଗିରି-ବିହାର ଓ ଜଗନ୍ନାଥ-ବିଗ୍ରହ ତଥା ଜଗନ୍ନାଥ ଅନୁଷ୍ଠାନରେ ପୃଥିବୀର ସବୁଧର୍ମ ସମନ୍ୱୟର ବିଭିନ୍ନ ଦୃଷ୍ଟାନ୍ତ ମୁଁ ଉଲ୍ଲେଖ କରିଥାଏଁ । ନିବନ୍ଧଟିର ରଚନାଶୈଳୀ, ବିଶ୍ଳେଷଣ ଓ ବିଷୟବସ୍ତୁର ପ୍ରକ୍ଷେପ ସଭାଗୃହରେ ସମାଦୃତ ହୁଏ ଆଶାତୀତ ରୂପେ । ରାଜ୍ୟପାଳିକା ଶ୍ରୀମତୀ ନାଇଡୁ ସଭାମଣ୍ଡପରେ ହିଁ ନିବନ୍ଧଟିକି ମୋହଠାରୁ ମାଗି ନେଇ ମୋତେ ଉତ୍ସାହିତ କରନ୍ତି ।

ଜୟପୁର ଭଳି ବନାରସ ସମ୍ମିଳନୀରେ ମଧ୍ୟ ଭାରତୀୟଙ୍କ ବିଭିନ୍ନ ଭାଷା ସାହିତ୍ୟର ପ୍ରତିନିଧିତ୍ୱ କରୁଥିବା ଲେକମାନଙ୍କ ସହିତ ପୁଣି ନିକଟତର ହେବା ସୁଯୋଗ ମିଳେ ।

'ସାହିତ୍ୟ' ଶବ୍ଦଟିର ଯଥାର୍ଥ ତାତ୍ପର୍ଯ୍ୟ ଅବା ଯେମିତି ବାସ୍ତବ ଅଭିଜ୍ଞତାରେ ପରିଣତ ହୁଏ, ମୋର ଏଇ ପ୍ରବନ୍ଧ ମାଧ୍ୟମରେ । ତାହାର ବିଷୟବସ୍ତୁ ଲାଗି ମୁଁ ବହୁ ପରିମାଣରେ ମୋର ଶ୍ରଦ୍ଧେୟ ଅଧ୍ୟାପକ ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ନିକଟରେ ଋଣୀ ।

ବିଷୟବସ୍ତୁ ମୁଖ୍ୟତଃ ଓଡ଼ିଶାର ଗୌରବମୟ ଐତିହ୍ୟ ଉପରେ ହିଁ ପର୍ଯ୍ୟବସିତ ଥିଲା । 'ମୋର ନିଜ ନିଶ ନ ଥିଲେ ହେଁ ପଣଅଜାଙ୍କର ନିଶଥିବା' ନ୍ୟାୟରେ କେବଳ ପିତୃପୁରୁଷଙ୍କ କୀର୍ତ୍ତିର ପୁନରୁଲ୍ଲେଖ କରିବା ଛଡ଼ା ନବୋତ୍କଳର ଗୌରବ-ଗରିମା ପ୍ରଖ୍ୟାପନ ଲାଗି ଉପାଦାନ ପ୍ରାୟ କିଛି ନଥିଲା ତହିଁରେ । କ'ଣ ଅବା ରହନ୍ତା ? ଶିଳ୍ପ ସାହିତ୍ୟ କଳାକ୍ଷେତ୍ରରେ ଆଧୁନିକ ଓଡ଼ିଶାର କେଉଁ ଅବଦାନ ଅବା ଉଲ୍ଲେଖଯୋଗ୍ୟ ନିକଟ ପଡ଼ୋଶୀ ରାଜ୍ୟମାନଙ୍କ ତୁଳନାରେ ? ତଥାପି କଳିଙ୍ଗୋତ୍କଳର ଐତିହ୍ୟ ଯେ ଭାରତୀୟ ଅନ୍ୟ ଯେ କୌଣସି ଆଞ୍ଚଳିକ ଐତିହ୍ୟ ତୁଳନାରେ ଯଥେଷ୍ଟ ଗୌରବମୟ— ତାହାର ଏକାଧିକ ପ୍ରମାଣ ମୁଁ ବାଢ଼ିଥାଏଁ ବେଦ ଓ ମହାଭାରତ ଯୁଗରୁ ଆରମ୍ଭ କରି ଅଶୋକ ଖାରବେଳ ପୁଣି ରାଜା କପିଳେନ୍ଦ୍ର, ପୁରୁଷୋତ୍ତମ ଓ ପ୍ରତାପରୁଦ୍ର ଦେବଙ୍କ ପର୍ଯ୍ୟନ୍ତ । ପ୍ରତିପାଦ୍ୟ ବିଷୟ ମୋର ହୋଇଥାଏ ମହାଭାରତୀୟ ସଂସ୍କୃତି-ସ୍ରୋତରେ ଉତ୍କଳୀୟ ଅବଦାନର ମହାନତା । ଇଂରେଜ ଶାସନର ଶେଷ ପର୍ଯ୍ୟାୟ ପର୍ଯ୍ୟନ୍ତ ଓଡ଼ିଶାର ସାହିତ୍ୟ-ସଂସ୍କୃତିର ସ୍ୱକୀୟତା ସ୍ୱୀକୃତ ହୋଇ ନଥିବା ହେତୁ ଏହା ଯେ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗୃହୀତ ହୋଇ ନଥିଲା, ତାହାର ମୂଳ କାରଣ ଯେ ଏ ରାଜ୍ୟର ସାମୂହିକ ଅବନତି–ସେଇ ସତ୍ୟକୁ ଘୋଡ଼ାଇବାପାଇଁ ମୁଁ ସୁଦୂର ଅତୀତ ଉପରେ ଝାସ ଦେଇଥାଏଁ । ମୋର ରଚନାକୌଶଳ ଏଭଳି ସର୍ବଜନାଦୃତ ହେବାଦ୍ୱାରା ଆତ୍ମସନ୍ତୋଷ ଯଥେଷ୍ଟ ପାଇଲି ।

ବୋଉଙ୍କ କଥାପଦକ କିନ୍ତୁ ପାସୋରି ଗଲା ନାହିଁ ମୋର—

ସକଳ ତୀର୍ଥ ତୋ ଚରଣେ<br>
ବଦ୍ରିକା ଯିବି କି କାରଣେ ।

ପ୍ରଶଂସା ଆରପାଖେ ନିନ୍ଦା, ଗୁଣ ଆର ପାଖେ ଦୋଷ—-ନିକ୍ତିରେ ହିଁ ରଖି ତଉଲ କଲେ କେଉଁ ପାଖଟା ବେଶି ଓଜନ ହୁଏ ଜୀବନରେ ମୋର, କହିବା ଆଦୌ ତ ସହଜ ନୁହ ! ନିନ୍ଦା କେତେ– ପ୍ରଶଂସା କେତେ, ତ୍ରୁଟିର ସଂଖ୍ୟା–ସଫଳତାର ପରିମାଣ ନିଜ କଥା ନିଜେ ତ ଠିକେ ଠିକେ ତଉଲ କରିବା ଅସମ୍ଭବ– ଅନ୍ୟ ପରେ କା କଥା ।

ବନାରସ P.E.N. କନ୍‌ଫରେନ୍‌ସରେ ମୋର ସାର୍ଥକତାର ସମ୍ବାଦ କିନ୍ତୁ କଲିକତା ପର୍ଯ୍ୟନ୍ତ ସିଧା ଆସି ପହଞ୍ଚି ସାରିଥାଏ । ତହୁଁ ଫେରିବା ବାଟରେ ହାଓଡ଼ା ରେଳଷ୍ଟେସନ୍‌ରେ ଓହ୍ଲାଇବା ମାତ୍ରେ ଭେଟହୁଏ କଲିକତା ରେଡ଼ିଓ ଷ୍ଟେସନର ଓଡ଼ିଆ ବିଭାଗରେ କାର୍ଯ୍ୟ କରୁଥିବା ଶ୍ରୀ ଯତୀନ୍ ଦାସଙ୍କ ସହିତ । କଲିକତାରେ ମୋର ସେ ଦିନ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ପୁରୀ ଏକ୍‌ସପ୍ରେସ୍ ରେଳଗାଡ଼ି ଧରିବାପାଇଁ କାର୍ଯ୍ୟନିର୍ଘଣ୍ଟ ରହିଥାଏ ।

ଯତୀନ୍‌ବାବୁ ସେହି ଅନୁଯାୟୀ କଲିକତା ରେଡ଼ିଓରେ ମଧ୍ୟ ଏକ କାର୍ଯ୍ୟନିର୍ଘଣ୍ଟ ମୋହ ପାଇଁ ସ୍ଥିର କରି ଦେଇଥାନ୍ତି । କେବଳ ତ ମୋହରି ପାଇଁ ନୁହେଁ, ମୋର ସହଧର୍ମିଣୀଙ୍କ ପାଇଁ ସୁଦ୍ଧା ମାଇକ୍ ସମକ୍ଷରେ କିଛି କହିବାକୁ ବ୍ୟବସ୍ଥା କରାଯାଇ ଥାଏ ।

କଟକରେ ରେଡ଼ିଓଷ୍ଟେସନ ପ୍ରତିଷ୍ଠା [୧୯୪୮] ପରେ ମୋତେ ପ୍ରାୟ ପ୍ରତି ମାସରେ ଥରେ ଦୁଇଥର ସାହିତ୍ୟ ବିଭାଗରେ ନିଜ ରଚନା ପ୍ରଚାର ଲାଗି ଆହ୍ୱାନ ଆସେ । ପ୍ରାୟ ପ୍ରତ୍ୟେକ 'ଆକାଶବାଣୀ'— କବି ସମ୍ମିଳନୀରେ ମଧ୍ୟ ସ୍ୱରଚିତ କବିତା ମୁଁ ପାଠକରେ, ଏମିତି ଏକ କବିତା ପାଠ ଉତ୍ସବରେ ମୋର 'ମିର୍ଜାମିଆଁ ରିକ୍‌ସା ଟାଣେ' କବିତା ଶ୍ରୋତାମାନଙ୍କଦ୍ୱାରା ଉଚ୍ଚ ପ୍ରଶଂସିତ ହୁଏ ।—

''ମିର୍ଜାମିଆଁ ରିକ୍‌ସା ଟାଣେ
ଅଗ୍ରେ ପୁଣି ବାଁ ଡାହାଣେ ।
ମୁଣ୍ଡପରେ ସୂର୍ଯ୍ୟ ଉଠେ
ଅଙ୍ଗେ ତା'ର ଅଗ୍ନିଛୁଟେ
ରକ୍ତ ତା'ର ଅଶ୍ରୁ ତା'ର
ଝରଇ ହୋଇ କେବଳ ଝାଳ
ରାସ୍ତା ପରେ ରକ୍ତ ନିଆଁ
ରିକ୍‌ସା ଟାଣେ ମିର୍ଜାମିଆଁ ।



## ଆକାଶବାଣୀର ଆକର୍ଷଣ

ଜୟପୁରରେ ପି.ଇ.ଏନ୍. ସଂସ୍ଥା ପକ୍ଷରୁ ନିଖିଳଭାରତ ସାହିତ୍ୟ ସମ୍ମିଳନୀ ଅନୁଷ୍ଠିତ ହୁଏ ୧୯୪୫ ଖ୍ରୀଷ୍ଟାବ୍ଦରେ; ତାହାର ଦୁଇ ବର୍ଷ ପରେ ବନାରସ ଅଧିବେଶନ ହିନ୍ଦୁ ବିଶ୍ୱବିଦ୍ୟାଳୟରେ । ସଭାପତି ହୋଇଥାନ୍ତି ଉତ୍ତର ପ୍ରଦେଶର ରାଜ୍ୟପାଳିକା ଶ୍ରୀମତୀ ସରୋଜିନୀ ନାଇଡୁ । 'ଭାରତୀୟ ସଂସ୍କୃତିକୁ ଓଡ଼ିଶାର ଦାନ' ଶୀର୍ଷକ ମୋର ନିବନ୍ଧ ପାଠକରେଁ ସେହି ସମ୍ମିଳନୀରେ । ସଭାପତିଙ୍କ ସମେତ ସମବେତ ଏକାଧିକ ସାହିତ୍ୟିକଙ୍କଠାରୁ ପ୍ରଶଂସା ମିଳେ ଉକ୍ତ ନିବନ୍ଧ ଉପରେ । ଶ୍ରୀମତୀ ସରୋଜିନୀ ସେଇ ସଭାମଣ୍ଡପରେ ହିଁ ମାଗି ନିଅନ୍ତି ମୋ ହାତରୁ ପ୍ରବନ୍ଧଟିକୁ ।

ବନାରସରୁ କଲିକତା ଫେରିବା ପଥରେ ଆକାଶବାଣୀର ବନ୍ଧୁ ଶ୍ରୀ ଯତୀନ୍ ଦାସଙ୍କ ସହିତ ଭେଟ ହୁଏ ହାଓଡ଼ା ଷ୍ଟେସନରେ । କଲିକତା ରେଡ଼ିଓରେ ମୋତେ ଭାଷଣ ଦେବାପାଇଁ ସେ ଆହ୍ୱାନ କରନ୍ତି । ତାଙ୍କ ଆହ୍ୱାନକୁ ମଧ୍ୟ ମୁଁ ଗ୍ରହଣକରେ । ସେତେବେଳେ କଲିକତା ଆକାଶବାଣୀ ସଂସ୍ଥାରୁ ହିଁ ଓଡ଼ିଆ କାର୍ଯ୍ୟନିର୍ଘଣ୍ଟ ପ୍ରଚାର କରାଯାଉଥାଏ ।

ଆକାଶବାଣୀ କେନ୍ଦ୍ର କଟକରେ ଖୋଲାଯିବା ପରେ ମୁଁ ଶୁଣୁଥାଏଁ ଯେ, ଉକ୍ତ ସଂସ୍ଥାରେ ମୋତେ ନିଯୁକ୍ତି ମିଳିବ । ଆକାଶବାଣୀର ମୁଖ୍ୟକର୍ତ୍ତାଙ୍କଠାରୁ ମଧ ଯେତେବେଳେ ଏହି ସୂଚନା ପାଏଁ । କିଭଳି ସର୍ତ୍ତରେ ପୁଣି କେଉଁ ଦାୟିତ୍ୱ ବହନ କରିବା ଲାଗି ମୋତେ ଏହି ଅନୁଷ୍ଠାନକୁ ଯିବାକୁ ହେବ, ତାହା ମୁଁ ଜାଣି ନ ଥିଲି । ଅବଶ୍ୟ ଦିଲ୍ଲୀ ଆକାଶବାଣୀ ଅନୁଷ୍ଠାନମାନଙ୍କୁ ଯିବାଲାଗି ମଝେ ମଝେ ମୁଁ ନିମନ୍ତ୍ରଣ ପାଏଁ । ପାଠ୍ୟପୁସ୍ତକ ରଚନା ଓ ଜୀବନବୀମା କମ୍ପାନୀ ସଂଗଠନ କାର୍ଯ୍ୟପ୍ରଭୃତିରୁ ଯେଉଁ ଉପାର୍ଜନ ହୁଏ; ତହିଁରେ ସଂସାର ମୋର ଯଥା ତଥା ଚଳିଯାଏ । ଦେଶୀୟ ରାଜ୍ୟଗୁଡ଼ିକର ମିଶ୍ରଣ ପରେ ଅବଶ୍ୟ ତାହାର ପ୍ରଚାର ସଂସ୍ଥା ଆପେ ବନ୍ଦ ହୋଇଯାଏ । ମାତ୍ର ଜୀବନବୀମାର କିସ୍ତିଦାଖଲ ଅନୁଯାୟୀ ସଙ୍ଗଠକର କମିସନ୍‌ଟା ମିଳେ ନିୟମିତ ।

ସେତେବେଳକୁ ମୋର ଝିଅ କୁନି ସଂସାର ପରିଚାଳନା ଲାଗି ମୋତେ ସାହାଯ୍ୟ କଲାଣି । ପାଠ୍ୟପୁସ୍ତକ ଲେଖିବାରେ ମଧ ତା'ର ସହାୟତା ଉପରେ ମୋତେ ନିର୍ଭର କରିବାକୁ ପଡ଼ିଥିଲା । ତଥାପି ମୋର ବଡ଼ସାନ ଦୁଇ ଭାଇଙ୍କ ମୃତ୍ୟୁପରେ ସେମାନଙ୍କ ପରିବାର ଦାୟିତ୍ୱ କେତେକାଂଶରେ ମୋତେ ହିଁ ବହନ କରିବାକୁ ହେଉଥାଏ ।

ଅନେକ ସମୟରେ ଆଶଙ୍କା ହେଉଥାଏ, ସବୁ ବୋଧହୁଏ ଅଚଳ ହୋଇଯିବ ପରା ହଠାତ୍ ! ଏଇଭଳି ଅବସ୍ଥାରେ ସେତେବେଳେ କଟକ ରେଡ଼ିଓ ଷ୍ଟେସନ୍‌ର ଡାଇରେକ୍ଟର ଶ୍ରୀ ଈଶ୍ୱର ଦାଶ ମୋ ସହିତ ସାକ୍ଷାତ୍ କରିବାକୁ ଇଚ୍ଛା ପ୍ରକାଶ କରନ୍ତି । ତହୁଁ ମୋତେ ସେ ଜଣାଇ ଦିଅନ୍ତି ଯେ କଟକ ରେଡ଼ିଓ ଷ୍ଟେସନର Producer କାର୍ଯ୍ୟ କରିବାକୁ ମୋ ନାମ ପ୍ରସ୍ତାବିତ ହୋଇଛି । ଏଇ ଇଂରାଜୀ ପଦବୀର ହିନ୍ଦୀ ହେଲା 'ସଲ୍‌ହାକାର'— ଓଡ଼ିଆ କିଛି କରା ହୋଇନି । ସେ ମୋର ସମ୍ମତି ଜାଣିବାକୁ ଇଚ୍ଛୁକ । ଅସମ୍ମତ ହେବାକୁ ପୁଣି ଅଛି କ'ଣ ଏଥିରେ ! ବରଂ ଏହା ତ– ମଲୁ ଖୋଜୁଥିଲା ଯାହା, ବଇଦ କହିଲା ତାହା । ଦୁଇ ତିନି ଦିନ ପରେ ତାଙ୍କୁ ମୋର ସମ୍ମତି ଜଣାଏଁ । ତାହାପରେ ପାଏଁ ଏକ ନିଯୁକ୍ତି ପତ୍ର । 'ତାହାପରେ' ଅର୍ଥାତ୍ ଅନେକ ମାସ ବିତିଯାଏ ମଧବର୍ତ୍ତୀ କାଳରେ ।

'ଅଲ୍ ଇଣ୍ଡିଆ ରେଡ଼ିଓ'ର ଭାରତୀୟ ନାମକରଣ 'ଆକାଶବାଣୀ' ରଖନ୍ତି ସ୍ୱୟଂ କବି ରବୀନ୍ଦ୍ରନାଥ ଦୁଇପଦ କବିତା ତଦୁପରି ରଚନା କରି । ଭାରତୀୟ ସଂସ୍କୃତିର ଅତୀତ ଓ ଆଧୁନିକ ରୂପ ବସ୍ତୁ-ବିଜ୍ଞାନର ଅନ୍ୟତମ । ଅଦ୍ଭୁତ ଉଦ୍ଭାବନ ଦେଖାଦିଏ ଗୋଟିଏ ଅତି କ୍ଷୁଦ୍ର ଯନ୍ତ୍ରମାଧମରେ । କେବଳ ଭାରତ ନୁହେ ତ ! ସମଗ୍ର ପୃଥିବୀର ସାହିତ୍ୟ-ସଙ୍ଗୀତ, କଳାବିଜ୍ଞାନ, ରାଜନୀତି, ଅର୍ଥନୀତି, ପୁଣି ମାନବୀୟ ସଂସ୍କୃତିର ଅତୀତ ବର୍ତ୍ତମାନ ଆଉ ଭବିଷ୍ୟତ ! ଏକା ମାନବୀୟ କାହିଁକି, ଦୁନିଆରେ କୌଣସି ବିଷୟ, କୌଣସି କାର୍ଯ୍ୟ ଓ ଭାବନା ନାହିଁ, ଯାହା ଆକାଶବାଣୀ ପରିସରଭିତରୁ ବହିର୍ଭୂତ ।

ଉତ୍କଳୀୟ ଓ ଭାରତୀୟ ସଂସ୍କୃତିର ମିଳନ-ପୀଠରୂପେ ଏଇ ଅନୁଷ୍ଠାନର ଆକର୍ଷଣ ମୋହ ପକ୍ଷରେ ଏଡ଼ିଦେବା କେବେ ସମ୍ଭବପର ହୁଅନ୍ତା କିପରି ? ସେ ଆହ୍ୱାନରେ ପୁଣି ଦାନ

ସହିତ ଦକ୍ଷିଣା ମଧ ରହିଛି । ଏଇ ଗୋଟିଏ ମାତ୍ର ସୂତ୍ରରେ ଭାରତୀୟ କବି କଳାକାରମାନଙ୍କ ସମେତ ଓଡ଼ିଶା ରାଜ୍ୟର ଅଶ୍ରୁତ ଅଖ୍ୟାତ ପୁରପଲ୍ଲୀଠାରୁ ଆରମ୍ଭ କରି ନାଗରିକ ସଂସ୍କୃତିର ମୁହଁମୁହିଁ ହେବାପାଇଁ ଅପୂର୍ବ ସୁଯୋଗ ମିଳିଯାଏ ମୋତେ । ଶାସକ-ଶାସିତ, ଧନୀ-ଦରିଦ୍ର, ନଗରପଲ୍ଲୀ ସର୍ବତ୍ର ଅବା ମୁଁ ମୋର ଉପସ୍ଥିତି ଅନୁଭବ କରେଁ ଆକାଶବାଣୀର ଅନୁଷ୍ଠାନଗୁଡ଼ିକ ମାଧମରେ ।

ଅନୁଭବ କରେଁ ଜୀବନକୁ ବିସ୍ତୃତତର ଓ ଘନିଷ୍ଠତର ଭାବରେ । ଲେଖକ ରୂପେ ପାଠକମାନଙ୍କ ସହିତ ଯେଉଁ ସଂଯୋଗ ମୋର ପ୍ରତିଷ୍ଠିତ ହୁଏ, ଆହୁରି ତାହାର ନିକଟତର ଅନୁଭୂତି ମିଳେ । ବାଳକ-ବାଳିକା, ନାରୀ-ପୁରୁଷ, କୃଷକ-ଶ୍ରମିକ, ମାଲିକ-ମୂଲିଆ, ସାକ୍ଷର-ନିରକ୍ଷର ଆଦି ସବୁ ଶ୍ରୋତାଙ୍କ ଭିତରେ ଆପଣାକୁ ଖୋଜି ପାଇବାର ସୁଯୋଗ ମୋତେ ଯୋଗାଇ ଦିଏ ଆକାଶବାଣୀ ।

ପ୍ରାୟ ପ୍ରତି ବର୍ଷ ଦିଲ୍ଲୀ ଆକାଶବାଣୀ ଆନୁକୂଲ୍ୟରେ ଅନୁଷ୍ଠିତ ସାହିତ୍ୟ ସମାରୋହମାନଙ୍କରେ ଯୋଗଦେଇ ଭାରତୀୟ ବିଭିନ୍ନ ଅଞ୍ଚଳର ଲେଖକ-ଲେଖିକାମାନଙ୍କ ନିକଟତର ପରିଚୟ ମଧ ଲାଭକରେଁ । ସାକ୍ଷାତ୍‌କାର ଘଟେ ମନ୍ତ୍ରୀଙ୍କଠାରୁ ଆରମ୍ଭ କରି ମୂଲିଆ ମଜ୍‌ଦୁର ପର୍ଯ୍ୟନ୍ତ ସବୁରି ସଙ୍ଗେ – ଧନୀ ଶିଳ୍ପପତିଙ୍କଠାରୁ ଯୋଗୀ ଭିକାରି, ଶ୍ରେଷ୍ଠ ସଙ୍ଗୀତଜ୍ଞ ଓସ୍ତାଦ୍‌ଙ୍କଠାରୁ କେନ୍ଦ୍ରାବାଦକ ପର୍ଯ୍ୟନ୍ତ ସବୁରି ସ୍ନେହ ସାହଚର୍ଯ୍ୟର ସୁଯୋଗ ଓ ସୌଭାଗ୍ୟ ।

ଏଥି ପର୍ବୂରୁ କେନ୍ଦ୍ର ସାହିତ୍ୟ ଏକାଡେମୀର ସଦସ୍ୟ ରୂପେ ମୁଁ ମନୋନୀତ ହୋଇ ସାରିଥାଏଁ କିନ୍ତୁ ରେଡ଼ିଓ କାମକୁ ସେତେବେଳର ଡାଇରେକ୍ଟର ଶ୍ରୀ ଈଶ୍ୱର ଦାସ ଯେପରି ସହଜ ସୁଗମ ବୋଲି ଚିତ୍ରଣ କରି ମୋତେ ପ୍ରଲୋଭନ ଦେଖାନ୍ତି– କାର୍ଯ୍ୟ କ୍ଷେତ୍ରରେ ତାହାର ବିପରୀତ ଅନୁଭୂତି ହିଁ ମୋର ଘଟେ । ପ୍ରତ୍ୟହ ୧୦ଟାରେ ରେଡ଼ିଓ ଅଫିସ୍‌ରେ ହାଜର ହେବା ଅଭ୍ୟାସ ଆହୁରି ଥରେ କରିବାକୁ ପଡ଼େ ମୋତେ । ଅବଶ୍ୟ ସରକାରୀ ଛାପାଖାନା ଦୁଆର ଆଗରେ ଘଣ୍ଟାକଣ୍ଟାକୁ ଚାହିଁ ଛାତି ଦପଦପ ପଡ଼ିଲାବେଳକୁ ହାଜର ଦେଲା ଭଳି ଏହା ନୁହେଁ ।

ସାହିତ୍ୟ ଚର୍ଚ୍ଚା କ୍ଷେତ୍ରରେ ମଧ ଆକାଶବାଣୀର ପରିବେଶ ଆଶାନୁରୂପ ହୋଇପାରେ ନାହିଁ । 'ଆକାଶବାଣୀ'ରେ ବାଣୀ ଆରାଧନା କରିବା ଆକାଙ୍‌କ୍ଷା ଆକାଶରେ ହିଁ ମିଳାଇଯାଏ, ମାତ୍ର ଜୀବନବ୍ୟାପୀ ତ 'ପେଟ ପୋଷ୍ ନାହିଁ ଦୋଷ' ନୀତି ଅନୁସରଣ କରି ଆସିଲି । ପୁଣି ପରା ଶାସ୍ତ୍ର କହିଛି— ''ଆତ୍ମାନଂ ସତତଂ ରକ୍ଷେତ୍ ଧନୈରପିଦରୈରପି'' ! ନିଜକୁ ରକ୍ଷା କରିବାପାଇଁ ଧନୋତ୍ସର୍ଗ କଥାଟାକୁ ଯେତେ ଯୁକ୍ତିସଙ୍ଗତ ବୋଲି ବିଚାର କଲେହିଁ ଦାରାକୁ ସୁଦ୍ଧା ଉତ୍ସର୍ଗ କରିବା କଥାରେ ମୋର ମନଟା କିପରି ବିଦ୍ରୋହ କରିଉଠେ ।

କାରଣ ପୃଥିବୀରେ ଯେତେ ବଡ଼ ବଡ଼ ମୌଳିକ ସାହିତ୍ୟ ରଚିତ ହୋଇଛି, ସେଥିରେ ଆତ୍ମାକୁ ରକ୍ଷାକରିବା ଅପେକ୍ଷା ଦାରାକୁ ରକ୍ଷା କରିବା ହିଁ ପ୍ରଧାନ ଲକ୍ଷ୍ୟ ରୂପେ ବର୍ଣ୍ଣିତ– ରାମାୟଣ ମହାଭାରତଠାରୁ ଆରମ୍ଭକରି ଗ୍ରୀକ୍ ଇଲିୟଡ୍ ପର୍ଯ୍ୟନ୍ତ; ଅଥବା ପୃଥିବୀର

ପ୍ରାଚୀନତମ ହିଟାଇଟ୍ (Hittite) ମହାକାବ୍ୟ ରୂପେ ଚିହ୍ନିତ ଗିଲ ଗାମେଶ୍ (Gilgamesh) ଉପାଖ୍ୟାନ ସମୂହ ।

ସୀତାଙ୍କୁ ଉଦ୍ଧାର କରିବାପାଇଁ ରାମରାବଣ ଯୁଦ୍ଧ ହୁଏ, ପୁଣି ଦ୍ରୌପଦୀଙ୍କ ବସ୍ତ୍ରହରଣ— ଲଜ୍ଜାର ପ୍ରତିଶୋଧ ରୂପେ ମହାଭାରତ । ତାହା ସତ୍ତ୍ୱେ ଆତ୍ମରକ୍ଷା ଯେ ପରମ ଧର୍ମ ପୁଣି ଆତ୍ମହତ୍ୟା ଯେ ସବୁଠାରୁ ବଳି ବଡ଼ ପାପ, ଏହାର ପ୍ରମାଣ ଖୋଜିବାକୁ ଶାସ୍ତ୍ରପୁରାଣ ଘାଣ୍ଟିବା ଲୋଡ଼ା ହୁଏ ନାହିଁ । ଜୀବନର ପ୍ରତି କ୍ଷେତ୍ରରେ ହିଁ ହିଂସା, ଦ୍ୱେଷ ଗାତ୍ରଦାହ–ପ୍ରତି କ୍ଷେତ୍ରରେ ହିଁ ଈର୍ଷ୍ୟାର ମଞ୍ଜି ପୋତା ହୋଇଛି ।

ସେହି ଈର୍ଷ୍ୟାର ବିକଟ ବୀଭତ୍ସ ନଗ୍ନ ସ୍ୱରୂପ ସହିତ ମଧ ବାଲ୍ୟ ବୟସରୁ ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ମୁହାଁମୁହିଁ ହେବାକୁ ପଡ଼ିଛି ମୋତେ— ବୋଧ ହୁଏ ମୋରି ଭିତରେ ଘୃଣା, ଦ୍ୱେଷ, ସଂକୀର୍ଣ୍ଣତା ଓ ହୀନମନ୍ୟତା ଯୋଗାଇ ଦେବାପାଇଁ; ପୁଣି ଚେତାଇ ଦେବାପାଇଁ ମୋର ଜୀବନ-ପଥର ଏହିଭଳି ମନ୍ଦ ଗ୍ରହର ଘାଟିଗୁଡ଼ିକୁ ପାର ହୋଇଯିବା ଉପାୟ ଆବିଷ୍କାର ଲାଗି । ଶ୍ରୀମଦ୍ ଭାଗବତ୍‌କାରଙ୍କର ଭାଷାର ଯଥାର୍ଥ୍ୟ ଅନୁସାରେ—

ଦୁର୍ଗମ ପଥ ଏ ଭଜନ ।
ଭୟେ ଭାଜନ୍ତି ଯୋଗିଜନ ॥

ଯେଉଁ ଭଜନ ପଥରେ ଯୋଗୀ ପୁରୁଷ ମଧ ଭୟ ଆତଙ୍କରେ ଭାଙ୍ଗିପଡ଼ନ୍ତି, ସେଠାରେ ପୁଣି ମୁଁ କି ଛାର ! ଅଳ୍ପ ବୟସରୁ ମୋର ଜୀବନର ଭବିଷ୍ୟତ ଯେମିତି ଅବା ମୁଁ ନିଜେ ଦେଖିବାକୁ ଯାଇ ଲେଖିଥିଲି ସେଇ ମୋର ପ୍ରାଥମିକ ଯୁଗର କବିତା ''ଏକାକୀ ପଥରେ'' ।

''ଏକାକୀ ପଥରେ ମୁଁ
ଏକାକୀ ପଥରେ
ନାହିଁ ମାନବ ପ୍ରାଣୀ
ନାହିଁ ଆଶାର ବାଣୀ
ମଉନବ୍ରତରେ ମୁଁ
ଏକାକୀ ପଥରେ ।''



# ନିଖିଳ ଭାରତ ଲେଖକ ସମ୍ମିଳନୀ

କଟକ ରେଡ଼ିଓ ଷ୍ଟେସନରେ ନମୁଦ ହେବାର କେତେ ମାସ ପରେ ନିମନ୍ତ୍ରଣ ପାଏଁ କେରଳ ସାହିତ୍ୟ-ସମିତି ପକ୍ଷରୁ । କୋଟାୟାମ୍ ଠାରେ ଅନୁଷ୍ଠିତ ହେଉଥାଏ ଏହି ସମ୍ମିଳନୀର ଚତୁର୍ବିଂଶ ବାର୍ଷିକ ଅଧିବେଶନ । ନିମନ୍ତ୍ରିତ ହୋଇଥାନ୍ତି ଭାରତର ବିଭିନ୍ନ ଆଞ୍ଚଳିକ ଭାଷାଭାଷୀମାନଙ୍କର ପ୍ରତିନିଧିସ୍ଥାନୀୟ କବି-ଲେଖକବୃନ୍ଦ । ବିଭିନ୍ନ ଆଞ୍ଚଳିକ ସାହିତ୍ୟର ପ୍ରଗତି ଉପରେ ଆଲୋଚନା କରିବାପାଇଁ ବିଷୟ ସ୍ଥିର କରାଯାଇଥାଏ । ଦକ୍ଷିଣ ଭାରତର ସଂସ୍କୃତି ସହିତ ପରିଚିତ ହେବାର ଏଇ ସୁଯୋଗକୁ ମୁଁ ଏଡ଼ିପାରେ ନାହିଁ ।

କଟକ ଆକାଶବାଣୀର ସେତେବେଳେ ଡାଇରେକ୍ଟର ଶ୍ରୀ ପି.ଭି. କ୍ରିଷ୍ଣମୂର୍ତ୍ତି ସମ୍ମିଳନୀରେ ଯୋଗଦେବାଲାଗି ମୋତେ ଉତ୍ସାହ ଯୋଗାନ୍ତି ମଧ୍ୟ । ଦକ୍ଷିଣଭାରତୀୟ ପ୍ରାକୃତିକ ସୌନ୍ଦର୍ଯ୍ୟଭିତରେ କେରଳର ବନ-ପର୍ବତ, ହ୍ରଦ-ନଦୀ ପୁଣି ଅଧିବାସୀମାନଙ୍କର କର୍ମତତ୍ପର ଜୀବନ ଓ ସରଳ ବେଶପରିପାଟୀ ମୋତେ ମୁଗ୍ଧ କରେ । ପଥମଧ୍ୟରେ ମୋର ସହଯାତ୍ରୀ ହୁଅନ୍ତି ବଙ୍ଗଳାର 'ସିରାଜଦୌଲା' ରଚୟିତା ପ୍ରଖ୍ୟାତ ନାଟ୍ୟକାର ବନ୍ଧୁ ସ୍ୱର୍ଗତ ଶଚୀନ୍ ସେନ୍‌ଗୁପ୍ତ । ଶଚୀନ୍‌ବାବୁଙ୍କ ପତ୍ରାଳାପରୁ ଯେଉଳି ରୂପଗୁଣରେ ସେ ଭୂଷିତ ବୋଲି କଳ୍ପନା କରେଁ, ଅବିକଳ ସେଇପରି ଦେଖେଁ ତାଙ୍କୁ । କୋଟାୟାମ୍‌ରେ ପହଞ୍ଚି ଭେଟହୁଏ ପୁଣି ପ୍ରବୀଣ ମରାଠୀ ନାଟ୍ୟକାର, ମାମାଓ୍ୱାରେରକର ଓ ଗୁଜୁରାଟୀ ନାଟ୍ୟକାର ଶ୍ରୀ ଚନ୍ଦ୍ରବଦନ ମେହେଟାଙ୍କ ସଙ୍ଗେ; ସମସ୍ତେ ମୋର ପୂର୍ବ ପରିଚିତ ବନ୍ଧୁ । ଏକାଧିକ ଥର ଦିଲ୍ଲୀରେ ଆମର ସାକ୍ଷାତ୍‌କାର । କ୍ରମାଗତ ତିନିଦିନବ୍ୟାପୀ ଏହି ସମ୍ମିଳନୀ ଅନୁଷ୍ଠିତ ହୁଏ । ଶତ ଶତ ନାରୀପୁରୁଷ ଶ୍ରୋତୃବର୍ଗଙ୍କ ମଧ୍ୟରେ, ବିପୁଳସଂଖ୍ୟକ ବାଳକ-ବାଳିକାଙ୍କ ଉପସ୍ଥିତିରେ ମଧ୍ୟ ଶିଶୁ ସାହିତ୍ୟର ଦୀର୍ଘ ଆଲୋଚନା କରାଯାଏ । ଶତ ଶତ ବାଳକ ବାଳିକା ଯେପରି ସହଜ ସରଳ ସ୍ୱଭାବର ପରିଚୟ ଦିଅନ୍ତ, ତାହାର ତୁଳନା ନାହିଁ ।

ଭାରତର ବିଭିନ୍ନ ସ୍ଥାନରେ ସଭାସମିତି ସାହିତ୍ୟ ସମ୍ମିଳନୀରେ ଯୋଗଦେଇ କେରଳ ସମ୍ମିଳନୀରେ ଏକ ବିଶେଷତ୍ୱ ମୁଁ ଲକ୍ଷ୍ୟ କରେଁ ଅପୂର୍ବ ଶୃଙ୍ଖଳା ଜ୍ଞାନ-ଆବାଳବୃଦ୍ଧବନିତା ସବୁରି ଭିତରେ ଏଇ ଶୃଙ୍ଖଳା ଜ୍ଞାନର ପରିଚୟ । ପୁଣି କେରଳର ଗ୍ରାମାଞ୍ଚଳରେ ଶାନ୍ତସମାହିତ ଜୀବନର ପରିପାଟୀ କେରଳୀୟ ପ୍ରକୃତିର ଏକ ବିଶେଷତ୍ୱ ରୂପେ ମନରେ ମୋର ଅଙ୍କିତ ହୋଇ ରହିଯାଏ ।

ସେହି ଅବସରରେ କେରଳର ମହାକବି ସ୍ୱର୍ଗତ କାଲାଥୋଲ, ଶ୍ରୀ ଶଙ୍କର କୁରୂପ ଓ ମୁଖ୍ୟମନ୍ତ୍ରୀ ଶ୍ରୀ ନମ୍ବୁଦ୍ରିପାଦଙ୍କ ସହିତ ମଧ୍ୟ ମିଳନର ସୁଯୋଗ ଲାଭକରେଁ । ନମ୍ବୁଦ୍ରିପାଦମାନେ ସ୍ୱୟଂ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ବଂଶୋଦ୍ଭବରୂପେ ପରିଚିତ ହେବାକୁ ଗୌରବ ଜ୍ଞାନ କରନ୍ତି । ଅଳ୍ପ ବୟସରୁ ମୁଁ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ 'ମୋହମୁଦ୍‌ଗର' ଆଦି ପଢ଼ି ଅନୁପ୍ରାଣିତ ହୋଇଥିଲି ଗଭୀର

ଭାବରେ ଭାରତ ସୀମାନ୍ତରେ ଅବସ୍ଥିତ କନ୍ୟାକୁମାରୀର ଅପୂର୍ବ ଦୃଶ୍ୟ ବଙ୍ଗୋପସାଗର ଓ ଆରବସାଗର ଦ୍ୱୟର ଭାରତ ମହାସାଗର ସହିତ ମିଳନ ସମୀପରେ ଆକାଶଚୁମ୍ବୀ ପଶ୍ଚିମ ଘାଟ ପର୍ବତମାଳାର ମହନୀୟ ଦୃଶ୍ୟ ହୃଦୟକୁ ଯେପରି ବିସ୍ମୃତକରେ, କଳ୍ପନାକୁ କରେ ସେହିପରି ଗଗନସ୍ପର୍ଶୀ । ଆକୁମାରୀ-ହିମାଚଳ ପବିତ୍ର ଏଇ ଭାରତବର୍ଷ । ଆଜି ମଧ ଦିବ୍ୟଜୀବନ ଅନୁସନ୍ଧାନ ଓ ସାଧନ କ୍ଷେତ୍ରରେ ହୃଷୀକେଶଠାରୁ ଆରମ୍ଭ କରି ଶ୍ରୀ ଅରବିନ୍ଦ ପଣ୍ଡିଚେରୀ ଆଶ୍ରମ ପର୍ଯ୍ୟନ୍ତ ସୁପରିଚିତ ।

ଆଜି ମଧ ବସ୍ତୁବିଜ୍ଞାନର ବାସ୍ତବ ଚନ୍ଦ୍ରଦର୍ଶୀ ବିଂଶଶତାବ୍ଦୀର ଶେଷ ପର୍ଯ୍ୟାୟରେ ଦେବୀ କନ୍ୟାକୁମାରୀଙ୍କର ସତେଜ ଲାବଣ୍ୟମୂର୍ତ୍ତି, ସମୁଦ୍ର ମଧରେ ବିବେକାନନ୍ଦ ରକ୍ ବା ପର୍ବତ ଶୃଙ୍ଗର ଦୃଶ୍ୟ–ଯାହାଉପରେ ସ୍ୱାମିଜୀ ଧ୍ୟାନରତ ଥିଲେ– ବଙ୍ଗୋପସାଗର, ଆରବସାଗର ଓ ଭାରତ ମହାସାଗର-ତ୍ରିବେଣୀ ସଙ୍ଗମ ପବିତ୍ର ପୀଠରେ !

ହିମାଳୟଠାରୁ କନ୍ୟାକୁମାରୀ ପୁଣି ପୂର୍ବ ସୀମାନ୍ତ ସମୁଦ୍ରରୁ ପଶ୍ଚିମ ସୀମାନ୍ତ ପର୍ଯ୍ୟନ୍ତ ଏହି ପୁରାଣପ୍ରସିଦ୍ଧ ମହାନ୍ ଭାରତବର୍ଷର ପ୍ରତ୍ୟେକ ନଦନଦୀ ହ୍ରଦପର୍ବତ ପବିତ୍ର ହୋଇଛି କେତେ ଯୋଗୀ ଋଷି କୃଷକ ଶ୍ରମିକଙ୍କ ପଦସ୍ପର୍ଶରେ । ସ୍ଥାନେ ସ୍ଥାନେ ନବ ନବ ପୁଲକରେ ପ୍ରାଣ ମୋର ସ୍ପନ୍ଦିତ ହୋଇଉଠେ– ଛାଏଁ ଅବା ଦୁଇ କର ଯୋଡ଼ି ହୋଇଯାଏ ମୋର ଅନନ୍ତ ଅକ୍ଷୟ ଏଇ ମହାକାଶର ଊର୍ଦ୍ଧ୍ୱରୁ ଊର୍ଦ୍ଧ୍ୱକୁ—

ପଶ୍ୟାମି ଦେବାଂସ୍ତବ ଦେବଦେହେ
ସର୍ବାଂସ୍ତଥା ଭୂତ ବିଶେଷ ସଂଘାନ୍ ।

ଆହୁରି ବେଳେବେଳେ ନିରେଖି ଚାହିଁଲେ— ସର୍ବତ୍ର ସବୁ ପରିପୂର୍ଣ୍ଣ– ଅଥଚ ତାହା ଅନୁଭବ କରିବାକୁ ଅକ୍ଷମ ମୁଁ ଆତ୍ମସର୍ବତ୍ର ହୋଇପଡ଼ି ଆପଣାକୁ ଏକା ବୋଲି ବିଚାରୁଛି ।

"ଭୁବନେ ଉଚ୍ଛୁଳଇ ଆନନ୍ଦ ରହି ରହି
ଆନନ୍ଦହୀନ ହିୟା ଚାଲିଛି ମୁଁ ଯେ ବହି
ଜୀବନ ମ୍ଳାନ ମୋ ଆଘାତ ଶତରେ
ମୁଁ ଏକାକୀ ପଥରେ ।"

ଜୀବନ ପଥର ପଥିକ ହୋଇ ଏହିଭଳି ନିଃସହାୟ ଏକାକିତ୍ୱ ବାରମ୍ବାର ମୁଁ ଅନୁଭବ କରେଁ, ଦେଖିବାକୁ ପାଏଁ ସାମ୍ନାରେ, ପୁଣି ବାଁ ଡାହାଣ ପଛପଟେ–ବୃକ୍ଷଗୁଳ୍ମଶୂନ୍ୟ ଜନପ୍ରାଣୀହୀନ ରୁକ୍ଷ ଅସୀମ ମରୁଭୂମି । ତଥାପି ଗଣ୍ଠିଲିବାନ୍ଧି ବାଟକାଟେଁ ମୋର ସେହି ସବୁ ବେଳର ଅମଡ଼ା ବାଟରେ ।

କଟକ ରେଡ଼ିଓ ଷ୍ଟେସନରେ କାର୍ଯ୍ୟ କରୁଥିବା ସମୟରେ ମଧ ଏକ ପତ୍ର ପାଏଁ କେନ୍ଦ୍ର ସରକାରଙ୍କ ଶିକ୍ଷା ଓ ସାଂସ୍କୃତିକ ମନ୍ତ୍ରୀ ଶ୍ରଦ୍ଧେୟ ସ୍ୱର୍ଗତ ହୁମାୟୁନ୍ କବୀରଙ୍କଠାରୁ । ପତ୍ରର ଉଦ୍ଦେଶ୍ୟ ହେଲା— କଲିକତାର 'ମହାଜାତି-ସଦନ'ରେ ଅଖିଳଭାରତ ଲେଖକସମ୍ମିଳନୀ ଅନୁଷ୍ଠିତ ହେବ । ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍ ଓ ପଣ୍ଡିତ ଜବାହରଲାଲ୍ ନେହେରୁ ପ୍ରମୁଖ ଭାରତର ବିଶିଷ୍ଟ ଭାବୁକ ସାହିତ୍ୟିକମାନେ ଏହି ସଭାରେ ଯୋଗଦେବେ । ମୋତେ ମଧ

ନିମନ୍ତ୍ରଣ, ଗୋଟିଏ ଦିନ ସଭାପତିତ୍ୱ କରିବାପାଇଁ । ଏହି ନିମନ୍ତ୍ରଣ ରକ୍ଷା କରେଁ ମୁଁ ସାଗ୍ରହରେ ଧନ୍ୟବାଦ ଜଣାଇ । ତହୁଁ ପୁଣି ପତ୍ର ଆସେ ମୋହରି ସଭାପତିତ୍ୱ କରିବା ଦିନଟିର ମୁଖ୍ୟବକ୍ତା ପ୍ରଧାନମନ୍ତ୍ରୀ ନେହେରୁ ଓ ଆଲୋଚ୍ୟ ବିଷୟ— "State and Literature" ରାଷ୍ଟ୍ର ଓ ସାହିତ୍ୟ ।

କେନ୍ଦ୍ରମନ୍ତ୍ରୀ ଶ୍ରୀ କବୀରଙ୍କଠାରୁ ପତ୍ର ପାଇ ମନ ମୋର ଉତ୍‌ଫୁଲ୍ଲ ହୋଇଉଠେ । ପୁଣି ସମ୍ବାଦପତ୍ରରେ ଏହା ପ୍ରକାଶ ପାଇବା ପରେ ବନ୍ଧୁମାନେ ଜଣାନ୍ତି ଅଭିନନ୍ଦନ । ଆକାଶବାଣୀ ଡାଇରେକ୍ଟର ଶ୍ରୀ ପି.ଭି. କ୍ରିଷ୍ଣମୂର୍ତ୍ତି ମଧ ବିସ୍ମିତ ହୁଅନ୍ତି ଯେ, ଭାରତର ପ୍ରଧାନମନ୍ତ୍ରୀ ଭାଷଣ ଦେଉଥିବା ସାହିତ୍ୟସଭାରେ ମୁଁହିଁ କରୁଛି ସଭାପତିତ୍ୱ । 'ମହାଜାତି-ସଦନ' ଗୃହଟି ଲେଖକଲେଖିକାମାନଙ୍କ ସମାଗମରେ ପୂର୍ଣ୍ଣ ହୋଇଉଠେ । ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ଶ୍ରୀ ବିଧାନରାୟ ଅସୁସ୍ଥ ଥିବା ହେତୁ ପ୍ରତିନିଧିମାନଙ୍କ ଅଭ୍ୟର୍ଥନାର ଦାୟିତ୍ୱ ଗ୍ରହଣ କରିଥାନ୍ତି ଶ୍ରୀଯୁକ୍ତ ପ୍ରଫୁଲଚନ୍ଦ୍ର ସେନ୍ ଓ ଶ୍ରୀଯୁକ୍ତ ଅତୁଲ୍ୟ ଘୋଷ ।

ମହାନଗରୀ କଲିକତାରେ ଭାରତର ସବୁ ଅଞ୍ଚଳର ପ୍ରତିନିଧିମାନଙ୍କ ସମାଗମ ସୃଷ୍ଟି କରିଥାଏ ଏକ ଶାନ୍ତି ସମାହିତ ଗମ୍ଭୀର ପରିବେଶ । ଭାରତର ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ସବୁ ଅଞ୍ଚଳର ସବୁ ଭାଷାଭାଷୀ ସାହିତ୍ୟିକମାନଙ୍କ ଚିନ୍ତାଧାରାରେ ଅପୂର୍ବ ଏକତ୍ୱବୋଧର ସମନ୍ୱୟ ଅବା ସମ୍ମିଳନୀର ବାତାବରଣ ଖେଳି ବୁଲୁଥାଏ ।

'ରାଷ୍ଟ୍ର ଓ ସାହିତ୍ୟ' ବିଷୟରେ ସେ ଦିନ ମୋର ଇଂରାଜୀ ପ୍ରବନ୍ଧ ପାଠକରେଁ । କେନ୍ଦ୍ର ଶିକ୍ଷାମନ୍ତ୍ରୀ ଓ କଲିକତା ସର୍ବଭାରତୀୟ ଲେଖକସମ୍ମିଳନୀର ଅଭ୍ୟର୍ଥନା ସଭାପତି ସ୍ୱର୍ଗତ ହୁମାୟୁନ୍ କବୀର୍ ଉଚ୍ଚ ପ୍ରଶଂସା ଜଣାନ୍ତି ମୋ ପ୍ରବନ୍ଧର । ତହୁଁ ଆରମ୍ଭ ହୁଏ ଆଲୋଚନା । ଆଲୋଚନାର ମଧସ୍ଥଳରେ ପହଞ୍ଚନ୍ତି ଆସି ଜବାହରଲାଲ ।

ସଭାଗୃହରେ ଜବାହରଲାଲଙ୍କ ଭାଷଣ ଶୁଣିବାପାଇଁ ଉଦ୍‌ଗ୍ରୀବ ହୋଇଉଠନ୍ତି ସମବେତ ସୁଧୀ ଲେଖକବୃନ୍ଦ । ସେମାନଙ୍କର, ସଂଭ୍ରମ ଓ ଉତ୍କଣ୍ଠା ସହିତ ସଭାପତିଭାବରେ ମୁଁ ମଧ ଅନୁଭବ କରେଁ ଉଦ୍‌ବେଗ ତହୁଁ ବକ୍ତାମାନଙ୍କୁ ଅନୁରୋଧ କରେଁ ଯଥାସମ୍ଭବ ସଂକ୍ଷେପରେ ମାତ୍ର ପାଞ୍ଚ ମିନିଟ୍ ମଧରେ ପ୍ରତ୍ୟେକ ବକ୍ତା ନିଜ ବକ୍ତବ୍ୟ ସାଙ୍ଗ କରିବାକୁ ।

ମୋର ନିର୍ଦ୍ଦେଶକୁ ପଣ୍ଡିତ ନେହେରୁ ମଧ ନାପସନ୍ଦ କରି ସଂକେତ ଦିଅନ୍ତି ଅନୁଚ୍ଚ ସ୍ୱରରେ ମୋହପାଖରେ ବସି । ତହୁଁ ତାଙ୍କୁ ମୁଁ ଜଣାଏ ଯେ, ବକ୍ତାମାନଙ୍କ ସଂଖ୍ୟା ପ୍ରାୟ ଦଶ ଜଣ ଅଥଚ ଶ୍ରୀ ନେହେରୁଙ୍କ ଭାଷଣ ଶୁଣିବାପାଇଁ ସଭାଗୃହରେ ସମସ୍ତେ ଉଦ୍‌ଗ୍ରୀବ । ତଥାପି ମାତ୍ର ପାଞ୍ଚ ମିନିଟ୍ ଅତି କମ୍ ହେଲା ବୋଲି ନେହେରୁ ମତ ଦେଲେ ।

ସେତିକିବେଳେ କବି ରବୀନ୍ଦ୍ରନାଥଙ୍କ ପୌତ୍ର ଶ୍ରଦ୍ଧେୟ ବନ୍ଧୁ ଶ୍ରୀ ସୌମେନ୍ଦ୍ରନାଥ ଠାକୁର ଠିଆ ହୋଇ ପ୍ରତିବାଦ ଜଣାନ୍ତି ମୋର ସଭାପତି ଭାବରେ ବକ୍ତାମାନଙ୍କପାଇଁ ସମୟର ସୀମା ନିର୍ଦ୍ଧାରଣ ବିରୋଧରେ । ବିନୀତ ଭାବରେ ତାଙ୍କୁ ମୁଁ ଅନୁରୋଧ କରେଁ, ସେ ନିଜେ ଇଚ୍ଛାକଲେ ଅଧିକ ସମୟ ନେଇ ପାରନ୍ତି, ମାତ୍ର ପ୍ରତିବାଦ କରି ସେ ଭାଷଣ ଦେଇନଥିଲେ । ସେଇ ଅଳ୍ପ କାଳ ମଧରେ ଅବଶ୍ୟ ଏକାଧିକ ବକ୍ତା ଭାଷଣ ଦିଅନ୍ତି ।

ଓଡ଼ିଆ 'ଡଗର' ପତ୍ରିକାର ସଂପାଦକ ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କର 'ରାଷ୍ଟ୍ର ଓ ସାହିତ୍ୟ' ବିଷୟକ ସଂକ୍ଷିପ୍ତ ଭାଷଣଟି ବେଶ୍ ସାହସିକତା ବ୍ୟଞ୍ଜକ ପୁଣି ଉତ୍ତେଜନାପୂର୍ଣ୍ଣ ଓ ସମାଲୋଚନାମୂଳକ ହୋଇଥିବାରୁ ସଭାଗୃହରେ ପ୍ରଶଂସିତ ହୁଏ ।

ଆବହମାନକାଳରୁ ରାଷ୍ଟ୍ର ସହିତ ସାହିତ୍ୟ କି ଭଳି ଅଙ୍ଗାଙ୍ଗୀରୂପେ ଜଡ଼ିତ ହୋଇ ରହିଆସିଛି; ପୁଣି ରାଷ୍ଟ୍ର ଶାସନର ସୁପରିଚାଳନା ଦିଗରେ ସାହିତ୍ୟର ନିର୍ଦ୍ଦେଶ ପରୋକ୍ଷଭାବେ କି ଭଳି ପ୍ରଭାବିତ କରି ଆସିଛି, ଦେଶ ବିଦେଶର ପ୍ରାଚୀନ ଯୁଗରୁ ଆରମ୍ଭ କରି ଆଧୁନିକ ଯୁଗ୍ ପର୍ଯ୍ୟନ୍ତ ବିଭିନ୍ନ ଉଦାହରଣ ଦେଇ ମୁଁ ବ୍ୟାଖ୍ୟା କରିଥାଏଁ ପ୍ରବନ୍ଧରେ ମୋର । ସଭା ସାଙ୍ଗ ହେବା ପରେ ଏକାଧିକ ବନ୍ଧୁଙ୍କର ମୁଁ ପ୍ରଶଂସାଭାଜନ ହୁଏଁ ପୁଣି ମୋର ସ୍ୱାକ୍ଷର ନେବାପାଇଁ ତରୁଣ ଲେଖକଲେଖିକାମାନେ ଯେଉଁ ବ୍ୟୂହ ରଚନା କରନ୍ତି, ତାହାକୁ ଭେଦ କରିବା କଠିନ ହୋଇ ଉଠେ ମୋହ ପକ୍ଷରେ ।

ଏଥି ପୂର୍ବରୁ ଏହା ପରେ କଲିକତାରେ ଅନୁଷ୍ଠିତ ଏକାଧିକ ସାହିତ୍ୟିକ ଅନୁଷ୍ଠାନରେ ଯୋଗଦେବାର ସୁଯୋଗ ମୋର ଘଟିଛି । ଶାନ୍ତିନିକେତନରେ ରବୀନ୍ଦ୍ର ଶତବାର୍ଷିକୀ ପୁଣି କଲିକତାରେ ନିଖିଳ-ଭାରତୀୟବଙ୍ଗ ସାହିତ୍ୟ ସମ୍ମିଳନୀ ପ୍ରଭୃତିରେ ଅନୁଭବ କରିଛି, ସାହିତ୍ୟ-ସାଧନାର ପୀଠରେ ଆଜୀବନ ସାଧକମାନଙ୍କ ଏକନିଷ୍ଠତା ।

ବମ୍ବେଠାରେ ଅନୁଷ୍ଠିତ ରବୀନ୍ଦ୍ର ଶତବାର୍ଷିକୀ ଜୟନ୍ତୀ ଉତ୍ସବରେ ମଧ ଏଇ ଅନୁଭୂତି ମୋର ଦୃଢ଼ତର ହୁଏ । ସେଠାରେ ଅଭ୍ୟର୍ଥନା ସଭାର ସଭାପତି ଥା'ନ୍ତି ବମ୍ବେର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଓ ବର୍ତ୍ତମାନ କେନ୍ଦ୍ରମନ୍ତ୍ରୀ ଶ୍ରୀ ଯଶୋବନ୍ତ ରାଓ ବଳବନ୍ତ ରାଓ ଚୌହାନ । ପଣ୍ଡିତ ଜବାହରଲାଲ୍ ସେଠାରେ ତାଙ୍କ ଭାଷଣରେ ପ୍ରକାଶ କରନ୍ତି ଯେ, ଯୌବନରେ ସେ ଗାନ୍ଧିଜୀଙ୍କ ଶିଷ୍ୟତ୍ୱକୁ କର୍ମକ୍ଷେତ୍ରରେ ଗ୍ରହଣ କରିଥିଲେ ମଧ ରବୀନ୍ଦ୍ରନାଥଙ୍କ ଆଦର୍ଶଦ୍ୱାରା ଅଧିକ ଅନୁପ୍ରାଣିତ ହୁଅନ୍ତି ।

ନେହେରୁଙ୍କର ଏହି ମନ୍ତବ୍ୟ ଶୁଣି ମୋର ସ୍ମରଣ ହେଲା— ଗାନ୍ଧୀଙ୍କ ଆଦର୍ଶରେ ମୁଁ ଅଧିକ ଅନୁପ୍ରାଣିତ ହେଲେହେଁ ଯୌବନରେ ଆକୃଷ୍ଟ ହୋଇ ଅନୁସରଣ କରେଁ ରବୀନ୍ଦ୍ର ସାଧନାର ଆଦର୍ଶକୁ; ଅର୍ଥାତ୍ ରାଜନୀତି ବଦଳରେ ସାହିତ୍ୟହିଁ ମୋତେ ନିବିଡ଼ତର ରଜ୍ଜୁରେ ବନ୍ଧନ କରେ– ସେଇ ବନ୍ଧନରୁ ମୁକ୍ତିଲାଭ କରି ରାଜନୀତିର ବେଡ଼ି ପିନ୍ଧିବାକୁ ବୋଧହୁଏ ଆଉ ଅବସର ମିଳେ ନାହିଁ ।

ରାଜନୀତିକ ବେଡ଼ି-ବନ୍ଧନ ଅବା କାରାବାସର ନିର୍ଦ୍ଦିଷ୍ଟ ସମୟ ଅଛି । ନିର୍ଦ୍ଦିଷ୍ଟ ସୀମା ରହିଛି ମନ୍ତ୍ରିତ୍ୱ କାର୍ଯ୍ୟକାଳରେ ସୁଦ୍ଧା । ମାତ୍ର ସାହିତ୍ୟିକ ବେଡ଼ିର ସମୟର ଅନିର୍ଦ୍ଦିଷ୍ଟ । ରାଷ୍ଟ୍ରୀୟ ଜେଲ କବାଟ ମଝିରେ ମଝିରେ ଫିଟିଯାଏ, ମାତ୍ର ସାହିତ୍ୟର ଯେ କବାଟ ରାଷ୍ଟ୍ରୀୟ ସବୁବେଳେ ବନ୍ଦ । ତହିଁରୁ କେବେହେଲେ ଛୁଟିନାହିଁ କି ମୁକ୍ତି ନାହିଁ, ସେ ଜେଲ୍‌ରେ ଯେ ପଡ଼େ, ଅବା ସେ ଫାନ୍ଦରେ ଥରେ ଯେ ଲାଖେ, ଆଉ ଯେମିତି ତା'ର ମୁକୁଳିବାକୁ ବାଟ ମିଳେନି କେଉଁଠି !

ମୁକୁଳିବାପାଇଁ କେତେ ଉଦ୍ୟମ ମୁଁ ଯେ ନ କରିଛି ! ଶେଷରେ କିନ୍ତୁ ହାରିଯାଇଛି କେବଳ ହା-ହୁତାଶ କରି; ସବୁ ହା-ହୁତାଶକୁ ପୂରଣ କରିବାପାଇଁ ଧରିଛି କଲମ, କଟାଇଛି

କେତେ ଅନିଦ୍ରା ରାତ୍ରି, ବିତାଇଛି କେତେ କର୍ମହୀନ ଦିବସ— ଅସୀମ ଅଭାବ, ଅସୁବିଧା, ଅପମାନରେ ପୂର୍ଣ୍ଣ କରିଛି ମୋର ଶୂନ୍ୟ ଥାଳ । ବୋଉ ମୋର ଥିଲାବେଳେ ମଝିରେ ମଝିରେ ଆକଟ କରନ୍ତି– ''କୁଆଡ଼େ ତ ତୁ ଯାଆସ କଲୁନି, କାହାରି ପାଖକୁ ଗଲୁନି, ଘର ଚଳେଇବୁ କେମିତି ? ସବୁବେଳେ ଖାଲି କ'ଣ ଚଉକି ଉପରେ ବସିବୁ, ଟେବୁଲ ଉପରେ ଲେଖିବୁ ?'' ଆଜି ଆଉ ସେ ଆକଟ କରିବାକୁ ନାହାନ୍ତି; ମାତ୍ର ଚଉକି ଉପରେ ବସିବା ପୁଣି ଟେବୁଲ୍ ଉପରେ ଲେଖିବା କାମ ଆଜି ବି ମୋର କାହିଁ ସରିଲା ନାହିଁ ତ !



# ଓଡ଼ିଶାରେ ପି.ଇ.ଏନ୍. (P.E.N.)

୧୯୫୯ ଖ୍ରୀଷ୍ଟାବ୍ଦର ଶୀତ ଋତୁ । ଓଡ଼ିଶାରେ ଆନ୍ତର୍ଜାତୀୟ ସାହିତ୍ୟ ସଂସ୍ଥା ପି.ଇ.ଏନ୍.ର ଗୋଟିଏ ଶାଖା ପ୍ରତିଷ୍ଠା ଲାଗି ଶ୍ରୀମତୀ ସୋଫିଆ ଓଆଦିଆଙ୍କ ସମର୍ଥନ ମିଳିଥାଏ । ଶ୍ରୀ ହରେକୃଷ୍ଣ ମହତାବ ଓଡ଼ିଶାରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ । ସେହି ସମୟରେ ପି.ଇ.ଏନ୍ ଆନୁକୂଲ୍ୟରେ ସର୍ବଭାରତୀୟ ସ୍ତରରେ ଏକ ଲେଖକ-ସମ୍ମିଳନୀ ଅନୁଷ୍ଠିତ ହୁଏ ଭୁବନେଶ୍ୱରଠାରେ, ତାହା ପୂର୍ବରୁ ବ୍ରହ୍ମପୁରଠାରେ ଓଡ଼ିଶା ଲେଖକମାନଙ୍କର ଏକ ସମ୍ମିଳନୀ ଅନୁଷ୍ଠିତ ହୁଏ ଡକ୍ଟର ସର୍ବପଲ୍ଲି ରାଧାକୃଷ୍ଣନ୍‌ଙ୍କ ସଭାପତିତ୍ୱରେ । ବ୍ରହ୍ମପୁର ସମ୍ମିଳନୀ (୧୩/୬/୧୯୫୮) ପାଇଁ ଓଡ଼ିଶାର ବହୁ ଅଞ୍ଚଳରୁ ଲେଖକମାନେ ସମବେତ ହୁଅନ୍ତି ଖଲ୍ଲିକୋଟ କଲେଜ ଖେଳପଡ଼ିଆରେ ।

ଗୋପାଳପୁର ସମୁଦ୍ରତୀରରେ ଅବସ୍ଥିତ ବିଖ୍ୟାତ ପାମ୍‌ବିଚ୍ ହୋଟେଲରେ ଲେଖକମାନଙ୍କ ଅବସ୍ଥାନ ଲାଗି ବ୍ୟବସ୍ଥା କରାଯାଏ– ସେହି ମୋର ସର୍ବପ୍ରଥମ ଗୋପାଳପୁରଠାରେ ସମୁଦ୍ର ଦର୍ଶନର ସୁଯୋଗ ।

ବମ୍ବେ, କନ୍ୟାକୁମାରୀ, ପଣ୍ଡିଚେରୀ, ମାନ୍ଦ୍ରାଜ, ଗୋପାଳପୁର, କୁଜଙ୍ଗ, ପାରାଦ୍ୱୀପ, ଚାନ୍ଦିପୁର ପ୍ରଭୃତି ଭାରତର ବିଭିନ୍ନ ଉପକୂଳରେ ସମୁଦ୍ର ଦେଖିବା ସୁଯୋଗ ମୋର ଘଟିଛି; କିନ୍ତୁ କେଉଁଠି ହେଲେ ପୁରୀ ସମୁଦ୍ରର ମାଧୁର୍ଯ୍ୟ ଅନୁଭବ କରି ପାରି ନାହିଁ । ଆହୁରି କେତେକ ବନ୍ଧୁଙ୍କଠାରୁ ଶୁଣେ–ଯେଉଁମାନେ ପୃଥିବୀର ବିଭିନ୍ନ ଦେଶ ଭ୍ରମଣ କରିଛନ୍ତି– ଠିକ୍ ଏଇକଥା– ପୁରୀ ସମୁଦ୍ର ଯେମିତି ଅବା ଘରଭିତରେ ନିକଟତମ ଅତି ଆପଣାର ଭଳି ।

ଗୋପାଳପୁର ଲେଖକ ସମ୍ମିଳନୀରେ ଡକ୍ଟର ରାଧାକୃଷ୍ଣନ୍ ଯେଉଁ ଭାଷଣ ଦିଅନ୍ତି, ତାହା ବେଶ୍ ପ୍ରଭାବ ପକାଏ । ତାଙ୍କ ଅନର୍ଗଳ ଶବ୍ଦ ଚାତୁର୍ଯ୍ୟ ଭିତରେ ଭାରତୀୟ ସାହିତ୍ୟର ସୂଚନା ଦେଇ ସେ ଉଲ୍ଲେଖ କରିଥିଲେ ତତ୍କାଳୀନ ଭାରତୀୟ ନେତୃତ୍ୱ ସହିତ ପୃଥିବୀପୃଷ୍ଠରେ ଅନ୍ୟାନ୍ୟ ନେତୃତ୍ୱର କିଞ୍ଚିତ୍ ତୁଳନା କରି; ଆହୁରି ତୁଳନା କରି ରାଜନୀତି ସହିତ ସାହିତ୍ୟର ।

ପୃଥିବୀ ରାଜନୀତିରେ ଭାବନା ଓ ଚିନ୍ତାର ପରିସର ଯେ କ୍ଷୀଣତର ହୋଇ ପଡୁଛି, ତାହାରି ସୂଚନା ଦେଇ ଡକ୍ଟର ରାଧାକୃଷ୍ଣନ୍ ଉଲ୍ଲେଖ କରନ୍ତି ଗୋଟିଏ ଉଦାହରଣ— ଏକ ବୈଦେଶିକ ସାମୟିକ ପତ୍ରିକାରେ ପ୍ରକାଶିତ ବ୍ୟଙ୍ଗଚିତ୍ର । ବ୍ୟଙ୍ଗଚିତ୍ରଟି ହେଲା— ସେତେବେଳର ପ୍ରଧାନମନ୍ତ୍ରୀ ନେହେରୁଙ୍କର। ଚିତ୍ରଟିର ବ୍ୟାଖ୍ୟ କରାଯାଏ– ପୃଥିବୀରେ ନେହେରୁ ବୋଧହୁଏ ସେହି ସମୟର ଏକମାତ୍ର ଜଣେ ରାଜନୀତି କ୍ଷେତ୍ରର ନେତା– ଯେ କି ଚିନ୍ତା କରନ୍ତି !

'ତାତ୍ପର୍ଯ୍ୟ–ଦୁନିଆର ରାଜନୀତିରେ ଆଜି ଚିନ୍ତାର ଅବକାଶ ନାହିଁ—ବିଚାରଶୂନ୍ୟ ହୋଇ ଶାସନକଳ କରଗତ କରି ଚଳାଇପାରିବା କୌଶଳହିଁ ଯେପରି ରାଜନୀତିର ପ୍ରଧାନ ଅଙ୍ଗ ହୋଇ ପଡ଼ିଛି । ନେହେରୁ କିନ୍ତୁ ତା'ର ବ୍ୟତିକ୍ରମ ।

ଡକ୍ଟର ରାଧାକୃଷ୍ଣନ୍‌ଙ୍କର ଏହି ମନ୍ତବ୍ୟ ଯେଉଁଭଳି ଭାବମୟ ବାଗ୍ମିତା ଭିତରେ ଉଦ୍‌ବେଳିତ ହୋଇଉଠେ, ଏବେ ମଧ ସେ ଚିତ୍ର ମୋର ମନରୁ ନିଭି ନାହିଁ । ମୁଁ ନିଜେ ଯଦି ଜଣେ କାର୍ଟୁନିଷ୍ଟ ବା ବ୍ୟଙ୍ଗଚିତ୍ର-ଶିଳ୍ପୀ ହୋଇଥାନ୍ତି, ତା'ହେଲେ ନିଶ୍ଚୟ ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କର ସେହି ସନ୍ଧ୍ୟାର ଏକ ଚମତ୍କାର ରେଖାଚିତ୍ର ଆଙ୍କିଦେଇ ଥାଆନ୍ତି ।

ଗୋପାଳପୁର ପାମ୍‌ବିଚ୍ ହୋଟେଲ୍‌ରେ 'ମାଟିର ମଣିଷ'ର ତେଲୁଗୁ ଅନୁବାଦକ ଶ୍ରୀ ପୁରୀପଣ୍ଡା ଅପ୍ପଲସ୍ୱାମୀ ଡକ୍ଟର ରାଧାକୃଷ୍ଣନ୍‌ଙ୍କୁ ଖଣ୍ଡିଏ ତେଲ୍‌ଗୁ ଅନୁବାଦ ଲେଖକମାନଙ୍କ ବୈଠକରେ ଉପହାର ଦିଅନ୍ତି; ଆଉ ବୁଝାଇ ଦିଅନ୍ତି ତେଲ୍‌ଗୁ ଭାଷାରେ ଗଳ୍ପଟିର ସାରକଥା ସ୍ୱୟଂ ଡକ୍ଟର ରାଧାକୃଷ୍ଣନ୍‌ଙ୍କ ଦ୍ୱାରା ଅନୁରୁଦ୍ଧ ହୋଇ ।

ବ୍ରହ୍ମପୁର ସମ୍ମିଳନୀର କେତେକମାସ ପରେ ୧୯୫୯ ଜାନୁଆରୀ ୧,୨,୩ ତାରିଖ ଭୁବନେଶ୍ୱରଠାରେ ଅନୁଷ୍ଠିତ ହୁଏ ପି:ଇ:ଏନ୍‌ର ନିଖିଳ ଭାରତ ଲେଖକ ସମ୍ମିଳନୀ । ମୋହ ଦେଖନ୍ତରେ ଏହାହିଁ ଏକ ମାତ୍ର ଲେଖକ ସମ୍ମିଳନୀର ଅଧିବେଶନ ଓଡ଼ିଶାରେ ସର୍ବଭାରତୀୟ ସ୍ତରରେ ।

ନବ ବସନ୍ତର ଆଗମନୀ କବିବର ରାଧାନାଥଙ୍କ ଭାଷାରେ—

''ଅତି ମଧୁମୟ- କାଳ ଶୀତ ଋତୁ
ଧରା ଛାଡ଼ି ଛାଡ଼ିନାହିଁ
ପଲ୍ଲବ ପାଟଳ ମଧୁଋତୁ ରାଟ
ଧରା ମାଡ଼ି ମାଡ଼ି ନାହିଁ ।''

ବସନ୍ତ ପଞ୍ଚମୀ ! ବାଗ୍‌ଦେବୀଙ୍କ ଆରାଧନା, ଆବାହନ !

ଭୁବନେଶ୍ୱରକୁ ପି.ଇ.ଏନ୍‌ର ସଦସ୍ୟ ଓ ବନ୍ଧୁରୂପେ ଭାରତର ପ୍ରତ୍ୟେକ ଅଞ୍ଚଳରୁ ଲେଖକମାନେ ଆସି ଯେପରି ସମବେତ ହୁଅନ୍ତି, ସେଇପରି ଡକ୍ଟର ରାଧାକୃଷ୍ଣନ୍ ଓ ଜବାହରଲାଲ ମଧ । ମୋହ ଉପରେ ଦାୟିତ୍ୱ ଥାଏ ଧନ୍ୟବାଦ ଅର୍ପଣର; ଧନ୍ୟବାଦ ଜଣାଇ ମୁଁ ରାଧାକୃଷ୍ଣନ୍‌ଙ୍କ ଭାଷଣର ପ୍ରତ୍ୟେକ ବାକ୍ୟକୁ ସାହିତ୍ୟର ସ୍ୱରୂପ ଭାବରେ ଓ ଜବାହରଲାଲଙ୍କୁ ପୃଥିବୀପୃଷ୍ଠର ଜଣେ ଶ୍ରେଷ୍ଠ ଚିନ୍ତାନାୟକ ରୂପେ ବର୍ଣ୍ଣନା କରି ସ୍ୱର୍ଗତ ଶ୍ରଦ୍ଧେୟ ପରମାନନ୍ଦ

ଆଚାର୍ଯ୍ୟ ପ୍ରମୁଖ ବନ୍ଧୁମାନଙ୍କର ପ୍ରଶଂସାଭାଜନ ହୁଏଁ; ଭୁବନେଶ୍ୱର ସମ୍ମିଳନୀର ସାର୍ଥକତା ପୁଣି ସମ୍ମାନିତ ଲେଖକମାନଙ୍କ ପ୍ରତି ଅତିଥେୟତା ପ୍ରଦର୍ଶନର ଉଲ୍ଲେଖ ଶୁଣେ ଏକାଧିକ ସାହିତ୍ୟିକ ବନ୍ଧୁଙ୍କ ମୁଖରୁ— ବିଭିନ୍ନ ପରିସ୍ଥିତିରେ ପୁଣି ସାହିତ୍ୟ ଅନୁଷ୍ଠାନମାନଙ୍କରେ ।

କିଛି କାଳ ପରେ ବମ୍ବେ ନଗରୀରେ ଅନୁଷ୍ଠିତ ରବୀନ୍ଦ୍ର ଶତବାର୍ଷିକୀ-ଜୟନ୍ତୀ ଉତ୍ସବରେ ଏହି ଅଭିଜ୍ଞତା ଲାଭକରେଁ । ସେଠାରେ ମଧ୍ୟ ସମବେତ ସୁପରିଚିତ ବନ୍ଧୁମାନଙ୍କ ମୁଖରୁ ଓଡ଼ିଶାର ଆତିଥେୟତାକୁ ତୁଳନା କରି ଉଚ୍ଚତର ସ୍ଥାନ ଦେବାର ଶୁଣେ । ସେତେବେଳେ ମନ ମୋର ଗର୍ବରେ ସ୍ଫୀତ ହୋଇଉଠେ– ଭାରତର ଦରିଦ୍ରତମ ରାଜ୍ୟ ଓଡ଼ିଶାର ଆତିଥେୟତା ଯେ ସମୃଦ୍ଧିଶାଳୀ ବମ୍ବେନଗରୀର ଆତିଥେୟତାଠାରୁ ଅଧିକ ପ୍ରଶଂସନୀୟ ହୋଇପାରେ !

'କଟକଚିନ୍ତା ବାଇମୁଣ୍ଡିକି' କଥା ମନେ ପଡ଼େ ସେତେବେଳେ । ପୁଣି ଜଗନ୍ନାଥ ସେବକ 'ବଡ଼େ ହରିହର' ଗୁରୁଙ୍କ କଥା–ଋଣଗ୍ରହଣ କରିବାକୁ ସେ ଯାଇଛନ୍ତି ମହାଜନ ଦ୍ୱାରକୁ– ଗରିବ ବ୍ରାହ୍ମଣ ଜଣେ ପୁଅଟିକୁ ତା'ର ବ୍ରତ କରିବା ପାଇଁ ଦାନପ୍ରାର୍ଥୀ । ମହାଜନ ଦାନ ଦିଅନ୍ତି ଚାରିପଇସା କିନ୍ତୁ ଖାତକ ହରିହର ଦିଅନ୍ତି, ଖୋଷଣି ଫିଟିଯିବ ବୋଲି ଅଣ୍ଟାରେ ଖୋଷିଥିବା ଗୋଟିଏ ସୁନା ଗିନି । ବିସ୍ମିତ ମହାଜନଙ୍କ ପ୍ରଶ୍ନରେ ଉତ୍ତର କରନ୍ତି— ଏହି ଭଳି ଦାନ କରିବାକୁ ହିଁ ଆସନ୍ତି ସେ କରଜ ନେବାପାଇଁ !

କଟକଠାରୁ କଲିକତା, ଦିଲ୍ଲୀ, ବମ୍ବେ, ମାଡ୍ରାସ୍, ଚତୁର୍ଦ୍ଦିଗବ୍ୟାପୀ ସାହିତ୍ୟ ସଭାର ଜୁଆର ଛୁଟେ । କେତେବେଳେ ଭାରତୀୟ କିମ୍ବା ବିଭିନ୍ନ ଆଞ୍ଚଳିକ ସମ୍ମିଳନୀ–ଆଉ କେତେବେଳେ ନିଖିଳ ଭାରତ ଆକାଶବାଣୀ ମାଧ୍ୟମରେ ଆୟୋଜିତ ସାହିତ୍ୟ ସମାରୋହ, ଆଲୋଚନାଚକ୍ର କିମ୍ବା କବି ସମ୍ମିଳନୀ ।

ଓଡ଼ିଶାରେ ମଧ୍ୟ ସରକାରୀ ଉଦ୍ୟମରେ ସ୍ଥାପିତ ହୁଏ କେନ୍ଦ୍ର ଅନୁକ୍ରମରେ ଏକ ରାଜ୍ୟସ୍ତରୀୟ ସାହିତ୍ୟ ଏକାଡେମୀ ସହିତ ଲଳିତ କଳା ଓ ସଙ୍ଗୀତ ନାଟକ ଏକାଡେମୀ ।

ମହାଭାରତୀୟ କଳା-ସାହିତ୍ୟ-ସଂସ୍କୃତିର ସହାୟକ ଓ ପରିପୂରକରୂପେ ରାଜ୍ୟସ୍ତରୀୟ ଅନୁଷ୍ଠାନଗୁଡ଼ିକର କାର୍ଯ୍ୟ ପରିଚାଳିତ ହୁଏ । ସେଥି ସହିତ ମୁଁ ମଧ୍ୟ ଜଡ଼ିତ ହୋଇପଡ଼େ; ମାତ୍ର ସବୁବେଳେ ମୋର ଧାରଣା ଜନ୍ମେ ଯେ, କଳାସାହିତ୍ୟର ସୃଷ୍ଟିରେ ଏକନିଷ୍ଠ ସାଧନାପାଇଁ ଏହି ସବୁ ସାଙ୍ଗଠନିକ କାର୍ଯ୍ୟ ଅନେକ ସମୟରେ ପରିପୂରକ ହେବା ପରିବର୍ତ୍ତେ ବହୁ ବାଧା ସୃଷ୍ଟି କରିଥାଏ ମଧ୍ୟ । ପୁଣି ଯେଉଁମାନେ କଳାସାହିତ୍ୟ ସୃଷ୍ଟିରେ ବ୍ରତୀ, ଏଇ ସବୁ କାର୍ଯ୍ୟାଳୟରେ ତାଙ୍କ ପାଇଁ ସ୍ଥାନାଭାବ ।

କଳାସାହିତ୍ୟର ସାଧନା ସମ୍ପୂର୍ଣ୍ଣରୂପେ ଐକାନ୍ତିକ ଭାବନା, କଳ୍ପନା ଓ ଅଭିନିବେଶର ବିଷୟ ବୋଲି ମୁଁ ବାରମ୍ବାର ଅନୁଭବ କରିଛି । ସେହି ଅନୁଭୂତି ହିଁ ମୋତେ ସବୁ କର୍ମକ୍ଷେତ୍ରରେ ଅପାରଗତାର ମାନପତ୍ର ପ୍ରଦାନ କରିଛି । ଆଉ ହୁଏତ ସକ୍ରିୟ ରାଜନୀତିରୁ ବା ଅନ୍ୟ କର୍ମକ୍ଷେତ୍ରରୁ ମଧ୍ୟ ଓଟାରି ଆଣି ବସାଇ ଦେଇଛି ମୋତେ ଗୋଟିଏ ଉଇ ହୁଙ୍କାରେ ପରିଣତ କରି । ମୁଁ ମୋର ପିଲା ଦିନରୁ ପୁରୀଜିଲ୍ଲା ସ୍କୁଲରେ ମାଟ୍ରିକ୍ୟୁଲେସନ ପଢ଼ିଲା ବେଳେ ସାହିତ୍ୟ

ଓ ରାଜନୀତି ଦ୍ୱନ୍ଦ୍ୱଭିତରେ ପଡ଼ିଥିଲି । ଦୁଇଟି ଭିତରୁ କାହାକୁ ଧରିବି ଜୀବନବ୍ୟାପୀ ସମ୍ବଳ କରି–ରାଜନୀତି କିମ୍ବା ସାହିତ୍ୟ– ଆଜି ସୁଦ୍ଧା ସେ ଦ୍ୱନ୍ଦ୍ୱର ସମାଧାନ ହୋଇ ପାରିଲାନାହିଁ ତ ! କାରଣଟା ବୋଧେ ସୁସ୍ପଷ୍ଟ । ଦୁଇଟା ଭିତରେ ଯୋଗସୂତ୍ର ଯେତିକି, ଫରକ ସେତିକି କଦାପି ନୁହେଁ ।

ବମ୍ବେଠାରେ ଅନୁଷ୍ଠିତ ରବୀନ୍ଦ୍ରଶତବାର୍ଷିକୀ ଜୟନ୍ତୀରେ ସଭାପତି ପଣ୍ଡିତ ଜବାହରଲାଲଙ୍କ ଭାଷଣରୁ ଶୁଣିଥିଲି–ଏକଦା ସେ ଗାନ୍ଧୀଙ୍କ ଅପେକ୍ଷା ରବୀନ୍ଦ୍ରଙ୍କ ପ୍ରତି ଆକୃଷ୍ଟ ହୁଅନ୍ତି ଅଧିକ; ପୁଣି ଗାନ୍ଧୀଙ୍କ ସୁଅରେ ଆପଣାକୁ ଭସାଇଦେଲେ ମଧ ମଝିରେ ମଝିରେ ଥଳ ଧରିବାକୁ ଲୋଡ଼ନ୍ତି ବୋଧହୁଏ ରବୀନ୍ଦ୍ରଙ୍କ ସାହାଯ୍ୟ ।

ସେଇଥିପାଇଁ ହୁଏ ତ ସେ ଦିନ ବ୍ରହ୍ମପୁରଠାରେ ଅନୁଷ୍ଠିତ ପି.ଇ.ଏନ୍ ସାହିତ୍ୟ ସଭାରେ ରାଷ୍ଟ୍ରପତି ଡକ୍ଟର ରାଧାକୃଷ୍ଣନ୍ ଜବାହରଲାଲଙ୍କ ସମ୍ପର୍କରେ ଏକ ସ୍ମରଣୀୟ ମନ୍ତବ୍ୟ ପ୍ରକାଶ କରନ୍ତି– ଖଣ୍ଡିଏ ବିଦେଶୀ ସାମୟିକ ପତ୍ରିକାରେ ପ୍ରକାଶିତ ପଣ୍ଡିତ ଜବାହରଙ୍କ ଏକ ବ୍ୟଙ୍ଗଚିତ୍ର, ପୁଣି ଚିତ୍ର ତଳେ ଶିଳ୍ପୀଙ୍କ ମନ୍ତବ୍ୟ– "Here is a politician who thinks !"

ଜଣେ ଶ୍ରେଷ୍ଠ ଦେଶନାୟକ ରାଜନୀତିରେ ନେତୃତ୍ୱ ଗ୍ରହଣ କରି ସୁଦ୍ଧା ଯେ ଚିନ୍ତାକରନ୍ତି–ବ୍ୟଙ୍ଗଶିଳ୍ପୀ ଦୃଷ୍ଟିରେ ଏହା ଯେମିତି ପୃଥିବୀର ଅଷ୍ଟମାଶ୍ଚର୍ଯ୍ୟ । ରାଷ୍ଟ୍ରୀୟ ଦାୟିତ୍ୱ ଗ୍ରହଣ କରିଥିବା ନାରୀ ଓ ପୁରୁଷମାନେ ଆଦିମ ଯୁଗରୁ ଆଜିଯାଏ ଲେଖକଶିଳ୍ପୀଙ୍କୁ ତ୍ୟାଗର ମହାନ କର୍ମପ୍ରେରଣାରେ ଆଦର୍ଶ ଯୋଗାଇ ଲେଖାଇଛନ୍ତି ଆତ୍ମୋତ୍ସର୍ଗର କେତେ ଯେ ସାହିତ୍ୟ ! ସାବିତ୍ରୀ ସତ୍ୟବାନ, ସୀତାରାମ, ରାଧାକୃଷ୍ଣ, ଗାନ୍ଧାରୀ, ଧୃତରାଷ୍ଟ୍ର, ଅର୍ଜୁନ, ଦୁର୍ଯ୍ୟୋଧନ ପ୍ରମୁଖ କେତେ ଯେ ଅମର ହୋଇଛନ୍ତି, ବାଲ୍ମୀକି, ବ୍ୟାସ, ବଶିଷ୍ଠ ଆଦି କବିଋଷିମାନଙ୍କ ଲେଖନୀରେ ! ମଧ୍ୟଯୁଗରେ ସେହିପରି କାଳିଦାସ ଲେଖନୀ ଚାଳିତ ହୁଏ ବିକ୍ରମାଦିତ୍ୟ ଆଦର୍ଶରେ ଅଥବା ସେକ୍ସପିଅର ଲେଖନୀ ଅମର ହୁଏ ରାଣୀ ଏଲିଜାବେଥ୍‌ଙ୍କ ସୁଶାସନ ଯୁଗରେ । ବର୍ତ୍ତମାନ ଯୁଗରେ ମଧ ସେଇପରି ମହାତ୍ମାଗାନ୍ଧୀ ଓ ରବୀନ୍ଦ୍ରନାଥ ବା ଲେନିନ୍‌ଙ୍କ ସହିତ ଗର୍କିଙ୍କର ସାହିତ୍ୟ ସୃଷ୍ଟିର ସମ୍ପର୍କ ନିବିଡ଼ ଭାବରେ ଜଡ଼ିତ ।

ରାଜନୀତିଜ୍ଞ ପକ୍ଷରେ ଭାବୁକ ଲେଖକ ହେବା ଯେ ବିଡ଼ମ୍ବନା ଅବା ବିରଳ ଉଦାହରଣ, ଏହି କଥାଟି ନେହେରୁଙ୍କର ବ୍ୟଙ୍ଗ ଚିତ୍ରକାର ଫୁଟାଇଥିବା ଉଲ୍ଲେଖ କରନ୍ତି ଡକ୍ଟର ରାଧାକୃଷ୍ଣନ୍ । ଭାବୁକ ଲେଖକର ପରିସର ଓ ଉପାଦାନ ରାଜନୀତିର ଉପାଦାନ ଓ ପରିସରଠାରୁ ସ୍ୱତନ୍ତ୍ର— ଜଣକର କୋମଳ ତରଳ ମସୀ, ଅନ୍ୟର କଠୋର ନିର୍ମମ ଅସି ।



# ସାହିତ୍ୟ ସହିତ ରାଜନୀତି

ସାହିତ୍ୟକୁ ଜୀବନର ବ୍ରତରୂପେ ଗ୍ରହଣ କରିବା ପୂର୍ବରୁ ହିଁ ତାହା ମୋତେ ସଂପୂର୍ଣ୍ଣ ଗ୍ରାସ କରିସାରି ଥାଏ । ସ୍ରଷ୍ଟା ଅପେକ୍ଷା ସୃଷ୍ଟି ଯେ ବଡ, ଆଉ ଦୁନିଆରେ ଆଦର୍ଶ ଓ ପ୍ରେରଣା ଯୋଗାଇବାକୁ ତାହାର ଶକ୍ତି ଯେ ଅପରିମେୟ, ଏଇ କଥାଟା ମୋର କେବେହେଲେ ସ୍ମରଣ ହୁଏନାହିଁ ।

ସୀତାରାମଙ୍କ ଚରିତ୍ର ଯେ ବାଲ୍ମୀକି ମହର୍ଷିଙ୍କ ଜୀବନୀ ଅପେକ୍ଷା ଯୁଗଯୁଗବ୍ୟାପୀ ବେଶି ଲୋକଙ୍କୁ ପ୍ରେରଣା ଦିଏ, ରାଧାକୃଷ୍ଣ ଯେ ବ୍ୟାସଦେବଙ୍କ ଅପେକ୍ଷା ବେଶି ପୂଜାପାଆନ୍ତି, ଆହୁରି ଏହି ସତ୍ୟଟା ବୁଝିବାପାଇଁ ବାକି ରହିଗଲା ମୋର ଅଙ୍ଗେ ନିଭାଇବା ଅସଂଖ୍ୟ ଘଟଣା ଭିତରେ ।

ପିଲା ଦିନେ ଗାଁରେ ଶୁଣିଥିଲି— ଯେଉଁମାନେ ଭିକ ମାଗି ଯାଆନ୍ତି ମେଦିନୀପୁର, ତାଙ୍କରି ମୁହଁରୁ । ମେଦିନୀପୁରରେ ଗୋଟାଏ ଗାଳି ଅଛି କୁଆଡ଼େ— ତୋ ଘରେ 'ମାମଲା' ପଶୁ । ଅର୍ଥାତ୍ ମାଲିମକଦ୍ଦମା ଲାଗିଲେ ଘର ଉଚ୍ଛନ୍ନ ହୁଏ, ମା'ମଲେ ଯେମିତି । ପୀଠାପୁରରେ ମୁଣ୍ଡ ଗୁଞ୍ଜିବାକୁ ଚାରିଆଡୁ ତଡ଼ାଖାଇ ଆସି ଦେଖେଁ ଆପଣାକୁ ମହର୍ଗରୁ ଯାଇ କାନ୍ତାରରେ ପଡ଼ିଲା ଭଳି । ଘର ଖାନ୍‌ତଲାସ ସଙ୍ଗେ ସଙ୍ଗେ ବଡ଼ଝିଅ ଆରେଷ୍ଟ ହୋଇ କେତେବେଳେ ଜେଲରେ ତ କେତେବେଳେ ରାସ୍ତା ଉପରେ ପୁଲିସ ପ୍ରହାରର ସମ୍ମୁଖୀନ ।

ତା' ପଛକୁ ପୁଣି ଭଗିନୀ-ଭକ୍ତ ପୁତ୍ର ମଧ ରାଜନୀତି କରି ବାହାରନ୍ତି । ସଂକ୍ରାମକ ରୋଗ ଭଳି ରାଜନୀତିଟା ଯେମିତି ଜଣକ ପରେ ଜଣେ–ଘରେ କାହାରିକୁ ବାଦ ଦେଉ ନାହିଁ । ସେତେବେଳେ କଂଗ୍ରେସରାଜୁତି ଭିତରେ ଜେଲ ସାର୍ଟିଫିକେଟ ପାଇବାକୁ ମଉକା ମିଳେ ରାଜ୍ୟ ପୁନର୍ଗଠନ କମିଶନ (States Reorganisation Committee) ଓଡ଼ିଶା ରାଜ୍ୟରେ ଷଢ଼େଇକଳା ଖରସୁଆଁ ରାଜାମାନେ ନିଜ ଇଚ୍ଛାରେ ବିହାର ସଙ୍ଗେ ସାମିଲ ହେବାକୁ ମତ ଦେଇଥିଲେହେଁ ଷଢ଼େଇକଳାରୁ ପାଟନା ରାଜ୍ୟକୁ ପୋଷ୍ୟପୁତ୍ର ହୋଇଯାଇଥିବା ମହାରାଜା ଶ୍ରୀ ରାଜେନ୍ଦ୍ରନାରାୟଣ ସିଂହଦେଓ ଏହି ଅବସରରେ ନେତୃତ୍ୱ ଗ୍ରହଣ କରନ୍ତି । ସହଯୋଗ ସମର୍ଥନ ଲାଭକରନ୍ତି ସେ କଂଗ୍ରେସ ଭିତରେ ମିଶି ନଥିବା ପ୍ରଖ୍ୟାତ ସାହିତ୍ୟିକ କବି ସ୍ୱର୍ଗତ ଗୋଦାବରୀଶ ମିଶ୍ରଙ୍କର ।

ଯେଉଁ ଯୁବକମାନେ ପୂର୍ବରୁ ଜେଲ୍‌ଯିବା ସୁଯୋଗ ପାଇନଥିଲେ, ତାଙ୍କ ଭିତରେ ମଧ ସୃଷ୍ଟି ଉତ୍ତେଜନା । ସେହି ଉତ୍ତେଜନାର ଶିକାର ହୁଏ କୁନିର ତଳଭାଇ ଶିଶିର । ଶିଶିର ସମେତ ତା'ର କେତେକ ସହାଧାୟୀ ବନ୍ଧୁ ମଧ ସେହି ମଉକାରେ କରନ୍ତି ଜେଲ୍‌ବରଣ ।

ସେତେବେଳେ କଟକ ରେଡ଼ିଓ ଷ୍ଟେସନ ସାମ୍ନାରେ ପୁଣି ଉତ୍ତ୍ୟକ୍ତ ଜନତା ଉପରେ ଗୁଳି ଚାଲେ । କଟକରେ ଯୁବକ ସୁନୀଲ ଟଳିପଡ଼େ ସରକାରୀ ଗୁଳିଫାୟେର୍‌ରେ । ପୁଣି ପୁରୀରେ ବେଙ୍ଗପାଣିଆର ହତ୍ୟା – ଏ ଆନ୍ଦୋଳନକୁ ଉତ୍ତେଜନା ଯୋଗାଏ । ରାଜ୍ୟ

ପୁନର୍ଗଠନ କମିଶନ ରାୟ ବିରୋଧରେ ଏଇ ଆନ୍ଦୋଳନରେ ଯୋଗଦାନ କରନ୍ତି ପ୍ରଜାସମାଜବାଦୀ ଦଳର ନେତା ସ୍ୱର୍ଗତ ସାରଙ୍ଗଧର ଦାସ କମ୍ୟୁନିଷ୍ଟ ଶ୍ରୀଗୁରୁଚରଣ ପଟ୍ଟନାୟକ, ଶ୍ରୀ ମନମୋହନ ମିଶ୍ର, ଶ୍ରୀ ରାମଚନ୍ଦ୍ର ରାମ, ଶ୍ରୀ ପ୍ରବୀର ପାଳିତ, ଶ୍ରୀ ମନୋଜ ଦାସ, ଗଣତନ୍ତ୍ରଦଳର ସର୍ବଶ୍ରୀ ମଧୁସୂଦନ ମହାନ୍ତି, ହରିହର ପଟେଲ, ସୁନ୍ଦରମଣି ପଟେଲ ଓ ସୁରେନ୍ଦ୍ର ମହାନ୍ତି ସମେତ ମେଡ଼ିକାଲ ଓ ଅନ୍ୟାନ୍ୟ କଲେଜର ଛାତ୍ରଗୋଷ୍ଠୀ ।

ରାଜ୍ୟଗଠନରେ ରାଜନୀତିର ପ୍ରୟୋଗ ସହିତ ସେତେବେଳେ ରାଜନୀତି ଭିତରକୁ ଆସିବା ବାଟ ଫିଟିଯାଇଥାଏ ଯୁବକମାନଙ୍କ ପକ୍ଷରେ । ପୁଣି ଓଡ଼ିଶା ରାଜ୍ୟର ପୁନର୍ଗଠନକୁ ଲକ୍ଷ୍ୟ ରଖି ସ୍ୱତନ୍ତ୍ର, କମ୍ୟୁନିଷ୍ଟ, ସୋସାଲିଷ୍ଟ ଯେ ଏକଜୁଟ୍ ହୋଇଯାନ୍ତି ତାହା ପ୍ରମାଣ କରେ ସେଇ ପୁରୁଣା ଇଂରାଜୀ ଉକ୍ତିଟିକି Politics makes strange bed-fellows—ରାଜନୀତିର ବାହାଦୁରି ବୋଧହୁଏ ତାହା ସବୁ ପ୍ରକାର ବିଭେଦ ଭିତରେ–ସରକାରୀ ଦଳ ବିରୋଧୀ ଦଳ ଭାବରେ ବୈରତା ସୃଷ୍ଟି କରିବାର ଯେମିତି ପ୍ରଧାନ କାରଣ ହୁଏ ସେମିତି ଅଦ୍ଭୁତ ଭାବରେ ପରସ୍ପର ବିରୋଧୀ ମତବାଦୀମାନଙ୍କୁ ଏକାଠି କରି ପକାଏ—କଚେରି ମାମଲାରେ ସପକ୍ଷବିପକ୍ଷରେ ଲଢୁଥିବା ଓକିଲଙ୍କ ଭଳି ।

ଶିଶିର ରାଜନୀତିରେ ପଶିବା ପରେ ବୋଧହୁଏ ତାହା ମୋର ଘରଭିତରେ ଆହୁରି ସଂକ୍ରାମକ ରୂପ ଧରେ ତୃଷାର ପର୍ଯ୍ୟନ୍ତ । କୌଣସି ଦିନ ମୋତେ କିଛି ନ ଜଣାଇ ମଧ ସେ ଯୋଗଦିଏ କଂଗ୍ରେସ ସ୍ୱେଚ୍ଛାସେବକ ଦଳଭିତରେ । ବ୍ରହ୍ମପୁରଠାରେ ଅନୁଷ୍ଠିତ ନିଖିଳ ଭାରତ କଂଗ୍ରେସ କମିଟି ବୈଠକରେ ସ୍ୱେଚ୍ଛାସେବକ ସଙ୍ଗଠନରେ ପ୍ରକଟିତ ହୁଏ ତା'ର ସ୍ୱରୂପ । ସେତେବେଳେ ରାଜନୀତିର ଝୁଙ୍କ ଖାଲି ତ ମୋରି ଘରଭିତରେ ନୁହେଁ, ବ୍ୟାପିଯାଇଥାଏ ଦେଶତମାମ୍ ଏ ମୁଣ୍ଡରୁ ସେମୁଣ୍ଡଯାକେ ।

ମୁଁ ହିଁ କେବଳ ଅଲଗା ରହିଯାଏଁ ସକ୍ରିୟ ରାଜନୀତି କ୍ଷେତ୍ରରୁ । ତାହାର କାରଣ ସୁସ୍ପଷ୍ଟ । ଜଣେ ଲେଖକ ଭାବରେ ସକ୍ରିୟ ରାଜନୀତିରେ ଯୋଗଦେବାକୁ ମୋର ସମୟାଭାବ । ପୁଣି ମୋହ ପକ୍ଷରେ ଦୁର୍ବୋଧ ହୋଇଉଠେ କମ୍ୟୁନିଷ୍ଟ ଦଳ ଭଳି ଏକ ବୈପ୍ଳବିକ ସଂସ୍ଥାର ଗଣତନ୍ତ୍ର ପଦ୍ଧତିକୁ ଗ୍ରହଣ କରିବା ପଦକ୍ଷେପ । ସେଥି ସଙ୍ଗେ କଂଗ୍ରେସ ରାଜନୀତିକୁ ବୁଝିବା ମଧ ଦିନକୁ ଦିନ କଷ୍ଟକର ହୋଇପଡ଼େ–ବିଶେଷ ଭାବେ ତା'ର ଦଳୀୟ କ୍ଷମତା ହାସଲ ଦିଗକୁ ।

ନିରସ୍ତ୍ର ଭାରତୀୟ ସାମାଜିକ ଓ ରାଜନୈତିକ ଜଳବାୟୁ ଯେ ରକ୍ତାକ୍ତ ବିପ୍ଳବ ଲାଗି ଆଦୌ ଅନୁକୂଳ ନୁହେଁ, ତାହାର ପ୍ରମାଣ ପାଇବା କଷ୍ଟକର ହୁଏ ନାହିଁ ମୋହ ପକ୍ଷରେ । ରାଜନୀତିରେ ଯୋଗଦେବା କିମ୍ୱା ତାହାର ଆନୁଷଙ୍ଗିକ ପରିମାଣ ଜେଲ ଯିବାକୁ ଯେମିତି ମୋର ସାନଭାଇ ଭାଗୁଠାରୁ ଆରମ୍ଭ କରି ଝିଅ ନନ୍ଦିନୀ ପର୍ଯ୍ୟନ୍ତ ସମସ୍ତେ ମୋତେ ବାଟ ଓଗାଳି ବସନ୍ତି । ତହୁଁ 'ମୋର କୋଳିଗଛ କିଏ ଜଗିବ' କଥା ଭଳି ଶେଷ ଦଶା ହେଲା ସବା ଶେଷରେ । ପୁଣି ବାହା ନ ହେଲେ ବି ବରଯାତ୍ରୀ ହେବାକୁ ପଡ଼ିଲା— ସେମାନଙ୍କୁ ଯାଇ ଜେଲ୍‌ରେ ଭେଟିବା କିମ୍ୱା ଜେଲ୍‌ରୁ ମୁକୁଳିବା ଉଦ୍ୟମରେ ଧାଁଧପଡ଼ କରି ।



# ରେଡ଼ିଓ ମନ୍ତ୍ରୀ ଶ୍ରୀମତୀ ଇନ୍ଦିରାଙ୍କ ସାକ୍ଷାତ୍‌କାର୍

କଟକ ଆକାଶବାଣୀରେ ସହ୍ଯକାର (Producer) ରୂପେ କାର୍ଯ୍ୟରେ ନିଯୁକ୍ତି ହୁଏଁ ଭାରତ ସରକାରଙ୍କର ଏକ ଚୁକ୍ତିପତ୍ରରେ ସ୍ୱାକ୍ଷର କରି ୧୯୫୬ ମସିହା ଜୁଲାଇ ୨ ତାରିଖରେ । ଝିଣ୍ଟିକାଭଳି ଗୋଟାଏ ଥାନାରୁ ଡ଼େଇଁ ଅନ୍ୟଠି ଦଣ୍ଡେ ଥକାମାରି ପୁଣି ଥୋଡ଼ାଏ ଡେଇଁବା । ଚୁକ୍ତିପତ୍ରରେ ମୋର କାର୍ଯ୍ୟକାଳ ସ୍ଥିର କରାଯାଇଥାଏ ତିନି ବର୍ଷ ପାଇଁ । ଅଥଚ ପ୍ରତି ତିନି ବର୍ଷରେ ଛାଏଁ ପୁଣି ମୋର ବିନା ଚେଷ୍ଟାରେ ଆହୁରି ତିନି ବର୍ଷ ପାଇଁ ଚୁକ୍ତିପତ୍ରରେ ସ୍ୱାକ୍ଷର କରିବାକୁ ହୁଏ ମୋତେ । ଅତଏବ ଧରିନିଏଁ ଏଣିକି ନିଶ୍ଚିନ୍ତରେ ମାରିବି ଶେଷ ନିଃଶ୍ୱାସ । ମୋର ୫୬ ବର୍ଷ ବୟସରେ ଅର୍ଥାତ୍ ସରକାରୀ ଚାକିରିରୁ ବିଦାୟ ଘେନି ପେନ୍‌ସନ୍ ପାଇବାର ଠିକଣା ସମୟରେ ହିଁ ଆକାଶବାଣୀ ପକ୍ଷରୁ ଏଇ ନୂଆ ନିଯୁକ୍ତି ପ୍ରଥମେ ପାଏଁ । ଦଶ ବର୍ଷ କାର୍ଯ୍ୟକଳାପରେ କିନ୍ତୁ ଶୁଣାହୁଏ ସରକାରୀ କାର୍ଯ୍ୟପାଇଁ ଏଣିକି ମୋର ବୟସର ସୀମା ଅତିକ୍ରମ ହୋଇ ସାରିଛି, ଅତଏବ ମୋତେ ନିଶ୍ଚୟ ବିଦାୟ ଘେନିବାକୁ ହେବ !

ଅଥଚ ପ୍ରାୟ ପେନ୍‌ସନ୍ ପାଇବା ବୟସରେ ହିଁ ମୋର ପ୍ରଥମ ନିଯୁକ୍ତି ରେଡ଼ିଓରେ । ମୋହ ସହିତ ବଙ୍ଗ, ବିହାର, ମାନ୍ଦ୍ରାଜ, ଆନ୍ଧ୍ର, ମହୀଶୂର, ଗୁଜୁରାଟ ପ୍ରଭୃତି ରାଜ୍ୟର ପ୍ରବୀଣ ବୟସ୍କ ଲେଖକମାନଙ୍କର ମଧ୍ୟ ପ୍ରାୟ ଏକ ସମୟରେ ଆକାଶବାଣୀ ପରାମର୍ଶଦାତା ରୂପେ ନିଯୁକ୍ତି ମିଳିଥାଏ । ପୁଣି ପ୍ରାୟ ସବୁ ଭାଷାଭାଷୀ ନବ ନିଯୁକ୍ତି ପୁରୁଖା ସାହିତ୍ୟକମାନେ ସରକାରୀ ନିର୍ଦ୍ଧାରିତ ବୟସର ସୀମା ଅତିକ୍ରମ କରି ସାରିଥାନ୍ତି । ଗୋବରା ଚଢ଼େଇକୁ ପାଚିଲା କଦଳୀ ଦେଖାଇ ଶେଷରେ ଏମିତି ପକଡ଼ିସାରି ପୁଣି ଅଚାନକ ବିଦା କରିଦେବାଟା କାହାରିକି ସୁଖ ଲାଗୁ ନଥାଏ । ଓଡ଼ିଆରେ ଗୋଟାଏ ସାଧାରଣ ପରିହାସ ଅଛି— ଆହେ ଭାଇ କେଉଟ । ଯେଉଁ ବାଟେ ଆସିଥିଲ ସେଇ ବାଟେ ଲେଉଟ !

ଶ୍ରୀମତୀ ଇନ୍ଦିରା ଗାନ୍ଧୀ ସେତେବେଳେ ଆକାଶବାଣୀର ମନ୍ତ୍ରୀ । ତାଙ୍କୁ ଚିଠି ଲେଖି ଜଣାଏଁ ମୋର ନିଯୁକ୍ତି ଓ କାର୍ଯ୍ୟକାଳ ସମାପ୍ତି ବିଷୟରେ । ସେଥିସଙ୍ଗେ ମୋର ନିଯୁକ୍ତି ସମୟରୁ ହିଁ ମୁଁ ଯେ ସରକାରୀ ନିୟମ ଅନୁସାରେ ବୟସର ସୀମା ଅତିକ୍ରମ କରିଥିଲି, ତାହା ମଧ୍ୟ ସୂଚାଇଥାଏଁ । 'ଆକାଶବାଣୀରେ ମନ୍ତ୍ରୀରୂପେ ଲେଖକ କଳାକାରମାନଙ୍କ କାର୍ଯ୍ୟକାଳର ସୀମା ଓ ଆର୍ଥିକ ଅବ୍ୟବସ୍ଥା ପ୍ରତି ତାଙ୍କର ସ୍ନେହ ସହାନୁଭୂତି ସେତେବେଳେ ଚାରିଆଡ଼େ ପ୍ରଚାରିତ ହୋଇଥାଏ; ଅଥଚ ମୋ ପତ୍ରର କୌଣସି ଉତ୍ତର ନ ପାଇ ହତାଶ ହୋଇପଡ଼େ ମୁଁ । ମନେ ପଡ଼େ ସେଇ ''ଧର୍ମ କ'ଣ ନାହିଁ ?'' କାହାଣୀଟି ନଈ ସୁଅରେ ଭାସିଯାଉଥିବା ବାଘକୁ ରକ୍ଷାକରେ ଡଙ୍ଗାଉପରକୁ ଉଠେଇଆଣି ବିଚରା ନାଉରୀ । ତହୁଁ ବାଘ ଅନେକ ଦିନୁ ଉପାସ ଭୋକରେ ପଡ଼ିଥିବାରୁ ନାଉରିକୁ ଆହାର କରିବାକୁ ବାହାରେ ।

ନାଉରି କହେ ବାଘକୁ— ''ହଇରେ, ମୁଁ ତୋତେ ମରଣ ମୁହଁରୁ ରକ୍ଷାକଲି, ତୁଇ ମୋତେ ଖାଇବାକୁ ବସିଛୁ ? ଧର୍ମ କ'ଣ ନାହିଁ ?'' ବାଘର ଜବାବ୍— ''ମୋ ଧର୍ମ ତ

ମଣିଷକୁ ଖାଇବା'' । ତହୁଁ ପ୍ରମାଣ ଖୋଜନ୍ତି ଦୁହେଁ ରାଜିହୋଇ । ହଡ଼ା ବଳଦ, ପତର ଗୋଟେଇ ବୁଢ଼ୀ ଆଦି ଯାହାକୁ ଭେଟନ୍ତି, ସମସ୍ତେ କହନ୍ତି ଯେଝା ଦୁର୍ଦ୍ଦଶା– କାମ କରିବାକୁ ଅକ୍ଷମ ହେଲେ କିଏ ବା କାହାକୁ ପଚାରେ ! ଶେଷରେ ବିଲୁଆ ତା'ର ଚତୁରତା ବଳରେ ରକ୍ଷାକରେ ବିଚରା ନାଉରିପ୍ରାଣ ।

ପତ୍ରରେ ମୋର ଜଣାଇଥାଏଁ ଯେ, କେନ୍ଦ୍ର ସାହିତ୍ୟ ଏକାଡେମୀର ଏକ ବୈଠକରେ ଯୋଗ୍‌ଦେବାକୁ ମୁଁ ଦିଲ୍ଲୀକୁ ଯାଉଛି । ସେହି ସମୟ ମଧ୍ୟରେ ତାଙ୍କର ସାକ୍ଷାତ୍‌କାର ଲାଭ କଲେ ଉପକୃତ ହେବି । ରେଡ଼ିଓ ମନ୍ତ୍ରୀଙ୍କଠାରୁ କୌଣସି ଉତ୍ତର ନପାଇ ସାକ୍ଷାତ୍‌କାର ଆଶା ଛାଡ଼ି ଦେଇଥାଏଁ । କିନ୍ତୁ ସେଥର ଦିଲ୍ଲୀ ରବୀନ୍ଦ୍ରଭବନରେ ଅନୁଷ୍ଠିତ ସାହିତ୍ୟ ଏକାଡେମୀ ବୈଠକରେ ତାଙ୍କୁ ଅକସ୍ମାତ୍ ଉପସ୍ଥିତ ହୋଇଥିବା ଦେଖି ବିସ୍ମିତ ହୁଏଁ । ସେତେବେଳେ ସାହିତ୍ୟ, ସଙ୍ଗୀତ, ନାଟକ ଓ ଲଳିତକଳା ଏକାଡେମୀ ଆଦି ସାଂସ୍କୃତିକ ଅନୁଷ୍ଠାନଗୁଡ଼ିକର ମଧ୍ୟ ଶ୍ରୀମତୀ ଇନ୍ଦିରା ମନ୍ତ୍ରୀ ଥିଲେହେଁ ବୈଠକ ସବୁରେ ଯୋଗଦିଅନ୍ତି କ୍ୱଚିତ୍ । ଅବଶ୍ୟ ତାଙ୍କର ସ୍ୱର୍ଗୀୟ ପିତା ଜବାହରଲାଲ୍‌ଙ୍କ ଦର୍ଶନ ପ୍ରାୟ ସବୁ ସାଂସ୍କୃତିକ ସଭାରେ ମିଳିଥାଏ ।

ରବୀନ୍ଦ୍ରଭବନରେ ଶ୍ରୀମତୀ ଗାନ୍ଧୀଙ୍କୁ ଦେଖି ସେ ଦିନ ମନରେ ମୋର ଆଶାର ସଞ୍ଚାର ହୁଏ । ସଭାଭଙ୍ଗ ପରେ ଶ୍ରୀମତୀ ଗାନ୍ଧୀଙ୍କ ସହିତ ଆସାମର ଲେଖକ ଓ ରାଜନୀତିଜ୍ଞ ଶ୍ରୀ ହେମଚନ୍ଦ୍ର ବରୁଆ କିଛି ସମୟ ବସି କଥାବାର୍ତ୍ତା କଲେ । ତହୁଁ ଦ୍ୱାରଦେଶରେ ମୁଁ ଅପେକ୍ଷା କରି ରହିଲି ।

ଶ୍ରୀମତୀ ଗାନ୍ଧୀ ପଦାକୁ ବାହାରିବା ସମୟରେ ମୁଁ ଓଡ଼ିଶାରୁ ଆସିଛି କହି ଟିକିଏ ସ୍ମରଣ କରାଇଦିଏଁ ତାଙ୍କ ପାଖକୁ ଲେଖିଥିବା ମୋର ପତ୍ର ବିଷୟରେ । ତହୁଁ ସେ କେବଳ ସଙ୍କେତ କରନ୍ତି ମୋତେ ତାଙ୍କ ଗାଡ଼ି ଭିତରେ ବସିବାପାଇଁ । ଆଶା କରିଥିଲି, ସେହି ସାହିତ୍ୟ ଏକାଡେମୀ ଗୃହରେ ଦୁଇ ମିନିଟରେ ମୋ କଥାଟା ଶେଷ କରିଦେବାକୁ । ଟିକିଏ ଇତସ୍ତତଃ ହେଲି ଗାଡ଼ି ଭିତରକୁ ତାଙ୍କର ପଶିବା ପାଇଁ । ମାତ୍ର ସାହିତ୍ୟ ଏକାଡେମୀର ସେକ୍ରେଟାରୀ କବି ରବୀନ୍ଦ୍ରନାଥଙ୍କ ନାତୁଣୀଜ୍ୱାଇଁ ଶ୍ରଦ୍ଧେୟବନ୍ଧୁ ଶ୍ରୀ କୃଷ୍ଣ କୃପାଲିନୀ ମୋତେ ଇନ୍ଦିରାଙ୍କ ନିର୍ଦ୍ଦେଶ ମାନି ଗାଡ଼ିରେ ବସିବାକୁ ଇଙ୍ଗିତ କରନ୍ତି । ଏଭଳି ଅପ୍ରତ୍ୟାଶିତ ଆହ୍ୱାନରେ ସେଇ ପ୍ରକାଣ୍ଡ ଧଳାଗାଡ଼ି ଭିତରେ ଦେହଟାକୁ ଭର୍ତ୍ତିକରେଁ ସନ୍ତର୍ପଣରେ । ଗାଡ଼ିରେ ବସି ଯାତ୍ରା କଲାବେଳେ ସ୍ମରଣ କରାଇଦିଏଁ ମୋର ପତ୍ରବିଷୟ । ପତ୍ରଖଣ୍ଡି ମୋର ପାଇଛନ୍ତି ବୋଲି କାହିଁ ତ ସେ କିଛି କହିଲେ ନାହିଁ ! ପଞ୍ଜୁରି ଭିତରେ ନୂଆ ଚଢ଼େଇଟା ଧରା ହୋଇ ପଡ଼ିଲା ଭଳି ମନ ମୋ'ର ଖାଲି ସେ ଗାଡ଼ିଟା ଭିତରେ ଛଟପଟ ହେଉଥାଏ ।

ମୋର ନିବେଦନ ଉପରେ ସେ କି ନିର୍ଦ୍ଦେଶ ଦେବେ, ତାହାର କୌଣସି ସୂଚନା ସୁଦ୍ଧା ମିଳିଲା ନାହିଁ ମୋତେ । ରେଡ଼ିଓ ମନ୍ତ୍ରୀ ପୁଣି ଜବାହରଲାଲ୍‌ଙ୍କ କନ୍ୟା ଇନ୍ଦିରାଙ୍କୁ ଆଉ କି କଥା କହିବି ! ପଛଟିଲାନି କିଛି । ତହୁଁ ମୂକବଧିର ବିଦ୍ୟାଳୟର ଜଣେ ଦୋରସ୍ତ ଛାତ୍ର ରୂପେ ବସିରହିବାକୁ ମନ ଖାଲି ଛଟପଟ ହେଉଥାଏ । ଶେଷରେ ତାହା ଅସହ୍ୟ ହୋଇପଡ଼େ । କାହିଁକି କେଜାଣି ମୁହଁରୁ ମୋର ନୀରବତା ଭାଙ୍ଗି ପ୍ରଶ୍ନ ଗୋଟେ ବାହାରି ପଡ଼ିଲା What about Orissa politics ?

"ଓଡ଼ିଶାର ରାଜନୀତି କ'ଣ ହେବ ?" ମୋ ପ୍ରଶ୍ନଟା ନିଷ୍ଚୟ ରେଡ଼ିଓ ମନ୍ତ୍ରୀ ଶ୍ରୀମତୀ ଇନ୍ଦିରାଙ୍କ ପକ୍ଷରେ ଏକାବେଳେ ଅପ୍ରତ୍ୟାଶିତ ଓ କୌତୂହଳ ଉଦ୍ଦୀପକ ଥିଲା– କାରଣ ସେଇ ଭଳି ସହଜ ଦୃଷ୍ଟିରେ ମୋ ଆଡ଼କୁ ସେ ଚାହାନ୍ତି ମୃଦୁହସି । ତାଙ୍କୁ ଚାହିଁ ମନେହେଲା, ମୋର ବିଛା ମନ୍ତ୍ର ନ ଜାଣି ସାପଗାତରେ ହାତ ଦେଲା ଭଳି । "ମୋ ଦାନା ପାଣି କାହାଘରେ– ମୁଁ ଯାଇଥିଲି ବାହାଘରେ !"

ସଙ୍ଗେ ସଙ୍ଗେ ଇନ୍ଦିରାଙ୍କ ଉତ୍ତର ଆସେ "What do you think about it ? — ତୁମେ କ'ଣ ଭାବୁଛ ସେ ବିଷୟରେ ? ମୋହ ପ୍ରଶ୍ନର ଏଭଳି ପାଲଟା ଜବାବ ମିଳିବ ବୋଲି ଆଦୌ ତ ମୁଁ ପ୍ରସ୍ତୁତ ନଥିଲି ! ଅପ୍ରସ୍ତୁତ ହୋଇ ଜବାବ୍ କିଛି ହେଲେ ପଇଟିଲା ନାହିଁ ମୋତେ । ଟିକିଏ ଇତସ୍ତତଃ ହେଲି— ଚଢ଼ାକୁ ତ ଉତ୍ତର ଅଛି– ପ୍ରଶ୍ନକୁ ଜବାବ । କିନ୍ତୁ ଜବାବଟା ପଇଟିଲେ ସିନା ! ଅପ୍ରତିଭ ହୋଇ ମୁହଁରୁ ମୋର ବାହାରିଆସେ– ମୁଁ ତାହା କହିବି କେମିତି ? କ'ଣ ଜାଣେ ମୁଁ ?

ପ୍ରଶ୍ନ କରିଥିଲି ସିନା କେବଳ ଗାଡ଼ି ଭିତରେ ବସି ଅସହ୍ୟ ନୀରବତଟାକୁ ଭାଙ୍ଗିବାପାଇଁ ! ଏଇ ଦୟନୀୟ ଅବସ୍ଥାକୁ ମୋର ତୁଟାଇବାକୁ ଅବା ହୃଦୟରେ ପୁଣି ଦୟା ବସିଲା ଶ୍ରୀମତୀ ଇନ୍ଦିରାଙ୍କର ।

ମୁହଁକୁ ମୋର କୌତୂହଳ ଦୃଷ୍ଟିରେ କିଛି କ୍ଷଣ ସେ ନିରୀକ୍ଷଣ କରନ୍ତି । ତା'ପରେ ସେମିତି ସରଳ ଇଂରାଜୀ ଭାଷାରେ ପଚାରନ୍ତି ସହାସ୍ୟରେ, Where do you stay in Delhi ?— ଦିଲ୍ଲୀରେ ଆପଣ କେଉଁଠି ରହନ୍ତି ?"

"I stay with my daughter ମୋ ଝିଅଘରେ ରହୁଛି ।

ପୁଣି ପ୍ରଶ୍ନ—

" Who is she ? ସେ କିଏ ?"

" She is a member of the Rajya Sabha– Nandini Satpathy– ରାଜ୍ୟସଭାର ସେ ଜଣେ ସଦସ୍ୟା– ନନ୍ଦିନୀ ଶତପଥୀ ।

ତହୁଁ ମୃଦୁ ହସି ଆହୁରି କୌତୂହଳରେ ମୁହଁକୁ ମୋର ଚାହିଁଲେ ସେ । "Oh Yes. I was marking her facial similarity with that of yours — ଆପଣଙ୍କ ମୁହଁର ସାଦୃଶ୍ୟ ତା'ଠାରେ ଦେଖି ମୁଁ ସେଇ କଥା ପରା ଭାବୁଥିଲି ।"

ଆଉ କିଛି ନକହି ମୋତେ ସେ ରାସ୍ତାର ଦୁଇ କଡ଼ରେ ରହୁଥିବା କେନ୍ଦ୍ରମନ୍ତ୍ରୀମାନଙ୍କର ଘରଗୁଡ଼ିକୁ ଚିହ୍ନାଇ ଦିଅନ୍ତି । ଅଥଚ ଘର ଚିହ୍ନିବାକୁ ମନରେ ମୋର ଆଦୌ କୌତୂହଳ ଜନ୍ମ ନ ଥାଏ– ମଣିଷକୁ ନଦେଖି ଖାଲି ତାଙ୍କ ଘର ଠାବ କରିବା ଯାହା, ଇତିହାସ ପଢ଼ିବା କି ଆଗ୍ରା, ଦିଲ୍ଲୀ, ଲକ୍ଷ୍ନୌ ପ୍ରଭୃତିର ବାଦଶାହୀ ପ୍ରାସାଦ ଦେଖିବା ତାହା । ପୁଣି ତା' ଭିତରୁ କୌଣସି ଘରେ କେବେହେଲେ ରହିବା ଉଚ୍ଚାକାଂକ୍ଷା ମୋର ତ କଳ୍ପନାର ବାହାରେ !

ଶେଷରେ ରେଡ଼ିଓ ମନ୍ତ୍ରୀ ଇନ୍ଦିରାଙ୍କ ସରକାରୀ ଘର ପୋର୍ଟିକୋ ଭିତରେ ତାଙ୍କ ଗାଡ଼ି ଅଟକେ; ଗାଡ଼ିରୁ ଓହ୍ଲାଇ ରେଡ଼ିଓ ମନ୍ତ୍ରୀ କଟକ ଆକାଶବାଣୀର ଏହି ଦୟନୀୟ ସନ୍ଧ୍ୟାକାରଙ୍କୁ ଘରଭିତରକୁ ଡାକି ବୈଠକ ଖାନାରେ ବସାନ୍ତି ମଧ—

"Tea ? Coffee ? Cold-drink ?"

"ଚା' ? କଫି ? ସରବତ ?"

ଧନ୍ୟବାଦ ଜଣାଇ ମନା କରିଦିଏଁ । କେବଳ ତାହା ଲୌକିକତା ବିଚାରରୁ ନୁହେଁ; ଯଥାର୍ଥରେ ଯେମିତି ଥଣ୍ଡାଗରମ ସବୁ ପ୍ରକାରେ ମନବୋଧ ଚଉତିଶା ଲେଖିବା ଶକ୍ତି ମୋର ଆସି ଯାଇଥାଏ ସେଇ କ୍ଷଣରେ !

ଏହି ସଂକ୍ଷିପ୍ତ ସାକ୍ଷାତ୍‌କାର ପରେ ଇନ୍ଦିରା ପୁଣି ନିର୍ଦ୍ଦେଶ ଦିଅନ୍ତି— "ଗାଡ଼ି ନେଇ ଛାଡ଼ିଦେଇ ଆସୁ ଆପଣଙ୍କୁ ।"

ଘର ଭିତରେ ତାଙ୍କର ପଶିବା ଆଗରୁ ମୁଁ ଅବଶ୍ୟ ଟାକ୍‌ସି ମଗାଇବା ବ୍ୟବସ୍ଥା କରି ସାରିଥାଏଁ । ସେଇ କଥା ଜଣାଇ ବିଦାୟ ଘେନିଲି । ବିଦାୟ ନେବା ସମୟରେ ଆଶ୍ୱାସନା କଣ୍ଠରେ ଶ୍ରୀମତୀ ଇନ୍ଦିରା ମୋତେ କହନ୍ତି— ଯେତେବେଳେ ଯାହା ମୋର ଇଚ୍ଛା, ସେ ବିଷୟରେ ତାଙ୍କ ସହିତ ପତ୍ରାଳାପ କରିବା ଲାଗି; କିନ୍ତୁ କେବେ ହେଲେ ଆଉ ତାହା ମୋର ଘଟି ନାହିଁ । ଯାହା ବି ଘଟିଥାନ୍ତା, ଏହି ସାକ୍ଷାତ୍‌କାରର ବର୍ଷକ ପରେ କିମ୍ୱା ତହିଁରୁ ଅଳ୍ପକାଳ ମଧ୍ୟରେ ତାସ୍‌କେଣ୍ଟଠାରେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ଲାଲବାହାଦୁର ଶାସ୍ତ୍ରୀଙ୍କ ତିରୋଧାନ ହୁଏ ।

ତହୁଁ ପ୍ରଧାନମନ୍ତ୍ରୀ ପଦରେ ଅଧିଷ୍ଠିତା ହୁଅନ୍ତି ଶ୍ରୀମତୀ ଇନ୍ଦିରା । ପ୍ରଧାନମନ୍ତ୍ରୀ ଭାବରେ ମଧ୍ୟ ରେଡ଼ିଓ ଥିଲା ତାଙ୍କର ଦପ୍ତରି ଅନ୍ତର୍ଭୁକ୍ତ । ସେତେବେଳେ ତାଙ୍କ ସହିତ ପତ୍ରାଳାପର ପରିସର ନଥାଏ । ମୋର ବ୍ୟକ୍ତିଗତ ସମସ୍ୟା ଆଉ ଉତ୍‌ଥାପନ କରିବା ଅବାନ୍ତର ହୋଇପଡ଼େ ପୁଣି ଅତି ତୁଚ୍ଛ ହୋଇପଡ଼େ ମଧ୍ୟ ।

୧୯୬୭ ସାଧାରଣ ନିର୍ବାଚନରେ ଫେବୃୟାରୀ ୮ ତାରିଖ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଆସନ୍ତି ଭୁବନେଶ୍ୱର । ସେଦିନ ସଭାରେ ଭାଷଣ ଦେଲାବେଳେ କୌଣସି ଦୁର୍ବୃତ୍ତଦ୍ୱାରା କଦର୍ଯ୍ୟ ଭାବରେ ଆହତ ହୁଅନ୍ତି ସେ । ଦେଶବ୍ୟାପୀ ଏହି ଦୁର୍ଘଟଣାର ସମ୍ୱାଦ ଓଡ଼ିଶାକୁ ହୀନ ପ୍ରତିପନ୍ନ କରେ ସାଧାରଣ ଦୃଷ୍ଟିରେ । କବି ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକ ଓ ଡକ୍ଟର ମାୟାଧର ମାନସିଂହଙ୍କ ସମେତ ଆମେ କେତେଜଣ ଲେଖକ ଏହି ଦୁଷ୍କର୍ମକୁ ନିନ୍ଦାକରୁଁ ସମ୍ୱାଦପତ୍ର ମାଧ୍ୟମରେ । ସମଗ୍ର ଉପମହାଦେଶ ଭାରତୀୟ ରାଜନୀତି ଇତିହାସରେ ଓଡ଼ିଶାର ନିର୍ଲଜ୍ଜ କଳଙ୍କମୟ ଅଧ୍ୟାୟ ରୂପେ ଅକ୍ଷମଣୀୟ ଏହି ଦୁର୍ଘଟଣା ଲିପିବଦ୍ଧ ହୋଇ ରହିଗଲା ବୋଲି ପ୍ରତିବାଦ ଜଣାଉଁ ।

ସାହିତ୍ୟହିଁ ଯୁଗେ ଯୁଗେ ସାମାଜିକ ତଥା ରାଜନୈତିକ ଅନ୍ୟାୟ ଅତ୍ୟାଚାର ଧର୍ଷଣକୁ ପଦାକୁ ଓଟାରି ଆଣି ନ୍ୟାୟ ଧର୍ମ ପ୍ରତିଷ୍ଠା କରି ଆସିଛି ସୀତା ଦ୍ରୌପଦୀଙ୍କ ଯୁଗାବଧି । ଶ୍ରୀମତୀ ଇନ୍ଦିରା ପ୍ରଧାନମନ୍ତ୍ରୀ ରୂପେ ଯେଉଁ ଅଭୂତପୂର୍ବ ଶକ୍ତି ସାହସ ବଳରେ ବାଙ୍ଗଲା ଦେଶରେ ଅମାନୁଷିକ ନାରୀହତ୍ୟା ଓ ନରମେଧର ନିରାକରଣ କରି ବିଶ୍ୱଶାନ୍ତି ପ୍ରତିଷ୍ଠାର ସାହାଯ୍ୟ କଲେ– ପ୍ରତିଷ୍ଠାକଲେ ଏ ଯୁଗରେ ନାରୀ ନେତୃତ୍ୱର ଅବିସ୍ମରଣୀୟ ଦୃଷ୍ଟାନ୍ତ— ତାହାର ଯଥାଯୋଗ୍ୟ ସ୍ୱୀକୃତି କୌଣସି ଭାଷାରେ ତ ଯଥେଷ୍ଟ ହେବ ନାହିଁ ।



# ପଲକେ ପଲକେ ପୁଲକ ବିସ୍ମୟ

ଜୀବନ-ନାଟ୍ୟ ରଙ୍ଗମଞ୍ଚରେ ଅନୁକ୍ଷଣ ଦୃଶ୍ୟପଟର ଅଦଳ-ବଦଳ ଏକାଧିକ ଚରିତ୍ରର ପ୍ରବେଶ—ପ୍ରସ୍ଥାନ, —ଆବିର୍ଭାବ—ଅନ୍ତର୍ଦ୍ଧାନର ଘଟଣାବଳୀ ପୁଣି ଛାୟାମୟ ହୋଇଯାଏ ଚାହୁଁ ଚାହୁଁ— ନବ ନବ ରସର ନିତ୍ୟ ଅଭିନୟ – କଳନା ତାହାର କାହିଁ ! ସବୁ ଯେପରି ଆକସ୍ମିକ ପୁଣି ଛାୟାଚିତ୍ର ଭଳି ମୁହୁର୍ମୁହୁଃ ବଦଳିଯାଏ ଅଲକ୍ଷ୍ୟରେ– ନିଶ୍ଚିହ୍ନ ହୋଇ ନିଭିଯାଏ ନିତ୍ୟ ବିସ୍ମୃତିର ବିସ୍ମୟରେ ! ଜୀବନର ଲକ୍ଷଣ ହେଲା ମୁହୁର୍ମୁହୁଃ ବିସ୍ମୟ । ନିଃଶ୍ୱାସ ପ୍ରଶ୍ୱାସ ଭଳି ତାହା ଯେତିକି ସହଜ, ସେତିକି ଆଶ୍ଚର୍ଯ୍ୟ, ଚମକପ୍ରଦ । କେବଳ ବିସ୍ମୟ ଭିତରେ ହିଁ ମଣିଷ ଅବା ବଞ୍ଚିରହେ ! — ପଛକୁ ଯେତେ ମୁଁ ଆଖି ଫେରାଏଁ ସେତିକି ବିହ୍ୱଳ କରେ ମୋତେ ଏଇ ଅହେତୁକ ବିସ୍ମୟ !

କଲେଜ ପଢ଼ା ଶେଷହେବା ମାତ୍ରେ ଯେପରି ସମବାୟ ବିଭାଗରେ ମୁଁ ନିଯୁକ୍ତି ପାଏଁ, ଅନାୟାସ ଅଯାଚିତ ଭାବରେ, ତହିଁରୁ ଅବ୍ୟାହତି ମଧ ଅବିକଳ ଆକସ୍ମିକ ପରମ ଆଶ୍ଚର୍ଯ୍ୟ ଜନ୍ମାଏ ଯେମିତି ମୋର ସବୁ କର୍ମରେ ନିଯୁକ୍ତି ପୁଣି ତହିଁରୁ ଅପସାରଣ—ସତେ ଅବା ଏକ ସ୍ୱୟଂକ୍ରିୟ ଯନ୍ତ୍ରଭଳି !

ଏକାଦିକ୍ରମେ ମାସ ମାସ ହୃଦ୍‌ରୋଗରେ ଶଯ୍ୟାଶାୟୀ ହୋଇ ଉଠିବା ପରେ ଅଚାନକ ଆକାଶବାଣୀର ସହ୍ଲକାର (Producer) ନିଯୁକ୍ତିପତ୍ର ମିଳେ ମୋତେ । ଅବିକଳ ସେମିତି ଛାଏଁ ତହିଁରୁ ବିଦାୟ ନିଏଁ, କଟକ ବଡ଼ ଡାକ୍ତରଖାନାରେ ଅସ୍ତ୍ରଚିକିତ୍ସାଦ୍ୱାରା ମୃତ୍ୟୁ ମୁଖରୁ ଉଦ୍ଧାର ପାଇ । ଏହିଭଳି ପ୍ରତି କାର୍ଯ୍ୟରେ ମୋର ନିଯୁକ୍ତି ଯେପରି ଅକସ୍ମାତ, ତହିଁରୁ— ଅବ୍ୟାହତି ମଧ ସେହିପରି; ଅଥଚ ସ୍ୱୟଂ ଯେବେ ଯେଉଁ କାର୍ଯ୍ୟଲାଗି ଉଦ୍ୟମ କରୁଛି, ତହିଁରେ କେବଳ ଶୋଚନୀୟ ବିଫଳତା ଦୀର୍ଘକାଳ ଅସୁସ୍ଥ ହୋଇ ଶଯ୍ୟାଶାୟୀ ଅବସ୍ଥାରେ କେତେ ବିଚିତ୍ର ଅଭିଜ୍ଞତା ମୋର ମଧ ଜାତ ହୁଏ । ଯାହାର କାରଣ ଅନୁସନ୍ଧାନ କରି ପାଇବା ଏବେ ମଧ ଅସମ୍ଭବ । ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳ ପୂର୍ବେ ୧୯୧୭/୧୮ ରେ ସ୍କୁଲ ଛାତ୍ର ଥିଲାବେଳେ ମହାତ୍ମା ଗାନ୍ଧିଙ୍କ ସ୍ୱାସ୍ଥ୍ୟରକ୍ଷା ବିଷୟକ ବହିପଢ଼ି ତଦନୁଯାୟୀ ଖାଦ୍ୟ ପେୟାଦିରେ କଠୋର ସଂଯମ ଅଭ୍ୟାସ କରିବା-ପୁଣି ସ୍ୱାମୀ ନିଗମାନନ୍ଦଙ୍କ ବ୍ରହ୍ମଚର୍ଯ୍ୟ ପାଳନ ପୁସ୍ତକରୁ ପ୍ରାଣାୟାମ, ଧୌତିଆଦିର ନିୟମ ପାଳିବା ସତ୍ତ୍ୱେ ପରବର୍ତ୍ତୀ ଜୀବନରେ ଆଧୁନିକ ଚିକିତ୍ସାର ଆଶ୍ରୟ ନେବାକୁ ହୁଏ ମୋତେ ।

ବାରମ୍ବାର ହୃଦ୍‌ରୋଗରେ ପୀଡ଼ିତ ହୋଇ ଶ୍ରଦ୍ଧେୟ ଡାକ୍ତର ଶ୍ରୀ ଭଗବତୀ ପ୍ରସାଦ ଆଚାର୍ଯ୍ୟଙ୍କ ନିର୍ଦ୍ଦେଶକ୍ରମେ ଦୀର୍ଘକାଳ ଶଯ୍ୟାଶାୟୀ ହୁଏଁ—ସେଇ ସମୟରେ ମୁଁ ସ୍ପଷ୍ଟ ଦେଖିଲା ଭଳି ଅନୁଭବ କରେଁ– ମୋର ମୁଣ୍ଡ ଆଉ ଗୋଡ଼ ପାଖରେ ଦୁଇଟି ଛାୟା ମୂର୍ତ୍ତି ଅନୁକ୍ଷଣ ଠିଆ ହୋଇ ମୋତେ ଜଗି ରହିଛନ୍ତି ନୀରବରେ ଅବା ! ହେତୁବାଦୀ ଚିର ମୋ'ର ସେତେବେଳେ ସମ୍ପୂର୍ଣ୍ଣ ଅସମର୍ଥ ହୁଏ ସେ ଛାୟାର ବିଶ୍ଳେଷଣ କରିବାକୁ, ବାରମ୍ବାର ଆଖି ବନ୍ଦ କରି ଫିଟାଏଁ ।

ଶତ ଚେଷ୍ଟାରେ ବୁଝିବା ଉଦ୍ୟମ କରି ହାର ମାନିଯାଏଁ । ଶେଷରେ, ବିଫଳତାରେ ପରିଣତ ହୁଏ ସବୁ ବିଶ୍ଳେଷଣ ? ପୁଣି ଏକାଦିକ୍ରମେ ପ୍ରତି ନିଶାର୍ଦ୍ଧରେ ଶୁଣେ ଏକ ବିକଟ ହାସ୍ୟ ରାସ୍ତା ଉପରୁ, ହାସ୍ୟ କରୁଥିବା ଯୁବକଟି ଜଣେ ବିକଳାଙ୍ଗ ଭିକାରି ବାଳକ ବୋଲି ପରେ ଅବଶ୍ୟ ଜାଣିପାରେଁ; କିନ୍ତୁ ତା'ର ପ୍ରତି ରାତ୍ରିରେ ହିଁ ମୋର ଦ୍ୱାର ସାମନାରେ ଅଟ୍ଟହାସର ହେତୁ ଆଜିସୁଦ୍ଧା ଭୁଲି ପାରି ନାହିଁ । ମୋର ଚେତନ, ଅର୍ଦ୍ଧଚେତନ କିମ୍ବା ଅବଚେତନ ଅବସ୍ଥାନର ସବୁ ଅହମିକାକୁ ଏକାବେଳେ ଯେମିତି ଧୂଳିସାତ୍ କରି କରାଳ ବିକଟ ଭୟ ଉପୁଜାଏ ସେଇ ଅଟ୍ଟହାସ, ପୀଡ଼ିତାବସ୍ଥାରେ– ପ୍ରାୟ ସବୁବେଳେ ପାଖରେ ମୋର ଜଗି ରହିଥାନ୍ତି ସହଧର୍ମିଣୀ ।

ସେ ମଧ୍ୟ ଶୁଣନ୍ତି ସେଇ ଛାତି ଫଟା ହସ ନିର୍ଜନ ରାସ୍ତାର ଭିକାରି–ଯୁବକଠାରୁ, ତାଙ୍କୁ ମଧ୍ୟ ଘର ଭିତରେ ଅହେତୁକ ଛାୟାମୂର୍ତ୍ତିର ଆବିର୍ଭାବ ଦେଖାଯାଏ । ଆଉ ସେଇ ମୂର୍ତ୍ତିର ତାଙ୍କ ପ୍ରତି ନିର୍ଦ୍ଦେଶ ମୋତେ ଛାଡ଼ି ସେ ଅଲଗା ହୋଇଯିବା ପାଇଁ, ପାତିବ୍ରତ୍ୟର ଅହେତୁକ ଅନ୍ଧ (?) ବିଶ୍ୱାସରେ ପରିଚାଳିତ ହୋଇ ସବୁ ନିର୍ଦ୍ଦେଶକୁ ଅବଶ୍ୟ ବାରମ୍ବାର ସେ ଉପେକ୍ଷା କରନ୍ତି । ଏ ଯେମିତି ଗୋଟାଏ ଭେଲ୍କି, ଗୋଟାଏ ମ୍ୟାଜିକ୍ !— ହ୍ୟାଲ୍‌ସିନେସନ୍ ।

ମନସ୍ତତ୍ତ୍ୱର ଗବେଷଣା ବିଷୟୀଭୂତ ଏହି ସବୁ ଘଟଣା ବ୍ୟତୀତ ଆଉ ଗୋଟିଏ ଦୃଶ୍ୟ—ବିଛଣା ଉପରେ ଚିତ୍ ହୋଇ ଶୋଇରହେ—ଦିନ ପରେ ଦିନ— ମାସପରେ ମାସ ବିତିଯାଏ—ଝରକା ବାଟେ ଚାରିକଣିଆ ନୀଳ ଆକାଶଟିକି ଚାହିଁରହି । କାହିଁ ଦୂରେ ସେଇ ଆକାଶ ! ଖଣ୍ଡ ଖଣ୍ଡ ସଫେଦ୍ ବୌଦମାଳା ଆକାଶର ନୀଳିମାକୁ ଆହୁରି ସ୍ୱଚ୍ଛ ସୁନ୍ଦର ମହନୀୟ କରି ସେହି ବାଟେ ଭାସିଯାଏ । କେଉଁଠାରେ ସେଇ ବଉଦ ଏତେ ପତଳା ଯେ ତା'ଭିତରୁ ଉଙ୍କିମାରେ ଆକାଶର ଗାଢ଼ ନୀଳିମା ଆହୁରି ତାହାକୁ ତୋଫାକରି । ସତେ ଯେମିତି ଫିନ୍ ଫିନ୍ ସଫେଦ୍ ଶାଢ଼ୀରେ ନୀଳ ଛିଟ ପଡ଼ିଛି ଠାଆକୁ ଠାଆ !

ବଉଦ ତଳେ ଉଡ଼ି ଉଡ଼ି ଯାଏ କେତେ ସାନ ସାନ ଚଢ଼େଇମାନଙ୍କ ରୋଷଣି— କିଏ ନିକଟରେ ଆଉ କିଏ କାହିଁ କେଉଁ ଦୂରଦୂରାନ୍ତରେ ! କିଏ ସାନ କିଏ ବଡ଼— ବାରିହୁଏ ନାହିଁ ତାଙ୍କଭିତରୁ । ଥରେ ଏମିତି ଆଶ୍ଚର୍ଯ୍ୟ ହୋଇ ଲକ୍ଷ୍ୟ କରେ, ନୀଳ ଆକାଶ ତଳେ ଛିଟିକି ପଡ଼ିଥିବା ପାତଳା ବଉଦ ଭିତରେ ଚଢ଼େଇ ଦଳଟିକି ଛିନିଛତର କରି କାହୁଁ ଗୋଟାଏ ବଡ଼ ଚଢ଼େଇ—ହୁଏ ତ ଶାଗୁଣା, ଛଞ୍ଚାଣ କିମ୍ବା ବାଜପକ୍ଷୀ— ପ୍ରକାଣ୍ଡ ଦୁଇଟା ଡେଣା ମେଲି ସମୁଦ୍ରରେ ଆହୁଲା ମାରିଲା ଭଳି ଉଡ଼ିଆସେ—ଅତି ସହଜରେ ସେହି ପକ୍ଷିପନ୍ତି ଭିତରେ ଚହଳ ପକାଇ ଗୋଟିଏ ସାନ ଚଢ଼େଇକି ନିଜ ପଞ୍ଝାରେ ଧରି ନିଶ୍ଚିନ୍ତରେ ଉଡ଼ିଚାଲେ ।

ପଞ୍ଝାରେ ଲାଖି ସାନ ଚଢ଼େଇଟି ଅବା ଛଟପଟ ହୁଏ ଉଦ୍ଧାର ପାଇବାକୁ । ଆହୁରି ଦେଖେଁ–ଆକ୍ରମଣକାରୀ କବଳରୁ ଅକସ୍ମାତ୍ ମୁକ୍ତି ଲାଭକରି ଉଡ଼ି ଉଡ଼ି ତା'ର ଫେରିଆସିବା ଦୃଶ୍ୟ, ପୁଣି ତାହାରି ମେଣ୍ଢ ଅଭିମୁଖରେ । ଶିକାରୀ ପକ୍ଷୀ ମଧ୍ୟ ଲେଉଟି ପଡ଼ି ଅନୁଧାବନ କରେ ତା'ର ସେଇ ଶିକାରକୁ ତା'ର । ତହୁଁ ଅଳ୍ପଦୂର ଯାଇ ଅବଲୀଳାକ୍ରମେ ପୁଣି ଧରିନିଏ ତା'ର ସେଇ ଶିକାରକୁ । ବୋଧହୁଏ ବେଶି ସାବଧାନରେ ଏଥର ଆପଣା ପଞ୍ଝା ଭିତରେ ଶିକାରଟିକି ଧରି ନିଶ୍ଚିନ୍ତରେ ସେ ନିଜ ଗନ୍ତବ୍ୟ ପଥରେ ଉଡ଼ିଚାଲେ ପୂର୍ବପରି ।

ଦୃଶ୍ୟଟି ଦେଖି ଯେତିକି କୌତୂହଳ ମନରେ ମୋର ଜନ୍ମେ, ସେତିକି ମଧ୍ୟ ବୁଝିପାରେଁ— ଏଇ ଆକସ୍ମିକ ଅନାହୂତ ବିଚିତ୍ର ଦୃଶ୍ୟର ଇଙ୍ଗିତ । ଯେମିତି ଏଇ ଚିରନ୍ତନ

ଆକାଶଟା ମୁହୁର୍ମୁହୁଃ ତା'ର ରଙ୍ଗ ବଦଳୁଥିବା ବ୍ଲାକ୍‌ବୋର୍ଡଟାରେ, ମୋରି ସାମନାରେ ଏକ ଜୀବନ୍ତ ଚିତ୍ର ଆଙ୍କିଦେଇ ହଠାତ୍ ନିଭାଇ ଦିଏ ! ସୂଚାଇଦିଏ ସେଇ ମହା କାଳ ମୃତ୍ୟୁର ଆକ୍ରମଣ ଅବା ମୋତେ ଏମ୍ତି ଦୀର୍ଘ ଦିନ ଶଯ୍ୟାଶାୟୀ କରିଗଲା ପ୍ରଥମ ଘଣ୍ଟି ବଜାଇ ଦେଇ— ଆହୁରି ଥରେ ଲେଉଟି ଆସି ଏଠାରୁ ଚିର ଦିନପାଇଁ ଧରି ନେଇ ଯିବ ବୋଲି !

ଘଟଣାଚକ୍ରର ବୈଚିତ୍ର୍ୟରେ ଏଇଭଳି ଦୀର୍ଘ କାଳ ସ୍ଥାୟୀ ରୋଗଶଯ୍ୟାରୁ ଉଠିବା ପରେ ନିଯୁକ୍ତି ପତ୍ର ପାଏଁ କଟକ ଆକାଶବାଣୀରେ ଯୋଗଦେବା ଲାଗି । ଠିକ୍ ସେହିପରି ଅକସ୍ମାତ୍ କଠିନ ରୋଗାକ୍ରାନ୍ତ ହୋଇ କଟକ ଡାକ୍ତରଖାନାକୁ ମୋତେ ନିଆଯାଏ ଅସ୍ତ୍ର ଚିକିତ୍ସା ଲାଗି । ୧୯୭୦ ଶେଷ ଭାଗରେ । ତାହା ପରେ ଆପେ ଆପେ ରହିତ ହୋଇଯାଏ ଆକାଶବାଣୀରେ ମୋର କାର୍ଯ୍ୟକାଳ । ଏଇ ସଦା ଶବ୍ଦାୟମାନ ଆଧୁନିକ ଅନୁଷ୍ଠାନକୁ ନୀରବରେ ମୋର ପ୍ରବେଶ ଓ ପ୍ରସ୍ଥାନ ପର୍ଯ୍ୟାୟର ଅବସାନ ଘଟେ ଦୁନିଆର ଅହରହ ଅସଂଖ୍ୟ ଆବିର୍ଭାବ ଅନ୍ତର୍ଦ୍ଧାନ ଭଳି ।

ଆଜି ମୋତେ ଲାଗୁଚି ଯେମିତି ଯେଉଁଠି ଥିଲି ମୁଁ ସେଇଠି ରହିଛି ସ୍ଥିର ହୋଇ । ଆଉ ଚାରିପାଖରେ ମୋର ଗୋଟିକ ପରେ ଗୋଟିଏ ଘଟଣା,— ପାରିବାରିକ, ବ୍ୟକ୍ତିଗତ ପୁଣି ସଙ୍ଗେ ସଙ୍ଗେ ସାମାଜିକ ମଧ କେତେବେଳେ ଆସି କାହିଁ ଅବା ଅପସରି ଯାଏ ଅଲକ୍ଷ୍ୟରେ, ନିଃଶବ୍ଦରେ । ଶେଷରେ ପୁଣି ସେହି ପୁରୁଣା ପ୍ରଶ୍ନବାଚୀଟା ସାମ୍‌ନାରେ ମୋର ସିଧାସଳଖ ଠିଆ ହୋଇପଡ଼ି ମୋତେ ପଚାରେ—କେଉଁଠୁ ଅବା କାହିଁକି ତୋର ଆଗମନ ? କେଉଁଠିକି ପୁଣି କାହିଁକି ତୋ'ର ପ୍ରତ୍ୟାବର୍ତ୍ତନ କାହିଁକି ? ମଝିରେ କେତେଟା ଦିନ ମାସ ବା ବର୍ଷର ସଂଖ୍ୟା ତ ହିସାବ କରାଯାଇପାରେ ଆଙ୍ଗୁଠି ଆଗରେ ? ସେଇ ସେ ପୁରୁଣା ପ୍ରଶ୍ନର ମୋର ମଧ ପୁରୁଣା ଜବାବ— ତଥାପି ଆହୁରି ମୋର ଜାଣିବାକୁ ପୁଣି ଜଣାଇବାକୁ ଯେ ଦାବି ! କିନ୍ତୁ କାହିଁକି ? କାହିଁକି ? କାହିଁକି ?



## ସମ୍ମାନ-ସମ୍ବର୍ଦ୍ଧନା-ସଙ୍କଟ

ଆବିଷ୍କାରକ, ବୈଜ୍ଞାନିକ, ଶିଳ୍ପୀ, ସାହିତ୍ୟିକ, କବି, ଲେଖକ, କଳାକାରପ୍ରଭୃତିଙ୍କୁ ଜୀବିତାବସ୍ଥାରେ ସମ୍ବର୍ଦ୍ଧନା ଜଣାଇବା ପ୍ରଥା ରହିଛି । ବ୍ୟକ୍ତିଗତଭାବରେ ଏଭଳି ସମ୍ବର୍ଦ୍ଧନା ଲାଭକରିବାକୁ ମୁଁ ଏକ ସଙ୍କଟ ବୋଲି ଜ୍ଞାନ କରେଁ । ଯେଉଁମାନେ ସମ୍ବର୍ଦ୍ଧନା ଜଣାନ୍ତି, ତାଙ୍କର ଆନ୍ତରିକତା ଓ ମହାନୁଭବତା ଯେଭଳି ପରିସ୍ଫୁଟ, ସେହିଭଳି ଆଉ କାହାରି ଈର୍ଷା, ବୈରତା ଓ ଅସୂୟାଭାବ ରହିବା ମଧ ସ୍ୱାଭାବିକ । ତଥାପି ସମ୍ବର୍ଦ୍ଧନା ଯେତେବେଳେ ରାଷ୍ଟ୍ରୀୟ ସ୍ତରରେ କରାଯାଏ ତାହାକୁ ଏଡ଼ିଦେବା ଅସମୀଚୀନ ହୋଇପଡ଼େ ।

ସେହିପରି ନିରୂପାୟ ଅବସ୍ଥାରେ ସୁଦ୍ଧା ପ୍ରଥମେ ମୁଁ ରାଷ୍ଟ୍ରୀୟ ସମ୍ମାନ ଲାଭ କରିବାକୁ ବିନୀତ ଭାବରେ ପ୍ରତ୍ୟାଖ୍ୟାନ କରେଁ । ଓଡ଼ିଶାର ଶିକ୍ଷାମନ୍ତ୍ରୀ ଶ୍ରୀ ବନମାଳୀ ପଟ୍ଟନାୟକ

ମୋତେ ଏଥିଲାଗି ବାରମ୍ବାର ପ୍ରବର୍ତ୍ତାଇଥିଲେ ମୁଁ କଟକ ଆକାଶବାଣୀରେ ନିଯୁକ୍ତ ଥିବା ସମୟରେ । ପୁଣି ପର ବର୍ଷ ସେହି ସରକାରୀ କାର୍ଯ୍ୟାଳୟରୁ 'ପଦ୍ମଭୂଷଣ' ସମ୍ମାନ ଦେବାଲାଗି ମୋର ସ୍ୱୀକୃତି ଲୋଡ଼ା ହୁଏ । ସେତେବେଳେ ତାହାକୁ ପ୍ରତ୍ୟାଖ୍ୟାନ କରିବାଟା ମୋତେ ସାଧାରଣ ଅସୌଜନ୍ୟ ଓ ରାଷ୍ଟ୍ରୀୟ ଅବମାନନା କଲା ଭଳି ବୋଧହୁଏ । ସେଥି ସହିତ ନିଜ ଅହମିକା ଦୋଷ ମଧ ଦଂଶନ କରେ । ତେଣୁ ଏହି ଦ୍ୱିତୀୟ ଆହ୍ୱାନ ନିକଟରେ ମୁଣ୍ଡ ନୁଆଁଇବା ଛଡ଼ା ଅନ୍ୟ ଉପାୟ ମୋତେ ଦେଖାଯାଏ ନାହିଁ ।

ସେହି ବର୍ଷ (୧୯୭୧ ମସିହା ଅକ୍ଟୋବର) ଭାରତୀୟ ସାହିତ୍ୟ ଏକାଡେମୀର ଉଚ୍ଚ ସମ୍ମାନିତ ସଦସ୍ୟ (Fellow) ହେବା ସୌଭାଗ୍ୟ ଲାଭ କରେଁ ମଧ । ଶିକ୍ଷାମନ୍ତ୍ରୀ ମାନନୀୟ ଶ୍ରୀ ନୁରୁଲ ହୁସେନ୍‌ଙ୍କ ଅଧକ୍ଷତାରେ ଏଥିଲାଗି ଅନୁଷ୍ଠିତ ହୁଏ ସାହିତ୍ୟ ଏକାଡେମୀର ଏକ ବିଶେଷ ଅଧିବେଶନ ଭାରତର ରାଜଧାନୀ ଦିଲ୍ଲୀରେ ।

ରାଷ୍ଟ୍ରପତି ଭବନରେ ରାଷ୍ଟ୍ରପତି ଶ୍ରୀ ବରାହଗିରି ଭେଙ୍କଟଗିରିଙ୍କଠାରୁ ମଧ 'ପଦ୍ମଭୂଷଣ' ସମ୍ମାନ ଲାଭକରେଁ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରାଗାନ୍ଧୀ, ତାଙ୍କ ମନ୍ତ୍ରିମଣ୍ଡଳର ବିଶିଷ୍ଟ ସଦସ୍ୟବୃନ୍ଦ ଓ ଦିଲ୍ଲୀର ସୁପ୍ରତିଷ୍ଠିତ ବ୍ୟକ୍ତିମାନଙ୍କ ଏକ ସର୍ବୋଚ୍ଚସ୍ତରୀୟ ଦରବାରରେ । ସେଥର ଦିଲ୍ଲୀ ରହଣି ଅବସରରେ ଓଡ଼ିଆ ସମାଜ ପୁଣି ଭାରତୀୟ ବିଭିନ୍ନ ଭାଷାଭାଷୀଙ୍କ ଅନୁଷ୍ଠାନ ପକ୍ଷରୁ ମଧ ସମ୍ବର୍ଦ୍ଧନା ଲାଭ କରେଁ ।

ଉତ୍ତର ପ୍ରଦେଶ ଆଦି ଭାରତର ବିଭିନ୍ନ ରାଜ୍ୟରେ ଏକାଧିକ ସମ୍ବର୍ଦ୍ଧନା ଲାଭକରିବା ସୌଭାଗ୍ୟ ମଧ ମୋତେ ମିଳୁଛି । କଟକ 'ଡଗର' ପତ୍ରିକାଦ୍ୱାରା ଆୟୋଜିତ ୧୬-୯-୬୨ ରେ ଯେପରି ସମ୍ବର୍ଦ୍ଧିତ ହୁଏଁ ଶ୍ରୀରାମଚନ୍ଦ୍ର ଭବନରେ, ସେହିଭଳି ମୋର ଶିକ୍ଷାସମାପ୍ତି ପରେ ପ୍ରଥମ କର୍ମସ୍ଥଳ କୁଜଙ୍ଗରେ ଶ୍ରୀ ପରମାନନ୍ଦ ଅଧିକାରୀ ପ୍ରମୁଖ ବନ୍ଧୁମାନଙ୍କର ସମ୍ମିଳିତ ସମ୍ବର୍ଦ୍ଧନା ଲାଭକରେଁ ନିଜେ ଉପସ୍ଥିତ ହୋଇ ନ ପାରି ମଧ । କଟକ ପ୍ରଗତିଶୀଳ ବଙ୍ଗୀୟ ସମାଜ ପକ୍ଷରୁ ମଧ ସମ୍ବର୍ଦ୍ଧିତ ହୁଏଁ ପ୍ୟାରିମୋହନ ଏକାଡେମୀ ପ୍ରାଙ୍ଗଣରେ । ଭାରତୀୟ କେନ୍ଦ୍ର ରାଷ୍ଟ୍ରଭାଷା (ଦିଲ୍ଲୀରେ ଅବସ୍ଥିତ) ପକ୍ଷରୁ ଏକ ସଦ୍‌ଭାବନା ପରିଭ୍ରମଣରେ ଦିଲ୍ଲୀ ତଥା ଉତ୍ତରପ୍ରଦେଶର ଆଗ୍ରା, ଏହ୍ଲାବାଦ, ବନାରସ ଓ ଲକ୍ଷ୍ନୌ ନଗରୀମାନଙ୍କର ବିଭିନ୍ନ ରାଷ୍ଟ୍ରଭାଷା ଅନୁଷ୍ଠାନରେ ଆୟୋଜିତ ବିପୁଳ ସମ୍ବର୍ଦ୍ଧନା ଲାଭକରେଁ ମଧ ।

ଉତ୍ତର ପ୍ରଦେଶରେ ଏହି ସକଳ ସମ୍ବର୍ଦ୍ଧନା ସଭାରେ (୧୯୬୯ ମାର୍ଚ୍ଚ) ସହଯାତ୍ରୀ ହୋଇଥାନ୍ତି ଦକ୍ଷିଣଭାରତର ଶ୍ରେଷ୍ଠ ତେଲୁଗୁ କବି ଶ୍ରୀ ବିଶ୍ୱନାଥସତ୍ୟନାରାୟଣ ଓ ମାଦ୍ରାଜର ପ୍ରତିଷ୍ଠିତ ଲେଖକ ଶ୍ରୀ କା-ନା-(କାଶୀନାଥ) ସୁବ୍ରମନ୍ୟମ୍ । ରାଷ୍ଟ୍ରଭାଷା ସଂସ୍ଥାପକ୍ଷରୁ ଆୟୋଜିତ ହୋଇଥାଏ ଯଥାକ୍ରମେ ଆମ ତିନିଙ୍କର ଓଡ଼ିଆ-ତେଲୁଗୁ-ତାମିଲ ଭାଷା ଭାଷଣଗୁଡ଼ିକର ହିନ୍ଦି ତର୍ଜମା କରିଦେବାପାଇଁ ।

ପର୍ଯ୍ୟଟନ ସମାପ୍ତକରି ଦିଲ୍ଲୀ ଫେରିଆସିବା ପରେ ସେଠାରେ ଏହି ସଦ୍‌ଭାବନା-ମଣ୍ଡଳୀ ଯଜ୍ଞର ପୂର୍ଣ୍ଣାହୁତି ଦିଆଯାଏ ଶିକ୍ଷାମନ୍ତ୍ରଣାଳୟରେ ଅନୁଷ୍ଠିତ ଏକ ସଭାରେ । ଉତ୍ତର ପ୍ରଦେଶର ଉଲ୍ଲସିତ ସମ୍ବର୍ଦ୍ଧନାରେ ଯେତେ ପୁଷ୍ପମାଲ୍ୟ ମିଳିଥିଲା, ସର୍ବ ଶେଷରେ ଭାରତର ରାଜଧାନୀରେ ଅନୁଷ୍ଠିତ ସଭାରେ ପୁଷ୍ପମାଲ୍ୟ ଗ୍ରହଣକରି ମୁଁ କହିଥିଲି—

''ଉତ୍ତର ପ୍ରଦେଶର ବିଭିନ୍ନ ଐତିହାସିକ ଓ ପୌରାଣିକ ମହାନଗରୀମାନଙ୍କରେ ପୁଷ୍ପମାଲ୍ୟରେ ବିଭୂଷିତ ହୋଇ ଦିଲ୍ଲୀ ପ୍ରତ୍ୟାବର୍ତ୍ତନ ପରେ ମଧ୍ୟ ସେହି ଫୁଲଶର-ଆକ୍ରମଣରୁ ଆମମାନଙ୍କୁ ତ୍ରାହି ମିଳିଲା ନାହିଁ । ଏହା ଯେ ଏକ ମହାମୈତ୍ରୀର ଆକ୍ରମଣ—ଫୁଲଧନୁ ଓ ଫୁଲଶରର ଆକ୍ରମଣ— ଯେଉଁ ଆକ୍ରମଣ ବଳରେ ମହାଯୋଗୀ ଶିବଙ୍କର ସୁଦ୍ଧା ଯୋଗଭଙ୍ଗ ଘଟିଥାଏ— ଆମେ ଛାର ମନୁଷ୍ୟ ମାତ୍ର ହୋଇଥିବାରୁ ଅନ୍ତର ଆମର ମହାଭାରତୀୟ ମିଳନପୀଠରେ ମିଳିତ ହୋଇଛି କୋଟି କୋଟି ଜନତାର ଅନ୍ତର ସହିତ ।

''—ଆହୁରି ଏକ ଭାବ ମଧ୍ୟ ଉଦ୍ରେକ ହୁଏ ମୋର ଏହି ବିପୁଳ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଲାଭକରି । ଆଖିଆଗରେ ନାଚିଯାଏ ମୋର ଏହି ପୁଷ୍ପମାଲ୍ୟ ଅର୍ପଣସମ୍ଭାର ସନ୍ଦର୍ଶନରୁ ପାର୍ବଣ ପୂଜାର ଗୋଟିଏ ସୁପରିଚିତ ଚିତ୍ର,—ଦେବୀଙ୍କ ସମକ୍ଷରେ ପଶୁବଳି ଦେଲାବେଳେ ମଧ୍ୟ ପଶୁକଣ୍ଠରେ ଏଇ ଭଳି ଫୁଲମାଳ ପିନ୍ଧାଇ ଦିଆଯାଏ । ଦେଶମାତୃକା ନିକଟରେ ଏହି ମାଳ ମୋ ବେକରେ ପିନ୍ଧାଇଦେବାଦ୍ୱାରା ଆପଣମାନେ ଯେପରି ଅବା ଅନିଚ୍ଛୁକ ପଶୁଭଳି ଜବରଦସ୍ତି ମୋତେ ବାନ୍ଧି ଘୋଷାରି ଦେଶମାତୃକା ନିକଟରେ ବଳିଦେବାର ଆୟୋଜନ କରୁଛନ୍ତି !''

ମୋର ଭାଷଣ ଶୁଣି ସଭାଗୃହ ବିପୁଳ ହାସ୍ୟରୋଳ ଓ କରତାଳି ଧ୍ୱନିରେ ପୂର୍ଣ୍ଣ ହୋଇଉଠେ ।

କଲିକତାର ଶରତ୍ ସାହିତ୍ୟ ସମିତି ଓ ବଙ୍ଗ ସାହିତ୍ୟ ସମ୍ମିଳନୀ ପୁଣି କଟକ ବଙ୍ଗୀୟ ସାଂସ୍କୃତିକ ଅନୁଷ୍ଠାନ ପକ୍ଷରୁ ମଧ୍ୟ ଅଯାଚିତ ସ୍ନେହ ସମ୍ବର୍ଦ୍ଧନା ଲାଭକରିବା ସୌଭାଗ୍ୟ ମୋର ଜୁଟିଛି ।

ଏଇ ବିଶାଳ ଉପମହାଦେଶର ପାଣି, ପବନ ଭଳି, ସ୍ନେହ ଶୁଭେଚ୍ଛାର ପ୍ରାଚୁର୍ଯ୍ୟରେ ପରିପୂର୍ଣ୍ଣ ହୋଇଛି ଅନ୍ତର ମୋର— ଯାହାର ପ୍ରତିଦାନ କଳ୍ପନାତୀତ । ଦେଶ ବିଦେଶର କେତେ ନିମନ୍ତ୍ରଣ ରକ୍ଷାକରିବାକୁ ଅସମର୍ଥ ହୋଇପଡ଼ିଛି ମଧ୍ୟ ।

ଏଇପରି ଅସାମର୍ଥ୍ୟର ସ୍ମୃତି ଆଜି ବି ମନଭିତରେ ଦାଗ ତା'ର ନିଭାଇ ପାରି ନାହିଁ । ସବୁଠାରୁ ବଡ଼ ସ୍ମୃତି ଦୁଇ ତିନି ଥର ରୁଷ୍ ଭ୍ରମଣରେ ଯିବାକୁ ନିମନ୍ତ୍ରଣ । ଶେଷ ଥର ଦିଲ୍ଲୀ ପର୍ଯ୍ୟନ୍ତ ଯାଇ ମଧ୍ୟ ସେଠାରୁ ଲେଉଟି ଆସିବାକୁ ପଡ଼ିଛି ମୋତେ । କମ୍ୟୁନିଷ୍ଟ ରାଷ୍ଟ୍ରରେ ପାଦଦେଲେ ମୁଁ ରେଡ଼ିଓରେ ଯଦି ସେଇ କଥା ପ୍ରଚାର କରେଁ ! ସେତେବେଳେ ରେଡ଼ିଓ ଡାଇରେକ୍ଟର ଥାନ୍ତି ଶ୍ରୀ ଜଗଦୀଶଚନ୍ଦ୍ର ମାଥୁର. ଆଇ.ସି.ଏସ.; ତଥାପି ଯେତେ ଦେଶ ଦେଖିପାରିନି, ତାହା ଆଜି ମୋର ସ୍ୱପ୍ନର ସମ୍ପଦ ହୋଇଛି । ଯେତେ ବାସ୍ତବବାଦୀ ମୁଁ ହେଲେ ବି ସ୍ୱପ୍ନ ଛଡ଼ା ଯେ ସୃଷ୍ଟି ନାହିଁ !

୧୯୭୦ ଖ୍ରୀଷ୍ଟାବ୍ଦ ମଧ୍ୟ ଭାଗରେ ଅକସ୍ମାତ୍ ଉଦର-ବ୍ୟାଧିଗ୍ରସ୍ତ ହୋଇ ଯେବେ କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ ମୋର ଅସ୍ତ୍ରଚିକିତ୍ସା କରାଯାଏ, ଅଙ୍ଗେ ନିଭା ଆଉ ଏକ ଦୁର୍ଘଟଣା ତାହା ! ଜୀବନର ଆଶା କ୍ଷୀଣ ହୋଇ ପଡ଼ିଥିବା ଶୁଣେ ସୁସ୍ଥ ହୋଇ ସାରିବା ପରେ— ସେତେବେଳେ ମୋର ସ୍ୱପ୍ନ ଓ ଜାଗରଣ ଦୁଇଟାଯାକ ଅବସ୍ଥା ସମାନ ହୋଇପଡ଼େ । ବନ୍ଧୁମାନଙ୍କ ଅଯାଚିତ ସ୍ନେହ-ଶୁଭେଚ୍ଛାର ପ୍ରାଚୁର୍ଯ୍ୟରେ, ପୁଣି କବି ବନ୍ଧୁ ଶ୍ରଦ୍ଧେୟା ଶ୍ରୀମତୀ ସୀତାଦେବୀ ଖାଡ଼ଙ୍ଗାଙ୍କର ସୁପୁତ୍ର କଟକ ମେଡ଼ିକାଲ କଲେଜରେ ଅସ୍ତ୍ରଚିକିତ୍ସକ

ଶ୍ରୀ ମଧୁସୂଦନ ଖାଡ଼େଙ୍ଗା ଓ ତାଙ୍କର ସହକର୍ମୀମାନଙ୍କ ଚିକିତ୍ସା ଫଳରେ ସୁସ୍ଥ ହୋଇ ଫେରିଆସେଁ ଘରକୁ ।

ଅପରନ୍ତି ଏଇ ଆତ୍ମକଥାକୁ ଶେଷ କରିବା ପୂର୍ବରୁ ୧୯୭୨ ଆୟୋଜନ କରାଯାଏ ଆହୁରି ଏକ ସମ୍ବର୍ଦ୍ଧନା ଓଡ଼ିଶାର କବି ସାହିତ୍ୟିକମାନଙ୍କପକ୍ଷରୁ —ଉତ୍କଳ ସାହିତ୍ୟସମାଜ, ପୂଜ୍ୟ-ପୂଜା ସଂସଦଆଦି ବିଭିନ୍ନ ଅନୁଷ୍ଠାନଦ୍ୱାରା । ଆହୁରି ମୋତେ ହାଟମଝିରେ ହଟହଟାକରି ଅକାରଣ ବଳି ପକାଇବାରୁ ନିରସ୍ତ ହେବାପାଇଁ ବନ୍ଧୁମାନଙ୍କୁ ସବିନୟ ଅନୁରୋଧ କରିବା ସତ୍ତ୍ୱେ ମୋ ଦ୍ୱାରରେ ପଦଧୂଳି ଦେଇ ସେମାନେ ଆପ୍ୟାୟିତ କରିଯାନ୍ତି ମୋତେ । ଏକାମ୍ରଥିଏଟର୍ସ ପକ୍ଷରୁ ମଧ ତା'ପରେ ପୁଣି ସମ୍ବର୍ଦ୍ଧନାର ଆୟୋଜନ । ଉପସ୍ଥିତ ହେବାକୁ ଅକ୍ଷମହେଲେ ସୁଦ୍ଧା ଘରେ ଆସି ପହଞ୍ଚେ ନବବସ୍ତ୍ର ଉପଢୌକନ ।

ଏତେ ସ୍ନେହ, ଏତେ ପ୍ରାଣ ! ପ୍ରତିଦାନ ଲାଗି ସମ୍ବଳ ମୋର କାହିଁ ? ଏ ଜନ୍ମରେ ତ ସମ୍ଭବପର ନୁହେଁ—ଆଉ କେତେ ଜନ୍ମ ଜନ୍ମାନ୍ତର'- ତ ହେଲେ ? ମୁକ୍ତି ମୋର କେବେ କ'ଣ ସମ୍ଭବପର ନୁହେଁ !



# ''ଜନଗଣମନ ଅଧିନାୟକ ଜୟ ହେ''

କ୍ଷମତା-ରାଜନୀତିରୁ ଯେତିକି ଦୂରରେ ରହିବାକୁ ସ୍ୱେଚ୍ଛାରେ ମୁଁ ଲୋଡ଼ିଛି, ସେତିକ ସେ ଲାଗି ଲାଗି ଆସି ଘରେ ମୋର ପ୍ରବେଶ କରିଛି–ଦୁଆରେ ଅବା ଧକ୍କା ମାରି ଜବରଦସ୍ତି ! ଜୀବନବ୍ୟାପୀ ଏଇ ପରିସ୍ଥିତିରେ ସାହିତ୍ୟସାଧନା ମୋର ପଦେ ପଦେ ବ୍ୟାହତ ହେଲାଭଳି ବୋଧ କରୁଛି ମୁଁ । ତଥାପି ସେଇ ଧକ୍କାକୁ ରୋକିବା ପାଇଁ ଅସମର୍ଥ ହୁଏଁ,—ମୋରି ଭିତରେ ପୁଣି ବାହାରେ ଅବା ହୋଇପଡ଼େ ସେ ଅଲଙ୍ଘନୀୟ, ଅନିବାର୍ଯ୍ୟ !

ଆଦର୍ଶବାଦୀ ରୂପେ ମୋର ଚିନ୍ତା ଓ ଲେଖନୀ ରାଜନୀତିକୁ କେବେ ହେଲେ ସଂକୀର୍ଣ୍ଣ ପରିସରକୁ ଓଟାରି ଆଣି କ୍ଷମତାର ଗଣ୍ଡିଭିତରେ ସୀମିତ କରି ବିଚାରି ପାରି ନାହିଁ । କ୍ଷମତା ଲାଳସାର ବଶବର୍ତ୍ତୀ ହେଲା ଭଳି ଅକ୍ଷମତାକୁ ମୁଁ ଅସ୍ୱୀକାର କରିଛି । ଅଥବା ସେଥିଲାଗି ମୋର ଅସାମର୍ଥ୍ୟ ହେତୁ ବିଲୁଆ ବିଚାରର ମୁହଁ ଅଙ୍ଗୁରପେନ୍ଥାକୁ ନ ପାଇବାରୁ ମନବୋଧ ଚଉତିଶା ବୋଲିଛି 'ଅଙ୍ଗୁର କୋଳି ଖଟା' !

ତାହାର ଅନ୍ୟତମ କାରଣ ପୁଣି ହୁଏ ତ କ୍ଷମତା ରାଜନୀତିର ପ୍ରଲୋଭନ ପାଖରେ ଆପଣାକୁ ଉତ୍ସର୍ଗ କଲାଭଳି ଦୀନତା ମୋର ଅହମିକାକୁ ଆଘାତ କରିଛି—ଯେତେବେଳେ ସ୍ୱର୍ଗତ କନିଷ୍ଠ ଭଗବତୀ ଓ ତା'ପରେ ବଡ଼ ଝିଅ କୁନି (ନନ୍ଦିନୀ) ଓତପ୍ରୋତ ଭାବରେ ଜଡ଼ିତ ହୋଇ ପଡ଼ନ୍ତି ସକ୍ରିୟ ରାଜନୀତିରେ, ସତେ ଯେମିତି ଆଗରୁ ମୋର ବାଟ ଓଗାଳି !

କୁନି ଏବେ ଓଡ଼ିଶାର ରାଜନୀତିକୁ ଆସି ମୁଖ୍ୟମନ୍ତ୍ରୀର ଦାୟିତ୍ୱ ଗ୍ରହଣ କଲାଣି । ତହିଁରେ ମୋର ଅନୁଭୂତିକୁ ଆସେ, କ୍ଷମତା-ରାଜନୀତି ଯେମିତି ସତେ 'ମୋର କତରା ତଳରେ ମାଧୋଇ' ଭଳି ପହଞ୍ଚିଗଲାଣି । ସେଥି ସଙ୍ଗେ ଅତି ନିକଟରୁ ଓଡ଼ିଶା ରାଜନୀତିକୁ ନିରୀକ୍ଷଣ କରିବା ସୁଯୋଗ ମୋତେ ମିଳିଛି । ଓଡ଼ିଶାର କ୍ଷମତା-ରାଜନୀତି ଯେ ଗୋଟାଏ ପିଲାଖେଳ, ଆଉ କୁନି ସେଇ ପିଲାଖେଳର ଯେ ମହା ଓସ୍ତାଦ୍ ପାଲ୍‌ଟି ଗଲାଣି—ଆଜି ତାହା ନିର୍ବାଚନ ବିଜୟ ପରେ ମନ୍ତ୍ରୀମଣ୍ଡଳ ଭାଙ୍ଗିଯିବା ପର୍ଯ୍ୟନ୍ତ ପ୍ରତ୍ୟେକ ପଦକ୍ଷେପକୁ ମୁଁ ସ୍ୱାଗତ କରେଁ ପୂର୍ଣ୍ଣ ପ୍ରାଣରେ ।

ମହାତ୍ମା ଗାନ୍ଧୀ ଓଡ଼ିଶାକୁ କେବଳ ଗୋଟିଏ ଭୌଗୋଳିକ ସୀମାବିଶିଷ୍ଟ (Geographical Boundary) ରାଜ୍ୟ ରୂପେ ଅଭିହିତ କରିଥିଲେ । ଓଡ଼ିଶାର ରାଜନୀତି ଆଜି ଯେମିତି ଏହି ମୁହୂର୍ତ୍ତରେ ମୋତେ ପିଲାଖେଳ ଭଳି ଜଣାପଡ଼େ—ତାହାଠାରୁ ଯେତେବେଳେ ମୁଁ ଦୂରେଇ ରହିଥିଲି, ସେତେବେଳେ ମଧ ଏହି କାରଣରୁ ହୁଏତ ବାରମ୍ବାର ଆହୂତ ହୋଇ ଓଡ଼ିଶାର କ୍ଷମତା-ରାଜନୀତିରେ ମୁଁ ଯୋଗଦିଏଁ ନାହିଁ ।

ବୃଦ୍ଧ ବୟସରେ ପିଲାଖେଳ ଖେଳିବାଟା ଅବଶ୍ୟ ଅସମୀଚୀନ ନୁହେଁ– 'ବାଳବୃଦ୍ଧ ସମାଚରେତ୍' ଉକ୍ତି ଅନୁଯାୟୀ ବୁଢ଼ାମାନଙ୍କର ମଧ ରାଜନୀତି-ଖେଳରେ ଆଗ୍ରହ ଉତ୍ସାହ ରହିବାଟା ପୂର୍ବ ଅଭ୍ୟାସ ଦୋଷରୁ ଅସ୍ୱାଭାବିକ ନୁହେଁ । ମୋହ ପକ୍ଷରେ କିନ୍ତୁ ସେ ବାଟ ଏଣିକି ଏକାବେଳେ ବନ୍ଦ । ଯଦି ବା ମୋହଠାରୁ ବେଶି ବୁଢ଼ାମାନେ ଓଡ଼ିଶା ରାଜନୀତିରେ ଏବେ ବାହାଫୁଟୁକି ମାରିଲେଣି ତ ! ନୂଆ-ପୁରୁଣାର ଲଢ଼େଇ ଏହା !

ରାଜନୀତି, ଅର୍ଥନୀତି ଓ ସମାଜନୀତି ଯେ ଏକ ସାଥିରେ ଗତି କରିବାହିଁ ଅବଶ୍ୟମ୍ଭାବୀ—ଏହି ବିଶ୍ୱାସ ଜୀବନବ୍ୟାପୀ ମୋର ଦୃଢ଼ରୁ ଦୃଢ଼ତର ହୋଇ ପଡ଼ିଛି । ସେଥି- ସହିତ ବସ୍ତୁ-ବିଜ୍ଞାନର ନବ ନବ ପରୀକ୍ଷା ନିରୀକ୍ଷା ଓ ଆଶ୍ଚର୍ଯ୍ୟ ପ୍ରଗତି ସେଇ ବିଶ୍ୱାସକୁ କରି ପକାଇଛି ଅଟଳ, ଅବିଚଳିତ । ଆନ୍ତର୍ଜାତିକ ରାଜନୀତିର ପ୍ରଗତି ଓ ଆଭିମୁଖ୍ୟ ସୂର୍ଯ୍ୟ ଭଳି ସୁସ୍ପଷ୍ଟ । ବସ୍ତୁ-ବିଜ୍ଞାନ ନିୟନ୍ତ୍ରଣରେ ମାର୍କସ-ଏଞ୍ଜେଲ୍‌ସ-ଲେନିନ୍ ପ୍ରଦର୍ଶିତ ଅଲଙ୍ଘନୀୟ ଐତିହାସିକ ପରିଣତିର ସତ୍ୟ ଉପରେ ମଧ ପ୍ରତିଷ୍ଠିତ, ଦୁଇଟି ପୃଥିବୀ-ମହାଯୁଦ୍ଧ ଭିତରେ ଜୀବନ ଯାପନ କରି ମର୍ମେ ମର୍ମେ ତାହା ମୁଁ ଅନୁଭବ କରିଛି । ପୁଣି ସାକ୍ଷାତ୍ ପ୍ରମାଣ ପାଇଛି, ତାହାରି ଭିତରେ ବିଶ୍ୱବ୍ୟାପୀ ଏକତ୍ୱବୋଧର ଏକାଧିକ ଚାକ୍ଷୁଷ ଦୃଷ୍ଟାନ୍ତଦ୍ୱାରା ।

ପାଠ୍ୟ ପୁସ୍ତକରେ 'ବେଗହିଁ ଉନ୍ନତିର ଲକ୍ଷଣ' ଶୀର୍ଷକ ଯେଉଁ ପ୍ରବନ୍ଧଟି ଲେଖି ବହୁମୁଖରୁ ପ୍ରଶଂସା ଶୁଣିଥିଲି, ବାସ୍ତବ କ୍ଷେତ୍ରରେ ତାହାରି ଯଥାର୍ଥତା ଅନୁଭବ କରିଛି । ବସ୍ତୁ ବିଜ୍ଞାନର ଅଦ୍ଭୁତ ଉଦ୍ଭାବନ ଯେ ସମୁଦାୟ ପୃଥିବୀକୁ କ୍ଷୁଦ୍ରରୁ କ୍ଷୁଦ୍ରତର କରି ପକାଇବା ସଙ୍ଗେ ସଙ୍ଗେ ସବୁ ଜାତିଧର୍ମ ଓ ରୂପ ରଙ୍ଗର ମଣିଷଙ୍କୁ ନିକଟରୁ ନିକଟତର କରିପାରିଛି— ତାହାର ସୁଦୂରପ୍ରସାରୀ ପ୍ରଭାବ ହିଁ ଭାରତ ପୁଣି ଓଡ଼ିଶା ରାଜନୀତିକୁ ପ୍ରବଳ ଭାବରେ ପ୍ରଭାବିତ କରୁଥିବା ଅନୁଭୂତି ମୋର ଦୃଢ଼ରୁ ଦୃଢ଼ତର ହୋଇଛି ।

ଏହି ପରିପ୍ରେକ୍ଷୀରେ ସ୍ମରଣକୁ ଆସେ—ଭାରତ ସ୍ୱାଧୀନତା ଲଢ଼େଇର ସେଇ ଦୁର୍ଗମ ପଥରୁ ମୋ ଝିଅ ନନ୍ଦିନୀକୁ ନିବର୍ତ୍ତାଇବା ପାଇଁ କେତେ ଯେ ଉଦ୍ୟମ ନ କରିଛି ମୁଁ ! ମନେ ପଡ଼େ, ଯେବେ କେରଳ ରାଜ୍ୟରେ କଂଗ୍ରେସବିରୋଧୀ ରାଜନୀତିକ ମହାସଙ୍କଟ ଆସି ପହଞ୍ଚେ, ସେତେବେଳେ ଭାରତ ଜାତୀୟ କଂଗ୍ରେସର ପୁନଃ ପ୍ରତିଷ୍ଠା ଲାଗି ନେତୃତ୍ୱ ଗ୍ରହଣ କରନ୍ତି ବର୍ତ୍ତମାନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା । ଆଉ ସେଇ ବିଜୟରେ ଉତ୍‌ଫୁଲ୍ଲ ହୋଇ ପ୍ରଧାନ୍‌ମନ୍ତ୍ରୀ ନେହରୁ ଉଚ୍ଚାରଣ କରନ୍ତି— I am proud of may daughter–, I am proud of Indira'' ''ମୋ ଝିଅ ପାଇଁ ମୁଁ ଗର୍ବିତ–ଇନ୍ଦିରା ପାଇଁ ମୁଁ ଗର୍ବିତ ।''

ନେହରୁଙ୍କ ଉକ୍ତି ମୋହ ପକ୍ଷରେ ଉଦ୍ଧାର କରି ସ୍ଫୀତ ଗର୍ବିତ ହେବା ଲାଗି ପ୍ରାରମ୍ଭରୁ ହିଁ ମୁଁ ନିଜ ପାଇଁ ସକ୍ରିୟ ରାଜନୀତିର ବାଟ ବନ୍ଦ କରିସାରିଛି । ପୁଣି ମହାକବି କାଳିଦାସଙ୍କ 'ରଘୁବଂଶ' ମହାକାବ୍ୟ ବର୍ଣ୍ଣନା ପ୍ରାରମ୍ଭରେ— ''କ୍ୱ ସୂର୍ଯ୍ୟ-ପ୍ରଭବୋ ବଂଶଃ କ୍ୱ ଚାଳ୍ପଃ । ବିଷୟାମତିଃ'' ଶ୍ଳୋକଟି ସ୍ମରଣ କରି ନିଜ ହୀନମ୍ମନ୍ୟତା ପ୍ରକାଶ ଲାଗି ମୁଁ ଅବକାଶ ରଖିନାହିଁ ତ !

ଓଡ଼ିଶାରେ ଦୀର୍ଘ କାଳର ରାଜନୀତିକ ଅସ୍ଥିରତା ଓ ବିଶୃଙ୍ଖଳା ଦୂର କରିବା ଦାୟିତ୍ୱ ଶେଷରେ ନନ୍ଦିନୀ ଉପରେ ନ୍ୟସ୍ତ ହୁଏ । ସେ ତା'ର ନିର୍ବାଚନ ଲଢ଼େଇକୁ ଯିବା ଆଗରୁ ବୋଉ ପାଦତଳେ ମୁଣ୍ଡ ରଖି ଆଶୀର୍ବାଦ ଲୋଡ଼େ, ଆଉ କୁଆଡ଼େ ଆଗରେ ତା'ର ପ୍ରକାଶ କରେ ଯେ, ଆସିଲା ବାଟରେ ସେ ମନେ ମନେ ଆବୃତ୍ତି କରିଥିଲା ମୋହ ରଚିତ ''ଗାନ୍ଧାରୀର ଆଶୀର୍ବାଦ—'' ''ଜନନୀର ପଦେ ନତ କରି ଶିର ମାଗେ କୁରୁଚୂଡ଼ାମଣି''—''ଅକ୍ଷୟ ହେଉ ପୁଣ୍ୟ ଜଗତେ, ଧର୍ମର ହେଉ ଜୟ ।'' ସେମିତି ଏବେ ଥରେ ଭୁବନେଶ୍ୱର ଯିବା ବାଟରେ ତା' ମୁହଁରୁ ଶୁଣେ ମୁଁ ଉତ୍କଳମଣିଙ୍କ 'ବନ୍ଦୀର ଆତ୍ମକଥା'ରୁ ଅନେକାଂଶ । ଓଡ଼ିଆ ସାହିତ୍ୟରେ ତାହା ବାଇବ୍‌ଲ ହୋଇ ପଡ଼ିଚି ଅବା !

ଏଇ ପରିପ୍ରେକ୍ଷୀରେ ସ୍ମରଣକୁ ଆସେ— ଭାରତ-ସ୍ୱାଧୀନତା ଲଢ଼େଇର ପ୍ରାରମ୍ଭ ଯୁଗରେ ଆମେରିକାର କଲମ୍ବିଆ ଗ୍ରାମୋଫୋନ୍ କମ୍ପାନୀ ଏଜେଣ୍ଟ୍ ଦ୍ୱାରା ଅନୁରୁଦ୍ଧ ହୋଇ ନିଜ ମହୀଶୂର ଗସ୍ତ-ଅଭିଜ୍ଞତାର ଯେଉଁ ଅପୂର୍ବ ବର୍ଣ୍ଣନା ରେକର୍ଡ଼ କରିଥିଲେ ମହାତ୍ମା ଗାନ୍ଧି । ମହୀଶୂରର ସାଧାରଣ ଦୀନହୀନ ଚାଷୀଙ୍କୁ ସେ ଗୋଟିଏ ପ୍ରଶ୍ନ ପଚାରନ୍ତି "Who rules Mysore ?"— ''ମହୀଶୂରକୁ ଶାସନ କରନ୍ତି କିଏ ?'' ତହୁଁ ସେଇ କେତେକ ଲୋକଙ୍କଠାରୁ ଅତି ସହଜ ସ୍ୱରରେ ଉତ୍ତର ପାଇଥିଲେ, ଗାନ୍ଧିଜୀ, "God rules Mysore" — ''ଭଗବାନ୍ ମହୀଶୂରକୁ ଶାସନ କରନ୍ତି'' !

ନରନାରାୟଣର ଏଇ ସୁଦୃଢ଼ ବିଶ୍ୱାସ ହିଁ ଗାନ୍ଧି–ନେତୃତ୍ୱକୁ ବିଜୟଶ୍ରୀ ମଣ୍ଡିତ କରେ । ନିରକ୍ଷର ମଣିଷ ମୁହଁରୁ ଏଇ ଜବାବ ଗାନ୍ଧୀ ଚେତନାକୁ ଉଦ୍ଦୀପ୍ତ କରେ ଅକସ୍ମାତ୍ । ସେତେବେଳେ ରେଡ଼ିଓ ପୂର୍ବବର୍ତ୍ତୀ ଯୁଗରେ ଏଇ ଗ୍ରାମୋଫୋନ୍ ରେକର୍ଡ଼ଟି ମୋର ଅତି ପ୍ରିୟ ଥିଲା ବାରମ୍ବାର ଗାନ୍ଧୀଙ୍କ ସ୍ୱର ଶୁଣିବାକୁ । ଲୋକ ମୁଖରୁ ଏଇ ଉତ୍ତରଟି ପାଇ ଗାନ୍ଧୀ ଦେଖନ୍ତି ତା'ର ଅନ୍ତର୍ନିହିତ ଆଲୋକ-ଶିଖା । ଶୁଣନ୍ତି ତା'ର ବାଣୀ Inner Voice !'' ଯେଉଁ କଥାଟି

ସେ ବାରମ୍ବାର ଉଲ୍ଲେଖ କରନ୍ତି ବିଭିନ୍ନ ସମୟରେ । ମହୀଶୂର ମହାରାଜାହିଁ ଶାସକ ବୋଲି କାହିଁ ତାଙ୍କ ପ୍ରଜାଙ୍କ ମୁହଁରୁ ତ ବାହାରିଲାନି ! ଏଇ ଭାବନା ଗାନ୍ଧୀଙ୍କୁ ବିହ୍ୱଳ କରିପକାଏ । ଉଦ୍‌ଭାସିତ ହୁଏ ଅନ୍ତରାଲୋକ । ଅସମ୍ଭବ ଅଗମ୍ୟ ଭିତରେ ତାଙ୍କୁ ବାଟ ବତାଏ— ପୁଣି ସେଇ ବାଣୀହିଁ ଯୋଗାଏ ଗାନ୍ଧୀଙ୍କ ଜୀବନବ୍ୟାପୀ ଅସଂଖ୍ୟ ବ୍ୟର୍ଥତା ଭିତରେ ବିପୁଳ ଉତ୍ସାହ, ଉଦ୍ଦୀପନା,—ଅପରିସୀମ ଧୈର୍ଯ୍ୟ, ସାହସ, ପ୍ରେରଣା । ଭାରତୀୟ ରାଜନୀତିକ ଚିତ୍ରପଟରେ ସେଇ ଐତିହାସିକ ପରିଣତହିଁ ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର ଆଜି । ଗାନ୍ଧୀ ନହେଲେ ବି କିଏ ହେଲେ 'ନିମିତ୍ତ ମାତ୍ର' ହୋଇ ତାଙ୍କ ସ୍ଥାନ ପୂରଣ କରନ୍ତେ ।

ଯୁଗ-ଯୁଗବ୍ୟାପୀ ବିଧ୍ୱସ୍ତ ବିଖଣ୍ଡିତ ଭାରତବର୍ଷ ଅବଶ୍ୟମ୍ଭାବୀ ଐତିହାସିକ ସତ୍ୟ ରୂପେ ନିଶ୍ଚୟ ହୁଅନ୍ତା ପୃଥିବୀ ପୃଷ୍ଠରେ ପୁଣି ଅପରାଜେୟ ମହତୀ ଶକ୍ତି— ଅସଂଖ୍ୟ ବୈଷମ୍ୟ ବିଭେଦ—ଜାତି, ଧର୍ମ, ଭାଷା, ସମ୍ପ୍ରଦାୟ କ୍ଷେତ୍ରରେ । ତଥାପି ଭାରତ ଆଜି ଜଗତ ସଭାରେ ଶ୍ରେଷ୍ଠ ଆସନର ଅଧିକାରୀ । ଗାନ୍ଧୀ-ବିନୋବା-ନେହରୁ ନେତୃତ୍ୱରେ ଲବ୍ଧ ସେଇ ତା'ର ନ୍ୟାଯ୍ୟ ଆସନ । ତହିଁରୁ ତାକୁ ପୁଣି ହଟାଇବା ପାଇଁ ପୃଥିବୀର ସବୁ ପ୍ରତିକ୍ରିୟାଶୀଳ ଶକ୍ତି ଦେଶଭିତରେ କିମ୍ବା ବାହାରେ ଛାଏଁ ହାରି ଯେପରି ମଳିନ ନିଷ୍ପ୍ରଭ ହୋଇ ପଡୁଛନ୍ତି, ତାହାତ ଦୈନନ୍ଦିନ ଘଟଣାରେ ଆଜି ପରିଣତ ହେଲାଣି । କେଉଁ ଭାବୁକ, କେଉଁ ଲେଖକ, କେଉଁ କବି ଅବା ବାସ୍ତବବାଦୀ ଅସ୍ୱୀକାର କରିପାରିବ ତାହା !

ଜବାହରଲାଲ ଅହମଦାନଗର ବନ୍ଦିଶାଳାରେ ୧୯୪୪ରେ ଲେଖିଥିବା (Discovery of India) 'ଭାରତ-ଆବିଷ୍କାର' ଗ୍ରନ୍ଥରେ ଲେନିନ୍‌ଙ୍କ ଉକ୍ତି ଉଦ୍ଧାର କରନ୍ତି— "Man's dearest possession is life and since it is given to him to live but once he must so live as not to be scared with the shame of a cowardly and trivial past, so live as not to be tortured for years without purpose, so live that dyiing he can say— "All my life and my strength were given to the first cause of the world—the liberatkion of Mankind."

ମୁକ୍ତି ! ମଣିଷ ସମାଜର ମୁକ୍ତି ! ପୁନର୍ଜନ୍ମ ଦୁଃଖରୁ ମୁକ୍ତିଲାଗି ଆମ ଶାସ୍ତ୍ର ପୁରାଣ କାବ୍ୟ ନାଟକରେ କେତେ ଯେ ବିଚିତ୍ର ପ୍ରକାଶ । କିନ୍ତୁ ଲେନିନ୍‌ଙ୍କ ମତରେ ଗୋଟିଏ ଥରପାଇଁ ମାତ୍ର ମନୁଷ୍ୟର ଜନ୍ମ । ସେ ଜନ୍ମ ସାର୍ଥକ ହୁଏ, ମୃତ୍ୟୁବେଳେ, ଯଦି ସେ କହିପାରେ "ମୋର ମୁଦୟ ଜୀବନ ଓ ଶକ୍ତି ଦୁନିଆର ପ୍ରଥମ କର୍ତ୍ତବ୍ୟରେ ମୁଁ ଖଟାଇଛି— "ମଣିଷ ସମାଜର ମୁକ୍ତି !" ତୁଚ୍ଛ ଓ ଭୀରୁ ଅତୀତରେ ତା'ର ନିରୁଦ୍ଦେଶ୍ୟ ଲକ୍ଷ୍ୟହୀନ ଜୀବନଦ୍ୱାରା ବିବ୍ରତ ନ ହୋଇ ଅନ୍ତିମ ଜୀବନରେ ଏତିକି ମାତ୍ର କହିଲା ଭଳି ବଞ୍ଚିବା ତା'ର ଲୋଡ଼ା । ଅପଃଞ୍ଜେୟ ଅତୀତ ଦ୍ୱାରା ସେ ଯନ୍ତ୍ରଣା ନ ପାଏ ଯେପରି— ଗତାସୂନ ଗତାଃଶୂଷ୍ଚ ନାନୁ ଶୋଚନ୍ତି ପଣ୍ଡିତାଃ ।



# ଉପୋଦ୍‌ଘାତ–ଉପସଂହାର

ଦୁଇଟି ଯାକ ଶବ୍ଦର ଗୋଟିଏ ଉପସର୍ଗରେ ହିଁ ଆରମ୍ଭ ପୁଣି ଶେଷ ମଧ୍ୟ । ସେଇପରି ଉଭୟ ଶବ୍ଦର ଗୋଟିଏ ଅର୍ଥ ବୁଝାଉଥିବା ଧାତୁ ପ୍ରତ୍ୟୟ ! ତେଣୁ ଗ୍ରନ୍ଥାରମ୍ଭ, ଗ୍ରନ୍ଥ-ସମାପ୍ତି ଏକତ୍ର ବିଚାର୍ଯ୍ୟ ।

'ଉପୋଦ୍‌ଘାତ' ଶବ୍ଦଟି 'ହନ୍' ଧାତୁରୁ ଯେପରି ନିଷ୍ପନ୍ନ, ଅର୍ଥାତ୍ ମାତୃଗର୍ଭରୁ ପତନ ଘଟି ପୃଥିବୀପୃଷ୍ଠରେ ଆଘାତଦ୍ୱାରା ପିଲାଟି ଖାଲି କାନ୍ଦିଉଠେ—ଶେଷରେ ପୁଣି ଏଇ ଧରିତ୍ରୀ ତାକୁ 'ସଂହାର' କରି ନିଜ କ୍ରୋଡ଼ରେ ସ୍ଥାନ ଦିଅନ୍ତି । ଦୁଇଟି ମଧ୍ୟରେ ଫରକ କେବଳ ଅଚିରସ୍ଥାୟୀ ଏ ଜୀବନ । ଏହି ମଧ୍ୟବର୍ତ୍ତୀକାଳୀନ ପରିସର ଭିତରେ ସୁଦ୍ଧା ପଦେ ପଦେ ଆଘାତ, ପଦେ ପଦେ ବ୍ୟର୍ଥତା—ଉତ୍‌ଥାନ ପୁଣି ପତନ । କେଉଁଠି କେବେ ଫାଙ୍କଭିତରେ ସୁଖ ଅବା ସାର୍ଥକତା ଭଳି ଛାବୁଡ଼ି ଧରିବାକୁ ଯାହାକୁ ଯାଏଁ, ସେ ଯେମିତି ଖସିପଳାଏ ହାତ ମୁଠାରୁ ମୋର ଅତି ସହଜରେ ଫଟାଇ ଦେଇ । ସୁଖ ବା ସାର୍ଥକତା ବୋଲି ଯାହାକୁ ବିଚାରେଁ, ପର ମୁହୂର୍ତ୍ତରେ ତାହାହିଁ ହୋଇପଡ଼େ ବ୍ୟର୍ଥତାରେ ପରିଣତ ।

ତଥାପି କାହିଁ ଆତ୍ମ-ଜୀବନୀକୁ ତ ମୋର ସାରିହେଲା ନାହିଁ ! – ପଦେ ପଦେ ଆଘାତ ଓ ସଂହାର କରି ମଧ୍ୟ ଚିନ୍ତା ଓ କର୍ମର ଦ୍ୱନ୍ଦ୍ୱ ଭିତରେ ! ଯେତେ ବୁଝାଇଲେ ମନ ବୁଝେନି । ଆରମ୍ଭରୁ ତ ଆଘାତ, ଶେଷରେ ପୁଣି ସଂହାର ! ଖାଲି ତ ଲଢ଼େଇ, ଅନବରତ ଯୁଦ୍ଧ–ତହିଁରେ ଭାଇ ବନ୍ଧୁ କୁଟୁମ୍ବ ଜାତି ଧର୍ମର ବାଛବିଚାର କିଛି ଯେପରି କେଉଁଠି ନାହିଁ— ଯେତେ ଶେଷ କରିବାକୁ ଲୋଡ଼ିଲେ ବି କାହିଁ ଏହି ସଂହାର ମଧ୍ୟ ସରେ ନାହିଁ । ଆଘାତ ଦେଇ ଆଘାତ ପାଇବାଟା ଜୀବନର ପ୍ରାରମ୍ଭରୁ ପୁଣି ସଂହାର ଯେମିତି ସର୍ବଶେଷରେ; ଅଥଚ ସବୁ ଦାଗ କାହିଁ ପୁଣି ନିଭିଯାଏ, ଏଇ ଅଙ୍ଗରେ ମୋର ଚଳଚ୍ଚିତ୍ରର ପର୍ଦ୍ଦାଭଳି ତ ! ବାପାଙ୍କର ପ୍ରୟାଣ କାଳର ଚିତ୍ର ଆଖି ଆଗରେ ପୁଣି ଭାସିଯାଏ । ଦୀର୍ଘ ଦିନ ସେ ପ୍ରାୟ ବିନିଦ୍ର ହୋଇ ବସି ରହନ୍ତି । ପ୍ରବୀଣ ହୋମିଓପ୍ୟାଥିକ୍ ଡାକ୍ତର ସାତକଡ଼ିବାବୁ ବାପାଙ୍କୁ ଦେଖି ଆସି ତାଙ୍କଠାରୁ ଶୁଣନ୍ତି— ''ସଂସାର ପରିବାର ସାତକଡ଼ିବାବୁ ! ସବୁ ଦେଖିଲି, ଅନୁଭବ କଲି,—କିନ୍ତୁ ଜୀବନଟାକୁ ଏବେ ପୁଣି ଛାବୁଡ଼ି ଧରିଛି ! ନଇଲେ ତାହା ଅନେକ ଆଗରୁ ବାହାରି ଯାଇ ସାରନ୍ତାଣି ।'' ସଶ୍ରଦ୍ଧ ହସ ହସି ସାତକଡ଼ିବାବୁ କୋମଳ ସ୍ୱରରେ ପଚାରନ୍ତି– କାହିଁକି ତା'ହେଲେ ? ଆଉ କ'ଣ ବାକି ରହିଲାକି ?''

''ହଁ ବାକି ରହିଗଲା–ଅନେକ–ଅ-ନେ-କ !''

''ଅ-ନେ-କ ?'' ସାତକଡ଼ିବାବୁଙ୍କ ଔତ୍ସୁକ୍ୟ ବହୁଗୁଣିତ ହୋଇପଡ଼େ । ସସ୍ନେହ କରୁଣ ହାସ୍ୟ ଉଙ୍କିଉଠେ ତାଙ୍କ ବିଶାଳ ମୁଖମଣ୍ଡଳର ଅଧର ପ୍ରାନ୍ତରେ !

''ହଁ, ହଁ—ଆଉ ଟିକିଏ ଦେଖିବାକୁ ଇଚ୍ଛା, ଭୋଗିବାକୁ ଇଚ୍ଛା,– ଆଉ ଟିକିଏ ଦୁଃଖ, ଆଉ ଟିକିଏ ସୁଖ !''

ମୁଁ ଜାଣେ,– ମୋର ମଧ ବାପାଙ୍କ ଭଳି ପୁଣି ଏଇ ଦୁନିଆର ସବୁ ମଣିଷଙ୍କ ଭଳି ସଂସାର ଦେଖା କେବେହେଲେ ସରିବ ନି ଆଉ ! ମୁଁ ବି କେବେ ହେଲେ ସରିଯିବିନି— ଯଦି ବା ମୋର ଅଙ୍ଗେନିଭାଇବା କଥା ଗୁଡ଼ା ଏବେ ସରିଗଲାଣି—ଆଉ ଯାହା ବାକି ରହିଛି, ସେମିତି ଅଳ୍ପ ଦିନେ ବଦଳି ଯିବା—ତୁଚ୍ଛା ଧୂଳି ପାଉଁଶ ହୋଇ । ସେ ପାଉଁଶ ପୁଣି ମୋର କି କେବଳ ଏଇ ଦେହଟାକୁ ମୋର ଜାଳି ଦେଇଥିବା ଛଖଣ୍ଡି ମାତ୍ର କାଠର–ତାହା ବାରିବାର ଉପାୟ ବି ନ ଥିବ ତ !

ଦୁନିଆଁ'କୁ ଆସି ପୁଣି ଦେଖିଲି ଅବା ମୁଁ କଣ ? କେତେ ବିଶାଳ ଭୂଖଣ୍ଡ–କେତେ ନଈ, ପର୍ବତ, ହ୍ରଦ, ଅରଣ୍ୟ–କେତେ ପଶୁପକ୍ଷୀ ଜୀବଜନ୍ତୁ କୀଟ ପତଙ୍ଗ ସହିତ କେତେ ଯେ ମଣିଷ ଅଚିହ୍ନା ହୋଇ ଦେଶ ବିଦେଶରେ ରହିଗଲେ ମୋର !— କେତେ ଯେ ବନ୍ଧୁ, କେତେ ଯେ ଶତ୍ରୁ ଆହୁରି ! ତାଙ୍କର ସହସ୍ର ରଙ୍ଗ, ସହସ୍ର ଢଙ୍ଗ ଭାଷା ବ୍ୟବହାର ସହ ପ୍ରତି ମଣିଷ ସାଥିରେ ତ ମୋର ଦେଖା ଚାହାଁ ଚିହ୍ନା ପରିଚୟ ହୋଇ ପାରିଲାନି କାହିଁ !

ଉପସଂହାରରେ କାହାରିକି ଆଉତ ଖୋଜି ପାଉନାହିଁ ପରା ସଂହାର କରିବା ପାଇଁ ! ଉପୋଦ୍‌ଘାତରେ ଯେମିତି ନିଜକୁ କେବଳ ସୁପ୍ରତିଷ୍ଠିତ କରିବା ପାଇଁ ଅନେକ ଦୋଷ, ଅସଂଖ୍ୟ ଭୁଲ ତ୍ରୁଟି ମୋର କେତେ ଯେ ଜଣା ଅଜଣାରେ ଲୁଚି ଛପି ରହିଗଲା ! କୌଣସି ଆଘାତରେ କାହିଁ ସେଗୁଡ଼ିକ ପଦାରେ ପକାଇବା ତ ସମ୍ଭବପର ହେଲା ନାହିଁ ! କେତେ ବଂଧୁଙ୍କର ଅମୂଲ୍ୟ ସ୍ନେହୀ ସଭାବର କିମ୍ୱା କେତେ ଶତ୍ରୁଙ୍କ ଆଘାତରେ ପ୍ରତିଘାତ ! କାମ-କ୍ରୋଧ-ଲୋଭ-ମୋହ-ମଦ-ମାତ୍ସର୍ଯ୍ୟ ଷଡ଼ରିପୁର ମୋହ ଉପରେ ବିଜୟର କେତେ ଘଟଣା ବା ଦୁର୍ଘଟଣା !

ଜୀବନ-ଯୁଦ୍ଧ ! ସେ ଲଢ଼େଇ ଯେ ଭୂମିଷ୍ଠ ହେବାକାଳରୁ ଆରମ୍ଭ କରି ପୁଣି ଭୂମିଷ୍ଠ ହୋଇ ନିଃଶେଷ ହେବା ପର୍ଯ୍ୟନ୍ତ—କେତେ ଅପୂର୍ଣ୍ଣ ଆଶାର ଅବଶୋଷ–କେତେ ସମ୍ପୂର୍ଣ୍ଣ କାର୍ଯ୍ୟର ନୈରାଶ୍ୟ । କେତେ ହଜାଇବା ଅବା ମଜାଇବାରେ କୌଶଳ ସତେ ଏ ଜୀବନ ! କେଉଁ ସଂଜ୍ଞା ଯେ ଦୁନିଆର ଭାଷାକୋଷରେ, ନିହିତ ଯାହା, ଆଦୌ ପ୍ରଯୁଜ୍ୟ ନୁହେଁ ଏଇ ମୋର ଜୀବନ ପ୍ରତି ! ଲେଖିଲା ବେଳେ ସଂଶୟ ମଧ ଜାତ ହୁଏ— ଏହା କେବଳ ମୋର କି ଆଉ କାହାର ଜୀବନୀ ନୁହେଁ ତ ! ସବୁ ପ୍ରକାଶ୍ୟ ଓ ଅପ୍ରକାଶ୍ୟ ଘଟଣାବଳୀ ସମେତ !

ଅଙ୍ଗେ ନିଭାଇବା ସବୁ ଘଟଣା ସବୁ ଭାଷା, ସବୁ ବିଜ୍ଞାନ ଦର୍ଶନ ସବୁ ସାହିତ୍ୟ,ସମସ୍ତ ଉଦ୍ୟମ ନିରୁଦ୍ୟମ, ପରୀକ୍ଷା-ନିରୀକ୍ଷା, ହସ କାନ୍ଦ, ସାର୍ଥକତା ବ୍ୟର୍ଥତା— କ'ଣ ଏକା ମୋରି ନା ଯାହାଙ୍କ ଭିତରେ ଚଳିଲି ଖେଳିଲି, ବଢ଼ିଲି, ବୁଢ଼ିଲି, ପଢ଼ିଲି, ସେଇ ସବୁ ମଣିଷ— ଜୀବଜନ୍ତୁ ଜଡ଼ ପ୍ରକୃତିର ! ଜୀବନ ନିଭିଲେ ସବୁ ଆଲୁଅ ସବୁ ଅନ୍ଧାର ଯେ ନିଭିଯାଏ କେଉଁ ସୀମାହୀନ ସମୟର ଗଣ୍ଡିଭିତରେ—ସମୟ ! ମହାକାଳ— ! ଉପୋଦ୍‌ଘାତ-ଉପସଂହାର ! ମଧବର୍ତ୍ତୀ ଫାଙ୍କ ଭିତରେ କେତେ ପ୍ରିୟଜନଙ୍କ ନାମୋଲ୍ଲେଖ ନ କଲା ଭଳି ମହା ଅପରାଧ ଅର୍ଜନ କରିଛି । କେତେ ଅହେତୁକ ଉପକାର ସ୍ୱୀକାର କରିବାକୁ ପାସୋରି ଦେଇ ବହୁ ଗୁଣରେ ହୋଇଛି ଅପରାଧୀ । କାହିଁ ବା କେଉଁଠି ତା'ର କ୍ଷମା !

ଅସୀମ ଏଇ ମହାକାଳ ବକ୍ଷରେ କୋଟି କୋଟି ଅଗଣିତ ଜୀବଜଗତରେ ଅହରହ ସଂଗ୍ରାମ—ଅନ୍ତିମ ଲକ୍ଷ୍ୟ ଯାହାର ଜୀବନକୁ ଜାବୁଡ଼ି ଧରି ରଖିବା—ଚିରକାଳ ପାଇଁ । କାରଣ

ଯାହାର ଆତ୍ମବିଶ୍ୱାସର ଅଭାବ । ମୃତ୍ୟୁପରେ ସୁଦ୍ଧା ଆତ୍ମା ଅମର ବୋଲି ବାରମ୍ବାର ଶୁଣିଲେ ପଢ଼ିଲେ ବି କାହିଁ ମିଳେ ଅବା ଆତ୍ମଦର୍ଶନ ? କେଉଁଠାରେ ତାହା ସମ୍ଭବପର ଦେହଧର୍ମୀ, ଦେହସର୍ବସ୍ୱ ମଣିଷର ? ଯାହା ପୁଣି ଅବ୍ୟକ୍ତ ଅଚିନ୍ତନୀୟ ! ଯେତେ ଚିହ୍ନିଲି, ଯେତେ ଦେଖିଲି, ଶୁଣିଲି, ବୁଝିଲି—ତଥାପି ବାକିଯେ ରହିଗଲା ଅନେକ–ଅନେକ । ସେ ବାକୀ ଖାତା କେବେ କେଉଁଠି ପୂରଣ ହୁଏ ? କେଉଁଠି ?

ଯେଉଁ ପାରିବାରିକ ବେଷ୍ଟନୀ ଭିତରେ ଜନ୍ମଲାଭ କରି ମୁଁ ବଢ଼ି ଆସିଲି, ତାହା ଯେ ଏକ ବିରାଟ ଅର୍ଗଳଶୂନ୍ୟ ଭାବପ୍ରବଣତାର ମୂର୍ତ୍ତିମନ୍ତ ପ୍ରକାଶ ! ସେଇ ବେଷ୍ଟନୀର ବାହାରେ ରହିଥିବା ମଣିଷସମାଜରୁ ଅବା ତାହା ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ମୋର ଜନ୍ମ ଓ ବାଲ୍ୟ ଜୀବନର ଗ୍ରାମ୍ୟ ପଡ଼ୋଶୀ ପରିବେଶ ଭିତରୁ ଆମ ପରିବାର ଯେମିତି ଏଇ ଦୋଷ କିମ୍ବା ଗୁଣ ଯୋଗୁଁ ସ୍ୱତନ୍ତ୍ର ହୋଇ ପଡ଼ିଥିଲୁଁ । ଗାଁ ଛାଡ଼ି ସହରକୁ ଆସି ଅଜଣା ଅଶୁଣା ଯେତେ ଆମର ଜଣା ଶୁଣା ହେଲେ ହେଁ ପାରିବାରିକ ଏଇ ଦୋଷ ବା ଗୁଣରୁ କେହି ଯେମିତି ଆମେ ଆଜି ସୁଦ୍ଧା ମୁକ୍ତ ହୋଇ ପାରିଲୁଁ ନାହିଁ ।

ମୁକ୍ତ ହେବାର ଉଦ୍ୟମ ଅବଶ୍ୟ ଏ କ୍ଷେତ୍ରରେ ଆଉ କେହି କରିଥିଲା ଭଳି ମୋର ତ ମନେ ପଡୁନି, ଏକମାତ୍ର ବୋଧହୁଏ ମୋହରି ବ୍ୟତୀତ ! ମୁହିଁ ବୋଧହୁଏ ବଂଶପରମ୍ପରାର ବ୍ୟତିକ୍ରମ । ତଥାପି ମୁଁ ଅଳ୍ପ କଥାରେ ପୁଣି ସାମାନ୍ୟ କାରଣରୁ କାନ୍ଦେ, ହସେଁ ଓ କ୍ରୁଦ୍ଧ ହୁଏଁ ବୋଲି ଘରେ ବାହାରେ ଯେମିତି ମୋତେ ସମସ୍ତେ ଚେତାଇ ଦିଅନ୍ତି, ମୁଁ ବି ସେମିତି ଅନୁଭବ କରେ ନିବିଡ଼ ଭାବରେ । ପାଗଳାମି ଭଳି କେତେ ବ୍ୟାଧି ଯେପରି ବଂଶାନୁକ୍ରମିକ, ଏହା ବୋଧହୁଏ ସେଇପରି ।

ହୋସ୍ ଆସିବା କାଳରୁ ଯେମିତି ବା ଡାହାଣ ଦି’ ହାତରେ ମୁଁ ରାଜନୀତି ଆଉ ସାହିତ୍ୟ ଯଥାକ୍ରମେ ଧରି ଚାଲିଛି । କେବେହେଲେ ହାତ ବଦଳାଇ ନାହିଁ । ଅର୍ଥାତ୍ ଡାହାଣ ହାତରେ ରାଜନୀତିକୁ ଧରି ସାହିତ୍ୟକୁ ବାଁ ହାତରେ ରଖିନି ହେତୁ ହେବାଠାରୁ ଆଜିଯାକେ । ପୁଣି ଏହା ମୁଁ ଜାଣି ଶୁଣି କରିଛି କିମ୍ବା ଅବସ୍ଥାଚକ୍ରରେ ପଡ଼ି ବାଧ ହୋଇଛି ? ବୋଧ ହୁଏ ଶେଷ କଥାଟା ହିଁ ଠିକ୍ ।

ଭାରତୀୟ ରାଜନୀତିରେ ଜାତୀୟ କଂଗ୍ରେସ ଯେପରି ମୋର ଆବାଲ୍ୟ ଆଦର୍ଶ, ସେଇପରି ଗାନ୍ଧୀ—ନେହରୁ—ଶାସ୍ତ୍ରୀ—ଇନ୍ଦିରାଙ୍କ ନେତୃତ୍ୱରେ ମୁଁ ଅନୁପ୍ରାଣିତ । ଶ୍ରୀମଦ୍ ଭଗବଦ୍ ଗୀତାରେ ମହାଭାରତ ଯୁଦ୍ଧକୁ ଅହିଂସାର ମହତ୍ତମ ଆଦର୍ଶରୂପେ ଗାନ୍ଧୀ—ବିନୋବା ଗ୍ରହଣ କରିଛନ୍ତି । ମୁଁ ତହିଁରେ ସମ୍ପୂର୍ଣ୍ଣ ବିଶ୍ୱାସୀ । କେବଳ ସେତିକି ନୁହେଁ,—ମୋର ଦୃଢ଼ ପ୍ରତ୍ୟୟ ଯେ, ଆଧୁନିକ ରୁଷ୍‌ର ଜନ୍ମଦାତା ଲେନିନ୍‌ଙ୍କ ସାମନ୍ତବାଦ ସମେତ ପୁଞ୍ଜିବାଦର ଉନ୍ମୂଳନ (Extermination) ତଥ୍ୟର ନିକଟତମ ମେଳ ରହିଛି ମହାଭାରତ ଯୁଦ୍ଧର ଅହିଂସା ଗୀତା-ଧର୍ମ ସହିତ–ବୁଦ୍ଧଦେବଙ୍କ ଅହିଂସା ସହିତ, ଯିଶୁଙ୍କ କ୍ଷମା ଧର୍ମ ଓ ଶ୍ରୀ ଚୈତନ୍ୟଙ୍କ ପ୍ରେମଧର୍ମର ମୌଳିକ ସାମଞ୍ଜସ୍ୟ ଭଳି । ସମୂହର ହିତପାଇଁ ସକଳ ଉପାୟ ହିଁ ଧର୍ମସମ୍ମତ, ନ୍ୟାୟସଙ୍ଗତ ପୁଣି ଅହିଂସା ନ ହୋଇ ଆଉ କିଛି ହୋଇ ନ ପାରେ—ସର୍ବେ ଭବନ୍ତୁ ସୁଖୀନଃ ସର୍ବେ ସନ୍ତୁ ନିରାମୟାଃ ।

ଶେଷରେ ମୋର ପୁଣି ସେଇ ପ୍ରାଥମିକ କବିତାଟି ସତ୍ୟ ହୋଇ ଉଠୁଛି ବାରମ୍ବାର ଯେମିତି—ଯେଉଁ କବିତାକୁ ସୁବିଖ୍ୟାତ 'ଉତ୍କଳ ସାହିତ୍ୟ' ପତ୍ରିକାର ଧର୍ମପ୍ରାଣ ସମ୍ପାଦକଙ୍କ ନିକଟକୁ ବାରମ୍ବାର ମୁଁ ପଠାଇ ସୁଦ୍ଧା ତାହା ପ୍ରକାଶ ପାଏ ନାହିଁ ପ୍ରାଣକୁ ମୋର ଅସୀମ ହତାଶାରେ ଭରି ଦେଇ—

''ଏକାକୀ ପଥରେ ମୁଁ
ଏକାକୀ ପଥରେ !''

ଚରମ ସହାୟହୀନ ହତାଶାର ଏଇ ଗୀତ ଅବା ଏକ ବିରୋଧାଭାଷର ପ୍ରଭାବରେ ଅପରିସୀମ ଶକ୍ତି ସଞ୍ଚାର କରିଛି ପ୍ରାଣରେ ମୋର ! ଧ୍ୱନିତ ହେବାକୁ ଲୋଡ଼ିଛି ଗୋଟିଏ କଣ୍ଠରେ କୋଟି କୋଟି ସ୍ୱର— ନିଜକୁ ଯେମିତି ଖୋଜି ପାଇଛି ମୁଁ କୋଟି କୋଟି ନିପୀଡ଼ିତ ନିର୍ଯ୍ୟାତିତ ନିଷ୍ପେଷିତ ମଣିଷ ଭିତରେ । ମୋହରି ସାଥିରେ ଚାଲେ ଯେଉଁ ଶତସହସ୍ର ଅଗଣିତ ମଣିଷର ରୋଶଣି । ପଥରେ ମୋର କେତେ ଯେ ଗଡ଼ାଣି ଉଠାଣି ତଥାପି ଆହୁରି ବ୍ୟର୍ଥତା ସତ୍ତ୍ୱେ ଆହୁରି ଅନେକ ପୁଲକ, ସ୍ପନ୍ଦନ ! ଆହୁରି ଅନେକ ! – ଅନେକ !



## ପରିଶିଷ୍ଟ

# କମ୍ରେଡ଼ ଶ୍ରୀ ରାମକୃଷ୍ଣ ପତିଙ୍କ ଦୃଷ୍ଟିରେ ମୋର ସାହିତ୍ୟ ମୂଲ୍ୟାୟନ

ଶ୍ରେଷ୍ଠ କମ୍ୟୁନିଷ୍ଟ ନେତା ଶ୍ରୀ ପୂରଣଚନ୍ଦ୍ର ଯୋଷୀଙ୍କ ସମ୍ପାଦନାରେ ପ୍ରକାଶିତ 'ଜନ ଯୁଦ୍ଧ' (People's War) ଇଂରାଜୀ ପତ୍ରିକାର ୧୯୪୫ ଖ୍ରୀଷ୍ଟାବ୍ଦ ଜୁନ୍ ୧୭ ତାରିଖ ସଂଖ୍ୟାରେ ଓଡ଼ିଶାର ପ୍ରବୀଣ କମ୍ୟୁନିଷ୍ଟ ନେତା ଓ ସାହିତ୍ୟ-ସମାଲୋଚକ ଶ୍ରୀରାମକୃଷ୍ଣ ପତି ମୋହ ସହିତ ସାକ୍ଷାତ୍ କରି ଏକ ନିବନ୍ଧ ପ୍ରକାଶ କରନ୍ତି । ଆଜିକି ୨୮ ବର୍ଷ ପୂର୍ବେ ସୂତାହାଟ 'ଭାରତୀ ତପୋବନ' ଘରଟିରେ ଏଇ ସ୍ମରଣୀୟ ସାକ୍ଷାତ୍କାର ସ୍ମୃତି ଆଜି ମଧ୍ୟ ରାମକୃଷ୍ଣବାବୁଙ୍କ ସହିତ ଜୀବନ୍ତ ବାସ୍ତବ ରୂପେ ମୋହ ସାମ୍ନାରେ ଭାସି ଉଠୁଚି ଅବିକଳ । ଭାରତ-ସ୍ୱାଧୀନତା ପୂର୍ବର ଏହି ସାକ୍ଷାତ୍କାର ନିବନ୍ଧଟି ବର୍ତ୍ତମାନ ମୋର ହସ୍ତଗତ ହୁଏ 'ଅମୃତବଜାର ପତ୍ରିକା'ର ତତ୍କାଳୀନ ଓଡ଼ିଶା-ପ୍ରତିନିଧି ଶ୍ରୀଯୁକ୍ତ ସଚିନ୍ ଦତ୍ତଙ୍କ ସହୃଦୟତାରୁ ଆକସ୍ମିକ ଭାବରେ । ସେଇ ତାରିଖ 'People's War' ପତ୍ରିକାରୁ ଲେଖାଟିକି କାଟି ସେ ରଖିଥିଲେ । ଏହି ଘଟଣା ମୋର ସ୍ୱାଭାବିକ ବିସ୍ମୟ ଉଦ୍ରେକ କରିବା ସଙ୍ଗେ ସଙ୍ଗେ ସଚିନ୍‌ବାବୁଙ୍କ ବନ୍ଧୁପ୍ରୀତିର ନିଦର୍ଶନ ରୂପେ ଅବିସ୍ମରଣୀୟ ।

ଭାରତ ସ୍ୱାଧୀନତା ପୂର୍ବରୁ ଶ୍ରଦ୍ଧେୟ କମ୍ରେଡ୍ ଶ୍ରୀରାମକୃଷ୍ଣ ପତିଙ୍କ ମୂଲ୍ୟାୟନ ଗଭୀର କୃତଜ୍ଞତା ସହ ଉଦ୍ଧାର କରୁଛି ମୂଳ ଇଂରାଜୀ ଓ ତାହାର ଓଡ଼ିଆ ରୂପାନ୍ତର ସହିତ ।

<u>**"People's War" June 17th 1945.**</u>

# Foremost Living Oriya Literature

## Kalindi Charana Panigrahi

*By*

*Ramakrishna Pati*

The modern renaissance in Oriya literature was ushered in with Radhanath, the foremost poet of the late eighties of the 19th century. He can be characterised as a poet of the Romantic Age in Oriya literature.

With him dawned a new era, giving new life to the literary world after the Bhanja Age. Nature was his theme. The beauty of the nature, the unalloyed happiness that nature exhibited reminded him of the sorrows and mystries that are latent in human society. The sordid aspects of life were too much for him and he eagerly wanted to escape from the society of his day to the bosom of nature. No remedy could be suggest, no way could he point out to better the drab and dull life.

**FAKIRMOHAN'S LEGACY**

But Fakirmohan, the first and the foremost novelist of that age was the first to pointout the vices that had crept into society and had gradually overpowered it. He narrates the meanness and prejudices of village-folk, the unscrupulousness of village *Mamlatkars* (Touts), their selfish designs, crooked manoeuvres and the daily growing corruption of simple rurual life. His descriptions are real and he writes in a style most living and inimitable, hitherto unknown in Oriya literature.

His famous books *Mamu* (Maternal Uncle) and *Prayaschitta* (Repentance) were translated long ago into Hindi.

Fakirmohan goes a little further than Radhanath in bringing out in vivid colours and boldness how ignorance has gripped the masses, how the rich and the shrewd few oppress the rest. He voiced the feeling of the intelligentia with bitter sarcasm for so-called civilization and hatred for the oppressors. His works appealed because the facts were real and bore the stamp of rationality.

But they lived and wrote at the end of the 19th century and the beginning of the 20th. The change in feudal society was very slow; education confined to a few, the external influence meagre; naturally, therefore, the productions of both Radhanath and Fakirmohan could not break through the shell of naturalistic romanticism in the case of the former and social rationalism in the case of the latter.

## KALINDI-POET OF PROGRESS

But Kalindi did not rest in only rationalizing the facts nor was he content in exposing only the vices and prejudices that are abundantly prevalent in a feudal society. Though he followed the legacy of the noble tradition that Radhanath and Fakirmohan had left and this being the link between the old and the new – he was quick to understand the volatile changes that were daily taking place in society. He did not grope in the dark in helplessness to find out what was happening to society, and to the world at large.

He is neither an visionary nor an utopian evangelist. Realist as he is, the silent yearnings of the down-trodden human heart find expression in his writings. His poem *"Baji Rout"* did not only ignite the dormant feelings of revolt against oppression, black reaction and despicable feudalism but immortalised *'Baji Rout'*, the martyr hero (12 to 13 years of age) of the historic Dhenkanal (a feudatory state in Orissa) movement (1938) by taking the story of his patriotism into every nook and corner of Orissa.

Kalindi is a man of the earth. Everything earthly is dear to him. So he knows only himself, his dear and near ones and the society in which he lives. Thus he sings of them, their woes and sufferings, joys and sorrows. According to the poet himself, his philosophy, rather his outlook on life is contained in the poem *"Puri Mandir"* (Puri Temple). Therein addressing the 'dumb God' he says,—

'Nothing is dearer than the present life– the people around, with their joys and sorrows, miseries and happiness. The affections of the mother, the blessings of the father, the love of wife and what is more, the love of society in its entierity–these are more celestial than the imaginary heavens'.

In another stanza he proclaims that it :

'Does not matter it I am considered an atheist because I do not beg salvation of you; still I bow before thee because thou, the great monument of human skill and art, speak volumes of human sacrifices, miseries and tragedies, that have no parallel in history, I still hear from around you the piteous wailings of thousands of young ladies who have either lost their husbands or sons'

The whole theme of the poem is a revolt against the sentimental tradition of the feudal society which exploits the masses in the name of God and turns a deaf ear to the wailings of the oppressed and the down-trodden have-nots. It is these tortured souls who are the real gods that can turn the world into an elysian field. He is not a dreamer, nor ethereal like Shelley, wishfully thinking to see 'spring' coming automatically after 'winter'

He boldly asserts in one of his latest poems *Agami* (that which is comming), published in *Sahakar*, an Oriya monthly, towards, the end of 1943, that a newer and fuller society is coming into being. It is comming through bitter fighting and the conscious efforts of the unfed and the famishe, the exhausted and the exploited. The enemies of progress are dying. Here, in such a society, human values will really be properly evaluated, the integrity of status and interest on the basis of common goodwill, maintained. This is the society of which he sings, the spciety where human happiness would spring from solid reality.

## NOVELIST–VOICE OF OUR ERA

Kalindi is not only known as the greatest poet of the times, but the greatest novelist of the age. He is both respected and loved by the old and the new. Under his placid appearance, there is not the impatience of youth, but the burning fire of the oppressed, the enthusiasm of the patriot. Fakirmohan's national outlook coming through the spread of education and science, rebelled against the stupor and ignorance of the masses, on the one hand, and the vile corruption of the privileged few, on the other. But Kalindi felt in the people the urge for freedom, heard the indignant voice of those ground trodden.

Fakirmohan came out of a middle class family, but when ? Before 1900, and hence he only voiced the prevalent sentiments of the intelligentia. Kalindi also came out of a middle class Oriya family of the Puri district, but when ? After 1900. He was born in 1901. So when a new era was dawning, he was also growing accordingly. The changing times, the great impact of the national upsurge, the new civilization in Russia–these had a great impact on him.

## AGAINST FEUDAL OPPRESSION

Thus in his novels it comes out markedly that he feels most acutely the feudal oppression and thinks correctly that the economic structure of feudal society is at the bottom of human misery.

Kalindi produces *'Matir Manisa'* (Man of Soil) in 1931, the greatest novel yet produced in Oriya literature.

This book electrified the literary world of Orissa and so far has been the best-seller. Its theme is the fight against feudal society, the revolt against evil but these through forbearance and sacrifice. The hero *'Baraju Padhan'*, the symbol of sacrifice, fights against all sorts of selfish instincts of the village folk, and also against the intrigueing exploiters like the village *Mahajans*, through self-immolation. At last he, with his wife and baby son, leave their house and property in favour of his younger brother and live in another village. A new life begins

The national movement of the day in India had a great influence over the author–the undertone of the book is Gandhian.

*Amarchita* (the Pyre Immortal) and *Muktagadar Khyudha* ( The Hunger of Muktagada) – these two volumes from one story and were published in 1933. They depict the 1866 famine in the context of the 1932 social setting. The author becomes more conscious of social changes and their causes. The two volumes show the struggle between the two opposite forces—the two classes the peasantry and the feudal *zamindars*.

Here the author has shown however deepening famine has brought in its trail, object moral degeneration and the gradual decadence of the peasantry. *'Sanatan'*, the real hero of the novel, fights against the local hoarder and tyrant on behalf of the famished people. Unheard of cruelty and oppression and the moral travesties of the tyrant drive *Sanatan* to maddening anger. He kills the tyrant, presents himself before the court. *Sanatan* is excuted. A Gandhian current, though subdued, runs throughout the book.

**GRAPS OF SOCIAL CHANGE**

The novel, *Luhar Manisa*, is still in manuscript. It completes the process of transformation. From 1932 until to-day society had undergone dynamic changes. The decay of feudal soceity, the concentration of land in the hands of the propertied class, capitalistc society shooting up, village economy going to pieces, and thus the poor peasant from agriculture takes to the machine and works in the factory—all these developments have been very beautifully woen in this novel.

The hero, *Baraju Padhan*, of *Matir Manisa* (Man of the Earth becomes the hero of *Luhar Mania* (Machine Man). In other words, the man of agriculture becomes the man of the factory. Though there is a wide gap of fourteen long years between the two volumes, it was a period of flux when the author was imbibing the shape of the growing society and its growing contradictions, with new ways and new interests emerging out of it.

In *Matir Manisa, Baraju* fought against feudal society and all its evils through sacrifice in the Gandhian way. Here in this book *Luhar Manisa*, he courts imprisonment during the national movement and in jail much hard thinking and the bitter experiences outside, make him change his outlook. He works in a factory and at once fights against the capitalistic society and factory bosses, not through *Satyagraha* but proletarian organisation. His son becomes at last the leader of the workers' organisation with a strong conviction to end the epoch of misery through stuggle against capitalism.

This shows how scientifically Kalindi evaluates the progress of change and himself marches with it. He has revolutionised Oriya literature both in manner of exposition and content.

He is not only a poet and novelist, but a play-wright and eassyist too. In every branch of literature his position remains unassailed.

**LOVER OF SOVIET**

One would every much like to know about Kalindi's attitude towards international politics, great literary personage and exponent of realism as he is.

As late as 1936 when the Soviet did not loom large before the public, rather anti-Soviet feeling was being fostered through British and re-actionary circles, *Kalindi* was the first intellectual to declare in his presidential address in a literary conference that a new civilisation is developing in the once barbarous country, Russia. It is now a vast laboratory of experiment on humanity, where the imaginary heaven is in process of being made real.

That was in the distant past. But the other day in his presidential address, at the inagural meeting of the Friends of the Soviet Union, held on 24th Novemebr 1944, he said—

"The Soviet is being bracketed as one with other Imperialistic Powers. Some say the Soviet has gone Imperialist. But it is the greatest fallacy of the day. Amongst the Allied Powers, the Soviet is the only Power championing freedom and democracy. She has brought freedom to nations who were groaning under fascist dictatorship. Naturally, therefore, we, the ensalved people, want Soviet friendship.

Lastly he appealed to the audience to read Soviet Literature and from it know the Soviet people, their mind and art, their ways and their politics.

**HIS POLITICAL VIEWS**

What about India ?

It was a sultry evening. I stepped into his room. The almirahs were all packed with books of varied subjects and interest.

Kalindi Babu came in. After coffee he earnestly began the topic, which varied round literature, both national and international. He said, 'A true artist can not but be a communist in spirit. The main trend of his talk was to bypass reality, to be blind to what is comming up around us is to misjudge life.

I was seeking an opportunity to know his attitude about present-day politics. I had to make no effort. He himself came round. So I asked him about the present Congress-Communist tangle. His face showed interest as he said.

It will be a great calamity if Congress takes the unwise step of driving away the Communists. Congressmen and Communists are the tried and only fighters for freedom. So utmost unity in this critical time of our country is the need of the hour. If Congress at all takes such a step, it will become very very small and remain a sect, allowing disruption to turn rampant.

In the same breath he said with utmost feeling that Orissa being the poorest, where misery is most actue, the patriots should not have the luxury of dabbling in disruptive moves. Epidemics and food crisis are ravaging the dumb millions. It is the greatest duty to save them. It is the land of the poorest, and the poorest should be best looked after.

It was late. I took leave. The patches of clouds above, running so fast, chimed in with my own thoughts–the intense feeling infused in me by Kalindi Babu.



## "କାଳିନ୍ଦୀଚରଣ ପାଣିଗ୍ରାହୀ– ସର୍ବୋତ୍ତମ ଜୀବିତ ଓଡ଼ିଆ ସାହିତ୍ୟିକ ଲେଖକ– ଶ୍ରୀ ରାମକୃଷ୍ଣ ପତି"

ଓଡ଼ିଆ ସାହିତ୍ୟରେ ନବଯୁଗର ଅଭ୍ୟୁତ୍ଥାନ ଘଟେ ଊନବିଂଶ ଶତାବ୍ଦୀର ଶେଷ ଭାଗରେ ସର୍ବଶ୍ରେଷ୍ଠ କବି ରାଧାନାଥଙ୍କ ଆବିର୍ଭାବ ଦ୍ୱାରା । ଓଡ଼ିଆ ସାହିତ୍ୟରେ ତାଙ୍କୁ କାଳ୍ପନିକ ଯୁଗର କବି ଆଖ୍ୟା ଦିଆଯାଇପାରେ । ଭଞ୍ଜଯୁଗ ପରେ ତାଙ୍କ ଆବିର୍ଭାବ ଆବାହନ କରେ ସାହିତ୍ୟ ଜଗତରେ ଏକ ନବଯୁଗର ପ୍ରଭାତୀ । ପ୍ରକୃତି ଥିଲା ତାଙ୍କ ରଚନାର ପ୍ରଧାନ ଉପଜୀବ୍ୟ, ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ପ୍ରକୃତିଦତ୍ତ ଅନାବିଳ ଆନନ୍ଦହିଁ କବିଙ୍କ ପକ୍ଷରେ ମଣିଷ ସମାଜରେ ନିହିତ ଦୁଃଖ-ଦୁର୍ଦ୍ଦଶାର ସ୍ମାରକ ହୋଇ ଉଠେ । ଜୀବନର ଦୁଃଖ-ଜଞ୍ଜାଳ ତାଙ୍କ ପକ୍ଷରେ ଅସହ୍ୟ ହୁଏ । ତହୁଁ ସେ ସମସାମୟିକ ସାମାଜିକ ପରିସ୍ଥିତିରୁ ପଳାୟନ କରି ପ୍ରକୃତି-କ୍ରୋଡ଼ରେ ଆଶ୍ରୟ ପାଇବା ପାଇଁ ଆଗ୍ରହୀ ହୋଇପଡ଼ନ୍ତି । ଏହାର କୌଣସି ପ୍ରତିକାର କବି ରାଧାନାଥ ସୂଚାଇ ନାହାନ୍ତି କିମ୍ବା ଦୁଃଖ-ଜଞ୍ଜାଳପୂର୍ଣ୍ଣ ଜୀବନର ସମୁନ୍ନତି ଲାଗି କୌଣସି ପନ୍ଥା ବତାଇ ନାହାନ୍ତି ।

### ଫକୀରମୋହନ ପରମ୍ପରା—

କିନ୍ତୁ ସେହି ଯୁଗର ସର୍ବପ୍ରଥମ ଓ ସର୍ବଶ୍ରେଷ୍ଠ ଔପନ୍ୟାସିକ ଫକୀରମୋହନ ସମାଜରେ ପ୍ରବେଶ କରିଥିବା ଦୁର୍ନୀତିକୁ ପ୍ରଥମେ ଉଲ୍ଲେଖ କରନ୍ତି ଓ କ୍ରମେ ତାହାକୁ ଆୟତ୍ତ କରନ୍ତି ।

ଗ୍ରାମବାସୀମାନଙ୍କ ନୀଚତା ଓ କୁସଂସ୍କାର— ମାମଲତକାରଙ୍କ ଅତ୍ୟାଚାର, ସ୍ୱାର୍ଥାନ୍ୱେଷୀର ଅଭିସନ୍ଧି, କୁଟିଳ ଷଡ଼ଯନ୍ତ୍ର ଓ ପଲ୍ଲୀଜୀବନରେ ଦୈନନ୍ଦିନ ବଢ଼ି ଉଠୁଥିବା କଳୁଷର ବାସ୍ତବ ବର୍ଣ୍ଣନା; ପୁଣି ତାଙ୍କ ଅନନୁକରଣୀୟ ଜୀବନ୍ତଶୈଳୀ ଓଡ଼ିଆ ସାହିତ୍ୟରେ ସେ ପର୍ଯ୍ୟନ୍ତ ଅଜ୍ଞତା ଥିଲା । ଫକୀର ମୋହନଙ୍କ ବିଖ୍ୟାତ ଉପନ୍ୟାସ 'ମାମୁଁ' ଓ 'ପ୍ରାୟଶ୍ଚିତ୍ତ' ବହୁପୂର୍ବରୁ ହିନ୍ଦୀରେ ଅନୂଦିତ ହୁଏ ।

ସାଧାରଣ ଜନତାକୁ ଅଜ୍ଞତା କିପରି ଗ୍ରାସ କରିଛି–ଧନିକର କୌଶଳ ପୁଣି ଅଳ୍ପ କେତେଙ୍କ ଚତୁର ବ୍ୟକ୍ତି ଅନ୍ୟମାନଙ୍କ ପ୍ରତି କି ଭଳି ଅତ୍ୟାଚାର କରନ୍ତି, ତାହାର ଏକ ଜୀବନ୍ତ ଚିତ୍ର ସେ ଆଙ୍କିଛନ୍ତି । ସେ ବୁଦ୍ଧିଜୀବୀମାନଙ୍କର ଅନୁଭୂତିକୁ ପ୍ରକାଶ କରି ତଥାକଥିତ ସଭ୍ୟତାର ତୀବ୍ର ବ୍ୟଙ୍ଗଦ୍ୱାରା ଅତ୍ୟାଚାରୀ ବିରୋଧରେ ଘୃଣା ଉଦ୍ରେକ କରିଛନ୍ତି । ତାଙ୍କ ରଚନାବଳୀରେ ବାସ୍ତବତା ଓ ନ୍ୟାୟର ପ୍ରତିଷ୍ଠା ହୋଇଥିବାରୁ ତାହା ସମ୍ବେଦନଶୀଳ ।

ସେମାନେ ହେଲେ ଊନବିଂଶ ଶତାବ୍ଦୀର ଶେଷଭାଗ ଓ ବିଂଶ ଶତାବ୍ଦୀର ପ୍ରଥମଭାଗର ଲେଖକ । ସେତେବେଳେ ମଧ୍ୟଯୁଗ ସମାଜର ପରିବର୍ତ୍ତନ ଅତି ଶିଥିଳ ଥିଲା । ଶିକ୍ଷା ଥିଲା ଅଳ୍ପଲୋକଙ୍କ ଭିତରେ ସୀମାବଦ୍ଧ । ବାହାରର ପ୍ରଭାବ ଥିଲା ଅତି ସାମାନ୍ୟ । ସ୍ୱଭାବତଃ ରାଧାନାଥ ପ୍ରାକୃତିକ ଓ କାଳ୍ପନିକ ଖୋଳପାକୁ ଭାଙ୍ଗିପାରି ନାହାନ୍ତି ଓ ଫକୀରମୋହନ ସାମାଜିକ ବନ୍ଧନରୁ ମୁକ୍ତ ହୋଇ ନାହାନ୍ତି ।

## ପ୍ରଗତିର କବି କାଳିନ୍ଦୀ–

କିନ୍ତୁ କାଳିନ୍ଦୀ କେବଳ ମଧ୍ୟଯୁଗୀୟ ସମାଜରେ ବ୍ୟାପିଯାଇଥିବା ତ୍ରୁଟି ବିଚ୍ୟୁତି ଓ କୁସଂସ୍କାର ସବୁ ବିଶ୍ଳେଷଣ କରିବାଦ୍ୱାରା ସେଗୁଡ଼ିକୁ ପଦାରେ ପକାଇ ସନ୍ତୁଷ୍ଟ ରହିନାହାନ୍ତି । ରାଧାନାଥ ଓ ଫକୀରମୋହନଙ୍କ ମହାନ୍ ପରମ୍ପରାକୁ ସେ ଅନୁସରଣ କରି ନୂତନ ସଙ୍ଗେ ପ୍ରାଚୀନ ସମ୍ପର୍କକୁ ରକ୍ଷାକରେ ମଧ ସମାଜରେ ଦୈନନ୍ଦିନ ଯେଉଁ ବିରାଟ ପରିବର୍ତ୍ତନ ଆସି ଯାଇଛି– ତାହାର ତୁରନ୍ତ ଅବଧାରଣ କରିଛନ୍ତି । ସେ ଅସହାୟ ଭାବରେ ଅନ୍ଧାରରେ ଅଣ୍ଡାଳି ହୋଇ ସମାଜ ତଥା ଦୁନିଆରେ ଘଟିଯାଉଥିବା ଘଟଣା ଭିତରେ ଥୟହୋଇ ରହି ନାହାନ୍ତି ।

ସେ ଜଣେ କଳ୍ପନାବିଳାସୀ ହୋଇ କେବଳ ଅବାସ୍ତବତାର ସ୍ୱପ୍ନ ଦେଖି ନାହାନ୍ତି । ବାସ୍ତବବାଦୀ ଲେଖକରୂପେ ଦଳିତ ନିପୀଡ଼ିତ ମାନବ ପ୍ରାଣର ନୀରବ ନିସ୍ତେଜ ଆଶା ଆକାଙ୍‌କ୍ଷା ତାଙ୍କ ରଚନାରେ ରୂପାୟିତ । ତାହାଙ୍କ 'ବାଜି ରାଉତ' କବିତା କେବଳ ଅତ୍ୟାଚାରୀ ବିରୋଧରେ ସୁପ୍ତ ମନର ଭାବକୁ ପ୍ରଜ୍ୱଳିତ କରି ନାହିଁ କିମ୍ବା ପ୍ରତିକ୍ରିୟାର କାଳିମା ଓ ଘୃଣିତ ସାମନ୍ତବାଦ ବିରୁଦ୍ଧରେ ଅଗ୍ନି ପ୍ରଜ୍ୱଳିତ କରିନାହିଁ; ମାତ୍ର ବାର ତେର ବର୍ଷ ବୟସ୍କ ଢେଙ୍କାନାଳର ଐତିହାସିକ ସହିଦ୍ ବାଜିରାଉତକୁ ଓଡ଼ିଶାର ଘରେ ଘରେ ତାହା ଚିହ୍ନାଇ ଦେଇଛି ।

କାଳିନ୍ଦୀ ଜଣେ ମାଟିର ସନ୍ତାନ । ମାଟିର ପ୍ରତ୍ୟେକ ବସ୍ତୁ ତାଙ୍କର ପ୍ରିୟ । ତେଣୁ ସେ କେବଳ ନିଜକୁ ଜାଣନ୍ତି । ନିଜର ପ୍ରିୟ ଓ ନିକଟତମ ବ୍ୟକ୍ତିମାନଙ୍କୁ ତଥା ନିଜେ ଚଳପ୍ରଚଳନ ହେଉଥିବା ସମାଜକୁ ବୁଝନ୍ତି । ତହୁଁ ସେଇମାନଙ୍କ ଗୀତ ସେ ଗାଆନ୍ତି । ସେହିମାନଙ୍କ ଦୁଃଖ ଦୁର୍ଦ୍ଦଶା ଆନନ୍ଦ ବିଷାଦହିଁ ତାଙ୍କର କବିତା । କବିଙ୍କ ନିଜ ମନ୍ତବ୍ୟ

ହେଲା—ତାଙ୍କ ଦର୍ଶନ ଓ ଜୀବନର ଆଭିମୁଖ୍ୟ 'ପୁରୀ ମନ୍ଦିର' କବିତାରେ ରୂପାୟିତ ହୁଏ । ଏହି କବିତାରେ 'ମୂକ ଭଗବାନ'ଙ୍କୁ ସମ୍ବୋଧନ କରି ସେ କହନ୍ତି—

''ଏ ଧରାର ସୁଖ ଦୁଃଖ ସ୍ନିଗ୍ଧ ରୁକ୍ଷ ସୁନ୍ଦର କୁତ୍ସିତ
ଅତି ଆଦରର ମୋର, ଏ ଜୀବନେ ଅତି ପରିଚିତ
କେତେ ଆଶା କେତେ ମୋର ଆକାଙ୍କ୍ଷାର ଧନ
ଛାଡ଼ି ସବୁ ନ ଲୋଡ଼ଇଁ ସ୍ୱରଗ ଭୁବନ,
ଜନନୀର ଅମୃତ ସେନେହ
ଲାଳିତି କରଇ ଏ ଯେ ଦେହ
ଆଶିଷ ପିତାର
କଲ୍ୟାଣ ଆଧାର
ଏତେ ପ୍ରାଣ
ଏତେ ଦାନ !

ବର୍ତ୍ତମାନ ଜୀବନଠାରୁ କିଛି ମାତ୍ର ଆଉ ପ୍ରିୟତର ନୁହେଁ । ନିଜ ବେଷ୍ଟନୀ ଭିତରେ ଆନନ୍ଦ ବିଷାଦର ଦୁଃଖ-ଦୈନ୍ୟଭରା ମଣିଷ–ମାତା ପିତା, ସ୍ତ୍ରୀ ପରିବାର ପୁଣି ସର୍ବୋପରି ସମଗ୍ର ସମାଜ ପ୍ରତି ପ୍ରେମ– ଯେ କୌଣସି କାଳ୍ପନିକ ସ୍ୱର୍ଗଠାରୁ ଅଧିକ ମୂଲ୍ୟବାନ ।

ଅନ୍ୟ ଏକ ଶ୍ଳୋକରେ ସେ ଘୋଷଣା କରିଛନ୍ତି—

ହେ ପାଷାଣ ! ମାଗୁ ନାହିଁ ଶମିବାକୁ ମୋ ମରମ ଭାର
କ୍ଷମିବାକୁ ଅପରାଧ ତୁଟିବାକୁ ବ୍ୟର୍ଥତା ଆଶାର
ଲୋଡୁ ନାହିଁ ଲଭିବାକୁ ତବ ଅନୁଗ୍ରହେ
ଧନ, ମାନ, ଯଶ, ଖ୍ୟାତି, ଅଭୟ ହୃଦୟେ,
ମୃତ୍ୟୁ ପରେ ମୁକ୍ତି ନାହିଁ ମାଗେ
ବଇକୁଣ୍ଠ ନାହିଁ ଭଲଲାଗେ;
ଏ ମର୍ତ୍ତ୍ୟ ଭୁବନ
ମୋ ସ୍ନେହ ସଦନ,
ଏ ଧରଣୀ
ସୁଖମଣି ।

କବିତାଟିର ଅସଲ କର୍ମ ହେଲା ମଧ-ଯୁଗୀୟ ସମାଜରେ ଭାବପ୍ରବଣ ପରମ୍ପରା ବିରୋଧରେ ବୈପ୍ଳବିକ ଆହ୍ୱାନ । ଯେଉଁ ସମାଜ ଈଶ୍ୱରଙ୍କ ନାମ ନେଇ ଜନତାକୁ ଶୋଷଣ କରେ, ଯେଉଁ ସମାଜରେ ଦେବତାଙ୍କୁ ଆରାଧନା କରି ମଣିଷ ଲୋଡ଼େ ଅନ୍ତର ବେଦନାର ଉପଶମ, ମନୁଷ୍ୟ ହିଁ ଯଥାର୍ଥରେ ଦେବତା ରୂପରେ ଜଗତକୁ–ଅର୍ଥାତ୍—

ଏହି ମର୍ତ୍ତ୍ୟଲୋକକୁ ପରିଣତ କରିପାରେ ସ୍ୱର୍ଗରେ । ଇଂରେଜ କବି ସେଲିଙ୍କ ଭଳି ସେ ଜଣେ ସ୍ୱପ୍ନବିଳାସୀ ନୁହନ୍ତି–ଶୀତପରେ ଯେଉଁ କବି ବସନ୍ତର ଆଗମନକୁ ସ୍ୱାଭାବିକ ଜ୍ଞାନ କରନ୍ତି ।

'ଆଗାମୀ' ନାମକ ତାଙ୍କର ଏକ ନୂତନ କବିତା 'ସହକାର'ରେ ଏବେ ୧୯୪୩ ଖ୍ରୀଷ୍ଟାବ୍ଦ ଶେଷ ଭାଗରେ ପ୍ରକାଶିତ ହୋଇଛି, ତହିଁରେ ଏକ ନବତର ଓ ପୂର୍ଣ୍ଣତର ବାସ୍ତବ ସମାଜର ଆଗମନୀ ବାର୍ତ୍ତା ଧ୍ୱନିତ । ଏହି ସମାଜ ଏକ ତୀବ୍ର ସଂଘର୍ଷ ଭିତରେ ପୁଣି ଏକ ସଚେତନ ଲୁଣ୍ଠିତ ନିଷ୍ପେଷିତ ଶ୍ରେଣୀର ସଂଘର୍ଷପୂର୍ଣ୍ଣ ଉଦ୍ୟମ ଫଳରେ ରୂପ ନିଏ । ସମାଗତ ପ୍ରଗତିର ଶତ୍ରୁ ଆଜି ଧ୍ୱଂସମୁଖୀ । ଏହିଠାରେ— ଏହିଭଳି ଏକ ସମାଜରେ, ମାନବିକ ମୂଲ୍ୟବୋଧର ଯଥାର୍ଥ ପ୍ରତିପାଦନ କରାଯିବ । ସାଧାରଣ ଜନତାର କଲ୍ୟାଣଭିତ୍ତି ଉପରେ ପ୍ରତିଷ୍ଠିତ ହେବ ସକଳ ସ୍ୱାର୍ଥ ଓ ସକଳ ସ୍ଥାନର ମୂଲ୍ୟାୟନ । ଏହି ସମାଜର ସଂଗୀତ ହିଁ ଧ୍ୱନିତ ହୋଇଛି ତାଙ୍କରି ଭାଷାରେ—

''କବିତା ରଚେଁ ଏକ ନୂତନ ସମାଜର
ସବୁରି ପାଇଁ ଯହିଁ ବକ୍ଷୁରେ ଅଛି ଘର ।

ସବୁରି ଅଧିକାର କହିବା ପାଇଁ ଅଛି
ମୁଁ ସେଇ ସମାଜର କବିତା ବସେଁ ରଚି'' । ଇତ୍ୟାଦି

ଯେଉଁ ସମାଜରେ ମାନବିକ ସୁଖ ନିରାଟ ବାସ୍ତବତା ଭିତରୁ ହିଁ ଜନ୍ମଲାଭ କରେ ।

**ଔପନ୍ୟାସିକ–ଆମରି ଯୁଗର ବାଣୀ—**

କାଳିନ୍ଦୀ କେବଳ ସସସାମୟିକ ସର୍ବଶ୍ରେଷ୍ଠ କବି ରୂପେ ପରିଚିତ ନୁହନ୍ତି; ମାତ୍ର ଏ ଯୁଗର ସର୍ବଶ୍ରେଷ୍ଠ ଔପନ୍ୟାସିକ ସେ । ପ୍ରାଚୀନ ଓ ନବୀନ – ଉଭୟ ଶ୍ରେଣୀର ସ୍ନେହସମ୍ମାନ ସେ ଆକର୍ଷଣ କରିଛନ୍ତି । ତାଙ୍କର ପ୍ରଶାନ୍ତ ରୂପ ଭିତରେ ଯୌବନର ଅଧୀରତା ନାହିଁ; କିନ୍ତୁ ନିପୀଡ଼ିତର ପ୍ରଜ୍ୱଳିତ ଅଗ୍ନି ସହିତ ଦେଶଭକ୍ତର ଉତ୍ସାହ ନିହିତ ଅଛି ।

ଫକୀରମୋହନଙ୍କ ଜାତୀୟ ଆଭିମୁଖ୍ୟ ହେଲା, ଶିକ୍ଷାର ପ୍ରସାର ସହିତ ଜନତାର ଅଜ୍ଞତା ଓ ସୁଷୁପ୍ତି ବିରୋଧରେ ବୈପ୍ଲବିକ ଅଭିଯାନ ! ଶିକ୍ଷା ପ୍ରସାରଦ୍ୱାରା ପୁଣି ଗୋଟିଏ ଦିଗରେ ଜନତାର ଅଜ୍ଞତା ଏବଂ ଅନ୍ୟ ଦିଗରେ ସ୍ୱଳ୍ପସଂଖ୍ୟକ ସୁବିଧା-ଭୋଗୀଙ୍କର ଦୂଷିତ କଳୁଷ ବିରୋଧରେ ବିପ୍ଲବ; କିନ୍ତୁ କାଳିନ୍ଦୀ ଅନୁଭବ କରିଛନ୍ତି ଜନତା ଭିତରେ ହିଁ ମୁକ୍ତିର ଦାବୀ; ପୁଣି ଶୁଣିଛନ୍ତି— ନିମ୍ନତମ ସ୍ତରରେ ରହୁଥିବା ମଣିଷର ବିଦ୍ରୂପ ଚିତ୍କାର ।

ଫକୀରମୋହନ ଆସିଛନ୍ତି ଏକ ମଧ୍ୟବିତ୍ତ ଶ୍ରେଣୀ ପରିବାର ଭିତରୁ; କିନ୍ତୁ କେତେବେଳେ ? ୧୯୦୦ ଖ୍ରୀଷ୍ଟାବ୍ଦ ପୂର୍ବରୁ । ସେହି କାରଣରୁ ସେ ସେତେବେଳେ ପ୍ରଚଳିତ ବୁଦ୍ଧିଜୀବୀମାନଙ୍କର ଅନୁଭୂତିକୁ ପ୍ରକାଶ କରିଛନ୍ତି । କାଳିନ୍ଦୀ ମଧ୍ୟ ପୁରୀଜିଲ୍ଲାର ଏକ ମଧ୍ୟବିତ୍ତ ପରିବାରରୁ ଆସିଛନ୍ତି, କିନ୍ତୁ କେତେବେଳେ ? ୧୯୦୦ ଖ୍ରୀଷ୍ଟାବ୍ଦ ପରେ । ୧୯୦୧ ରେ ତାଙ୍କର ଜନ୍ମ । ତେଣୁ ଏକ ନୂତନ ଯୁଗର ପ୍ରତ୍ୟୁଷରେ । ତାହାରି ଅନୁରୂପ ସେ ବଢ଼ି ଉଠନ୍ତି ପରିବର୍ତ୍ତିତ-ପରିସ୍ଥିତି ଭିତରେ । ଜାତୀୟ ଅଭ୍ୟୁତ୍‌ଥାନର ବିପୁଳ ପ୍ରଭାବରେ ରୁଷ୍ ଦେଶରେ ନବ ସଭ୍ୟତାର ଅଭ୍ୟୁଦୟ ସଙ୍ଗେ ପାରିପାର୍ଶ୍ୱିକ ବିଶ୍ୱବ୍ୟାପୀ ପ୍ରଭାବରେ ସେ ପ୍ରଭାବିତ ।

**ମଧ୍ୟଯୁଗୀୟ ଅତ୍ୟାଚାର ବିରୋଧରେ :–**

ଏହି ରୂପେ ତାଙ୍କର ଉପନ୍ୟାସଗୁଡ଼ିକରେ ସୁସ୍ପଷ୍ଟ ପ୍ରତିଫଳିତ ହୋଇଛି ଯେ, ମଧ୍ୟଯୁଗୀୟ ଅତ୍ୟାଚାରଦ୍ୱାରା ସେ ଅତି ଉତ୍କଟ ଭାବରେ ଆହାତ ହୋଇଛନ୍ତି ଏବଂ ଚିନ୍ତା ତାଙ୍କର

ଉପନୀତ ହୋଇଛି ଯଥାର୍ଥରେ ମାନବୀୟ ଦୁର୍ଦ୍ଦଶା ମୂଳରେ ନିହିତ ରହିଛି ମଧ୍ୟଯୁଗୀୟ ସମାଜର ଅର୍ଥନୈତିକ ମେରୁଦଣ୍ଡ ।

୧୯୩୧ ଖ୍ରୀଷ୍ଟାବ୍ଦରେ କାଳିନ୍ଦୀ ସୃଷ୍ଟି କରନ୍ତି 'ମାଟିର ମଣିଷ' । ଓଡ଼ିଆ ସାହିତ୍ୟରେ ଏହା ସର୍ବୋତ୍ତମ ଉପନ୍ୟାସ । ଏହି ପୁସ୍ତକଟି ଓଡ଼ିଶାର ସାହିତ୍ୟ-ଜଗତକୁ ବିଦ୍ୟୁତ୍-ଶକ୍ତି ଭଳି ପ୍ରଭାବିତ କରେ ଏବଂ ଆଜି ପର୍ଯ୍ୟନ୍ତ ଏହାର ବିକ୍ରି ସବୁଠାରୁ ବେଶି । ଏହାର ବିଷୟବସ୍ତୁ ହେଲା ମଧ୍ୟଯୁଗୀୟ ସମାଜ ବିରୋଧରେ ଯୁଦ୍ଧ- ମନ୍ଦ ବିରୋଧରେ ବିପ୍ଳବ – ମାତ୍ର ଏ ସମସ୍ତ ହିଁ ସହନଶୀଳତା ଓ ତ୍ୟାଗର ମାଧ୍ୟମରେ । ଗ୍ରନ୍ଥର ନାୟକ ବରଜୁ ପ୍ରଧାନ ତ୍ୟାଗର ପ୍ରତିମୂର୍ତ୍ତି ରୂପେ ସକଳ ପ୍ରକାର ସ୍ୱାର୍ଥପରତା ବିରୋଧରେ ପୁଣି ପଲ୍ଲୀ ମହାଜନମାନଙ୍କ ଭଳି ଶୋଷକଙ୍କର ବିରୋଧରେ ସ୍ୱାର୍ଥ ତ୍ୟାଗର ଜ୍ୱଳନ୍ତ ଆଦର୍ଶ ଘେନି ଯୁଦ୍ଧ ଘୋଷଣା କରିଛି । ସର୍ବଶେଷରେ ସେ ଓ ତାହାର ସ୍ତ୍ରୀ ଶିଶୁ ପୁତ୍ର କନ୍ୟାଙ୍କୁ ଘେନି ନିଜର ଘର ସମ୍ପତ୍ତି ତ୍ୟାଗ କରିଛନ୍ତି ଆପଣା ସାନଭାଇ ପାଖରେ ଓ ଅନ୍ୟ ଗୋଟିଏ ଗ୍ରାମରେ ଯାଇ ବାସ କରିଛନ୍ତି । ତାହାପରେ ଆରମ୍ଭ ହୁଏ ଏକ ନୂତନ ଜୀବନ ।

ଭାରତରେ ସମସାମୟିକ ଜାତୀୟ ଆନ୍ଦୋଳନର ପ୍ରବଳ ପ୍ରଭାବ ଲେଖକଙ୍କ ଉପରେ ପଡ଼ିଛି ଓ ଗ୍ରନ୍ଥଟିର ପ୍ରଚ୍ଛନ୍ନ ବାଣୀ ହେଲା ଗାନ୍ଧିବାଦ ।

'ଅମରଚିତା' ଓ 'ମୁକ୍ତାଗଡ଼ର କ୍ଷୁଧା' ଦୁଇଟି ଉପନ୍ୟାସ ଗୋଟିଏ ଧାରାବାହିକ ଗଳ୍ପର ଚିତ୍ରଣ କରେ । ପ୍ରକାଶ କାଳ ୧୯୩୩; ଓଡ଼ିଶାରେ ୧୮୬୬ ଖ୍ରୀଷ୍ଟାବ୍ଦର ନଅଙ୍କ ଦୁର୍ଭିକ୍ଷର ବର୍ଣ୍ଣନା ୧୯୩୨ର ସାମାଜିକ ପରିସ୍ଥିତି ଉପରେ ଆଧାରିତ ହୋଇଛି । ଲେଖକ ସାମାଜିକ ପରିବର୍ତ୍ତନ ଓ ତାହାର ହେତୁଗୁଡ଼ିକ ପ୍ରତି ଅଧିକ ଅବହିତ ହୋଇଛନ୍ତି । ଦୁଇଟି ଉପନ୍ୟାସ—ଦୁଇଟି ବିରୋଧୀ ଶକ୍ତିର ପାର୍ଥକ୍ୟ–ରାଜା ଜମିଦାର ଶ୍ରେଣୀ ସହିତ ଚାଷୀ-ମୂଲିଆ ଶ୍ରେଣୀର ବିଭେଦକୁ ପରିସ୍ଫୁଟ କରିଛି । ଏଥିରେ ଲେଖକ ଦର୍ଶାଇଛନ୍ତି କିପରି ଦୁର୍ଭିକ୍ଷ ଓ ମରୁଡ଼ି ପରେ ଚାଷୀ-ମୂଲିଆ ଶ୍ରେଣୀର ଲୋକଙ୍କର ନୈତିକ ଅଧୋଗତି ଘଟିଛି । ଉପନ୍ୟାସର ଯଥାର୍ଥ ନାୟକ ସନାତନ ସ୍ଥାନୀୟ ପୁଞ୍ଜିପତି ଓ ଅତ୍ୟାଚାରୀ ବିରୁଦ୍ଧରେ ଅନାହାର-କ୍ଲିଷ୍ଟ ଜନତା ପକ୍ଷରେ ଲଢ଼େଇ କରିଛି । ଅଭୂତପୂର୍ବ ନିଷ୍ଠୁରତା ଓ ଅତ୍ୟାଚାରବିଦ୍ଧ ଦୁର୍ବଳ ମଣିଷର ନୈତିକ ପତନ ବିପ୍ଳବୀ ସନାତନକୁ କ୍ରୋଧ ଜର୍ଜରିତ କରି ପକାଇଛି । ଅତ୍ୟାଚାରୀକୁ ହତ୍ୟାକରି ନିଜକୁ ସେ ଛିଡ଼ା କରାଇଛି କୋର୍ଟ ଭିତରେ । ସନାତନର ଫାଶି ହୋଇଛି । ଗ୍ରନ୍ଥ ଭିତରେ ଗାନ୍ଧୀବାଦର ଭାବପ୍ରାବଲ୍ୟ ଅନ୍ତର୍ନିହିତ ଫଲ୍‌ଗୁଧାରା ଭଳି ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ପ୍ରବାହିତ ।

**ସୃଷ୍ଟି ମାଧ୍ୟମରେ ସାମାଜିକ ପରିବର୍ତ୍ତନ**

'ଲୁହାର ମଣିଷ' ଉପନ୍ୟାସଟି ଏବେ ମଧ୍ୟ ପାଣ୍ଡୁଲିପି ଆକାରରେ ରହିଛି । ଏହା ପରିବର୍ତ୍ତନର ପୂର୍ଣ୍ଣତା ଆଣିବା ଦିଗରେ ସହାୟକ ହେବ । ୧୯୩୨ ଖ୍ରୀଷ୍ଟାବ୍ଦରୁ ଆଜି ପର୍ଯ୍ୟନ୍ତ ସମାଜ ବିରାଟ ପରିବର୍ତ୍ତନ ଭିତରେ ଗତି କରୁଛି । କ୍ଷୟିଷ୍ଣୁ ସାମନ୍ତବାଦୀ ଧନିକ-ଶ୍ରେଣୀ ହସ୍ତରେ ଭୂମିର ଏକତ୍ରୀକରଣ ହେବାକୁ ପୁଞ୍ଜିବାଦୀ ସମାଜର ମୁଣ୍ଡ ଟେକି ଉଠିବା, ଗ୍ରାମ୍ୟ ଅର୍ଥନୀତି ଖଣ୍ଡ ଖଣ୍ଡ ହୋଇପଡ଼ିବା ଫଳରେ ଦରିଦ୍ର ଚାଷୀ କୃଷିକୁ ଛାଡ଼ି କଳ କାରଖାନା ଭିତରେ କାର୍ଯ୍ୟ ଅନୁସନ୍ଧାନ କରିବା ଆଦି ଚିତ୍ର ଏହି ଉପନ୍ୟାସର ପରିକଳ୍ପନା ଭିତରେ ନିହିତ ଅଛି ।

'ମାଟିର ମଣିଷ' ଉପନ୍ୟାସର ପ୍ରଧାନ ନାୟକ ବରଜୁ ମଧ 'ଲୁହାର ମଣିଷ'ରେ ଆବିର୍ଭୂତ ହୋଇଛି । ଅନ୍ୟ କଥାରେ– କୃଷିର ମଣିଷ କାରଖାନାର ମଣିଷରେ ପରିଣତ । ଦୁଇଟି ଗ୍ରନ୍ଥ ମଧରେ ବିସ୍ତୃତ ଚଉଦ ବର୍ଷର ବ୍ୟବଧାନ ରହିଥିଲେ ହେଁ— ଏହି ସମୟଟି ବର୍ଦ୍ଧିଷ୍ଣୁ ସମାଜର କ୍ରିୟା ପ୍ରତିକ୍ରିୟା ସମ୍ପର୍କରେ ଲେଖକଙ୍କୁ ଅବହିତ କରିଛି । ପୁଣି ଏହି ସମାଜର ପରସ୍ପର—ବିରୋଧୀ ଭାବସ୍ରୋତ ନୂତନ ପଥର ନୂତନ ଅନୁସନ୍ଧିତ୍ସା ଘେନି ଧାବିତ ହୋଇଛି । 'ମାଟିର ମଣିଷ'ରେ ବରଜୁ ମଧବିତ୍ତ ସମାଜ ବିରୋଧରେ ପୁଣି ତାହାର ସମସ୍ତ ଅବାଞ୍ଛିତ ଅସ୍ୱାଭାବିକ ଶକ୍ତି ବିରୋଧରେ ଲଢ଼େଇ କରିଛି ଗାନ୍ଧିବାଦର ଆଦର୍ଶ ଘେନି । ପରବର୍ତ୍ତୀ 'ଲୁହାର ମଣିଷ'ରେ ଜାତୀୟ ଆନ୍ଦୋଳନରେ ଯୋଗ ଦେଇ ବରଜୁ ବନ୍ଦୀ ହୁଏ । ଏଥିରୁ ଜଣାପଡ଼େ ପରିବର୍ତ୍ତିତ ଯୁଗର ପ୍ରଗତି କାଳିନ୍ଦୀ–ସୃଷ୍ଟିରେ କି ଭଳି ମୂଲ୍ୟାୟନ କରାଯାଇଛି । ଓଡ଼ିଆ ସାହିତ୍ୟକୁ ବିଷୟବସ୍ତୁର ବିନ୍ୟାସ ମାଧମରେ ଏକ ବୈପ୍ଳବିକ ସ୍ତରକୁ ଆଣିବା ଉଦ୍ୟମ ହିଁ ତାଙ୍କର ଲକ୍ଷିତ ହୋଇଥାଏ ।

ସେ କେବଳ ଜଣେ କବି କିମ୍ବା ଔପନ୍ୟାସିକ ନୁହନ୍ତି; କିନ୍ତୁ ଜଣେ ନାଟ୍ୟକାର ଓ ପ୍ରାବନ୍ଧିକ ମଧ । ସାହିତ୍ୟର ପ୍ରତ୍ୟେକ ବିଭାଗରେ ତାଙ୍କ ସ୍ଥାନ ଅନତିକ୍ରମ୍ୟ ହୋଇ ରହିଛି ।

**ସୋଭିଏତ୍‌ପ୍ରେମୀ—**

ଜଣେ ମହାନ୍ ସାହିତ୍ୟ-ରଥୀ ଓ ବାସ୍ତବବାଦୀ ବ୍ୟାଖ୍ୟାକାର ରୂପେ ଆନ୍ତର୍ଜାତୀୟ ରାଜନୀତି ପ୍ରତି କାଳିନ୍ଦୀଙ୍କ ମନୋଭାବ ଜାଣିବା ପାଇଁ ଯେ କାହାରି ଆଗ୍ରହ ଜନ୍ମିବା କଥା ।

ଅତୀତ କାଳର ୧୯୩୬ ଖ୍ରୀଷ୍ଟାବ୍ଦରେ ସାଧାରଣ ସମକ୍ଷରେ ସୋଭିଏତ୍ ପ୍ରତିବିମ୍ବିତ ହୋଇ ନଥିଲା ବେଳେ–ବରଂ ଇଂରେଜ ଓ ପ୍ରତିକ୍ରିୟାଶୀଳ ଗୋଷ୍ଠୀ ମଧରେ ସୋଭିଏତ୍ ବିରୋଧୀ ଭାବଧାରା ପ୍ରସାର ଲଭୁଥିଲାବେଳେ କାଳିନ୍ଦୀ ହିଁ ଏକ ମାତ୍ର ସର୍ବ ପ୍ରଥମ ମନନଶୀଳ ବ୍ୟକ୍ତି, ଯାହାଙ୍କ ସଭାପତି ଭାଷଣ ଏକ ସାହିତ୍ୟ ସମ୍ମିଳନୀରେ ଘୋଷଣା କରେ— ''ଏକଦା ଅତି ଅନୁନ୍ନତ ଦେଶ ରୁଷିଆରେ ବର୍ତ୍ତମାନ ନୂତନ ସଭ୍ୟତାର ଆବିର୍ଭାବ ଘଟିଛି । ମାନବୀୟ ପରୀକ୍ଷା ନିରୀକ୍ଷା ଲାଗି ଏହା ଆଜି ଏକ ବିରାଟ ଲାବରେଟରୀରେ ପରିଣତ—ଯେଉଁଠାରେ କାଳ୍ପନିକ ସ୍ୱର୍ଗ ବାସ୍ତବତାରେ ପରିଣତ ହେବାକୁ ଯାଉଛି ।''

ଏହା ହେଲା ଦୂର ଅତୀତର କଥା, ମାତ୍ର ସେଦିନ ୧୯୪୪ ଖ୍ରୀଷ୍ଟାବ୍ଦ ନଭେମ୍ବର ୨୪ ତାରିଖରେ ସୋଭିଏତ୍ ମୈତ୍ରୀ ସଂଘର ଉଦ୍‌ଘାଟନ ଉତ୍ସବରେ ଭାଷଣ ଦେଇ ସେ କହିଥିଲେ—

''ସୋଭିଏତ୍‌କୁ ଅନ୍ୟାନ୍ୟ ସାମ୍ରାଜ୍ୟବାଦୀ ଶକ୍ତି ସହିତ ଗୋଟିଏ ବନ୍ଧନୀ ଭିତରେ ରଖାଯାଉଛି । କେତେକଙ୍କ ମତରେ ସୋଭିଏତ୍ ସାମ୍ରାଜ୍ୟବାଦୀ ହୋଇପଡ଼ିଛି; ମାତ୍ର ଆଜି ଏକଥା ସର୍ବ ଶ୍ରେଷ୍ଠ ଭ୍ରମ । ମହାଯୁଦ୍ଧର ମିତ୍ରଶକ୍ତିମାନଙ୍କ ମଧରେ ସୋଭିଏତ୍ ହେଲା ଏକ ମାତ୍ର ଶକ୍ତି, ଯାହା ସ୍ୱାଧୀନତା ଓ ଗଣତନ୍ତ୍ରର କର୍ଣ୍ଣଧାର । ପୃଥିବୀର ଯେଉଁସବୁ ଜାତି ସାମନ୍ତବାଦୀ ଓ ସ୍ୱେଚ୍ଛାଚାରୀ ପ୍ରଭୁତ୍ୱର ହୁକୁମ ତଳେ ଆର୍ତ୍ତନାଦ କରୁଥିଲେ, ତାହା ତାଙ୍କ ଭିତରେ ସ୍ୱାଧୀନତା ପ୍ରତିଷ୍ଠା କରିଛି । ସ୍ୱଭାବତଃ ସେଇ କାରଣରୁ ଆମେ ଆଜି ଦାସତ୍ୱ କବଳରେ ପଡ଼ିଥିବା ଜାତି ସୋଭିଏତ୍‌ର ବନ୍ଧୁତା ଲୋଡ଼ି ଥାଉଁ ।

ଶେଷରେ ସେ ଶ୍ରୋତାମାନଙ୍କୁ ନିବେଦନ କରିଥିଲେ, ରୁଷ ସାହିତ୍ୟ ଅଧ୍ୟୟନ କରିବାକୁ ଏବଂ ତହିଁରୁ ସୋଭିଏତ୍ ଜନତାର ଚିନ୍ତା ଓ କଳା ନୈପୁଣ୍ୟ, ସେମାନଙ୍କ ଆଚାର ବ୍ୟବହାର ଓ ରାଜନୀତି ଅଧ୍ୟୟନ କରିବାକୁ ।

## ତାହାଙ୍କ ରାଜନୈତିକ ମତବାତ—

ଭାରତବର୍ଷ କେଉଁଠି ?

ପରିଣାମ ରମଣୀୟ ସଂଧ୍ୟା । ମୁଁ ତାଙ୍କ ଘର ଭିତରକୁ ପ୍ରବେଶ କଲୁଁ । ଆଲମିରାଗୁଡ଼ିକ ବିଭିନ୍ନ ବିଷୟକ ଗ୍ରନ୍ଥରେ ଭର୍ତ୍ତି । କାଳିନ୍ଦୀବାବୁ ଆସିଲେ । କଫି ପରେ ସେ ଆନ୍ତରିକତା ସହିତ ଆରମ୍ଭ କଲେ, ଜାତୀୟ ଓ ଆନ୍ତର୍ଜାତୀୟ ସାହିତ୍ୟ ସମ୍ପର୍କରେ ଆଲୋଚନା– ''ଜଣେ ଜାତୀୟ ଓ ଆନ୍ତର୍ଜାତୀୟ ସାହିତ୍ୟ ସମ୍ପର୍କରେ ଆଲୋଚନା''— ''ଜଣେ ଯଥାର୍ଥ ଶିଳ୍ପୀ ସ୍ୱଭାବତଃ କମ୍ୟୁନିଷ୍ଟ ନ ହୋଇ ଆଉ ତ କିଛି ହୋଇ ନ ପାରେ ।'' ତାଙ୍କ ଆଲୋଚନାର ପ୍ରଧାନ ଦିଗ ଥିଲା– ବାସ୍ତବତାକୁ ଏଡ଼ିଯିବା, ଯାହା ଆମ ଚାରିପଟେ ଘୋଟି ଆସୁଛି, ସେଥିପ୍ରତି ଅନ୍ଧହେବା ଅର୍ଥ–ଜୀବନକୁ ଭୁଲ ବିଚାର କରିବା ।

ମୁଁ ସୁଯୋଗ ଖୋଜୁଥିଲି ବର୍ତ୍ତମାନ ରାଜନୀତି ସମ୍ପର୍କରେ ତାଙ୍କ ମତାମତ ଜାଣିବା ପାଇଁ । ସେଥିଲାଗି ମୋତେ କୌଣସି ଉଦ୍ୟମ କରିବାକୁ ପଡ଼ିଲା ନାହିଁ । ସେ ନିଜେ ସେହି ବିଷୟକୁ ଘୂରି ଆସିଲେ ।

ତେଣୁ ତାଙ୍କୁ ମୁଁ ବର୍ତ୍ତମାନ କଂଗ୍ରେସ-କମ୍ୟୁନିଷ୍ଟ ବିବାଦ ବିଷୟରେ ପଚାରେଁ । ତାଙ୍କ ମୁଖରେ ଆଗ୍ରହ ରେଖା– ଫୁଟି ଉଠିଲା– ଯେତେବେଳେ ସେ କହନ୍ତି— ''କମ୍ୟୁନିଷ୍ଟମାନଙ୍କୁ ଯଦି କଂଗ୍ରେସ ବିତାଡ଼ିତ କରେ, ତେବେ ଏହା ଏକ ଭୀଷଣ ବିପଜ୍ଜନକ ବ୍ୟାପାର ହୋଇ ପଡ଼ିବ । କଂଗ୍ରେସ ଲୋକେ ଓ କମ୍ୟୁନିଷ୍ଟମାନେ ଖାଣ୍ଟି ସ୍ୱାଧୀନତା-ସଂଗ୍ରାମୀ ଭାବେ ପରୀକ୍ଷିତ । ତେଣୁ ଆମ ଦେଶର ଏହି ଘଡ଼ିସନ୍ଧିବେଳେ ଦୁଇଙ୍କ ମଧ୍ୟରେ ନିବିଡ଼ ମିଳନହିଁ ଏକାନ୍ତ ଲୋଡ଼ା । କଂଗ୍ରେସ ଯଦି ସେଭଳି ପଦକ୍ଷେପ ନ ନିଏ, ତାହା ହେଲେ ଅତ୍ୟନ୍ତ ସୀମିତ ହୋଇ ପଡ଼ିବ ଓ ଏହା ଭିତରେ ବାଦବିବାଦ ବ୍ୟାପିଯିବ !''

ଏକ ସ୍ୱରରେ ସେ କହିବାକୁ ଲାଗନ୍ତି, ଅତ୍ୟନ୍ତ ଭାବପ୍ରବଣ ଭାଷାରେ ଯଥା, ଓଡ଼ିଶା ଦରିଦ୍ରତମ ରାଜ୍ୟ ହୋଇଥିବାରୁ ପୁଣି ଏହାର ଦୁର୍ଦ୍ଦଶା ସବୁଠାରୁ ଉତ୍କଟ ହୋଇଥିବାରୁ ଦେଶପ୍ରେମୀମାନେ ବିଭେଦ ସୃଷ୍ଟି କରିବାରେ ଅଗ୍ରସର ହେବାର ବିଳାସ ତ୍ୟାଗ କରିବା ଉଚିତ । ସଂକ୍ରାମକ ବ୍ୟାଧି ଓ ଖାଦ୍ୟାଭାବ ଏ ରାଜ୍ୟର ମୂକ ଜନତାକୁ ଛାରଖାର କରି ଦେଉଛି ।

ସବୁଠାରୁ ବଡ଼ କର୍ତ୍ତବ୍ୟ ହେଲାଣି, ସେମାନଙ୍କୁ ରକ୍ଷାକରିବା । ଦରିଦ୍ରତମ ଜନତାର ରାଜ୍ୟ ଏହା । ତେଣୁ ଦରିଦ୍ରତମ ଲୋକଙ୍କ ପ୍ରତି ସବୁଠାରୁ ବେଶି ନଜର ଦେବା ଉଚିତ ।

ବିଳମ୍ବ ହୋଇଗଲା, ମୁଁ ତାଙ୍କଠାରୁ ବିଦାୟ ନିଏଁ । ଆକାଶରେ ଖଣ୍ଡ ଖଣ୍ଡ ବଉଦ ଦ୍ରୁତ ଗତିରେ ଧାବିତ ହୋଇ କାଳିନ୍ଦୀବାବୁଙ୍କଦ୍ୱାରା ମୋହ ଭିତରେ ସଂକ୍ରମିତ ଗଭୀର ଭାବଧାରାକୁ ଏକ ନିରବଚ୍ଛିନ୍ନ ଛନ୍ଦରେ ଧ୍ୱନିତ କଲା ।



ଓଡ଼ିଶା ସରକାରୀ ଛାପାଖାନା ହେଡ଼ ରିଡ଼ର ଓ ପ୍ରଚାର ବିଭାଗୀୟ ଅଧ୍ୟକ୍ଷ (୧୯୩୮-୩୯)। ପାଠ୍ୟପୁସ୍ତକ ଓ ଶିଶୁ ସାହିତ୍ୟ ରଚନା- ସାମ୍ବାଦିକତା- 'କୁଳାର ମଣିଷ' (୧୯୪୬)। ବିଭିନ୍ନ ଗଳ୍ପ, କବିତା ଓ ପୁସ୍ତକ ପ୍ରକାଶନ (୧୯୪୯)। କଟକ ଆକାଶବାଣୀ କେନ୍ଦ୍ରରେ ନିଯୁକ୍ତି (୧୯୫୬)- କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଓ ରାଜ୍ୟ ସାହିତ୍ୟ ଏକାଡ଼େମୀର ସଦସ୍ୟ । ଆକାଶବାଣୀ ମାଧ୍ୟମରେ ଗଳ୍ପ, ନାଟକ, କବିତା, 'ଆଜିର ମଣିଷ' ଉପନ୍ୟାସ ଓ ପ୍ରବନ୍ଧାଦି ପ୍ରଚାର (୧୯୫୬-୭୦)। ବହୁ ପୂର୍ବରୁ ଭାରତୀୟ ପି.ଇ.ଏନ୍. ସଦସ୍ୟ। 'କାହିଁନୀ ରଚନାବଳୀ' ପ୍ରଥମ ଖଣ୍ଡ ଓ ଦ୍ୱିତୀୟ ଖଣ୍ଡ ପ୍ରକାଶିତ (୧୯୭୧)। ଏହି ବର୍ଷ ଭାରତ ସରକାରଙ୍କ ଦ୍ୱାରା 'ପଦ୍ମଭୂଷଣ' ଉପାଧି ଓ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଫେଲୋ ପଦ ଲାଭ । ୧୯୭୬ ରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ଡି.ଲିଟ୍ ଉପାଧି ପ୍ରାପ୍ତି। ୧୯୭୩ ରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ ଏହି ଆତ୍ମ ଜୀବନୀ ପୁସ୍ତକ ପାଇଁ ।

'ମାଟିର ମଣିଷ' ଭାରତୀୟ ସବୁ ଭାଷାରେ ସାହିତ୍ୟ ଏକାଡ଼େମୀ କୃତ ଅନୂଦିତ-ନାଟ୍ୟ ରୂପ ଓ ଚିତ୍ରରୂପ। 'ମାଟିର ବିଳାପ' ନାଟ୍ୟରୂପ ସବୁ ଭାରତୀୟ ଭାଷାରେ ଆକାଶବାଣୀ ଦ୍ୱାରା ପ୍ରଚାରିତ।

"ମାଟିର ମଣିଷ" ଇଂରାଜୀ ଅନୁବାଦ- ଶ୍ରୀମତୀ ଲୀଳା ରାୟ - A House Undevided (୧୯୭୩)।




ନବଯୁଗ ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ ଉଦ୍‌ଗାତା , କାଳିନ୍ଦୀଚରଣ । କବିତା , ଉପନ୍ୟାସ, ନାଟକ, କ୍ଷୁଦ୍ରଗଳ୍ପ, ଶିଶୁ ସାହିତ୍ୟ , ରମ୍ୟ-ରଚନା , ସାମ୍ବାଦିକତା ଆଦି କ୍ଷେତ୍ରରେ ବିଂଶଶତାବ୍ଦୀର ଚିନ୍ତାଧାରାରେ ଅନୁପ୍ରାଣିତ। ଛାତ୍ରାବସ୍ଥାରୁ ସ୍ୱଦେଶ ପ୍ରୀତି ଓ ପ୍ରଗତିଶୀଳ ଭାବଧାରାର ଉଦ୍‌ଗାତା । ସ୍କୁଲରେ ପଢ଼ିବା ସମୟରୁ ଗାନ୍ଧିବାଦୀ, ରବୀନ୍ଦ୍ର, ହ୍ୟୁଗୋ , ଗ୍ୟେଟେ , ଟଲଷ୍ଟୟ୍, ଗର୍କି-ସାହିତ୍ୟରେ ଉଦ୍‌ବୁଦ୍ଧ। ଗୋପବନ୍ଧୁ , ମଧୁସୂଦନ , ନନ୍ଦକିଶୋର , ନୀଳକଣ୍ଠ , ଗୋଦାବରୀଶ , ବିଶ୍ୱନାଥ କର , ବ୍ରଜସୁନ୍ଦର ପ୍ରମୁଖ କବି ଜନନାୟକଙ୍କ ସହ ବ୍ୟକ୍ତିଗତ ସଂସ୍ପର୍ଶ। ଗାନ୍ଧୀ , ରବୀନ୍ଦ୍ରନାଥ, ରାଧାକୃଷ୍ଣନ , ନେହେରୁ , ଇନ୍ଦିରାଙ୍କ ସହ ସାକ୍ଷାତକାର। କେନ୍ଦ୍ର ସାହିତ୍ୟ ଏକାଡ଼େମୀ, ଆନ୍ତର୍ଜାତିକ ସାହିତ୍ୟ ସଂସ୍ଥା ପି.ଇ.ଏନ୍. , ତଥା ଓଡ଼ିଶା ସାହିତ୍ୟ ଏକାଡ଼େମୀର ପ୍ରତିଷ୍ଠା ପ୍ରାରମ୍ଭରୁ ସଦସ୍ୟ। ଭାରତୀୟ ବିଭିନ୍ନ ଆଞ୍ଚଳିକ ସାହିତ୍ୟାନୁଷ୍ଠାନରେ ଯୋଗଦାନ ଓ ସମ୍ବର୍ଦ୍ଧନା। "ମାଟିର ମଣିଷ" ଉପନ୍ୟାସ ସବୁ ଭାରତୀୟ ତଥା ଇଂରାଜୀ ଭାଷାରେ ଅନୂଦିତ ଓ ତାହାର ଚଳଚ୍ଚିତ୍ରରୂପ ସମାଦୃତ। "ମାଂସର ବିଳାପ" ଗଳ୍ପ ଇଂରାଜୀ ଓ "ଆଗାମୀ" ଆଦି ବହୁ କବିତା ଚୀନ , ଜର୍ମାନୀ , ଇଂରାଜୀ ସମେତ ବହୁ ଭାଷାରେ ଅନୂଦିତ ଓ ରେଡ଼ିଓ ନାଟ୍ୟ ରୂପାନ୍ତର- ସବୁ ଭାରତୀୟ ଭାଷାରେ ପ୍ରଚାରିତ ।

Cover Design : Abhisek P